# ଆଖିର ଦେଖା ପ୍ରାଣର କଥା

ଡକ୍ଟର କୃଷ୍ଣଚରଣ ବେହେରା

ଆଖିର ଦେଖା ପ୍ରାଣର କଥା (ଆତ୍ମଜୀବନୀ)

■

ଲେଖକ :

ଅଧ୍ୟାପକ ଡଃ କୃଷ୍ଣଚରଣ ବେହେରା

■

ପ୍ରକାଶକ :

ଶ୍ରୀ ବିଭୁପ୍ରସାଦ ତ୍ରିପାଠୀ

ନବଦିଗନ୍ତ

ବିନୋଦବିହାରୀ, କଟକ-୭୫୩୦୦୨

■

ପ୍ରଥମ ପ୍ରକାଶ : ୨୦୦୯

■



■

ପ୍ରଚ୍ଛଦ ଅଳଂକରଣ :

ବିଜୟ ପ୍ରଧାନ

■

ଅକ୍ଷର ସଜ୍ଜା :

ମିନି ଡିଟିପି, କଟକ-୨

ମାମା, ରାଜେନ୍ଦ୍ର ନଗର, କଟକ-୧୦

■

ମୁଦ୍ରଣ :

ସଂଗୀତା ପ୍ରିଣ୍ଟର୍ସ, କଟକ-୨

■

ମୂଲ୍ୟ : ଟ. ୨୨୦/-

**AKHIRA DEKHA PRANARA KATHA**

■

Author :

**Prof. Dr. Krushna Charan Behera**

■

Published by :

**Sri Bibhu Prasad Tripathy**

**NABADIGANTA**

Binodbihari, Cuttack-753 002

■

First Edition : 2009

■



■

Cover Design :

**Bijay Pradhan**

■

Type set at :

**MINI DTP CENTRE,** Cuttack-2

**MAMA,** Rajendra Nagar, Cuttack-10

■

Printed at :

**Sangita Printers,** Cuttack-2

■

Price : **Rs. 220/-**

# ସାମାନ୍ୟ ସୂଚନା

ଏହି ଆତ୍ମଜୀବନୀ ୧୯୯୬ ମସିହାରୁ ବିଧିବଦ୍ଧ ଭାବରେ ଲେଖା ହେଲା । ପୂର୍ବରୁ ଶରତ୍ ଆକାଶର ଖଣ୍ଡ ଖଣ୍ଡ ଛିନ୍ନ ବାଦଲ ପରି ଏଥିରୁ କିଛି କିଛି ସ୍ମୃତି ଚିତ୍ର ଆକାରରେ ସାହିତ୍ୟିକ ଡଃ ଗୌରାଙ୍ଗ ଚରଣ ଦାଶଙ୍କ ସଂପାଦିତ 'ଅବବୋଧ' (ଅନୁଗୁଳ), କଥାକାର ରଘୁନାଥ ମହାପାତ୍ରଙ୍କ ସଂପାଦିତ 'ଅଧୁନା' (କଟକ), କବି ଗିରିଜା କୁମାର ବଳିୟାରସିଂହ ସଂପାଦିତ 'ରେନେସାଁ' (କଟକ) ପ୍ରଭୃତି ସାମୟିକ ପତ୍ରରେ ପ୍ରକାଶ ପାଇଥିଲା । ଏହି ଲେଖାଗୁଡ଼ିକ ବୋଧହୁଏ ମୋର କେତେକ ପାଠକଙ୍କୁ ଭଲ ଲାଗିଥିଲା । ପୂର୍ଣ୍ଣାଙ୍ଗ ଆତ୍ମଜୀବନୀଟିଏ ଲେଖିବା ପାଇଁ ସେମାନଙ୍କଠାରୁ ଅନୁରୋଧ ଆସିଲା । ବିଶେଷତଃ କବି ଗିରିଜା କୁମାର, ସାହିତ୍ୟିକ ସୁଧୀରଚନ୍ଦ୍ର ବେହୁରା ଓ ସାମ୍ବାଦିକ ଚିତ୍ତରଞ୍ଜନ ବେହେରା ଜୀବନବୀମା କଂପାନୀର ଏଜେଣ୍ଟଙ୍କ ଭଳି ମୋ ପଛରେ ଲାଗି ରହିଲେ । ଅଗତ୍ୟା ନାନା କାର୍ଯ୍ୟର ଭିଡ଼ ଭିତରେ ମୋତେ ଆତ୍ମଜୀବନୀର ଲେଖା ଚଳାଇବାକୁ ପଡ଼ିଲା । ଲେଖା ହେବା ସଂଗେ ସଂଗେ ରାଉରକେଲାରୁ ପ୍ରକାଶିତ ସୁପରିଚିତ 'ନବପତ୍ର' ସାହିତ୍ୟ-ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶ ପାଇବାରେ ଲାଗିଲା । 'ନବପତ୍ର'ର ପର ପର ଦୁଇଜଣ ସଂପାଦକ ଶ୍ରୀ ବିଷ୍ଣୁ ରାଉତରାୟ ଓ ଶ୍ରୀ ଦେବେନ୍ଦ୍ର ମହାନ୍ତି ସେଥିପାଇଁ ମୋର ବିଶେଷ ଧନ୍ୟବାଦର ପାତ୍ର । ଆତ୍ମଜୀବନୀର ମାତ୍ର ଗୋଟିଏ ପ୍ରସଙ୍ଗ ଡାକ୍ତର ଦୁର୍ଯ୍ୟୋଧନ ଦାସଙ୍କ ସଂପାଦିତ ୧୯୯୯-ପୂଜାସଂଖ୍ୟା 'ସ୍ୟମନ୍ତକ'ରେ (ଭଦ୍ରକ) ପ୍ରକାଶ ପାଇଥିଲା । ଦୁର୍ଯ୍ୟୋଧନଙ୍କୁ ମଧ୍ୟ ସେଥିପାଇଁ ସାଧୁବାଦ ଜଣାଉଛି ।

ଗ୍ରନ୍ଥର ପରିଶିଷ୍ଟରେ ମୋ ପାଖକୁ ଆସିଥିବା ଶିଷ୍ଟ ବିଶିଷ୍ଟ ବ୍ୟକ୍ତିମାନଙ୍କର ପ୍ରାୟ ଏକହଜାର ଚିଠିପତ୍ର ମଧ୍ୟରୁ କେତେକ ସନ୍ନିବେଶିତ ହୋଇଛି । ସଂଯୋଜିତ ହୋଇଛି ମଧ୍ୟ ମୋର କିଛି ଫଟୋ ଚିତ୍ର । ସେଗୁଡ଼ିକର ଚୟନ ତଥା ସଂପାଦନା କରି ଦେଇଛନ୍ତି ମୋର ପ୍ରିୟତମ ଛାତ୍ର ସାହିତ୍ୟିକ ସୁଧୀରଚନ୍ଦ୍ର ବେହୁରା । ସେଥିପାଇଁ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ଶୁଭେଚ୍ଛା ନିବେଦନ କରୁଛି ।

କଟକର ଜଣାଶୁଣା ପ୍ରକାଶନ-ସଂସ୍ଥା 'ନବଦିଗନ୍ତ' ଆଗ୍ରହର ସହିତ ଆତ୍ମଜୀବନୀଟି ପ୍ରକାଶ କରିଥିବାରୁ ସଂସ୍ଥାର ସଞ୍ଚାଳକ ଶ୍ରୀ ବିଭୁପ୍ରସାଦ ତ୍ରିପାଠୀ ତଥା ତାଙ୍କର ଭ୍ରାତା ଶକ୍ତିଙ୍କୁ ଧନ୍ୟବାଦ ଜଣାଉଛି ।

ଉତ୍କଳ ଏପାର୍ଟମେଣ୍ଟ
କଲ୍ୟାଣୀ ନଗର, କଟକ-୭୫୩୦୧୩

**କୃଷ୍ଣଚରଣ ବେହେରା**
୨୫।୭।୨୦୦୮

# ପ୍ରସଙ୍ଗ-ସୂଚୀ





ଏହା ଜଣେ ସାଧାରଣ ମଣିଷର କଥା — ଜନ୍ମସୂତ୍ରରେ ଯେ ଶୂଦ୍ର, କିନ୍ତୁ କର୍ମତନ୍ତ୍ରରେ ରୁଦ୍ର — ସାମାଜିକ ସ୍ଥିତିରେ ଯେ ଇତର, କିନ୍ତୁ ଚେଷ୍ଟାଚରିତ୍ରରେ ଐତରେୟ । କ୍ଷୁଦ୍ର ହେଲେ ହେଁ ସେ ଉର୍ଦ୍ଧ୍ୱକୁ ଉଠିବା ପାଇଁ ଉଦ୍ୟମ କରିଛି ଆର୍ଥିକ କ୍ଷେତ୍ରରେ ତଥା ପାରମାର୍ଥିକ ଦିଗରେ । ସେ କିପରି ଶମ୍ବୁକର ତପସ୍ୟା କରିଛି — କିପରି କଣ୍ଟକାକୀର୍ଣ୍ଣ ଉତ୍ତରଣର ପଥ ରକ୍ତଝରା ପାଦରେ ଅତିକ୍ରମ କରିଛି, ସେହି କାହାଣୀ ସମସ୍ତଙ୍କ ଆଗରେ ଥୋଇ ଯାଉଛି ନିଷ୍କପଟ ଭାବରେ ।

ଭଲ ମଣିଷଟିଏ ହୋଇ ଉପରକୁ ଉଠିବା ପାଇଁ ଚାହୁଁଥିବା ଯଦି କେହି ଏଥିରୁ ସୁସ୍ଥ ସୁନ୍ଦର ଜୀବନ ବଞ୍ଚିବାକୁ ଖିଅଟିଏ ପାଇଯାଏ...

# ପିଲାଦିନର ପୀଡ଼ା

ପିଲାଦିନର କେତେକ କଥା ମାନସପଟରେ ଶିଳାଲେଖ ପରି ସ୍ପଷ୍ଟ ଭାବରେ ଅଙ୍କିତ ହୋଇ ରହିଛି । ଅସ୍ପଷ୍ଟ ହୋଇ ଯାଇଛି କିଛି କଥା ପୁରୁଣା ପେନ୍‌ସିଲ୍-ଲେଖା ପରି । ବୋଉ (ମାଆ)ର ମୃତ୍ୟୁ ଝାପ୍‌ସା ଝାପ୍‌ସା ମନେ ପଡୁଛି । ସେତେବେଳେ ମୋର ବୟସ ଚାରି କି ପାଞ୍ଚ ବର୍ଷ ହୋଇଥିବ । ପରେ ଜାଣିଲି – ଏ ଦେଶର ବହୁ ନାରୀଙ୍କ ଭଳି ମୋ ବୋଉ ପ୍ରସୂତି-ଜନିତ ରୋଗରେ ମରିଥିଲା । କାଳି ବର୍ଣ୍ଣର ହେଲେ ବି ତା'ର ଚେହେରା ଥିଲା କୁଆଡ଼େ ସୁନ୍ଦର ସୁଗଠିତ । ସେ ଚାଲିଗଲା ପରେ ମୋର ଜଣେ ବିଧବା ବଡ଼ ମାଆ 'ସତ୍ୟବୋଉ' ମୋତେ କୋଳକୁ ଟେକି ନେଇଥିଲେ । ରାଞ୍ଚିରେ ଥାଆନ୍ତି ବାପା ପୀତାମ୍ବର ବେହେରା, ଓଡ଼ିଶାର କଂପ୍‌ଟ୍ରୋଲର୍ ଓ ଏକାଉଣ୍ଟାଣ୍ଟ୍ ଜେନେରାଲ୍‌ଙ୍କ ଷ୍ଟେନୋ । ସେ ବର୍ଷକୁ ଥରେ ଅଧେ ଗାଆଁକୁ ଆସନ୍ତି । ତେଣୁ ମୋର ଦାଦା ମାୟାଧର ବେହେରାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ମୁଁ ବଢ଼ିବାରେ ଲାଗିଲି ।

ପିଲାଦିନେ ଭୟଙ୍କର ବସନ୍ତ ରୋଗର ଶିକାର ହୋଇଥିବା ମନେ ପଡୁଛି । ଆମ ମଫସଲ ଗାଆଁରେ ବସନ୍ତ, ହଇଜା ଆଦି ମହାମାରୀ ପଡ଼ିଲେ, ଦଶ-କୋଡ଼ିଏ ମୁଣ୍ଡ ଗଡ଼ିଯାଆନ୍ତି । କୋକୁଆ ଭୟ । ସଞ୍ଜ ହେଲା ମାତ୍ରେ ଘରେ ଘରେ ତାଟି କବାଟ ପଡ଼ିଯାଏ । କେତେକ ଲୋକ ଖୋଳ କରତାଳ ଧରି 'ହରେ କୃଷ୍ଣ ହରେ ରାମ' ଗାଇ ଗାଇ କୀର୍ତ୍ତନ କରି ବୁଲନ୍ତି, ମହାମାରୀ ଆତଙ୍କ ବୋଧହୁଏ ଊଣା କରିବା ବିଶ୍ୱାସରେ । ଗ୍ରାମଦେବତୀ ମନ୍ଦିରରେ ମାଜଣା ହୁଏ । ଦାସୀ (କାଳିସୀ) ଲାଗେ । ତଥାପି ମହାମାରୀ ବନ୍ଦ ହୁଏ ନାହିଁ । ଏହା ହେଉଛି ଗତ ବିଂଶ ଶତାବ୍ଦୀ ଚତୁର୍ଥ ଦଶକର କଥା । ବିଦେଶୀ ଶାସନ ଚାଲିଛି । ସ୍ୱାସ୍ଥ୍ୟସେବାର ସୁବିଧା-ସୁଯୋଗ ଗାଆଁଗଣ୍ଡାରେ ନାହିଁ । ପରିମଳ ବ୍ୟବସ୍ଥା ମଧ୍ୟ ଭଲ ନୁହେଁ । ଆମ ଗାଆଁରେ ଥିଲା ଗୋଟିଏ ମାତ୍ର ବଡ଼ ପୋଖରୀ । ତହିଁରେ ଗ୍ରାମବାସୀଏ ଗାଧୁଆପାଧୁଆ କରନ୍ତି, ମଳତ୍ୟାଗ ପରେ ଶୌଚ ହୁଅନ୍ତି, ଗୋରୁଗାଈଙ୍କୁ ଗାଧୁଆ ପୋଛା କରାଯାଏ, ପୁଣି ସେହି ପୋଖରୀ ପାଣିକୁ ଖିଆପିଆ କରାହୁଏ । ଏଥିରେ ମହାମାରୀ ନ ବ୍ୟାପିବ କିପରି ?

ବସନ୍ତ ରୋଗରେ ମୋର ଖେଳସାଥି କାହ୍ନୁ ଓ ଭଗିଆ ଆଖି ମୁଦିଲେ । ମୁଁ କୌଣସି ମତେ ବର୍ତ୍ତିଗଲି, ବୋଧହୁଏ ମୋର ବଡ଼ ମା' ଓ ଦାଦାଙ୍କର ସେବାଯତ୍ନରେ ।

ରୋଗରୁ ଉଦ୍ଧାର ପାଇଲି ସିନା, କିନ୍ତୁ ଖୁବ୍ ଦୁର୍ବଳ ହୋଇ ପଡ଼ିଲି । ସାରା ଦେହରେ ବିଶେଷତଃ ମୁହଁରେ ବସନ୍ତ-ଚିହ୍ନ ରହିଗଲା । ଦେହରେ ମାଲିସ୍ କରିବା ପାଇଁ ବାପା ରାଞ୍ଚିରୁ କ୍ରିମ୍ ପାଉଡ଼ର୍ ଇତ୍ୟାଦି ପଠାଇଥିଲେ । କିନ୍ତୁ ବିଶେଷ ଫଳ ମିଳିଲା ନାହିଁ । ପରାଧୀନ ଦେଶର ମହାମାରୀ-କଳଙ୍କ ମୁଁ ଏଯାଏଁ ମୁହଁରେ ଧରି ବଞ୍ଚି ରହିଛି । ଏହି ଭୀଷଣ ମହାମାରୀଟି ବର୍ତ୍ତମାନ ଦେଶରୁ ବିଲୁପ୍ତପ୍ରାୟ ।

ଅନ୍ୟ ପିଲାଙ୍କର ମାଆମାନଙ୍କୁ ଦେଖି ମୋ ବୋଉର କଥା ବାରଂବାର ମନେ ପଡ଼େ । ଘରେ ଥୟ ଧରି ରହିପାରେ ନାହିଁ । ଖରାତରାରେ ଏଣେତେଣେ ବୁଲେଁ । ଖାଇବା ଶୋଇବାର ଠିକ୍ ଠିକଣା ନଥାଏ । ଦାଦା ଏଥିରେ ବ୍ୟସ୍ତ ହୋଇ ମୋତେ ନେଇ ମୋର ମାମୁଘରେ ଛାଡ଼ି ଦେଇ ଆସିଲେ । ତିହିଡ଼ି ପାଖ ନନ୍ଦପୁର ଗ୍ରାମରେ ମାମୁଘର । ମାମୁଙ୍କର ସେତେବେଳଯାଏଁ ପୁଅ ନ ଥିଲା, ମଲ୍ଲୀ ନାମରେ କେବଳ ସାନ ଝିଅଟିଏ । ମୁଁ ମଲ୍ଲୀ ସାଙ୍ଗରେ ଖେଳେଁ ଏବଂ ନନ୍ଦପୁର ପ୍ରାଇମେରୀ ସ୍କୁଲରେ ଯାଇ ପଢ଼େ । ମାମୁ-ମାଇଁ ମୋତେ ଖୁବ୍ ସ୍ନେହ-ଆଦର କରୁଥିଲେ ମଧ୍ୟ ମୁଁ ସେଠାରେ ବେଶି ଦିନ ରହିପାରିଲି ନାହିଁ । ବୋଧହୁଏ ବଡ଼ମା' ସତ୍ୟବୋଉର ସୂତ୍ର ମୋତେ ଟାଣିବାରେ ଲାଗିଲା । ମୁଁ କନ୍ଦାକଟା କରିବାରୁ ମାମୁ ଆଣି ମୋତେ ଘରେ ଛାଡ଼ି ଦେଇ ଗଲେ । ତା'ପରେ ଗାଆଁ ପାଖ ଆରୁହା ପ୍ରାଇମେରୀ ସ୍କୁଲରେ ପ୍ରଥମ କି ଦ୍ୱିତୀୟ ଶ୍ରେଣୀରେ ଭର୍ତ୍ତି ହେଲି । ନିଜ ଗାଆଁରେ ଗୋଟାଏ ମଡ଼େଲ୍ ଅପର୍-ପ୍ରାଇମେରୀ ସ୍କୁଲ ଥିବାବେଳେ ମୋତେ ଆରୁହା ପ୍ରାଇମେରୀ ସ୍କୁଲରେ ଭର୍ତ୍ତି କରାଯିବାର କାରଣ ହେଉଛି – ଆରୁହା ସ୍କୁଲର ଶିକ୍ଷକ ଆମର ଜଣେ ସଂପର୍କୀୟ କରୁଣାକର ବେହେରା ଆମ ଘରକୁ ଆସି ମୋତେ ଟିଉସନ୍ କଲେ । ରାଞ୍ଚିରୁ ବାପାଙ୍କର ନିର୍ଦ୍ଦେଶ ଥିଲା – ସେ ମୋତେ ଅନ୍ୟାନ୍ୟ ବିଷୟ ସହ ଇଂରେଜୀ ଶିଖେଇବେ । ମୁଁ ଅଙ୍କ ଓ ଇଂରେଜୀ ସହଜରେ ଶିଖିପାରୁ ନ ଥିଲି । ପାଠ ନ ଆସିଲେ କରୁଣାକର ମାଷ୍ଟ୍ରେ ମୋତେ ତେନ୍ତୁଳି ଛାଟରେ ପିଟାପିଟି କରୁଥିଲେ । ମୁଁ ତାଙ୍କର ମାଡ଼କୁ ଡରି ଧାନ ଅମାର ଭିତରେ, କିମ୍ବା ଖଳାର ଧାନ ବଦାଡ଼ି ଉହାଡ଼ରେ ଲୁଚି ରହୁଥିଲି । ଛାଟର ସଦ୍‌ବ୍ୟବହାର କରି ନ ପାରି କରୁଣାକର ମାଷ୍ଟ୍ରେ ନିରାଶ ହୋଇ ଫେରି ଯାଉଥିଲେ ।

ଶେଷରେ ଆମ ଗାଆଁର ଚନ୍ଦ୍ରକାଟବିନ୍ଧା ମଡ଼େଲ୍ ଅପର-ପ୍ରାଇମେରୀ ସ୍କୁଲରେ ତୃତୀୟ ଶ୍ରେଣୀରେ ଭର୍ତ୍ତି ହୋଇଗଲି । ସେଠାରେ ମଧ୍ୟ ମାଡ଼ରୁ ରକ୍ଷା ମିଳିଲା ନାହିଁ । ସ୍କୁଲରେ ଶିକ୍ଷକମାନଙ୍କ ମଧ୍ୟରେ ଥିଲେ ହେଡ୍ ପଣ୍ଡିତ ମାୟାଧର ବଳ, ସହକାରୀ ଶିକ୍ଷକ ତିନିଜଣ ବେଣୁଧର ନାୟକ, ଭାଗୀରଥି ମହାନ୍ତି ଓ ଅପର୍ତ୍ତି ଚରଣ ବଳ । ପାଠ ନ ଆସିବାରୁ ଅପର୍ତ୍ତି ବଳ ଥରେ ମୋତେ ପିଟି ଲହୁଲୁହାଣ କରି ପକାଇଥିଲେ । ଅନ୍ୟ

ଶିକ୍ଷକମାନେ ବେତ୍ର ହସ୍ତରେ ଶ୍ରେଣୀ କକ୍ଷରେ ବସୁଥିଲେ ସତ, ମାତ୍ର ବେଶି ମାର୍‌ଧର୍ କରୁ ନ ଥିଲେ । ସେତେବେଳେ ପ୍ରତ୍ୟେକ ଶ୍ରେଣୀ ପାଇଁ ଜଣେ ଜଣେ ଶିକ୍ଷକ ନିର୍ଦ୍ଦିଷ୍ଟ ଥିଲେ । ଅପର୍ତ୍ତିଚରଣ ତୃତୀୟ ଶ୍ରେଣୀ, ବେଣୁଧର ଚତୁର୍ଥ ଶ୍ରେଣୀ ଏବଂ ହେଡ୍ ପଣ୍ଡିତ ମାୟାଧର ପଞ୍ଚମ ଶ୍ରେଣୀ ଦାୟିତ୍ୱରେ ଥିଲେ । ତଳ ଶ୍ରେଣୀରେ ଭାଗୀରଥି ମହାନ୍ତି ଓ ଅନ୍ୟ ଶିକ୍ଷକ ପଢ଼ାଉଥିଲେ । ତୃତୀୟ ଶ୍ରେଣୀରୁ ପାଶ୍ କରିଗଲା ପରେ ମୋତେ ମାଡ଼ରୁ ଏକ ପ୍ରକାର ରକ୍ଷା ମିଳିଗଲା । ମୋର ଦୁଇଜଣ ସାଙ୍ଗ ଛାତ୍ର-ଛାତ୍ରୀଙ୍କ ସହ ମୁଁ ବୃତ୍ତି-ପରୀକ୍ଷାରେ ବସିଥିଲି । ବୃତ୍ତି ପାଇପାରିଲି ନାହିଁ । କିନ୍ତୁ ମୁଁ ନିହାତି ଖରାପ ଛାତ୍ର ନ ଥିଲି । ମୋର ହସ୍ତାକ୍ଷର ବେଶ୍ ଭଲ ଥିଲା । ସୁନ୍ଦର ହସ୍ତାକ୍ଷର ପାଇଁ ପ୍ରତିବର୍ଷ ସ୍କୁଲର ପୁରସ୍କାର ବିତରଣୀ ସଭାରେ ପୁରସ୍କୃତ ହେଉଥିଲି । ଆବୃତ୍ତି ପ୍ରତିଯୋଗିତାରେ ମଧ୍ୟ ପୁରସ୍କାର ପାଉଥିଲି । ଶିକ୍ଷକ ଭାଗୀରଥି ମହାନ୍ତି ଆମକୁ ସେତେବେଳେ ସ୍ୱଦେଶ ପ୍ରେମରେ ଉଦ୍‌ବୁଦ୍ଧ କରାଉଥିଲେ । ମଝିରେ ମଝିରେ ଖବରକାଗଜରୁ ବିଶ୍ୱଯୁଦ୍ଧର ଖବର ସହିତ ଭାରତର ସ୍ୱାଧୀନତା ଆନ୍ଦୋଳନ ବିଷୟ ପଢ଼ି ଶୁଣାଉଥିଲେ । ଆମେ ଛାତ୍ରମାନେ ବିଶ୍ୱଯୁଦ୍ଧ, ସ୍ୱାଧୀନତା ଆନ୍ଦୋଳନ ଆଦି ପ୍ରସଙ୍ଗରେ ଖୁବ୍ ଗୋଟାଏ ଅମଳ ଦେଇପାରୁ ନ ଥିଲୁଁ । କିନ୍ତୁ ବାଞ୍ଛାନିଧି ମହାନ୍ତି, ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଜାତୀୟତାବାଦୀ ସଂଗୀତ ଗାନ ବା ଆବୃତ୍ତି କରି ଉଦ୍‌ବୁଦ୍ଧ ହେଉଥିଲୁଁ । ମୁଁ ଆବୃତ୍ତି ପାଇଁ ମଧ୍ୟ ସ୍କୁଲ୍‌ରେ ବାରମ୍ବାର ପୁରସ୍କୃତ ହୋଇଥିଲି । ତାହା ଆମ ଶିକ୍ଷକ ଭାଗୀରଥି ମହାନ୍ତିଙ୍କ ତାଲିମ୍‌ର ଫଳ ବୋଲିବାକୁ ହେବ । ବଡ଼ ଦୁଃଖର କଥା, ଅକାଳରେ ଭାଗୀରଥି ମହାନ୍ତି ଓ ଅପର୍ତ୍ତି ଚରଣ ବଳଙ୍କର ପରଲୋକ ହୋଇଯାଇଥିଲା ।

ମାୟାଧର ବଳ ଉଚ୍ଚ ପ୍ରାଥମିକ ବିଦ୍ୟାଳୟଟିକୁ ବାସ୍ତବିକ ଆଦର୍ଶ କରି ଗଢ଼ିଥିଲେ । ସ୍କୁଲ ପାଖ କିଛି ଚାଷ ଜମିରେ ଆମେ କୋବି, ମୂଳା, ଜହ୍ନି, ଭେଣ୍ଡି ଇତ୍ୟାଦି ଫଳଫୁଲୁରିର ଚାଷ କରୁଥିଲୁଁ । ଚାଷ କାର୍ଯ୍ୟ ଶିଖିବା ସହ ଆମେ ଉତ୍ପାଦନଶୀଳ ଶ୍ରମ କରିବାରେ ଆନନ୍ଦ ପାଉଥିଲୁଁ । ଉତ୍ପାଦିତ ପନିପରିବା ସ୍କୁଲର ହଷ୍ଟେଲକୁ ବିକ୍ରି କରି ଯାହା ଟଙ୍କା ପଇସା ଆୟ କରୁଥିଲୁଁ, ତହିଁରେ କିଛି ଅଭାବୀ ଛାତ୍ରଙ୍କୁ ଅର୍ଥ ସାହାଯ୍ୟ ଦେଉଥିଲୁଁ । ସ୍କୁଲରେ ଥିଲା ରେଡ଼କ୍ରସ୍ ଓ ସ୍କାଉଟ୍ ଶାଖା । ବିଭିନ୍ନ ପ୍ରକାର କ୍ରୀଡ଼ା କସରତ୍ ମଧ୍ୟ ଚାଲିଥିଲା । ସ୍କୁଲର ଗ୍ରନ୍ଥାଗାର ସେବା ସେତେବେଳେ ଯେପରି ଚାଲିଥିଲା, ବର୍ତ୍ତମାନ ଅନେକ ହାଇସ୍କୁଲରେ ମଧ୍ୟ ତାହା ସମ୍ଭବ ହେଉ ନାହିଁ । ସ୍କୁଲର ପରୀକ୍ଷାଫଳ ଭଲ ହେଉଥିଲା । ତେଣୁ ଦୂରଦୂରାନ୍ତର ଛାତ୍ରମାନେ ଆସି ସେଠାରେ ପାଠ ପଢୁଥିଲେ ।

ଆମ ଗାଆଁ ଅର୍ଜୁନ ବିନ୍ଧା, ଭଦ୍ରକ-ଚାନ୍ଦବାଲି ସଡ଼କ କଡ଼ରେ । ବେଶ୍ ବଡ଼ ଗାଆଁଟିଏ । ବିଭିନ୍ନ ପାଟକ ଜାତିର ଜନବସତି ଭିତରେ କୁମ୍ଭାର ଜାତିର ଲୋକସଂଖ୍ୟା

ଅଧିକ । କୁମ୍ଭାର ସାହିରେ ସେତେବେଳେ ପ୍ରାୟ ପଚିଶଟି ପରିବାର ରହୁଥିଲେ । ଅଧିକାଂଶ ଦରିଦ୍ର; ହାଣ୍ଡି ଆଟିକା ଗଢ଼ି ଜୀବିକା ନିର୍ବାହ କରୁଥିଲେ । ବର୍ଷାକାଳରେ ତିନିଚାରି ମାସ ଗଢ଼ାତଢ଼ା ବନ୍ଦ ଥିଲାବେଳେ ସେମାନେ ଚାଷବାସ କାର୍ଯ୍ୟ କରୁଥିଲେ – କରୁଥିଲେ ଭାଗ ବଖରାରେ । କ୍ୱଚିତ୍ କାହାରି ନିଜସ୍ୱ ଚାଷ ଜମି ଥିଲା । ମୋ ଗୋସବାପଙ୍କ ଅମଳରୁ ଆମେ କୁଳ-ବେଉସା ଗଢ଼ାତଢ଼ା କରୁ ନ ଥିଲୁ । ଆମର ଜମିଜମା ଅଧିକ ଥିବାରୁ ଚାଷବାସ କରି ଚଳୁଥିଲୁଁ । ଗୋସବାପ ଆଦିକନ୍ଦ ବେହେରା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ପ୍ରଥମେ ଶିକ୍ଷକତା କରୁଥିଲେ । ପରେ ତାହା ଛାଡ଼ି ଦେଇ ବାଲେଶ୍ୱରସ୍ଥ ଜଣେ ବଙ୍ଗାଳୀ ଜମିଦାରଙ୍କ ସ୍ଥାନୀୟ ତହସିଲଦାର୍ ହୋଇଥିଲେ । ସାମାନ୍ୟ କିଛି ଜମିଦାରି ମଧ ଆମର ଥିଲା । ବାପା ରାଞ୍ଚିରେ ରହୁଥିବାରୁ ମୋର ଦାଦା ମାୟାଧର ବେହେରା ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରିବା ସଙ୍ଗେ ସଙ୍ଗେ ଜମିଦାରିର ଭଲ ମନ୍ଦ ତଥା ପରିବାରର ସବୁ କଥା ବୁଝାଶୁଝା କରୁଥିଲେ । ସେ ବି ଜମିବାଡ଼ି ମାପଚୁପ୍ କାର୍ଯ୍ୟ ବା ଅମିନଗିରିରେ ହାତ ପାକଳ କରିଥିଲେ । ଜମିବାଡ଼ି ମପାଚୁପା କରିବା ପାଇଁ ଆଖପାଖ ଅଞ୍ଚଳର ଲୋକେ ରୀତିମତ ଫିସ୍ ଦେଇ ତାଙ୍କୁ ଡାକି ନେଉଥିଲେ ।

ଦାଦା ଥିଲେ ଜଣେ କଳାପ୍ରେମୀ ରସିକ ବ୍ୟକ୍ତି । ରଙ୍ଗୀନ୍ କାଗଜରେ ସେ ବିଭିନ୍ନ ପ୍ରକାର ଫୁଲ, ମେଢ଼, ଫାନୁସ୍ ଆଦି ତିଆରି କରିପାରୁଥିଲେ । ମୁଁ ତାଙ୍କ ପାଖରେ ବସି ସେହି କାର୍ଯ୍ୟରେ ସହଯୋଗ କରୁଥିଲି । ଗ୍ରାମାଞ୍ଚଳରେ ବିବାହ ବ୍ରତ, ମେଳା ପର୍ବୁଆରରେ ତାହା ସବୁ ବ୍ୟବହାର କରାଯାଉଥିଲା । ସେ ମଧ ହାରମୋନିୟମ୍ ବଜାଇ ଗୀତ ଗାଇ ପାରୁଥିଲେ ଏବଂ ମୋତେ ବେଳେବେଳେ ଗୀତ ଶିଖାଉଥିଲେ । ଆମ କୁମ୍ଭାର ସାହିରେ ଗୋଟିଏ ଯାତ୍ରାଦଳ ଥିଲା । ମୋର ଜଣେ ସଂପର୍କୀୟ ଦାଦା ନିଶାକର ବେହେରା ଯାତ୍ରାଦଳର ଓସ୍ତାଦ୍ ଥିଲେ । ଆମେ କବି ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି ପ୍ରଭୃତି ନାଟ୍ୟକାରଙ୍କ ବିଭିନ୍ନ ନାଟ୍ୟକୃତିର ଅଭିନୟ କରୁଥିଲୁଁ । ମନେ ପଡ଼ୁଛି – 'ମେଘନାଦ ବଧ' (ବୈଷ୍ଣବ ପାଣି) ଓ 'କାର୍ତ୍ତବୀର୍ଯ୍ୟ ସଂହାର' (ବାଳକୃଷ୍ଣ ମହାନ୍ତି) ଆମର ଅଭିନୀତ ନାଟକଗୁଡ଼ିକ ମଧରେ ଜନପ୍ରିୟ ଥିଲା । ଯେତେବେଳେ ଆମେ ବିଭିନ୍ନ ଗାଁଆଁ ଗଣ୍ଡାକୁ ଯାତ୍ରାଭିନୟ କରିବାକୁ ଡାକରା ପାଉଥିଲୁଁ, ମୁଖ୍ୟତଃ ଏହି ନାଟକ ଯୋଡ଼ିକର ଅଭିନୟ ପ୍ରଦର୍ଶନ କରୁଥିଲୁଁ । ଆମ ସାହିର ରଜପର୍ବରେ କେବଳ ଯାତ୍ରାଭିନୟ ହେଉଥିଲା । ମୁଁ ଏହି ଯାତ୍ରାଦଳରେ ହାଇସ୍କୁଲ ଦଶମ ଶ୍ରେଣୀରେ ପଢ଼ିବାଯାଏଁ ବରାବର ଅଭିନୟ କରୁଥିଲି – ଅଭିନୟ କରୁଥିଲି ବିଶେଷତଃ ନାରୀ ଭୂମିକାରେ । ଅଭିନୟ ଆରମ୍ଭରେ ଯେଉଁ ସଖୀ ବେଶରେ ମିଳିତ ନାଚଗୀତ ହେଉଥିଲା, ତହିଁରେ ତ ଅଂଶଗ୍ରହଣ କରୁଥିଲି ! ଏହା ବ୍ୟତୀତ କେତେକ ନାଟକର ନାରୀ ଚରିତ୍ରରେ ମୋତେ ଅଭିନୟ କରିବାକୁ

ହେଉଥିଲା । ମୋ ଭଳି ଆଉ କେହି ଗୋଲଗାଲିଆ ପିଲା ସେତେବେଳେ ନ ଥିଲେ ବୋଲି ବୋଧହୁଏ ଓସ୍ତାଦ୍ ନାରୀ ଭୂମିକା ପାଇଁ ମୋତେ ବାଛୁଥିଲେ । ତିହିଡ଼ି ମାଇନର୍ ସ୍କୁଲରେ ତଥା ଦୋଳସାହି ହାଇସ୍କୁଲରେ ନାଟ୍ୟାଭିନୟ ବେଳେ ବି ମୁଁ ନାରୀ ଭୂମିକା ପାଉଥିଲି । ତିହିଡ଼ିରେ ଅଭିନୀତ ହୋଇଥିଲା ଅଶ୍ୱିନୀ କୁମାର ଘୋଷଙ୍କ 'ସେଓଜି' ଓ ରାମଚନ୍ଦ୍ର ମହାପାତ୍ରଙ୍କ 'ବିଲ୍ୱମଙ୍ଗଳ', ଏବଂ 'ଚନ୍ଦ୍ରଗୁପ୍ତ' (ବାଳକୃଷ୍ଣ କର) ଓ 'ଉତ୍କଳ ଗୌରବ' (ଅଶ୍ୱିନୀ କୁମାର ଘୋଷ) ନାଟକ ଦ୍ୱୟ ଦୋଳସାହିରେ । ମୁଁ ନାରୀ ଭୂମିକାରେ ବେଶଭୂଷା ହୋଇ କିପରି ଦିଶୁଥିଲି, କହିପାରିବି ନାହିଁ । କିନ୍ତୁ ଦର୍ପଣରେ ଲକ୍ଷ୍ୟ କରିଛି – ପାଉଡ଼ର୍‌ର ବହଳ ପ୍ରଲେପରେ ବି ମୋ ମୁହଁରେ ବସନ୍ତ ଚିହ୍ନ ଏକାବେଳେକେ ଲୁଚୁ ନ ଥିଲା । ସେତେବେଳେ ଭଦ୍ରକ ଅଞ୍ଚଳରେ ଫଟୋଗ୍ରାଫି ବିଶେଷ ପ୍ରଚଳିତ ହୋଇ ନ ଥିବାରୁ ଆମ ଅଭିନୟର କୌଣସି ଫଟୋ ଉଠିପାରି ନ ଥିଲା । ମୋର ପ୍ରଥମ ଫଟୋ ଉଠିଥିଲା ବାଲେଶ୍ୱରଠାରେ ମେଟ୍ରିକୁଲେସନ୍ ପରୀକ୍ଷା ଦେବାକୁ ଯାଇଥିଲା ବେଳେ ।

ସେହି ସମୟରେ ବାପା ରାଞ୍ଚିରୁ ଗୋଟିଏ ଗ୍ରାମଫୋନ୍ ସହ କିଛି ରେକର୍ଡ଼ ଆଣିଥିଲେ । ରେକର୍ଡ଼ ଭିତରେ ଧ୍ରୁବ ଚରିତ, କାଞ୍ଚି କାବେରୀ, କଳାପାହାଡ଼, ଶ୍ରୀମନ୍ଦିର ଆଦି ପ୍ରାୟ ଆଠଟି ନାଟିକା ଥିଲା । 'କାଞ୍ଚି କାବେରୀ' ନାଟିକାଟି ମୋତେ ଖୁବ୍ ଭଲ ଲାଗିଥିଲା ଏବଂ ମୁଁ ତାହାର ରେକର୍ଡ଼କୁ ବାରମ୍ବାର ବଜାଇ ଶୁଣୁଥିଲି । ତହିଁରେ ଅନୁପ୍ରାଣିତ ହୋଇ ମୁଁ ଗୋଟାଏ 'କାଞ୍ଚି କାବେରୀ' ନାଟକ ଲେଖି ପକାଇଲି । କେତେକ ସାଙ୍ଗପିଲାଙ୍କୁ ଘେନି ଆମ ଖଳାବାଡ଼ିରେ ତାହାର ଅଭିନୟ ମଧ କରାଇଲି । ଅନୁକରଣ ହେଲେ ବି ଲେଖକ ଭାବରେ ତାହାହିଁ ମୋର ଖଡ଼ିଛୁଆଁ । ଏହା ସଂପର୍କରେ ମୁଁ ଅନ୍ୟତ୍ର ଉଲ୍ଲେଖ କରିଛି ।

୧୯୩୯ରୁ ୪୫ ମସିହା ଭିତରେ ଭଦ୍ରକ ଅଞ୍ଚଳରେ ବନ୍ୟା ଓ ମରୁଡ଼ି ଯୋଗୁ ଫସଲ ନଷ୍ଟ ହୋଇଯାଇଥିଲା । ପୁଣି ବିଶ୍ୱଯୁଦ୍ଧ ଚାଲିଥିବାରୁ ସୈନ୍ୟବାହିନୀ ପାଇଁ ଧାନ ଚାଉଳ ବାହାରକୁ ରପ୍ତାନି ହୋଇ ଯାଉଥିଲା । ଏକ ପ୍ରକାର ଦୁର୍ଭିକ୍ଷ ଅବସ୍ଥା । କିଛି ଲୋକ ଗାଆଁ ଗଣ୍ଡା ଛାଡ଼ି କଲିକତା-କାଳିମାଟି ପଳାଇଗଲେ । ଅର୍ଜୁନବିନ୍ଧା ଗ୍ରାମର ବହୁ ଲୋକ ଧାନ ପାଇଁ ଆସି ଆମ ଦାଣ୍ଡରେ ହାଜର । ଦୁଇଟି ବଡ଼ ବଡ଼ ଅମାରରେ ଆମର କିଛି ଧାନ ମହଜୁଦ୍ ଥିଲା । ଦାଦା ସମସ୍ତଙ୍କୁ କିଛି କିଛି ଧାନ କରଜ ଆକାରରେ ଦେଇଦେଲେ ମୁଚାଲିକା ରଖି । ରାଞ୍ଚିକୁ ସେ ପତ୍ର ଲେଖି ବାପାଙ୍କୁ ଏ ବିଷୟ ଜଣାଇବାରୁ ବାପା ଉତ୍ତର ଦେଇଥିଲେ – ନିଜ ପରିବାରର ଗୁଜୁରାଣ ଲାଗି ଧାନ ରଖି ବାକିତକ କରଜ ଦେଇଦିଅ । ଲୋକେ ଆଗ ବଞ୍ଚି ଯାଆନ୍ତୁ । ମୋର ମନେ ଅଛି – ଆମ ଦାଣ୍ଡରେ ରାତିଅଧ ପର୍ଯ୍ୟନ୍ତ ଜଣେ ମୂଲିଆ ଲୋକଙ୍କୁ ଧାନ ଗଉଣୀରେ ମାପି କରି ଦେଉଥାଏ,

ଆଉ ମୁଁ ଗୋଟାଏ ଖାତାରେ କରଜ ନେଉଥିବା ଲୋକଙ୍କ ନାମଧାମ ଲେଖି ସେମାନଙ୍କର ଦସ୍ତଖତ ବା ଟିପଚିହ୍ନ ନେଉଥାଏ । କିଛି ଲୋକ ମହରଗ କାଳରୁ ବର୍ତ୍ତିଗଲେ । ମାତ୍ର କିଛି ପରିମାଣରେ ଆମର କରଜ ବୁଡ଼ିଗଲା, ଆଦାୟ ହୋଇପାରିଲା ନାହିଁ ।

ସାଧମତେ ଆମ ପରିବାର କିଛି କିଛି ଲୋକହିତକର କାର୍ଯ୍ୟ କରୁଥିଲା । ମନେପଡୁଛି — ପଣାସଂକ୍ରାନ୍ତି (ମହାବିଷୁବ ସଂକ୍ରାନ୍ତି)ଠାରୁ ବୈଶାଖ ଓ ଜ୍ୟେଷ୍ଠ ଦୁଇ ଖରାମାସ କାଳ ଆମେ ଭଦ୍ରକ-ଚାନ୍ଦବାଲି ରାସ୍ତାକଡ଼ରେ ପ୍ରତିବର୍ଷ ଜଳଛତ୍ର ଦେଉଥିଲୁ । ଆମ ଦ୍ୱାରା ନିଯୁକ୍ତ ଜଣେ ଲୋକ ଦୁଇଟା ବଡ଼ ବଡ଼ ହାଣ୍ଡିରେ ପିଇବା ପାଣି ଘେନି ବସି ରହୁଥିଲା ସକାଳେ ଖରା ଉଠିବାଠାରୁ ଉପରଓଳି ଖରା ନଇଁବା ପର୍ଯ୍ୟନ୍ତ । ତୃଷାର୍ତ୍ତ ବାଟୋଇମାନେ ସେଠାରୁ ପାଣି ପିଉଥିଲେ । ତାହା ଖାଲି ଥଣ୍ଡା ପାଣି ନ ଥିଲା; ଗୁଡ଼ ଗୋଲମରିଚ ଓ ପାଚିଲା ବେଲ ମିଶାଇ ଏକପ୍ରକାର ପଣା ପ୍ରସ୍ତୁତ ହେଉଥିଲା । ସେହି ପଣା ବେଶ୍ ତୃପ୍ତିକାରକ ହେଉଥିଲା ଶୋଷିଲା ଲୋକଙ୍କ ପାଇଁ । କିଛିଦିନ ପରେ ସେହି ରାସ୍ତାକଡ଼ରେ ଆମେ ଗୋଟାଏ ଛୋଟ ପୋଖରୀ ଖୋଳାଇ ଦେଲୁଁ । ସେହି ପୋଖରୀ କୂଳରେ ଭଦ୍ରକ-ଚାନ୍ଦବାଲି ରାସ୍ତାକଡ଼ରେ ବର୍ତ୍ତମାନ ଏବେ 'ବିନ୍ଧାବଜାର' ଗଢ଼ି ଉଠିଛି । ପୋଖରୀ ଖୋଳା ହେଲା ପରେ ଆଉ ଜଳଛତ୍ର ଦେବାର ଆବଶ୍ୟକତା ରହିଲା ନାହିଁ । ଜଳଛତ୍ର ପରି ପଣାସଂକ୍ରାନ୍ତି ତିଥିରେ ଆମେ ମଧ୍ୟ ଏକ ଅନ୍ନଛତ୍ର ଦେଉଥିଲୁଁ । ଗ୍ରାମର ବୈଷ୍ଣବ ସାହିରେ ଖନ୍ଦା ଲାଗୁଥିଲା । ଶହ ଶହ ଲୋକ ଆସି ଭାତ ଡାଲି ତରକାରୀ ଖାଉଥିଲେ । ଜଳଛତ୍ର ପରି ଅନ୍ନଛତ୍ର ସେତେବେଳେ ଏକ ଧର୍ମକାର୍ଯ୍ୟ ବୋଲି ବିବେଚିତ ହେଉଥିଲା । ଅନ୍ନଛତ୍ରର ଗୋଟିଏ ଘଟଣା ମୁଁ ଆଦୌ ପସନ୍ଦ କରୁ ନ ଥିଲି । ବ୍ରାହ୍ମଣ ଓ ବୈଷ୍ଣବମାନେ ପଙ୍ଗତରେ ଆଗେ ଖାଉଥିଲେ । ସେମାନେ ଛାଡ଼ି ଯାଉଥିବା ଅଇଁଠାପତ୍ରରୁ ଟିକିଏ ଟିକିଏ ଅଇଁଠା ସଂଗ୍ରହ କରି ଆମ ପରିବାର ଲୋକଙ୍କୁ ଖାଇବା ପାଇଁ ଦିଆଯାଉଥିଲା । ପରିବାରର ସମସ୍ତେ ତାହା ପ୍ରସାଦ ପରି ଖାଉଥିଲେ ମଧ୍ୟ ମୁଁ ତାହା ଗ୍ରହଣ କରୁ ନ ଥିଲି; ଘୃଣାରେ ନାକ ଟେକୁଥିଲି । ସେଥିପାଇଁ ଘରଲୋକେ ମୋ ଉପରେ ବେଶ୍ ବେଜାର ହେଉଥିଲେ ।

ଆମ ଗାଁର ପାଟକ ଜାତି ଓ ତଥାକଥିତ ଉଚ୍ଚ ଜାତିର ଲୋକଙ୍କ ମଧ୍ୟରେ ବରାବର ବିବାଦ ଲାଗି ରହିଥାଏ । ବିଶେଷତଃ କୁମ୍ଭାର ସାହି ସହିତ ଚଷା-ଖଣ୍ଡାୟତଙ୍କର ରେଷାରେଷି ଚାଲିଥିଲା । ଏହାର କାରଣ ଥିଲା ଆମେ ଏକତାବଦ୍ଧ ହୋଇ ରହିଥିଲୁଁ ଏବଂ ତାଙ୍କ କଥାରେ ଚାଲୁ ନ ଥିଲୁଁ । ପୁଅ କଳି, ଝିଅ କଳିଠାରୁ ଆରମ୍ଭ କରି ବଡ଼ ବଡ଼ ସାହି-ବିବାଦ ଯାଏଁ ଆମେ ନିଜର ସୁବିଧା ଅନୁଯାୟୀ ବିଚାର କରୁଥିଲୁଁ । ଆମ ସାହିରେ ରଜ ପର୍ବରେ 'ସପ୍ତା' ବସୁଥିଲା, ସେମାନେ ମଧ୍ୟ 'ସପ୍ତା' ବସାଉଥିଲେ । ସପ୍ତାହେ

କାଳ ଜଗନ୍ନାଥ-ବଳଭଦ୍ର-ସୁଭଦ୍ରା ପୂଜା ପାଉଥିଲେ ଏବଂ ଭାଗବତ ପାରାୟଣ ହେଉଥିଲା । ଉଦ୍‌ଯାପନ ତିଥିରେ ତିନି ଠାକୁରେ ଗାଆଁ ଭିତରେ ପଟୁଆର କରି ଯାଉଥିଲା ବେଳେ ଦୁଇ ଗୋଷ୍ଠୀ ମଧ୍ୟରେ ଝଗଡ଼ା, ଏପରିକି ବେଳେବେଳେ ମାର୍‌ପିଟ୍ ଲାଗିଯାଉଥିଲା । ଗାଆଁର ଜମିଦାର ଥିଲେ ସେହି ତଥାକଥିତ ଉଚ୍ଚ ଜାତିର । ଚଷା-ଖଣ୍ଡାୟତଙ୍କୁ ସାଙ୍ଗରେ ଘେନି ସେ ଆମ ଉପରେ ତଥା ଅନ୍ୟାନ୍ୟ ପ୍ରଜାଙ୍କ ଉପରେ ଶୋଷଣ କାର୍ଯ୍ୟ ଚଳାଇଥିଲେ । ଜମିଦାର ବହୁ ସମୟରେ ଗାଆଁରେ ରହୁ ନ ଥିବାରୁ ତାଙ୍କର କର୍ମଚାରୀମାନେ ନାନା ପ୍ରକାର ଅନ୍ୟାୟ ଅତ୍ୟାଚାର କରୁଥିଲେ । ଏପରି କି ପାଟକ ଜାତିର ଝିଅବୋହୂଙ୍କୁ କଚେରି ଭିତରକୁ ନେଇ ସେମାନଙ୍କର ଇଜ୍ଜତ୍ ଲୁଟୁଥିଲେ । ଜମିଦାରୀ ଉଚ୍ଛେଦ ପରେ ଜମିଦାର ସିନା ଗଲେ, କିନ୍ତୁ ତାଙ୍କର ଚଣ୍ଡୀଚାମୁଣ୍ଡା କର୍ମଚାରୀମାନେ କଚେରିରେ ରହି କିଛିଦିନ ଏହି ଅନ୍ୟାୟ ଅତ୍ୟାଚାର ବଜାୟ ରଖିଲେ । ମୁଁ ଏହାର ଖୋଲାଖୋଲି ପ୍ରତିବାଦ କଲି ଏବଂ ଗାଆଁ ଲୋକଙ୍କୁ ବିଶେଷ କରି ପାଟକ ଜାତିର ଲୋକମାନଙ୍କୁ ଏହା ଜଣାଇ ସେମାନଙ୍କ ଆଖି ଖୋଲିବାକୁ ଚେଷ୍ଟା ଚଳାଇଲି । ଫଳରେ ମୁଁ ଜମିଦାର, ତାଙ୍କର କର୍ମଚାରୀ ଦଳ ତଥା ତାଙ୍କର ଅନୁଗାମୀ ଚଷା-ଖଣ୍ଡାୟତଙ୍କର ଶତ୍ରୁ ହୋଇଗଲି । କେବଳ ମୋ ପ୍ରତି ନୁହେଁ, ଆମ କୁମ୍ଭାର ସାହି ପ୍ରତି ସେମାନଙ୍କର ରାଗରୋଷ କୁହୁଳିବାରେ ଲାଗିଥିଲା । ସେମାନଙ୍କ ମଧ୍ୟରୁ ଅନେକେ ଆମକୁ କୁମ୍ଭାର ବୋଲି ଏବଂ ମାଟି କାଦୁଅ ବାଲି ପାଉଁଶର କାରବାର କରୁଛୁଁ ବୋଲି ନାକ ଟେକୁଥିଲେ । ଅବଶ୍ୟ, ଏବେ ଷାଠିଏ ସତୁରୀ ବର୍ଷ ପରେ ପରିସ୍ଥିତିର ଟିକିଏ ପରିବର୍ତ୍ତନ ହୋଇଛି । ଉଭୟ ପକ୍ଷ ଭାଇଚାରା ବଜାୟ ରଖି ଚଳୁଛୁଁ ।

ବର୍ତ୍ତମାନ ଗାଆଁରେ ଜାତିଭେଦ ବହୁ ପରିମାଣରେ ଶିଥିଳ ହୋଇଯାଇଛି । ମୋର ପିଲାଦିନେ ଜାତି-ଜାତି ଭିତରେ ଭେଦଭାବ ତୀବ୍ର ଥିଲା । କେବଳ ଆମ ପରିବାର ଲୋକେ ଜାତିଭେଦ ମାନୁ ନ ଥିଲେ । ତାହାର ଏକ ବଡ଼ କାରଣ ହେଉଛି — ମୋର ଦାଦା ଓ ଖୁଡ଼ୀ ମହିମା (ଅଲେଖ) ଧର୍ମାବଲମ୍ବୀ ଥିଲେ । ଖୁଡ଼ୀ ଗେରୁଆ ରଙ୍ଗର ଶାଢ଼ୀ ପିନ୍ଧୁ ନ ଥିଲେ ହେଁ ଦାଦା ବରାବର ମହିମା ଧର୍ମର ସନ୍ତକ ରୂପେ ଗେରୁଆ ଧୋତି ଓ କୁରୁତା ବ୍ୟବହାର କରୁଥିଲେ । ମଝିରେ ମଝିରେ ସେମାନେ ଢେଙ୍କାନାଳସ୍ଥ ମହିମା ଧର୍ମର ଯୋରନ୍ଦା ଗାଦୀକୁ ଯାଉଥିଲେ । ପିଲାଦିନେ ମୁଁ କେତେ ଥର ସେମାନଙ୍କ ସହିତ ଯୋରନ୍ଦା ଗାଦୀକୁ ଯାଇଛି । ଭଦ୍ରକରୁ ଜେନାପୁର ପର୍ଯ୍ୟନ୍ତ ରେଳଗାଡ଼ିରେ ଯାଇ ସେଠାରୁ ବ୍ରାହ୍ମଣୀ ନଦୀ କୂଳେକୂଳେ କବାଟବନ୍ଧ ଦେଇ ପାଦଚଲା ରାସ୍ତାରେ ଯୋରନ୍ଦାକୁ ଯାଉଥିଲୁଁ । ଗାଆଁ ମୁଣ୍ଡରେ ଅଲେଖ ଟୁଙ୍ଗୀ ପାଇଁ ବକଟେ ଜମି ଦାଦା ଦାନ କରିଥିଲେ । ଗାଆଁର ହାଇସ୍କୁଲ ପଛରେ ସେହି ଅଲେଖ ଟୁଙ୍ଗୀ ବର୍ତ୍ତମାନ ସୁଦ୍ଧା ରହିଛି ଏବଂ ସେଠାରେ

କେତେଜଣ ମାତାଜୀ ରହୁଛନ୍ତି । ପ୍ରତି ପୂର୍ଣ୍ଣିମା ତିଥିରେ ସେପରେ ଖଞ୍ଜଣି ବାଦ୍ୟ ସହ ଭଜନ କୀର୍ତ୍ତନ କରାଯିବା ସଙ୍ଗେ ସଙ୍ଗେ ବାଲଭୋଜନ ଅନୁଷ୍ଠିତ ହୋଇଥାଏ । କେତେଥର ମୁଁ ସେହି ବାଲଭୋଜନରେ ବସି କ୍ଷୀରି ଖେଚୁଡ଼ି ଖାଇଛି । ମହିମା ପନ୍ଥା ଜାତିଧର୍ମ-ନିରପେକ୍ଷ ଥିବାରୁ ଆମ ଘରେ ଜାତିଭେଦ କିମ୍ବା ଛୁଆଁ-ଅଛୁଆଁ ଭାବ ନ ଥିଲା ।

ଆମ ଘର କଡ଼ରେ କେତୋଟି ଅନୁସୂଚିତ ଜାତିର (ହାଡ଼ୀ) ପରିବାର ବସବାସ କରି ରହିଥିଲେ । ସେହି ପରିବାରର କେତେକ ଲୋକ ବିବାହ ମଉଛବ ଓ ବିଭିନ୍ନ ପର୍ବପର୍ବାଣୀରେ ଢୋଲ ବଜାଇ କିମ୍ବା ମଲା ଗୋରୁଗାଈଙ୍କ ଚମଡ଼ା ଛାଲି ତାହା ବିକ୍ରି କରି ପେଟ ପୋଷୁଥିଲେ । ଅଧିକାଂଶ ସମୟରେ ସେମାନେ ତାଡ଼ି ପିଇ ମାତାଲ ଅବସ୍ଥାରେ ରହୁଥିଲେ । ତାଡ଼ି ନ ପିଇବାକୁ ମୁଁ ସେମାନଙ୍କୁ କେତେ ବୁଝାଇଛି । କିନ୍ତୁ ସେମାନେ ମୋ କଥା ଶୁଣିବେ କାହିଁକି ? ଆଉ କେତେକ ଲୋକ କଲିକତା ବଙ୍ଗାଳୀ ବାଡ଼ିରେ ପରିଚାରକ ରୂପେ କିମ୍ବା ବିଭିନ୍ନ କଂପାନୀରେ ଝାଡୁଦାର ଭାବରେ କାର୍ଯ୍ୟ କରୁଥିଲେ । ଗାଆଁରୁ ସେମାନଙ୍କ ପାଖକୁ ବରାବର ଚିଠିପତ୍ର ଲେଖିବା ପାଇଁ ପଡୁଥିଲା । ମୁଁ ପାଠପଢୁଆ ପିଲା ଥିବାରୁ ସେହି ଚିଠିପତ୍ର ଲେଖିବାକୁ ମୋ ପାଖକୁ ଡାକରା ଆସୁଥିଲା । ସେମାନଙ୍କ ଦାଣ୍ଡପିଣ୍ଡାରେ ବସି ଆମ ପରିବାର ସହିତ ସଂପର୍କ ଯୋଡ଼ିଥିବା ମାଆ-ମାଉସୀମାନେ ମୋତେ ନିଜ ନିଜର ବକ୍ତବ୍ୟ କହୁଥିଲେ, ମୁଁ ତାହା ଚିଠିରେ ଲେଖୁଥିଲି । ଥରେ ସେହିପରି ଏକ ଚିଠି ଲେଖୁଥିବାବେଳେ ମୁଁ ଜଣେ ହାଡ଼ୀ ଘରୁ ପାଣି ମଗାଇ ପିଇଲି । ଘଟଣାଟା କାହା ଦୃଷ୍ଟିରେ ପଡ଼ିଗଲା କେଜାଣି, ତାହା ଆମ କୁମ୍ଭାର ସାହିର ମୁଖିଆ ବେହେରାଙ୍କ କାନରେ ଆସି ବାଜିଗଲା । ମୁଁ ଯେପରି ମଣିଷ ମାରିବା ଭଳି ମହାପାତକଟାଏ କରି ପକାଇଛି ! ସଞ୍ଜବେଳେ ଆମ ଗାଆଁ ଦାଣ୍ଡରେ ମୁଖିଆ କାଳିନ୍ଦୀ ବେହେରାଙ୍କ ଡାକରାରେ ଜାତିଆଣ ସଭାଟାଏ ବସିଲା । ଗୋଟାଏ ହାଡ଼ୀ ଘରେ ପାଣି ପିଇଲି କାହିଁକି ବୋଲି ମୋତେ ପଚରା ଗଲା । ମୁଁ ଫାଙ୍କି ମାରିଲି, କହିଲି — ମୁଁ କିଛି ଖରାପ କାର୍ଯ୍ୟ କରି ନାହିଁ । କୁମ୍ଭାର ଓ ହାଡ଼ୀ ମଧ୍ୟରେ ପାର୍ଥକ୍ୟଟା କେତେ ? ମୋର ଦାଦା ମୋତେ ସମର୍ଥନ କଲେ । ମୁଁ ଜଣେ ପାଠ ପଢୁଆ ପିଲା ଏବଂ ଆମେ ଟିକିଏ ଚଳିଲାବାଲା ବଡ଼ ଲୋକ ବୋଲି କଥାଟା ସେଦିନ ଫସର ଫାଟିଗଲ ।

ପିଲାଦିନ ମୋର ଭଲରେ କଟି ନଥିଲା । ବାପା ଦୂରରେ; ମାଆଛେଉଣ୍ଡ ହୋଇ ମୁଁ ରହିଥିଲି । ଖୁଡ଼ୀଙ୍କର ଗୁଡ଼ାଏ ପିଲାଛୁଆ ଥିବାରୁ ମୋ ପ୍ରତି ସେ ବିଶେଷ ଧ୍ୟାନ ଦେଇପାରୁ ନ ଥିଲେ । ଏକମାତ୍ର ବଡ଼ମା' ସତ୍ୟବୋଉ ମୋ ପାଇଁ ଥିଲେ ସ୍ନେହ ଆଦରର ନିର୍ଝର । ତିହିଡ଼ି ମାଇନର୍ ସ୍କୁଲ ହଷ୍ଟେଲରେ ରହି ପଢ଼ିବାକୁ ଯିବା ପର୍ଯ୍ୟନ୍ତ ମୁଁ ସେହି ନିର୍ଝର ଜଳରେ ସିକ୍ତ ହେଉଥିଲି । ସେ ଅଳ୍ପ କିଛି ପାଠ ପଢ଼ିଥିଲେ । ମୋତେ ମଝିରେ

ମଝିରେ ବଉଳା ଗାଇ ଗୀତ ଓ ଗୀତ ଗୋବିନ୍ଦଚନ୍ଦ୍ର ଗାଇ ଶୁଣାଉଥିଲେ । ମୁଁ କାରୁଣ୍ୟ ଓ ଦୟା ଭାବରେ ଛଡ଼ସଡ଼ ହୋଇ ଯାଉଥିଲି ।

ମୋର ଦାଦାଙ୍କଠାରୁ ତଥା ଗ୍ରାମର ଆଉ ଆଉ ପୁରୁଖା ଲୋକଙ୍କଠାରୁ ଆମର ବଂଶଲତା ବିଷୟରେ ଯାହା ଜାଣିଛି, ତାହା ଶେଷରେ ଉଲ୍ଲେଖ କରୁଛି । ଜଣେ ଭାଗ୍ୟଧର ବେହେରାଙ୍କ ସମୟରୁ ଆମ ପରିବାରର ଭାଗ୍ୟୋଦୟ ହୋଇଛି । ତାଙ୍କର ଥିଲେ ପାଞ୍ଚଟି ପୁଅ । ତୃତୀୟ ପୁତ୍ର ଆଦିକନ୍ଦ ବେହେରା ।




## ପାଠ-ଶାଠ ଶିକ୍ଷା

ବର୍ତ୍ତମାନ ଭଦ୍ରକ ଜିଲ୍ଲାର ତିହିଡ଼ିଠାରେ ଯେଉଁ ଦୁଇ ବର୍ଷ ମାଇନର ପଢ଼ିଲି, ସେହି ସମୟରେ ମୋତେ ସ୍କୁଲ ହଷ୍ଟେଲରେ ରହିବାକୁ ପଡ଼ିଲା । ରାଞ୍ଚିରୁ ବାପା ପ୍ରତି ମାସରେ ଆଠ ଦଶ ଟଙ୍କା ମନିଅର୍ଡ଼ର କରି ପଠାଇ ଦେଉଥିଲେ । ଘରୁ ଆସୁଥିଲା ଚାଉଳ ଓ ଚୁଡ଼ା । ସେତେବେଳେ ମେସ୍ ଖର୍ଚ୍ଚ ବାବଦ କିଛି ଚାଉଳ ଓ ଦୁଇ ତିନି ଟଙ୍କା ମାସକୁ ମାସ ଦେବା ପାଇଁ ପଡୁଥିଲା । ପନିପରିବା, ଡାଲି ତେଲ ଆଦି ଶସ୍ତାରେ ମିଳୁଥିଲା । ପ୍ରତି ସୋମବାର ଓ ଶୁକ୍ରବାର ତିହିଡ଼ିଠାରେ ଗୋଟାଏ ବଡ଼ ହାଟ ବସେ ।

'ଖାଙ୍କୀ ହାଟ' ନାମରେ ତାହା ସେ ଅଞ୍ଚଳରେ ପ୍ରସିଦ୍ଧ । ପ୍ରତି ହାଟପାଳିକୁ ମୋ ମାମୁଁ ହାଣ୍ଡି କୁଣ୍ଡି ବିକିବା ପାଇଁ ଆସନ୍ତି । ମିଠେଇ ଖାଇବା ଲୋଭରେ ମୁଁ ମାମୁଁଙ୍କୁ ଯାଇ ସାକ୍ଷାତ କରେ । ମାମୁଁ ତ ମୋତେ ମିଠେଇ ଖୁଆନ୍ତି, ତା' ସହିତ ଆଠଣା ଟଙ୍କେ ମୋ ପକେଟ ଖର୍ଚ୍ଚ ପାଇଁ ଦେଇ ଯାଆନ୍ତି । ପଇସାପତ୍ରର ଅଭାବ ନ ଥିଲା । ବାପା ଦାଦାଙ୍କ ଭଳି ଅଭିଭାବକମାନଙ୍କର ନଜରଠାରୁ ଦୂରରେ ରହି ମୁଁ ଟିକିଏ ବେପରୁଆ ଓ ବଦଖର୍ଚ୍ଚୀ ହୋଇ ଉଠିଲି । ସାଙ୍ଗ ସାଥୀଙ୍କ ମେଳରେ ଲୁଚାଇ ବିଡ଼ି ଟାଣିଲି; ବଜାରରେ ଚା' ଜଳଖିଆ ଖାଇଲି ଓ ଖୁଆଇଲି । କ୍ରମେ ବିଳାସବ୍ୟସନ ଆଡ଼କୁ ମନ ଢଳିଗଲା; ଭଲ ସାବୁନ ଓ ବାସନା ତେଲ ଲଗାଇଲି । କଥାଟା ବୋଧହୁଏ ପ୍ରଥମେ ମାମୁଁ ଜାଣପାରିଲେ । ତାଙ୍କ ଜରିଆରେ ଖବରଟା ଯାଇ ପହଞ୍ଚିଗଲା ଦାଦାଙ୍କ କାନରେ । ସେ ହଠାତ୍ ଦିନେ ଗାଁରୁ ଆସି ପହଞ୍ଚିଗଲେ, ମୋ ଉପରେ ବଡ଼ ବିରକ୍ତ ହୋଇ କହିଲେ – ତୋର ଶ୍ୱାସ ରୋଗ ଅଛି, ବିଡ଼ି ଧୂଆଁରେ ରୋଗ ବଢ଼ିଯିବ, ସାବଧାନ ! ତୁ ଯଦି କଥା ନ ମାନୁ, ଭାଇଙ୍କି (ଅର୍ଥାତ୍ ମୋର ବାପାଙ୍କୁ) ଚିଠି ଲେଖି ଜଣାଇ ଦେବି, ତୋ ପାଖକୁ କମ୍ କରି ଟଙ୍କା ପଠେଇବେ ।

ଦାଦା, ବାପାଙ୍କୁ ଚିଠି ଲେଖିଲେ କି ନାହିଁ, ଜାଣେ ନା । କିନ୍ତୁ ମୋ ପାଖକୁ ବାପା ପୂର୍ବଭଳି ନିୟମିତ ଟଙ୍କା ପଠାଇବାରେ ଲାଗିଲେ । ମାମୁଁ ମଧ୍ୟ ସେହିପରି ହାଟପାଳିକି ହାଟପାଳି ମୋର ହାତ ଚିକ୍‌କଣ କରିବାରେ ଲାଗିଥିଲେ । ଦାଦାଙ୍କର କଡ଼ା ତାଗିଦ୍ ସତ୍ତ୍ୱେ ମୋର ବେପରୁଆ ବଦଖର୍ଚ୍ଚୀ ପଣ ବଦଳିଲା ନାହିଁ; ବରଂ ବଢ଼ିବାରେ ଲାଗିଲା । ଏବେ ଏଇ ପରିଣତ ବୟସରେ ସେ କଥା ମନେ ପଡ଼ିଲେ ଭାବୁଛି – ମଣିଷ ଜୀବନରେ କିଶୋର ଓ ଯୌବନର ସନ୍ଧିକାଳ ଏକ ବିଷମ ସମୟ, ଯେତେବେଳେ ଅଭିଭାବକ ବା ଗୁରୁ ଗୁରୁଜନଙ୍କ କଥା ନ ମାନିବାରେ ଏକ ପ୍ରକାର ପଡିଆରା ଥାଏ – ସେମାନଙ୍କ ଉପଦେଶ ବା ଅନୁଶାସନକୁ ବେଖାତିର୍ କରିବାରେ ଏକ ପ୍ରକାର ବୀରତ୍ୱ ପ୍ରଦର୍ଶନର ଉଲ୍ଲାସ ମିଳିଥାଏ । ଅଭିଭାବକ କହିଲେ – ବେଶି ସମୟ ଶୋଇ ଅଳସୁଆ ହୁଅନା ! ଆମେ ବେଶି ସମୟ ଶୋଇ ତାଙ୍କ କଥାକୁ ବେଖାତିର୍ କରିବାରେ ଆନନ୍ଦ ପାଇଲୁ । ଗୁରୁଜନ ଉପଦେଶ ଦେଲେ – ବଦମାସ, ବାଳୁଙ୍ଗା ପିଲାଙ୍କର ସାଙ୍ଗ ହୁଅନା ! ଆମେ ସେହିପରି ବାଳୁଙ୍ଗା ପିଲାଙ୍କୁ ସାଙ୍ଗସାଥୀ କରି ଏ ଉପଦେଶ ହସି ଉଡ଼ାଇ ଦେବାରେ ପଡିଆରା ଦେଖାଇଲୁ । ଅଭିଭାବକ ବା ଗୁରୁଜନଙ୍କୁ ଲୁଚାଇ କିଛି ପ୍ରେୟ ଓ ଗର୍ହିତ କାର୍ଯ୍ୟ କରିବାରେ ଗୌରବ ବୋଧ କଲୁ । ଏହାଦ୍ୱାରା ନିଜର ଯେ କ୍ଷତି ହେଉଛି, ତାହା ସେତେବେଳେ ହୃଦୟଙ୍ଗମ ହୋଇ ନ ଥିଲା । ହାଇସ୍କୁଲ ତଥା କଲେଜରେ ପ୍ରଥମ କେତେ ବର୍ଷର ଛାତ୍ର-ଜୀବନ ମୋର ଏହିପରି ଟିକିଏ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା ।

ତିହିଡ଼ି ମାଇନର ସ୍କୁଲରୁ ଯାଇ ମୁଁ ସଦ୍ୟ ପ୍ରତିଷ୍ଠିତ ଦୋଳସାହି ରାମନାରାୟଣ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲି । ସେତେବେଳେ ଚାନ୍ଦବାଲିଠାରୁ ଭଦ୍ରକ ମଧ୍ୟରେ ଗୋଟିଏ ମାତ୍ର ହାଇସ୍କୁଲ – ଭଦ୍ରକ ହାଇସ୍କୁଲ । ଗହମ ଗୋଟି ଗଣତା ଭଳି ମଧ ମାଇନର ସ୍କୁଲର ସଂଖ୍ୟା । ଉଚ୍ଚଶିକ୍ଷା ପାଇଁ ତ କଲେଜ ଆଦୌ ନ ଥିଲା । ଭଦ୍ରକ ହାଇସ୍କୁଲ ବା ବାଲେଶ୍ୱର ଜିଲ୍ଲା ସ୍କୁଲରେ ମୋର ପଢ଼ିବାର ପ୍ରଶ୍ନ ଉଠିଥିଲା । ମାତ୍ର ଆମର ନିମ୍ନ ମଧ୍ୟବିତ୍ତ ପରିବାରର ଆର୍ଥିକ ସ୍ଥିତି ଦୃଷ୍ଟିରୁ ଦୋଳସାହି ହାଇସ୍କୁଲକୁ ପସନ୍ଦ କରାଗଲା । ଦୋଳସାହିଠାରେ ବହୁ ପୂର୍ବରୁ ଗୋଟିଏ ମାଇନର ସ୍କୁଲ ଥିଲା; ମୋର ବାପା ସେହି ସ୍କୁଲରେ ପାଠ ପଢ଼ିଥିଲେ । ପୁଣି ଦୋଳସାହିଠାରୁ ଦୁଇ-ତିନି କିଲୋମିଟର ଦୂର ନନ୍ଦପୁର ଗ୍ରାମରେ ସେ ବିବାହ କରିଥିଲେ । ଅର୍ଥାତ୍ ନନ୍ଦପୁର ଥିଲା ମୋର ମାମୁଁଘର ଗାଁ । ତେଣୁ ସେ ଅଞ୍ଚଳ ପ୍ରତି ବାପାଙ୍କର ବୋଧହୁଏ ଗୋଟାଏ ଆବେଗଗତ ଆକର୍ଷଣ ରହିଥିଲା । ଦୋଳସାହି ହାଇସ୍କୁଲରେ ମୋର ପାଠପଢ଼ାକୁ ସେଥିପାଇଁ ସେ ସ୍ୱୀକୃତି ଦେଲେ । ୧୯୪୪-୪୫ ଶିକ୍ଷାବର୍ଷରେ ମୁଁ ସ୍କୁଲର ପ୍ରଥମ ଦଳର ଛାତ୍ର ଭାବରେ ଯୋଗ ଦେଲି ।

ଚାରିଆଡ଼େ ଶସ୍ୟଶ୍ୟାମଳ ଧାନ କ୍ଷେତ । ଅଦୂରରେ କୁଣ୍ଡୀ ନଈର ସବୁଆ ଜଳଧାରା । ତାହାରି ମଧ୍ୟରେ ସେତେବେଳର ଭଦ୍ରକ-ଚାନ୍ଦବାଲି କଚ୍ଚା ରାସ୍ତା କଡ଼ରେ ତିନି ଚାରିଟି ଟିଣ ଛାତ ଥିବା ପକ୍କା ଘରକୁ ଘେନି ଆମର ପ୍ରିୟ ସ୍କୁଲ । ସ୍କୁଲ ପଛକୁ ସବୁଜ ଘାସ ପଡ଼ିଆ, ଆମ୍ବ ବଗିଚା ଓ ଗୋଟାଏ ବଡ଼ ପୋଖରୀ । ଏହି ପ୍ରାକୃତିକ ପରିବେଶ ମୋତେ ବେଶ୍ ଆକୃଷ୍ଟ କରିଥିଲା । ପଦ୍ୟ ଲେଖିବା ପାଇଁ, ନାଟ ତାମସା କରିବା ପାଇଁ ଯେପରି ଏକ ଉପଯୁକ୍ତ କ୍ଷେତ୍ର ! ଏଠାରେ ସେହି ହଷ୍ଟେଲ ନିବାସ । ସ୍କୁଲ ହଷ୍ଟେଲରେ ରହୁଥିଲି ଅଳ୍ପ କେତେଜଣ ପିଲାଙ୍କ ସାଙ୍ଗରେ, ତନ୍ମଧ୍ୟରେ ମୋ ନିଜ ଗାଁରୁ ଜଣେ ଦୁଇଜଣ ପିଲା ଥିଲେ । କ୍ଲାସ୍ ସାରି ବନ୍ଧୁମାନଙ୍କ ସାଙ୍ଗରେ ଘାସ ପଡ଼ିଆ ଓ ଆମ୍ବ ବଗିଚାରେ ବୁଲୁଥିଲି । ଗୁଡ଼ାଖୁ ଘଷା ଓ ବିଡ଼ି ଟଣା ସାଙ୍ଗେ ସାଙ୍ଗେ ପଡ଼ିଆରେ 'ଦୁଇ' କାର୍ଯ୍ୟଟି କରିବା ସୁବିଧାଜନକ ହେଉଥିଲା । କୁଣ୍ଡୀ ନଈ ପୋଲ ଉପରେ ମୁହଁ ଅନ୍ଧାର ପର୍ଯ୍ୟନ୍ତ ସାଙ୍ଗ ମେଳରେ ବସି ଆଡ଼୍ଡ଼ା ମାରୁଥିଲି । ସ୍କୁଲ ପାଖ ରାସ୍ତା କଡ଼ରେ ସାନ ବଜାରଟିଏ । ସେଠାରେ ଦୁଇ ତିନିଟି ଚା' ଜଳଖିଆ ଦୋକାନ, ପାନ ବିଡ଼ି ଦୋକାନ, ଗୋଟିଏ ଦରଜୀ ଦୋକାନ, ଗୋଟିଏ ତେଜରାତି ଏବଂ ଗୋଟାଏ ମନୋହାରି ଦୋକାନ । ସଞ୍ଜବେଳେ ବଜାର ଟିକେ ଜମେ । ଆମେ ବେଳେ ବେଳେ ଚା' ଦୋକାନରେ ବସି ଫୁର୍ତ୍ତି କରୁ – ମୁଖରୋଚକ ନାନା ଭଲମନ୍ଦ ଗପରେ ମଜି ଯାଉଁ । ରାତି ଆଠଟା ବେଳକୁ ବଜାର ଶୂନ୍‌ଶାନ୍ । ହଷ୍ଟେଲକୁ ଆସି ଲଣ୍ଠନ ଆଲୁଅରେ ପାଠ ପଢୁ ପଢୁ ଆମେ ମଧ

ନୀରବ, ତନ୍ଦ୍ରାଛନ୍ନ ହୋଇପଡୁଁ । କେତେବେଳେ କିପରି ସ୍କୁଲ ପଛ ପୋଖରୀ ହୁଡ଼ାର କିଆବୁଦା କଡ଼ରୁ ବିଲୁଆଙ୍କର ହୁକେ-ହୋ ରଡ଼ିରେ କିମ୍ବା ରାସ୍ତା ଉପରୁ ମଟରଗାଡ଼ିର ଘଁ-ଘଁ ଶବ୍ଦରେ ଆମର ତନ୍ଦ୍ରା କଟିଯାଏ । କେତେବେଳେ ଅବା ହଷ୍ଟେଲ ସୁପରିଟେଣ୍ଡେଣ୍ଟ୍ ପଣ୍ଡିତ କୃତ୍ତିବାସ ଶତପଥୀଙ୍କ ଡାକରେ ନିଦୁଆ ଆଖି ମଳି ହେଉଁ ହେଉଁ ଆମେ ସତର୍କ ହୋଇଉଠୁଁ – ବଡ଼ ପାଟିରେ ପାଠ ଘୋଷି ହେଉଁ ।

ମଫସଲର ସେହି ଶାନ୍ତ ସୁନ୍ଦର ପରିବେଶ ପଢ଼ାପଢ଼ି ପାଇଁ ବେଶ୍ ଅନୁକୂଳ ଥିଲା, ଯଦିଚ ତା'ର ପୂର୍ଣ୍ଣ ସଦୁପଯୋଗ ମୁଁ କରିପାରି ନାହିଁ । ସାଙ୍ଗମାନଙ୍କ ମେଳରେ ସାନ ବଡ଼ ଦୁଷ୍ଟାମି କିମ୍ବା କୌଣସି ଉତ୍ତେଜନାପୂର୍ଣ୍ଣ ଦୁଃସାହସିକ କାର୍ଯ୍ୟ କରିବାରେ ମୁଁ ସେତେବେଳେ ଟିକିଏ ଆଗୁଆ ଥିଲି । ହଷ୍ଟେଲ ମେସ୍‌ରେ ଭଲ ଖାଇବା ହେଉ ନାହିଁ ବୋଲି ସୁପରିଟେଣ୍ଡେଣ୍ଟ୍ ବା ହେଡ଼ମାଷ୍ଟ୍ରଙ୍କ ପାଖରେ ଦଳ ବାନ୍ଧି ଆପତ୍ତି କରିବା କିମ୍ବା ସ୍କୁଲ ପାଖ ବଜାରରେ କେଉଁ ଦୋକାନୀ ଛାତ୍ରଙ୍କୁ ବାକି ପଇସା ମାଗି ଦୁର୍ବ୍ୟବହାର କରିବାରୁ (?) ତା' ସହିତ ଝଗଡ଼ାଝାଣ୍ଟି ଲଗାଇବା ଭଳି କାର୍ଯ୍ୟରେ ମୁଁ ପ୍ରାୟ ନେତୃତ୍ୱ ନେଉଥିଲି । ହାଇସ୍କୁଲରେ ସେତେବେଳେ ସ୍ୱତନ୍ତ୍ର ଖେଳ ପଡ଼ିଆ ନ ଥାଏ । ଦୋଳସାହି ଗାଁ ଉତ୍ତର ମୁଣ୍ଡରେ ଥିବା ମାଇନର ସ୍କୁଲ ପଡ଼ିଆରେ ଆମେ ଯାଇ ଖେଳାଖେଳି କରୁଥିଲୁଁ । ଭଲ ଖେଳାଳୀ ନ ହୋଇଥିଲେ ମଧ୍ୟ ମୁଁ ବିଶେଷତଃ ଫୁଟ୍‌ବଲ୍ ଖେଳରେ ଯୋଗ ଦେଉଥିଲି । ଗୋଟାଏ ପଡ଼ିଆରେ ପାଖାପାଖି ଖେଳୁଥିବାରୁ ହାଇସ୍କୁଲ ଓ ମାଇନର ସ୍କୁଲ ପିଲାଙ୍କ ମଧ୍ୟରେ ବାରମ୍ବାର କଳିଗୋଳ ହେଉଥିଲା । ସେହି କଳିଗୋଳରେ ହାଇସ୍କୁଲ ପକ୍ଷରୁ ମୁଁ ଓ ମୋର ଜଣେ ପଢ଼ା ସାଙ୍ଗ ଶ୍ରୀ ଚକ୍ରଧର ଦାସ ନେତୃତ୍ୱ ନେଉଥିଲୁଁ । ମାଇନର ସ୍କୁଲର ହେଡ଼ମାଷ୍ଟ୍ର ଥରେ ଦୁଇଥର ଆସି ଆମର କଳିଗୋଳ ମେଣ୍ଟାଇଥିବାର ମନେ ପଡୁଛି । ସେହି କଳିଗୋଳରେ ଅନେକ କ୍ଷେତ୍ରରେ ଆମ ପକ୍ଷରୁ ଦୋଷତ୍ରୁଟି ଥିଲେ ହେଁ, ଯେହେତୁ ଆମେ ବଡ଼ ପିଲା – ମାଇନର ସ୍କୁଲ ପିଲାଙ୍କଠାରୁ ଉଚ୍ଚ କ୍ଲାସ୍‌ରେ ପଢୁଛୁଁ, ସେଥିପାଇଁ ଆମର ଜିତାପଟ ହେଉଥିଲା ।

ମେଟ୍ରିକ୍ୟୁଲେସନ୍ ପରୀକ୍ଷା ପାଇଁ ଫର୍ମ୍ ପୂରଣ କଲାବେଳେ ସ୍କୁଲ କର୍ତ୍ତୃପକ୍ଷ ଆମମାନଙ୍କଠାରୁ ଅଯଥା ଅଧିକା ପଇସା ଆଦାୟ କରୁଛନ୍ତି ମନେକରି, ତାହାର କି ପ୍ରତିକାର କରାଯିବ ବୋଲି ଆମେ କେଇଜଣ ଛାତ୍ର ବସି ବିଚାର-ଆଲୋଚନା କଲୁ । ସେତେବେଳେ ସ୍କୁଲର ହେଡ଼ମାଷ୍ଟର ଶ୍ରୀ ମଧୁସୂଦନ ଜେନାଙ୍କ ସହିତ ବିଭିନ୍ନ କାରଣରୁ ଆମର ଟଣା-ଓଟରା ଚାଲିଥାଏ । ମୁଁ ବୋଧହୁଏ ଟିକିଏ ଭଲ ପଢ଼ାଶୁଣା କରୁଥିଲି ବୋଲି କି କ'ଣ, ମଧୁବାବୁ ମୋତେ ଶ୍ରଦ୍ଧା କରୁଥିଲେ । କିନ୍ତୁ ଦଳ ବାନ୍ଧି ମଝିରେ ମଝିରେ ଦୁଷ୍ଟାମି କରୁଥିବାରୁ ମୋ ଉପରେ କଡ଼ା ନଜର ରଖିଥିଲେ । ଫର୍ମ୍ ପୂରଣ

ବେଳେ ବେଶି ଟଙ୍କା ନିଆଯାଇଛି ବୋଲି ଆମେ ଆଉ ତାଙ୍କ ପାଖରେ ଆପତ୍ତି-ଅଭିଯୋଗ କରିବୁଁ କ'ଣ, ବିଷୟଟି ସିଧାସଳଖ ଖବରକାଗଜକୁ ଦେବୁଁ ବୋଲି ସିଦ୍ଧାନ୍ତ ନେଲୁଁ । ସଜେଇ ଗୁଛେଇ ମୁଁ ବିବରଣୀଟି ଲେଖିଲି । ଦୁଇ ତିନିଟି ଖବରକାଗଜ ସଂପାଦକଙ୍କୁ ଚିଠି ପୋଷ୍ଟ କରିଦିଆଗଲା ଦୋଳସାହି ପୋଷ୍ଟ ଅଫିସ୍‌ରେ । ହେଡ୍‌ମାଷ୍ଟର ମଧୁବାବୁ କୁଆଡୁ କିପରି ଏ ଖବର ପାଇଗଲେ କେଜାଣି, ପୋଷ୍ଟ ଅଫିସକୁ ଯାଇ ଚିଠିଗୁଡ଼ିକ ଜବତ୍ କରି ଆଣିଲେ । ପୋଷ୍ଟମାଷ୍ଟରଙ୍କ ସହିତ ତାଙ୍କର ବନ୍ଧୁତା ଥିଲା । ତାଙ୍କରି ସାହାଯ୍ୟରେ ପୋଷ୍ଟ ଅଫିସ ଚିଠି ବାକ୍ସରୁ ବିଭିନ୍ନ ଚିଠିପତ୍ର ମଧ୍ୟରୁ ଚିଠି ଉପରେ ଲେଖା ଠିକଣାରୁ ମୋର ହସ୍ତାକ୍ଷର ଚିହ୍ନି ଆମ ଚିଠିତକ ବାହାର କରିଥିଲେ । ତା'ପରେ ଆମକୁ ଡାକି ଫର୍ମ୍ ପୂରଣ ଟଙ୍କାର ହିସାବ ବୁଝାଇଦେବା ସଂଗେ ସଂଗେ ବେଶ୍ ଦି'ପଦ ମିଠାକଡ଼ା ଶୁଣାଇ ଦେଲେ । ଆମେ କାନମୁଣ୍ଡ ଆଉଁସି ତୁନି ରହିଲୁଁ ।

ସେତେବେଳେ ଦେଶରେ ସ୍ୱାଧୀନତା ଆନ୍ଦୋଳନ ଜୋର୍‌ସୋର୍‌ରେ ଚାଲିଥାଏ । ଇଂରେଜ ସରକାର ବିରୋଧରେ 'ଭାରତ ଛାଡ଼' ଧ୍ୱନି ଚତୁର୍ଦ୍ଦିଗ ପ୍ରକଂପିତ କରୁଥାଏ । ଶିକ୍ଷକ ଶ୍ରୀ ଗଗନବିହାରୀ ମହାନ୍ତି ଖବରକାଗଜ ପଢ଼ି ବେଳେ ବେଳେ ଆନ୍ଦୋଳନର ବିଭିନ୍ନ ସମ୍ବାଦ ଆମକୁ ଜଣାଉଥିଲେ । ଖବରକାଗଜରେ ଆସୁଥିବା ମହାତ୍ମା ଗାନ୍ଧୀ, ସୁଭାଷ ବୋଷ, ପଣ୍ଡିତ ନେହେରୁଙ୍କ ବାଣୀ ଓ ବକ୍ତୃତା ସେତେବେଳେ ମୋତେ ବେଶ୍ ଉଦ୍‌ବୁଦ୍ଧ କରୁଥାଏ । ବିଶେଷତଃ ନେତାଜୀ ସୁଭାଷଙ୍କ ସାହସିକ କାର୍ଯ୍ୟାବଳୀ, ବିଦେଶୀ ସରକାରଙ୍କ ଆଖିରେ ଧୂଳି ଦେଇ ଭାରତ ଛାଡ଼ି ଜର୍ମାନୀ ପଳାୟନ, ଜର୍ମାନୀରେ ସେତେବେଳେ ପ୍ରବଳ ପ୍ରତାପୀ ହିଟ୍‌ଲର୍‌ଙ୍କ ସହ ସଖ୍ୟତା, ସେଠାରୁ ପୁଣି ବୁଡ଼ାଜାହାଜରେ ଜାପାନ ଯାତ୍ରା, ଆଜାଦ ହିନ୍ଦ୍ ଫୌଜର ନେତୃତ୍ୱ, ଇଂରେଜ ସୈନ୍ୟବାହିନୀ ସହ ଲଢ଼େଇ, ଆଣ୍ଡାମାନ ଦ୍ୱୀପରେ ଆଜାଦ୍ ହିନ୍ଦ୍ ସରକାର ଗଠନ ଇତ୍ୟାଦି ମୋତେ ଅନୁପ୍ରାଣିତ କରିଥିଲା । ଗଗନବାବୁଙ୍କ ପରାମର୍ଶରେ ପୁଣି କବି କୁନ୍ତଳାକୁମାରୀ, କାନ୍ତକବି ଲକ୍ଷ୍ମୀକାନ୍ତ, ଚାରଣ କବି ବାଞ୍ଛାନିଧି ମହାନ୍ତି ପ୍ରମୁଖଙ୍କର ସ୍ୱଦେଶ ପ୍ରେମାତ୍ମକ କବିତାମାନ – ବିଶେଷତଃ ହରେକୃଷ୍ଣ ମହତାବଙ୍କର 'ପଲାସୀ ଅବସାନେ' କାବ୍ୟଟି ପଢ଼ି ମୁଁ ମନପ୍ରାଣରେ ବିଦ୍ରୋହୀ ହୋଇ ଉଠିଥାଏ । ଦୁଇ ତିନି ଜଣ ସାଙ୍ଗ ପିଲାଙ୍କୁ ଘେନି ବିଚାର କଲି – ଦେଶର ସ୍ୱାଧୀନତା ପାଇଁ ଆମର ମଧ୍ୟ କିଛି କରିବା ଦରକାର । ଏକ ଭ୍ରାନ୍ତ ଉତ୍ସାହରେ ମାତିଗଲୁଁ । ମନେ ପଡୁଛି – ଅଗଷ୍ଟ କି ସେପ୍ଟେମ୍ବର ମାସ ହେବ । ଅନ୍ଧାର ରାତି, ବର୍ଷା ଟୁପୁ ଟୁପୁ ପକାଉଥାଏ । ସ୍କୁଲ ଅଦୂରରେ ଥିବା ଟେଲିଗ୍ରାଫ୍ ଖୁଣ୍ଟରେ ଚଢ଼ି ଆମେ ତାର କାଟୁଥିଁ, ହଠାତ୍ ଆମ ଉପରେ ଟର୍ଚ୍ଚ ଆଲୁଅ ପଡ଼ିଲା । ତଳକୁ ଚାହିଁ ଦେଖିଲୁ – ଦୁଇ ଜଣ ଲୋକ ପୋଲିସ୍ ଭଳି ଦେଖା ଯାଉଛନ୍ତି । ଆମ ଭୀତତ୍ରସ୍ତ ହୋଇ ପଡ଼ିଲୁ । ସାଙ୍ଗମାନେ

ଓହ୍ଲାଇ ପଡ଼ି କିଏ କୁଆଡ଼େ ଧାଇଁ ପଳାଇ ଗଲେ । ମୁଁ ଟେଲିଗ୍ରାଫ୍ ଖୁଣ୍ଟରୁ ଓହ୍ଲାଉ ଓହ୍ଲାଉ ଅଧାରୁ ତଳକୁ ଖସି ପଡ଼ିଲି । କାଦୁଅ-ପାଣିରେ ଲଟପଟ ହୋଇଗଲି । ଅବସ୍ଥା ଦେଖି ପୋଲିସ୍ ରାଗିବେ କ'ଣ, ମୋର ନାମ ପଚାରି ଏବଂ ମୁଁ ହାଇସ୍କୁଲରେ ପଢୁଛି ଜାଣି, ମୋତେ ଛାଡ଼ିଦେଲେ ।

କଂଗ୍ରେସ ନେତା ସ୍ୱନାମଧନ୍ୟ ହନିଫ୍‌ବାବୁଙ୍କ ସାନ ଭାଇ ବେଳେ ବେଳେ ଭଦ୍ରକରୁ ଦୋଳସାହି ଆସି, ରାଜନୈତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବା ପାଇଁ ଆମକୁ ମତାଉଥିଲେ । ତାଙ୍କ ସହିତ ଥରେ ଦୁଇଥର ଯାଇ ମୁଁ ଭଦ୍ରକ ରେଳବାଇ ଷ୍ଟେସନ (ଚରମ୍ପା) ଅଞ୍ଚଳରେ ଥିବା ଚାଉଳକଳ ଗୁଡ଼ିକରେ ଶ୍ରମିକ ସଂଗଠନ କାର୍ଯ୍ୟ କରିଥିଲି । ପାଳିଆବିନ୍ଧାର ସେ ବେଳର ଯୁବନେତା ଶ୍ରୀ କରୁଣାକର ଦାସ ଓ କୋହ୍ଲର କମ୍ୟୁନିଷ୍ଟ କର୍ମୀ ଶ୍ରୀ ଗିରିଧାରୀ ସାହୁଙ୍କ ସହିତ ସେତିକିବେଳେ ମୋର ସଂପର୍କ ସ୍ଥାପିତ ହୋଇଥିଲା । ମୋତେ ରାଜନୈତିକ କାର୍ଯ୍ୟକ୍ରମ ପ୍ରତି ଅନୁପ୍ରାଣିତ କରିବାରେ ଏ ଦୁହିଁଙ୍କର ବିଶେଷ ଭୂମିକା ରହିଛି । ଘରେ କାହାରିକୁ ନ ଜଣାଇ ମୁଁ ଲୁଚି ଛପି କିଛି କିଛି ରାଜନୈତିକ କାର୍ଯ୍ୟ କରୁଥିଲି ଏବଂ ବିଭିନ୍ନ ଦଳର କର୍ମୀ ଓ ନେତାଙ୍କ ସହ ଯୋଗାଯୋଗ ରଖୁଥିଲି । କରୁଣାକରବାବୁ ସେତେବେଳେ ରାଜନୀତିରେ ଆକଣ୍ଠ ବୁଡ଼ି ରହିଥିଲେ ଏବଂ ସୁବିଧା ସୁଯୋଗ ପାଇଲା ମାତ୍ରେ ଆମ ସହିତ କଂଗ୍ରେସ ଦଳର କାର୍ଯ୍ୟକ୍ରମ, ସ୍ୱାଧୀନତା ଆନ୍ଦୋଳନର ଗତିବିଧି ପ୍ରଭୃତି ବିଷୟରେ ଆଲୋଚନା କରୁଥିଲେ । ଦେଶ ଯେ ନିଶ୍ଚୟ ସ୍ୱାଧୀନ ହେବ — ଏ ବିଷୟରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା ଏବଂ ସେହି ବିଶ୍ୱାସ ସେ ଆମ ମନରେ ଭରି ଦେଇଥିଲେ ।

ନବମ କି ଦଶମ ଶ୍ରେଣୀରେ ପଢୁଥିଲାବେଳେ ଦିନେ ସନ୍ଧ୍ୟାବେଳେ ପୀରହାଟରେ ଏକ ରାଜନୈତିକ ସଭା ହେଉଥାଏ, ମୁଁ ଯାଇ ତହିଁରେ ଯୋଗ ଦେଲି । ସଭାରେ ବେଶି ଲୋକ ନଥାନ୍ତି । ସଭାଠାରୁ ଅଳ୍ପ ଦୂରରେ ଖଣ୍ଡିଏ ବେଞ୍ଚ ଓ ଟେବୁଲ୍ ପକାଇ ଦୁଇ ତିନି ଜଣ ପୋଲିସ୍ ବସିଥାଆନ୍ତି । ସଭାରେ ସଭାପତିତ୍ୱ କରୁଥାଆନ୍ତି ତିହିଡ଼ିର କଂଗ୍ରେସ ନେତା ଶ୍ରୀ ଭାଗବତ ସାହୁ । ସେହି ସଭାରେ ପୀରହାଟର ନେତା ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ପ୍ରଭୃତିଙ୍କ ସହିତ ମୁଁ ଅଳ୍ପ ସମୟ ପାଇଁ କିଛି କହିଥିଲି । କ'ଣ କିପରି କହିଥିଲି, ତାହା ଏବେ ଠିକ୍ ସ୍ମରଣ ହେଉ ନାହିଁ । ଯେତେଦୂର ମନେ ପଡୁଛି — ମହାତ୍ମା ଗାନ୍ଧୀଙ୍କ ବିଷୟରେ ଶିକ୍ଷକ ଗଗନ ବାବୁ ଶିଖାଇ ଥିବା କଥା କେଇପଦ କହିଥିବି । ସଭା ଶେଷରେ ଘରକୁ ବାହୁଡୁଛି, ରାସ୍ତାରେ ଶ୍ରୀ ଗିରିଧାରୀ ସାହୁଙ୍କ ସହ ସାକ୍ଷାତ ଆଲୋଚନା ହେଲା । ଆମର ସେହି ପ୍ରଥମ ସାକ୍ଷାତ କ୍ରମେ ବନ୍ଧୁତ୍ୱରେ ପରିଣତ ହୋଇ ତାହା ଗିରିଧାରୀ ବାବୁଙ୍କ ଅକାଳ ମୃତ୍ୟୁ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହିଥିଲା । ମାର୍କସ୍‌ବାଦ, ଲେଲିନ୍ ଷ୍ଟାଲିନ୍‌ଙ୍କ

ବିଷୟରେ ଏବଂ ପୃଥିବୀର ବିଭିନ୍ନ ଦେଶରେ ଚାଲିଥିବା ସାମ୍ୟବାଦୀ ଆନ୍ଦୋଳନ ସମ୍ପର୍କରେ ସେ ଅନେକ କଥା ମୋତେ କହୁଥିଲେ । ସେହିସବୁ କଥା ସେତେବେଳେ ସ୍ପଷ୍ଟ ଭାବରେ ବୁଝିପାରି ନ ଥିଲେ ହେଁ, ମୁଁ ତାଙ୍କର ମତାଦର୍ଶ ଦ୍ୱାରା ବହୁ ପରିମାଣରେ ଅନୁପ୍ରାଣିତ ହୋଇ ଯାଇଥିଲି । ଖାଙ୍କୀ ହାଟପାଳିରେ, ଦୋଳସାହି ବଜାରରେ ଏବଂ ମୋ ମାମୁଁ ଘର ଗାଁ ନନ୍ଦପୁରଠାରେ ଆମର ସାକ୍ଷାତ ଆଲୋଚନା ହେଉଥିଲା । ସେତିକିବେଳେ ଥରେ ନନ୍ଦପୁର ଗାଁମୁଣ୍ଡ ପଡ଼ିଆରେ ଗୋଟାଏ ବଡ଼ ଧରଣର କମ୍ୟୁନିଷ୍ଟ ସଭା ହୋଇଥିଲା । ବିଖ୍ୟାତ କମ୍ୟୁନିଷ୍ଟ ନେତା ଶ୍ରୀ ବୈଦ୍ୟନାଥ ରଥ ଭାଷଣ ଦେବାକୁ ଆସିଥିଲେ । ଗିରିଧାରୀ ବାବୁଙ୍କ ଆହ୍ୱାନରେ ମୁଁ ସେହି ସଭାରେ ସ୍ୱେଚ୍ଛାସେବକ ଭାବରେ କାର୍ଯ୍ୟ କରିଥିଲି । କମ୍ୟୁନିଷ୍ଟ ଦଳର ବିଚାର ଓ କାର୍ଯ୍ୟକ୍ରମ ପ୍ରତି ମୋର ସେହି ଆକର୍ଷଣ ପରେ ଭଦ୍ରକ କଲେଜ, ରେଭେନ୍ସା କଲେଜ ଓ ପଶ୍ଚିମବଙ୍ଗର ଶାନ୍ତିନିକେତନରେ ଛାତ୍ର ଥିବା କାଳରେ ବେଶ୍ ବଳବତ୍ତର ରହିଥିଲା ।

କିନ୍ତୁ ରାଜନୈତିକ କର୍ମ ଅପେକ୍ଷା ମୁଁ ସେତେବେଳେ ହାଇସ୍କୁଲରେ ଡିବେଟିଂ ସୋସାଇଟି ପରିଚାଳନା, କବିତା-ନାଟକାଦି ଲେଖା, ନାଟ୍ୟାଭିନୟ ଆଦି ସାଂସ୍କୃତିକ କାର୍ଯ୍ୟରେ ଅଧିକ ଆଗ୍ରହୀ ଥିଲି । ସ୍କୁଲର ପ୍ରତିଷ୍ଠାତା ଦୋଳସାହିର ତତ୍କାଳୀନ ଜମିଦାର ଶ୍ରୀ ମୃତ୍ୟୁଞ୍ଜୟ ନାରାୟଣ ପ୍ରହରାଜ ତଥା ଶିକ୍ଷକମାନେ ସେଥିପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲେ । ପ୍ରଥମରୁ ଆମର ଶିକ୍ଷକ ଥିଲେ ଶ୍ରୀ ରତ୍ନାକର ଜେନା, ପଣ୍ଡିତ କୃତ୍ତିବାସ ଶତପଥୀ ପ୍ରମୁଖ; ପରେ ପରେ ଶ୍ରୀ ଗଗନବିହାରୀ ମହାନ୍ତି, ଶ୍ରୀ ବ୍ରଜକିଶୋର ଦାସ, ଶ୍ରୀ ଇନ୍ଦ୍ରମଣି ରାୟ ମହାପାତ୍ର ପ୍ରମୁଖ ଶିକ୍ଷକ ଭାବରେ ଆସି ଯୋଗ ଦେଇଥିଲେ । ଶ୍ରୀ ପ୍ରହରାଜ ବଡ଼ ମଉଜିଆ ଓ ଖୁସିବାସିଆ ଲୋକ ଥିଲେ ଏବଂ ସ୍କୁଲର ଛାତ୍ରମାନଙ୍କ ସହ ମିଳାମିଶା କରୁଥିଲେ । ସପ୍ତାହରେ ଅଧିକାଂଶ ଦିନ ସେ ଆସି ସ୍କୁଲର ଭଲ ମନ୍ଦ, ସୁବିଧା ଅସୁବିଧା ବୁଝୁଥିଲେ । ମଝିରେ ମଝିରେ ଆମ ଭଳି କେତେଜଣ ବଛା ବଛା ଛାତ୍ରଙ୍କୁ ଘରକୁ ଡାକି ଭୋଜି ଖୁଆଉଥିଲେ । ଗଣେଶ ପୂଜା, ସରସ୍ୱତୀ ପୂଜା ଓ ସ୍କୁଲର ଅନ୍ୟାନ୍ୟ ସଭାସମିତି ଅନୁଷ୍ଠାନରେ ସେ ଆସି ଯୋଗ ଦେଉଥିଲେ । ସଂସ୍କୃତ ଓ ଇଂରାଜୀ ଭାଷା ସେ ଭଲ ଭାବରେ କହିପାରୁଥିଲେ । ସରସ୍ୱତୀ ପୂଜାରେ ତାଙ୍କର ସଂସ୍କୃତ ମନ୍ତ୍ରପାଠ ପୂଜକ ପୁରୋହିତଙ୍କୁ ହାର୍ ମନାଇ ଦେଉଥିଲା । ସମ୍ମୋହନ ବିଦ୍ୟା ବା ମେସ୍‌ମେରିଜିମ୍ ସେ ଆୟତ୍ତ କରିଥିଲେ । ଥରେ ସ୍କୁଲରେ ତାହା ପ୍ରଦର୍ଶନ ପୂର୍ବକ ଜଣେ ଛାତ୍ରକୁ ସମ୍ମୋହିତ କରି ଆମମାନଙ୍କୁ ବିସ୍ମୟମୁଗ୍ଧ କରି ପକାଇଥିଲେ । ଅଧିକାଂଶ ଶିକ୍ଷକ ମଧ୍ୟ ସେତେବେଳେ ଛାତ୍ରମାନଙ୍କ ସହିତ ଘନିଷ୍ଠ ସଂପର୍କ ରଖୁଥିଲେ । କ୍ଲାସ୍ ବାହାରେ ଆମର ପଢ଼ାଶୁଣା, ସୁବିଧା ଅସୁବିଧା ବିଷୟ ବୁଝାବୁଝି କରୁଥିଲେ । ଛାତ୍ର-ଶିକ୍ଷକଙ୍କର ସେହି ସଂପର୍କ ଏବେ

ଜଣା ହୋଇଯାଇ ଥିବାର ଲକ୍ଷ୍ୟ କରୁଛି । ସେତେବେଳେ ପ୍ରାଇଭେଟ୍ ଟିଉସନ୍ ପ୍ରଥା ବର୍ତ୍ତମାନ ଭଳି ଖୁବ୍ ବେଶି ପ୍ରଚଳିତ ନ ଥିଲା । ଯେଉଁ ଛାତ୍ର ଯେଉଁ ବିଷୟରେ ବେଶି ଦୁର୍ବଳ ଥିଲା, କେବଳ ସେହି ବିଷୟରେ ସଂପୃକ୍ତ ଶିକ୍ଷକଙ୍କ ପାଖରେ ସେ ଟିଉସନ୍ ହେଉଥିଲା । ଗଣିତରେ ପାରୁ ନ ଥିବାରୁ ମୁଁ ମଧ କେତେ ମାସ ପାଇଁ ଟିଉସନ୍ ପଢ଼ିଥିଲି । କିନ୍ତୁ ବର୍ତ୍ତମାନ ଭଳି ସବୁ ବିଷୟରେ ପ୍ରାଇଭେଟ୍ ଟିଉସନ୍ ସେତେବେଳେ ଛାତ୍ର ତଥା ଶିକ୍ଷକଙ୍କ ପକ୍ଷରେ ଏକ ଅତ୍ୟାବଶ୍ୟକ (?) ଆନୁଷ୍ଠାନିକ କର୍ମରେ ପରିଣତ ହୋଇ ନ ଥିଲା । ତାହା ଫଳରେ ଆମେ ଶିକ୍ଷକଙ୍କ ଉପରେ ଅତ୍ୟନ୍ତ ନିର୍ଭରଶୀଳ ନ ହୋଇ, କିମ୍ବା ପାଠର ଚାମଚ-ଆହାର ନ କରି ନିଜ ଗୋଡ଼ରେ ଠିଆ ହେବାକୁ ଚେଷ୍ଟା କରୁଥିଲୁ । ଯେଉଁ ଶିକ୍ଷକମାନେ ସେତେବେଳେ ପ୍ରାଇଭେଟ୍ ଟିଉସନ୍ କରୁଥିଲେ, ଟିଉସନ୍ ପଢୁଥିବା ଛାତ୍ରଙ୍କ ସହିତ ସେମାନଙ୍କର ଘନିଷ୍ଠ ସଂପର୍କ ତ ରହିବାର କଥା, ରହୁଥିଲା । କିନ୍ତୁ ଟିଉସନ୍-ସଂପର୍କ ନଥାଇ ମଧ ସାଧାରଣତଃ ଶିକ୍ଷକମାନେ ଛାତ୍ରମାନଙ୍କ ସହ ମିଳାମିଶା କରୁଥିଲେ – ଏପରି କି ଆମମାନଙ୍କର ବ୍ୟକ୍ତିଗତ ସୁବିଧା-ଅସୁବିଧା କଥା ବୁଝୁଥିଲେ ।

ଏହି ପ୍ରସଙ୍ଗରେ ଶିକ୍ଷକ ଶ୍ରୀ ଗଗନବିହାରୀ ମହାନ୍ତିଙ୍କ କଥା ବିଶେଷ ଭାବେ ଉଲ୍ଲେଖ କରିବି । ସେ ଆଗରପଡ଼ା କୁଆଁସମଢ଼ିଆ ଗ୍ରାମର ଲୋକ ଥିଲେ । ବଡ଼ ଅମାୟିକ ଓ ଆଦର୍ଶବାଦୀ । ଖଦଡ଼ ଲୁଗାପଟା ପିନ୍ଧୁଥିଲେ । ଥିଲେ ଜଣେ ସ୍ୱଦେଶ-ପ୍ରେମୀ କବି ଓ ଲେଖକ । ଭଲ ପାଠ ପଢ଼ାଉଥିଲେ ମଧ । ତାଙ୍କ ସଂପର୍କରେ ଆସି ନ ଥିଲେ, ମୋ ଜୀବନ ହୁଏତ ଭିନ୍ନ ପ୍ରକାର ହୋଇଯାଇ ଥାଆନ୍ତା ! ଦୋଳସାହି ସ୍କୁଲରେ ଶିକ୍ଷକ ଭାବରେ, ତଥା ପରେ ଭଦ୍ରକ କଲେଜରେ ଅଧାପକ ଭାବରେ ସେ କେବଳ ମୋର ଶିକ୍ଷାଗୁରୁ ନଥିଲେ, ଦୀକ୍ଷାଗୁରୁ ଥିଲେ ମଧ । ସେ କବିତା ଓ ପ୍ରବନ୍ଧ ଲେଖୁଥିଲେ । ଶଙ୍ଖ, ଚତୁରଙ୍ଗ ଏବଂ ପରେ ଝଙ୍କାର ଆଦି ପତ୍ରିକାରେ ତାଙ୍କ ଲେଖା ପ୍ରକାଶ ପାଉଥିଲା । ତାଙ୍କର ଏକ କାବ୍ୟସଞ୍ଚୟନ 'ପତ୍ରପୁଷ୍ପ' ନାମରେ ୧୯୫୧-୫୨ ମସିହା ବେଳକୁ ପ୍ରକାଶିତ ହୋଇଥିଲା । ଭଦ୍ରକ କଲେଜରେ ଅଧାପନା କରୁଥିଲା ବେଳେ ୧୯୫୩ କି ୧୯୫୪ରେ ତାଙ୍କର ଅକାଳ ବିୟୋଗ ଘଟିଥିଲା । ଶାନ୍ତିନିକେତନରେ ପଢୁଥିଲା ବେଳେ ମୁଁ ତାଙ୍କର ଏ ବିୟୋଗ-ବାର୍ତ୍ତା ପାଇ ଦୁଃଖରେ ଭାଙ୍ଗି ପଡ଼ିଥିଲି । ମୋର ସାଂସ୍କୃତିକ ଜୀବନର ଉଦ୍‌ଯୋଗ ପର୍ବରେ ତାଙ୍କ ଭଳି ଜଣେ ଦିଶାରୀଙ୍କୁ ହରାଇ ଯେଉଁ କ୍ଷତି ସହିଛି, ତାହା ଏ ପର୍ଯ୍ୟନ୍ତ ପୂରଣ ହୋଇପାରି ନାହିଁ । ହାଇସ୍କୁଲରେ ତାଙ୍କରି ପାଖରେ ଶିକ୍ଷାନବିସ୍ କରି ମୁଁ ଲେଖାଲେଖିରେ ହାତ ପାକଳ କରିଥିଲି । ଏବେ ଅଧିକାଂଶ କବି-ଲେଖକ, ସ୍ରଷ୍ଟା-ଜୀବନ ପ୍ରାରମ୍ଭରେ କେଉଁଠି କାହା ପାଖରେ ଶିକ୍ଷାନବିସ୍ କରୁଥିବାର ଦେଖାଯାଉ ନାହିଁ । ସେମାନେ ଯେପରି ଏକାବେଳକେ ଓଳିଆରୁ ପଡ଼ି ଗଜା ! ତାହା ଫଳରେ ଲେଖାଲେଖି

ପାଇଁ କେତେକ ସାଧାରଣ କଥା, ଯଥା – କବିତାରେ ଛନ୍ଦ ପ୍ରୟୋଗ, ଗଦ୍ୟ ଓ ପଦ୍ୟରେ ଠିକ୍ ଅର୍ଥ ଦ୍ୟୋତକ ଶବ୍ଦ ବ୍ୟବହାର, ବର୍ଣ୍ଣାଶୁଦ୍ଧି ପ୍ରଭୃତି ବିଷୟରେ ସେମାନେ ମୂଳରୁ ସତର୍କ ହୋଇପାରୁ ନାହାନ୍ତି । ପରେ ଅବଶ୍ୟ ଅଭିଜ୍ଞତା-ଅନୁଭୂତିରୁ ଧୀରେ ଧୀରେ ସବୁ କଥା ଶିଖୁଛନ୍ତି । ସେହି ହେତୁରୁ ବହୁ କ୍ଷେତ୍ରରେ ସାହିତ୍ୟ-ସାଧନାରେ ସାଫଲ୍ୟ-ଲାଭ ଅଯଥା ବିଳମ୍ବିତ ହେଉଛି ।

ସେତିକିବେଳେ ମୁଁ ଗୋଟିଏ ନାଟକ ଲେଖିଥିଲି । ନାଟକଟିର ନାମ ଠିକ୍ ମନେ ପଡୁନାହିଁ । ଏବେ ମୋର ପାଣ୍ଡୁଲିପିର ବସ୍ତାନିରେ 'ଅଗ୍ନିବୀଣା' ନାମରେ ଏକ ସାମାଜିକ ନାଟକର ଲେଖା ରହିଛି । ହୋଇପାରେ, ତାହା ସେହି ହାଇସ୍କୁଲରେ ଲେଖା ନାଟକଟି । ପରେ ମୁଁ କଟକ ରେଭେନ୍‌ସା କଲେଜରେ ପଢ଼ିଲା ବେଳେ ତାହା ପୁନଃ ଲିଖିତ ହୋଇଥିବାର ଦେଖୁଛି । ବୋଧହୁଏ ସେତେବେଳର କଞ୍ଚା ହାତରେ ଲେଖା ସେହି 'ଅଗ୍ନିବୀଣା' ନାଟକଟି ପଢ଼ି ଏବଂ ତହିଁରେ ଆବଶ୍ୟକ ପରିମାର୍ଜନ କରି ଶିକ୍ଷକ ଗଗନବାବୁ ସ୍କୁଲରେ ତାହାର ଅଭିନୟ କରାଇବାକୁ ପ୍ରସ୍ତାବ ଦେଲେ । ତହିଁରେ କେତେକ ଛାତ୍ରବନ୍ଧୁ ଆପତ୍ତି ଉଠାଇଲେ । ଅଶ୍ୱିନୀକୁମାର ଘୋଷ, ରାମଚନ୍ଦ୍ର ମହାପାତ୍ର, କାନ୍ତକବି ଲକ୍ଷ୍ମୀକାନ୍ତ ପ୍ରମୁଖ ବଡ଼ ବଡ଼ ଲେଖକଙ୍କର ନାଟକ ଥାଉଁ ଥାଉଁ ଗୋଟାଏ ଅର୍ବାଚୀନ ଲେଖକର ନାଟକ ସ୍କୁଲରେ ଅଭିନୀତ ହେବ ? ନୈବ ନୈବ ଚ ! ମୋ ନାଟକର କୌଣସି ଗୁଣ ବା ମାନ ଥାଉ ବା ନ ଥାଉ, ଛାତ୍ର ବନ୍ଧୁମାନଙ୍କର ଈର୍ଷାଜ୍ୱାଳାରେ ନାଟକଟିର ଭାଗ୍ୟ ଜଳିଗଲା । ସେତେବେଳେ ପ୍ରାୟ ପ୍ରତିବର୍ଷ ସ୍କୁଲରେ କୌଣସି-ନା-କୌଣସି ନାଟ୍ୟାଭିନୟର ବ୍ୟବସ୍ଥା ହେଉଥିଲା । ଥରେ ଦୁଇଥର ସ୍କୁଲ ପାଣ୍ଠିର ଅଭିବୃଦ୍ଧି ପାଇଁ ଟିକେଟ୍ ବିକ୍ରୀ କରି ନାଟ୍ୟାଭିନୟ ପ୍ରଦର୍ଶନ କରାଯାଇଥିବାର ମନେ ପଡୁଛି । ଶ୍ରୀ ବାଳକୃଷ୍ଣ କରଙ୍କ 'ଚନ୍ଦ୍ରଗୁପ୍ତ' ଏବଂ ଶ୍ରୀ ଅଶ୍ୱିନୀ କୁମାର ଘୋଷଙ୍କ 'ଉତ୍କଳ ଗୌରବ' ନାଟକର ଅଭିନୟ ଗୋଟିଏ ବର୍ଷ କରାଯାଇଥିଲା । ଗଗନବାବୁ ଆମକୁ ଅଭିନୟ ଶିଖାଇଥିଲେ ବା ନାଟକର ନିର୍ଦ୍ଦେଶନା ଦେଇଥିଲେ । ଉକ୍ତ ଯୋଡ଼ିକ ଯାକ ନାଟକରେ ମୁଁ ମୁଖ୍ୟ ନାରୀ ଭୂମିକାରେ ଅଭିନୟ କରିଥିଲି । ବିଶେଷତଃ 'ଚନ୍ଦ୍ରଗୁପ୍ତ' ନାଟକରେ ଦୁର୍ଦ୍ଧରା ଭୂମିକା ଅଭିନୟରେ ମେଡ଼ାଲ ପାଇ ପ୍ରଶଂସିତ ହୋଇଥିଲି । ସ୍କୁଲର ପୁରସ୍କାର ବିତରଣୀ ଉତ୍ସବରେ ମଧ୍ୟ ମୁଁ ଆବୃତ୍ତିରେ ଅଂଶଗ୍ରହଣ କରୁଥିଲି ଏବଂ ଏକାଙ୍କିକା ଅଭିନୟରେ ପାର୍ଟ୍ ନେଉଥିଲି ।

ତେଣେ ନିଜ ଗାଁ ଯାତ୍ରା ଦଳରେ ମଧ୍ୟ ବରାବର ଅଭିନୟ କରୁଥିଲି । କିନ୍ତୁ ସେ ସମୟରେ ସମଗ୍ର ଉତ୍ତର-ଓଡ଼ିଶାରେ ଦୁର୍ଭିକ୍ଷ ହେତୁ ଏବଂ ବିଶ୍ୱଯୁଦ୍ଧର କୁପରିମାଣରୁ ଆମ ଯାତ୍ରାଦଳର କାର୍ଯ୍ୟକ୍ରମ ଉଣା ଓ ଶିଥିଳ ହୋଇ ପଡ଼ିଥିଲା । ୧୯୪୮-୪୯ ମସିହା ବେଳକୁ ତାହା ପୂରାପୂରି ବନ୍ଦ ହୋଇଗଲା । ଦଶମ ଶ୍ରେଣୀରେ ପଢ଼ିବା ଯାଏଁ ମୁଁ

ଏହିପରି ଗାଁ ଯାତ୍ରାଦଳ ଓ ସ୍କୁଲ ନାଟ୍ୟାଭିନୟରେ ସକ୍ରିୟ ଅଂଶ ଗ୍ରହଣ କରୁଥିଲି । ତା'ପରେ ଆଗରେ ଥିବା ମେଟ୍ରିକୁଲେସନ୍ ପରୀକ୍ଷା ଦୃଷ୍ଟିରୁ ପଢ଼ାପଢ଼ିରେ ବିଘ୍ନ ଘଟିବାର ଆଶଙ୍କା କରି ମୋର ଅଭିଭାବକଙ୍କ ପ୍ରବର୍ତ୍ତନାରେ ନାଟ୍ୟକର୍ମଠାରୁ ଦୂରେଇ ରହିଲି । ଲେଖାଲେଖି କିନ୍ତୁ ବନ୍ଦ କରି ହେଲା ନାହିଁ । ମେଟ୍ରିକୁଲେସନ ସିଲାବସ୍‌ର ପାଠ୍ୟପୁସ୍ତକ ବାହାରେ ଗଳ୍ପ-ଉପନ୍ୟାସ-କବିତା-ନାଟକାଦି ପଢ଼ିବାରେ ମଧ ମୋର ବହୁ ସମୟ ଅତିବାହିତ ହୋଇ ଯାଉଥିଲା । ଗଗନବାବୁଙ୍କ ପରାମର୍ଶ କ୍ରମେ ମୁଁ ବଙ୍ଗଳା ଭାଷା ଶିଖୁଥିଲି ଏବଂ ବଙ୍ଗଳା ବହି ପଢ଼ା ଆରମ୍ଭ କରିଥିଲି । ମୋର ମତିଗତି ଲକ୍ଷ୍ୟ କରି ଅଧିକ ପାଠ ପଢ଼ିବା ପାଇଁ କବି ରବୀନ୍ଦ୍ରନାଥଙ୍କ ଶାନ୍ତିନିକେତନକୁ ଯିବା ଲାଗି ଗଗନବାବୁ ମୋତେ ପ୍ରବର୍ତ୍ତାଉଥିଲେ । ଥରେ ସେ ରବୀନ୍ଦ୍ରନାଥଙ୍କ ବଙ୍ଗଳା 'ଗୀତାଞ୍ଜଳି' କବିତା ବିହଟି ଆଣି ମୋତେ ପଢ଼ିବା ପାଇଁ ଦେଲେ । ମୁଁ ସ୍ପଷ୍ଟ ଭାବରେ ବୁଝି ନ ପାରିଲେ ମଧ କବିତାଗୁଡ଼ିକୁ ବାରମ୍ବାର ପଢ଼ିଲି । ଅଧିକାଂଶ କବିତା ମୋ ହୃଦୟକୁ ସ୍ପର୍ଶ କଲା । ସେତେବେଳେ କବିତା, ଗଳ୍ପାଦି ଯାହା ଲେଖୁଥାଏଁ, ଗଗନବାବୁଙ୍କୁ ଦେଖାଉଥାଏଁ ଏବଂ ତାଙ୍କ ଦ୍ୱାରା ଲେଖାଗୁଡ଼ିକ ସଂଶୋଧନ ବା ପରିମାର୍ଜନ କରାଇ ନେଉଥାଏଁ । ବୋଧହୁଏ ମୋର ଦଶମ ଶ୍ରେଣୀ ବର୍ଷ ଗଗନବାବୁ ଦୋଳସାହି ହାଇସ୍କୁଲ ଛାଡ଼ି ଚାଲିଗଲେ । ଓଡ଼ିଆ ଏମ୍.ଏ. ପରୀକ୍ଷା ଦେବା ପାଇଁ ସେ ଚାଲି ଯାଇଥିବାର ମନେ ପଡୁଛି । କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କର ଅକାଳ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ସହିତ ମୋର ଯୋଗାଯୋଗ ଅବ୍ୟାହତ ଓ ଅବିଚ୍ଛିନ୍ନ ରହିଥିଲା ।

ବିଭିନ୍ନ ପତ୍ରିକାରେ ଗଗନବାବୁଙ୍କ ଲେଖା ମୁଦ୍ରିତାକାରରେ ପ୍ରକାଶ ପାଉଥିଲା ଭଳି ମୋର ଲେଖା କିପରି ପ୍ରକାଶ ପାଆନ୍ତା, ସେ ଦିଗରେ ମୋର ବଳବତୀ ଇଚ୍ଛା ଓ ଆଗ୍ରହ ଦେଖା ଦେଇଥିଲା । ଛାପା ଅକ୍ଷରରେ ନିଜର ଲେଖା ସହିତ ନାମ ଦେଖିବା ପାଇଁ ପ୍ରାରମ୍ଭିକ ଅବସ୍ଥାରେ କେଉଁ କବି-ଲେଖକ ନ ଚାହାନ୍ତି ? ବିଭିନ୍ନ ପତ୍ରପତ୍ରିକାକୁ ପ୍ରକାଶ ପାଇଁ ଲେଖା ପଠାଉଥାଏ । କିନ୍ତୁ କୌଣସିଠାରେ ଲେଖା ପ୍ରକାଶ ପାଉ ନ ଥିବାରୁ ମନରେ ଦୁଃଖ ହେଉଥାଏ । ୧୯୪୭ ମସିହା ଅଗଷ୍ଟ କି ସେପ୍ଟେମ୍ବର ମାସରେ ହଠାତ୍ ଦିନେ ଦେଖିଲି — କଲିକତାରୁ ଶ୍ରୀ ଆକୁଳି ମିଶ୍ରଙ୍କ ସମ୍ପାଦନାରେ ପ୍ରକାଶିତ ସାପ୍ତାହିକ ପତ୍ର 'ଆଲୁଅ'ରେ ମୋର 'ଏଇ ପତାକାର ତଳେ' କବିତାଟି ପ୍ରକାଶ ଲାଭ କରିଛି । ମୋର ପ୍ରଥମ ରଚନା ନ ହେଲେହେଁ, ତାହାହିଁ ମୋର ପ୍ରଥମ ପ୍ରକାଶିତ ଲେଖା । ମୁଦ୍ରିତାକାରରେ ଲେଖାଟି ଦେଖି ସେତେବେଳେ ମୋ ମନରେ ଯେଉଁ ଆନନ୍ଦ ହୋଇଥିଲା, ତାହା ଭୁଲିବାର ନୁହେଁ । ଉଲ୍ଲସିତ ହୋଇ ମୁଦ୍ରିତ ଲେଖାଟି ଶିକ୍ଷକମାନଙ୍କୁ ଦେଖାଇଥିଲି; ସାଙ୍ଗ ସାଥୀମାନଙ୍କ ମେଳରେ ତାହା ବାରମ୍ବାର ଆବୃତ୍ତି କରି ଶୁଣାଇଥିଲି । ପାଠକମାନଙ୍କ ଉଦ୍ଦେଶ୍ୟରେ ଏଠାରେ ସେହି କବିତାଟି ଅବିକଳ ଉଦ୍ଧାର କରି ଦେଉଛି :—

ଏଇ ପତାକାର ତଳେ
ଆଜି ଚାଳିଶ କୋଟିର ବିଜୟ-ମସ୍ତକ
ଉଭା ଉଲ୍ଲାସ ଭରେ ।।
କେତେ ବିପ୍ଳବ, ଝଡ଼ ଓ ଝଞ୍ଜା ବହିଲା ଏହାରି ତଳେ
ସିପାହୀ ବିଦ୍ରୋହ, ଅଗଷ୍ଟ ବିପ୍ଳବ ଶୋହେ ଇତିହାସ ଗଳେ ।
କେତେ ବୀରପୁତ୍ର ଦେଶ ହିତ ପାଇଁ
ଶହୀଦ ହୋଇଲେ ନିଜ ପ୍ରାଣ ଦେଇ
ନେଲେ ସମାଧି ସାଦରେ
ଏଇ ପତାକାର ତଳେ ।।
ଜନ୍ମଭୂମିର କୋମଳ ବକ୍ଷେ ହେଲା କେତେ ରକ୍ତପାତ
ଭାଇ ହାଣିଲା ତା ନିଜର ଭାଇକୁ ତିଳେ ନ ହୋଇ ପଶ୍ଚାତ ।
ହିଂସା ଯୁଦ୍ଧର ତାଣ୍ଡବ ଲୀଳା
'ଯଦୁବଂଶ'ର ଧ୍ୱଂସ ସୃଜିଲା
ସନ୍ତାନ ରକତେ ମଣ୍ଡିଲା ଚିତା
ମାତୃଭୂମି ତା' ଭାଲେ
ଏଇ ପତାକାର ତଳେ ।।
ଏଇ ପତାକାର ତଳେ
ସୁପ୍ତ ଏ ଦେଶ ମୁକ୍ତ ଏତେ ଦିନେ
ଆନନ୍ଦ ଉଲ୍ଲାସ ଭୋଳେ ।
ବିରାଟ ଦେଶ ମୋ ସୁଜଳା ସୁଫଳା ।
ରାଜୁ ତହିଁ ସଦା ଶାନ୍ତି, ଶୃଙ୍ଖଳା
ବିଶ୍ୱର ଅଙ୍କେ ଜାଗୁ ମୋର ଦେଶ
ମାନବ ସାଗର ତୀରେ
ଏଇ ପତାକାର ତଳେ ।।

କବିତାଟିର ଭାଷାବିନ୍ୟାସ ଓ ଛନ୍ଦ ପ୍ରୟୋଗରେ ଯେ ଦୋଷତ୍ରୁଟି ରହିଛି, ତାହା ପରେ ଜାଣିପାରିଲି । କିନ୍ତୁ ସେତେବେଳେ ଆନନ୍ଦ-ଉଲ୍ଲାସ ମଧ୍ୟରେ ମନ ଭିତରେ ଟିକିଏ ବଡ଼ିମା ବା ଅହଙ୍କାର ପ୍ରକାଶ ପାଇଥିଲା – ମୁଁ ଯେପରି ଗୋଟାଏ କବି ବନିଗଲି !

ପ୍ରାୟ ପ୍ରତ୍ୟେକ ଶନିବାର ସ୍କୁଲରେ ଡିବେଟିଂ ସୋସାଇଟିର ବୈଠକ ବସୁଥିଲା । ଦଶମ ଓ ଏକାଦଶ ଶ୍ରେଣୀରେ ଥିଲାବେଳେ ମୁଁ ଦୁଇବର୍ଷ କାଳ ଡିବେଟିଂ ସୋସାଇଟି

ଦାୟିତ୍ୱରେ ଥିଲି । ପ୍ରତ୍ୟେକ ଅଧିବେଶନର ବିବରଣୀ ଲେଖିବା ସଂଗେ ସଂଗେ ଡିବେଟିଂ ପାଇଁ ଶିକ୍ଷକଙ୍କଠାରୁ ବିଷୟବସ୍ତୁ ବାଛି ଆଣିବା, ସେହି ବିଷୟବସ୍ତୁକୁ ନୋଟିସ୍ ଜରିଆରେ ବିଭିନ୍ନ କ୍ଲାସ୍‌ରେ ପ୍ରଚାର କରିବା ଏବଂ ବିଷୟବସ୍ତୁର ସପକ୍ଷ ବିପକ୍ଷରେ କହିବା ପାଇଁ ଛାତ୍ରମାନଙ୍କ ନାମ ତାଲିକା କରି ଆଣିବା ପ୍ରଭୃତି କାର୍ଯ୍ୟ ମୋତେ କରିବାକୁ ପଡୁଥିଲା । ଡିବେଟିଂର ବିଭିନ୍ନ ବିଷୟରେ ଶିକ୍ଷକମାନଙ୍କଠାରୁ ତଥ୍ୟାଦି ସଂଗ୍ରହ କରି ମୁଁ ନିଜେ ମଧ ସପକ୍ଷ ବା ବିପକ୍ଷରେ କିଛି କିଛି କହୁଥିଲି । ପ୍ରତ୍ୟେକ ଅଧିବେଶନରେ ଶିକ୍ଷକମାନଙ୍କ ମଧ୍ୟରୁ କେହି କେହି ଯୋଗ ଦେଉଥିଲେ ଏବଂ ସଭାରେ ଅଧକ୍ଷତା କରିବା ସଂଗେ ସଂଗେ ଶୃଙ୍ଖଳା ରକ୍ଷା ପ୍ରତି ନିଘା ରଖୁଥିଲେ । ଏବେ ଅଧିକାଂଶ ସ୍କୁଲରେ ଡିବେଟିଂ, ନାଟ୍ୟାଭିନୟ, କ୍ରୀଡ଼ାକୌତୁକାଦି ପାଠ୍ୟକ୍ରମ ବହିର୍ଭୂତ କାର୍ଯ୍ୟ (extra-curricular activities) ଉପରେ ଗୁରୁତ୍ୱ ଦିଆଯାଉ ନ ଥିବାର ଲକ୍ଷ୍ୟ କରୁଛି । ସ୍କୁଲ ପାଠ୍ୟକ୍ରମ ସହିତ ଛାତ୍ରମାନଙ୍କ ପକ୍ଷରେ ଏ ସବୁର ଉପଯୋଗିତା ବିଷୟ ଫେଡ଼ି କହିବା ଲୋଡ଼ା ନାହିଁ ।

ସେତେବେଳେ ସ୍କୁଲରେ ଛାତ୍ରୀଙ୍କ ସଂଖ୍ୟା ଥିଲା ଖୁବ୍ କମ୍ । ଯେଉଁ ଝିଅ ପିଲାମାନେ ପଢ଼ିବା ପାଇଁ ସ୍କୁଲକୁ ଆସୁଥିଲେ, ସେମାନେ ବଡ଼ କଟକଣା ମଧ୍ୟରେ ଚଳ ପ୍ରଚଳ ହେଉଥିଲେ । ସ୍କୁଲରେ ଛାତ୍ରମାନଙ୍କ ସହିତ ସେମାନେ ପ୍ରାୟ ମିଳାମିଶା କରୁ ନ ଥିଲେ । କ୍ଲାସ୍‌ରେ ଏକପାଖିଆ ଅଲଗା ହୋଇ ବସୁଥିଲେ । ଫ୍ରକ୍ ପିନ୍ଧା ସେତେବେଳେ ଝିଅମାନଙ୍କ ମଧ୍ୟରେ ବିଶେଷ ପ୍ରଚଳିତ ନ ଥିଲା; ପଞ୍ଜାବୀ-ସାଲଓ୍ୱାର ତ ଦୂରର କଥା ! ତେଣୁ ଦଶ-ଏଗାର ବର୍ଷ ବୟସର ସାନ ସାନ ଝିଅମାନେ ଶାଢ଼ୀ ବ୍ଲାଉଜ୍ ପିନ୍ଧି ସ୍କୁଲକୁ ଆସୁଥିବାରୁ ଆମ ଆଖିରେ ଯୁବତୀ ଭଳି ଦେଖାଯାଉଥିଲେ । ସେମାନଙ୍କ ପ୍ରତି ଆମ ମନରେ ଏକ ସଂଭ୍ରମମିଶା କୌତୂହଳ ପୂରି ରହିଥିଲା । ମଝିରେ ମଝିରେ ସେମାନଙ୍କ ସହ ଆମେ ଯେ ସାନ ସାନ ଦୁଷ୍ଟାମି କରୁ ନ ଥିଲୁଁ, ତାହା ନୁହେଁ । କିନ୍ତୁ ଶିକ୍ଷକମାନଙ୍କର ସତର୍କ ଦୃଷ୍ଟିରୁ ତାହା ବାଦ୍ ପଡୁ ନ ଥିଲା ଏବଂ ସେମାନେ ସବୁ ଦୁଷ୍ଟାମି ଓ ଗୋଳମାଳ ମେଣ୍ଟାଇ ଦେଉଥିଲେ ।

ହାଇସ୍କୁଲରେ ମୋର ସାଙ୍ଗସାଥୀ ଥିଲେ ବହୁତ । ସେମାନଙ୍କ ମଧ୍ୟରେ ଅତି ଅନ୍ତରଙ୍ଗ ଥିଲେ – ରବି (ପାଳିଆବିନ୍ଧା) ଏବଂ ଯଦୁମଣି-ଦିନମଣି (ଗାଜିପୁର) ଭ୍ରାତୃଦ୍ୱୟ । ପାଳିଆବିନ୍ଧାର ସୁପରିଚିତ ଡାକ୍ତର ଦେବେନ୍ଦ୍ରନାଥ ଦାସ ସ୍କୁଲ ପାଖରେ ଏକ ହୋମିଓପାଥି ଡାକ୍ତରଖାନା ଆରମ୍ଭ କରିଥାଆନ୍ତି, ରବି ତାଙ୍କରି ପୁତୁରା । ସେ ଟିକିଏ ସଂଗୀତ କଳାପ୍ରେମୀ ଥିବାରୁ ମୁଁ ତା' ସହିତ ଘନିଷ୍ଠ ଭାବରେ ମିଶିଯାଇ ପାରିଥିଲି । ଡାକ୍ତର ଦାସଙ୍କ ଘରକୁ ଯାଇ ଆମେ ବେଳେ ବେଳେ ଖିଆପିଆ କରୁଥିଲୁଁ – ନାନା ଗଳ୍ପ

ଗୁଜବ କରୁଥିଲୁଁ । ପାଳିଆବିନ୍ଧାର ରବି ଘରେ ଏବଂ ଗାଜିପୁରରେ ଯଦୁମଣି-ଦିନମଣିଙ୍କ ଘରେ ମଝିରେ ମଝିରେ ମୁଁ ଯାଇ ରହୁଥିଲି ସେମାନଙ୍କ ଘରର ଜଣେ ମଣିଷ ଭଳି । ରବି ତ ମୋତେ ଛାଡ଼ି ଚାଲିଗଲା ଅକାଳରେ ! କିନ୍ତୁ ଯଦୁମଣି-ଦିନମଣିଙ୍କ ସଖ୍ୟ ଓ ସାନିଧ ମୁଁ ଏ ପର୍ଯ୍ୟନ୍ତ ଲାଭ କରି ଆସୁଛି ।

ଚାହୁଁ ଚାହୁଁ ଚାରିଟି ବର୍ଷ (୧୯୪୪-୪୮) ଦୋଳସାହି ହାଇସ୍କୁଲରେ କିପରି ଯେ କଟିଗଲା, ଜାଣିପାରିଲି ନାହିଁ । ସୁଖର ଦିନଗୁଡ଼ିକ ଚାଲିଯାଏ ଚଞ୍ଚଳ । ଦୁଃଖର ଦିନଗୁଡ଼ିକ ଦୀର୍ଘ ହୋଇଯାଏ । ସେହି ବର୍ଷ ଚାରିଟି ହସି ଖେଳି ପାଠପଢ଼ି କିଛି ଶାଠ ମଧ ଶିଖି – ଅତିବାହିତ ହୋଇଯାଇଥିଲା । ମୋର ଆଦ୍ୟ ଯୌବନର କିଛି ସ୍ୱପ୍ନ, କିଛି ପରିକଳ୍ପନା ସେଠାରେ ରୂପ ନେବାକୁ ଆରମ୍ଭ କରିଥିଲା । ବସ୍ତୁତଃ ଦୋଳସାହି ହାଇସ୍କୁଲ ଥିଲା ମୋର ସାଂସ୍କୃତିକ ଜୀବନର ସୂତିକା-ଗୃହ । ୧୯୪୮ ମସିହା ପ୍ରଥମ ଭାଗରେ ମୁଁ ମେଟ୍ରିକୁଲେସନ ପରୀକ୍ଷା ଦେଲା ପରେ ପରେ ଦୋଳସାହି ହାଇସ୍କୁଲ ଛାଡ଼ିଲି । କିନ୍ତୁ ଚାରିବର୍ଷର ବହୁ ବିଚିତ୍ର ବର୍ଣ୍ଣିଳ ସ୍ମୃତିକୁ ଛାଡ଼ିପାରି ନାହିଁ । ତାହା ବୋଧହୁଏ ମୋର ଗଣ୍ଠିଧନ ହୋଇ ରହିବ ଜୀବନ ଥିବା ପର୍ଯ୍ୟନ୍ତ । ସେହି ସ୍ମୃତି-ଭଣ୍ଡାରଟିର ଉଭା ଯେତିକି, ପୋତା ସେତିକି । ତନ୍ମଧ୍ୟରୁ ମୁଁ କେତେ ବା ଭାଷାରେ ରୂପାୟିତ କରିପାରିବି ?

## ଭଦ୍ରକ କଲେଜର ଭଦ୍ରକୁମ୍ଭ

ସ୍ୱାଧୀନତା ଲାଭ ପରେ ପରେ ସମଗ୍ର ଓଡ଼ିଶାରେ ଶିକ୍ଷାଦୀକ୍ଷାର ଯେଉଁ ସଂପ୍ରସାରଣ କାର୍ଯ୍ୟ ଆରମ୍ଭ ହୋଇଥିଲା, ଭଦ୍ରକ କଲେଜ ପ୍ରତିଷ୍ଠା (୧୯୪୮) ତାହାରି ଏକ ଶୁଭଫଳ । ସେତେବେଳେ ରାଜ୍ୟରେ କଲେଜ ସଂଖ୍ୟା ଥିଲା ଅତ୍ୟନ୍ତ ଊଣା । କଟକସ୍ଥ ଖ୍ରୀଷ୍ଟ କଲେଜ, ଗଞ୍ଜାମ ବ୍ରହ୍ମପୁରସ୍ଥ ଖଲ୍ଲିକୋଟ କଲେଜ ଭଳି ବେସରକାରୀ ଶିକ୍ଷା ପ୍ରତିଷ୍ଠାନ କିମ୍ବା ରେଭେନ୍ସା କଲେଜ ପରି ସରକାରୀ ସଂସ୍ଥାର ସଂଖ୍ୟା ଥିଲା ଅଙ୍ଗୁଳିମେୟ । ସେତେବେଳର ପ୍ରାୟ ଦେଢ଼କୋଟି ଲୋକସଂଖ୍ୟା ବିଶିଷ୍ଟ ଏକ ଜାତିର ଉଚ୍ଚଶିକ୍ଷା ପାଇଁ ଏହା ଯେ ଅତ୍ୟନ୍ତ ଅପ୍ରତୁଳ ଥିଲା, ଏକଥା ଅସ୍ୱୀକାର କରିହେବ ନାହିଁ । ରାଜ୍ୟର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ [ ସେତେବେଳେ ରାଜ୍ୟ ମନ୍ତ୍ରୀମଣ୍ଡଳର ମୁଖ୍ୟଙ୍କୁ 'ପ୍ରଧାନମନ୍ତ୍ରୀ' ବୋଲା ଯାଉଥିଲା । ୧୯୪୯ ମସିହାରୁ ତାହା 'ମୁଖ୍ୟମନ୍ତ୍ରୀ' ଅଭିଧା ଗ୍ରହଣ କଲା । ] ଶିକ୍ଷା ବିସ୍ତାର କାର୍ଯ୍ୟ ତ୍ୱରାନ୍ୱିତ ହୋଇଥିଲା । ସେହି ପ୍ରକ୍ରିୟାରେ ଭଦ୍ରକ କଲେଜର ପ୍ରତିଷ୍ଠା । ମହତାବ ବାବୁ ଏହାର ପୃଷ୍ଠଭୂମିରେ ଥିଲେ ହେଁ, ଏଡ୍‌ଭୋକେଟ୍ ନରେନ୍ଦ୍ର ପ୍ରସାଦ ଦାସ କଲେଜ ଗଭର୍ଣ୍ଣିଙ୍ଗ

ବଡ଼ିର ସେକ୍ରେଟେରୀ ଭାବରେ ଶିକ୍ଷାୟତନଟି ଗଢ଼ି ତୋଳିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେତେବେଳେ ସମଗ୍ର ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଗୋଟିଏ ମାତ୍ର କଲେଜ – ଫକୀରମୋହନ କଲେଜ । ପ୍ରାୟ ସାଢ଼େ ପାଞ୍ଚ ଲକ୍ଷ ଲୋକସଂଖ୍ୟାବିଶିଷ୍ଟ ସମଗ୍ର ଭଦ୍ରକ ସବ୍‌ଡ଼ିଭିଜନ୍‌ରେ ଆଦୌ କଲେଜ ନ ଥିଲା । ତେଣୁ ଆରମ୍ଭରୁ ଭଦ୍ରକ କଲେଜରେ ଛାତ୍ର ସଂଖ୍ୟାର ଅଭାବ ପଡ଼ି ନ ଥିଲା । ସେଠାରେ ମୁଁ ପ୍ରଥମ ଦଳର ଛାତ୍ର ଭାବରେ ଆଇ.ଏ. କ୍ଲାସ୍‌ରେ ନାମ ଲେଖାଇ ପଢ଼ିଲି । ପ୍ରଥମେ ଖ୍ୟାତନାମା ଭଦ୍ରକ ହାଇସ୍କୁଲରେ ସକାଳ ଓଳି କ୍ଲାସ୍ ଆରମ୍ଭ ହେଉଥିଲା । କଲେଜ କ୍ଲାସ୍ ପରେ ଦିନ ସାଢ଼େ ଦଶଟା କି ଏଗାରଟା ବେଳକୁ ସ୍କୁଲ କ୍ଲାସ୍ ଆରମ୍ଭ ହେଉଥିଲା । କଲେଜର ବିଭିନ୍ନ ସଭାସମିତି ସ୍କୁଲ କ୍ଲାସ୍ ପରେ ଚାରିଟା କି ସାଢ଼େ ଚାରିଟା ବେଳେ କରାଯାଉଥିଲା । ବର୍ତ୍ତମାନ ଭଦ୍ରକର ଚାନ୍ଦୁଗଞ୍ଜ ଓ ଜଗନ୍ନାଥପୁର ମଧ୍ୟସ୍ଥଳରେ ଥିବା ସାଳନ୍ଦୀ ନଦୀ କୂଳସ୍ଥ ମନୋରମ ଆମ୍ରକୁଞ୍ଜକୁ ପରେ କଲେଜଟି ସ୍ଥାନାନ୍ତରିତ ହୋଇଥିଲା ।

ଦୋଳସାହି ହାଇସ୍କୁଲରେ ମୋର ଗୁରୁ ଓ ଗାଇଡ୍ ଗଗନବିହାରୀ ମହାନ୍ତି କଲେଜର ପ୍ରଥମ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ ଦେଇଥାନ୍ତି । ତାହାହିଁ ଥିଲା ଭଦ୍ରକ କଲେଜରେ ପଢ଼ିବା ପ୍ରତି ମୋ ପକ୍ଷରେ ଏକ ବଡ଼ ଆକର୍ଷଣ । ଅର୍ଥନୀତି ଅଧ୍ୟାପକ ପ୍ରଭାତ କୁମାର ଘୋଷ, ତର୍କଶାସ୍ତ୍ର ଅଧ୍ୟାପକ ଅଶ୍ୱିନୀ କୁମାର ନନ୍ଦୀ, ଭଦ୍ରକ ହାଇସ୍କୁଲର ପ୍ରଧାନ ଶିକ୍ଷକ ଗୋକୁଳାନନ୍ଦ ନାୟକ, କଲେଜ ଅଧ୍ୟକ୍ଷ ନାରାୟଣ ମୋହନ ଦେ ପ୍ରମୁଖ ଆମକୁ ଶିକ୍ଷାଦାନ କରୁଥିଲେ । ପ୍ରଥମେ ଆଇ.ଏ. ଶ୍ରେଣୀରେ ଖୁବ୍ କମ୍ ବିଷୟ ପଢ଼ା ହେବା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟର ଏଫିଲିଏସନ୍ ମିଳିଥିବାରୁ କଲେଜର ଅଧ୍ୟାପକଙ୍କ ସଂଖ୍ୟା ଥିଲା ସୀମିତ । ଅଧ୍ୟକ୍ଷ ଶ୍ରୀଯୁକ୍ତ ଦେ ଏବଂ ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ନାୟକ ଇଂରାଜୀ ଭାଷାସାହିତ୍ୟ ପଢ଼ାଉଥିଲେ । ଅଧ୍ୟକ୍ଷ ଜଣେ ବିଶିଷ୍ଟ କବି ଥିବାରୁ ଇଂରାଜୀ କବିତା ବେଶ୍ ବିହ୍ୱଳ ହୋଇ ପଢ଼ାଉଥିଲେ; ବେଳେବେଳେ ବୈଷ୍ଣବ ପଦାବଳୀର ଉଦାହରଣ ଦେଇ କ୍ଲାସ୍‌କୁ ଜମାଇ ରଖୁଥିଲେ । ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ନାୟକ ଇଂରାଜୀ ଭାଷା ଶିକ୍ଷା ଉପରେ ଗୁରୁତ୍ୱ ଦେଉଥିଲେ । ଇଂରାଜୀ ବ୍ୟାକରଣଜ୍ଞାନ ତାଙ୍କର ଉତ୍କୃଷ୍ଟ ଥିଲା । ଇଂରାଜୀରେ ମୁଁ ଟିକିଏ ପାରିଲାର ଥିବାରୁ ଉଭୟେ ମୋତେ ବିଶେଷ ଶ୍ରଦ୍ଧା କରୁଥିଲେ । ନାରାୟଣ-ମୋହନଙ୍କ ସାନ୍ନିଧ୍ୟ ମୁଁ ବିଶେଷ ଲାଭ କରିପାରି ନାହିଁ । କିନ୍ତୁ ଗୋକୁଳାନନ୍ଦଙ୍କ ସାନ୍ନିଧ୍ୟ ଓ ପରାମର୍ଶ ତାଙ୍କର ପରଲୋକ ପର୍ଯ୍ୟନ୍ତ ବରାବର ଲାଭ କରିପାରିଥିଲି । ପରେ କଲେଜରେ ପ୍ରାୟ ପନ୍ଦର ବର୍ଷ କର୍ମଜୀବନ କଟାଇଲା ବେଳେ ସେ ସର୍ବଦା ମୋ ପାଖେ ପାଖେ ଥିଲେ । କିଛି କାଳ ମୋ ଶ୍ୱାସରୋଗର ହୋମିଓପ୍ୟାଥି ଚିକିତ୍ସା କରିଥିଲେ । ପ୍ରତିବର୍ଷ ଗୁରୁଦିବସରେ ସେ ଇଂରାଜୀରେ ଖଣ୍ଡିଏ ଲେଖାଏଁ ପତ୍ର ଲେଖି ମୋ ପାଖକୁ ପଠାଉଥିଲେ;

ପତ୍ରଗୁଡ଼ିକ ଶିକ୍ଷା ଓ ଶିକ୍ଷକ ସଂପର୍କିତ ବହୁ ପରାମର୍ଶରେ ପରିପୂର୍ଣ୍ଣ ଥିଲା । ଏହିଭଳି ଛାତ୍ର-ଶିକ୍ଷକ ସଂପର୍କ ବର୍ତ୍ତମାନ ଢେର୍ ଊଣା ହୋଇଗଲାଣି । ଗଗନବାବୁ, ପ୍ରଭାତ ବାବୁ ଓ ନନ୍ଦୀବାବୁ ମଧ୍ୟ ନିଜ ନିଜ ବିଷୟ ଭଲ ପଢ଼ାଉଥିଲେ । ମୁଁ କିନ୍ତୁ ସିଲାବସ୍-ଅନୁସାରୀ ପାଠ୍ୟ ବିଷୟ ବେଶି ପଢ଼ାଶୁଣା କରୁ ନଥିଲି; ସିଲାବସ୍ ବହିର୍ଭୂତ ଓଡ଼ିଆ, ବଙ୍ଗଳା ଓ ଇଂରାଜୀ ବହି ପଢୁଥିଲି ଅଧିକ । କଲେଜ ଲାଇବ୍ରେରୀ ସେତେବେଳେ ସୁସଂପନ୍ନ ନ ଥିଲା । ଗଗନବାବୁ ଓ ପ୍ରଭାତ ବାବୁଙ୍କ ବ୍ୟକ୍ତିଗତ ସଂଗ୍ରହରୁ ମୁଁ ବହିପତ୍ର ଆଣି ପଢୁଥିଲି । ହାଇସ୍କୁଲରେ ମୁଁ ଗଗନବାବୁଙ୍କ ପରାମର୍ଶ କ୍ରମେ ବଂଗଳା ଓ ହିନ୍ଦୀ ଭାଷା ଶିଖିଥିଲି; କିନ୍ତୁ ବଂଗଳା ଭାଷା ଶିକ୍ଷାରେ ଯେତେ ଅଗ୍ରଗତି କରିଥିଲି, ହିନ୍ଦୀ ଭାଷାରେ ସେତେ ଅଗ୍ରଗତି କରିପାରି ନ ଥିଲି । ମାତୃଭାଷା ସହିତ ସେହିସବୁ ଭାଷା ମୋର ପରବର୍ତ୍ତୀ ସାହିତ୍ୟିକ ଜୀବନରେ ବିଶେଷ ସହାୟକ ହୋଇଥିଲା ।

ବର୍ତ୍ତମାନ କଲେଜ କ୍ୟାମ୍ପସ୍ ଭିତରେ ଗୁଡ଼ାଏ ଛାତ୍ରାବାସ-ଛାତ୍ରୀନିବାସ ଦେଖିଲେ କେହି ହୁଏତ ବିଶ୍ୱାସ କରିବେ ନାହିଁ ଯେ – ପ୍ରଥମାବସ୍ଥାରେ କଲେଜର କୌଣସି ଛାତ୍ରାବାସ ନ ଥିଲା । ସହପାଠୀ ଚକ୍ରଧର ଦାସ, ସୀତାକାନ୍ତ ବଳ, ବିଷ୍ଣୁ ମହାପାତ୍ର ଓ ଅନ୍ୟ କେତେକ ଛାତ୍ରବନ୍ଧୁଙ୍କ ସହିତ ସାଳନ୍ଦୀ କୂଳସ୍ଥ ବିଭିନ୍ନ ମେସ୍‌ରେ ମୁଁ ରହୁଥିଲି । ମେସ୍‌ରେ ଯେତେ ପଢ଼ାଶୁଣା ହେଉଥିଲା, ତତୋଽଧିକ ହେଉଥିଲା ଗଳ୍ପଗୁଜବ, କ୍ରୀଡ଼ା କୌତୁକ ଓ ବିଭିନ୍ନ ଧରଣର ଛୋଟକାଟର ଦୁଷ୍ଟାମି । ଚେସ୍ ଓ ତାଆସ ଖେଳରେ ବସିଥିଲା ବେଳେ ମୁଁ ଭୋକ ଶୋଷ ଭୁଲି ଯାଉଥିଲି । ସଂଧ୍ୟା ବେଳେ ସାଳନ୍ଦୀ କୂଳରେ, ନୋହିଲେ ପାଣି ନଥିଲା ବେଳେ ନଦୀ ଗର୍ଭସ୍ଥ ବାଲୁକା ଶଯ୍ୟାରେ ବସି ଘଣ୍ଟା ଘଣ୍ଟା କାଳ ଆଡ୍ଡା ମାରୁଥିଲି ବନ୍ଧୁମାନଙ୍କ ସହିତ । କବିଶେଖର ଚିନ୍ତାମଣି ମହାନ୍ତି ଆପଣା 'ସାଳନ୍ଦୀ' (୧୯୧୧) କାବ୍ୟରେ ସାଳନ୍ଦୀ ନଈର ତଥା ତାହାର ତଟଦେଶର ଯେଉଁ ଚମତ୍କାର ବର୍ଣ୍ଣନା ଦେଇଛନ୍ତି ଏବଂ ଆମେ କଲେଜରେ ପଢ଼ିଲା ବେଳେ (୧୯୪୮-୫୦) ତାହାର ଯେଉଁ ଆକର୍ଷଣୀୟ ଶୋଭା ସଂପଦ ଥିଲା, ତାହା ବର୍ତ୍ତମାନ ଦେଖିବାକୁ ମିଳେ ନାହିଁ । ସାଳନ୍ଦୀ ନଦୀବନ୍ଧ ଯୋଜନା କାର୍ଯ୍ୟକାରୀ ହେଲା ପରେ ନଦୀରେ ବନ୍ୟା ପ୍ରାୟ ଆସୁନାହିଁ । ନଦୀଗର୍ଭ କ୍ରମଶଃ ପୋତି ହୋଇ ଯାଉଛି । ସ୍ଥଳ-ବିଶେଷରେ କେତେକ ବ୍ୟକ୍ତି ନଦୀକୂଳକୁ ଜବର ଦଖଲ କରି ଘରବାଡ଼ି ତୋଳିଛନ୍ତି କିମ୍ବା ଚାଷକ୍ଷେତ କରିଛନ୍ତି । କ୍ରମେ ନଦୀଟି ଏକ ନାଳରେ ପରିଣତ ହେଉଥିବାର ମନେ ହେଉଛି । ପ୍ରାୟ ପଚାଶ ବର୍ଷ ପୂର୍ବର ଏହି 'ଉତ୍କଳ କାଳିନ୍ଦୀ'କୁ ଯେଉଁମାନେ ଦେଖିଥିବେ, ଏହାର ଏ ରୂପାନ୍ତର ସେମାନଙ୍କ ପ୍ରାଣରେ ପୀଡ଼ା ଦେବ । ସେତେବେଳେ ଆମର ଆଦ୍ୟ ଯୌବନର ସ୍ୱପ୍ନ ଓ ପରିକଳ୍ପନାକୁ ଏହା ରଙ୍ଗୀନ୍ କରିଥିଲା । ଏହାରି କୂଳ ବା କୋଳରେ ମୁଁ ଅଧିକାଂଶ

ସଂଧ୍ୟା କଟାଉଥିଲି । ରାତିରେ ମେସ୍‌କୁ ଆସି ଲଣ୍ଠନର କ୍ଷୀଣ ଆଲୋକରେ କବିତା ଲେଖୁଥିଲି, ନୋହିଲେ ଉପନ୍ୟାସ ପଢୁଥିଲି । ସେତେବେଳେ ଭଦ୍ରକ ସହରରେ ବିଜୁଳି ଆଲୁଅ ନ ଥିଲା । କିରୋସିନି ତେଲର ଲଣ୍ଠନ, କାରବାଇଡ୍ ଗ୍ୟାସ୍ କିମ୍ବା ପେଟ୍ରୋମ୍ୟାକ୍ସ ଲାଇଟ୍ ସହିତ ସେହି ସାନ ସହରଟିର ରାତ୍ରି ଅନ୍ଧକାର ଲୁଚକାଳି ଖେଳ ଖେଳୁଥିଲା ।

କିଛିକାଳ ପରେ – ବୋଧହୁଏ ଆମର ସେକେଣ୍ଡ ଇୟର୍ ବେଳକୁ ସାହାପୁରଠାରେ ଏକ କଲେଜ ହଷ୍ଟେଲର ବ୍ୟବସ୍ଥା କରାଗଲା । କେତେକ ସତୀର୍ଥଙ୍କ ସହିତ ମୁଁ ଯାଇ ସେଠାରେ ରହିଲି । ମେସ୍ ଓ ହଷ୍ଟେଲ ଭିତରେ ବିଶେଷ କିଛି ତଫାତ୍ ନ ଥିଲା । ପ୍ରଥମେ ହଷ୍ଟେଲର କେହି ସୁପରିନ୍‌ଟେଣ୍ଡେଣ୍ଟ୍ ନ ଥିଲେ । କଲେଜ ଗଭର୍ଣ୍ଣିଂ ବଡ଼ିର ସେକ୍ରେଟାରୀ ନରବାବୁ ମଝିରେ ମଝିରେ ଆସି ଆମର ଭଲ-ମନ୍ଦ ବୁଝିଯାଉଥିଲେ । ନରିପୁର – ଅସ୍ତଳ ଘାଟରେ ନଦୀ ପାର ହୋଇ କେତେବେଳେ ଛୋଟ ଡଙ୍ଗାରେ ତ, ଅଳ୍ପ ପାଣି ଥିଲା ବେଳେ ପାଣିରେ ପଶି – କବିଶେଖର ଚିନ୍ତାମଣି ଓ ହେଡ଼ମାଷ୍ଟର ଗୋକୁଳାନନ୍ଦ ବାବୁଙ୍କ ଘର ଦେଇ ଭଦ୍ରକ ହାଇସ୍କୁଲ ପରିସରସ୍ଥ କଲେଜକୁ ଯାଉଥିଲୁଁ । ସେତେବେଳେ ନୂଆବଜାର ରାଜଘାଟ ପୋଲଠାରୁ ଆରମ୍ଭ କରି ମହତାବ ଭବନ, ସବ୍‌ଜେଲ୍, ପୋଷ୍ଟ ଅଫିସ୍ ଓ ସିଭିଲ୍ ଏସ୍.ଡ଼ି.ଓ.ଙ୍କର ସରକାରୀ ବାସଭବନ ଦେଇ କଚେରୀ ପର୍ଯ୍ୟନ୍ତ ରାସ୍ତା ଏତେ ଗହଳି ନ ଥିଲା – ଦୋକାନ ବଜାର ଖୁବ୍ କମ୍ ଥିଲା । ସମଗ୍ର ସହରରେ ଆମୋଦପ୍ରମୋଦ ପାଇଁ ଥିଲା – ଭଦ୍ରକ କ୍ଲବ୍ ଏବଂ ତା' ପାଖକୁ ଲାଗି ଚାଳ ଛପରବାଲା ଏକ ଅସ୍ଥାୟୀ ସିନେମା ହଲ୍ । ସେଠାରେ କାଠ ଚେୟାର୍-ବେଞ୍ଚରେ ବସି ଜେନେରେଟର୍ ଉତ୍ପନ୍ନ ବିଜୁଳି ଆଲୁଅରେ ଆମେ ଚଳଚ୍ଚିତ୍ର ଦେଖୁଥିଲୁଁ ।

ସେତେବେଳେ କଲେଜରେ ଯେଉଁମାନେ ମୋର ସତୀର୍ଥ ସହପାଠୀ ଥିଲେ, ସେମାନଙ୍କ ମଧ୍ୟରେ ଉଲ୍ଲେଖନୀୟ ହେଉଛନ୍ତି – ଶ୍ରୀ ଗୟାଧର ବାରିକ୍ [ ସ୍ୱାଧୀନତା ସଂଗ୍ରାମୀ ଓ ବର୍ତ୍ତମାନ ଭଦ୍ରକର ବରିଷ୍ଠ ଏଡ଼ଭୋକେଟ୍ ], ଶ୍ରୀ ଗୌରଚନ୍ଦ୍ର ମହାପାତ୍ର [ କବି ଓ ସ୍ୱାଧୀନତା ସଂଗ୍ରାମୀ ], ଶ୍ରୀ ବୈରାଗୀ ଚରଣ ଜେନା [ ପରେ ଜନନେତା ଓ ରାଜ୍ୟର ମନ୍ତ୍ରୀ ], ଶ୍ରୀ ବିଷ୍ଣୁ ମହାପାତ୍ର ଓ ସ୍ୱର୍ଗତ ନିର୍ମଳ ମହାପାତ୍ର [ ପରେ ଜନସେବୀ ଓ କଂଗ୍ରେସ କର୍ମୀ ], ସୁବୀର କୁମାର ସିଂହ [ ପରେ ରାଜ୍ୟର ପରିସଂଖ୍ୟାନ ବିଭାଗ ଡିରେକ୍ଟର ], ବିବେକାନନ୍ଦ ମହାପାତ୍ର ଓ ସତ୍ୟନାରାୟଣ ମହାନ୍ତି [ ପରେ ପ୍ରଶାସକ ], ଶ୍ରୀ ଗୋଲୋକ ପ୍ରସାଦ ରାୟ [ ବର୍ତ୍ତମାନ ବରିଷ୍ଠ ଏଡ଼୍‌ଭୋକେଟ୍ ], ଗଗନ ବିହାରୀ ମହାପାତ୍ର [ ସମାଜସେବୀ ଓ ଶିକ୍ଷକ ] ପ୍ରମୁଖ । ଆହୁରି କେତେକଙ୍କ ମୁହଁ ଆଖି ଆଗରେ ଭାସି ଉଠୁଥିଲେ ମଧ୍ୟ ସେମାନଙ୍କ ନାମ ମନେ ପଡୁନାହିଁ । ଆମର ସହପାଠିନୀ ଥିଲେ ମାତ୍ର ୩ ଜଣ – ଶ୍ରୀମତୀ ସୁରମା ମହାପାତ୍ର [ କମ୍ୟୁନିଷ୍ଟ ନେତା ସ୍ୱର୍ଗତଃ

ଶୈଳେନ୍ ମହାପାତ୍ରଙ୍କ ସହଧର୍ମିଣୀ ], ଶ୍ରୀମତୀ ବିଷ୍ଣୁପ୍ରିୟା ଦାସ ଓ ନନ୍ଦରାଣୀ ଦାସ [ ଉଭୟେ ବାଉଦପୁର ନିବାସିନୀ ଓ ପରେ ଶିକ୍ଷିକା ] । ଏବେ କଲେଜରେ ଛାତ୍ରୀ ସଂଖ୍ୟା ବହୁତ ବଢ଼ିଯାଇଛି; ଭଦ୍ରକରେ ସ୍ୱତନ୍ତ୍ର ଭାବରେ ଏକ ମହିଳା କଲେଜ ମଧ୍ୟ ପ୍ରତିଷ୍ଠିତ ହୋଇଛି । ସେତେବେଳେ କିନ୍ତୁ ନାରୀଶିକ୍ଷା [ ଉଚ୍ଚଶିକ୍ଷା କ୍ଷେତ୍ରରେ ] ବିଶେଷ ପ୍ରସାର ଲାଭ କରି ନ ଥିଲା । କଲେଜ କ୍ଲାସ୍‌ରେ ଛାତ୍ରୀମାନେ ଏକତ୍ର ଏକପାଖିଆ ହୋଇ ବସୁଥିଲେ ଏବଂ ଛାତ୍ରମାନଙ୍କ ସହ ବିଶେଷ ମିଳାମିଶା କରୁ ନ ଥିଲେ ।

ଭଦ୍ରକ କଲେଜରେ ସେତେବେଳେ ଏକ ସାହିତ୍ୟ ସଭା ସଂପର୍କରେ ମୋର ସ୍ମୃତି ଅମଳିନ ହୋଇ ରହିଛି । କାନ୍ତକବି ସ୍ୱର୍ଗତଃ ଲକ୍ଷ୍ମୀକାନ୍ତ ମହାପାତ୍ର ସେହି ସଭାରେ ଉଦ୍‌ବୋଧନ ଦେଇଥିଲେ । ଭଦ୍ରକ ନୂଆବଜାରସ୍ଥ ତାଙ୍କର ବାସଗୃହ 'ଭାଗବତ ଭବନ'ରୁ କଲେଜର ସଭାସ୍ଥଳକୁ [ ଭଦ୍ରକ ହାଇସ୍କୁଲ ହଲ୍ ] ମୁଁ ତାଙ୍କୁ ନିଆ-ଅଣା କରାଇଥିଲି । ଘର ଭିତରୁ ଜଣେ ପରିଚାରକ ପିଠିରେ ନାଉ ହୋଇ ସେ ଗୋଟିଏ ହାତଟଣା ରିକ୍ସା ପାଖକୁ ଆସିଲେ ଏବଂ ରିକ୍ସାରେ ବସି ସଭାସ୍ଥଳରେ ପହଞ୍ଚିଲା ପରେ ସେହିପରି ନାଉ ହୋଇ ଯାଇ ମଞ୍ଚାସୀନ ହେଲେ । ଦୁରାରୋଗ୍ୟ ବ୍ୟାଧିରେ ତାଙ୍କର ହାତ ଓ ଗୋଡ଼ର କିଛି କିଛି ଅଂଶ କ୍ଷୟପ୍ରାପ୍ତ ହୋଇଯାଇଥିଲା । କିନ୍ତୁ ତାଙ୍କର ମସ୍ତିଷ୍କ ଓ ହୃଦୟ-ମନ ଥିଲା ଅବିକୃତ । ସାହିତ୍ୟ ସୃଷ୍ଟି ଏକ ପ୍ରକାର କଣ୍ଡୁ; ସେହି କଣ୍ଡୁର ଗଲୁ ଆରମ୍ଭ ହେଲେ, ଗଲୁ ନ ମରିବା ଯାଏଁ ଅର୍ଥାତ୍ ସାହିତ୍ୟ ସୃଷ୍ଟିଟି ଶେଷ ନ ହେବା ପର୍ଯ୍ୟନ୍ତ ସ୍ଥାନ-କାଳ ଭୁଲି କୁଣ୍ଡାଇବାକୁ ପଡ଼େ । – ଏହିପରି ସାହିତ୍ୟ ସଂପର୍କରେ କେତେକ ଉପାଦେୟ କଥା କାନ୍ତକବି ହାସ୍ୟରସାତ୍ମକ ଭଙ୍ଗୀରେ ବ୍ୟକ୍ତକରି ସେଦିନ ପ୍ରାୟ ଘଣ୍ଟାଏ କାଳ ଶ୍ରୋତୃମଣ୍ଡଳୀକୁ ହସାଇ ରସାଇ ବେଦମ୍ କରି ପକାଇଥିଲେ । 'ଡଗର' ପତ୍ରିକାରେ ସେତେବେଳେ ପ୍ରକାଶ ପାଉଥିବା ତାଙ୍କର ରଙ୍ଗବ୍ୟଙ୍ଗର ରଚନା ପାଠକ ସମାଜରେ ବେଶ୍ ଆଦର ଲାଭ କରୁଥିଲା । ତାଙ୍କର ବାସଗୃହ ସମ୍ମୁଖରେ ଥିବା ଗୋପୀନାଥ ପ୍ରେସ୍‌ରୁ ସେହି ସମୟରେ 'ଡଗର' ପ୍ରକାଶ ପାଉଥିଲା; ପରେ ପରେ ତାର ପ୍ରକାଶ-ସ୍ଥଳ କଟକକୁ ସ୍ଥାନାନ୍ତରିତ ହୋଇଗଲା । ଗୋପୀନାଥ ପ୍ରେସ୍ ବ୍ୟତୀତ ଭଦ୍ରକ ପୁରୁଣା ବଜାରରେ ବହି-ବ୍ୟବସାୟୀ କୃଷ୍ଣ ସାହୁଙ୍କର ଆଉ ଗୋଟିଏ ପ୍ରେସ୍ ଥିଲା । ଏବେ ଭଦ୍ରକରେ ତ ଗଣ୍ଡାଗଣ୍ଡା ପ୍ରେସ୍ । ସେତେବେଳେ ଏହି ଦୁଇଟି ମାତ୍ର ପ୍ରେସ୍‌ରୁ ବହୁ ଚଟିଚଟି ବହି ମୁଦ୍ରିତାକାରରେ ପ୍ରକାଶ ପାଉଥିଲା; ସେଗୁଡ଼ିକ ମଧ୍ୟରେ ଥିଲା ଭଜନ, ଜଣାଣ, ଦେବଦେବୀଙ୍କ ମାହାତ୍ମ୍ୟ, ଝିଅମାନଙ୍କର କାନ୍ଦଣା ଗୀତ, ନାଟିକା ଓ ସ୍ୱଦେଶ ପ୍ରେମାତ୍ମକ ସଂଗୀତ । ପର୍ବପର୍ବାଣୀରେ ମେଳା ଯାତ୍ରା ସ୍ଥଳରେ ସେଗୁଡ଼ିକ ଭଲ ବିକ୍ରୀ ହେଉଥିଲା । ସେହିପରି କିଛି ବହି ମୁଁ ଗୋପୀନାଥ ପ୍ରେସ୍ ଓ କୃଷ୍ଣ ସାହୁ ପ୍ରେସ୍‌ରୁ ସଂଗ୍ରହ କରିଥିଲି; ଅଦ୍ୟାବଧି ସେଗୁଡ଼ିକ ମୋ ବସ୍ତାନିରେ ସାଇତା ହୋଇ ରହିଛି ।

କଲେଜରୁ ସେତେବେଳେ 'ଅର୍ଘ୍ୟ' ନାମକ ପତ୍ରିକାଟିଏ ମୁଦ୍ରିତାକାରରେ ପ୍ରକାଶ ପାଇଥିଲା; କଲେଜ ମୁଖପତ୍ର 'ପଲ୍ଲୀ ଭାରତୀ' ପରେ ପ୍ରକାଶିତ ହେଲା । ଏବର ସୁପରିଚିତ କଥାକାର ଓ ଅନୁବାଦକ ଶ୍ରୀ ଯୁଗଳ କିଶୋର ଦତ୍ତ ସେତେବେଳେ ଭଦ୍ରକରେ ରହୁଥିଲେ; ତାଙ୍କର ବାପା ବୋଧହୁଏ ସ୍କୁଲ ବିଭାଗର ଡି.ଆଇ. ଥିଲେ । ଆମେ ଦୁହେଁ ମିଶି ଗୋଟିଏ ହାତଲେଖା ପତ୍ରିକା ଭଦ୍ରକରୁ ବାହାର କରିଥିଲୁଁ । କଲେଜ ସହିତ ପତ୍ରିକାର କୌଣସି ସଂପର୍କ ନ ଥିଲେ ହେଁ, କେତେକ କଲେଜ ଛାତ୍ର ଏଥିରେ ଲେଖା ପ୍ରକାଶ ପାଇଁ ଦେଇଥିଲେ । ପତ୍ରିକାର ଦୁଇ ତିନୋଟି ସଂଖ୍ୟା ବାହାରି ଥିବାର ମନେ ପଡୁଛି । ଏହା ପଛରେ ମୋର ଗୁରୁ ଅଧ୍ୟାପକ ଗଗନବିହାରୀ ମହାନ୍ତିଙ୍କର ଶୁଭେଚ୍ଛା ଓ ପରାମର୍ଶ ରହିଥିଲା । ଏଥିରେ ମୁଖ୍ୟତଃ କବିତା ଓ ଗଳ୍ପ ପ୍ରକାଶ ପାଇଥିଲା । ମୋର ହସ୍ତାକ୍ଷର ଭଲ ଥିବାରୁ ମୁଁ ଏହାର ଅଧିକାଂଶ ଲେଖା ଯଥାସମ୍ଭବ ସୁନ୍ଦର କରି ଉତାରି ଦେଉଥିଲି । ଯୁଗଳ ବାବୁ ତହିଁରେ କିଛି ଚିତ୍ର ଆଙ୍କି ଦେଉଥିଲେ ।

ଏହି ସାହିତ୍ୟ-କର୍ମ ଓ କଲେଜର ପଢ଼ାଶୁଣା ବ୍ୟତୀତ ମୁଁ ସେତେବେଳେ କେତେକ ରାଜନୈତିକ କାର୍ଯ୍ୟକଳାପରେ ମଧ ନିଜକୁ ସଂପୃକ୍ତ କରାଇଥିଲି । ଭଦ୍ରକର କମ୍ୟୁନିଷ୍ଟ ନେତା ଶୈଳେନ୍ ମହାପାତ୍ରଙ୍କ ସହ ମୋର ସଂପର୍କ ସ୍ଥାପିତ ହୋଇଥିଲା । ତାଙ୍କ ସହିତ କେତେକ ସଭାସମିତିରେ ଯାଇ ଯୋଗ ଦେଇଥିଲି ଏବଂ ପାର୍ଟିର କିଛି ଲିଫ୍‌ଲେଟ୍ ଲେଖାଲେଖି କରିଥିଲି । ମୋର ସହପାଠୀ ଶ୍ରୀ ବୈରାଗୀ ଜେନା ସେତିକିବେଳେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ମୁଁ କିନ୍ତୁ ବିଧିବଦ୍ଧ ଭାବରେ ପାର୍ଟିର ଅନ୍ତର୍ଭୁକ୍ତ ହୋଇ ନ ଥିଲି । ସେତେବେଳେ ଭଦ୍ରକରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରବଳ ପ୍ରଭାବ ରହିଥିଲା । ମହମ୍ମଦ ହନିଫ୍, ଗୋକୁଳାନନ୍ଦ ମହାନ୍ତି ପ୍ରମୁଖ ଥିଲେ ସ୍ଥାନୀୟ କଂଗ୍ରେସ ନେତା । ସ୍ୱାଧୀନତା ସଂଗ୍ରାମୀ ତଥା ସେବର ମୁଖ୍ୟମନ୍ତ୍ରୀ ମହତାବ ବାବୁ ଏବଂ ଏମାନଙ୍କ ପ୍ରଭାବ, ପ୍ରତିପତ୍ତିରେ କଂଗ୍ରେସ ସଂଗଠନ ଭଦ୍ରକ ଅଞ୍ଚଳରେ ସୁଦୃଢ଼ ଥିଲା । ସ୍ୱାଧୀନତା ସଂଗ୍ରାମୀ ଗୋକୁଳାନନ୍ଦ ମହାନ୍ତି କଂଗ୍ରେସର ରଚନାତ୍ମକ କାର୍ଯ୍ୟକ୍ରମ ଜରିଆରେ ପାର୍ଟିର ମର୍ଯ୍ୟାଦା ବୃଦ୍ଧି କରିଥିଲେ ।

ପଣା ସଂକ୍ରାନ୍ତି ସମୟରେ ଭଦ୍ରକର ବିଭିନ୍ନ ସ୍ଥାନରେ 'ମୋଗଲ ତାମସା'ର ଅଭିନୟ ହେଉଥିଲା । ସଂଗତ, କୁଆଁସ, ସାହାପୁର, ଜାନୁଗଞ୍ଜ ପ୍ରଭୃତି ସ୍ଥାନରେ ମୁଁ ଏହି ଅଭିନୟ ଦେଖି ମୁଗ୍ଧ ହୋଇଥିଲି । କିନ୍ତୁ ସେତେବେଳେ କବି ବଂଶୀବଲ୍ଲଭ ଗୋସ୍ୱାମୀଙ୍କର ଏହି ଲୋକପ୍ରିୟ ନାଟ୍ୟକୃତିକୁ ସଂଗ୍ରହ ଓ ସଂକଳନ ପୂର୍ବକ ଗ୍ରନ୍ଥାକାରରେ ପ୍ରକାଶ କରିବା ମୋର ଚିନ୍ତା-ଚେତନାରେ ସ୍ଥାନ ପାଇ ନଥିଲା । ଏହାର ପ୍ରାୟ ପାଞ୍ଚବର୍ଷ ପରେ ଯେତେବେଳେ ଭଦ୍ରକ ମୋର କର୍ମକ୍ଷେତ୍ର ହେଲା, ସେତେବେଳେ ତାମସାର ପାଣ୍ଡୁଲିପି ସଂଗ୍ରହ ଓ ସଂକଳନ କରିବାକୁ ଯତ୍ନବାନ୍ ହେଲି । ୧୯୬୬ ମସିହାରେ ଭଦ୍ରକର ଭାଗବତ

ପ୍ରେସ୍‌ରୁ ଏହା ମୁଦ୍ରିତାକାରରେ ପ୍ରକାଶିତ ହେଲା । ପ୍ରଥମାବସ୍ଥାରେ ଭଦ୍ରକ କଲେଜରେ ନାଟ୍ୟ ସଂସଦ ନଥିଲା । କିନ୍ତୁ ବାଲ୍ୟକାଳରୁ ନାଟ୍ୟ କର୍ମ ପ୍ରତି ମୋର ପ୍ରବଳ ପ୍ରବଣତା ରହିଥିବାରୁ ମୁଁ କଲେଜ ବାହାରେ ନାଚଗୀତ ଓ ଯାତ୍ରାଭିନୟ ଦେଖିବାକୁ ଯାଉଥିଲି – ଅଧିକାଂଶ ଫିଲ୍ମ୍ ଦେଖୁଥିଲି । ଏହାଦ୍ୱାରା ମୋର ଲେଖାପଢ଼ା ଯେ କିଛି ପରିମାଣରେ ବାଧାପ୍ରାପ୍ତ ହେଉଥିଲା, ତହିଁରେ ସନ୍ଦେହ ନାହିଁ ।

ଭଦ୍ରକ କଲେଜର ପ୍ରଥମ ଦୁଇବର୍ଷ [୧୯୪୮-୫୦] ଚାହୁଁ ଚାହୁଁ କିପରି କଟିଗଲା, ଜାଣିପାରିଲି ନାହିଁ । ତୃତୀୟ ବର୍ଷ କଲେଜରେ ବି.ଏ. ଶ୍ରେଣୀ ନ ଫିଟିବାରୁ ଉଚ୍ଚଶିକ୍ଷା ପାଇଁ ମୋତେ ରେଭେନ୍ସା କଲେଜକୁ ଯିବାପାଇଁ ପଡ଼ିଲା । କିନ୍ତୁ ଠିକଣା ବେଳରେ ଭଦ୍ରକ କଲେଜର ଭଦ୍ରକୁମ୍ଭ ବସିଥିଲା; ନରେନ୍ଦ୍ର ପ୍ରସାଦ ଦାସ, ଛକଡ଼ି ମହାନ୍ତି ପ୍ରମୁଖଙ୍କ ତ୍ୟାଗ ବଳରେ ଏବଂ ମହତାବ ବାବୁଙ୍କ ପୃଷ୍ଠପୋଷକତାରେ କଲେଜଟି ପରେ ପରେ ଉତ୍ତରୋତ୍ତର ଉନ୍ନତି କରି ଚାଲିଲା । କ୍ରମେ ସମଗ୍ର ରାଜ୍ୟରେ ଏହା ଉଚ୍ଚଶିକ୍ଷାର ଏକ ବିଶିଷ୍ଟ କେନ୍ଦ୍ର ହୋଇ ଉଠିଲା । ଏଠାରେ ଯେଉଁ ସିଦ୍ଧିପ୍ରଦ ଶିକ୍ଷାଯଜ୍ଞର ଅନୁଷ୍ଠାନ ହେଲା, ତହିଁରେ ୧୯୫୫-୫୬ ମସିହାରୁ ଦୀର୍ଘ ପନ୍ଦର ବର୍ଷକାଳ ମୋତେ ଯଥାଶକ୍ତି ହବି ପ୍ରଦାନ କରିବାକୁ ସୁଯୋଗ ମିଳିଥିଲା । ତାହା କିନ୍ତୁ ଭିନ୍ନ ପ୍ରସଙ୍ଗ ।

## ଅନନ୍ୟ ନାଟ୍ୟକର୍ମ : 'ଚଇତି ତାମସା'

ଏକଦା ଯେଉଁ ବୃକ୍ଷର ଫଳ ହୋଇ ଫଳିଥିଲି, ପରେ ସେହି ବୃକ୍ଷକୁ ଫଳେଇବା ପାଇଁ ନିମିତ୍ତ ହୋଇ ପଡ଼ିଲି । ବର୍ଷେ ନୁହେଁ, ଦୁଇ ବର୍ଷ ନୁହେଁ, ଦୀର୍ଘ ପନ୍ଦର ବର୍ଷ କାଳ ୧୯୫୬ରୁ ୧୯୭୧ ପର୍ଯ୍ୟନ୍ତ ଭଦ୍ରକ କଲେଜରେ ମୋର କର୍ମଜୀବନ ପତନ-ଅଭ୍ୟୁଦୟ ବନ୍ଧୁର ପନ୍ଥାରେ ଗତି କରିଥିଲା । କିନ୍ତୁ ସେହି କଲେଜରେ ୧୯୪୮ରୁ ୧୯୫୦ ପର୍ଯ୍ୟନ୍ତ ଦୁଇ ବର୍ଷ କାଳ ମୋର ଛାତ୍ରଜୀବନ ଥିଲା ବେଶ୍ ସଂସ୍କୃତି-ସଂପନ୍ନ ଓ ରୋମାଞ୍ଚକର ।

ସ୍ୱାଧୀନତା ଲାଭ ପରେ ପରେ ସମଗ୍ର ଓଡ଼ିଶାରେ ଶିକ୍ଷାଦୀକ୍ଷାର ଯେଉଁ ସଂପ୍ରସାରଣ କାର୍ଯ୍ୟ ଆରମ୍ଭ ହୋଇଥିଲା, ଭଦ୍ରକ କଲେଜ ପ୍ରତିଷ୍ଠା (୧୯୪୮) ତାହାରି ଏକ ଶୁଭଫଳ । ସେତେବେଳେ ରାଜ୍ୟରେ କଲେଜ ସଂଖ୍ୟ ଥିଲା ଅତ୍ୟନ୍ତ ଊଣା । ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା-ବିସ୍ତାର ମଧ୍ୟ ସେହିପରି ଶୋଚନୀୟ ଥିଲା । ରାଜ୍ୟର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଶିକ୍ଷା ବିସ୍ତାର କାର୍ଯ୍ୟ ତ୍ୱରାନ୍ୱିତ ହୋଇଥିଲା । ସେହି ପ୍ରକ୍ରିୟାରେ ଭଦ୍ରକ କଲେଜର ପ୍ରତିଷ୍ଠା । ମହତାବବାବୁ

ଏହାର ପୃଷ୍ଠଭୂମିରେ ଥିଲେ ହେଁ ଏଡ଼ଭୋକେଟ୍ ନରେନ୍ଦ୍ରପ୍ରସାଦ ଦାସ କଲେଜ ଗଭର୍ଣ୍ଣିଂ ବଡ଼ିର ସେକ୍ରେଟେରୀ ଭାବରେ ଶିକ୍ଷାୟତନଟି ଗଢ଼ି ତୋଳିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେତେବେଳେ ସମଗ୍ର ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଗୋଟିଏ ମାତ୍ର କଲେଜ – ଫକୀରମୋହନ କଲେଜ । ପ୍ରାୟ ସାଢ଼େ ପାଞ୍ଚ ଲକ୍ଷ ଲୋକସଂଖ୍ୟା-ବିଶିଷ୍ଟ ସମଗ୍ର ଭଦ୍ରକ ସବଡ଼ିଭିଜନ୍‌ରେ ଆଦୌ କଲେଜ ନ ଥିଲା । ତେଣୁ ଆରମ୍ଭରୁ ଭଦ୍ରକ କଲେଜରେ ଛାତ୍ରସଂଖ୍ୟାର ଅଭାବ ପଡ଼ି ନ ଥିଲା । ସେଠାରେ ମୁଁ ପ୍ରଥମ ଦଳର ଛାତ୍ର ଭାବରେ ଆଇ.ଏ. କ୍ଲାସ୍‌ରେ ନାମ ଲେଖାଇ ପଢ଼ିଲି । ପ୍ରଥମେ ଖ୍ୟାତନାମା ଭଦ୍ରକ ହାଇସ୍କୁଲରେ ସକାଳ ଓଳି କ୍ଲାସ୍ ହେଉଥିଲା । ବର୍ତ୍ତମାନ ଭଦ୍ରକର ଜାନୁଗଞ୍ଜ ଓ ଜଗନ୍ନାଥପୁର ମଧ୍ୟସ୍ଥଳରେ ଥିବା ସାଳନ୍ଦୀ ନଦୀ କୂଳସ୍ଥ ମନୋରମ ଆମ୍ରକୁଞ୍ଜକୁ ପରେ କଲେଜଟି ସ୍ଥାନାନ୍ତରିତ ହୋଇଥିଲା ।

ଦୋଳସାହୀ ହାଇସ୍କୁଲରେ ମୋର ଗୁରୁ ଓ ଗାଇଡ୍ ଗଗନ ବିହାରୀ ମହାନ୍ତି କଲେଜର ପ୍ରଥମ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ ଦେଇ ଥାଆନ୍ତି । ଅର୍ଥନୀତି ଅଧ୍ୟାପକ ପ୍ରଭାତ କୁମାର ଘୋଷ, ତର୍କଶାସ୍ତ୍ରର ଅଧ୍ୟାପକ ଅଶ୍ୱିନୀ କୁମାର ନନ୍ଦୀ, କଲେଜର ପ୍ରଥମ ଅଧ୍ୟକ୍ଷ କବି ନାରାୟଣ ମୋହନ ଦେ, ଭଦ୍ରକ ହାଇସ୍କୁଲର ପ୍ରଧାନ ଶିକ୍ଷକ ଗୋକୁଳାନନ୍ଦ ନାୟକ ପ୍ରମୁଖ ଆମକୁ ଶିକ୍ଷାଦାନ କରୁଥିଲେ । ଅଧ୍ୟକ୍ଷ ଶ୍ରୀ ଦେ ଏବଂ ପ୍ରଧାନ ଶିକ୍ଷକ ଶ୍ରୀ ନାୟକ ଇଂରାଜୀ ଭାଷା-ସାହିତ୍ୟ ପଢ଼ାଉଥିଲେ । ଇଂରାଜୀରେ ମୁଁ ଟିକିଏ ପାରିଲାର ଥିବାରୁ ଉଭୟେ ମୋତେ ବିଶେଷ ଶ୍ରଦ୍ଧା କରୁଥିଲେ ।

ପଣା ସଂକ୍ରାନ୍ତି ସମୟରେ ଭଦ୍ରକର ବିଭିନ୍ନ ସ୍ଥାନରେ 'ଚଇତି ତାମସା'ର ଅଭିନୟ ହେଉଥିଲା । ସଙ୍ଗତ, କୁଆଁସ, ସାହାପୁର, ଜାନୁଗଞ୍ଜ ପ୍ରଭୃତି ସ୍ଥାନରେ ମୁଁ ଏହି ଅଭିନୟ ଦେଖି ମୁଗ୍ଧ ହୋଇଥିଲି । କିନ୍ତୁ ସେତେବେଳେ ଏହି ଲୋକ ପ୍ରିୟ ନାଟ୍ୟକୃତିକୁ ସଂଗ୍ରହ ଓ ସଂକଳନ ପୂର୍ବକ ଗ୍ରନ୍ଥାକାରରେ ପ୍ରକାଶ କରିବା ମୋର ଚିନ୍ତା-ଚେତନାରେ ସ୍ଥାନ ପାଇ ନଥିଲା । ଏହାର ପ୍ରାୟ ପାଞ୍ଚ ବର୍ଷ ପରେ ଯେତେବେଳେ ଭଦ୍ରକ ମୋର କର୍ମକ୍ଷେତ୍ର ହେଲା, ମହତାବବାବୁଙ୍କ 'ଓଡ଼ିଶା ଇତିହାସ' ଓ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଗବେଷଣା-ପ୍ରବନ୍ଧ 'ଓଡ଼ିଆ ଲୋକଗୀତ ଓ କାହାଣୀ'ରୁ ତାମସା ସଂପର୍କିତ ମନ୍ତବ୍ୟ ପଢ଼ି ମୁଁ ଏହାର ପାଣ୍ଡୁଲିପି ସଂଗ୍ରହ ଓ ସଂକଳନ କରିବାକୁ ଯତ୍ନବାନ୍ ହେଲି । ପାଣ୍ଡୁଲିପି ସଂଗ୍ରହ କାର୍ଯ୍ୟ ଆଦୌ ସହଜ ନଥିଲା । ସାହାପୁର ଓ ଜାନୁଗଞ୍ଜ ଗ୍ରାମରେ ଥିବା କାଗଜ ଲେଖା ପାଣ୍ଡୁଲିପି କୌଣସି ମତେ ମିଳିଗଲା । କିନ୍ତୁ ତାମସାର ମୂଳ ପୀଠ ସଙ୍ଗତ ଗ୍ରାମରୁ ପାଣ୍ଡୁଲିପି ସହଜରେ ହସ୍ତଗତ ହୋଇପାରିଲା ନାହିଁ । ଲୋକ ପ୍ରଚଳିତ ସଂସ୍କାର ଓ ଅନ୍ଧବିଶ୍ୱାସ ତାମସାର ପାଣ୍ଡୁଲିପି ସଂଗ୍ରହରେ ଥିଲା ପ୍ରଧାନ ପ୍ରତିବନ୍ଧକ । ଓସ୍ତାଦ୍, ଅଭିନେତାଦି ଅଞ୍ଚ

କେତେଜଣଙ୍କ ବ୍ୟତୀତ ତାମସା-ଲେଖା ଆଉ କାହାରିକୁ ହସ୍ତାନ୍ତର କରାଯିବ ନାହିଁ; ଯେଉଁ ବ୍ୟକ୍ତି ହସ୍ତାନ୍ତର କରିଦେବ, ତାକୁ କୁଷ୍ଠବ୍ୟାଧି ହେବ କିମ୍ବା ତା'ର ବଂଶ ଲୋପ ହୋଇଯିବ – ଏହି ବିଶ୍ୱାସର ବଶବର୍ତ୍ତୀ ହୋଇଥିବା ଲୋକେ ପାଣ୍ଡୁଲିପି ହାତଛଡ଼ା କରିବେ କିପରି ? ସଙ୍ଗତ ଗ୍ରାମର ପାଣ୍ଡୁଲିପି ଶ୍ରୀ ହାଡ଼ିବନ୍ଧୁ ସିଂହଙ୍କ ପାଖରେ ଥିଲା । ମହମ୍ମଦ ହନିଫ୍ ସାହେବ ଏବଂ ପୁରୁଣା ବଜାର ହାଇସ୍କୁଲର ଶିକ୍ଷକ ଶ୍ରୀ ଉଦୟନାରାୟଣ ମହାନ୍ତିଙ୍କ ପ୍ରଭାବ ପକାଇ ମୁଁ ତାହା ପାଇବା ପାଇଁ ଉଦ୍ୟମ କଲି । କିନ୍ତୁ ତହିଁରେ ସଫଳକାମ ହୋଇପାରିଲି ନାହିଁ । ଶେଷରେ ମୋର ଛାତ୍ର ସାହିତ୍ୟିକ ଶ୍ରୀ ସତ୍ୟେନ୍ଦ୍ରନାଥ ବେନାର୍ଜିଙ୍କ ଜରିଆରେ କୁଟିଳ ବକ୍ର ପଥରେ ଯାଇ ଛନ୍ଦ କପଟତା ଅବଲମ୍ବନ କରି ଶ୍ରୀ ହାଡ଼ିବନ୍ଧୁ ସିଂହଙ୍କଠାରେ ଥିବା ପାଣ୍ଡୁଲିପିଟି ହସ୍ତଗତ କଲି । ହାଡ଼ିବନ୍ଧୁ ବାବୁ ଜାଣିପାରିଲେ ନାହିଁ ଯେ – ତାଙ୍କର ପାଣ୍ଡୁଲିପିଟି ମୋ ଦ୍ୱାରା ବ୍ୟବହୃତ ହୋଇଛି । ଅଥଚ ତାଙ୍କର ସଯତ୍ନ ସାଇତା ବସ୍ତାନିରେ ସେହି ପାଣ୍ଡୁଲିପି ସୁରକ୍ଷିତ ହୋଇ ରହିଲା ।

ତାମସାଗୁଡ଼ିକ ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀ ଶେଷ ଭାଗର ରଚନା ହୋଇଥିଲେହେଁ, ଏହାର କୌଣସି ତାଳପତ୍ର ପୋଥି କିଂବା ଖୁବ୍ ପୁରୁଣା କାଗଜ ପାଣ୍ଡୁଲିପି ମିଳିନାହିଁ । କେତେକ ପାଣ୍ଡୁଲିପି ପୁରୁଣା ବାଲିକାଗଜରେ ଲେଖା ହୋଇ ଖାତା ଉପରେ ବାଉଁଶ ପାଟିଆ ଚପାଇ ସିଲେଇ କରାଯାଇଛି । ସାହାପୁର ଗ୍ରାମରୁ ପ୍ରାପ୍ତ ପାଣ୍ଡୁଲିପିଟି ବ୍ୟତୀତ ଅନ୍ୟ କୌଣସିଟିରେ ଲେଖାର ସମୟ ବା ନକଲ କରିବା ତାରିଖ ଦିଆଯାଇ ନାହିଁ । ସାହାପୁର ପାଣ୍ଡୁଲିପିଟି ୧୯୧୯ ମସିହାରେ ଶ୍ରୀ ନଗେନ୍ଦ୍ରନାଥ ହାଜରା ନକଲ କରିଥିଲେ । ନଗେନ୍ଦ୍ରବାବୁ ଭଦ୍ରକସ୍ଥ ଗବସାହି ଅପର ପ୍ରାଇମେରୀ ସ୍କୁଲର ହେଡ୍ ପଣ୍ଡିତ ଥିଲେ । ସ୍କୁଲଟି ଭାଙ୍ଗିଯିବା ପରେ ସେ ମୟୂରଭଞ୍ଜ ଯାଇ ସେଠାରେ ପୋଷ୍ଟ ପିଅନ୍ ଭାବରେ ଚାକିରି କରିଥିଲେ । ବିଭିନ୍ନ ତାମସାର ନକଲ କରି ପାଣ୍ଡୁଲିପି ଶେଷରେ ସେ ନିମ୍ନମତେ ଏକ ବିଜ୍ଞାପନ ଦେଇଛନ୍ତି : –

"ଓଁ ଶିବାୟ ନମଃ

## ବିଜ୍ଞାପନ

ଏହି ଖାତାରେ ଶ୍ରୀ ଶ୍ରୀ ଶ୍ରୀ ମହାଦେବ ଗର୍ଗେଶ୍ୱର ମହାପ୍ରଭୁଙ୍କର ଯୋଗୀ ତାମାସା, ଫକୀର ତାମାସା, ଚହୁଡ଼ା ତାମାସା, ଭେଲ ତାମାସା, ମୋଗଲ ତାମାସା ଓ ରାଧାକୃଷ୍ଣ ତାମାସା ଅତି ପୁରୁଣା ତାଳପତ୍ର ପୋଥିରେ ଯାହା ଲେଖାଥିଲା, ତାହା ଆମ୍ଭେ ବହୁ ପରିଶ୍ରମ ସହକାରେ ବାହାର କରି ଏଥିରେ ତାହାକୁ ଅବିକଳ ନକଲ କରିଅଛୁ । ଏତଦ୍‌ଭିନ୍ନ ଉପରୋକ୍ତ ତାମାସାମାନଙ୍କ ମଧ୍ୟରୁ ଯେଉଁ ତାମାସା ଏହି ମହାଦେବଙ୍କ

ନିକଟରେ ପ୍ରତିବର୍ଷ ହେଉଅଛି, ତାହା ବହୁ କଷ୍ଟରେ ଉକ୍ତ ତାମାସା ଖେଳିବା ଲୋକଙ୍କ ନିକଟରୁ ଆଣି କ୍ରମାନ୍ୱୟରେ ଏହି ଖାତାରେ ଯାହାକି ସେମାନେ ଆମ୍ଭଙ୍କୁ ଦେଲେ, ତାହା ଏଥିରେ ଲେଖିଅଛୁ । ଏହି ତାମାସାଗୁଡ଼ିକ ଅନ୍ୟାନ୍ୟ ଲୋକଙ୍କ ନିକଟରେ ଥିବାରୁ ପ୍ରତ୍ୟେକ ତାମାସା ଖେଳିବା ଲୋକଙ୍କୁ ବିଶେଷ କଷ୍ଟ ହେଉଥିଲା ଏବଂ ତାହା ସେମାନେ ନ ଦେଇ କେତେକ ନିନ୍ଦା ଶୁଣିବା ଉଦ୍ଦେଶ୍ୟରେ ଗୁପ୍ତ କରୁଥିଲେ ଓ କେତେକ ମଧ ତାମାସା ଖେଳୁ ଖେଳୁ ପ୍ରାଣତ୍ୟାଗ କରୁଥିବାରୁ ସେଗୁଡ଼ିକ କ୍ରମେ ଲୁପ୍ତ ହେଉଥିବାର ଜାଣି ଆମ୍ଭେ ତାହାକୁ ପ୍ରତ୍ୟେକ ଶିକ୍ଷାକାରୀ ନିକଟକୁ ଯାଇ ବହୁ ନିନ୍ଦା ଅପମାନ ସହି ଏଥିରେ ଏକତ୍ର ସନ୍ନିବେଶିତ କଲୁ । ଏଣିକି ପ୍ରତ୍ୟେକ ଶିକ୍ଷାର୍ଥୀର ଅଭାବ ହେଲେ, ସେ ଆମ୍ଭଠାରୁ କିମ୍ବା ଆମ୍ଭର ଉତ୍ତରାଧିକାରୀଙ୍କ ନିକଟରୁ ଉକ୍ତ ବିଷୟଗୁଡ଼ିକ ପୂରଣ କରି ନେଇଯିବେ । ଏହି ଖାତାଟିକୁ ଆଉ ଦାବୀ କରିବେ ନାହିଁ । କାରଣ ଏଥିରେ ପ୍ରତ୍ୟେକ କାର୍ଯ୍ୟ ଓ ପଦାର୍ଥ ଆମ୍ଭର ସ୍ୱବ୍ୟୟରେ ହୋଇଅଛି । ଯଦ୍ୟପି କେହି ଲୋଭାସକ୍ତ ହୋଇ ଏହି ଖାତାକୁ ଅପହରଣ କରିବାକୁ ଚେଷ୍ଟା କରିବ କିମ୍ବା ନେଇଯିବ, ତାହାହେଲେ ଆମ୍ଭର ମାନସିକ ଅଭିଶାପ ସେ ଗ୍ରହଣ କରିବ, ଏହା ଆମ୍ଭର ଧ୍ରୁବ ବିଶ୍ୱାସ । ଅଧିକ କି ? ଇତି

ନିବେଦକ

ତା ୧-୯-୧୯୧୯ ମସିହା — ଶ୍ରୀନଗେନ୍ଦ୍ରନାଥ ହାଜରା

ମୁ : ସାହାପୁର – ଭଦ୍ରକ — ଜନୈକ ତାମାସାପ୍ରିୟ''

୧୯୪୯-୫୦ ମସିହାରେ ମୁଁ ଭଦ୍ରକରେ କେବଳ 'ମୋଗଲ ତାମସା'ର ଅଭିନୟ ଦେଖିଥିଲି । କବି ବଂଶୀବଲ୍ଲଭ ଗୋସ୍ୱାମୀଙ୍କ ରଚିତ ଅନ୍ୟ ଛଅଟି ତାମସାର ଅଭିନୟ ସେତେବେଳକୁ ପ୍ରାୟ ବନ୍ଦ ହୋଇ ଯାଇଥିଲା । ଏ ପର୍ଯ୍ୟନ୍ତ ମଧ ସେହି 'ମୋଗଲ ତାମସା' ବ୍ୟତୀତ ଅନ୍ୟାନ୍ୟ ତାମସା ଅଭିନୀତ ହେଉଥିବାର ମୁଁ ନିଜେ ଦେଖି ନାହିଁ କିମ୍ବା ସମ୍ବାଦ ପାଇ ନାହିଁ । ତାମସାଗୁଡ଼ିକ ମଧ୍ୟରୁ କେବଳ 'ମୋଗଲ ତାମସା'ର ଅଭିନୟ ପ୍ରଚଳିତ ଥିବାରୁ ତାହାର ଯଥାସମ୍ଭବ ପୂର୍ଣ୍ଣାଙ୍ଗ ପାଣ୍ଡୁଲିପି ୧୯୬୨-୬୪ ମଧ୍ୟରେ ଉଦ୍ଧାର କରି ପାରିଲି ଏବଂ ୧୯୬୬ରେ ତାହାକୁ ମୁଦ୍ରିତ ଗ୍ରନ୍ଥାକାରରେ ପ୍ରକାଶ କରାଇଲି । ଅନ୍ୟ ତାମସାଗୁଡ଼ିକର ପାଣ୍ଡୁଲିପି ଭଦ୍ରକର ବିଭିନ୍ନ ବ୍ୟକ୍ତିଙ୍କ ନିକଟରେ ଥିଲା – ଥିଲା କିଛି ପରିମାଣରେ ଖଣ୍ଡିତ ଓ ଅପୂର୍ଣ୍ଣ ଅବସ୍ଥାରେ । ମୋର ଶ୍ରଦ୍ଧେୟ ଛାତ୍ର ଗବେଷକ ଡକ୍ଟର ମନୀନ୍ଦ୍ର ମହାନ୍ତି ତନ୍ମଧ୍ୟରୁ କେତୋଟି ସଂଗ୍ରହ କରି ସଂପାଦନା ପୂର୍ବକ ପ୍ରକାଶୋପଯୋଗୀ କରାଇଥିବା ବଡ଼ ଆନନ୍ଦର କଥା । ତାଙ୍କ ସଂପାଦିତ 'ରାଧାକୃଷ୍ଣ ତାମସା' ଓଡ଼ିଆ ଗବେଷଣା ପରିଷଦର ମୁଖପତ୍ର 'ଏଷଣା'ର ସପ୍ତମ ଖଣ୍ଡରେ (୧୯୮୩) ପ୍ରକାଶିତ ହୋଇଛି ।

ରାଜ୍ୟ ମଧ୍ୟରେ ପ୍ରଚଳିତ ଥିବା ବିଭିନ୍ନ ପ୍ରକାର ଲୋକନାଟ୍ୟ ଓ ଲୋକପ୍ରିୟ ନାଟକ ମଧ୍ୟରେ 'ମୋଗଲ ତାମସା' ଅନ୍ୟତମ । ଅଷ୍ଟାଦଶ ଶତାବ୍ଦୀ ଆଦ୍ୟ ପାଦରେ ଆବିର୍ଭୂତ ହୋଇ କବି ବଂଶୀବଲ୍ଲଭ ଗୋସ୍ୱାମୀ ତାମସାଗୁଡ଼ିକ ରଚନା ପୂର୍ବକ ଅଭିନୟର ବ୍ୟବସ୍ଥା କରିଥିଲେ । ଜନଶ୍ରୁତି ଓ କିମ୍ବଦନ୍ତୀରୁ କବି ବଂଶୀବଲ୍ଲଭଙ୍କ ଜୀବନୀ ଓ ନାଟ୍ୟସାଧନା ସଂପର୍କରେ କିଛି ତଥ୍ୟ ମିଳୁଛି; କିନ୍ତୁ ତାହାର ଐତିହାସିକ ପ୍ରମାଣ ଏ ପର୍ଯ୍ୟନ୍ତ ମିଳି ନାହିଁ । ତାମସାଗୁଡ଼ିକ ପାଠ କଲେ ଜଣାପଡ଼େ ଯେ – କବି ବଂଶୀବଲ୍ଲଭ ବହୁ ଭାଷାଭାଷୀ ଜଣେ ରସିକ ପଣ୍ଡିତ ଥିଲେ । ସେ ମଧ୍ୟ ଶିବ-ଉପାସକ ଥିବାର ମନେ ହୁଏ । ତାଙ୍କ ବିଷୟରେ ୧୯୧୧ ମସିହାରେ ରଚିତ ଆପଣାର ବିଖ୍ୟାତ 'ସାଳନ୍ଦୀ' କାବ୍ୟରେ କବିଶେଖର ଚିନ୍ତାମଣି ମହାନ୍ତି ଲେଖିଛନ୍ତି –

ତୋହ ଜଳ ପିଇ ଶ୍ରୀ ବଂଶୀବଲ୍ଲଭ
ସଞ୍ଚିଲେ ସୁକୀର୍ତ୍ତି ମାନବ-ଦୁର୍ଲଭ ।
କରିଥିଲେ ତାଙ୍କ ଜିହ୍ୱାଗ୍ରେ ବସତି
ବିଦ୍ୟା ବିନୋଦିନୀ ଦେବୀ ସରସ୍ୱତୀ ।
ସାରସ୍ୱତ କୃପା ଲଭି ସେ ସାନନ୍ଦେ
ରଚିଲେ ସଂଗୀତ ସୁମଧୁର ଛନ୍ଦେ ।
ନବ ରସେ ସେହୁ ଥିଲେ ସୁପଣ୍ଡିତ
ଗାଇଲେ ତୋ' କୂଳେ 'ଚଇତ୍ର ସଂଗୀତ' ।
ମୋଗଲ ରାଜତ୍ୱେ ସେ କାଳରେ ଦେଶେ
ଥିଲା ପାର୍ଶି ଭାଷା ଚଳନ ବିଶେଷେ ।
ପାରଶିରେ ତହୁଁ ବିରଚି ସଂଗୀତ
ମୋହିଲେ ସ୍ୱଜାତି, ବିଜାତିଙ୍କ ଚିତ୍ତ ।
ଅଧିକାଂଶ ଗୀତ ଶାନ୍ତି ରସାଶ୍ରିତ
ସାକ୍ଷୀ ତା'ର 'ଯୋଗୀ-ଫକୀର ସଂଗୀତ' ।
ଅଦ୍ୟାପି ଭଦ୍ରକେ ସେ ସଂଗୀତଚୟ
ଚୈତ୍ର ମାସ ଶେଷେ ହୁଏ ଅଭିନୟ ।

x x x x

ଏକାଧାରେ ତହିଁ ଅଛି କାନ୍ଦହସା
ଡାକ ନାମ ତା'ର 'ଚଇତ୍ର ତାମସା' ।

ଭଦ୍ରକସ୍ଥ ଯେଉଁ ସଂଗତ ଗ୍ରାମରେ କବି ବଂଶୀବଲ୍ଲଭଙ୍କ ବାସସ୍ଥାନ ଥିଲା ଏବଂ ସେହି ଗ୍ରାମର ଯେଉଁ ହଟନାଗର ମହାଦେବଙ୍କର କବି ଉପାସକ ଥିଲେ, ସେ ଦୁଇଟି ବିଷୟରେ ଭଦ୍ରକ ଗୋପୀନାଥ ପ୍ରେସ୍‌ରେ ୧୯୩୦ରେ ମୁଦ୍ରିତ ରାଜବଲ୍ଲଭ ମହାନ୍ତିଙ୍କର 'ଶ୍ରୀ ଶ୍ରୀ ଭଦ୍ରକାଳୀ ଜଣାଣ' ପୁସ୍ତିକାରେ ଏହିପରି ଉଲ୍ଲେଖ ଅଛି –

ସଙ୍ଗୀତ ବିଦ୍ୟାରୁ ନାମ ଅଟଇ 'ସଙ୍ଗତ'
ନାନକ ଗୁରୁଙ୍କ ଗାଦୀ ଏଠାରେ ମହତ ।
ରାଜପୂତ କ୍ଷତ୍ରିଗଣ ଏ ସ୍ଥାନେ ଅଛନ୍ତି
ଅଗ୍ରେ ଚଇତ୍ର ତାମସା ଏଥୁଁ ଉତପତି ।
ବଲ୍ଲଭ ମୂର୍ଖ ମା' ଥିଲା ବିଦ୍ୟା ପଢ଼ି ନାହିଁ
ଶ୍ରୀ ହଟନାଗର ପୂଜି କବି ସେ ବୋଲାଇ ।

ଏଯାବତ୍ ଆବିଷ୍କୃତ ବଂଶୀବଲ୍ଲଭଙ୍କର ସାତଗୋଟି ତାମସା ମଧ୍ୟରୁ 'ମୋଗଲ ତାମସା'ଟି ବର୍ତ୍ତମାନ ବଞ୍ଚି ରହିଛି ଏବଂ ଅଭିନୀତ ହେବାରେ ଲାଗିଛି । ଏହାର କାରଣ ବୋଧହୁଏ – ଅନ୍ୟାନ୍ୟ ତାମସା ତୁଳନାରେ ଏଥିରେ ଅଧିକ ନାଟକୀୟତା ଓ ସାମାଜିକ ସଂପୃକ୍ତି ରହିଛି । ୧୯୮୦ ମସିହା ପର୍ଯ୍ୟନ୍ତ ମୁଖ୍ୟତଃ ଭଦ୍ରକ ଅଞ୍ଚଳରେ ଏହାର ଅଭିନୟ ହେଉଥିଲା । ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ରାଜ୍ୟ ସଂସ୍କୃତି ବିଭାଗର ମନ୍ତ୍ରୀ ଥିଲାବେଳେ (୧୯୬୭-୭୦) ରାଜ୍ୟର ଅନ୍ୟାନ୍ୟ ସ୍ଥାନରେ ବିଶେଷତଃ କଟକ ଓ ଭୁବନେଶ୍ୱରରେ ଏହାର ଅଭିନୟ ପ୍ରଦର୍ଶନ ପାଇଁ ଉଦ୍ୟମ କରାଯାଇଥିଲା । କିନ୍ତୁ ସେ ଉଦ୍ୟମ ସଫଳ ହୋଇପାରି ନ ଥିଲା, କେବଳ କଟକ ବେତାର କେନ୍ଦ୍ରରେ ଏହା ବେତାର ନାଟିକା ଭାବେ ପ୍ରସାରିତ ହେବାର ସୁଯୋଗ ପାଇଥିଲା । ୧୯୮୦ ପରେ ଶ୍ରୀ ଯୁଗଳକିଶୋର ପଟ୍ଟନାୟକଙ୍କର ସଂସ୍କୃତି ବିଭାଗର ମନ୍ତ୍ରୀତ୍ୱ କାଳରେ 'ମୋଗଲ ତାମସା' ଭଦ୍ରକର ପରିଧି ଡେଇଁ ରାଜ୍ୟର ବିଭିନ୍ନ ସ୍ଥାନରେ – ଏପରିକି ରାଜ୍ୟ ବାହାରେ ଅଭିନୀତ ହେଲା ଏବଂ ଜନାଦୃତ ହେବା ସଂଗେ ସଂଗେ ଚାରିଆଡ଼େ ବିପୁଳ ଖ୍ୟାତି ଲାଭ କଲା । ରେଡ଼ିଓ-ଟେଲିଭିଜନ୍‌ରେ ମଧ୍ୟ ବାରମ୍ବାର ପ୍ରସାରିତ ହେବାରେ ଲାଗିଲା । ସେତେବେଳେ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପରେ ଏହାର ଅଭିନୟ ଦେଖି 'ଧରିତ୍ରୀ' ସମ୍ବାଦପତ୍ରର ୨୩ । ୭ । ୧୯୮୧ ତାରିଖ ସଂଖ୍ୟାରେ 'ସାପ୍ତାହିକ ଦୃଷ୍ଟିପାତ' ଶୀର୍ଷକ ବିଶେଷ ସ୍ତମ୍ଭରେ ଶ୍ରୀ ଦେବଦାସ (ମହାପାତ୍ର ନୀଳମଣି ସାହୁ) ଲେଖିଥିଲେ – 'ବିଚିତ୍ର ଆଉ ଖୁବ୍ ପ୍ରାଣବନ୍ତ ଏଇ ତାମସା । ମୂଳରୁ ଶେଷଯାଏଁ ଖାଲି ହସୁଥିବ । ଜଟିଳ ଚିନ୍ତା ନାହିଁ – ଗଭୀର ଅନୁଭୂତି ନାହିଁ, କିମ୍ବା ସେ ସବୁ ଅଛି ବୋଲି ମିଥ୍ୟା-ଦାମ୍ଭିକତା ନାହିଁ । ଖାଲି ହସର ଉଚ୍ଛ୍ୱାସ, ଉଲ୍ଲାସ ଆଉ ପ୍ରାଣ ଖୋଲା ଦୁଲ୍ଲାହୁପ୍‌ପା ପ୍ରାଣଶକ୍ତିର ଉଦାମ ଉଭଟ

ନାଟକୀୟ ଓ ସାଙ୍ଗୀତିକ ଅଭିବ୍ୟକ୍ତି । ବିଷୟବସ୍ତୁ ଅତି ସାମାନ୍ୟ । ଏକ କ୍ଷୟିଷ୍ଣୁ ଅନ୍ତଃସାରଶୂନ୍ୟ କୃତ୍ରିମ ବିଳାସୀ ଅଥର୍ବ ମୋଗଲ ଶାସକର ହାସ୍ୟକର ପରିଣତି । x x x ସମଗ୍ର ବ୍ୟାପାରଟି ଗୋଟେ ପ୍ରହସନ-ଗୋଟେ-ଭାଣ୍ଡାମି-ଗୋଟେ-ତାମସା-ଗୋଟେ-ହଇହୁଲ୍ଲା-ଗୋଟେ ବେପରୁଆ ଉଦ୍ଦାମ ଅଟ୍ଟହାସ୍ୟ । ଏହାର ଶୈଳ୍ପିକ ଆଙ୍ଗିକଟି କିନ୍ତୁ ଅଭିନବ ଓ ସ୍ୱତନ୍ତ୍ର । ଏଥିରେ ଫାର୍ସୀ, ଉର୍ଦ୍ଦୁ, ବଙ୍ଗଳା, ଓଡ଼ିଆ ଭାଷା ସବୁ ରହିଛି । ହିନ୍ଦୁ-ମୁସଲମାନ ଉଭୟେ ଏଥିରେ ମିଶି ଅଭିନୟ କରନ୍ତି । ଏହା ପୁଣି ଆମର ପଲ୍ଲୀଯାତ୍ରାର ମୂଳ ରୂପ । ଏହାର ଉତ୍ପତ୍ତି-ସ୍ଥଳ ଭଦ୍ରକ – ଯେମିତି ଛଉ ନୃତ୍ୟର ବାରିପଦା । x x x''

'ମୋଗଲ ତାମସା'ର କଥାବସ୍ତୁ ଜଟିଳ ନୁହେଁ, ସରଳରୈଖିକ । ପ୍ରଥମେ ଦୁଇଜଣ ବା ଚାରିଜଣ ଚୋପଦାର ଆସି ସମବେତ ଜନତାକୁ 'ଦବେ ଖଡ଼େ ହୋ-ହଟ୍ ଖଡ଼େ ହୋ' ବୋଲି ସାବଧାନ କରିଦେବା ସଂଗେ ସଂଗେ ମିର୍ଜା ସାହେବ ବା ମୋଗଲ ଶାସକଙ୍କର ଆଗମନ-ବାର୍ତ୍ତା ଘୋଷଣା କରିବେ । ମିର୍ଜା ସାହେବ ପାଲିଙ୍କି ବା ଚଉଦୋଳାରେ ଚଢ଼ି ପଟୁଆର ମଧ୍ୟରେ ଆସି ଅଭିନୟ-ସ୍ଥଳ ନିକଟରେ ପହଞ୍ଚିବେ । ବାଦସାହୀ ଥାଟରେ ଝୁଲି ଝୁଲି ମଞ୍ଚ ଉପରକୁ ଯାଇ ସଜ୍ଜିତ ସିଂହାସନରେ ବିଜେ କରିବେ । ତାହାପରେ ସେ ନିଜର ସେବାକାରୀ କର୍ମଚାରୀମାନଙ୍କୁ ଜଣକ ପରେ ଜଣେ ତଲବ କରିବେ । ପ୍ରଥମେ ଭେସ୍ତିଓ୍ୱାଲା, ତତ୍ପରେ ଝାଡୁଓ୍ୱାଲା, ଫରରାସ୍, ହୁକାଓ୍ୱାଲା, ପଙ୍ଖାବାଲା, ଦପ୍ତର, ଚଟନିଓ୍ୱାଲା, ତୋତି ବରଦାର୍ ପ୍ରଭୃତି ଆସି ମିର୍ଜା ସାହେବଙ୍କ ସମକ୍ଷରେ ନିଜ ନିଜର ଗୁହାରି ଜଣାଇଲା ପରେ ସେବା କରିଯିବେ । ମଝିରେ ମିର୍ଜା ସାହେବଙ୍କ ସେହି ମୁଲକ, ପ୍ରଗନା, ଗ୍ରାମ ଓ ଲୋକମାନଙ୍କ ବିଷୟରେ ନିଜର କୌତୂହଳ ପ୍ରକାଶ କରିବେ ଏବଂ ଉପସ୍ଥିତ ଜନତା ନିକଟରେ ନିଜକୁ ଜାହିର୍ କରିବା ଲାଗି ଆପଣା ପଦ-ପଦବୀ, ଚାକର-ନୌକର, ବାଗ୍-ବଗିଚା, ବିଦ୍ୟାବୁଦ୍ଧିର ବଡ଼ିମା ପ୍ରକାଶ କରିବେ । ସେହି ଅଞ୍ଚଳର ଜମିଦାରଙ୍କୁ ତଲବ କରି ଚୋପଦାରଙ୍କ ଜରିଆରେ ତାଙ୍କ ନିକଟରୁ 'ଛୋକ୍‌ରୀ, ବକରୀ, ଛପରଖଟ ମଶାରୀ, ଚିରାଓ୍ୱନ୍' ପ୍ରଭୃତି ରସଦ୍ ଦାବି କରିବେ । ଜମିଦାର ଯୋଗାଇଥିବା ରସଦରେ ମିର୍ଜା ସାହେବ ଅସନ୍ତୋଷ ପ୍ରକାଶ କରି ଗଉଡୁଣୀଙ୍କି ତଲବ୍ କରିବେ । ଜଣେ ଗଉଡୁଣୀ (ସ୍ଥଳ ବିଶେଷରେ ଦୁଇଜଣ) ଦହିଦୁଧର ପସରା ଘେନି ପହଞ୍ଚିବା ପରେ ମିର୍ଜା ସାହେବ ତା' ନିକଟରେ ପ୍ରୀତି ଭିକ୍ଷା କରିବେ । କିନ୍ତୁ ଗଉଡୁଣୀ ତହିଁରେ ଅସମ୍ମତା ହୋଇ ପଳାୟନ କରିବ । କେତେକ ସ୍ଥଳରେ ଗଉଡୁଣୀ ପ୍ରଥମେ ଆସେ; ତାହା ନିକଟରେ ମିର୍ଜା ସାହେବ ପ୍ରୀତି ଭିକ୍ଷା କରି ବିଫଳ ହେବା ଉତ୍ତାରେ ଜମିଦାରଙ୍କୁ ତଲବ୍ କରନ୍ତି ଏବଂ ତାଙ୍କ ନିକଟରୁ ଛୋକରୀ-ବକରୀ ଆଦି ରସଦ ହାସଲ କରନ୍ତି ।

ମିର୍ଜା ସାହେବ 'ମୋଗଲ ତାମସା'ର ମୁଖ୍ୟ ବା କେନ୍ଦ୍ର ଚରିତ୍ର । ଏହି ଚରିତ୍ରର କାର୍ଯ୍ୟକଳାପ ଆଚାର-ବ୍ୟବହାର ଦର୍ଶାଇ ଦେବା କବି ବଂଶୀବଲ୍ଲଭଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିବାର ମନେ ହୁଏ । ମିର୍ଜା ସାହେବଙ୍କର ବିଳାସ ବ୍ୟସନ, ଅନ୍ଧ ବୁଝାମଣା, ପାରିଷଦ ବା ପାର୍ଶ୍ୱଚରମାନଙ୍କ ଉପରେ ପୂର୍ଣ୍ଣ ନିର୍ଭରଶୀଳତା ଏହି ତାମସାରେ ଭଲ ଭାବରେ ଚିତ୍ରିତ ହୋଇଛି । ଏ ସଂପର୍କରେ କବିଶେଖର ଚିନ୍ତାମଣି ଆପଣା 'ସାଳନ୍ଦୀ' କାବ୍ୟରେ ଯଥାର୍ଥତଃ ଲେଖିଛନ୍ତି –

ମେଷ ସଂକ୍ରମଣେ ବଲ୍ଲଭ-ଭଣିତ
ମୋଗଲ ରାଜତ୍ୱ ହୁଏ ଅଭିନୀତ ।
ମୋଗଲ ରାଜାଙ୍କ ଅତି ବିଳାସିତା
ତଥା ଅତ୍ୟାଚାର, ଅଦୂରଦର୍ଶିତା
ତନ୍ନ ତନ୍ନ କରି ଆଙ୍କିଛନ୍ତି କବି
ଆବର ଶାସନ ବିଶୃଙ୍ଖଳ ଛବି ।

ମିର୍ଜା ସାହେବଙ୍କ ବ୍ୟତୀତ ଅନ୍ୟ ସମସ୍ତେ ପାର୍ଶ୍ୱ (ଗୌଣ) ଚରିତ୍ର । ତୋପଦାରମାନଙ୍କଠାରୁ ଆରମ୍ଭ କରି ଭେସ୍ତିଓ୍ୱାଲା, ଝାଡୁଓ୍ୱାଲା, ହୁକାଓ୍ୱାଲା ପ୍ରଭୃତି ଅଧିକାଂଶ କର୍ମଚାରୀ କୌଣସି - ନା - କୌଣସି ମାଦକ ଦ୍ରବ୍ୟର ଭକ୍ତ । କେହି କେହି ମଧ ଗଣିକାର ଶିକାର ହୋଇ ପଡ଼ିଛନ୍ତି । ସେବାକାରୀମାନେ ମଜୁରୀ ବା ବେତନ ନ ପାଇ ଦୁରବସ୍ଥାରେ ଥିବା କଥା ପ୍ରକାଶ କରିଛନ୍ତି । ଭାଟ ଓ ଶିଖ୍‌ଗୁରୁ ନାନକଙ୍କ ଚରିତ୍ର ସମାବେଶରୁ ଜଣାପଡ଼େ ଯେ – ମିର୍ଜା ସାହେବ ଦାନ ଖଇରାତ କରିବାରେ ପଶ୍ଚାତ୍‌ପଦ ନ ଥିଲେ । ମିର୍ଜା ସାହେବଙ୍କ ସହିତ ଜମିଦାର ଓ ତାଙ୍କର ଗୁମାସ୍ତା, ପିଆଦା ପ୍ରଭୃତିଙ୍କୁ କବି ବ୍ୟଙ୍ଗ ବିଦ୍ରୂପ କରିବାକୁ ଛାଡ଼ି ନାହାନ୍ତି । ମିର୍ଜାଙ୍କ ସହିତ ଜମିଦାରଙ୍କ କାରବାର ଫକୀରମୋହନଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସର ଦିଲଦାର୍ ମିଆଁଙ୍କ ସଂଗେ ରାମଚନ୍ଦ୍ର ମଙ୍ଗରାଜଙ୍କ କାରବାର କଥା ସ୍ମରଣ କରାଇ ଦିଏ । ଗଉଡୁଣୀ ଚରିତ୍ର କବିଙ୍କର ଏକ ଅପୂର୍ବ ସୃଷ୍ଟି । ସେକାଳର ହାଟୁଆ ଘର ଝିଅବୋହୂଙ୍କ ମାନଇଜ୍ଜତ କିପରି ଥିଲା, ତାହା ଏହି ଚରିତ୍ର ସମାବେଶରୁ ଜଣାପଡ଼େ । ମୋଟାମୋଟି ପ୍ରାୟ ଦୁଇଶହ ବର୍ଷ ତଳେ ଆମ ଦେଶର ଶାସକ, ତାଙ୍କର ପାଖଲୋକ ଓ ବିଭିନ୍ନ କର୍ମଚାରୀ ତଥା ସମାଜର ତଳ ଶ୍ରେଣୀର ଲୋକଙ୍କ ସ୍ୱରୂପ-ପ୍ରକୃତି ଯେପରି ଥିଲା, ତାହାର କେତେକ ସୂଚନା 'ମୋଗଲ ତାମସା'ରୁ ମିଳିଥାଏ ।

'ମୋଗଲ ତାମସା'ର ମଞ୍ଚାୟନ ଓ ପରିବେଷଣ-ରୀତିରେ କେତେକ ସ୍ୱାତନ୍ତ୍ର୍ୟ ରହିଛି । ସେକାଳର ଲୋକନାଟ୍ୟ ଓ ଲୋକପ୍ରିୟ ନାଟକର ଅଭିନୟ ପାଇଁ ସାଧାରଣତଃ

ଯେଉଁ ପ୍ରକାର ମୁକ୍ତ, ଚତୁର୍ମୁଖୀ ନାଟ୍ୟଶାଳା ବ୍ୟବହୃତ ହେଉଥିଲା, ତାମସା ଅଭିନୟ ପାଇଁ ଠିକ୍ ସେହିପରି ନାଟ୍ୟଶାଳା ବ୍ୟବହାର କରାଯାଏ ନାହିଁ । ନାଟ୍ୟଶାଳାର ଗୋଟିଏ ପାଖରେ ଖଟ ବା ମାଟି ପକାଇ ଉଚ୍ଚ ସ୍ଥାନ କରି ତାହା ଉପରେ ମିର୍ଜା ସାହେବଙ୍କ ବସିବା ଲାଗି ସିଂହାସନ ତିଆରି କରାଯାଇଥାଏ । ରଙ୍ଗବେରଙ୍ଗର କନା ଓ ପତ୍ରପୁଷ୍ପରେ ସିଂହାସନଟି ସଜ୍ଜିତ ହୋଇଥାଏ । ସିଂହାସନ ସମ୍ମୁଖରେ ଅଭିନୟ-ସ୍ଥଳ ବା ରଙ୍ଗମଞ୍ଚର ତିନି ପାଖରେ (ସମ୍ମୁଖ ଭାଗ ଏବଂ ବାମ-ଦକ୍ଷିଣ ଦୁଇ କଡ଼) ଦର୍ଶକ ମଣ୍ଡଳୀ ବସନ୍ତି । ଏହାକୁ ତ୍ରିମୁଖୀ ନାଟ୍ୟଶାଳା ବୋଲାଯାଇ ପାରେ । ରଙ୍ଗମଞ୍ଚର ଗୋଟିଏ ପାଖକୁ ଆସର-ବାଲା ଗାୟକ ଓ ବାଦ୍ୟକାରୀମାନେ ବସନ୍ତି ! ଏହି ଅଭିନୟରେ ହାରମୋନିୟମ୍, ଡିଗିତବଲା, ପଖଉଜ, କୁବୁଜି, ବେହେଲା, ସେତାର ଆଦି ବାଦ୍ୟଯନ୍ତ୍ର ବ୍ୟବହୃତ ହୋଇଥାଏ । ରଙ୍ଗମଞ୍ଚ ଉପରେ ଚାନ୍ଦୁଆ ବା ସାମିଆନା ଟଙ୍ଗା ଯାଇଥାଏ; ତହିଁରୁ ବିଭିନ୍ନ ରଙ୍ଗର ଫାନୁସ୍ ଓ କାଗଜଫୁଲ ଝୁଲୁଥାଏ । ପୂର୍ବେ ଫାନୁସ୍ ମଧ୍ୟରେ ମହମବତୀ ଜଳାଯାଇ ଏବଂ ମଶାଲ ଆଲୁଅ ସାହାଯ୍ୟରେ ଅଭିନୟ ହେଉଥିଲା । ଏବେ ପେଟ୍ରୋମାକ୍ସ ଲାଇଟ୍ ଓ ଇଲେକ୍‌ଟ୍ରିସିଟି ଯୁଗରେ ତାହା ପରିତ୍ୟକ୍ତ ହୋଇଛି । ତାମସା ଅଭିନୟ ହେବା ପୂର୍ବରୁ କାହାଳୀ, ଯୋଡ଼ିନାଗରା କିମ୍ବା ଢୋଲ-ମହୁରୀ ଅନବରତ ବାଜୁଥାଏ । ଦର୍ଶକମାନଙ୍କୁ ପ୍ରେକ୍ଷାଳୟକୁ ଆକର୍ଷିତ କରି ଆଣିବା ଏହି ବାଦ୍ୟର ଉଦ୍ଦେଶ୍ୟ । ନେପଥ୍ୟ ଗୃହ (ଗ୍ରୀନ୍ ରୁମ୍) ଓ ରଙ୍ଗମଞ୍ଚର ଅନତି ଦୂରରେ ଏହି କାହାଳୀ-ଯୋଡ଼ିନାଗରାର ବାଦ୍ୟକାରୀ ବୃନ୍ଦ ବସି ଥାଆନ୍ତି । ଅଭିନୟ ମଝିରେ ମଝିରେ ମଧ – କେତେବେଳେ ଅଭିନେତାମାନଙ୍କ ନାଚ ସହିତ; ଆଉ କେତେବେଳେ ଅଭିନୟର ସାମୟିକ ବିରତି ସୂଚାଇବା ଲାଗି – ସେମାନେ ଏହି ବାଦ୍ୟ ବଜାଇ ଥାଆନ୍ତି ।

ତାମସା ଅଭିନୟରେ ହିନ୍ଦୁ-ମୁସଲମାନ ଉଭୟ ସଂପ୍ରଦାୟର ଲୋକେ ଅଂଶ ଗ୍ରହଣ କରନ୍ତି । ନାରୀ ଭୂମିକାରେ କୌଣସି ସ୍ତ୍ରୀଲୋକ ଅଂଶ ଗ୍ରହଣ କରନ୍ତି ନାହିଁ । ପୁରୁଷଲୋକେ ସ୍ତ୍ରୀ-ବେଶ ପିନ୍ଧି ମଞ୍ଚରେ ଅବତରଣ କରି ଥାଆନ୍ତି । କବି କୃଷ୍ଣପ୍ରସାଦ ବସୁ ମୋତେ କହିଛନ୍ତି ଯେ – ଏଡ଼ତାଳ ନାଟ୍ୟଦଳରେ ଥିବାବେଳେ ସେ ଭଦ୍ରକର ବାଙ୍କାଠାରେ ମୋଗଲ ତାମସାର ଯେଉଁ ଅଭିନୟ ଦେଖିଥିଲେ, ତହିଁରେ ଗୁଲବାଇ ନାମ୍ନୀ ଜଣେ ଗାୟିକା ଅଂଶ ଗ୍ରହଣ କରିଥିଲେ । ୧୯୮୦ ପରେ ଏବର ବିଭିନ୍ନ ନାଟ୍ୟସଂସ୍ଥା ଦ୍ୱାରା ଅଭିନୀତ 'ମୋଗଲ ତାମସା'ରେ ରୀତିମତ ଅଭିନେତ୍ରୀମାନଙ୍କୁ ଗ୍ରହଣ କରାଯାଉଛି । ତାମସା ଅଭିନୟରେ ଚୋପଦାର, ମିର୍ଜା ସାହେବ, ଭେସ୍ତିଓ୍ୱାଲା, ଫର୍‌ରାସ, ତୋତି ବରଦାର ପ୍ରମୁଖ ମୁସଲମାନୀ ବେଶ ପୋଷାକ ପିନ୍ଧିଥାଆନ୍ତି । ମିର୍ଜାଙ୍କ ପୋଷାକ ମହାର୍ଘ ଓ ଜାକଜମକ-ପୂର୍ଣ୍ଣ ହୋଇଥାଏ । ଜମିଦାରଙ୍କ ବୈଷ୍ଣବ ବେଶ । ଗଉଡୁଣୀ ସାଧାରଣ

ହିନ୍ଦୁ ନାରୀ ଭଳି ଶାଢ଼ୀ ପିନ୍ଧି ଦୁଧ-ଦହିର ବୋଝ ମଥାରେ ଧରି ଆସିଥାଏ । 'ମୋଗଲ ତାମସା'ର ଅଭିନୟ ରାତ୍ରି ପ୍ରାୟ ଦଶ ଘଣ୍ଟାରୁ ଆରମ୍ଭ ହୋଇ ସକାଳ ପର୍ଯ୍ୟନ୍ତ ଚାଲେ । ଜାତି-ଧର୍ମ-ବୟସ ନିର୍ବିଶେଷରେ ସବୁ ଶ୍ରେଣୀର ଦର୍ଶକ ସାରା ରାତି ଉଜାଗର ରହି ଅଭିନୟ ଉପଭୋଗ କରିଥାଆନ୍ତି । ସାଧାରଣତଃ ଶିବ ମନ୍ଦିର ସମ୍ମୁଖରେ ତାମସା ଅଭିନୀତ ହେବାର ବିଧି ରହିଛି । ଝାଡୁଓ୍ୱାଲା, ଫରରାସ ଚରିତ୍ର ତୁଣ୍ଡରେ ମହାଦେବଙ୍କ ଉଦ୍ଦେଶ୍ୟରେ ଗାଇବା ପାଇଁ 'ଝୁଲନା' ଖଞ୍ଜି ଦିଆଯାଇଛି; ଏପରିକି ସ୍ୱୟଂ ମିର୍ଜା ସାହେବ ମହାଦେବ-ତାରିଫ୍ ଏହିପରି ଗାନ କରିଛନ୍ତି –

ଜଟାଜୁଟ ମୁକୁଟ ଶିରେ ଗଙ୍ଗ ଶୋହେ
ଅର୍ଦ୍ଧ ଚନ୍ଦ ବିରାଜିତ ଶିର୍ ଉପର ।
ଆଁଖ ରଙ୍ଗକି ଭଙ୍ଗସେ ଚଙ୍ଗ୍ ଚଢ଼େ
ବମ୍ ବମ୍ ଭୋଲା ସଦାଶିବ ଶଙ୍କର ।।
କର୍ଣ୍ଣ ମୁଦ୍ରାକି ଜୋଡ଼୍ ଜଗତ ଭାଓ୍ୱେଁ
ଯୋ ହାତ ଶୋହେ ଡମ୍ବରୁପର ।
ସାହାପୁର ମୌଜେ ଗଡ଼ ନ୍ୟାରେଁ ଦେଖା
ବମ୍ ବମ୍ ଭୋଲା ସଦାଶିବ ଶଙ୍କର ।।

ତା ଥେଇ ରେ, ଥେଇ ରେ, ତାତା ଥେଇ ରେ ଥେଇ ରେ ଥେଇ...

ଶିବ ମନ୍ଦିର ଓ ଶିବାରାଧନା ସହିତ ତାମସା ଅଭିନୟର ସଂପର୍କ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । କୋରାନ୍ ଶରୀଫରେ ଆଲ୍ଲାଙ୍କର ଯେଉଁ ଶକ୍ତି, ଜ୍ଞାନ ଓ କରୁଣା କଥା ବୋଲା ଯାଇଛି, ମହାଦେବ ଶିବଙ୍କ ମଧରେ ସେହି ସବୁ ବିଭୂତି ବିଦ୍ୟମାନ । ଶିବଙ୍କ ସଦୃଶ ଆଲ୍ଲା ମଧ ଏକାଧାରରେ ଭୀତି ଓ ପ୍ରୀତିର ଦେବତା । ଜନସାଧାରଣଙ୍କ ଚେତନାରେ ଏହି ଧ୍ୟାନଧାରଣା ବଦ୍ଧମୂଳ କରି କବି ବଂଶୀବଲ୍ଲଭ ସାଂପ୍ରଦାୟିକ ମୈତ୍ରୀ ଓ ସଂହତି ପ୍ରତିଷ୍ଠା ଉଦ୍ଦେଶ୍ୟରେ ମୋଗଲ ତାମସାଦିର ରଚନା ଓ ଅଭିନୟ ପ୍ରବର୍ତ୍ତନ କରିଥିଲେ । ଆମ ରାଜ୍ୟରେ ପ୍ରାୟ ଦୁଇଶହ ବର୍ଷ କାଳ ମୁସଲମାନ ଶାସନ ପ୍ରଚଳିତ ଥିଲା । ସେହି ଶାସନର ପ୍ରଭାବ ରାଜ୍ୟର ସାଂସ୍କୃତିକ କ୍ଷେତ୍ରରେ ଯେଉଁ ମୁଦ୍ରାଙ୍କ ଥୋଇ ଯାଇଛି, ମୋଗଲ ତାମସାଦି ତନ୍ମଧରେ ଅନ୍ୟତମ । ଆମର ଗାଦୀପାଲା ଓ ଠିଆ ପାଲା ସଦୃଶ ଏହା ଉତ୍ତର ଓଡ଼ିଶାରେ ହିନ୍ଦୁ ମୁସଲମାନ ଦୁଇ ସଂପ୍ରଦାୟ ମଧରେ ମୈତ୍ରୀ-ପ୍ରୀତି ସ୍ଥାପନରେ ସହାୟକ ହୋଇ ଆସିଛି ।

'ମୋଗଲ ତାମସା' ସଂଗୀତପ୍ରଧାନ ହେଲେ ହେଁ, ଏଥିରେ କିଛି ପରିମାଣରେ ଗଦ୍ୟ ସଂଳାପ ସ୍ଥାନ ଲାଭ କରିଛି । ବିଭିନ୍ନ ଭାଷାରେ ଏହି ଗୀତ ଓ ଗଦ୍ୟ ସଂଳାପ

ସଂଯୋଜିତ ହୋଇଛି । ଯେଉଁ ଶ୍ରେଣୀର ପାତ୍ର-ପାତ୍ରୀଙ୍କ ତୁଣ୍ଡରେ ଯେଉଁଳି ଭାଷାର ଗୀତ ତଥା ସଂଳାପ ସୁନ୍ଦର ଓ ସ୍ୱାଭାବିକ, କବି ବଂଶୀବଲ୍ଲଭ ସେହିଭଳି ଭାଷା ବ୍ୟବହାର କରିଛନ୍ତି । ମିର୍ଜା ସାହେବଙ୍କ ତୁଣ୍ଡରେ ଫାର୍ଶୀ ଭାଷା, ତାଙ୍କର ସେବାକାରୀ ନୌକର-ଚାକରଙ୍କ ମୁଖରେ ଫାର୍ଶୀ, ଉର୍ଦ୍ଦୁ, ହିନ୍ଦୀ, ବଙ୍ଗଳା ଭାଷା – ଜମିଦାର, ଗୁମାସ୍ତା, ଗଉଡୁଣୀ ପ୍ରମୁଖଙ୍କ ତୁଣ୍ଡରେ ଓଡ଼ିଆ ଭାଷା ସଂଯୋଜିତ କରି ସେ ସଂସ୍କୃତ ନାଟକର ଭାଷା ବିନ୍ୟାସ ପରମ୍ପରା ଅନୁସରଣ କରିବା ସଂଗେ ସଂଗେ ନାଟ୍ୟାଭିନୟର ପ୍ରାକୃତିକତା ଓ ଚମତ୍କାରିତା ରକ୍ଷା କରି ପାରିଛନ୍ତି । ଉଦାହରଣ ସ୍ୱରୂପ :–

ଚୋପଦାର – ଝାଡୁକସ୍ରା ଚଲ୍ ବେ !

ଝାଡୁବାଲା – (ଗୀତ) କୋନ୍ ବୋଲାଓ୍ୱେ ଝାଡୁଓ୍ୱାଲା, ଓ ଲାଲା
ମେ ତୋ ହୁଁ ବୁନିଓ୍ୱାଦିଓ୍ୱାଲା ।
ମଦ୍ ତାଡ଼ି ମେ ଗାଞ୍ଜା ଖାୟା ଭାଙ୍ଗଚୁବି ଚଣ୍ଡୁ ପିୟା
ନିଶା ଜୋର୍‌ସେ ହୁଆ ଭରା ଦିଲ୍ ମେରା ।।

ଚୋପଦାର – ବେ ଝାଡୁଓ୍ୱାଲା, ଅବତକ୍ କାହାଁ ଥା ?

ଝାଡୁବାଲା – (ଗୀତ) ଝାଡୁବାଲା, ଝାଡୁବାଲା କେ ଡାକେ ଉଚ୍ଚ ସ୍ୱରେ ।
ଆମି ନାରୀର ସଂଗେ ରସରଙ୍ଗେ
ଛିଲାମ୍ ବାଙ୍କାବାଜାରେ ।।
ବିପରୀତ ରସେ ମାତି
କାଟାଇଲାମ୍ ଅର୍ଦ୍ଧରାତ୍ରି ।
ଏଖୁନ୍ ଏସେ କେ ଦୁର୍ମତି
ରଙ୍ଗ ଆମାର ଭଙ୍ଗ କରେ ।।

ଚୋପଦାର – ଆବେ ଝାଡୁବାଲା, ତୁମ୍ ଏତନା ଘଡ଼ି ରେଣ୍ଡିଉଣ୍ଡି ଲୋକ ଘରମେ ମଜା କରତା ଥା । ହାମାରା ମିର୍ଜା ସାହେବ କେତନା ଘଡ଼ି ଆ-କର ବୈଠା ହୁଅ ହୈ । ସାଲେକୋ ମାଲୁମ୍ ନେଇଁ ? ଫୁର୍ତ୍ତି କାମ୍ ବଜାଓ !

ମିର୍ଜା – (ଝାଡୁବାଲା ପ୍ରତି ଗାଳି) ବଦମାସ୍ ଝାଡୁବାଲା ଖାକେ ସରାପ୍ ଭାଙ୍ଗ୍ ଚଲ୍‌ତାହେ ମସ୍ତ ହୋକର ଯୈସେ ତପଙ୍ଗ୍ ତପଙ୍ଗ୍ । ମୟଲା କିୟା ହେ ମଜଲିସ୍ ପରଓ୍ୱା ନା ରଖ୍‌କେ କୁଛ୍, ଜଲ୍‌ଦି ନିକାଲୋ ଉସ୍‌କୁ ସୋକ ବୋଦ ଢଙ୍ଗ୍ । ଇତ୍ୟାଦି ।

ସେହିପରି ଅନ୍ୟତ୍ର :—

ଚୋପଦାର – ଆବେ ତୁମାରା ନାମ କ'ଣ ?

ଗଉଡୁଣୀ – ନାଁ ମୋର କହିବାକୁ ଗଲେ କାନ୍ଦ ମାଡୁଛି । କି କହିବି ?
ନାଁ, ରୂପକାନ୍ତି, ବଳ ବୟସ ଗଲାଣି । ଶୁଣିବା ହେଉ !
ମୋ ନାମ ଜାଣିଲେ କି ହେବ ଅବା
କହିଲେ ଉଛର ହେବ ରେ
ଉଣା ଯୋଡ଼ିଏ ଶହେ କୋଡ଼ିଏ ରେ ସଜନୀ
ଗୋଟି ଗୋଟି ଗଣି ନେବ ।

ମୋ ନାଁ ନବନାଗରୀ, ଦୟା କରି, ତନୁପାତଳୀ, ଗହମଗୋରୀ, ଗୋଠସୁନ୍ଦରୀ, ସରକା ଫୁଲ, ଯୁବା ଜୀବନ, ପୁରୁଷ ଧନ, ଅମୂଲମୂଲ, କରଲା ଫୁଲ, ରଙ୍ଗ ନିଆଳୀ, ଅବଳାବାଳୀ, ତନୁହରଷୀ, ଷୋଳବରଷୀ, ଘଇତାଛାଡ଼ି, ଦିଅରବାଇ, ଶାଶୁସୁଆଗୀ, ସୁରୁଯମୁଖୀ, ମିରିଗଛଟା କରେ ଆଖି, ଗହନୀସତୀ, ଯୁବାଯୁବତୀ, ଯୁବତୀଧନ, ନାରୀରତନ, ସେଇ ଯେ ମୋହର ଜୀବନଧନ, କେଶକାଳିକା, ଚମ୍ପାକଳିକା, ଇନ୍ଦମଲିକା, ନାଆଁ ମରୁଆ, କୁଚ ଫରୁଆ, ପେଟସରୁଆ, ମନହୁରିଆ, କୁଳକଳଙ୍କ, ନାଗରରଙ୍କ, ନୟନ ବାଙ୍କ, ଅଙ୍କ ସଲଖ, ଭ୍ରୁରୁ ଭଙ୍ଗିନୀ, ନବ ରଙ୍ଗିନୀ x x x ଇତ୍ୟାଦି ।

ଫାର୍ଶୀ ଭାଷା-ଅନଭିଜ୍ଞ ଅଭିନେତାମାନଙ୍କ ତୁଣ୍ଡରେ ଉଚ୍ଚାରିତ ହେଉଥିବାରୁ କାଳକ୍ରମେ ତାମସାର ଶୁଦ୍ଧ ଫାର୍ଶୀ, ଉର୍ଦ୍ଦୁ ଆଦି ଭାଷା ମିଶ୍ର ଓ ବିକୃତ ହୋଇ ପଡ଼ିଥିବାର ଦେଖାଯାଏ । ଗୋଟିଏ ପାଣ୍ଡୁଲିପିରୁ ଅନ୍ୟ ଏକ ପାଣ୍ଡୁଲିପି ପ୍ରସ୍ତୁତ କଲାବେଳେ ନକଲକାରମାନଙ୍କର ଖଣ୍ଡନ-ମଣ୍ଡନ ରୀତି ପୁଣି ରହିଛି । ତେଣୁ 'ମୋଗଲ ତାମସା'ର ଭାଷା କେତେକ ସ୍ଥଳରେ ବିକୃତ ହୋଇ ଦୁର୍ବୋଧ ବା ଅବୋଧ ହୋଇ ପଡ଼ିଛି । ସଂପାଦନା କାଳରେ ସେଥିପାଇଁ ମୁଁ ବଡ଼ ଅସୁବିଧାରେ ପଡ଼ିଛି । ସେବେଳର ଭଦ୍ରକ କଲେଜରେ ଥିବା ଉର୍ଦ୍ଦୁ ଭାଷା ସାହିତ୍ୟର ଅଧାପକ କାକୋଭି ସାହେବ ଓ ଇଂରାଜୀ ଅଧାପକ ଅବଦୁନ୍ ନବି ସାହେବ (ତାଙ୍କର ମାତୃଭାଷା ଉର୍ଦ୍ଦୁ) ବିକୃତ ଫାର୍ଶୀ ଓ ଉର୍ଦ୍ଦୁ ଭାଷାର ଟୀକା ବା ଭାବାର୍ଥ କରିବାରେ ମୋତେ ବିଶେଷ ସାହାଯ୍ୟ କରିଥିଲେ ।

ତାମସା, ପ୍ରହସନ ବା ଫାର୍ସ୍ ଜାତୀୟ – ବ୍ୟଙ୍ଗାତ୍ମକ ଓ ରଙ୍ଗ-ରସପୂର୍ଣ୍ଣ । ମହାରାଷ୍ଟ୍ରରେ ଏହି ନାମଧାରୀ ଏକପ୍ରକାର ଜନପ୍ରିୟ ନାଟ୍ୟକର୍ମ ପ୍ରଚଳିତ ଅଛି । ମୋଗଲ ତାମସାଦି ଭଳି ମରାଠୀ ତାମସା ଅଷ୍ଟାଦଶ ଶତାବ୍ଦୀରେ ମରଠା ଶାସନ କାଳରେ ବିକାଶ ଲାଭ କରିଥିଲା ଏବଂ ଏ ପର୍ଯ୍ୟନ୍ତ ତାହା ନାଟକର ଏକ ଜୀବନ୍ତ ଶୈଳୀ ଭାବରେ

ବିଦ୍ୟମାନ ରହିଛି । ଓଡ଼ିଶୀ ତାମସା ଓ ମରାଠୀ ତାମସା ମଧ୍ୟରେ କେତେକ ସାଦୃଶ୍ୟ ପରିଲକ୍ଷିତ ହୁଏ । ନୃତ୍ୟ, ସଂଗୀତ ଓ ରଙ୍ଗ-ରସର ପ୍ରାଚୁର୍ଯ୍ୟ ଉଭୟରେ ରହିଛି । ମୋଗଲ ତାମସାର ଗଉଡୁଣୀ ଭଳି ମରାଠୀ ତାମସାରେ ଗଉଲାନ୍ (ଗୋଆଲିନ୍) ଶ୍ରୀକୃଷ୍ଣ ଗୋପଲୀଳାର ଗୋପୀ ରୂପେ ଅଭିନୟ କରେ । ଉଭୟର ରଙ୍ଗମଞ୍ଚ ଓ ପ୍ରେକ୍ଷାଳୟ ପ୍ରାୟ ଏକ ପ୍ରକାର । ଭାରତର ଅନ୍ୟ କୌଣସି ଅଞ୍ଚଳରେ ମୋ ଜାଣିବାରେ ତାମସା ଜାତୀୟ ନାଟ୍ୟ ଶୈଳୀ ନାହିଁ ।

କବି ବଂଶୀବଲ୍ଲଭଙ୍କ ରଚିତ 'ମୋଗଲ ତାମସା' ବ୍ୟତୀତ ଏବେ ଅନ୍ୟାନ୍ୟ ତାମସା ଅଭିନୀତ ହେଉ ନ ଥିବାରୁ ସେଗୁଡ଼ିକର କିଞ୍ଚିତ୍ ପରିଚୟ ଏଠାରେ ଦେବା ଉଚିତ ମନେ କରୁଛି ।

୧। **ଭିଲ୍ ତାମସା –** ଅଯୋଧ୍ୟା/କାଶ୍ମୀରର ଜଣେ ବ୍ରାହ୍ମଣ ପଣ୍ଡିତ ଦେଶ ଭ୍ରମଣରେ ଯାଉଁ ଯାଉଁ ବାଟରେ ଏକ ଜଙ୍ଗଲ ମଧ୍ୟରେ ଜଣେ ଭିଲ୍ (ବଣୁଆ ଲୋକ)କୁ ଭେଟିଲେ । ଭିଲ୍, ପଣ୍ଡିତଙ୍କଠାରୁ ଧନ ବା ରସଦ ଦାବି କଲା । ପଣ୍ଡିତେ ବିପଦ ଆଶଙ୍କାରେ ଭିଲ୍‌କୁ ନାନା ଉପଦେଶ ଦ୍ୱାରା ବୁଝାଇ ଶୁଝାଇ ତାହାର ମନ୍ଦ ବୁଦ୍ଧି ଦୂର କଲେ । ଭିଲ୍ ଶେଷରେ ପୁଣ୍ୟାତ୍ମା ପୁରୁଷରେ ପରିଣତ ହୋଇ ପଣ୍ଡିତଙ୍କୁ ଧନରତ୍ନ ଦାନ କଲା ଏବଂ ପୁରୀ ଶ୍ରୀକ୍ଷେତ୍ର ଯାତ୍ରା ଉଦ୍ଦେଶ୍ୟରେ ପଠାଇ ଦେଲା । ପଣ୍ଡିତ ଓଡ଼ିଶାକୁ ପ୍ରଶଂସା କରିବା ସଂଗେ ସଂଗେ ଶିବ ବନ୍ଦନା ଗାଇ ମେଲାଣି ଘେନି ଗଲେ । ଏହି ତାମସାର ଅଭିନୟ-କାଳ ଏକ ରାତ୍ରି ।

୨। **ରାଧାକୃଷ୍ଣ ତାମସା –** ଏଥିରେ କୃଷ୍ଣଲୀଳାର ଦୁଇଟି ଉପାଖ୍ୟାନ ଅଭିନୀତ ହୁଏ – ମୁରଲୀହରଣ ଓ ବସ୍ତ୍ରହରଣ । ଏ ଦୁଇଟି ଉପାଖ୍ୟାନର ଅଭିନୟ-କାଳ ପ୍ରାୟ ଦୁଇ ଘଣ୍ଟା । 'ମୋଗଲ ତାମସା'ର ଅଭିନୟ ଶେଷରେ ଏହା ଅଭିନୀତ ହେବାର ବିଧି ରହିଛି । ଶ୍ରୀକୃଷ୍ଣ, ରାଧା, ଗୋପୀ ଓ ଅହୀର (ଗୋପ ବାଳକ) ମାନେ ଏହାର କୁଶୀଲବ । ଗୋପ ବାଳକମାନେ ହଜିଥିବା ଗୋରୁ ଖୋଜିବାକୁ ଯାଇ ଯମୁନାକୂଳ ବୃନ୍ଦାବନରେ ରାଧା-କୃଷ୍ଣଙ୍କର ମିଳନ ଲକ୍ଷ୍ୟ କରିଛନ୍ତି ଏବଂ ଏହିପରି ଶ୍ରୀକୃଷ୍ଣଙ୍କ ବନ୍ଦନା ଗାଇଛନ୍ତି :–

ଶ୍ରୀମୁଖ ସୁନ୍ଦର ଚନ୍ଦ୍ର ଜ୍ୟୋତିଧର
ଭାଲେ ତିଲକ ଉଜ୍ଜିଆରି ହେ ।
ଝଲକତ କେଶର ତିଲକ ଭାଲପର
ଚନ୍ଦନ କଅଁଳ କରାରି ହେ ।।

ଓରବନ ମାଲ ବିଶାଲ ଲାଲ
ଦୀର୍ଘ ମୁରଲୀ ଧୂନ୍ ପ୍ୟାରି ହେ ।
ବଲ୍ଲଭ କହତ କ୍ୟା ବରନ ଉଚ୍ଛବ
ତନ ମନ ଜୀବନ ଅଟକତ ହେ ।।

୩। **ଚଉଡ଼ା (ଚେହୋଡ଼ା) ତାମସା** – ମୁସଲମାନ ଶାସକଙ୍କର ପାଇଖାନା ଆଦି ସଫାସୁତୁରା କରୁଥିବା ମେହେନ୍ତରଙ୍କୁ ଚଉଡ଼ା (ଚେହୋଡ଼ା) ଏବଂ ସେମାନଙ୍କ ପତ୍ନୀଙ୍କୁ ଚଉଡ଼ୁଣୀ (ଚେହୋଡ଼ିନ୍) ବୋଲା ଯାଇଛି । ଚଉଡ଼ାଙ୍କ କାର୍ଯ୍ୟ ତଦାରଖ କରିବା ଉଦ୍ଦେଶ୍ୟରେ ସର୍ଦ୍ଦାର (ନକିବ୍) ଆସି ଦେଖିବେ – ଚଉଡ଼ାମାନେ ନିଶାଖାଇ ମାତାଲ । ପୁଣି ଚଉଡ଼ାମାନେ ମାତାଲ ଅବସ୍ଥାରେ ନିଜ ନିଜ ଭିତରେ କଳିଗୋଳ କରିବେ । ଏତିକିବେଳେ ଚଉଡ଼ୁଣୀମାନେ ନିଜ ନିଜର ଚଉଡ଼ାମାନଙ୍କୁ ଖୋଜି ଖୋଜି ଆସି ପହଞ୍ଚିବେ । ଶେଷରେ ଚଉଡ଼ା ସାହେବ ଆସି ଚଉଡ଼ାମାନଙ୍କର କଳିଗୋଳ ମେଣ୍ଟାଇ ଦେବେ । ଏହି ତାମସାର ଅଭିନୟ-କାଳ ଗୋଟିଏ ରାତ୍ରି ।

୪। **ଯୋଗୀ ତାମସା** – ଜଣେ ଯୋଗୀ ଗାଡ଼ରା (ହରବୋଲା) ନାମକ ଶିଷ୍ୟ ସହ ତୀର୍ଥାଟନରେ ବାହାରି ଭଦ୍ରକରେ ଆସି ପହଞ୍ଚିବେ । ଲୋକଙ୍କ (ଆସରଓ୍ୱାଲା)ଠାରୁ ତାହା ସଙ୍ଗତ ଗ୍ରାମର ହଟନାଗରଙ୍କ ବିଜେସ୍ଥଳୀ ବୋଲି ଜାଣି ଯୋଗୀ ଶିବ ବନ୍ଦନା ଗାଇବେ :–

ସଦାଶିବ ଶଙ୍କର ତନୁ ଭସ୍ମ ଧୂସର
କଟୀତଟେ ବାଘାମ୍ବର ଗଲେ ହାଡ଼ମାଲା
ଅମଙ୍ଗଲ ହେ ମଙ୍ଗଲ ଫିରେ ଝାଡ଼ ଜଙ୍ଗଲ
କହେ ଲୋକ ପାଗଲ ସଦାନନ୍ଦ ଭୋଲା ।
ଅସୁର-ସୁରକି ତାରନ୍ ଜଗତକି ଉଦ୍ଧାରନ୍
ଚରନ୍ ହାର କାରନ୍ ତୁହୁଁ ବଏଲଓ୍ୱାଲା ।।

ଯୋଗୀଙ୍କି ଖୋଜି ଖୋଜି ଯୋଗିଆଣୀ ସେଠାରେ ଆସି ପହଞ୍ଚିବେ ଏବଂ ସ୍ୱାମୀଙ୍କି ଘରକୁ ଫେରାଇ ନେବା ଲାଗି ଚେଷ୍ଟା କରିବେ । ଯୋଗୀ ଫେରିଯିବା ପାଇଁ ଅନିଚ୍ଛା ପ୍ରକାଶ କରିବେ ଏବଂ ଯୋଗୀଆଣୀଙ୍କୁ ବୁଝାଇ ସୁଝାଇ ଘରକୁ ପଠାଇ ଦେବେ । ଏହି ତାମସାର ଅଭିନାୟକାଳ – ଏକରାତ୍ରି ।

୫। **ଫକୀର ତାମସା** – ଚାରିଜଣ ମୁସଲମାନ ଫକୀର ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ – ଚାରି ମୁଲକ ପର୍ଯ୍ୟଟନ କରି ଆସି ପହଞ୍ଚିବେ । ଭିନ୍ନ ଭିନ୍ନ ମୁଲକରେ

ସେମାନେ ଯାହା ଯାହା ଦେଖିଲେ, ତାହା ବର୍ଣ୍ଣନା କରି ପରସ୍ପରକୁ ଶୁଣାଇବେ । ତତ୍ପରେ ଜଣେ ହିନ୍ଦୁ ସନ୍ନ୍ୟାସୀ ସେଠାକୁ ଆସି ଫକୀରମାନଙ୍କୁ ଆପଣା ପର୍ଯ୍ୟଟନର ଅନୁଭୂତି ଶୁଣାଇବେ । ଶେଷରେ ଫକୀରମାନଙ୍କର ଚାରିଜଣ ସ୍ତ୍ରୀ ସେଠାରେ ଆସି ପହଞ୍ଚିବେ । ଫକୀରମାନଙ୍କ ସହ ସେମାନଙ୍କର ମିଳନ ହେଲା ପରେ ସମସ୍ତେ ମିଶି ଶିବ-ବନ୍ଦନା କରିବେ । ଏହାର ଅଭିନୟ-କାଳ – ଗୋଟିଏ ରାତି ।

୬। **ଲୋଲିନ୍-ମଜାବାଇ ତାମସା** – ପରସ୍ପରର ବନ୍ଧୁ ଚାରିଜଣ ମୋଗଲ ଆସି ଦେଖିବେ – ଓଡ଼ିଶା ବେଶ୍ ଆଚ୍ଛା ମୂଲକ । ସେମାନେ ଭଲ ଗଣିକା ଖୋଜୁଥିବା ବେଳେ ଲୋଲିନ୍ ଓ ମଜାବାଇ ନାମ୍ନୀ ଦୁଇଜଣ ଗଣିକା ପହଞ୍ଚି ସେମାନଙ୍କୁ ନିଜ ପୁରକୁ ରାତ୍ରି ଯାପନ ପାଇଁ ଡାକିବେ । ଏତିକି ବେଳେ ଗଉଡ଼-ଗଉଡୁଣୀ ଦୁଧ ଘିଅ ବିକିବା ପାଇଁ ହାଟକୁ ଯାଉଥିବେ । ମୋଗଲମାନେ ତାଙ୍କଠାରୁ ଦୁଧ ଘିଅ ନେବା ଲାଗି ଜୋର୍ ଜବରଦସ୍ତି କରିବେ । କିନ୍ତୁ ଗଉଡ଼ ଗଉଡୁଣୀ ସେମାନଙ୍କ କବଳରୁ ଖସି ପଳାଇଯିବେ । ଶେଷରେ ଲୋଲିନ୍-ମଜାବାଇଙ୍କ ସହିତ ମୋଗଲମାନେ ଗଣିକାଳୟକୁ ଯିବେ । ଏ ତାମସାର ଅଭିନୟ-କାଳ – ଗୋଟିଏ ରାତ୍ରି ।

ଏହି ଚଉତି ତାମସା ମଧ୍ୟରୁ 'ମୋଗଲ ତାମସା'ର ସଂଗ୍ରହ, ସଂକଳନ ଓ ସଂପାଦନା ପୂର୍ବକ ୧୯୬୬ ମସିହାରେ ଯେତେବେଳେ ପ୍ରକାଶନ କରାଇଲି, ସେତେବେଳେ ବହୁ ସଂସ୍କୃତିପ୍ରେମୀ ବିଜ୍ଞ ବ୍ୟକ୍ତି ବିଭିନ୍ନ ପତ୍ରପତ୍ରିକା ପୃଷ୍ଠାରେ ତଥା ବ୍ୟକ୍ତିଗତ ଚିଠି ମାଧ୍ୟମରେ ମୋତେ ଅଭିନନ୍ଦନ ଜଣାଇଥିଲେ । 'ମୋଗଲ ତାମସା' ଗ୍ରନ୍ଥରେ ତ ପ୍ରଫେସର୍ ପ୍ରହ୍ଲାଦ ପ୍ରଧାନ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କର ମୂଲ୍ୟବାନ୍ ମନ୍ତବ୍ୟ ରହିଛି ! ଏଠାରେ ଅନ୍ୟ କେତେଜଣଙ୍କର ମନ୍ତବ୍ୟ ଓ ଅଭିମତ ଉଦ୍ଧାର କରୁଛି ।

**ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ** – 'ମୋଗଲ ତାମସା ଉଦ୍ଧାର କରି ଓ ତାହା ମୁଦ୍ରିତ କରି ତୁମେ ଓଡ଼ିଆ ସାହିତ୍ୟରେ ଏକ ଅମୂଲ୍ୟ ସଂପଦ ସଂଗ୍ରହ କରିଛ । ସବୁଠାରୁ ଆଦରଣୀୟ ବ୍ୟାପାର ହେଉଛି ଯେ ଭଦ୍ରକ ଅଞ୍ଚଳରେ ଅନ୍ୟୂନ ଦୁଇଶହ ବର୍ଷ ଧରି ଏହି ଲୋକପ୍ରିୟ ତାମସା ଲୋକମାନଙ୍କର ମନୋରଂଜନ କରି ଆସିଛି ଓ ଆସୁଛି । ଓଡ଼ିଶାରେ ଫରାସୀ ଭାଷାରେ ତାମସା ବହୁ ଜନପ୍ରିୟ ହୋଇଥିଲା, ମାତ୍ର ସେ ସବୁ ସଂଗୃହୀତ ହୋଇନାହିଁ । x x x ମୋଗଲ ତାମସାର ଶେଷକୁ ଥିବା ଗଉଡୁଣୀର ଭାଷା ଅତି ଉପାଦେୟ । ଯାହା ହେଉ, ତୁମ ଲାଗି ସେହି ଭାଷାର ନମୁନା ବଞ୍ଚିଗଲା ।'

**ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ** – 'ଏହା ଆପଣଙ୍କର ଏକ ସ୍ୱତନ୍ତ୍ର ମହାମୂଲ୍ୟବାନ୍ ଆବିଷ୍କାର, ପୁଣି ଆପଣଙ୍କ ସାହିତ୍ୟ ସାଧନାର ସଂପୂର୍ଣ୍ଣ ନୂତନ ଦିଗ୍‌ଦର୍ଶନ ।

ଓଡ଼ିଆ ସାହିତ୍ୟ ପ୍ରତି ଏଇ ଅସାଧାରଣ ଦାନ ଯୋଗୁ ଆପଣ ସ୍ମରଣୀୟ ହୋଇ ରହିଲେ । ଭଦ୍ରକ ଅଞ୍ଚଳରେ ଏହି ଯାତ୍ରାର ଯେଉଁ ବିଶେଷତ୍ୱ ରହିଛି, ତାହା ସମଗ୍ର ଓଡ଼ିଶା ତଥା ଓଡ଼ିଆ ସାହିତ୍ୟର ସଂପଦ । ଆପଣଙ୍କ ସାହାଯ୍ୟ ବଳରେ ଆମ୍ଭେମାନେ ସେ ସଂପଦର ପୁନରୁଦ୍ଧାରରେ ଅଧିକାରୀ ହୋଇଛୁଁ ।'

**ଅଧ୍ୟାପକ ଚିନ୍ତାମଣି ଦାଶ –** 'ବହିଟି ଆମୂଳଚୂଳ ପଢ଼ି ଅତ୍ୟନ୍ତ ଆପ୍ୟାୟିତ ହେଲି । ଆପଣ ବାସ୍ତବରେ ଏକ ଲୁପ୍ତ କୀର୍ତ୍ତି ଉଦ୍ଧାର କରିଛନ୍ତି । ମୋଗଲ ତାମସାର ମୂଳ ବିଷୟବସ୍ତୁ ମୋତେ ଯେତେ ମୂଲ୍ୟବାନ୍ ପ୍ରତୀତ ହେଲା, ତା'ଠାରୁ ଅଧିକ ଉପାଦେୟ ମନେ ହେଲା ଆପଣଙ୍କ ଗବେଷଣାଲବ୍ଧ ସାମଗ୍ରୀ – କବିଙ୍କର ପରିଚୟଲିପି ଏବଂ ଏହାର ପାଣ୍ଡୁଲିପିର ଐତିହ୍ୟ ।'

**ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି –** 'ଏଥିରେ ଅନେକ ପ୍ରକ୍ଷେପ ଥିବା ଆପଣ ତ ନିଜେ ସ୍ୱୀକାର କରିଛନ୍ତି ! ଉଦାହରଣ ସ୍ୱରୂପ, ପୃ: ୬ରେ ଭେଣ୍ଡିର ଗୀତରେ ଯେଉଁ ଚଟକଳ ଓ ଲାଲଦୀଘିର ଉଲ୍ଲେଖ ଅଛି, ତାହା ବିଂଶ ଶତାବ୍ଦୀର ପ୍ରଥମ ପାଦର ସୂଚନା ଦିଏ । ମୋଗଲ-ମରହଟ୍ଟା ଯୁଗରେ କଲିକତା ଏକ ଅରଣ୍ୟ ଥିଲା ଓ ବଙ୍ଗାଳୀମାନେ ଚଟକଳ ଅପେକ୍ଷା ନଦିଆ କୀର୍ତ୍ତନରେ ଅଧିକ ଭିଡ଼ ବାନ୍ଧୁଥିଲେ । (ମୋ ମତରେ ଏ ପ୍ରକ୍ଷେପ ସବୁ ବାଦ୍ ଦେଲେ ଭଲ ହୋଇଥାନ୍ତା !)

'କବିଙ୍କ ମୋଗଲ ତାମସାରେ ପ୍ରତ୍ନତାତ୍ତ୍ୱିକ ମୂଲ୍ୟ ଅଛି ନିଶ୍ଚୟ, ମାତ୍ର ବୈଦଗ୍ଧ୍ୟ ଅତି ମଳିନ ଓ ସେ ଘରଟିରେ... ତଥାପି ଗଉଡୁଣୀର କୁଚ ବନ୍ଦନା (ପୃ:୪୩) ଓଡ଼ିଆ ସାହିତ୍ୟରେ ଅପୂର୍ବ । ଶ୍ରୀ ବଂଶୀବଲ୍ଲଭଙ୍କୁ ସେଥିପାଇଁ ମୁଁ କୋଟି କୋଟି ନମସ୍କାର ଜଣାଉଛି । 'ରସକଲ୍ଲୋଳ'ର ଦୀନକୃଷ୍ଣ ବହୁନମ୍ରା କୁଚକୁ ଦୁଃଖୀର ପରିବାର-କଷ୍ଟ ଚିନ୍ତା ସହିତ ତୁଳନା କରି ଖଣ୍ଡେ ହାତ ଦେଖେଇଥିଲେ, ମାତ୍ର ବଂଶୀବଲ୍ଲଭ ସେଥିରୁ ବଳିଗଲେ :

ସୁଜନେ, ମୂର୍ଖେ କହନ୍ତି ଏ ଢଳିଲା
ସୁରବର୍ଗ ଜିଣି, ଜିଣି ସେ ଧରଣୀ
ଏବେ ରସାତଳ ଚଳିଲା ।

ବାସ୍ତବିକ ଆମେ ସବୁ ମୂର୍ଖ ତ !

'କବି ବଂଶୀବଲ୍ଲଭ ଜିନ୍ଦାବାଦ୍ ! ଆପଣଙ୍କ ଉଦ୍ୟମକୁ ମଧ୍ୟ ଅଶେଷ ଅଶେଷ ଧନ୍ୟବାଦ – ବିଶେଷତଃ ଉପରୋକ୍ତ ବସ୍ତୁଟି ପ୍ରତି ଆମ ପରି ଭୂତପୂର୍ବ ବିଦଗ୍ଧମାନଙ୍କର ଦୃଷ୍ଟି ଫେରାଇ ପାରିଥିବା ହେତୁ !'

**ଡକ୍ଟର କୁଞ୍ଜବିହାରୀ ଦାଶ –** 'ଓଡ଼ିଶାରେ ମୁସଲମାନ ପ୍ରଭାବର ବିଲୟ କାଳ, ମରହଟ୍ଟାମାନଙ୍କର ପ୍ରତିପତ୍ତି ବୃଦ୍ଧି ଲାଭ କରୁଥାଏ । ହିନ୍ଦୁ ଓ ଇସଲାମୀ ସଂସ୍କୃତିର

ସମନ୍ୱୟ ଲାଗି ଯେପରି ଅଷ୍ଟାଦଶ ଶତାବ୍ଦୀ ପାଲାରେ ସେହିପରି ବଂଶୀବଲ୍ଲଭଙ୍କ ତାମସାରେ ଉଦ୍ୟମ ହୋଇଥିଲା । x x ଓଡ଼ିଶୀ ସାହିତ୍ୟରେ ତାମସାର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି । କିନ୍ତୁ ଲୀଳା-ଯାତ୍ରାର ସାଧାରଣ ବିକାଶ ପରମ୍ପରାରୁ ଏହା ଭିନ୍ନ । ଓଡ଼ିଶାରେ ଏହା ଏକକ କହିଲେ ଚଳେ । x x x ଅଧ୍ୟାପକ କୃଷ୍ଣଚରଣ ବେହେରାଙ୍କ ସଂଗ୍ରହ ଅଧିକ ପୂର୍ଣ୍ଣାଙ୍ଗ; ସେ ସଂଗ୍ରହ ଓ ସଂକଳନରେ ବୈଜ୍ଞାନିକ ରୀତି ଅବଲମ୍ବନ କରିଅଛନ୍ତି । ତା'ଙ୍କ ମୁଖବନ୍ଧ ଗୋଟିଏ ଗବେଷଣାମୂଳକ ପ୍ରବନ୍ଧ । ସେ ଓଡ଼ିଶାର ଇସଲାମୀ ସାହିତ୍ୟ, ଅଷ୍ଟାଦଶ ଶତାବ୍ଦୀର ଐତିହାସିକ ଓ ସାହିତ୍ୟିକ ପରମ୍ପରା ଉପରେ ଉଜ୍ଜ୍ୱଳ ଆଲୋକପାତ କରିଅଛନ୍ତି ।'

## 'ରେଭେନ୍ସାଭିଆନ୍'

କଟକ ରେଭେନ୍ସା କଲେଜ ସହିତ ମୋର ସଂପର୍କ ପ୍ରାୟ ବାରବର୍ଷର । ଦୁଇବର୍ଷ ଛାତ୍ର ଭାବରେ ଏବଂ ଦଶବର୍ଷ ଶିକ୍ଷକ ଭାବରେ । ଭଦ୍ରକ ପ୍ରାଇଭେଟ୍ କଲେଜରେ ୧୯୫୦-୫୧ ଶିକ୍ଷାବର୍ଷରେ ସ୍ନାତକ ଶ୍ରେଣୀ ଫିଟି ନ ଥିଲା । ପୁଣି, ମୋର ଶୁଭାନୁଧ୍ୟାୟୀ ଗୁରୁ ଗଗନବିହାରୀ ମହାନ୍ତି ଓଡ଼ିଆ ଅନର୍ସ୍ ବିଷୟ ଘେନି ସ୍ନାତକ ଶ୍ରେଣୀରେ ଅଧ୍ୟୟନ କରିବାକୁ ମୋତେ ପରାମର୍ଶ ଦେଇଥିଲେ । ଅର୍ଥାଭାବରୁ ପଶ୍ଚିମବଙ୍ଗର ଶାନ୍ତିନିକେତନ ଯାଇ ପଢ଼ିବାର ଆଶା ପରିତ୍ୟାଗ କରିଥିଲି । ଅଗତ୍ୟା ରେଭେନ୍ସା କଲେଜରେ ଓଡ଼ିଆ ଅନର୍ସ ବିଷୟ ଘେନି ଅଧ୍ୟୟନ କଲି । ଅଢ଼େଇ ବର୍ଷ ପରେ ବାପାଙ୍କର ପ୍ରୋଭିଡ଼େଣ୍ଟ୍ ଫଣ୍ଡ୍ ଓ ଅନ୍ୟାନ୍ୟ ସୂତ୍ରରୁ ଅର୍ଥ ବ୍ୟବସ୍ଥା ହେଲାରୁ ମୁଁ ଶାନ୍ତିନିକେତନସ୍ଥ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ 'ବିଶ୍ୱଭାରତୀ'ରେ ଅଧ୍ୟୟନ କରିବାର ଆଶା ପୂରଣ କଲି ।

୧୯୫୦ ମସିହାର ରେଭେନ୍ସା ସମଗ୍ର ଦେଶରେ ଅନ୍ୟତମ ବୃହତ୍ତର କଲେଜ । ଓଡ଼ିଶା ରାଜ୍ୟ ପାଇଁ ତ ଏକ ଐତିହ୍ୟମଣ୍ଡିତ ଜ୍ଞାନପୀଠ ! ଏହା ବିଷୟରେ ଏକ ଇଂରେଜୀ କଥା ପ୍ରବଚନ ଆକାରରେ ପ୍ରଚଳିତ ଅଛି – The history of Ravenshaw College is the history of modern Orissa । କଥାଟି ବହୁ ପରିମାଣରେ ସତ୍ୟ । ପ୍ରଳୟଙ୍କରୀ ନଅଙ୍କ ଦୁର୍ଭିକ୍ଷ ପୂର୍ବରୁ (୧୮୬୫-୬୬) ଏହାର ଉନ୍ମେଷ ଏବଂ ଦୁର୍ଭିକ୍ଷ ପରେ ବିକାଶ । କଟକର ଏକ ସ୍କୁଲକୁ ୧୮୬୩ ମସିହାରେ ଇଣ୍ଟର୍‌ମିଡ଼ିଏଟ୍ କଲେଜରେ ପରିଣତ କରାଗଲା । ୧୮୭୬ ମସିହାରେ ଏହା ଡିଗ୍ରୀ କଲେଜରେ ପରିଣତ ହେଲା ତତ୍‌କାଳୀନ ଓଡ଼ିଶା କମିଶନର୍ ଟି.ଇ. ରେଭେନ୍ସାଙ୍କ ଉଦ୍ୟମ ଓ ପୃଷ୍ଠପୋଷକତାରେ । ରେଭେନ୍ସା ସାହେବ ଓଡ଼ିଶାର ଉନ୍ନତି ପାଇଁ ଯେଉଁ କେତେକ କାର୍ଯ୍ୟ କରିଯାଇଛନ୍ତି,

ତାହା ମଧ୍ୟରେ ରେଭେନ୍ସା କଲେଜର ପ୍ରତିଷ୍ଠା ଅନ୍ୟତମ । ଫକୀରମୋହନ ତେଣୁ ଆପଣା 'ଉତ୍କଳ ଭ୍ରମଣଂ' (୧୮୯୨) ପୁସ୍ତକରେ ଏହିପରି ତାଙ୍କୁ ଅଭିନନ୍ଦନ ଜଣାଇଛନ୍ତି –

ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ଧନ୍ୟ ଟି. ରେଭେନ୍ସା
ଚିରକାଳ ତୁମ୍ଭ କୀର୍ତ୍ତି ଗାଇବ ଓଡ଼ିଶା । x x
x x ବାଳିକା ସ୍କୁଲ, ଜେନେରାଲ ହସ୍‌ପିଟାଲ୍
ଚାନ୍ଦବାଲି ବନ୍ଦର, ହାଇ ଲେବେଲ୍ କେନାଲ୍,
ନର୍ମାଲ୍ ସ୍କୁଲ, ସର୍ଭେ ସ୍କୁଲ ଇତ୍ୟାଦି
ତୁମ୍ଭର ଏ କାର୍ଯ୍ୟ ସନମତ ସର୍ବବାଦୀ ।
ରେଭେନ୍‌ସା କଲେଜ କୀର୍ତ୍ତି ସବୁଦିନେ ଥିବ
ଜୟ ଜୟ ଜୟ ଜୟ ରେଭେନ୍‌ସା ସାହେବ ।

କଲେଜ ଉଦ୍ଦେଶ୍ୟରେ ଓଡ଼ିଶାବାସୀ କୋଡ଼ିଏ ହଜାର ଟଙ୍କା ଏବଂ ତତ୍‌କାଳୀନ ମୟୂରଭଂଜ ମହାରାଜା ପଚିଶ ହଜାର ଟଙ୍କା ଦାନ କରିଥିଲେ । ମୟୂରଭଂଜ ମହାରାଜାଙ୍କ ପରାମର୍ଶ କ୍ରମେ କଲେଜର ନାମକରଣ ହେଲା 'ରେଭେନ୍ସା କଲେଜ' । ବର୍ତ୍ତମାନ କଟକ ଚାଉଳିଆଗଂଜର ବିସ୍ତୃତ ପରିସରରେ କଲେଜର ଯେଉଁ ବିଶାଳ ହର୍ମ୍ୟ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ, ସେଠାକୁ କଲେଜଟି ସ୍ଥାନାନ୍ତରିତ ହେଲା ୧୯୨୧ ମସିହାରେ ।

ଏହି କଲେଜରେ ବିଭିନ୍ନ ସମୟରେ ଦେଶର କେତେକ ଜ୍ଞାନୀ, ଗୁଣୀ ବ୍ୟକ୍ତି ଅଧ୍ୟାପନା କାର୍ଯ୍ୟ କରିଛନ୍ତି ଏବଂ ଅଗଣିତ ଛାତ୍ରଛାତ୍ରୀ ଏଠାରେ ଅଧ୍ୟୟନ କରି ସମାଜର ନାନା କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଛନ୍ତି । ଏଠାରେ ମୁଁ କେବଳ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ କଥା କିଛି କହିବି । ରେଭେନ୍ସା, ଡିଗ୍ରୀ କଲେଜ ହେବାର ପ୍ରାୟ ଷାଠିଏ ବର୍ଷ ପରେ ଅର୍ଥାତ୍ ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ସଂଗେ ସଂଗେ ଏଠାରେ ଓଡ଼ିଆ ଭାଷା-ସାହିତ୍ୟ ଏକ ଅଧ୍ୟୟନ-ଅଧ୍ୟାପନାର ବିଷୟ ରୂପେ ପ୍ରବର୍ତ୍ତିତ ହେଲା । ପ୍ରଥମ ବର୍ଷ ଇଣ୍ଟରମିଡ଼ିଏଟ୍ କ୍ଲାସ୍‌ରେ ପ୍ରାୟ ପଚାଶ ଜଣ, ବି.ଏ. ଶ୍ରେଣୀରେ ପ୍ରାୟ ପନ୍ଦର ଜଣ ଛାତ୍ର ଇଚ୍ଛାଧୀନ ଓଡ଼ିଆ ବିଷୟ ଗ୍ରହଣ କରିଥିବାର ଜଣାପଡ଼ିଛି । ସେତେବେଳେ ଓଡ଼ିଆ ପଢ଼ାଉଥିଲେ ଦର୍ଶନ ଅଧ୍ୟାପକ ରତ୍ନାକର ପତି, ସଂସ୍କୃତ ଅଧ୍ୟାପକ କାଶୀନାଥ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି ଓ ଲକ୍ଷ୍ମୀକାନ୍ତ ଚୌଧୁରୀ । ୧୯୪୨ ମସିହାରେ କଲେଜରେ ଓଡ଼ିଆ ଅନର୍ସ୍ ଶ୍ରେଣୀ ଫିଟିଲା ଏବଂ ଓଡ଼ିଆ ଏମ୍.ଏ. ଶ୍ରେଣୀର ଅଧ୍ୟୟନ-ଅଧ୍ୟାପନା ଚାଲିଲା ୧୯୪୬ ମସିହାରୁ । ବିଭାଗର ପ୍ରଥମ ପ୍ରଫେସର୍ ହେଲେ ଡକ୍ଟର କରୁଣାକର କର । ତାଙ୍କ ପୂର୍ବରୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ବିଭାଗୀୟ ମୁଖ୍ୟ ଭାବରେ କାର୍ଯ୍ୟ କରିଥିଲେ, କିନ୍ତୁ ତଥାକଥିତ ପ୍ରଫେସର୍ ହୋଇପାରି ନ ଥିଲେ ।

ପ୍ରସଙ୍ଗ କ୍ରମେ ଏଠାରେ ଓଡ଼ିଆ ଭାଷା-ସାହିତ୍ୟର ଉଚ୍ଚତର ଅଧ୍ୟୟନ-ଅଧ୍ୟାପନା ସଂପର୍କରେ କିଞ୍ଚିତ୍ ସୂଚନା ଦିଆଯାଇପାରେ । କଲିକତା ବିଶ୍ୱବିଦ୍ୟାଳୟରେ ଆଧୁନିକ ଭାରତୀୟ ଭାଷା-ସାହିତ୍ୟର ଏକ ବିଭାଗ ରୂପେ ଓଡ଼ିଆ ଏମ୍.ଏ. ଶ୍ରେଣୀ ଫିଟିଲା ୧୯୧୯ ମସିହାରେ । ପ୍ରଥମ ସହକାରୀ ଅଧ୍ୟାପକ ଭାବରେ ପଣ୍ଡିତ ନୀଳକଣ୍ଠ ଦାସ ନିଯୁକ୍ତ ହୋଇଥିଲେ । ସେ କଲିକତା ଛାଡ଼ିଲା ପରେ ପଣ୍ଡିତ ବିନାୟକ ମିଶ୍ର ସେହି ପଦରେ ନିଯୁକ୍ତ ହେଲେ । ସେତେବେଳେ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଥିଲେ ବିଜୟଚନ୍ଦ୍ର ମଜୁମଦାର । ସର୍ବଶ୍ରୀ ଲୋକନାଥ ମହାପାତ୍ର, ଚିନ୍ତାମଣି ଆଚାର୍ଯ୍ୟ, କାହ୍ନୁଚରଣ ମିଶ୍ର, ରାଜକିଶୋର ରାୟ, ଚିନ୍ତାମଣି ବେହେରା ପ୍ରମୁଖ ପ୍ରାୟ ତେରଜଣ ଛାତ୍ର କଲିକତା ବିଶ୍ୱବିଦ୍ୟାଳୟର ଓଡ଼ିଆ ଏମ୍.ଏ. ଡିଗ୍ରୀଧାରୀ ଥିବାର ଜଣାପଡ଼ିଛି । ସଂପ୍ରତି ସେଠାରେ ଓଡ଼ିଆ ଏମ୍.ଏ. ଶ୍ରେଣୀରେ ଅଧ୍ୟୟନ-ଅଧ୍ୟାପନା ଚାଲୁ ନାହିଁ । ତାହାର କାରଣ ବୋଧହୁଏ ରେଭେନ୍ସା କଲେଜ ତଥା ଶାନ୍ତିନିକେତନସ୍ଥ ବିଶ୍ୱଭାରତୀରେ (୧୯୫୧) ଓଡ଼ିଆ ଏମ୍.ଏ. ପାଠ୍ୟକ୍ରମର ପ୍ରବର୍ତ୍ତନ ।

୧୯୫୦-୫୧ ଶିକ୍ଷାବର୍ଷରେ ଆମେ ପ୍ରାୟ ଷୋହଳ ଜଣ ଛାତ୍ରଛାତ୍ରୀ ଓଡ଼ିଆ ଅନର୍ସ୍ ପଢୁଥିଲୁ । ଆମକୁ ପଢ଼ାଉଥିଲେ ଅଧ୍ୟାପକ ଜୟକୃଷ୍ଣ ମିଶ୍ର, ବଂଶୀଧର ମହାନ୍ତି, ଗୋପାଳଚନ୍ଦ୍ର ମିଶ୍ର, ଶାନ୍ତିଲତା ବେହେରା, ଭୋଳାନାଥ ମିଶ୍ର, ଜାନକୀବଲ୍ଲଭ ମହାନ୍ତି (ଧଳା) ପ୍ରମୁଖ ଶିକ୍ଷକ-ଶିକ୍ଷିକାବୃନ୍ଦ । ପରବର୍ଷ ଆମର ଟେଷ୍ଟ୍ ପରୀକ୍ଷା ପୂର୍ବରୁ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଆସି ବିଭାଗରେ ଯୋଗ ଦେଲେ । ସେ ଅଳ୍ପ କେତୋଟି ମାତ୍ର କ୍ଲାସ୍ ନେଇ ସାହିତ୍ୟର ଇତିହାସ ପଢ଼ାଉଥିଲେ । ଦୁଇବର୍ଷ ମଧ୍ୟରେ ସବୁଠାରୁ କମ୍ ଓଡ଼ିଆ ଅନର୍ସ୍ କ୍ଲାସ୍ ନେଇଥିଲେ ବିଭାଗ-ମୁଖ୍ୟ ପ୍ରଫେସର୍ କରୁଣାକର କର । ଅତି ବେଶିରେ ସେ ପାଞ୍ଚଟି କ୍ଲାସ୍ ନେଇଥିବେ; ତହିଁରେ ଆମକୁ ସେ ଓଡ଼ିଆ ବ୍ୟାକରଣ ପଢ଼ାଉଥିଲେ । ପ୍ରଫେସର୍ କର ଖୁବ୍ ପାନ ଚୋବାଉଥିଲେ । କ୍ଲାସ୍ ନେବା ବେଳେ ତାଙ୍କ ତୁଣ୍ଡର ପାନପିକର ଛିଟା ଆସି ଆଗ ସିଟ୍‌ରେ ବସିଥିବା ଝିଅମାନଙ୍କ ଶାଢ଼ୀରେ ପଡ଼ି ବିଚିତ୍ର ଦୃଶ୍ୟ ସୃଷ୍ଟି କରୁଥିଲା, ଯାହା ଆମକୁ ବେଶ୍ ହସର ଖୋରାକ ଯୋଗାଉଥିଲା । ସେତେବେଳେ ପ୍ରାୟ ସମସ୍ତ ଛାତ୍ରୀ ଶାଢ଼ୀ ପିନ୍ଧି କଲେଜ ଆସୁଥିଲେ । ମଥାରେ ବେଣୀ ସଂହାର କରୁଥିଲେ । ବର୍ତ୍ତମାନ ଝିଅପିଲାଙ୍କ ପରି ସାଲଓ୍ୱାର୍-ପଞ୍ଜାବୀ ପିନ୍ଧି ମୁକ୍ତକେଶୀ ହୋଇ କଲେଜ ପ୍ରାୟ ଆସୁ ନ ଥିଲେ ।

ଆମ ସମୟରେ କଲେଜ ଅଧ୍ୟକ୍ଷ ଥିଲେ ପ୍ରଫେସର୍ ଜି.ବି. ବେନାର୍ଜି (ପଦାର୍ଥ ବିଜ୍ଞାନ) । କଡ଼ା ଶାସକ ବୋଲି ତାଙ୍କର ନାମ ଥିଲା । ଛାତ୍ର ସମାଜର ଭଲ-ମନ୍ଦ ସେ ଧୈର୍ଯ୍ୟର ସହ ଶୁଣୁଥିଲେ ଏବଂ ସାଧମତେ ଆପତ୍ତି ଅଭିଯୋଗର ଫଇସଲା କରି

ଦେଉଥିଲେ । ଆମେ ତାଙ୍କୁ ଭୟ କରୁଥିଲେ ମଧ ଭକ୍ତି କରୁଥିଲୁଁ । ମୋର ବି.ଏ. ପରୀକ୍ଷାଫଳ ଖବରକାଗଜରେ ବାହାରିଗଲା । କିନ୍ତୁ କଲେଜକୁ ଆସିଥିବା ପାଶ୍ ତାଲିକାରେ କୌଣସି କାରଣରୁ ମୋର ନାମ ନ ଥିଲା । ମୁଁ ଅଧକ୍ଷ ବେନାର୍ଜିଙ୍କୁ ସାକ୍ଷାତ୍ କରି ଏ ବିଷୟ ଜଣାଇଲି, ସେ ସଙ୍ଗେ ସଙ୍ଗେ ଟେଲିଫୋନ୍ ଯୋଗେ ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ଜଣାଇ ତାଲିକାରେ ସଂଶୋଧନ କରାଇ ଦେଲେ ।

ଯେଉଁ ଓଡ଼ିଆ ଅନର୍ସ୍ ପଢ଼ିବାକୁ ମୁଁ ରେଭେନ୍ସା କଲେଜ୍ ଆସିଥିଲି, ପ୍ରାୟ ଦୁଇ ବର୍ଷ କାଳ ଅନର୍ସ୍ ପାଠ ପଢ଼ିଲି । କିନ୍ତୁ ଅନର୍ସ୍ ପରୀକ୍ଷା ଦେବାରୁ ବଞ୍ଚିତ ହେଲି । ଟେଷ୍ଟ୍ ପରୀକ୍ଷାରେ ପାଶ୍ ବିଷୟ ଦର୍ଶନଶାସ୍ତ୍ରରେ ମୁଁ ଭଲ ଫଳ କରି ନ ଥିବାରୁ ଅନର୍ସ୍ ବ୍ୟତିରେକ ମୋତେ ସେଣ୍ଟଅପ୍ କରି ଦିଆଗଲା । ମାତ୍ର ଓଡ଼ିଆ ଅନର୍ସ୍ ବିଷୟରେ ଟେଷ୍ଟ୍ ପରୀକ୍ଷାରେ ମୁଁ ଭଲ ମାର୍କ ରଖିଥିଲି । ବିଭାଗୀୟ ମୁଖ୍ୟ ପ୍ରଫେସର୍ କର ଓ ଅନ୍ୟାନ୍ୟ ଅଧାପକଙ୍କୁ ବୁଝାଇ କହିଲି – ମୋତେ ଅନର୍ସ୍ ସହ ସେଣ୍ଟଅପ୍ କରିଦିଆଯାଉ । ଫାଇନାଲ୍ ପରୀକ୍ଷାରେ ମୁଁ ଅନର୍ସ୍ ସହ ନିଶ୍ଚୟ ପାଶ୍ କରିବାର ପ୍ରତିଶ୍ରୁତି ଦେଉଛି । ମୋ କଥା କେହି ଶୁଣିଲେ ନାହିଁ, ଷ୍ଟାଫ୍ କାଉନ୍ସିଲ୍ ମିଟିଂରେ ମୋ ବିଷୟରେ ତୁଣ୍ଡ ଖୋଲି ପଦେ ହେଲେ କେହି କହିଲେ ନାହିଁ । ଅନର୍ସ୍ ବ୍ୟତିରେକ ମୁଁ ବି.ଏ. ପାଶ୍ କଲି । ଲାଭ ହେଲା ଏତିକି ଯେ – ଅନର୍ସ୍‌ର ପାଠ୍ୟ ବିଷୟରେ ମୁଁ ଏକ ପ୍ରକାର ଦୋରସ୍ତ ହୋଇଗଲି, ଯାହା ଏମ୍.ଏ. ପଢ଼ିଲା ବେଳେ ମୋତେ ବିଶେଷ ସାହାଯ୍ୟ କଲା ।

ସେତେବେଳେ ଆମକୁ ଇଂରେଜୀ ପଢ଼ାଉଥିଲେ ଅଧାପକ ଗିରିଜାଶଙ୍କର ରାୟ । ସେକ୍ସପିୟର୍‌ଙ୍କ 'କିଙ୍ଗ୍ ଲିୟର୍' ନାଟକ ପଢ଼ାଇଲା ବେଳେ ସେ ନିଜେ ଲିୟର୍ ଭୂମିକାରେ ପାର୍ଟ୍ କରୁଥଲା ଭଳି ଲାଗୁଥିଲା । ଅଧାପକ ସର୍ବେଶ୍ୱର ଦାସ, ଅଧାପିକା ପ୍ରଭାତ ନଳିନୀ ଦାସ ଓ ଅଧାପକ ପ୍ରଫୁଲ୍ଲ ପତି ମଧ ଇଂରେଜୀ ପଢ଼ାଉଥିଲେ । ତିନିହେଁ ଭଲ ପଢ଼ାଉଥିଲେ । ଫୋର୍ଥ୍ ଇୟର୍ ବେଳକୁ ଅଧାପକ ବିଧୁଭୂଷଣ ଦାସ ମଧ ବିଦେଶରୁ ବାହୁଡ଼ି ଆମକୁ ଇଂରେଜୀ ପ୍ରବନ୍ଧ ପଢ଼ାଇଲେ । ଅଧାପକ ଶ୍ରୀନିବାସ ସାହୁ ନୀତିଶାସ୍ତ୍ର ଏବଂ ଅଧାପକ ରାଧାନାଥ ରଥ ମନୋବିଜ୍ଞାନ ପଢ଼ାଉଥିଲେ; ସେତେବେଳେ ଏ ଦୁଇଟି ବିଷୟ ଦର୍ଶନ ଶାସ୍ତ୍ରର ଅନ୍ତର୍ଭୁକ୍ତ ଥିଲା । ମୋର ପାଠ୍ୟ ବିଷୟ ବାହାରେ ଯେଉଁ ଅଧାପକମାନଙ୍କ ସହ ବିଭିନ୍ନ ସୂତ୍ରରେ ଉଣାଧିକେ ସଂପର୍କ ଥିଲା, ସେମାନଙ୍କ ମଧରେ ବଳଭଦ୍ର ପ୍ରସାଦ (ରସାୟନ ଶାସ୍ତ୍ର), ଡକ୍ଟର ସଦାଶିବ ମିଶ୍ର (ଅର୍ଥନୀତି), ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ (ଇତିହାସ), ଅଧାପକ ଶ୍ରୀ ରାମଚନ୍ଦ୍ର ଦାଶ (ରାଜନୀତି ବିଜ୍ଞାନ) ପ୍ରମୁଖଙ୍କ ନାମ ସ୍ମରଣୀୟ ।

ମୋର ସହପାଠୀମାନଙ୍କ ମଧରେ ଥିଲେ ଧୀର ବିଶ୍ୱାଳ, ପରବର୍ତ୍ତୀ କାଳରେ ଯେ ଭଲ ଅଭିନେତା ଭାବରେ ଖ୍ୟାତି ଅର୍ଜନ କରିଥିଲେ । ଶକ୍ତି ପ୍ରସାଦ ମିଶ୍ର, ଯେ

କଟକସ୍ଥ ସରକାରୀ ପ୍ରେସ୍‌ର ଡିରେକ୍ଟର୍ ହୋଇଥିଲେ । ଚକ୍ରଧର ସାମଲ, ପରବର୍ତ୍ତୀ କାଳରେ 'ଝଙ୍କାର'ର ପରିଚାଳନା ସଂପାଦକ, ବୈଷ୍ଣବଚରଣ ବଳ ପରେ ଓଡ଼ିଆ ଭାଷା-ସାହିତ୍ୟର ଅଧ୍ୟାପକ, ମାଧବଚନ୍ଦ୍ର ଶତପଥୀ ରଙ୍ଗରସର ଲେଖକ ପ୍ରମୁଖ । ଏମାନଙ୍କ ମଧ୍ୟରୁ କେହି କେହି ମୋର ଉପର କ୍ଲାସ୍‌ରେ, ଆଉ କେହି କେହି ତଳ କ୍ଲାସ୍‌ରେ ପଢୁଥିଲେ । ଆଉ କେତେକ ସହପାଠୀ ବନ୍ଧୁଙ୍କ ମୁହଁ ଆଖି ଆଗରେ ଭାସି ଉଠୁଛି, କିନ୍ତୁ ସେମାନଙ୍କର ନାମ ମନେ ପଡୁ ନାହିଁ । ମାତ୍ର ରେଭେନ୍ସା କଲେଜରେ ସେତେବେଳେ ମୋର ବେଶି ବନ୍ଧୁ ନ ଥିଲେ । ବୋଧହୁଏ ମୁଁ ମଫସଲୀ ପିଲା ଥିବାରୁ ମୋ ଭିତରେ ଏକପ୍ରକାର ହୀନମନ୍ୟତା କାର୍ଯ୍ୟ କରୁଥିଲା, ଭଲ ଚକଚକିଆ ବେଶ ପୋଷାକରେ ଆସୁଥିବା ପିଲାମାନଙ୍କ ସହ ମିଳାମିଶା କରିବା ପାଇଁ ସଂକୋଚ ବୋଧ କରୁଥିଲି । ଥାର୍ଡ଼ ଇୟର୍ ବର୍ଷଯାକ କଟକରେ ମଥା ଗୁଞ୍ଜି ରହିବା ପାଇଁ ସୁବ୍ୟବସ୍ଥା କରିପାରି ନ ଥିଲି, ହଷ୍ଟେଲ୍‌ରେ ସିଟ୍ ପାଇ ନ ଥିଲି । ଫୋର୍ଥ୍ ଇୟର୍ ବେଳକୁ କଲେଜର ପଶ୍ଚିମ ଛାତ୍ରାବାସରେ ସିଟ୍ ମିଳିଲା । ଭଲ ସ୍ଥିତିରେ ରହି ପଢ଼ାପଢ଼ି କରିବାର ସୁଯୋଗ ପାଇଲି । ଟେଷ୍ଟ୍ ପରୀକ୍ଷା ପୂର୍ବରୁ ମୋତେ ଟାଇଫଏଡ୍ ଜ୍ୱର ହେଲା । ହଷ୍ଟେଲ୍ ଛାଡ଼ି ମୁଁ ଗାଆଁକୁ ଚାଲିଗଲି । କିଛି ଦିନ ପରେ ଗାଁରୁ ଫେରି କଲେଜର ଟେଷ୍ଟ୍ ପରୀକ୍ଷା ଦେଲି । ସେତିକିବେଳେ ଆଉ ଏକ ବିପଦ ଆସି ପହଞ୍ଚିଲା । ମୋର ଆଖି ଖରାପ ହେବାରୁ ଭଲ ଭାବରେ ପଢ଼ାଶୁଣା କରିପାରିଲି ନାହିଁ । ପରେ ଆଖି ପରୀକ୍ଷା କିର ଚଷମା ବ୍ୟବହାର କରିବାକୁ ପଡ଼ିଲା ।

ମୋଟାମୋଟି ଭାବରେ କହିଲେ, ରେଭେନ୍ସା କଲେଜରେ ମୋର ଦୁଇବର୍ଷର ଛାତ୍ରଜୀବନ ଭଲରେ କଟି ନ ଥିଲା । ଦୁଃସ୍ଥିତି ମଧ୍ୟରେ ମୁଁ କିନ୍ତୁ ପଢ଼ାଶୁଣା ଯଥାରୀତି ଚଳାଇଥିଲି । ପାଠ୍ୟପୁସ୍ତକ ବାହାରେ ଓଡ଼ିଆ, ଇଂରାଜୀ ଓ ବଙ୍ଗଳା ଭାଷାର ପତ୍ରପତ୍ରିକା ପଢୁଥିଲି । କଲେଜର କନିକା ଲାଇବ୍ରେରୀ ଏବଂ ତଦ୍ ସଂଲଗ୍ନ ରିଡ଼ିଂ ରୁମ୍ ବହିପତ୍ରର ଗନ୍ତାଘର ଥିଲା । କିନ୍ତୁ ଗ୍ରନ୍ଥାଗାର-ସେବାର ଅବ୍ୟବସ୍ଥା ଯୋଗୁ କେବଳ ମୁଁ ନୁହେଁ, ମୋ ଭଳି ବହୁ ବହିପଢ଼ାଳି ଛାତ୍ରଛାତ୍ରୀ ଗ୍ରନ୍ଥାଗାରର ସଦୁପଯୋଗ କରିପାରୁ ନ ଥିଲେ । ଲାଇବ୍ରେରୀର ବହିଥାକଗୁଡ଼ିକ ପାଖକୁ ଯାଇ ଦରକାରୀ ବହି ଖୋଜି ଆଣିବା ଆମ ପାଇଁ ନିଷିଦ୍ଧ ଥିଲା । ତେଣୁ ବହି ଖୋଜି ଦେବା ଦାୟିତ୍ୱ ଥିଲା ଲାଇବ୍ରେରୀ ପିଅନମାନଙ୍କ ଉପରେ । ଅଧିକାଂଶ ସମୟରେ ପିଅନ୍‌ମାନେ ଦରକାରୀ ବହି ଯୋଗାଇ ପାରୁ ନ ଥିଲେ । ମୋର ମନେ ପଡୁଛି – ଦୁଇ ବର୍ଷ ଭିତରେ କନିକା ଲାଇବ୍ରେରୀର ଦଶ ଖଣ୍ଡିରୁ ଅଧିକ ବହି ମୁଁ ଆଣି ବ୍ୟବହାର କରି ନ ଥିବି । କଲେଜରେ କ୍ରୀଡ଼ା କସରତ୍, ନାଟ୍ୟ କର୍ମ, ଏସ୍.ଏସ୍.ଜି. (ସୋସିଆଲ୍ ସାର୍ଭିସ୍ ଗିଲଡ୍) ଇତ୍ୟାଦି କାର୍ଯ୍ୟକ୍ରମ ଯଥାରୀତି ଚାଲିଥିଲା । ତହିଁରୁ ଗୋଟିଏ ଯୋଡ଼ିଏ କାର୍ଯ୍ୟକ୍ରମରେ ମୁଁ ଅଂଶଗ୍ରହଣ କରିଥିଲି । କଲେଜ

ମେଗାଜିନ୍ 'ରେଭେନ୍ସାଭିଆନ୍'ରେ କବିତା ପ୍ରକାଶ କରାଇଥିଲି । କଲେଜ ବାହାରେ କଟକ ସହରରେ ଚାଲିଥିବା ସାହିତ୍ୟିକ କାର୍ଯ୍ୟକ୍ରମରେ ବେଳେ ବେଳେ ଅଂଶଗ୍ରହଣ କରୁଥିଲି । 'ଡଗର' ପ୍ରେସ୍ ଓ କାର୍ଯ୍ୟାଳୟ ସଦ୍ୟ ଭଦ୍ରକରୁ କଟକ ଚାଲିଆସିଥାଏ, ପିଠାପୁରସ୍ଥ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ବାସଭବନ ନିକଟରେ ଥାଏ ତାହାର ନୂତନ କାର୍ଯ୍ୟାଳୟ । ସେଠିକି ମୁଁ ମଝିରେ ମଝିରେ ଯାଉଥିଲି । 'ଡଗର' ସଂପାଦକ ନିତ୍ୟାନନ୍ଦ ମହାପାତ୍ର, ଫତୁରାନନ୍ଦ ପ୍ରମୁଖ କବି ଲେଖକଙ୍କ ସହ ସେଠାରେ ସଂପର୍କ ସ୍ଥାପିତ ହୋଇଥିଲା । ସେତେବେଳେ 'ଡଗର'ରେ ମୋର ଅଳ୍ପ କେତୋଟି କବିତା ପ୍ରକାଶ ପାଇଥିଲା । କବିତା, ଗଳ୍ପାଦି ବେଶି ଲେଖା ପ୍ରକାଶ ପାଇଥିଲା 'ରବିବାର ପ୍ରଜାତନ୍ତ୍ର' ପୃଷ୍ଠାରେ ।

ସେତେବେଳେ ମୋ ଭଳି ତରୁଣ କବି ଲେଖକଙ୍କ ପାଇଁ 'ରବିବାର ପ୍ରଜାତନ୍ତ୍ର' ମୁଖପତ୍ର ଭାବରେ କାର୍ଯ୍ୟ କରୁଥିଲା କହିଲେ ଚଳେ । ବରିଷ୍ଠ ବା ପ୍ରବୀଣ ସାହିତ୍ୟ-ସ୍ରଷ୍ଟାମାନେ ଲେଖାଲେଖି କରୁଥିଲେ 'ଝଙ୍କାର' ପତ୍ରିକାରେ । ଡକ୍ଟର ହରେକୃଷ୍ଣ ମହତାବଙ୍କ ପରିକଳ୍ପିତ ଓ ପ୍ରଯୋଜିତ ବାର୍ଷିକ ସାହିତ୍ୟ ସମାରୋହ ପ୍ରଜାତନ୍ତ୍ର ପ୍ରଚାର ସମିତିର 'ବିଷୁବ ମିଳନ' ସମଗ୍ର ରାଜ୍ୟର କବିଲେଖକମାନଙ୍କର ଏକ ମିଳନପୀଠ ଥିଲା । ସେଠାରେ କେବଳ ସାହିତ୍ୟିକମାନଙ୍କର ପ୍ରୀତିମିଳନ ହେଉ ନ ଥିଲା, ବିଭିନ୍ନ ସାଂସ୍କୃତିକ ପ୍ରସଙ୍ଗରେ ଆଲୋଚନା-ଚର୍ଚ୍ଚା, କବିତା ପାଠ, ବିଶିଷ୍ଟ ପଣ୍ଡିତ ବ୍ୟକ୍ତିଙ୍କର ଅଭିଭାଷଣ ମଧ୍ୟ ଅନୁଷ୍ଠିତ ହେଉଥିଲା । ସାହିତ୍ୟର ବିଭିନ୍ନ ବିଭାଗରେ କୃତିତ୍ୱ ଅର୍ଜନ କରିଥିବା କବି ଲେଖକମାନଙ୍କୁ 'ସଲିଳ ସିଞ୍ଚନ' ପୂର୍ବକ ମାନପତ୍ର ପ୍ରଦାନ ସହ ସମ୍ବର୍ଦ୍ଧିତ କରାଯାଉଥିଲା । 'ବିଷୁବ ମିଳନ' ଏ ପର୍ଯ୍ୟନ୍ତ ପ୍ରଚଳିତ ଥିବା ବଡ଼ ଆନନ୍ଦର କଥା । ଏହି ଧାରାରେ ରାଜ୍ୟର ଅନ୍ୟ କେତେକ ସାଂସ୍କୃତିକ ପ୍ରତିଷ୍ଠାନ ବାର୍ଷିକ ଲେଖକ ସମାରୋହ ଅନୁଷ୍ଠିତ କରାଉଥିବାର ଦେଖାଯାଏ ।

ସେତେବେଳେ ସିନେମା ଥିଏଟର୍ ଦେଖିବା ମୋର ଏକପ୍ରକାର ନିଶା ହୋଇ ଉଠିଥିଲା । କଲେଜ ପାଖ ରାଣୀହାଟ୍‌ରେ ଥିବା ହିନ୍ଦ୍ ସିନେମାରେ ପଡୁଥିବା ପ୍ରାୟ ପ୍ରତ୍ୟେକ ନୂଆ ଫିଲ୍ମ ମୁଁ ଦେଖୁଥିଲି । କଟକ ସହରରେ ଥିବା ଅନ୍ୟ ଦୁଇଟି ସିନେମା ହଲ୍ – କ୍ୟାପିଟେଲ୍ ଓ ପ୍ରଭାତରେ ମଧ୍ୟ ମଝିରେ ମଝିରେ ଫିଲ୍ମ ଦେଖୁଥିଲି । ଏ ତିନୋଟିଯାକ ସିନେମା ହଲ୍ ବର୍ତ୍ତମାନ ବନ୍ଦ । ବକ୍ସି ବଜାର ତିନିକୋଣିଆ ବଗିଚାରେ ଥିବା ବି-ଗ୍ରୁପ୍ ଅନ୍ନପୂର୍ଣ୍ଣା ଥିଏଟର୍‌ରେ ବରାବର ନାଟ୍ୟାଭିନୟ ଚାଲିଥିଲା । କଲେଜଠୁଁ ଦୂର ହେଲେହେଁ ମୁଁ ସେଠିକି ଯାଇ ପ୍ରତ୍ୟେକ ନୂଆ ନାଟକର ଅଭିନୟ ଦେଖୁଥିଲି । ମନେ ପଡୁଛି – ଅନ୍ନପୂର୍ଣ୍ଣାରେ 'ସାଧବ ଝିଅ' ନାଟକର ଅଭିନୟ ମୋତେ ଏତେ ଭଲ

ଲାଗିଥିଲା ଯେ ମୁଁ ତିନିଥର ସେହି ନାଟ୍ୟାଭିନୟ ଦେଖିଥିଲି । ସିନେମା-ଥିଏଟର୍‌ରେ ମୋର ବେଶ୍ କିଛି ଟଙ୍କା ଉଡ଼ିଯାଉଥିଲେ ହେଁ, ସେଥିପ୍ରତି ମୁଁ ଭ୍ରୂକ୍ଷେପ କରୁ ନଥିଲି ।

ରେଭେନ୍ସା କଲେଜରେ ଛାତ୍ର ଜୀବନର ଦୁଇଟି ଘଟଣା ମୋର ପାସୋର ହୋଇ ନାହିଁ । ଅନୁଗୁଳ ରନ୍ତଲେଇର ଜଣେ ବାଳକ ନେପାଳୀ ବାବାର ସର୍ବରୋଗ ନିରାମୟକାରୀ (?) ହୁକୁମ୍ ଔଷଧ ବଣ୍ଟନ । କେବଳ ଓଡ଼ିଶା ନୁହେଁ, ସାରା ଭାରତର ବିଭିନ୍ନ ଅଞ୍ଚଳରୁ ଲୋକଙ୍କର ଧାଡ଼ି ଛୁଟିଲା ଅନୁଗୁଳକୁ । ପୂର୍ବରୁ ଢେଙ୍କାନାଳର ଜଣେ ବାଳକ ବାଜି ରାଉତ ନାମ୍ କରିଥିଲା, ଏବେ ଆଉ ଜଣେ ବାଳକ ନେପାଳୀର ହେଲା ବଦ୍‌ନାମ (ସେତେବେଳେ ଅନୁଗୁଳ, ଢେଙ୍କାନାଳ ଜିଲ୍ଲାର ଅନ୍ତର୍ଭୁକ୍ତ ଥିଲା) । ନେପାଳୀ ଓଡ଼ିଶା ମୁହଁରେ କାଳି ବୋଳିଲା । ହଜାର ହଜାର ଲୋକ ଅନ୍ଧବିଶ୍ୱାସ ଓ କୁସଂସ୍କାର ବଶବର୍ତ୍ତୀ ହୋଇ ରନ୍ତଲେଇରେ ରୁଣ୍ଡ ହେଲେ । ସେହି ଛୋଟ ଜାଗାଟିରେ ଏତେ ଲୋକଙ୍କ ପାଇଁ ଖାଦ୍ୟ, ପାନୀୟ, ପରିମଳ ବ୍ୟବସ୍ଥା ସୁଲଭ ନ ଥିଲା । ତେଣୁ ହଇଜା, ଝାଡ଼ାବାନ୍ତି ଆଦି ମହାମାରୀ ବ୍ୟାପିଗଲା । ଶହ ଶହ ଲୋକ ପୋକ ମାଛି ପରି ମରିଗଲେ । ଆମେ ରେଭେନ୍ସା କଲେଜର ଛାତ୍ରମାନେ ଦଳ ଦଳ ହୋଇ ସ୍ୱେଚ୍ଛାସେବକ ଭାବରେ କଟକ ରେଲ୍ ଷ୍ଟେସନ୍‌ରେ ଢେଙ୍କାନାଳ ଆଡୁ ଆସୁଥିବା ରେଲ୍‌ଡ଼ବାରୁ ମୃତ ଓ ଅର୍ଦ୍ଧମୃତ ରନ୍ତଲେଇ ଯାତ୍ରୀଙ୍କୁ ବାହାର କରି ପ୍ଲାଟ୍‌ଫର୍ମରେ କୁଢ଼କୁଢ଼ ଜମାଉଥିଲୁଁ । ରେଲ ଷ୍ଟେସନ୍ ସେତେବେଳେ ନରକ କୁଣ୍ଡରେ ପରିଣତ ହୋଇଥିଲା । ବହୁ କଷ୍ଟରେ ରନ୍ତଲେଇକୁ ଯାତ୍ରୀ ସମାଗମ ନିୟନ୍ତ୍ରଣ କରାଗଲା ଏବଂ ନେପାଳୀ ବାବାର ତାମସା ବନ୍ଦ କରି ଦିଆଗଲା ।

ଅନ୍ୟ ଘଟଣାଟି ହେଉଛି – କଲେଜ୍-ଫି ବା ଛାତ୍ରମାନଙ୍କ ଦରମା ବୃଦ୍ଧି ହେତୁ ଛାତ୍ର ଆନ୍ଦୋଳନ । ସେତେବେଳେ ଓଡ଼ିଶା ଆସେମ୍ବ୍ଲି ରେଭେନ୍ସା କଲେଜ ହଲ୍‌ରେ ଅନୁଷ୍ଠିତ ହେଉଥାଏ । ଅଧିବେଶନ ଚାଲିଥିବା ସମୟରେ ଛାତ୍ରମାନେ କଲେଜ-ଫି ବୃଦ୍ଧି ନ କରିବା ପାଇଁ ଆନ୍ଦୋଳନ କଲେ । ଏମ୍.ଏଲ୍.ଏ.ମାନଙ୍କୁ ହଲ୍ ଭିତରକୁ ଯିବା ପାଇଁ ଛାଡ଼ିଲେ ନାହିଁ, ପିକେଟିଂ କଲେ । ଆନ୍ଦୋଳନକାରୀଙ୍କ ସହିତ ପୋଲିସ୍‌ର ସଂଘର୍ଷ ହେଲା । କେତେକ ଛାତ୍ର ମାଡ଼ ଖାଇଲେ, କେତେକ ଗିରଫ୍ ହୋଇଗଲେ । ଆନ୍ଦୋଳନର ନେତୃବୃନ୍ଦଙ୍କ ମଧ୍ୟରେ ଥିଲେ ନନ୍ଦିନୀ ଶତପଥୀ । ଛାତ୍ର-ରାଜନୀତିରୁ ସେ ନିଜର ରାଜନୈତିକ ଜୀବନ ଆରମ୍ଭ କଲେ । ପରବର୍ତ୍ତୀ କାଳରେ କେନ୍ଦ୍ରମନ୍ତ୍ରୀ ଓ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇପାରିଥିଲେ । ଯାହାହେଉ, ସେତେବେଳେ କଲେଜ ପରିସରରେ ତୁମୂଳ କାଣ୍ଡ । କର୍ତ୍ତୃପକ୍ଷ କଲେଜ ବନ୍ଦ କରିଦେଲେ ଏବଂ ଆମକୁ ତୁରନ୍ତ ହଷ୍ଟେଲ୍ ଛାଡ଼ି ଚାଲିଯିବା ପାଇଁ ଆଦେଶ ଦେଲେ । ମୁଁ ଏହି ଛାତ୍ର ଆନ୍ଦୋଳନରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରି ନଥିଲି । ହଷ୍ଟେଲ୍ ବନ୍ଦ ହେଲା ପରେ ଗାଆଁକୁ ଚାଲିଗଲି ।

ରେଭେନ୍ସା କଲେଜରେ ମୋର ଶିକ୍ଷକ ଜୀବନ ଦୁଇ ଭାଗରେ ବିଭକ୍ତ । ୧୯୭୫ ମସିହାରୁ ଛଅ ବର୍ଷ ପ୍ରଥମ କିସ୍ତି । ୧୯୮୧ରେ ମୋତେ କନ୍ଧମାଳର ଫୁଲବାଣୀ ସରକାରୀ କଲେଜକୁ ବଦଳି କରାଗଲା, ସେ ବିଷୟ ମୁଁ ପରେ କହିବି । ୧୯୮୬ରେ ଫୁଲବାଣୀ କଲେଜରୁ ରେଭେନ୍ସାକୁ ବଦଳି ହେଲି । ଚାରି ବର୍ଷର ଦ୍ୱିତୀୟ କିସ୍ତି । ଏହି ଦଶବର୍ଷର କାର୍ଯ୍ୟକାଳ ମଧ୍ୟରେ ମୁଁ ସାଧମତେ ସ୍ନାତକୋତ୍ତର ଶ୍ରେଣୀରେ ଶିକ୍ଷାଦାନ କରିଛି । ସେତେବେଳେ ସ୍ନାତକୋତ୍ତର ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ମୁଖ୍ୟ ଅଧ୍ୟାପକ ଥାଆନ୍ତି ଡକ୍ଟର ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) । ଏକା ବିଭାଗରେ 'ଜାନକୀବଲ୍ଲଭ ମହାନ୍ତି' ନାମରେ ଦୁଇ ଜଣ ବ୍ୟକ୍ତି କାର୍ଯ୍ୟ କରୁଥିବାରୁ 'ଭରଦ୍ୱାଜ' ଉପନାମଟି ଜାନକୀବାବୁ ଗ୍ରହଣ କରିଥିବାର ଜଣାପଡ଼େ । ତାଙ୍କ ଦେହର ରଙ୍ଗ କୃଷ୍ଣବର୍ଣ୍ଣ ଥିବାରୁ ଅନେକେ ତାଙ୍କୁ 'କଳା ଜାନକୀ' ନାମରେ ଚିହ୍ନିତ କରୁଥିଲେ । 'ଧଳା ଜାନକୀ' ଥିଲେ ରେଭେନ୍ସା କଲେଜରେ ମୋର ଶିକ୍ଷକ, 'କଳା ଜାନକୀ' ହେଲେ ସହକର୍ମୀ । ସିନିୟରିଟି ଅନୁସାରେ ମୁଁ ଥିଲି ଠିକ୍ ତାଙ୍କ ତଳେ । ସେ ବେଶ୍ ଅମାୟିକ ଧରଣର ବ୍ୟକ୍ତି ଥିଲେ ଏବଂ ବିଭାଗୀୟ ବିଭିନ୍ନ ବ୍ୟାପାରରେ ମୋ ସହିତ ପରାମର୍ଶ କରୁଥିଲେ । ତାଙ୍କୁ ମୋର ପ୍ରଥମ ଉଲ୍ଲେଖଯୋଗ୍ୟ ପରାମର୍ଶ ହେଲା – ବିଭାଗର ଏକ ମୁଖପତ୍ର ପ୍ରକାଶ କରିବା । ସ୍ଥିର କଲୁଁ 'ସାହିତ୍ୟ ପତ୍ର' ନାମରେ ବାର୍ଷିକ ପତ୍ରିକାଟିଏ ପ୍ରକାଶ କରାଯିବ । ଛାତ୍ରଛାତ୍ରୀଙ୍କଠାରୁ ଆଦାୟ କରାଯାଉଥିବା ସେମିନାର୍ ଚାନ୍ଦା ସହିତ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅନୁଦାନରୁ କିଛି ଅର୍ଥ ମିଶାଇ ପତ୍ରିକା ପ୍ରକାଶ ବାବଦରେ ବ୍ୟୟିତ ହେବ । ଏ ଦିଗରେ ତତ୍‌କାଳୀନ କଲେଜ ଅଧ୍ୟକ୍ଷ ଡକ୍ଟର ମହେନ୍ଦ୍ରକୁମାର ରାଉତଙ୍କ ସାହାଯ୍ୟ-ସହଯୋଗ ମିଳିଲା ।

'ସାହିତ୍ୟ ପତ୍ର'ରେ ମୁଖ୍ୟତଃ ଛାତ୍ରଛାତ୍ରୀମାନଙ୍କର ଆଲୋଚନା ପ୍ରବନ୍ଧ ପ୍ରକାଶ ପାଇଲା । ଏହାର ଗୀତିକବିତା ବିଶେଷାଙ୍କ, ସାହିତ୍ୟ ତତ୍ତ୍ୱ ବିଶେଷାଙ୍କ ପ୍ରଭୃତିରେ ବିଭାଗୀୟ ଅଧ୍ୟାପକଙ୍କ ଲେଖା ସହିତ କଲେଜ ବାହାରର ସାହିତ୍ୟିକଙ୍କ ରଚନା ମଧ୍ୟ ପ୍ରକାଶ ପାଇଥିଲା । 'ସାହିତ୍ୟ ପତ୍ର'ର ଏହି ବିଶେଷାଙ୍କଗୁଡ଼ିକ ସଂଗ୍ରହଣୀୟ ସଂଖ୍ୟା ହୋଇ ରହିଛି । କଲେଜରେ ମୁଁ ଥିବା ପର୍ଯ୍ୟନ୍ତ 'ସାହିତ୍ୟ ପତ୍ର'ର ବାର୍ଷିକ ସଂଖ୍ୟା ନିୟମିତ ପ୍ରକାଶ ପାଉଥିଲା । ଏବେ ତାହା ପ୍ରକାଶିତ ହେଉଛି, ମାତ୍ର ଅନିୟମିତ ଭାବରେ । ସେମିନାର୍ କାର୍ଯ୍ୟକ୍ରମ ବୋଇଲେ, ବର୍ତ୍ତମାନ ଛାତ୍ରମାନେ ସରସ୍ୱତୀ ଓ ଗଣେଶ ପୂଜା, ବଣଭୋଜି, ଅଧ୍ୟାପକମାନଙ୍କର ବିଦାୟ ଓ ଆଗମନରେ ସମ୍ବର୍ଦ୍ଧନା, ବାର୍ଷିକୋତ୍ସବ ଇତ୍ୟାଦି ବୁଝୁଛନ୍ତି । ପ୍ରବନ୍ଧ ପାଠ, ମିଳିତ ଆଲୋଚନା, ପତ୍ରିକା ପ୍ରକାଶ ଆଦି ମହତ୍ତର କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦିଆଯାଉ ନାହିଁ ।

.ରେଭେନ୍ସା କଲେଜରେ ମୋର ଘନିଷ୍ଠ ସଂପର୍କରେ ଆସିଥିବା ଶତାଧିକ ଛାତ୍ରଛାତ୍ରୀ ଥିଲେ । ପରବର୍ତ୍ତୀ କାଳରେ ସେମାନେ ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ସୁନାମ ଅର୍ଜିଥିବା ମୋ ପକ୍ଷରେ ବଡ଼ ଆନନ୍ଦର କଥା । ରମେଶ ଚନ୍ଦ୍ର ବିଶ୍ୱାଳ, ସରୋଜିନୀ ସାହୁ, ଗିରୀଶଚନ୍ଦ୍ର ସାହୁ, ସୁସ୍ମିତା ରାଓ ପ୍ରମୁଖ ଏବେ ଭଲ ଗଳ୍ପ ଲେଖୁଛନ୍ତି । ଖଗେନ୍ଦ୍ରନାଥ ମଲ୍ଲିକ, ବାବାଜୀ ଚରଣ ପଟ୍ଟନାୟକ, ସୁଧୀର ଚନ୍ଦ୍ର ବେହୁରା, ମନ୍ଦାକିନୀ ଦାସ, ଅର୍ଜ୍ଜୁନ ଚରଣ ମଲ୍ଲିକ, ଗୌରାଙ୍ଗ ଚରଣ ଦାସ, ସାବିତ୍ରୀ ଦାସ, ନୃସିଂହ ଷଡ଼ଙ୍ଗୀ ପ୍ରମୁଖ ପ୍ରବନ୍ଧ ଓ ସାହିତ୍ୟାଲୋଚନର କୃତିତ୍ୱ ଅର୍ଜନ କରିଛନ୍ତି । କାବ୍ୟ ସାହିତ୍ୟ ସୃଷ୍ଟିରେ ଧୁରୀଣତା ପ୍ରଦର୍ଶନ କରିଛନ୍ତି ଗିରିଜା କୁମାର ବଳିୟାର ସିଂ, ଗୌତମ କୁମାର ଜେନା, ଅବଦୁଲ୍ ଓସିଦ ଖାଁ, ଗୌରହରି ମହାନ୍ତି, ନୂତନ ମହାନ୍ତି ପ୍ରମୁଖ । ଦିବାକାର ମାନସିଂହ, ଗୌରାଙ୍ଗ ଚରଣ ଦାସ ଉପନ୍ୟାସକାର ଭାବରେ ନାମ୍ କରିଛନ୍ତି । ସୁଚିତ୍ରା ମହାପାତ୍ର, ଶୈଳେନ୍ଦ୍ର ପ୍ରସାଦ ଆଚାର୍ଯ୍ୟ ସଂଗୀତ ଓ ନାଟ୍ୟକର୍ମ କ୍ଷେତ୍ରରେ ଯଶସ୍ୱୀ ହୋଇଚନ୍ତି । ସାମ୍ବାଦିକତା କ୍ଷେତ୍ରରେ ନାମ୍ କରିଛନ୍ତି ଅସିତ୍ ମହାନ୍ତି ।

ଭାଷା-ସାହିତ୍ୟର ଗବେଷଣାରେ ମୁଁ ଊଣେଇଶ ଜଣ ସ୍କଲାର୍‌ଙ୍କୁ ଦିକ୍ ନିର୍ଦ୍ଦେଶ ଦେଇଛି । ତନ୍ମଧ୍ୟରେ ରେଭେନ୍ସା କଲେଜର ଛାତ୍ର ବା ଅଧ୍ୟାପକ ହେଉଛନ୍ତି – କ୍ଷେତ୍ରବାସୀ ନାୟକ, ଲତା ଭୋଳ, ଲାବଣ୍ୟ ନାୟକ, ବିଜୟ କୁମାର ଶତପଥୀ, ମନ୍ଦାକିନୀ ଦାସ, ଗୌରାଙ୍ଗ ଚରଣ ଦାଶ, ଗୋବିନ୍ଦ୍ର ଚନ୍ଦ୍ର ଭୂୟାଁ, ରମେଶ ଚନ୍ଦ୍ର ବିଶ୍ୱାଳ, ଜଟାଧାରୀ ମହାପାତ୍ର, ବନପ୍ରଭା ପରିଡ଼ା, ଶିବପ୍ରସାଦ ଦଉ ଓ ଶାନ୍ତିଲତା ବେହେରା । ଏମାନଙ୍କ ମଧ୍ୟରୁ ସାତ ଆଠଜଣଙ୍କ ଗବେଷଣା-ପ୍ରବନ୍ଧ ମୁଦ୍ରିତାକାରରେ ପ୍ରକାଶିତ ହୋଇଛି । କଲେଜର ଏମ୍.ଫିଲ୍. ଶ୍ରେଣୀର କେତେକ ଛାତ୍ରଛାତ୍ରୀଙ୍କର ଡିସାର୍ଟେସନ୍ ରଚନାରେ ମଧ୍ୟ ତତ୍ତ୍ୱାବଧାନ କରିଛି । ଯେଉଁ ଛାତ୍ରଛାତ୍ରୀମାନେ ସ୍କଲାର୍ ଭାବରେ ମୋ ପାଖରେ କାର୍ଯ୍ୟ କରୁଥିଲେ, କିମ୍ବା ମୋର ଘନିଷ୍ଠ ଅନ୍ତରଙ୍ଗ ସଂପର୍କରେ ଆସୁଥିଲେ, ସେମାନେ ପଦ୍ମପତ୍ର ଉପରେ ଜଳବିନ୍ଦୁ ବତ୍ ରହୁ ନ ଥିଲେ; ଏକାବେଳକେ ହୋଇଯାଉଥିଲେ ମୋ ପରିବାରର ସଦସ୍ୟ ସଦସ୍ୟା । ଶିକ୍ଷକ-ଶିକ୍ଷାର୍ଥୀଙ୍କ ସଂପର୍କର ଏହି ନୀତିଟି ମୁଁ ଶାନ୍ତିନିକେତନରେ ପଢ଼ିବା ବେଳୁ ଗ୍ରହଣ କରିଥିଲି ।

ରେଭେନ୍ସା କଲେଜ ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ମୋର ଅନେକ ସହକର୍ମୀ ଅଧ୍ୟାପକ-ଅଧ୍ୟାପିକା ଥିଲେ, ସଂଖ୍ୟାରେ ପ୍ରାୟ ପଇଁତିରିଶି ଜଣ ହେବେ । ସେମାନଙ୍କ ମଧ୍ୟରୁ କବି ରବି ସିଂହଙ୍କ ଭାଷାରେ ଯେଉଁମାନେ କେବଳ 'ଭାଷକ' ଥିଲେ, ସେମାନଙ୍କ କଥା ମୁଁ ପ୍ରାୟ ଭୁଲିଯାଇଛି । ମାତ୍ର ଯେଉଁମାନେ ପ୍ରକୃତ 'ଅଧ୍ୟାପକ' ବା 'ଗୁରୁ' ଥିଲେ, ଅଥବା ଯେଉଁମାନେ କରିକ୍ୟୁଲାର୍ ବା ଏକସଟ୍ରା-କରିକ୍ୟୁଲାର କାର୍ଯ୍ୟରେ ନିଷ୍ଠା ପ୍ରଦର୍ଶନ

କରିଥିଲେ, ସେମାନଙ୍କ କଥା ମନେ ରଖିଛି ବରାବର । ସେମାନଙ୍କ ମଧ୍ୟରେ ଥିଲେ ଅଧ୍ୟାପକ ଗୋପୀନାଥ ମିଶ୍ର, ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି, ଡକ୍ଟର ଶରତ୍ ଚନ୍ଦ୍ର ପ୍ରଧାନ, ଡକ୍ଟର ଅସିତ୍ କବି, ଡକ୍ଟର ଧନେଶ୍ୱର ମହାପାତ୍ର, ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା, ଅଧ୍ୟାପକ ବୈଷ୍ଣବ ଚରଣ ସାମଲ, ଡକ୍ଟର ଦାଶରଥି ଦାସ, ଅଧ୍ୟାପକ ନିରଞ୍ଜନ ପଣ୍ଡା, ଅଧ୍ୟାପକ ନବକିଶୋର ପୃଷ୍ଟି, ଡକ୍ଟର କ୍ଷେତ୍ରବାସୀ ନାୟକ, ଡକ୍ଟର ରତ୍ନାକର ଚଇନି, ଅଧ୍ୟାପିକା ସୁଲୋଚନା ଦାସ, ଅଧ୍ୟାପକ ବାଉରିବନ୍ଧୁ କର, ଅଧ୍ୟାପକ କିଶୋର ଚନ୍ଦ୍ର ଦାସ, ଅଧ୍ୟାପକ ବିଜୟ କୁମାର ଶତପଥୀ, ଅଧ୍ୟାପିକା ରଞ୍ଜିତା ନାୟକ, ଡକ୍ଟର ନଟବର ଶତପଥୀ ପ୍ରମୁଖ । ଏମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଅଧ୍ୟାପନା ଓ ସାହିତ୍ୟାଲୋଚନା କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଛନ୍ତି ।

ମୋର କାର୍ଯ୍ୟକାଳ ମଧ୍ୟରେ ଓଡ଼ିଆ ବିଭାଗରେ ଦୁଇଜଣ ପିଅନଙ୍କ ସଂପର୍କରେ ଆସିଥିଲି । ପ୍ରଥମେ ଜଣେ ଥିଲେ ବୃଦ୍ଧ, ଅକର୍ମଣ୍ୟପ୍ରାୟ; ନିଶା (ସମ୍ଭବତଃ ଅଫିମ) ସେବନ କରି ଡିପାର୍ଟମେଣ୍ଟରେ ବସି ଅଧିକାଂଶ ସମୟରେ ଢୁଳାଉଥିଲେ । ବିଭାଗୀୟ କାର୍ଯ୍ୟରେ କ୍ଷତି ଘଟୁଥିଲା । ତାଙ୍କୁ ବିଭାଗରୁ ଅନ୍ୟତ୍ର ବଦଳି କରିଦେବା ପାଇଁ ଚେଷ୍ଟା କରାଯାଇଥିଲା । କିନ୍ତୁ ଅନ୍ୟ ବିଭାଗରେ ତାଙ୍କୁ ଗ୍ରହଣ କରିବ କିଏ ? ଶେଷରେ ସେ କଲେଜ ଅଫିସ୍‌କୁ ବଦଳି ହୋଇଗଲେ । ତାଙ୍କ ଜାଗାରେ ଆସିଲେ ପବିତ୍ରମୋହନ ପ୍ରଧାନ । କନ୍ଧମାଳର ଯୁବକ । ଦକ୍ଷ ଓ କାର୍ଯ୍ୟକ୍ଷମ । ଟିକିଏ ଆମୁଆ ମଣିଷ ହେଲେ କଣ ହେବ, ଦଉଡ଼ା ଧାଁପଡ଼ା କରି ବିଭାଗର ସବୁ କାର୍ଯ୍ୟ ତୁଲାଉଥିଲେ । ମୋର କଲେଜ କ୍ୱାର୍ଟର୍ସ୍‌ର ଆଉଟ୍ ହାଉସ୍‌ରେ ସେ ରହିବା ପାଇଁ ମୋତେ ଅନୁରୋଧ କଲେ । ସପରିବାର ରହିବା ପାଇଁ ମୁଁ ତାଙ୍କୁ ଅନୁମତି ଦେଲି । ସେ ମୋତେ ପଚାରିଲେ – ସାର୍, କେତେ ଟଙ୍କା ମାସିକ ଭଡ଼ା ଦେବି ? ଆଶ୍ଚର୍ଯ୍ୟ ହେଲି; ଭଡ଼ା କଣ ? ପରେ ଖବର ନେଇ ଜାଣିଲି – କଲେଜର କେତେକ ଅଧ୍ୟାପକ ନିଜ ନିଜ କ୍ୱାର୍ଟର୍ସର ଆଉଟ୍ ହାଉସ୍‌କୁ ଭଡ଼ାରେ ଲଗାଇ ଥାଆନ୍ତି । ମୁଁ ତାଙ୍କୁ କହିଲି – ଭଲରେ ମନ୍ଦରେ ମୋର କ୍ୱାର୍ଟର୍ସ ଏବଂ ତା' ପଛପଟରେ କରାଯାଇଥିବା କିଚେନ୍ ଗାର୍ଡେନ୍ ପ୍ରତି ଦୃଷ୍ଟି ଦେଉଥିବ । ତାହା ହିଁ ହେଉଛି ତମର ଭଡ଼ା !

ଏତିକି ବେଳେ କଟକର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟରେ ମୁଁ ଜଡ଼ିତ ହୋଇଥିଲି । ଡକ୍ଟର କୁଞ୍ଜବିହାରୀ ଦାଶ 'ଉତ୍କଳ ସାହିତ୍ୟ ସମାଜର' ସଭାପତି ଥାଆନ୍ତି । ମୋତେ ସେ ସାହିତ୍ୟ ସମାଜର କେତେକ କାର୍ଯ୍ୟର ଦାୟିତ୍ୱ ଦେଲେ । କବି ବୈକୁଣ୍ଠନାଥ ଗ୍ରନ୍ଥାବଳୀର ଦ୍ୱିତୀୟ ଖଣ୍ଡର ସଂପାଦନା ଦାୟିତ୍ୱ ତା' ମଧ୍ୟରେ ଥିଲା ଅନ୍ୟତମ । କବି ନନ୍ଦକିଶୋର ବଳଙ୍କ ଜୟନ୍ତୀ ଶତବାର୍ଷିକୀ ଉପଲକ୍ଷେ ପ୍ରକାଶ ପାଇଥିବା ସ୍ମାରକ-ଗ୍ରନ୍ଥ ମଧ୍ୟ ସଂପାଦନା

କରିଥିଲି । 'ପଲ୍ଲୀକବି ନନ୍ଦକିଶୋର ସ୍ମାରକ ଗ୍ରନ୍ଥ' ୧୯୭୬ ମସିହା ଏବଂ 'ବୈକୁଣ୍ଠନାଥ ଗ୍ରନ୍ଥାବଳୀ – ୨ୟ ଖଣ୍ଡ' ୧୯୭୯ ମସିହାରେ ପ୍ରକାଶ ପାଇଥିଲା । ଏହା ବ୍ୟତୀତ ଗୋପାଳବଲ୍ଲଭ ଦାସଙ୍କ ସଂପାଦିତ ଚଉପଦୀ-ଚଂପୂ 'ପ୍ରୀତି ସୁଧାକର' ରମାଦେବୀଙ୍କଠାରୁ ଅନୁମତି ଆଣି ପୁନଃସଂପାଦନା ପୂର୍ବକ ପ୍ରକାଶ କରାଇଥିଲି ୧୯୭୯ ମସିହାରେ । 'କଳାବତୀ' (୧୯୮୧) ଏବଂ 'ଫୁଲମଣି ଓ କରୁଣାର ବିବରଣ' (୧୯୮୨) ମୋ ଦ୍ୱାରା ସଂପାଦିତ ଦୁଇଟି ଉଲ୍ଲେଖଯୋଗ୍ୟ ସାହିତ୍ୟକୃତି । ଅପର୍ଣ୍ଣା ପଣ୍ଡାଙ୍କ ଦ୍ୱାରା ଲିଖିତ ବଡ଼ ଗଳ୍ପ 'କଳାବତୀ' ୧୯୦୨ ମସିହାରେ ପାରଳାଖେମେଡ଼ି ଗଜପତି ପ୍ରେସ୍‌ରେ ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । ପୁସ୍ତକଟି ମହାରାଜା ପଦ୍ମନାଭ ନାରାୟଣ ଦେବଙ୍କ ନାମରେ ଉତ୍ସର୍ଗ କରାଯାଇଥିଲା । ଥରେ ମୁଁ କାର୍ଯ୍ୟ ଉପଲକ୍ଷେ ଗଞ୍ଜାମ ବ୍ରହ୍ମପୁର ଯାଇଥିଲା ବେଳେ ଅଧ୍ୟାପକ ଶିବରାମ ପାତ୍ର ପୁସ୍ତକଟିର ଏକ ନଷ୍ଟଭ୍ରଷ୍ଟ କପି ମୋତେ ଯୋଗାଇଥିଲେ । ବଡ଼ ଗଳ୍ପଟିର ଉପାଦେୟତା ଉପଲବ୍ଧି କରି ମୁଁ ଏହାର ପୁନଃପ୍ରକାଶ କରାଇଥିଲି । ସେହିପରି ଗତ ଶତାବ୍ଦୀର ସପ୍ତମ ଦଶକରେ ମୁଁ ଓଡ଼ିଆ ଉପନ୍ୟାସ ସଂପର୍କରେ ଗବେଷଣା କରୁଥିବା କାଳରେ 'ଫୁଲମଣି ଓ କରୁଣାର ବିବରଣ' ଉପନ୍ୟାସଟିର ସନ୍ଧାନ ପାଇଥିଲି । ମାତ୍ର ପୁସ୍ତକଟି ମୋର ହସ୍ତଗତ ହୋଇ ନ ଥିଲା । ପରେ ରେଭେନ୍ସା କଲେଜ ଇତିହାସ ବିଭାଗର ଅଧ୍ୟାପକ ବନ୍ଧୁ ରବୀନ୍ଦ୍ରକୁମାର ଦାସ କୌଣସି ସୂତ୍ରରୁ ଉପନ୍ୟାସଟି ସଂଗ୍ରହ କରି ମୋତେ ଯୋଗାଇ ଦେଲେ । ମୂଳ ଉପନ୍ୟାସଟି ବଙ୍ଗଳା ଭାଷାରେ ଶ୍ରୀମତୀ ହାନା କ୍ୟାଥେରିନ୍ ମ୍ୟଲେନ୍ସ୍‌ଙ୍କ ଦ୍ୱାରା ରଚିତ ହୋଇଥିଲା ୧୮୫୨ ମସିହାରେ । ରେଭରେଣ୍ଡ ଷ୍ଟବିନସ୍ ଏହାର ଓଡ଼ିଆ ଅନୁବାଦ ୧୮୫୭-୫୮ ମସିହାରେ ପ୍ରକାଶ କରିଥିଲେ କଟକସ୍ଥ ଓଡ଼ିଶା ମିଶନ୍ ପ୍ରେସ୍‌ରୁ । ଉପନ୍ୟାସର ସାଧାରଣ ପ୍ରଚଳିତ ସଂଜ୍ଞା ଓ ସ୍ୱରୂପ-ପ୍ରକୃତି ଦୃଷ୍ଟିରୁ ଏହା ଉପନ୍ୟାସ ପଦବାଚ୍ୟ । ଏହା ଏକ ଅନୂଦିତ କୃତି ହେଲେ ହେଁ, ଏବଂ ଏଥିରେ ଖ୍ରୀଷ୍ଟ ଧର୍ମର ପ୍ରଚାର-ପ୍ରବଣତା ପ୍ରକାଶ ପାଇଥିଲେ ହେଁ, ଆମର 'ପଦ୍ମମାଳୀ' ଉପନ୍ୟାସର ପ୍ରାୟ ତିରିଶ ବର୍ଷ ପୂର୍ବରୁ ପ୍ରକାଶିତ ହୋଇଥିବା ହେତୁ ଏହାକୁ ପ୍ରଥମ ଓଡ଼ିଆ ଉପନ୍ୟାସ ବୋଲାଯାଇପାରେ ।

ଏହିପରି କିଛି ସଂକଳିତ ଓ ସଂପାଦିତ କୃତି ସହିତ ମୁଁ ସେତେବେଳେ ମୌଳିକ ଗଳ୍ପ, ରମ୍ୟ ରଚନା, ଆଲୋଚନା ପ୍ରବନ୍ଧ ରଚନା କରିବାରେ ଲାଗିଥିଲି । କବିତା ରଚନା ଊଣା ହୋଇଥିଲେ ହେଁ, 'ଲଘୁ ପଞ୍ଚକ' (ଇଂରାଜୀ ଲିମେରିକ୍ ଶୈଳୀରେ) ଲେଖୁଥିଲି, ଓଡ଼ିଆରେ ଯାହା ସେତେବେଳେ ନୂଆ ଥିଲା । ସଚିତ୍ର 'ଲଘୁ ପଞ୍ଚକ' ପୁସ୍ତିକାଟି ୧୯୮୩ ମସିହାରେ କଟକର ଜେ. ମହାପାତ୍ର ଏଣ୍ଡ୍ କୋ. ପ୍ରକାଶ କରିଥିଲେ । କେବଳ ପୁସ୍ତକ-ସମୀକ୍ଷାର ଏକ ଗ୍ରନ୍ଥ 'ମଧ୍ୟସ୍ଥ ବାଣୀ' ୧୯୮୦ ମସିହାରେ ପ୍ରକାଶିତ ହୋଇଥିଲା ।

ସେତେବେଳେ ପୁସ୍ତକ-ସମୀକ୍ଷାକୁ ସମାଲୋଚନା ସାହିତ୍ୟ ଭିତରେ ଗୁରୁତ୍ୱ ଦିଆଯାଉ ନ ଥିଲା । ଉପଯୁକ୍ତ ପ୍ରସ୍ତୁତି ପୂର୍ବକ ସଂପାନ ଓ ସଭାସମିତିରେ ଲିଖିତ ଭାଷଣ ଦେବାର ପରଂପରା ବଳିଷ୍ଠ ହୋଇ ନ ଥିଲା । ମୁଁ ଯେଉଁ ସାହିତ୍ୟ-ସଂସ୍କୃତି ପ୍ରତିଷ୍ଠାନମାନଙ୍କରେ ଭାଷଣ ଦେବାକୁ ଯାଉଥିଲି, ଅଧିକାଂଶ କ୍ଷେତ୍ରରେ ସେଠାରେ ଲିଖିତ ଭାଷଣ ପ୍ରଦାନ କରୁଥିଲି । ସେହିସବୁ ଭାଷଣକୁ ଘେନି ପୂର୍ବରୁ ମୋର 'କେତୋଟି ସାହିତ୍ୟିକ ଅଭିଭାଷଣ' ପ୍ରକାଶ ପାଇଥିଲା । ରେଭେନ୍ସା କଲେଜର କାର୍ଯ୍ୟକାଳ ମଧ୍ୟରେ ପ୍ରକାଶିତ ହେଲା 'ସଂପାନ ସନ୍ଦର୍ଭ' (୧୯୮୧) ତଥା 'ପ୍ରସଙ୍ଗ : ଧର୍ମ ଓ ଶିକ୍ଷା' (୧୯୯୩ ଗ୍ରନ୍ଥାକାରରେ) । 'ସଂପାନ ସନ୍ଦର୍ଭ'ରେ ବିଭିନ୍ନ ସାହିତ୍ୟସଭା ଓ ସାଂସ୍କୃତିକ ପ୍ରତିଷ୍ଠାନର ସଂପାନରେ ମୁଁ ଦେଇଥିବା ଲିଖିତ ଭାଷଣଗୁଡ଼ିକ ସ୍ଥାନିତ ହୋଇଛି । 'ପ୍ରସଙ୍ଗ : ଧର୍ମ ଓ ଶିକ୍ଷା'ରେ ରହିଛି ଦୁଇଟି ଅଭିଭାଷଣ । ଗୋଟିଏ ଭାଷଣ ଥିଲା 'ଓଡ଼ିଶାର ଧର୍ମଧାରା' ସଂପର୍କରେ; ଯେଉଁଟି ଯାଜପୁରସ୍ଥ ନରସିଂହ ଚୌଧୁରୀ କଲେଜରେ 'ବିରଜା ବକ୍ତୃତାମାଳା'ରେ ୧୯୭୯ ମସିହାରେ ପ୍ରଦାନ କରାଯାଇଥିଲା । ଅନ୍ୟ ଭାଷଣଟି ଥିଲା 'ଉଚ୍ଚ ଶିକ୍ଷାର ଉଚ୍ଚବାଚ' ପ୍ରସଙ୍ଗରେ; ତାହା ୧୯୯୦ ମସିହାରେ ପାରଳାଖେମୁଣ୍ଡିସ୍ଥ ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜର 'ଗଜପତି ବକ୍ତୃତାମାଳା'ରେ ପ୍ରଦତ୍ତ ହୋଇଥିଲା ।

ପ୍ରବନ୍ଧ ଓ ସାହିତ୍ୟାଲୋଚନା ସଂଗେ ସଂଗେ ଗଳ୍ପ ଲେଖା ମଧ୍ୟ ଚଳାଇଥିଲି । ରେଭେନ୍ସା କଲେଜର କାର୍ଯ୍ୟକାଳ ମଧ୍ୟରେ 'ନାରୀ ଏକ ନଦୀର ନାମ' (୧୯୭୬), 'ଐତରେୟ' (୧୯୮୨) ଓ 'ନାରୀମେଧ' (୧୯୮୯) ନାମକ ମୋର ତିନୋଟି ଗଳ୍ପଗୁଚ୍ଛ ପ୍ରକାଶ ପାଇଥିଲା । ସେହିପରି 'ନାଟ୍ୟ ସାହିତ୍ୟ ପରିଚୟ' (୧୯୭୮), 'ପ୍ରସଙ୍ଗ : ଗଳ୍ପ-ଉପନ୍ୟାସ' (୧୯୮୯) ଓ 'ବୀକ୍ଷାବିଚିତ୍ରା' (୧୯୯୦) ପ୍ରଭୃତି ସାହିତ୍ୟାଲୋଚନା ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ସାଧାରଣ ପ୍ରବନ୍ଧ ଓ ରମ୍ୟରଚନା ବରାବର ଲେଖୁଥିଲେ ମଧ୍ୟ ଏହି ସମୟ ମଧ୍ୟରେ ସେହି ବିଷୟକ ଖଣ୍ଡିଏ ମାତ୍ର ଗ୍ରନ୍ଥ 'ଚରୁ ଓ ଚରିତ' (୧୯୭୯) ପ୍ରକାଶ ପାଇଥିଲା ।

ରେଭେନ୍ସା କଲେଜରେ ମୋର ଛାତ୍ରାବସ୍ଥା ଅପେକ୍ଷା ଶିକ୍ଷକ-ଜୀବନ ଭଲରେ କଟିଥିଲା । ତଥାପି ମୁଁ ବୃତ୍ତିଗତ ଈର୍ଷା ଓ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହୋଇଥିଲି । ବାରମ୍ବାର ଗୁପ୍ତ ଶତ୍ରୁଙ୍କର ଦାଉ ମୋତେ ସମ୍ଭାଳିବାକୁ ପଡ଼ିଥିଲା । ଗୋଟିଏ ପ୍ରାଇଭେଟ୍ କଲେଜରେ ଦୀର୍ଘକାଳ କାର୍ଯ୍ୟ କରି ସରକାରୀ କଲେଜକୁ ଆସିଥିବାରୁ କେତେକ ଅଧ୍ୟାପକ ବନ୍ଧୁ ମୋତେ 'ହଂସ ମଧ୍ୟରେ ବଗ' ଭଳି ଦେଖୁଥିଲେ । ଅବଶ୍ୟ, ବେସରକାରୀ ଭଦ୍ରକ କଲେଜ ସରକାରୀ ହେଲା ବେଳେ ମୁଁ ରୀତିମତ ରିଡ଼ର୍‌ସିପ୍ ପାଇ ଆସିଥିଲି । ପୁଣି ବାରିପଦାରେ ଚାରିବର୍ଷ ରିଡ଼ର୍ ଭାବେ କାର୍ଯ୍ୟ କରିଥିଲି । ବୋଧହୁଏ ମୋର ଅଧ୍ୟାପନାରେ

ନିଷ୍ଠାପରତା, ଛାତ୍ରଛାତ୍ରୀଙ୍କ ସହ ମିଳାମିଶା ଏବଂ ଯତ୍‌କିଞ୍ଚିତ୍ ଲେଖକୀୟ ଖ୍ୟାତି ସେହି କେତେକ ବନ୍ଧୁଙ୍କର ଈର୍ଷାର କାରଣ ହୋଇଥିଲା । କଲେଜ ଅଧ୍ୟକ୍ଷଙ୍କ ପ୍ରିୟପାତ୍ର ହୋଇ ତାଙ୍କ ନିକଟରେ ନିଜ ପ୍ରତିଦ୍ୱନ୍ଦ୍ୱୀଙ୍କ ବିପକ୍ଷରେ ଚୁଗୁଲି କରିବା, କିମ୍ବା କିଛି ଛାତ୍ରଙ୍କ ହାତମୁଠାରେ ରଖି ପ୍ରତିଦ୍ୱନ୍ଦ୍ୱୀଙ୍କ ବିରୁଦ୍ଧରେ ଲଗେଇ ଦେବା କେତେଜଣ ଧୂର୍ତ୍ତ ଅଧ୍ୟାପକଙ୍କର କାର୍ଯ୍ୟ ଥିଲା । କି ସରକାରୀ କଲେଜ, କି ବେସରକାରୀ କଲେଜ ସର୍ବତ୍ର ଏମାନଙ୍କର ରାଜୁତି । ବେସରକାରୀ କଲେଜରୁ ଗୋଟିଏ ଉଦାହରଣ; ରାତି ଦଶଟା ପରେ ଅଧ୍ୟକ୍ଷଙ୍କର ବାସଭବନରେ ଆଡ୍ଡା ଲାଗେ । ଦୁଇ ତିନିଜଣ 'ପାଖ ଲୋକ'ଙ୍କ ସହ ଅଧ୍ୟକ୍ଷ ମଜଲିସ୍ କରନ୍ତି । ସୁରା ପରିବେଷଣରେ ରାତ୍ରି ରଙ୍ଗୀନ୍ ହୋଇଉଠେ ଏବଂ ବେଳେବେଳେ 'ସାକୀ'ଙ୍କ ଉପସ୍ଥିତିରେ ପରିବେଶ ମତୁଆଲା ହୁଏ । ସେହି ମଜଲିସ୍‌ରେ ଚାଲେ ପରନିନ୍ଦା, ପରଚର୍ଚ୍ଚା । ସରକାରୀ କଲେଜରୁ ଗୋଟିଏ ଦୃଷ୍ଟାନ୍ତ । ଅଧ୍ୟକ୍ଷ ଖୁବ୍ ପାନୁଆ । ସେ କଲେଜ ଅଫିସ୍‌ରେ ପହଞ୍ଚିଲା ପରେ ପରେ ଜଣେ ଦୁଇଜଣ ଧୂର୍ତ୍ତ ଅଧ୍ୟାପକ ତାଙ୍କ ପାଖରେ ଜୁଟି ଯାଆନ୍ତି । ଜଣେ, ଅଧ୍ୟକ୍ଷଙ୍କ ହାତକୁ ପାନପୁଡ଼ିଆଟିଏ ବଢ଼ାଇ ଦିଅନ୍ତି, ଆଉ ଜଣେ ସେଦିନ ଡାକରେ ଆସିଥିବା ଚିଠିପତ୍ର ପଢ଼ି ତାଙ୍କ ଦୃଷ୍ଟିରେ ଗୁରୁତ୍ୱପୂର୍ଣ୍ଣ ଥିବା ଚିଠିତକ ଅଧ୍ୟକ୍ଷଙ୍କୁ ଦିଅନ୍ତି । ସନ୍ଧ୍ୟାରେ ଅଧ୍ୟକ୍ଷଙ୍କ ବାସଭବନରେ ସେହି ଅଧ୍ୟାପକମାନଙ୍କ ସହ ଅଧ୍ୟକ୍ଷଙ୍କର ତାଆସ ଖେଳ ଚାଲେ; କଲେଜ ସଂପର୍କିତ ବିଭିନ୍ନ ବିଷୟ ସହିତ ଅନ୍ୟାନ୍ୟ ଅଧ୍ୟାପକଙ୍କ ସପକ୍ଷ ଓ ବିପକ୍ଷରେ ଚର୍ଚ୍ଚା ହୁଏ । ଏହି ପରସ୍ଥିତିରେ ଅନେକ କ୍ଷେତ୍ରରେ ଅଧ୍ୟକ୍ଷମାନେ ପ୍ରଭାବିତ ହୋଇ କଲେଜର ଅଧ୍ୟାପକ ଓ ଅନ୍ୟାନ୍ୟ କର୍ମଚାରୀଙ୍କ ସପକ୍ଷ ବା ବିପକ୍ଷରେ ମତ ପୋଷଣ ପୂର୍ବକ କାର୍ଯ୍ୟ କରିଥାଆନ୍ତି । ଏହିଠାରେ ହିଁ ମୋର ଆପତ୍ତି ।

ରେଭେନ୍ସା କଲେଜରେ ଅଧ୍ୟାପନା କାଳରେ ମୁଁ କେତେଥର ଅଧ୍ୟକ୍ଷଙ୍କର ଆକ୍ରୋଶ ଓ ଭର୍ତ୍ସନାରେ ଶିକାର ହୋଇଛି । ତହିଁରୁ ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରିବି । ୧୯୭୫-୭୬ ମସିହାର କଥା । ଦେଶରେ ସେତେବେଳେ ଇମର୍ଜେନ୍ସି ବା ଜରୁରିକାଳୀନ ପରିସ୍ଥିତି ଜାରି ରହିଥାଏ । କଲେଜ ଅଧ୍ୟକ୍ଷ ଡକ୍ଟର ମହେନ୍ଦ୍ର କୁମାର ରାଉତ । ଦିନେ ବିଭାଗୀୟ ମୁଖ୍ୟ ଅଧ୍ୟାପକ ଜାନକୀ ବାବୁ ଆସି ମୋତେ କହିଲେ – ଅଧ୍ୟକ୍ଷ ଡକ୍ଟର ରାଉତ ଆପଣଙ୍କୁ ଡାକୁଛନ୍ତି, ଯାଆନ୍ତୁ ! ମୁଁ ପଚାରିଲି – ଅଧ୍ୟକ୍ଷ କାହିଁକି ଡାକୁଛନ୍ତି ? ଜାନକୀ ବାବୁ କେବଳ ମୋତେ ଏତିକି ସୂଚନା ଦେଲେ ଯେ ମୋର ସେହି ବିତର୍କିତ 'ବେଦୀ' ଗଳ୍ପ ବିଷୟରେ ଅଧ୍ୟକ୍ଷ ମୋ ସହିତ କଣ କଥାବାର୍ତ୍ତା କରିବାକୁ ଚାହୁଁଛନ୍ତି । ପ୍ରାୟ ଦଶ ବର୍ଷ ପୂର୍ବରୁ (୧୯୬୪ ମସିହାରେ ମୁଁ ବେସରକାରୀ ଭଦ୍ରକ କଲେଜରେ କାର୍ଯ୍ୟ କରୁଥିଲା ବେଳେ) ମୋର 'ବେଦୀ' ଗଳ୍ପକୁ ଘେନି ବିତର୍କର ଝଡ଼ ଉଠିଥିଲା । ପୁଣି 'ବେଦୀ' ଗଳ୍ପର ଭୂତ ! ମୁଁ ଆଶଙ୍କିତ ଚିତ୍ତରେ ଅଧ୍ୟକ୍ଷଙ୍କ ଅଫିସ୍‌ରେ ଯାଇ ପହଞ୍ଚିଲି ।

କର୍ମବ୍ୟସ୍ତତା ମଧ୍ୟରେ ଅଧ୍ୟକ୍ଷ ମହେନ୍ଦ୍ର ବାବୁ ସେତେବେଳକୁ ମୋ ବିଷୟ ପାସୋରି ଦେଇଥାଆନ୍ତି । ପଚାରିଲେ – କଣ କାମ ? ପ୍ରଫେସର ଜାନକୀ ବାବୁଙ୍କ ହାତରେ ମୋତେ ଡକାଇଥିଲେ ବୋଲି ମୁଁ କହିବାରୁ ଅଧ୍ୟକ୍ଷ ନିଜ ଟେବୁଲ୍-ଡ୍ର'ରୁ ମୋର 'ବେଦୀ ଇତ୍ୟାଦି ଗଳ୍ପ' ଗ୍ରନ୍ଥଟି ବାହାର କରିଆଣି ମୋତେ ଦେଖାଇ କହିଲେ – ଏ ସବୁ କି ବାଜେ ଲେଖା ଆପଣ ଲେଖୁଛନ୍ତି ! ଏଭଳି ଅଶ୍ଳୀଳ ଗଳ୍ପ ଛାତ୍ରଛାତ୍ରୀଙ୍କ ଉପରେ ଖରାପ ପ୍ରଭାବ ପକାଇବ ।

ମୁଁ କହିଲି – ସାର୍, ସେ ଗଳ୍ପ ଅଶ୍ଳୀଳ ନୁହେଁ । ଦଶବର୍ଷ ତଳେ ତା' ବିଷୟରେ ଆମ ସାହିତ୍ୟ-ଇତିହାସରେ ବଡ଼ ବିତର୍କ ହୋଇଥିଲା । ମତ ପ୍ରକାଶ ପାଇଛି...

ଅଧ୍ୟକ୍ଷ ମୋତେ କହିବାକୁ ଦେଲେ ନାହିଁ । ରାୟ ଶୁଣାଇ ଦେଲେ – ସେ ସବୁ କଥା ମୁଁ ଶୁଣିବାକୁ ଚାହେଁନା ! ଆପଣ ଶୀଘ୍ର ଏ ବହିଟା କଲେଜ ଲାଇବ୍ରେରୀରୁ ଉଇଡ୍ର (withdraw) କରି ନିଅନ୍ତୁ ! ତା'ପରେ ସେ ହାତ ହଲାଇ ମୋତେ ଚାଲିଯିବାକୁ କହିଲେ ।

ଚିନ୍ତାକୁଳ ଓ ଆଶଙ୍କାଗ୍ରସ୍ତ ହୋଇ ଫେରିଲି । ଏହାର ପରିଣତି କଣ ହେବ ଭାବି ବଡ଼ ବିଷଣ୍ଣ ହୋଇପଡ଼ିଲି । ସେଦିନ ଗଳ୍ପଗ୍ରନ୍ଥଟିର ପ୍ରକାଶକ କଟକସ୍ଥ ଜେ. ମହାପାତ୍ର ଏଣ୍ଡ୍ କଂପାନୀର ସଞ୍ଚାଳକ ଶ୍ରୀ ନବକିଶୋର ମହାପାତ୍ରଙ୍କୁ ଟେଲିଫୋନ୍ ଯୋଗେ ସବୁ କଥା କହିଲି । ନବ ବାବୁ ଉତ୍ତର ଦେଲେ – ଗଳ୍ପ ବହିଟି କଲେଜ ଲାଇବ୍ରେରୀରୁ ଉଇଡ୍ର କରିବ କିଏ ? ଆପଣ, ନା କଲେଜ ଅଧ୍ୟକ୍ଷ ? ଅଧ୍ୟକ୍ଷ ମହୋଦୟ ଉଇଡ୍ର କରନ୍ତୁ ତ ଦେଖି ! ଆଗେ ଅଧ୍ୟକ୍ଷ ନିଜ ମଥାରୁ 'ବେଦୀ' ଗଳ୍ପଟିକୁ ଉଇଡ୍ର କରିନିଅନ୍ତୁ, ତା'ପରେ ଲାଇବ୍ରେରୀରୁ ଉଇଡ୍ର କରିବେ ।

ମୋର କର୍ତ୍ତା ବା ବସ୍‌ଙ୍କୁ ମୁଁ ନିଜେ ଏ କଥା କହିବି କିପରି ? ବଡ଼ ଅଡୁଆରେ ପଡ଼ିଲି । କେହି ଜଣେ ଚୁଗୁଲିଖୋର୍ ବ୍ୟକ୍ତି କଲେଜ ଲାଇବ୍ରେରୀରୁ ଗଳ୍ପ ଗ୍ରନ୍ଥଟି ନେଇ ଅଧ୍ୟକ୍ଷଙ୍କୁ ଦେଇଛନ୍ତି ଏବଂ ମୋ ବିପକ୍ଷରେ କିଛି କାର୍ଯ୍ୟାନୁଷ୍ଠାନ କରିବାକୁ ହୁଏତ ଉସ୍‌କାଇଛନ୍ତି । କଲେଜରୁ ଆସି ସେଦିନ ସନ୍ଧ୍ୟାରେ ଚିନ୍ତାରେ ମୁହଁ ଶୁଖାଇ ବସାଘରେ ବସିଛି, କବି ରାଧାମୋହନ ଗଡ଼ନାୟକ ମୋତେ ଦେଖି ପଚାରିଲେ – କଣ ହୋଇଛି ? ଏପରି ବିଷଣ୍ଣ ହୋଇ ବସିଛ କାହିଁକି ? ମୁଁ ସେତେବେଳେ ପ୍ରଫେସର୍‌ପଡ଼ାରେ ଗୋଟାଏ ଭଡ଼ା ଘରେ ରହୁଥିଲି । କବି ଗଡ଼ନାୟକ କଟକ ଆସିଲେ, ସାଆନ୍ତ ସାହିରେ ନିଜର ଜଣେ ବନ୍ଧୁଙ୍କ ଘରେ ରହନ୍ତି, ଏବଂ ମଝିରେ ମଝିରେ ମୋରି ବସାଘର ବାଟ ଦେଇ କବି ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଘରକୁ ଯାଆନ୍ତି । ସେଦିନ ମୁଁ 'ବେଦୀ' ଗଳ୍ପ ଘେନି କଲେଜ ଅଧ୍ୟକ୍ଷଙ୍କ ହସ୍ତକ୍ଷେପ ବିଷୟ ତାଙ୍କୁ ଜଣାଇଲାରୁ ସେ ଠୋ-ଠୋ କରି ହସିଲେ; କହିଲେ – ଅଧ୍ୟକ୍ଷଙ୍କ ଗୃହିଣୀ ପରା କଲେଜରେ କାଳିଦାସ, ଶ୍ରୀହର୍ଷ ପଢ଼ାଉଛନ୍ତି !

ମହେନ୍ଦ୍ର ବାବୁ କଣ ଗୃହିଣୀଙ୍କ ସଂସ୍ପର୍ଶରେ ଆସୁନାହାନ୍ତି ! ତୁଚ୍ଛ କଥାଟା ! ଏ ବିଷୟରେ କାହିଁକି ଏତେ ଚିନ୍ତା କରୁଛ ?

ଏତକ କହି କବି ଗଡ଼ନାୟକ ନିଜ ବାଟରେ ଚାଲିଗଲେ । ମୋର କିନ୍ତୁ ଚିନ୍ତା ଦୂର ହେଲା ନାହିଁ । ତହିଁ ଆରଦିନ ମୁଁ 'ସମାଜ' ଅଫିସ୍‌କୁ ଯାଇ 'ସମାଜ'ର ଜେନେରାଲ୍ ମେନେଜର୍ ଫକୀରଚରଣ ଦାସଙ୍କୁ ମୋର ଏ ସମସ୍ୟା ବିଷୟ ଜଣାଇଲି । ଫକୀର ବାବୁ ମୋର ଜଣେ ଶୁଭେଚ୍ଛୁ । 'ବେଦୀ' ଗଳ୍ପ ସଂପର୍କିତ ଭଦ୍ରକ କଲେଜ ଗୋଳମାଳ ବିଷୟ ସେ ଭଲ ଭାବରେ ଜାଣିଥିଲେ । ମୋଠାରୁ ସବୁ କଥା ଶୁଣି ଫକୀରବାବୁ ମୋତେ ସାନ୍ତ୍ୱନା ଦେଇ କହିଲେ – ଗୋଟାଏ ଭୁଲ୍ ପାଇଁ ଜଣେ ଲୋକକୁ ଦୁଇଥର ହଇରାଣ କରାଯିବ ନା କଣ ? ବଡ଼ ବିଚିତ୍ର କଥା । ଅଧ୍ୟକ୍ଷ ମହେନ୍ଦ୍ର ବାବୁ ତ ବିଜ୍ଞାନର ଲୋକ ! ସାହିତ୍ୟର ସେ କେତେ କଣ ବୁଝନ୍ତି ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ କଥାଟା କଣ ବୁଝେଁ ।

କିଛିଦିନ କଟିଗଲା । ଅଧ୍ୟକ୍ଷଙ୍କ ଅଫିସ୍‌ରୁ ମୋ ପାଖକୁ ଏ ସଂପର୍କରେ କୌଣସି 'ପ୍ରେମପତ୍ର' ଆସିଲା ନାହିଁ । ଦିନେ ମୁଁ କଲେଜ ଓଡ଼ିଆ ବିଭାଗର ଦ୍ୱାରଦେଶରେ ଠିଆ ହୋଇଛି, ପଛରୁ କିଏ ଜଣେ ଆସି ମୋ ବେକକଣ୍ଠାରେ ହାତ ପକାଇ କୁତୁକୁତୁ କରି ଡାକିଦେଲେ – ଏୟ 'ଭଦ୍ରକିଆ ଟୋକା' ! ଚାହିଁ ଦେଖିଲି, ପଛଆଡ଼େ ଠିଆ ହୋଇଛନ୍ତି କଲେଜ ଅଧ୍ୟକ୍ଷ ମହେନ୍ଦ୍ର ବାବୁ – ଜଣେ 'ଭଦ୍ରକିଆ ପ୍ରୌଢ଼' । ମୁଁ ଆଶ୍ୱସ୍ତିର ନିଃଶ୍ୱାସଟିଏ ପକାଇଲି; ବିପଦର ବାଦଲ ବୋଧହୁଏ କଟିଗଲା । ଏଥିରେ ଜଣେ 'ଭଦ୍ରକିଆ ବୃଦ୍ଧ' ହୁଏତ କିଛି କାରସାଦି କରିଛନ୍ତି । ଅନେକେ ବୋଧହୁଏ ଜାଣି ନ ଥିବେ – ଫକୀର ବାବୁ, କଲେଜ ଅଧ୍ୟକ୍ଷ ମହେନ୍ଦ୍ରବାବୁ ଏବଂ ଏ ଅଧ୍ୟାପକ ବାପୁଡ଼ା ସଭିଏଁ ଭଦ୍ରକର ବ୍ୟକ୍ତି ।

ସମସ୍ତ ବ୍ୟାପାରଟା ହସ୍ତୀର ଅଧୋବାୟୁ ତ୍ୟାଗ ପରି କୁଆଡ଼େ ଫୁସ୍ ହୋଇଗଲା ।

## 'ଓଃ କାଲକାଟା'

ତୁଣ୍ଡରେ ଗ୍ରହଣ କରିଥିବା ଖାଦ୍ୟ ଗୋରୁ ଗାଈମାନେ ଅବକାଶ ପାଇଲେ ପାକୁଳି କରିଥାଆନ୍ତି । ତାହା ଦ୍ୱାରା ବୋଧହୁଏ ସେମାନଙ୍କର ଖାଦ୍ୟ ସହଜରେ ହଜମ ହେବା ସଂଗେ ସଂଗେ ଶରୀରର ପୁଷ୍ଟିସାଧନ ହୋଇଥାଏ; କୃଷିଭିତ୍ତିକ ସମାଜରେ ତାହାର ସୁଫଳ ଆମେ ପାଇଥାଉଁ । ଅତୀତ ଘଟଣାବଳୀ ଓ କାର୍ଯ୍ୟ ସମୂହର ସ୍ମୃତି-ରୋମନ୍ଥନ ସେହିପରି ମୋ ନିଜର କିଛି ଉପକାର କରିବ କି ନା, ଜାଣେନା । କିନ୍ତୁ ଏହା ଦ୍ୱାରା ଯେ ସଂପୃକ୍ତ ପାଠକ-ସମାଜ ଉଣାଧିକେ ଲାଭବାନ୍ ହୋଇ ପାରିବେ, ସେହି ବିଶ୍ୱାସରେ ଏହା ଲେଖିବାକୁ ଯାଉଛି ।

ପାଠକ-ପରମେଶ୍ୱରଙ୍କୁ ଏ ଲେଖକ-ବାପୁଡ଼ାର ବିନୀତ ଅଭିବାଦନ ! କଲିକତା ମହାନଗରୀ ସହ ଆପଣମାନଙ୍କର ଯୋଗାଯୋଗ ଥିବ । ୧୯୫୨ ମସିହା ଦୁର୍ଗାପୂଜା ପରେ ପରେ ଶାନ୍ତିନିକେତନ ଯିବା ବାଟରେ କଲିକତାରେ ଯାଇ ପହଞ୍ଚିଲି । ତାହାର ପ୍ରାୟ ଛ' ବର୍ଷ ପୂର୍ବରୁ ହାଇସ୍କୁଲରେ ପଢୁଥିବା ବେଳେ ଦାଦାଙ୍କ ସାଙ୍ଗରେ ପ୍ରଥମ ଥର ପାଇଁ କଲିକତା ଯାଇଥିଲି ଗଙ୍ଗା ଘାଟରେ ମୋର ପରଲୋକଗତ ପିଉସାଙ୍କର ଅସ୍ଥି ବିସର୍ଜନ ପାଇଁ । ରେଳ ଗାଡ଼ିରେ ଭୟଙ୍କର ଯାତ୍ରୀ ଭିଡ଼ ଯୋଗୁଁ ଥରେ ଅଚେତ ହୋଇ ଏବଂ କଲିକତା ରାସ୍ତାରେ ଟ୍ରାମ୍ ଗାଡ଼ିରୁ ପଡ଼ି ଆଉ ଥରେ ନିଜ ପ୍ରାଣଟି ବିସର୍ଜନ କରି ଦେଇ ଥାଆନ୍ତି ପିଉସାଙ୍କ ଅସ୍ଥି ବିସର୍ଜନ ସାଙ୍ଗରେ । କିନ୍ତୁ ପୁଅ-ନାତିମାନେ ଗଙ୍ଗାରେ ମୋର ଅସ୍ଥି ବିସର୍ଜନ କରି ପୁଣ୍ୟ ଅର୍ଜନ କରିବା କାର୍ଯ୍ୟଟି ସେ ପର୍ଯ୍ୟନ୍ତ ହୋଇ ନ ଥିବାରୁ ବୋଧହୁଏ ମୁଁ ବର୍ତ୍ତିଗଲି ।

କଲିକତା ସଂପର୍କରେ ସେତେବେଳେ ମୋ ମନରେ କିଞ୍ଚିତ୍ ଭୟ ଓ କୌତୂହଳ ରହିଥାଏ । ଆମ ଗାଆଁରୁ ସେତେବେଳେ ବହୁଲୋକ କଲିକତା ସହର ଓ ସହରତଳି ଅଞ୍ଚଳରେ ଯାଇ କାମଦାମ କରୁଥାଆନ୍ତି । ଅଧିକାଂଶ କୁଲି ମଜୁରିଆ, ପିଅନ, ଝାଡୁଦାର, କଳକାରଖାନାର ଶ୍ରମିକ; ଅଳ୍ପ କେତେଜଣ ପାନ ଦୋକାନ, ଜଳଖିଆ ଦୋକାନ ଓ ଅନ୍ୟାନ୍ୟ ଧନ୍ଦା କରିଥାଆନ୍ତି । ସେହି ଅଶିକ୍ଷିତ ଓ ସ୍ୱଳ୍ପ ଶିକ୍ଷିତ ଗାଁ-ଲୋକଙ୍କଠାରୁ କଲିକତାର ବିଚିତ୍ର କଥାମାନ ଶୁଣି ଶୁଣି ମୋ ମନରେ ଏକ ପ୍ରକାର ଧାରଣା ସୃଷ୍ଟି ହୋଇ ଯାଇଥିଲା ଯେ – କଲିକତା ଚୋର-ଡକାୟତ ପକେଟମାର୍-ମଦୁଆ-ଜୁଆଡ଼ୀ ଏବଂ ବେଶ୍ୟାମାନଙ୍କର ଏକ ଅଜବ ଭୟଙ୍କର ସହର । ରେଳଗାଡ଼ିରୁ ହାଓଡ଼ା ଷ୍ଟେସନ୍‌ରେ ଓହ୍ଲାଇଲା ମାତ୍ରେ ତମେ କୁଆଡ଼େ ଏଇଭଳି ଲୋକଙ୍କ ହାବୁଡ଼ରେ ପଡ଼ି ହଲାପଟା ହୋଇଯିବ । ଅବଶ୍ୟ, ମୁଁ ୧୯୫୨ରୁ ୧୯୫୫ ମଧ୍ୟରେ ପ୍ରାୟ ତିନି ବର୍ଷ କାଳ ବହୁ ସମୟ କଲିକତାରେ କଟାଇ ଥିଲେ ହେଁ, ଏବଂ ପରେ ବାରମ୍ବାର ସେହି ସହର ମଧ୍ୟରେ ଏକାକୀ ବୁଲାଚଲା କରିଥିଲେ ହେଁ, ସେପରି ହଲାପଟା ହେବାର ଦୁର୍ଯ୍ୟୋଗ ଲଭି ନାହିଁ । ଏହି ସ୍ୱଳ୍ପ ସଂଖ୍ୟକ ବଦମାସ ଲୋକଙ୍କ ବ୍ୟତୀତ କଲିକତାରେ ଯେ ଅନେକ ଭଲ ଲୋକ ଅଛନ୍ତି, ତାହା ଅଚିରେ ହୃଦୟଙ୍ଗମ କରିପାରିଛି ।

ଏକଦା ଆମର ପ୍ରିୟ କବି ବୈଷ୍ଣବ ପାଣି (୧୮୮୨-୧୯୫୬) 'ରଙ୍ଗସଭା' ସୁଆଙ୍ଗରେ ଦ୍ୱାରୀ ତୁଣ୍ଡରେ ବୋଲାଇଥିଲେ –

ଆସ କିଏ ଯିବ ରେ କଲିକତାକୁ ଚାଲ ।
ଟିକଟ କାଟିବା ରେଳରେ ଚଢ଼ିବା
ଦେଖିବା ହାବୁଡ଼ା ପୋଲ ରେ ।।

x x x x

ଝୋଟ ମୁଣ୍ଡାଇବା ମୁଣ୍ଡରେ
ଝୋଟ ପଶିଯିବ ତୁଣ୍ଡରେ
ପେଟ ପାଇଁ ଯେବେ ଖଣ୍ଡପଣ କଲ
ଜେଏଲରେ ଘଣା ପେଲ ରେ ।।
ହେଲେ ଟଙ୍କା ପଇସା ମୋର
ମନେ ଆସି ପଡ଼ିବ ଘର
ରାସ୍ତା ଘାଟେ ବୁଲି ଯାଉଥିଲେ ଚାଲି
ଦେଖିବା ଖାନିକୀ ପଲ ରେ ।।
ହାତେ ଧରି ସ୍ପିରିଙ୍ଗି ଛତା
ଗୋଡ଼େ ମାଡ଼ି ଚଢ଼ାଉ ଯୋତା
ବଇଷ୍ଣବ କହି ଗଣ୍ଠିରି ମୁଣ୍ଡାଇ
ସଡ଼କରେ ହେବା ଗେଲ ରେ ।।

ଏହା ସେତେବେଳର ସେହି ଅଶିକ୍ଷିତ ଅଳ୍ପଶିକ୍ଷିତ ଓଡ଼ିଆଙ୍କ କଥା, ଏବେ ଯାହାର ପରିବର୍ତ୍ତନ ହୋଇଛି ଆଖିରେ ପଡ଼ିଲା ଭଳି । କେତେକ ଓଡ଼ିଆ ଏବେ କଲିକତାରେ ବିଭିନ୍ନ ଉଚ୍ଚ ପଦପଦବୀରେ ଓ ସମ୍ମାନଜନକ ଆସନରେ ଅଧିଷ୍ଠିତ ଅଛନ୍ତି । ଏପରି କି, ଶିକ୍ଷାଦୀକ୍ଷାର ପ୍ରସାର ଫଳରେ କୁଲି-ମଜୁରିଆ ଶ୍ରମିକ ରୂପେ କାର୍ଯ୍ୟ କରୁଥିବା ଓଡ଼ିଆଙ୍କର ଚାଲିଚଳଣି, ଆଚାର ବ୍ୟବହାର ବହୁ ପରିମାଣରେ ଭଦ୍ର ଓ ମାର୍ଜିତ ହୋଇଛି । ମୁଖ୍ୟତଃ କଲିକତାର ପ୍ରବାସୀ ଓଡ଼ିଆ ସଂଗଠନ-କାର୍ଯ୍ୟ ଦ୍ୱାରା ତାହା ସମ୍ଭବ ହୋଇଛି । ଅନୁରୂପ ସଂଗଠନ-କାର୍ଯ୍ୟ ୧୯୫୧ ମସିହା ପୂର୍ବରୁ ମଧୁସୂଦନ ଦାସ, ପଣ୍ଡିତ ଗୋପବନ୍ଧୁଙ୍କ ଅମଳରୁ ଆରମ୍ଭ ହୋଇଥିଲା ଏବଂ ମୋର କଲିକତା ସହ ଘନିଷ୍ଠ ସଂପର୍କ ଥିବା କାଳରେ ତାହା ମଧ୍ୟ ଭଲ ଭାବରେ ଚାଲିଥିଲା । କଲିକତାର ବିଭିନ୍ନ ସ୍ଥାନରେ ଓଡ଼ିଆମାନଙ୍କ ପାଇଁ ସ୍ୱତନ୍ତ୍ର ସ୍କୁଲ, କ୍ଲବ୍, ପାଠାଗାର ଆଦିର ପ୍ରତିଷ୍ଠା, ବିଭିନ୍ନ କଲେଜରେ ଓଡ଼ିଆ ଛାତ୍ରଙ୍କ ପାଇଁ ସ୍ଥାନ ସଂରକ୍ଷଣ ଏବଂ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ସାହିତ୍ୟରେ ଏମ୍.ଏ. ପାଠ୍ୟକ୍ରମର ପ୍ରବର୍ତ୍ତନ (୧୯୧୯) ଇତ୍ୟାଦି ଓଡ଼ିଆମାନଙ୍କ ସାଂସ୍କୃତିକ ସମୃଦ୍ଧି ପାଇଁ ବିଶେଷ ସହାୟକ ହୋଇଥିଲା ।

୧୯୧୧ ମସିହା ପର୍ଯ୍ୟନ୍ତ କଲିକତା ଭାରତବର୍ଷର ରାଜଧାନୀ ଥିଲା ଏବଂ ବଙ୍ଗଳା-ବିହାର-ଓଡ଼ିଶା ଏକତ୍ର ମିଶି ବ୍ରିଟିଶ୍ ଶାସନାଧୀନ ଗୋଟିଏ ପ୍ରଦେଶ ଭାବେ କାର୍ଯ୍ୟ କରୁଥିଲା । ତେଣୁ ବହୁ ବିଭିନ୍ନ ଦିଗରୁ କଲିକତା ସହିତ ଓଡ଼ିଆମାନଙ୍କର ସ୍ୱାର୍ଥ

ଜଡ଼ିତ ଥିଲା । ୧୯୧୨ ମସିହା ଏପ୍ରିଲ ମାସରେ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ ହେବା ପରେ, ତଥା ବଙ୍ଗଳାଠାରୁ ବିଚ୍ଛିନ୍ନ ହୋଇ ବିହାର ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ମଧ୍ୟ କଲିକତା ସହିତ ଓଡ଼ିଆମାନଙ୍କ ସଂପର୍କ ଛିନ୍ନ ହୋଇଗଲା ନାହିଁ । ବିହାର-ଓଡ଼ିଶା ପ୍ରଦେଶର ଶାସନ କେନ୍ଦ୍ର ପାଟନାରେ ଥିଲେ ହେଁ, ପାଟନା ଅପେକ୍ଷା କଲିକତା ସହିତ ଆମର ଯୋଗାଯୋଗ ରହିଥିଲା ଅଧିକ ।

ଜବ୍ ଚାର୍ଣ୍ଣକ୍ (୧୬୩୦-୯୩) ସାହେବଙ୍କୁ ଆମର ବିଶେଷ ଧନ୍ୟବାଦ ! ଇଷ୍ଟ ଇଣ୍ଡିଆ କମ୍ପାନୀର ବାଣିଜ୍ୟ-ପ୍ରତିନିଧି ଭାବରେ ସେ ୧୬୯୦ ମସିହା ଅଗଷ୍ଟ ମାସରେ ଯେଉଁ ଆଧୁନିକ କଲିକତାର ଶୁଭ ଦେଇଥିଲେ, କାଳକ୍ରମେ ତାହାହିଁ ହେଲା ଭାରତର ବ୍ରିଟିଶ ସରକାରଙ୍କ ରାଜଧାନୀ, ବାଣିଜ୍ୟ-ବ୍ୟବସାୟ କେନ୍ଦ୍ର ଏବଂ ସାଂସ୍କୃତିକ କାର୍ଯ୍ୟାବଳୀର ପୀଠ । ଫଳରେ, ବଙ୍ଗଳା ବାହାରୁ ବହୁ ଓଡ଼ିଆ, ବିହାରୀ, ଗୁଜୁରାଟୀ ପ୍ରଭୃତି ଭିନ୍ନ ଭିନ୍ନ ଜନଗୋଷ୍ଠୀ ଯାଇ ସେଠାରେ ଭିଡ଼ ଜମାଇଲେ । କଲିକତା ହୋଇ ଉଠିଲା ଏକ ସର୍ବଭାରତୀୟ ସହର । ଓଡ଼ିଆମାନଙ୍କ କ୍ଷେତ୍ରରେ କଲିକତା ସଂପର୍କ ଥିଲା ଟିକିଏ ଭିନ୍ନ ପ୍ରକାର – ଆବେଗାତ୍ମକ ଓ ପରଂପରାଭିତ୍ତିକ । ଶ୍ରୀ ଚୈତନ୍ୟଙ୍କ ଅମଳରୁ ଅର୍ଥାତ୍ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରୁ ବଙ୍ଗ ଉତ୍କଳ ମଧ୍ୟରେ ଘନିଷ୍ଠ ଯୋଗାଯୋଗ ସ୍ଥାପିତ ହୋଇଥିଲା । ଚାର୍ଣ୍ଣକ୍ ସାହେବଙ୍କ ବେଳକୁ ଓଡ଼ିଶାର ସାବର୍ଣ୍ଣ ଚୌଧୁରୀଙ୍କ ବଂଶଧର ବିଦ୍ୟାଧର ଚୌଧୁରୀ ଥିଲେ କଲିକତା ସୂତାନଟୀ ଗୋବିନ୍ଦପୁରର ଜମିଦାର । ଆଓରଙ୍ଗଜେବଙ୍କର ଜଣେ ନାତି ସେତେବେଳେ ବଙ୍ଗଳାର ସୁବେଦାର ଥିଲେ । ତାଙ୍କୁ ଷୋହଳ ହଜାର ଟଙ୍କା ଲାଞ୍ଚ ଦେଇ ଇଂରେଜମାନେ ୧୬୯୮ ମସିହାରେ ବିଦ୍ୟାଧର ଚୌଧୁରୀଙ୍କ ଅଧୀନରେ ଥିବା ଏହି ତିନୋଟି ପେଣ୍ଠ ଗ୍ରାମର ଜମିଦାରୀ କରଗତ କରିଥିଲେ । ଜରସମନ୍ ଦେଇଥିଲେ ମାତ୍ର ତେରଶହ ଟଙ୍କା । ଏକଦା ଓଡ଼ିଆଙ୍କ ଜମିଦାରୀ ଥିବା ସେହି ଅଞ୍ଚଳରେ ଓଡ଼ିଶାରୁ ଗୋବିନ୍ଦଜୀଉଙ୍କ ବିଗ୍ରହ ଯାଇ ପ୍ରତିଷ୍ଠିତ ହୋଇଥିଲା; ତହିଁରୁ ସ୍ଥାନଟିର ନାମ 'ଗୋବିନ୍ଦପୁର' ହୋଇଥିବାର ଜଣାପଡ଼େ । ତତ୍କାଳୀନ ବ୍ୟବସାୟୀ ବସାକ୍ ପରିବାର ସେଠାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ବିଗ୍ରହ ପ୍ରତିଷ୍ଠା କରିଥିଲେ ଏବଂ ବଡ଼ ବଜାର ଗଙ୍ଗାକୂଳରେ 'ଜଗନ୍ନାଥ ଘାଟ' ନିର୍ମାଣ କରାଇଥିଲେ । ପରେ ଦାନଶୀଳୀ ଧନାଢ଼୍ୟା ମହିଳା ରାଣୀ ରାସମଣି (୧୭୯୩-୧୮୬୧) କଲିକତାରେ ରଥଯାତ୍ରା ପ୍ରବର୍ତ୍ତନ କରିଥିଲେ ।

ଏହି ବଙ୍ଗୋତ୍କଳ ସଂପର୍କ ସମୁଦାୟ ଅଷ୍ଟାଦଶ ଓ ଉନବିଂଶ ଶତାବ୍ଦୀ ମଧ୍ୟରେ ଘନିଷ୍ଠତର ହୋଇଥିଲା । ଜୀବିକାର୍ଜନ ସକାଶେ ଓଡ଼ିଆମାନେ କଲିକତାକୁ ଧାଡ଼ି ଦେଇଥିଲେ । ସରଳ, ସଚ୍ଚୋଟ ଏବଂ କର୍ମଠ ମଣିଷ ଭାବରେ ଓଡ଼ିଆମାନଙ୍କର ସୁନାମ

ଥିବାରୁ କାମର ଅଭାବ ହେଉ ନଥିଲା । ସେତେବେଳେ ଓଡ଼ିଶାର ଅର୍ଥନୈତିକ ଅବସ୍ଥା ଶୋଚନୀୟ ଥିଲା । ତା' ଉପରେ ବଢ଼ି, ମରୁଡ଼ି ପରି ଦୈବ ଦୁର୍ବିପାକ ଲାଗି ରହିଥିଲା । ଗରିବ ଭୂମିହୀନ ଓ ମୂଲ ମଜୁରୀ କରି କୁଟୁମ୍ବ ପ୍ରତିପୋଷଣ କରୁଥିବା ମଣିଷଙ୍କ ପାଇଁ କାମ ନ ଥିଲା ଓଡ଼ିଶାରେ । ଯାହା ଥିଲା, ସେଥିରେ ପେଟ ପୂରୁ ନ ଥିଲା । କେବଳ ଓଡ଼ିଆ ନୁହନ୍ତି, ଦରିଦ୍ର ବିହାରୀ, ବଙ୍ଗାଳୀ କର୍ମଜୀବୀମାନଙ୍କ ପାଇଁ କଲିକତା ଥିଲା ମୋକ୍ଷ ଭୂଇଁ । ରାସ୍ତାଘାଟଠାରୁ ଆରମ୍ଭ କରି ଜାହାଜ ପର୍ଯ୍ୟନ୍ତ ସବୁ ପ୍ରକାର ମେହେନତି ଖିଦ୍‌ମତ୍‌ଗିରୀ କରୁଥିଲେ ଏହି ଗରିବ ଲୋକମାନେ । ଏହି କଲିକତାରୁ ଆରମ୍ଭ କରି କାଳକ୍ରମେ ଓଡ଼ିଆମାନେ ଭାରତ-ବିଦିତ ପାଣି ପାଇପ୍ ମିସ୍ତ୍ରୀ ହୋଇଗଲେ । ଏବେ ମଧ୍ୟ ପାଣି ପାଇପ୍ କାମରେ ଓଡ଼ିଆମାନଙ୍କର ଅଖଣ୍ଡ ଆଧିପତ୍ୟ । କଲିକତାରେ ପାଣି ପାଇପ୍‌ର ଛୋଟ ବଡ଼ ଠିକାଦାରମାନେ ପ୍ରାୟତଃ ଓଡ଼ିଆ ।

ଡଃ କୃଷ୍ଣଚନ୍ଦ୍ର ଭୂୟାଁଙ୍କ 'ଊନବିଂଶ ଶତାବ୍ଦୀର କଲିକତାରେ ଓଡ଼ିଆ' (୧୯୯୦) ଗବେଷଣା ପ୍ରବନ୍ଧରୁ ଜଣାପଡ଼େ, ଟ୍ରାମ, ବସ୍ ଚାଲିବା ପୂର୍ବରୁ ବିଲାତି ସାହେବ, ରାଜା, ଜମିଦାର ଓ ବଡ଼ ବଡ଼ ଲୋକଙ୍କ ଯାତାୟାତର ପ୍ରଧାନ ଅବଲମ୍ବନ ଥିଲା ପାଲିଙ୍କି । ୧୮୩୯ ମସିହାରେ ୨୮୭୫ ଗୋଟି ପାଲିଙ୍କି କଲିକତାରେ ଚାଲୁଥିଲା ବୋଲି ଏକ ପରିସଂଖ୍ୟାନରୁ ଜଣାପଡ଼େ । ଏହି ପାଲିଙ୍କି ବାହକମାନେ ନିଜର ସୁଖ ସୁବିଧା ପାଇଁ ୧୮୦୦ ମସିହାରେ ଧର୍ମଘଟ କରିଥିଲେ । ଧର୍ମଘଟର ମୁଖ୍ୟ ସଂଗଠନକାରୀ ଥିଲେ ଓଡ଼ିଆ ପାଲିଙ୍କି ବାହକମାନେ । ସେତେବେଳେ ଏହା ଥିଲା ଗୌରବର କଥା ।

ଗାଡ଼ିଘୋଡ଼ା ଚାଲିବା ପରେ ନୂଆ କରି ଯେଉଁ ଓଡ଼ିଆମାନେ କଲିକତା ଗଲେ, ସେମାନେ ମୁଖ୍ୟତଃ ଦିନ ମଜୁରିଆ, ଚାକର ବାକର ଭାବରେ କାର୍ଯ୍ୟ କଲେ – କେତେକ ମଧ୍ୟ କଳକାରଖାନା ଶ୍ରମିକ ଭାବରେ ଲୁହ ଲହୁ ଢାଳି କଲିକତାର ଶିଳ୍ପ-ଭଣ୍ଡାର ଗଢ଼ି ତୋଳିଲେ । ଭାରତୀୟ ପୁନର୍ଜାଗରଣର ଦିଶାରୀ ରାଜା ରାମମୋହନ ରାୟ (୧୭୭୪-୧୮୩୩)ଙ୍କର ବ୍ୟକ୍ତିଗତ ଭୃତ୍ୟ ଥିଲେ ଜଣେ ଓଡ଼ିଆ । ତାଙ୍କର ନାମ ରାମହରି ଦାସ । ୧୮୩୦ ମସିହାରେ ରାଜା ରାମମୋହନ ବିଲାତ ଗଲାବେଳେ ରାମହରିଙ୍କୁ ସାଙ୍ଗରେ ଘେନି ଯାଇଥିଲେ । ସେତେବେଳେ ଜଳପଥରେ ଲୋହିତ ସାଗର ଓ ଭୂମଧ୍ୟ ସାଗରକୁ ସଂଯୁକ୍ତ କରୁଥିବା ସୁଏଜ୍ କେନାଲ ଫିଟି ନଥିଲା (ଫିଟିଲା ୧୮୬୯ ମସିହାରେ) । ଗୋଟା ଆଫ୍ରିକା ମହାଦେଶକୁ ଉତ୍ତମାଶା ଅନ୍ତରୀପ ବାଟେ ପାରି ହୋଇ ଭାରତରୁ ବିଲାତ ଯିବାକୁ ପଡୁଥିଲା ! ରାଜା ରାମମୋହନ ଦୈନିକ ପ୍ରାୟ ବାରସେର କ୍ଷୀରପାନ କରୁଥିଲେ ! ସେଥିପାଇଁ ବିଲାତ ଯାତ୍ରାବେଳେ ସେ ଜାହାଜରେ ଗୋଟିଏ ଦୁଧିଆଳୀ ଗାଈ ଘେନି ଯାଇଥିଲେ । ଗାଈଟିର ଦେଖାଶୁଣା କରିବା ଏବଂ ରାମମୋହନଙ୍କ ସୁଖସୁବିଧା

ବୁଝିବା ସେବକ ରାମହରିଙ୍କର କାର୍ଯ୍ୟ ଥିଲା । ବିଲାତରେ ରାମମୋହନଙ୍କ ମୃତ୍ୟୁ ହେବାରୁ, ରାମହରି ଭାରତ ବାହୁଡ଼ି ଆସି ପ୍ରଥମେ ବର୍ଦ୍ଧମାନ ମହାରାଜାଙ୍କର 'ଗୋଲାପ ବାଗ୍' ଦାୟିତ୍ୱରେ ରହିଥିଲେ । ପରେ ବୋଲପୁରଠାରେ ଶାନ୍ତିନିକେତନର ଭିତ୍ତି ପଡ଼ିଲା ବେଳେ କବି ରବୀନ୍ଦ୍ରନାଥଙ୍କ ପିତା ମହର୍ଷି ଦେବେନ୍ଦ୍ରନାଥ ତାଙ୍କୁ ଘେନିଯାଇ ଶାନ୍ତିନିକେତନରେ ବୃକ୍ଷଲତାଦି ରୋପଣ ଓ ଉଦ୍ୟାନ ସଜ୍ଜା କାର୍ଯ୍ୟରେ ଲଗାଇଥିଲେ । ରାମହରି ଦାସଙ୍କ ବ୍ୟକ୍ତିଗତ ଜୀବନ ସଂପର୍କରେ ବିଶେଷ କିଛି ତଥ୍ୟ ମିଳେ ନାହିଁ । ଯାହାହେଉ ସେହି ରାମହରି ହେଉଛନ୍ତି ବିଲାତ ଯାତ୍ରା କରିଥିବା ପ୍ରଥମ ଓଡ଼ିଆ । ପ୍ରଚଳିତ ମତ ଅନୁଯାୟୀ ମଧୁସୂଦନ ଦାସ (ମଧୁ ବାରିଷ୍ଟର ୧୮୪୮-୧୯୩୪) ଯେ ପ୍ରଥମେ ବିଲାତ ଯାଇଥିଲେ, ଏ କଥାଟି ବୋଧହୁଏ ଠିକ୍ ନୁହେଁ ।

ଅଷ୍ଟାଦଶ ଓ ଉନବିଂଶ ଶତାବ୍ଦୀରେ କେତେଜଣ ଓଡ଼ିଆ ମଧ୍ୟ କଲିକତାର ବୈଷୟିକ ଓ ସାଂସ୍କୃତିକ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଫାଲ୍‌ଗୁନ ଦାସଙ୍କ ଭଳି କେତେକ ବିଶିଷ୍ଟ ବ୍ୟକ୍ତି ୟୁରୋପୀୟ ବ୍ୟବସାୟୀ ଓ ଜାହାଜ କାରବାରରେ ଦଲାଲି ବା ଠିକାଦାରୀ କରି ବୈଷୟିକ ପ୍ରତିପତ୍ତି ହାସଲ କରିଥିଲେ । ବୌ'ବଜାର ଅଞ୍ଚଳରେ 'ଫାଲ୍‌ଗୁନ ଦାସ ଲେନ୍' ଏବେ ତାହାର ସ୍ମାରକୀ ହୋଇ ରହିଛି । ସଂଗୀତ ଓ ନାଟ୍ୟକର୍ମ କ୍ଷେତ୍ରରେ ଗୋପାଳ ଉଡ଼େ, ଭରତ ଉଡ଼େ, ରୂପଚାନ୍ଦ ଦାସ ମହାପାତ୍ର ପ୍ରମୁଖ – ସାହିତ୍ୟ କ୍ଷେତ୍ରରେ ମୃତ୍ୟୁଞ୍ଜୟ ବିଦ୍ୟାଳଂକାର, ରାଧାନାଥ ରାୟ ପ୍ରମୁଖ ସେତେବେଳେ ସୁପରିଚିତ ଥିଲେ । ବିଂଶ ଶତାବ୍ଦୀରେ କଲିକତାରେ ଓଡ଼ିଆମାନଙ୍କର ଏହି ବୈଷୟିକ ଓ ସାଂସ୍କୃତିକ କର୍ମଧାରା ବହୁଗୁଣିତ ହୋଇଥିଲା । ବିଶେଷତଃ ପ୍ରବାସୀ ଓଡ଼ିଆ ସଂଗଠନ, ଓଡ଼ିଆ ଯାତ୍ରା ଅଭିନୟ, ଓଡ଼ିଆ ମୁଦ୍ରଣଶିଳ୍ପ ସ୍ଥାପନ, 'ଆଲୁଅ' ଓ 'ଆସନ୍ତା କାଲି' ଭଳି ପତ୍ରିକା ତଥା ବିଭିନ୍ନ ପ୍ରକାର 'କଲକତୀ ସାହିତ୍ୟ' ପ୍ରକାଶରେ କଲିକତାର କେତେକ ବଛା ବଛା ଅଞ୍ଚଳ ଏକପ୍ରକାର କର୍ମମୁଖର ହୋଇ ଉଠିଲା । ଏବେ ବୃହତ୍ତର କଲିକତାରେ ଓଡ଼ିଆଙ୍କ ସଂଖ୍ୟା ପ୍ରାୟ ସାଢ଼େ ତିନି ଲକ୍ଷ । ବଙ୍ଗାଳୀ-ଅବଙ୍ଗାଳୀ ମିଶାଇ ପ୍ରାୟ ବାସ୍ତରୀ ଲକ୍ଷ ମୋଟ ଜନସଂଖ୍ୟା ମଧ୍ୟରେ ଓଡ଼ିଆମାନେ କଲିକତାରେ ନିଜର ଏକ ବିଶିଷ୍ଟ ସ୍ଥିତି ଓ ପରିଚୟ ବହନ କରନ୍ତି ।

୧୯୫୨ ମସିହା ବେଳକୁ କଲିକତାଠାରୁ ପ୍ରାୟ ଏକଶହ ମାଇଲ ଦୂରବର୍ତ୍ତୀ ଶାନ୍ତିନିକେତନସ୍ଥ କବି ରବୀନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ବିଶ୍ୱଭାରତୀ ହୋଇ ଉଠିଥିଲା ଭାରତବର୍ଷର ସଂସ୍କୃତି ଚର୍ଚ୍ଚାର ଏକ ପ୍ରଧାନ ପୀଠ । ସ୍ୱାଧୀନତା ଲାଭ ପୂର୍ବରୁ ଏହି ବିଶ୍ୱଭାରତୀର ବିଭିନ୍ନ ବିଭାଗରେ କିଛି ଓଡ଼ିଆ ଛାତ୍ରଛାତ୍ରୀ ଅଧ୍ୟୟନ କରୁଥିଲେ, ବିଶେଷତଃ କଳା-ଭବନରେ ଚିତ୍ରକଳାଦି ବିଷୟ ଅଧ୍ୟୟନ ପାଇଁ ବେଶି ଛାତ୍ରଛାତ୍ରୀ ଯାଉଥିଲେ । ସ୍ୱାଧୀନତା

ପରେ ପରେ ୧୯୪୮-୪୯ ମସିହାରେ ବିଶ୍ୱଭାରତୀରେ 'ଓଡ଼ିଆ ଗବେଷଣା ବିଭାଗ' ଫିଟିଲା । ଅଧ୍ୟାପକ ଭାବରେ ଶ୍ରୀ ପ୍ରହ୍ଲାଦ ପ୍ରଧାନ ଓ ଗବେଷକ ଭାବରେ ଶ୍ରୀ ଚିତ୍ତରଂଜନ ଦାସ ସେହି ବିଭାଗରେ ଯୋଗ ଦେଲେ । ୧୯୫୧ ମସିହାରେ ଭାରତ ପାର୍ଲିଆମେଣ୍ଟର ଏକ ଅଧିନିୟମ ବଳରେ ବିଶ୍ୱଭାରତୀ ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ପରିଣତ ହେଲା ଏବଂ ସେହି ବର୍ଷ ଓଡ଼ିଆ ଭାଷା-ସାହିତ୍ୟ ବିଷୟରେ ସେଠାରେ ସ୍ନାତକୋତ୍ତର ପାଠ୍ୟକ୍ରମ ପ୍ରବର୍ତ୍ତିତ ହେଲା । ଫଳରେ, ସେଠି ଓଡ଼ିଆ ଛାତ୍ରଛାତ୍ରୀ ଓ ଅଧ୍ୟାପକଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । କଲିକତା ଭଳି ଶାନ୍ତିନିକେତନ ହୋଇ ଉଠିଲା ଅନ୍ୟାନ୍ୟ ଭାଷା ସାହିତ୍ୟ ଓ ସଂସ୍କୃତି ସହିତ ଓଡ଼ିଆ ଭାଷା-ସାହିତ୍ୟ ଚର୍ଚ୍ଚାର ଏକ ବିଶିଷ୍ଟ କେନ୍ଦ୍ର ।

ଏ ଲେଖକ ଶାନ୍ତିନିକେତନ ଯିବାର ଏଗାର ବର୍ଷ ପୂର୍ବରୁ କବି ରବୀନ୍ଦ୍ରନାଥ ଗତାୟୁ ହୋଇ ସାରିଥିଲେ (୧୯୪୧) । ରବି ରଶ୍ମିର ଔଜ୍ଜ୍ୱଲ୍ୟ ଏବଂ ଚହିଁରେ ଆଲୋକିତ ହୋଇଥିବା ବିଶ୍ୱଭାରତୀ ମୋତେ ଆକୃଷ୍ଟ କରିଥିଲା ପ୍ରବଳ ଭାବରେ । ଭଦ୍ରକ ନିକଟସ୍ଥ ଦୋଳସାହୀ ହାଇସ୍କୁଲରେ ପାଠ ପଢୁଥାଏଁ (୧୯୪୪-୪୮), ସେଠାର ଶିକ୍ଷକ କବି ଗଗନ ବିହାରୀ ମହାନ୍ତି ବୋଧହୁଏ ମୋର ପିଲାଳିଆ ଲେଖାଲେଖି ପଢ଼ି ଓ ସାଂସ୍କୃତିକ ଅଭୀପ୍‌ସା ଲକ୍ଷ୍ୟ କରି ମେଟ୍ରିକୁଲେସନ ପରେ ଶାନ୍ତିନିକେତନରେ ଯାଇ ପଢ଼ିବା ପାଇଁ ମୋତେ ପରାମର୍ଶ ଦେଲେ । ଶାନ୍ତିନିକେତନ ଯିବା ପାଇଁ ମୁଁ ଏକପ୍ରକାର ଦିନ ଗଣିବାରେ ଲାଗିଲି ଏବଂ ରାଞ୍ଚିଠାରେ ଓଡ଼ିଶାର ଏକାଉଣ୍ଟାଣ୍ଟ ଜେନେରାଲ୍‌ଙ୍କ ଷ୍ଟେନୋ ଭାବରେ କାର୍ଯ୍ୟ କରୁଥିବା ମୋର ବାପାଙ୍କୁ ପତ୍ର ଦ୍ୱାରା ମୋର ଅଭିଳାଷ ଜଣାଇଦେଲି । ମାତ୍ର ଭବିତବ୍ୟ ଘଟଣା ଥିଲା ଭିନ୍ନ ପ୍ରକାର । ମୋର ମେଟ୍ରିକୁଲେସନ୍ ପରୀକ୍ଷା ପରେ ପରେ ବାପା ଭୟଙ୍କର ଅସୁସ୍ଥ ହୋଇ ଦୀର୍ଘ ଛୁଟିରେ ଗାଆଁକୁ ଆସିଲେ – ରୋଗ ଶଯ୍ୟାରେ ପଡ଼ି ମୋର ପାଶ୍ କରିବା ଖବର ପାଇଲେ । ଖୁସି ହେଲେ, ମାତ୍ର ଅଧିକ ପଢ଼ା ପାଇଁ ମୋତେ ଶାନ୍ତିନିକେତନ ପଠାଇବାକୁ କୁଣ୍ଠା ପ୍ରକାଶ କଲେ । ଅଗତ୍ୟା ମୁଁ ସଦ୍ୟ ପ୍ରତିଷ୍ଠିତ (୧୯୪୮) ଭଦ୍ରକ କଲେଜରେ ଆଇ.ଏ. ଶ୍ରେଣୀରେ ନାମ ଲେଖାଇ ଦେଲି । ପରେ ପରେ ବାପାଙ୍କର ସେହି ରୋଗଶଯ୍ୟା ମୃତ୍ୟୁଶଯ୍ୟାରେ ପରିଣତ ହେଲା ।

ଶାନ୍ତିନିକେତନ ଯିବା ପାଇଁ ମୋତେ ପ୍ରାୟ ଚାରି ବର୍ଷ ଅପେକ୍ଷା କରିବାକୁ ପଡ଼ିଲା । ଭଦ୍ରକ କଲେଜରେ ଦୁଇବର୍ଷ ଆଇ.ଏ. ପଢ଼ିଲା ପରେ କଟକ ରେଭେନ୍‌ସା କଲେଜରେ ଦୁଇବର୍ଷ ବି.ଏ. ପଢ଼ିଲି । ଏଇ ଚାରିବର୍ଷ ସ୍ମୃତି କଥା ବାରାନ୍ତରେ କହିଛି । ବି.ଏ. ପାଶ୍ କଲା ପରେ ଶାନ୍ତିନିକେତନ ଯିବାପାଇଁ ପୁଣି ଅଣ୍ଟା ଭିଡ଼ିଲି । ମାତ୍ର, ଅଣ୍ଟିରେ ନାହିଁ ଧନ – ବିଶ୍ୱଭାରତୀକୁ ମନ । କ'ଣ କରିବି ? ମୋର ଉଚ୍ଚାଶା ଓ ମହତ ଅଭିଳାଷ

ପାଇଁ ଅର୍ଥ କ'ଣ ପ୍ରତିବନ୍ଧକ ହୋଇ ଠିଆ ହେବ ? ଆମର ନିମ୍ନ ମଧ୍ୟବିତ୍ତ ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥାଏ । ବାଧ୍ୟ ହୋଇ ନିଜ ଗ୍ରାମ ସ୍କୁଲରେ ପାଞ୍ଚ ମାସ ଶିକ୍ଷକତା କରି କିଛି ଅର୍ଥ ସଂଚୟ କରି ରଖିଲି ଏବଂ ତାକୁଇ ପୁଞ୍ଜିକରି ଶାନ୍ତିନିକେତନ ବାହାରି ପଡ଼ିଲି – ନିକଟ ଭବିଷ୍ୟତରେ ବାପାଙ୍କର ପ୍ରୋଭିଡେଣ୍ଟ ଫଣ୍ଡ ଟଙ୍କା ମିଳିଗଲେ, ଦୁଇ ବର୍ଷ କୌଣସି ମତେ ଶାନ୍ତିନିକେତନରେ ଚଳି ଯାଇ ପାରିବି – ଏଇ ଭରସାରେ । ପରିବାରର ମୁରବୀ ମୋର ଦାଦା ମଧ୍ୟ ଓଡ଼ିଶା ବାହାରେ ଯାଇ ଏମ୍.ଏ. ପଢ଼ିବାକୁ ମୋତେ ସାହସ ଯୋଗାଇଲେ ।

ଓଡ଼ିଆ ଭାଷା-ସାହିତ୍ୟରେ ଯଦି ସ୍ନାତକୋତ୍ତର ଅଧ୍ୟୟନ କରିବି, ତାହାହେଲେ କଟକ ରେଭେନ୍ସା କଲେଜରେ ନ ପଢ଼ିବି କାହିଁକି ? ସେତେବେଳେ ମୋର କେତେକ ଶୁଭେଚ୍ଛୁ ବନ୍ଧୁ ଏ ପ୍ରଶ୍ନ ଉଠାଇଥିଲେ । ବସ୍ତୁତଃ ଭାଷା ସାହିତ୍ୟର ଉଚ୍ଚତର ଅଧ୍ୟୟନ ପାଇଁ, ଆମ ରାଜ୍ୟ ମଧ୍ୟରେ ରେଭେନ୍ସା କଲେଜ ଥିଲା ଏକ ସୁପ୍ରତିଷ୍ଠିତ ଶିକ୍ଷାୟତନ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ ପରେ ୧୯୩୬ ମସିହାରେ ଏହି କଲେଜରେ ଓଡ଼ିଆ-ଭାଷା-ସାହିତ୍ୟକୁ ଏକ ଇଚ୍ଛାଧୀନ ପାଠ୍ୟ ବିଷୟ ରୂପେ ଆଇ.ଏ. ଏବଂ ବି.ଏ. ସ୍ତରରେ ପ୍ରବର୍ତ୍ତନ କରାଯାଇଥିଲା । ୧୯୪୨ ମସିହାରେ ସେଠାରେ ଓଡ଼ିଆରେ ଅନର୍ସ ଶ୍ରେଣୀ ଏବଂ ୧୯୪୬ ମସିହାରେ ଏମ୍.ଏ. ଶ୍ରେଣୀ ଫିଟିଥିଲା । ଅଧ୍ୟାପକ ସର୍ବଶ୍ରୀ ରତ୍ନାକର ପତି, କାଶୀନାଥ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ, ଡକ୍ଟର କୁରଣାକର କର ପ୍ରମୁଖ ବିଦ୍ୱାନ୍‌ମାନଙ୍କ ଅଧ୍ୟାପନାରେ ଧନ୍ୟ ହୋଇଥିଲା ରେଭେନ୍ସା କଲେଜର ଓଡ଼ିଆ ଭାଷା-ସାହିତ୍ୟ ବିଭାଗ । ସେଠାରେ ମୁଁ ପଢ଼ିପାରି ଥାଆନ୍ତି । କିନ୍ତୁ ମେଟ୍ରିକୁଲେସନ୍ ଓ ଆଇ.ଏ. ପଢ଼ିବା ବେଳୁ ମୋର ପୂଜ୍ୟ ଗୁରୁ ଗଗନ ବିହାରୀ ମହାନ୍ତିଙ୍କ ପ୍ରେରଣା ଓ ପ୍ରଚୋଦନା ମୋତେ ବିଶ୍ୱଭାରତୀ ଅଭିମୁଖୀ କରାଇ ସାରିଥିଲା । ତଦୁପରି ରେଭେନ୍ସା କଲେଜ ଓଡ଼ିଆ ବିଭାଗର ଅଧ୍ୟୟନ ଅଧ୍ୟାପନା ବିଷୟରେ ମୁଁ ସେତେବେଳେ ଏକ ପ୍ରକାର ବୀତସ୍ପୃହ ହୋଇ ପଡ଼ିଥିଲି । କଲେଜ ଲାଇବ୍ରେରୀରେ ବହି ଅଛି, ଅଥଚ ଚାହିଁଲେ ବି ପାଇପାରିବ ନାହିଁ । ସୁଶିକ୍ଷିତ ଶିକ୍ଷକ ଅଛନ୍ତି, ଅଥଚ ରୀତିମତ କ୍ଲାସ୍‌କୁ ଆସି ପାଠ ପଢ଼ାଇବେ ନାହିଁ । ପଦ୍ମ ପତ୍ର ଉପରେ ଜଳବିନ୍ଦୁବତ୍ ଥିଲା ସେମାନଙ୍କର ସ୍ଥିତି । ବ୍ୟକ୍ତିଗତ ଘନିଷ୍ଠ ସଂପର୍କ ସ୍ଥାପନ କରି ଛାତ୍ରଛାତ୍ରୀଙ୍କ ପଢ଼ାଶୁଣା କ୍ଷେତ୍ରରେ ସୁବିଧା ଅସୁବିଧା ବୁଝିବା ପାଇଁ ସେମାନେ କ୍ୱଚିତ୍ ଆଗ୍ରହ ପ୍ରକାଶ କରୁଥିଲେ । 'ସରକାରୀ ଅଫିସର୍' କି ନା ! ଶ୍ରେଣୀ ଗୃହର ଚାରିକାନ୍ଥ ମଧ୍ୟରେ କ୍ଲାସ୍ ଶେଷ ହେଲା ମାତ୍ରେ ଶିକ୍ଷକ ଚାଲିଲେ ନିଜ ବାଟରେ, ଛାତ୍ର ଛାତ୍ରୀ ଚାଲିଲେ ତାଙ୍କ ବାଟରେ । କେହି କାହାରି କଥା ବୁଝିବାକୁ ନାହିଁ । ଛାତ୍ର ଓ ଶିକ୍ଷକ ଦୁଇ ଗୋଷ୍ଠୀ ମଧ୍ୟରେ ଡାଇଲଗ୍, ଡିସ୍‌କସନ୍

ପ୍ରାୟ କିଛି ନାହିଁ, ଯାହାକି ଶିକ୍ଷା ବ୍ୟବସ୍ଥାର ଏକ ଶକ୍ତିଶାଳୀ ଅଙ୍ଗ । ଦୋଳସାହୀ ହାଇସ୍କୁଲ ଓ ଭଦ୍ରକ କଲେଜରେ ମୁଁ ଯେଉଁ ଶିକ୍ଷକ ସାନ୍ନିଧ୍ୟ ଦ୍ୱାରା ଉପକୃତ ହୋଇଥିଲି, ରେଭେନ୍‌ସା କଲେଜରେ ତାହା ଅପ୍ରାପତ ଥିଲା । ତେଣୁ ସେଠାରେ ସ୍ନାତକୋତ୍ତର ଶିକ୍ଷାଲାଭ ପାଇଁ ମନ ବଳିଲା ନାହିଁ ।

ବିଶ୍ୱଭାରତୀ ମନ୍ଦିରକୁ ଯିବା ଲାଗି ମୋ ପକ୍ଷରେ କଲିକତା ଥିଲା ଏକପ୍ରକାର ମୁଖଶାଳା । ପୁଣି, ଯେଉଁ ଅଢ଼େଇ ବର୍ଷ ଶାନ୍ତିନିକେତନରେ ରହି ଏମ୍.ଏ. ପଢ଼ିଲି, ତହିଁରୁ ପ୍ରାୟ ଅଧେ ଦିନ କଟାଇଛି କଲିକତାରେ । ଆମର ରବିବାର ଭଳି ବୁଧବାର ହେଉଛି ଶାନ୍ତିନିକେତନର ସାପ୍ତାହିକ ଛୁଟି ଦିବସ । ଅଧିକାଂଶ ମଙ୍ଗଳବାର ସନ୍ଧ୍ୟାରେ ମୁଁ କଲିକତା ଚାଲିଆସେଁ । ବୁଧବାର ଦିନଟି କଲିକତାରେ ରହି ସେହି ଦିନ ରାତିରେ ବା ପରଦିନ ସକାଳେ ଶାନ୍ତିନିକେତନ ବାହୁଡ଼ି ଯାଏଁ । ପୂଜା ବା ବଡ଼ଦିନ ଭଳି ଦୀର୍ଘ ଛୁଟି ମଧ୍ୟ ପୂରାପୂରି କଲିକତାରେ କଟାଇ ଦିଏଁ । ସେତେବେଳେ କଲିକତା ଜୀବନର ଆକର୍ଷଣ ମୋ ପକ୍ଷରେ ଊଣା ନଥିଲା । ଦେହମନରେ ଥିଲା ଭରା ଯୌବନ । ଟଙ୍କାପଇସାର ବିଶେଷ ଅଭାବ ନ ଥିଲା । ମୁରବୀ ଓ ଗୁରୁଜନଙ୍କଠାରୁ ନିରାପଦ ଦୂରତ୍ୱରେ ରହି ନିଜେ ଥିଲି ନିଜର ପ୍ରଭୁ । ଆଉ, ଅବିବେକିତା ମଧ୍ୟ ବେଳେବେଳେ ମୋତେ ଗ୍ରାସ କରୁଥିଲା । ତେଣୁ କଲିକତାରେ ବିଭିନ୍ନ ପ୍ରକାର ଭଲ କାର୍ଯ୍ୟ ସଂଗେ ସଂଗେ କିଛି ଖରାପ କାର୍ଯ୍ୟ ମଧ୍ୟ କରିପକାଇ ଥିଲି ।

ସେତେବେଳେ କଲିକତାର ମୁଖ୍ୟତଃ ଦୁଇଟି ସ୍ଥାନରେ ମୁଁ ଡେରା ପକାଉଥିଲି – ଶ୍ୟାମବଜାର ମୋଡ଼ରେ ଥିବା ଓଡ଼ିଶା-ହଷ୍ଟେଲରେ, ନୋହିଲେ ଖିଦିରପୁରରେ ଥିବା ମୋର ଜଣେ ବନ୍ଧୁଙ୍କ ଘରେ । ପ୍ରଥମେ ପ୍ରଥମେ କଲିକତାରେ ଖାଲି ଘୂରି ବୁଲିବା ଏବଂ ମହାନଗରୀର ବିଭିନ୍ନ ଜାଗା ବେଜାଗା, ଦର୍ଶନୀୟ ସ୍ଥାନ ଓ ବୈଚିତ୍ର୍ୟମୟ ଜୀବନ ପ୍ରତ୍ୟକ୍ଷ କରିବା ଥିଲା ମୋର ଏକ ପ୍ରକାର ଆନନ୍ଦପ୍ରଦ କାର୍ଯ୍ୟ । ସେତେବେଳେ କଲିକତାରେ ଟ୍ରାମ୍‌ଗାଡ଼ି ଭଡ଼ା ଥିଲା ଖୁବ୍ ଶସ୍ତା । ତିନି ଚାରି ଟଙ୍କା ଖର୍ଚ୍ଚ କଲେ, ମହାନଗରୀର ପ୍ରାୟ ସମସ୍ତ ପ୍ରଧାନ ପ୍ରଧାନ ଅଞ୍ଚଳକୁ ଯାତାୟାତ କରି ହେଉଥିଲା । ଏସ୍‌ପ୍ଲାନେଡ୍ ଓ ତତ୍‌ସଂଲଗ୍ନ ଖୋଲା ପଡ଼ିଆରେ ତଥା ହାଓଡ଼ାର ଝୁଲନ୍ତା ପୋଲ ଉପରେ ମୋର ବେଶି ସମୟ ଅତିବାହିତ ହେଉଥିଲା । ବିଶେଷତଃ ହାଓଡ଼ା ପୋଲ ଉପରେ ଘଣ୍ଟା ଘଣ୍ଟା କାଳ ଠିଆ ହୋଇ ମଥା ଉପରେ କଲିକତାର ଧୂଆଁଳିଆ ସାନ୍ଧ୍ୟ ଆକାଶକୁ ଏବଂ ପାଦତଳେ ନଦୀ ବକ୍ଷରେ ଯାତାୟାତ କରୁଥିବା ଷ୍ଟିମର୍‌କୁ ଦେଖିବା ପାଇଁ ମୋତେ ବେଶ୍ ଭଲ ଲାଗୁଥିଲା । ମନେ ହେଉଥିଲା – ଯେପରି ଶୋଷିତ ପୀଡ଼ିତ ଲୋକଙ୍କ ହତାଶା ଓ ପ୍ରଣୟୀ ଜନଙ୍କ ଦୀର୍ଘଶ୍ୱାସ ବାଷ୍ପ ହୋଇ ଆକାଶକୁ ଆଚ୍ଛନ୍ନ କରି ରଖୁଥିଲା, ଏବଂ ଜନ ଜୀବନର ସକଳ

କ୍ଲେଦ ଓ କାଳିମା ଗଙ୍ଗା ନଦୀର ପବିତ୍ର ଜଳରେ ଧୌତ ହୋଇ ଯାଉଥିଲା । ଧୂଆଁଳିଆ ଆକାଶକୁ ମୋ କଳ୍ପନାର ଦଉଡ଼ ବିଶେଷ ଭାବେ ଛୁଇଁ ପାରୁ ନ ଥିଲା । କିନ୍ତୁ ଗଙ୍ଗା ନଦୀ ବକ୍ଷରେ ପ୍ରଣୟିନୀ ସହିତ ବୋଇତରେ ବସି କେଉଁ ଦୂର ଦୂରାନ୍ତକୁ ଭାସି ଯିବାର ସ୍ୱପ୍ନରେ ମୁଁ ପ୍ରାୟ ବିଭୋର ହୋଇ ଉଠୁଥିଲି ।

ହାଓ୍ୱଡ଼ା ରେଲଷ୍ଟେସନ୍‌ରେ ତଳ ଶ୍ରେଣୀର ବିସ୍ତୃତ ମୁଷାଫିର୍‌ଖାନାରେ ଥରେ ସତକୁ ସତ ଅପ୍ରତ୍ୟାଶିତ ଜଣେ ପ୍ରଣୟିନୀଙ୍କ (?) ସହ ଦେଖା ହୋଇଗଲା । ସେତେବେଳେ ସମୁଦାୟ ମୁଷାଫିରଖାନାଟି ପୂର୍ବବଙ୍ଗର ଉଦ୍‌ବାସ୍ତୁମାନଙ୍କ ଦ୍ୱାରା ଭରପୂର । ବହୁ ପରିବାର ଅସ୍ଥାୟୀ ବସତି କରି ସେଠାରେ ରହିଥାଆନ୍ତି । ସେଇଠି ରନ୍ଧାବଢ଼ା, ଖିଆପିଆ, ଶୟନ, ରତିକ୍ରୀଡ଼ା, ସୂତିକା, ମୃତିକା ଆଦି ସବୁ ଚାଲିଥାଏ । ହାଓ୍ୱଡ଼ା ଷ୍ଟେସନ୍‌ରେ ସେବେଳର ଏ ବିଚିତ୍ର ଦୃଶ୍ୟ ସ୍ୱଚକ୍ଷୁରେ ଦେଖି ନଥିଲେ, କେହି ହୁଏତ ବିଶ୍ୱାସ କରିବେ ନାହିଁ । ସେଦିନ ରେଳବାଇ ରେଷ୍ଟୁରାଣ୍ଟ୍ ପାଖରେ ଥିବା ହୁଇଲର୍ ବୁକ୍‌ଷ୍ଟଲରେ ମୁଁ ପତ୍ରପତ୍ରିକା ଉପରେ ଆଖି ପକାଉଛି, ଜଣେ ଯୁବତୀ ଅଦୂରରେ ଠିଆ ହୋଇ ଆଖିରେ ମୋତେ ଇସାରା ଦେଲେ । ମୁଁ ପାଖକୁ ଯିବାରୁ ହସି ହସି ମୋ ସହିତ ଆଳାପ କଲେ । ତାଙ୍କର ରୂପ ଓ ବେଶଭୂଷାରେ ମୁଁ ଆକୃଷ୍ଟ ହୋଇପଡ଼ିଲି । ଷ୍ଟେସନ୍‌ର ଏକ ନିରୋଳା ସ୍ଥାନକୁ ଯିବା ପାଇଁ ସେ ମୋତେ ଡାକିଲେ । ମନ୍ତ୍ରମୁଗ୍‌ଧ ହେଲା ପରି ମୁଁ ତାଙ୍କର ଅନୁସରଣ କଲି । ପ୍ରାୟ ଏକ ଫର୍ଲଙ୍ଗ ବାଟ ଗଲା ପରେ ରେଳଲାଇନ୍ ଉପରେ ଥିବା ଏକ ପରିତ୍ୟକ୍ତ ମାଲଗାଡ଼ିର ଓ୍ୱାଗନ୍ ପାଖରେ ଆମେ ପହଞ୍ଚିଲୁଁ । ଆଲୁଅ ଅନ୍ଧାରର ଲୁଚକାଳି ଖେଳୁଥିବା ସେହି ରୋମାଞ୍ଚକର ସ୍ଥାନଟି ନିକାଞ୍ଚନ ଥିଲା । ଅଦୂରରେ ରେଳବାଇ ପୋଲିସ୍ ଗାର୍ଡ଼ମାନେ ଡିଉଟିରେ ଥିଲେ । ପରିତ୍ୟକ୍ତ ଓ୍ୱାଗନ୍ ଭିତରକୁ ଯିବା ପାଇଁ ଯୁବତୀ ଜଣକ ମୋତେ କହିଲାରୁ ହଠାତ୍ ଏକ ଅଜଣା ଭୟରେ ମୁଁ ଆତଙ୍କିତ ହୋଇ ଉଠିଲି ଏବଂ ବୁଦ୍ଧି କରି ଯୁବତୀ ହାତରେ ଖଣ୍ଡିଏ ଦଶଟଙ୍କିଆ ନୋଟ୍ ଗୁଞ୍ଜି ଦେଇ ମୁଁ ଏକା ନିଶ୍ୱାସକେ ଦଉଡ଼ି ପଳାଇ ଆସିଲି । ଝାଳ ଗମ୍ ଗମ୍ ଦେହରେ ମୁଷାଫିର୍‌ଖାନାରେ ପହଞ୍ଚି ଆଗେ ଥୋଡ଼ାଏ ପାଣି ପିଇଗଲି । କାହିଁକି ସେଦିନ ଏପରି ଆକସ୍ମିକ ମିଜାଜୀ, ବେମତଲବୀ କାର୍ଯ୍ୟଟିଏ କରି ବସିଲି, ବୁଝିପାରିଲି ନାହିଁ ।

ଏ ଘଟଣାଟି ଅବଶ୍ୟ ଅଚାନକ ଓ ମୋର ସଂପୂର୍ଣ୍ଣ ଅପ୍ରସ୍ତୁତ ଅବସ୍ଥାର କାରଣ ଯୋଗୁ ଘଟିଗଲା । ଆଉ ଦିନେ କିନ୍ତୁ ରୀତିମତ ଗୁରୁସଂଗ କରି, ଆଗରୁ ପ୍ରସ୍ତୁତ ହୋଇ କରିଥିବା ସେହିପରି ଏକ ନିନ୍ଦନୀୟ କାର୍ଯ୍ୟ ଏବେ ବି ମୋ ସ୍ମୃତିରେ ଜୀବନ୍ତ ହୋଇ ରହିଛି । ବୌବଜାରସ୍ଥ ପ୍ରେମଚାନ୍ଦ ବରାଳ ଷ୍ଟ୍ରିଟ୍‌ରେ ‘ଆସନ୍ତା କାଲି’ ଅଫିସ୍ ଦେଇ ହାଡ଼କଟା ଲେନ୍ ବାଟେ ମୁଁ ପ୍ରାୟ ଶଶୀଭୂଷଣ ଦେ ଷ୍ଟ୍ରିଟ୍‌ର ଓଡ଼ିଆ ଦୋକାନ ବଜାର

ଆଡ଼େ ଯାତାୟାତ କରିଥାଏଁ । ସେହି ରାସ୍ତାରେ ଦେହ-ପସରା ମେଲି ଠିଆ ହେଉଥିବା ରୂପଜୀବିନୀମାନଙ୍କ ଆକର୍ଷଣ ଦୁର୍ନିବାର ହୋଇ ଉଠିଥିଲା । କେବଳ ଯୌନ ପିପାସା ନୁହେଁ, ଗଣିକା ଓ ଗଣିକାଳୟ ବିଷୟରେ ଅନୁଭୂତି ଆହରଣ ପାଇଁ କୌତୂହଳ ମଧ୍ୟ ମୋତେ ଏ କାର୍ଯ୍ୟରେ ଆଗେଇ ଯିବା ପାଇଁ ପଛରୁ ଠେଲୁଥିଲା । କିନ୍ତୁ ଭରସି ପାରୁ ନଥିଲି । ଥରେ ଜଣେ ସମବୟସୀ ସାଙ୍ଗ ଯୁଟିଗଲେ । ଶାନ୍ତିନିକେତନରେ କର୍ମଚାରୀ ଥିବା ସେହି ବନ୍ଧୁ ଜଣକ ଥିଲେ ବିବାହିତ । ହୁଏତ ସେଇଥିପାଇଁ ଏହିପରି ନିଷିଦ୍ଧ ଅଭିଯାନରେ ସେ ଥିଲେ ମୋ ଅପେକ୍ଷା ଅଧିକ ଆଗୁଆ ଆଉ ନିର୍ଭୀକ । ଦିନେ ସଂଧ୍ୟାବେଳେ ଦୁହେଁ ମିଶି ହାଡ଼କଟା ଲେନ୍‌ର ଗୋଟିଏ ଘର ଆଗରେ ଯାଇ ହାଜର ହୋଇଗଲୁ । ଦୁଆର ମୁହଁରେ ଗରାଖ ଆଶାରେ ଠିଆ ହୋଇଥିବା ତିନିଚାରିଜଣ ବିଳାସିନୀଙ୍କ ମଧ୍ୟରୁ କାହାକୁ ବାଛିବୁଁ ବୋଲି ନିଜ ନିଜ ଭିତରେ କଥାବାର୍ତ୍ତା କରୁଛୁଁ, ହଠାତ୍ ପଛଆଡୁ କାହାର ଶକ୍ତ ହାତ ବାଘର ଥାବା ପରି ଆମ ଦୁହିଁଙ୍କର ବେକକଷଣ୍ଡାକୁ ଜାବୁଡ଼ି ଧରିଲା । ଚାହିଁଦେଲାବେଳକୁ ପହରାଦାର ପୋଲିସ୍ । ସେତେବେଳେ ମୋ ବନ୍ଧୁ ଜଣଙ୍କର ଅବସ୍ଥା କହିପାରିବି ନାହିଁ । ମାତ୍ର ମୋର ହାଲ୍ ବଡ଼ ଦୟନୀୟ ହୋଇ ପଡ଼ିଥିଲା । ଭୟରେ ମୋର ତଣ୍ଟି ଶୁଖିଗଲା – ଦେହ ଥରିବାକୁ ଲାଗିଲା । ପୋଲିସ୍ ଜଣକ ଆମର ଦୁରବସ୍ଥା ବୋଧହୁଏ ବୁଝିପାରିଲା; ଆମର ବେକକଷଣ୍ଡାକୁ ସେହିପରି ଧରି ଠେଲି ଠେଲି କିଛି ଦୂର ତଡ଼ି ନେଇଗଲା ଏବଂ 'ଯା, ଭାଗୋ' ବୋଲି ଆମକୁ ଗୋଟିଏ ଗୋଟିଏ ଧକ୍କା ଦେଇ ବିଦା କରିଦେଲା । ଆମେ କାନମୁଣ୍ଡ ଆଉଁସି ଫେରିଆସିଲୁଁ ।

ଏ ଘଟଣାରେ ଦୁଃଖ, ଲଜ୍ଜା ଓ ଅନୁତାପରେ ମୁଁ ଅନେକ ଦିନ ଯାଏ ଏକ ପ୍ରକାର ମ୍ରିୟମାଣ ହୋଇ ରହିଲି । କ'ଣ ଆଉ କରାଯିବ, ଖାଲି ଅନୁଶୋଚନା ସାର ହେଲା । ଗଙ୍ଗା ଗଲି ଯେତିକି, ଫଳ ପାଇଲି ସେତିକି ।

ଏହି ଉଭୟ ଘଟଣା ବହୁ ଦିନ ପର୍ଯ୍ୟନ୍ତ – ଏପରି କି ୧୯୫୫ ମସିହାରେ ମୋର ମଙ୍ଗଳକୃତ୍ୟର ପରବର୍ତ୍ତୀ ସ୍ୱପ୍ନିଳ ଦିନଗୁଡ଼ିକ ପର୍ଯ୍ୟନ୍ତ ମନେ ପଡ଼ିଲା କ୍ଷଣି ମୋତେ ବିଚଳିତ କରୁଥିଲା । ପ୍ରାଚୀନ ଗ୍ରୀକ୍ ଟ୍ରାଜେଡ଼ି ପରି ମୋର ଆତ୍ମାକୁ ଆଲୋଡ଼ିତ କରୁଥିଲା । ସେତିକି ବେଳେ ରଚିତ ମୋର କେତେକ କବିତା ଓ ଗଳ୍ପ ବୋଧହୁଏ ସେହି ଆଲୋଡ଼ନର ଫଳଶ୍ରୁତି । ବିଶେଷ କରି 'ସୃଷ୍ଟିର ସ୍ୱପ୍ନ' (୧୯୫୮) ଗଳ୍ପଗ୍ରନ୍ଥର 'ସାବିତ୍ରୀ' ଓ 'ଫକ୍‌କଡ଼', 'ଗୋପନ ପତ୍ର' (୧୯୬୭) ଗଳ୍ପଗ୍ରନ୍ଥର 'ମଇଳାକୁଣ୍ଡ' ଓ 'ଗୋଟିଏ ଗଳ୍ପର ନାୟିକା' ଗଳ୍ପ ସମୂହରେ ତଥା '୫୪ ଭାନୁବାଇ ଲେନ୍' (୧୯୫୪) ଓ 'ଏଇ ଝିଅଟିକି ଜାଣ କି ? (୧୯୫୬) କବିତା ଯୋଡ଼ିକରେ ମୋର ସେହି ଆଲୋଡ଼ିତ ଆତ୍ମାର ଉଚ୍ଚାରଣ ଶୁଣିହେବ । 'ଭାନୁବାଇ ଲେନ୍' କେବଳ ହାଡ଼କଟା ଲେନ୍ ନୁହେଁ, ପୃଥିବୀର ଯେ କୌଣସି

'ରେଡ୍ ଲାଇଟ୍ ଡିଷ୍ଟ୍ରିକ୍ଟ'ର ପ୍ରତିଭୂ ରୂପେ ଗୃହୀତ ହୋଇପାରେ । 'ମଇଳାଯାକ ଏଣେ ତେଣେ ଚାରିଆଡ଼େ ନ ପକାଇ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ଜମା କଲେ, ସମାଜର ସ୍ୱାସ୍ଥ୍ୟ ଠିକ୍ ରହିବ' ଯୁକ୍ତି ଅନୁଯାୟୀ ଭାନୁବାଇ ଲେନ୍ ସେହି ନିର୍ଦ୍ଦିଷ୍ଟ ମଇଳା କୁଣ୍ଡ ହୋଇପାରେ, ତଥାପି 'ମଇଳା କୁଣ୍ଡରେ ଆପଣ ସବୁଯାକ ମଇଳା ଜମା କରନ୍ତୁ, ମୋର ଆପତ୍ତି ନାହିଁ । କିନ୍ତୁ ମଣିଷ ଜୀବନ ଘେନି ମଇଳା କୁଣ୍ଡ ତିଆରି କରିବାକୁ ଆପଣଙ୍କର କି ଅଧିକାର ଅଛି ?' (ଉଭୟ ଉଦ୍ଧୃତି 'ମଇଳା କୁଣ୍ଡ' ଗଳ୍ପରୁ ପ୍ରଦତ୍ତ) ସେଥିପାଇଁ ଭାନୁବାଇ ଲେନ୍‌ରେ 'ମହିଳା ଆତ୍ମରକ୍ଷା ସଂଘ' ସ୍ଥାପିତ ହୁଏ; ସେଠାରେ ସଂଘ ସଂପାଦିକା ରାନୁବାଇଙ୍କ କଥା ଶୁଣାଯାଏ –

'ଶହ ଶହ ଭଉଣୀ ଆମର
ବିପନ୍ନ, ବିପଥଗାମୀ
କିନ୍ତୁ କାହିଁ ପ୍ରତିକାର !
କିଏ ଆମର ମଙ୍ଗଳକାମୀ !
ଏହି ବିଂଶ ଶତାବ୍ଦୀରେ
ପୃଥିବୀର ଅନେକ ଦେଶରେ
ସମାଜ କ୍ଷୟିଷ୍ଣୁ, ଉପଦଂଶ-ରୋଗୀ
ସେଠି ଆଜି 'ରେଡ୍ ଲାଇଟ୍ ଡିଷ୍ଟ୍ରିକ୍ଟ'
ଗଢ଼ା ହୋଇଛି ଆମରି ଲାଗି ।
ନାରୀ ସମାଜର ଦାସତ୍ୱ-ମୋଚନ
ଏବେ ମଧ୍ୟ ହୋଇଛି ସପନ ।
ଭଉଣୀମାନେ,
ଆମର ଆତ୍ମରକ୍ଷା
ଆମ ନିରାପତ୍ତାର ପ୍ରତିଶ୍ରୁତି
ଏ ସମାଜ, ନା, ସରକାର
କିଏ ଦେବ ଯାଚି ?
ନିଜେ ଆମକୁ ଜାଗିବାକୁ ହେବ ।
ନାରୀ ଜାତିର ଆତ୍ମରକ୍ଷା
ନାରୀ ଆଜି ନିଜେହିଁ କରିବ ।
ବିଦ୍ରୋହ କରିବାକୁ ହେବ
ଏ ନୀତିହୀନ ସଂସ୍ଥା ବିରୁଦ୍ଧରେ ।

ନାରୀର ମୌଳିକ ଅଧିକାର
ହାସଲ କରିବାକୁ ହେବ
ବଳାତ୍କାରେ ।'

ସେହିପରି, ହାଓଡ଼ା ଷ୍ଟେସନ୍‌ରେ ବଞ୍ଚିବା ପାଇଁ ସଂଗ୍ରାମ କରୁଥିବା ସେଦିନର ଉଦ୍‌ବାସ୍ତୁ ଯୁବତୀ କ'ଣ କଟକ ବା ପୁରୀ ଷ୍ଟେସନରେ ମିଳିବେ ନାହିଁ ? ବାହାରକୁ ସେମାନଙ୍କର ରୂପ-ଭେକ ଦେଖି ଆମେ ସ୍ୱାର୍ଥର ଭିଖ ଦେଇଥାଉ ସିନା, କିନ୍ତୁ ସେମାନଙ୍କର ଅସଲ ପରିଚୟ ଆମେ ପାଇଛୁଁ କି ? ସେଇଥି ପାଇଁ ଏ ଜିଜ୍ଞାସାବାଦ ।

'ଏଇ ଝିଅଟିକି ଜାଣ କି ବନ୍ଧୁ, ଜାଣ କି ?
ରୂପ ଚହଟାଇ ବାସ ମହକାଇ
ଯାଉଁ ଯାଉଁ ପଛେ ଚାହୁଁଥାଏ ଫେରି ଫେରିକି
ବନ୍ଧୁ, ଜାଣ କି ?

X X X

ଆଜି ଦେଖ ତାକୁ ରାଜରାସ୍ତାରେ ବେପଥୁ ଘଟାଇ ଘୂରିବାର
କାଲି ଦେଖିଥିବ ରାଜଭବନରେ ଭେରାଇଟି-ସୋ କରିବାର
ଆଜି ସେ ଅନାଥା-ଆଶ୍ରମ ଲାଗି ଚାନ୍ଦା ମାଗୁଛି ଘରେ ଘରେ
କାଲି କେଉଁ ଧନୀ ଯୁବକ ସାଥିରେ ବସିଚି ହିନ୍ଦ୍ ସିନେମାରେ ।
କଲେଜ ଟୋକାଏ ଚାଆ ଟେବୁଲରେ
ତା'ରି କଥା ଘେନି ବକାବକି
ବଜାରି ଦଳଟା ସୁସୁରି ମାରଇ ଛକି ଛକି ।
ଦେଖିଚ ? ବନ୍ଧୁ ଦେଖିଚ କି ?
ସହରର କେତେ ଜାଗା ବେଜାଗାରେ
ବହୁରୂପୀ ଏଇ ଝିଅଟିକି ?

ହେଇ ଦେଖ ସିଏ ସହରତଳିର ନୂଆ ରିଫିଉଜି କଲୋନୀରେ
ଆପଣାର ଛୋଟ କୁଡ଼ିଆରେ
ତିନି ବରଷର କୁନା ପୁଅ ମୁଖେ ଅଧାର ଦିଅଇ ଆଦରରେ ।
'ମାଆ' ଡାକ ଶୁଣି ପରାଣ ତାହାର
ଉଛୁଳେ ପୁଲକ ଜୁଆରରେ
ଲବଣୀ ପିତୁଳା ଶିର ପରେ ଢାଳେ ଶତ ଚୁମ୍ବନ ସୋହାଗରେ ।

ରୁଗ୍‌ଣ ସ୍ୱାମୀ ତା' କତରା ଧରିଚି, ଭୋଗୁଚି ହେଲାଣି ବହୁଦିନ
'ଆଜି କେତେ ହେଲା ?' – ପଚାରଇ ହୋଇ ଖୁସି ମନ ।
ପାଂଚଟି ନୋଟ୍ ଝିଅଟି ହାତରେ ଉପରକୁ ଟେକି ଦେଖାଇଲା
ସ୍ୱାମୀ ପାଦ ଧୀରେ ଆଉଁସୁ ଆଉଁସୁ
ନୟନ ଲୋତକେ ଭିଜାଇଲା ।
ଦେଖୁଚ ? ବନ୍ଧୁ, ଦେଖୁଚ କି ?
ଏଇ ମହୀୟସୀ ସତୀ ପତ୍ନୀକି, ଏଇ ସ୍ନେହମୟୀ ଜନନୀ କି ?'

## ସାଧସାଧନାର ଶାଖା ଶାନ୍ତିନିକେତନ-୧

ଏ ଦେଶରେ ଶରଦ୍ ଋତୁ ଦି'ଦିନର କୁଣିଆ ଭଳି ଆସେ – ଆସେ କଇଁ ଓ କାଶତଣ୍ଡୀ ଫୁଲର ସମ୍ଭାର ଘେନି । ଆମ ସହିତ ପ୍ରଣୟ ହେବା ପୂର୍ବରୁ ସେ କୁଆଡ଼େ କିପରି ପଳାଇ ଯାଏ, ଜାଣି ହୁଏ ନାହିଁ । ସେହିପରି ହେମନ୍ତ ଋତୁର ଅବସ୍ଥା । ଗାଁ ଗହଳରେ ଟିକିଏ ରକ୍ଷା-ରକ୍ଷଣ ଅଛି, କିନ୍ତୁ କଲିକତା ଭଳି ସହରରେ ଏହି ଦୁଇଟି ଋତୁର ପ୍ରବେଶ ଓ ପ୍ରସ୍ଥାନ ପ୍ରାୟ ବାରି ହୁଏ ନାହିଁ । ଦୁର୍ଗାପୂଜାର ମଉଜ-ମଉଛବ ମଳିନ ପଡ଼ିଯାଇଥାଏ, ପରେ ପରେ କାଳୀ ପୂଜା ପାଇଁ ଚାଲିଥାଏ ସଜବାଜ । ଏହିପରି ଉତ୍ସବମୁଖର ପରିବେଶରେ କିଛି ଦିନ କଲିକତାରେ ରହଣି ପରେ ମୋର ଶାନ୍ତିନିକେତନ ଯାତ୍ରା । ଆଖିରେ ଆଖିଏ କୌତୂହଳ ଏବଂ ଅନ୍ତରରେ ଅମାପ ଆଗ୍ରହ ଘେନି ଯେତେବେଳେ ଶାନ୍ତିନିକେତନରେ ପହଞ୍ଚିଲି, ଏକ ନୂତନ ଅନୁଭୂତି-ଅଭିଜ୍ଞତାରେ ଆବିଷ୍ଟ ହୋଇ ପଡ଼ିଲି ।

ଚାରିଆଡ଼େ ଶାନ୍ତ ସୁନ୍ଦର ପରିବେଶ । ମୁକ୍ତ ବିସ୍ତୃତ ଆକାଶ ତଳେ ଗୋଟି ଗୋଟିକା ଶାଳ ଗଛ, ଆମ୍ରକୁଞ୍ଜ ଓ ବକୁଳ ବୀଥି, ଜାତି ଜାତିକା ଫୁଲର ସମ୍ଭାର । ବାୟୁ ପ୍ରବାହରେ ପ୍ରତିରୋଧକାରୀ ବଡ଼ ବଡ଼ କୋଠାବାଡ଼ିର ଝମେଲ ନାହିଁ । କଲିକତା ଭଳି ଜନ ଗହଳି ବି ନାହିଁ । ନାହିଁ ଶ୍ୱାସରୁଦ୍ଧ ହେଲା ପରି ମଣିଷ-ତିଆରି କୌଣସି ଅବ୍ୟବସ୍ଥା । ମୁକ୍ତ ଓ ଅବାଧରେ ନିଶ୍ୱାସ-ପ୍ରଶ୍ୱାସ ନେବା ପାଇଁ ସେହି ଉପଯୁକ୍ତ ପରିସ୍ଥିତିରେ ବିଦ୍ୟାର୍ଜନ ତଥା ଜ୍ଞାନ-ବିଜ୍ଞାନର ଚର୍ଚ୍ଚା ପାଇଁ ଅତ୍ୟନ୍ତ ଅନୁକୂଳ ଆଶ୍ରମ ଶାନ୍ତିନିକେତନ । ଯଥାର୍ଥରେ ଏହା ଥିଲା ଏକ ଆଶ୍ରମ । ୧୯୦୧ ମସିହାରେ କବି ରବୀନ୍ଦ୍ରନାଥ ଏହାକୁ ଆରମ୍ଭ କଲାବେଳେ ନାମ ଦେଇଥିଲେ – 'ବ୍ରହ୍ମଚର୍ଯ୍ୟାଶ୍ରମ' । 'ଆଶ୍ରମ ସ୍କୁଲ' ନାମରେ ମଧ୍ୟ ଏହା ପରିଚିତ ଥିଲା । ଊନବିଂଶ ଶତାବ୍ଦୀ ଶେଷ ପାଦରେ ରବୀନ୍ଦ୍ରନାଥଙ୍କ ଋଷିପ୍ରତିମ ପିତା ଦେବେନ୍ଦ୍ରନାଥ ଠାକୁର ବୀରଭୂମ ଜିଲ୍ଲାସ୍ଥ ବୋଲପୁର ସହର ଉତ୍ତର ଦିଗରେ

ପ୍ରାୟ କୋଡ଼ିଏ ବିଘା ଜମି କିଣି ସେହି ଜନ-ଅନାକୀର୍ଣ୍ଣ ମନୋରମ ସ୍ଥାନରେ ଈଶ୍ୱର-ଆରାଧନା ଓ ଧର୍ମ-ଆଲୋଚନା ସକାଶେ କ୍ଷେତ୍ର ପ୍ରସ୍ତୁତ କରିଥିଲେ । ୧୮୬୪ ମସିହାରେ ସେ ସେଠାରେ ଖଣ୍ଡେ ଏକତାଲା କୋଠାଘର ନିର୍ମାଣ କରି ତାହାରି ନାମ ରଖିଥିଲେ – 'ଶାନ୍ତିନିକେତନ' । ରବୀନ୍ଦ୍ରନାଥ ଶୈଶବ ଓ କୈଶୋର ଅବସ୍ଥାରେ ସେହି ଶାନ୍ତିନିକେତନ ଗୃହରେ ଆସି ଏକାଧିକ ଥର ରହିଥିଲେ । ପରେ ସେ ଯେତେବେଳେ ନିଜର ପରିକଳ୍ପନା ଅନୁଯାୟୀ ନୂଆ ଧରଣର ବିଦ୍ୟାଳୟଟିଏ ସ୍ଥାପନ କରିବାକୁ ମନସ୍ଥ କଲେ, ଶାନ୍ତିନିକେତନ ଗୃହ ସଂଲଗ୍ନ ବିସ୍ତୃତ ପ୍ରାନ୍ତରକୁ ହିଁ ସେଥିପାଇଁ ବାଛି ବାପାଙ୍କଠାରୁ ଅନୁମତି ଆଣିଲେ । ବାପା ଦେବେନ୍ଦ୍ରନାଥ ସେତେବେଳକୁ ସେ ସ୍ଥାନଟିର ଭୂ-ପ୍ରକୃତିରେ କିଛି ପରିବର୍ତ୍ତନ ଆଣିଥିଲେ । ଜଣେ ଓଡ଼ିଆ ମାଳୀ-ପରିଚାରକ ସାହାଯ୍ୟରେ ସେହି ଟାଙ୍ଗର ଭୂଇଁକୁ ସେ ସବୁଜ ଗଛଲତା ଓ ବିଭିନ୍ନ ରଙ୍ଗର ପୁଷ୍ପରେ ଚିତ୍ତାକର୍ଷକ କରି ତୋଳିଥିଲେ । ପ୍ରଥମ ଓଡ଼ିଆ ବିଲାତ ଯାତ୍ରୀ ସେହି ମାଳୀ-ପରିଚାରକ ରାମହରି ଦାସଙ୍କ ପ୍ରସଙ୍ଗ ପୂର୍ବରୁ ଉଲ୍ଲେଖ କରାଯାଇଛି ।

୧୮୮୮ ମସିହାରେ ଦେବେନ୍ଦ୍ରନାଥ ଠାକୁର ଏକ ନ୍ୟାସ ଦଲିଲ୍ (Trust Deed) କରି ଶାନ୍ତିନିକେତନକୁ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଦେଲେ । ପରେ ୧୮୯୧ ମସିହାରେ ସେଠାରେ ନିର୍ମିତ ହେଲା ଏକ 'ଉପାସନା ମନ୍ଦିର' – 'କାଚ ବଙ୍ଗଳା' ନାମରେ ଯାହା ଜନସାଧାରଣଙ୍କଠରେ ପରିଚିତ ଥିଲା । କାରଣ ମନ୍ଦିରଟି ନାନା ରଙ୍ଗର କାଚ ଦ୍ୱାରା ନିର୍ମିତ ହୋଇଥିଲା । ବର୍ତ୍ତମାନ ସୁଦ୍ଧା ତାହା ଆଶ୍ରମ ପରିସରରେ ବିଦ୍ୟମାନ ରହିଛି । ମଣିଷର ମନ ମନ୍ଦିରରେ ସବୁ ଦିଗରୁ ସତ୍ୟର ଆଲୋକ ଯେପରି ବାଧାହୀନ ଭାବରେ ପ୍ରବେଶ କରି ପାରିବ, ସେଇଥି ପାଇଁ ବୋଧହୁଏ ତାହା କାଚ କାନ୍ଥ-ବିଶିଷ୍ଟ ହୋଇଥିଲା । ବିଗ୍ରହହୀନ ଏହି ଉପାସନା-ମନ୍ଦିର ଜାତିଧର୍ମ-ନିର୍ବିଶେଷରେ ସବୁ ଶ୍ରେଣୀର ଲୋକଙ୍କ ପାଇଁ ଉନ୍ମୁକ୍ତ ଥିଲା । ପ୍ରତି ବୁଧବାର ତଥା କେତେକ ବିଶେଷ ବିଶେଷ ଅନୁଷ୍ଠାନ ଉପଲକ୍ଷ୍ୟେ ଏଠାରେ ପ୍ରାର୍ଥନା ସଭା ଆୟୋଜିତ ହୋଇଥାଏ । ଜଣେ କେହି ଯୋଗ୍ୟ ବ୍ୟକ୍ତି ପ୍ରାର୍ଥନା-ସଭାର ଆଚାର୍ଯ୍ୟ ରୂପେ ବରିତ ହୁଅନ୍ତି, ଉପନିଷଦର ମନ୍ତ୍ରୋଚ୍ଚାରଣ ଓ ରବୀନ୍ଦ୍ର ସଂଗୀତ ଗାନ ତଥା ଶେଷରେ ଆଚାର୍ଯ୍ୟଙ୍କ ଉଦ୍‌ବୋଧନ ମଧ୍ୟରେ ସଭା ସମାହିତ ହୁଏ । ଅନେକ ଥର ମୁଁ ସେହି ବିଚିତ୍ର ମନ୍ଦିରରେ ପ୍ରାର୍ଥନା-ସଭାରେ ଯୋଗ ଦେଇଛି । କିପରି ଏକ ଅପୂର୍ବ ଶାନ୍ତ ସାତ୍ତ୍ୱିକ ଭାବରେ ହୃଦୟମନ ପରିପୂର୍ଣ୍ଣ ହୋଇଯାଉଥିବାର ଅନୁଭବ କରିଛି ।

କବି ରବୀନ୍ଦ୍ରନାଥ ମାତ୍ର ପାଞ୍ଚଜଣ ପିଲାଙ୍କୁ ଘେନି ଶାନ୍ତିନିକେତନଠାରେ ଯେଉଁ ଆଶ୍ରମ ସ୍କୁଲ ବା ବ୍ରହ୍ମଚର୍ଯ୍ୟାଶ୍ରମ ଆରମ୍ଭ କରିଥିଲେ, ପରେ ତାହା 'ପାଠ ଭବନ'

ନାମରେ ନାମିତ ହୋଇଥିଲା । ମହର୍ଷି ଦେବେନ୍ଦ୍ରନାଥ କରି ଯାଇଥିବା ଟ୍ରଷ୍ଟରୁ ଏହା ବାର୍ଷିକ ଅର୍ଥ ସାହାଯ୍ୟ ପାଉଥିଲା । ଦେଶର ଅନ୍ୟାନ୍ୟ ସ୍କୁଲଠାରୁ ଏହା ଥିଲା ନାନା ଦିଗରୁ ନିଆରା । ଏହାର ପାଠ୍ୟକ୍ରମ ସାଧାରଣ ପ୍ରଥାବଦ୍ଧ ନ ଥିଲା । ନାଚ ଗୀତ, ଚିତ୍ରକଳାଦି ମାଧ୍ୟମରେ ଏହା ପିଲାମାନଙ୍କର ଆନନ୍ଦମୟ ସର୍ଜନାତ୍ମକ ଆତ୍ମପ୍ରକାଶ ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲା । ମୁକ୍ତାକାଶ ତଳେ ବୃକ୍ଷଲତାର ଛାୟାରେ ପାଠପଢ଼ା ହେଉଥିଲା । ଶିକ୍ଷକ ଓ ଶିକ୍ଷାର୍ଥୀମାନେ ଘନିଷ୍ଠ ଭାବରେ ପରସ୍ପର ସହିତ ମିଳାମିଶା କରୁଥିଲେ । ଏହି ଶିକ୍ଷକ-ଶିକ୍ଷାର୍ଥୀ ସଂପର୍କ ମୋର ଶାନ୍ତିନିକେତନରେ ଅଧ୍ୟୟନ କାଳ (୧୯୫୨-୫୫) ପର୍ଯ୍ୟନ୍ତ ଅନେକାଂଶରେ ବଜାୟ ରହିଥିଲା । ୧୯୧୩ ମସିହାରେ ରବୀନ୍ଦ୍ରନାଥ ନୋବେଲ୍ ପୁରସ୍କାର ଲାଭ କଲା ପରେ ପୃଥିବୀର ବିଭିନ୍ନ ଦେଶ ଭ୍ରମଣ କରିବାର ସୁଯୋଗ ପାଇଥିଲେ । ଏତିକିବେଳେ ତାଙ୍କ ମନରେ ଶାନ୍ତିନିକେତନରେ ଏକ ପ୍ରାଚ୍ୟ ସଂସ୍କୃତିର କେନ୍ଦ୍ର ସ୍ଥାପନର ପରିକଳ୍ପନା ଦାନା ବାନ୍ଧିଥିଲା । ତାହା ହିଁ ରୂପ ଲାଭ କଲା 'ବିଶ୍ୱଭାରତୀ' ନାମରେ । ରବୀନ୍ଦ୍ରନାଥ କେବଳ ପ୍ରାଥମିକ ଶିକ୍ଷା ଉପରେ ଗୁରୁତ୍ୱ ଦେଇ ନଥିଲେ; ଉଚ୍ଚ ଶିକ୍ଷା ଓ ଗବେଷଣା ଉପରେ ମଧ୍ୟ ଉପଯୁକ୍ତ ଧ୍ୟାନ ଦେଇଥିଲେ । ୧୯୧୮ ମସିହାରେ ସେ ବିଶ୍ୱଭାରତୀର ରୂପରେଖ ବ୍ୟକ୍ତ କରିଥିଲେ ହେଁ, ତିନି ବର୍ଷ ପରେ ତାହା ବିଧିବଦ୍ଧ ଭାବରେ ପ୍ରତିଷ୍ଠିତ ହୋଇଥିଲା । ଏକ ପଞ୍ଜୀକୃତ ସାଂସ୍କୃତିକ ସଂସ୍ଥା ଭାବରେ 'ବିଶ୍ୱଭାରତୀ ସୋସାଇଟି' ଗଠିତ ହେଲା ୧୯୨୧ ମସିହା ଡିସେମ୍ବର ମାସ ୨୩ ତାରିଖରେ । ଏହାର ଶିରୋବାଣୀ ହେଉଛି – 'ଯତ୍ର ବିଶ୍ୱଂ ଭବତ୍ୟେକ ନୀଡ଼ମ୍'; ଅର୍ଥାତ୍ ବିଶ୍ୱ ଯେଉଁଠି ଗୋଟିଏ ନୀଡ଼ରେ ବସା ବାନ୍ଧିଛି ।

ଶାନ୍ତିନିକେତନଠାରେ ଆଶ୍ରମ ସ୍କୁଲ ବା ବ୍ରହ୍ମଚର୍ଯ୍ୟାଶ୍ରମ ପ୍ରତିଷ୍ଠାର ପ୍ରାୟ ଆଠ ବର୍ଷ ପରେ ପଣ୍ଡିତ ଗୋପବନ୍ଧୁ ଦାସ ପୁରୀ ସତ୍ୟବାଦୀଠାରେ ସେହିଭଳି ଏକ ସ୍ୱତନ୍ତ୍ର ଧରଣର ସ୍କୁଲ 'ସତ୍ୟବାଦୀ ବନବିଦ୍ୟାଳୟ' (୧୯୦୯-୨୧) ପ୍ରତିଷ୍ଠା କରିଥିଲେ । ଜାତୀୟ ଶିକ୍ଷା-ସଂସ୍କୃତି କ୍ଷେତ୍ରରେ ଏକ କ୍ରାନ୍ତିକାରୀ ଆଭିମୁଖ୍ୟ ଘେନି ଏହି 'ମଣିଷ ଗଢ଼ା କାରଖାନା'ଟି ଆରମ୍ଭ କରାଯାଇଥିଲା । ଗୋପବନ୍ଧୁ ନିଜେ ଶାନ୍ତିନିକେତନ ଯାଇ ସେଠାକାର ଶିକ୍ଷା ବ୍ୟବସ୍ଥା, ଆନୁଷ୍ଠାନିକ ରୀତିନୀତି ପ୍ରତ୍ୟକ୍ଷ କରିଥିଲେ ଏବଂ 'ସତ୍ୟବାଦୀ' ପତ୍ରିକାରେ ଏ ବିଷୟରେ ଏକ ଦୀର୍ଘ ପ୍ରବନ୍ଧ ଲେଖି ପ୍ରକାଶ କରାଇଥିଲେ । ମାତ୍ର ବାରଟି ବର୍ଷ ମଧ୍ୟରେ ସତ୍ୟବାଦୀ ସ୍କୁଲ ନିଜର ଆଭିମୁଖ୍ୟ ଘେନି କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଥିଲେ ହେଁ, ମୁଖ୍ୟତଃ ଏହାର ଶିକ୍ଷକ କର୍ମକର୍ତ୍ତାଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଓ ମାନମନାନ୍ତର ହେତୁ ଅଚଳ ହୋଇ ପଡ଼ିଲା । ଆଶ୍ରମ ସ୍କୁଲ ସ୍ତରରୁ ଉଠି ଶାନ୍ତିନିକେତନ ଯେତେବେଳେ ଯୌବନାବସ୍ଥାରେ ବିଶ୍ୱଭାରତୀରେ ଉପନୀତ ହେଉଛି, ସେତିକିବେଳେ ସତ୍ୟବାଦୀ ବନବିଦ୍ୟାଳୟର ବାଳରିଷ୍ଟ ଘଟୁଥିବା ଅତ୍ୟନ୍ତ ଶୋଚନୀୟ ବ୍ୟାପାର । ଭଲ କାର୍ଯ୍ୟଟିଏ

ଆରମ୍ଭ କରି ଦେଇ ତାକୁ ଚଳାଇ ରଖିବା ଓ ତାହାର ଉତ୍ତରୋତ୍ତର ଉନ୍ନତି ସାଧନ କରିବା ବୋଧହୁଏ ଆମ ଜାତକରେ ନାହିଁ । ଗୋଟିଏ ଶିକ୍ଷାନୁଷ୍ଠାନ ତ ଭାରି ବଡ଼ କଥା ! କ୍ଲବ୍, ସାହିତ୍ୟ ସଂସ୍ଥା, ପତ୍ର-ପତ୍ରିକା ପ୍ରକାଶନ ଆଦି କ୍ଷୁଦ୍ର କ୍ଷୁଦ୍ର ପ୍ରତିଷ୍ଠାନ ଆମେ ବହୁ ଆଡ଼ମ୍ବରରେ ଆରମ୍ଭ କରିଦେଉଁ; ହାବେଳି ବାଣ ପରି ତାହା ପହିଲେ ଆଖି ଝଲସାଇ ଦେଇ କୁଆଡ଼େ ଲୁଚିଯାଏ, ହଜିଯାଏ ।

ବିଶ୍ୱଭାରତୀରେ କେବଳ ପ୍ରାଚ୍ୟ ସଂସ୍କୃତିର ଆଲୋଚନା-ଚର୍ଚ୍ଚା ଓ ଗବେଷଣା ଚାଲିଲା ନାହିଁ, ପାଶ୍ଚାତ୍ୟ ଜ୍ଞାନ-ବିଜ୍ଞାନର ବିଚାର-ବିମର୍ଶ ମଧ୍ୟ ପ୍ରଚଳିତ ହେଲା । ହିନ୍ଦୁ ଦର୍ଶନ, ମଧ୍ୟ ଯୁଗୀୟ ରହସ୍ୟବାଦ, ଇସ୍‌ଲାମୀ ସଂସ୍କୃତି, ଜରାଥୁଷ୍ଟ୍ରୀୟ ଦର୍ଶନ, ସଂସ୍କୃତ, ପାଲି, ପ୍ରାକୃତ, ଚୀନା ଓ ତିବ୍ବତୀୟ ସଂସ୍କୃତି, ଇଂରାଜୀ, ଜର୍ମାନ, ଲାଟିନ୍ ଆଦି ସାହିତ୍ୟ ଚର୍ଚ୍ଚାର ବିଷୟ ରୂପେ ସ୍ଥାନ ଲାଭ କଲା । ୧୯୨୧ରେ ଶାନ୍ତିନିକେତନରେ 'କଳା ଭବନ' ପ୍ରତିଷ୍ଠିତ ହେଲା । ପ୍ରଥମେ ଏହା ଚାରୁକଳା ଓ ନୃତ୍ୟ ସଂଗୀତର ମିଳିତ ପ୍ରତିଷ୍ଠାନ ଥିଲା, କିନ୍ତୁ ବିଷୟର ସ୍ୱତନ୍ତ୍ରତା ହେତୁ ୧୯୩୪ରେ ଏହାକୁ 'କଳା ଭବନ' ଓ 'ସଂଗୀତ ଭବନ' ନାମରେ ଦୁଇଟି ସ୍ୱତନ୍ତ୍ର ବିଭାଗରେ ପରିଣତ କରି ଦିଆଗଲା । ଗ୍ରାମ ବହୁଳ ଦେଶ ଭାରତବର୍ଷରେ ପଲ୍ଲୀ-ସଂଗଠନ ଓ ଶିକ୍ଷାର ଉପଯୋଗିତା ରବୀନ୍ଦ୍ରନାଥ ସେହି ସମୟରେ ଉପଲବ୍ଧି କରି ଶାନ୍ତିନିକେତନଠାରୁ ପ୍ରାୟ ତିନି କିଲୋମିଟର ଦୂରରେ ୧୯୨୨ ମସିହାରେ 'ଶ୍ରୀନିକେତନ' ପ୍ରତିଷ୍ଠା କଲେ ।

ଗ୍ରାମାଞ୍ଚଳରେ କୃଷିର ଉନ୍ନତି ସାଧନ, ସମବାୟ ପ୍ରଥାର ପ୍ରବର୍ତ୍ତନ, ମେଲେରିଆଦି ରୋଗର ନିରାକରଣ, କାରୁକଳା ପାଇଁ ପ୍ରୋତ୍ସାହନ, ଗ୍ରାମବାସୀଙ୍କ ମଧ୍ୟରେ ଶିକ୍ଷା ଦୀକ୍ଷାର ପ୍ରସାର ପ୍ରଭୃତି ଲକ୍ଷ୍ୟ ଘେନି ଶ୍ରୀନିକେତନରେ କାର୍ଯ୍ୟାରମ୍ଭ କରାଯାଇଥିଲା । ପରେ ପରେ ଶାନ୍ତିନିକେତନ ଆଶ୍ରମ ପରିସରରେ 'ଚୀନା ଭବନ' (୧୯୩୭) ଓ 'ହିନ୍ଦୀ ଭବନ' (୧୯୩୯) ପ୍ରତିଷ୍ଠିତ ହେଲା । ଶାନ୍ତିନିକେତନ ଓ ଶ୍ରୀନିକେତନ ମଝିରେ ଶିକ୍ଷକ-ଶିକ୍ଷଣ ପ୍ରତିଷ୍ଠାନ 'ବିନୟ ଭବନ' ସ୍ଥାପିତ ହେଲା ରବୀନ୍ଦ୍ରନାଥଙ୍କ ପରଲୋକ ପରେ ୧୯୪୮ ମସିହାରେ । ସେହିପରି ୧୯୪୨ରେ 'ରବୀନ୍ଦ୍ର ଭବନ' ପ୍ରତିଷ୍ଠା; ରବୀନ୍ଦ୍ରନାଥ ସଂପର୍କିତ ମହାଫେଜଖାନା ବା ଆର୍‌କାଇଭିସ୍ ତଥା ରବୀନ୍ଦ୍ର-ଚର୍ଚ୍ଚା ଓ ଗବେଷଣା ଏହାର ପରିସରଭୁକ୍ତ । ୧୯୫୧ ମଇ ମାସରେ ପାର୍ଲିଆମେଣ୍ଟର ଏକ ଆକ୍ଟ ବଳରେ ବିଶ୍ୱଭାରତୀକୁ ଏକ 'ବିଶିଷ୍ଟ ରାଷ୍ଟ୍ରୀୟ ପ୍ରତିଷ୍ଠାନ' (An Institution of national importance) ଭାବରେ ଘୋଷଣା କରାଯାଇ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟର ମାନ୍ୟତା ଦିଆଗଲା । ସେବେଠାରୁ ଇଉନିଭରସିଟି ଗ୍ରାଣ୍ଟସ୍ କମିଶନଙ୍କ ପୃଷ୍ଠପୋଷକତାରେ ଏହା ଏକ ଐକିକ ବିଶ୍ୱବିଦ୍ୟାଳୟ ରୂପେ କାର୍ଯ୍ୟ କରୁଛି ।

କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେବା ପୂର୍ବରୁ ବିଶ୍ୱଭାରତୀର ବିଭିନ୍ନ ବିଭାଗରେ ଶିକ୍ଷାଦାନ କରାଯାଉଥିଲା, କିନ୍ତୁ ତାହା ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ପରି ଗତାନୁଗତିକ ନ ଥିଲା । ବିଭିନ୍ନ ବିଭାଗର ପାଠ୍ୟକ୍ରମ ବା ସିଲାବସ୍ ଥିଲା ନିମିତ୍ତ ମାତ୍ର; ଶିକ୍ଷାର୍ଥୀ ଓ ଗବେଷକମାନଙ୍କୁ ଗୋଟିଏ ଗୋଟିଏ ବିଦ୍ୟା-ଶୃଙ୍ଖଳାରେ ଅଧ୍ୟୟନ ଓ ଗବେଷଣା କରିବା ପାଇଁ ଅମାପ ସ୍ୱାଧୀନତା ଦିଆଯାଉଥିଲା । ପରୀକ୍ଷା ଓ ଡିଗ୍ରୀ ପ୍ରଦାନ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଉ ନ ଥିଲା । ପାଠ୍ୟକ୍ରମ, ପରୀକ୍ଷାଦି ବ୍ୟାପାର ଶିକ୍ଷଣୀୟ ବିଷୟର ପରିସରକୁ ସଂକୁଚିତ କରିଦିଏ ଏବଂ ଶିକ୍ଷାର୍ଥୀର କ୍ଷମତା ବା ସାମର୍ଥ୍ୟକୁ ସୀମାବଦ୍ଧ କରି ପକାଏ ବୋଲି ରବୀନ୍ଦ୍ରନାଥଙ୍କର ଧାରଣା ଥିଲା । କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ହେଲା ପରେ ବିଶ୍ୱଭାରତୀ ଦେଶର ଅନ୍ୟାନ୍ୟ ତତ୍ତୁଲ୍ୟ ଶିକ୍ଷାୟତନ ଢାଞ୍ଚାରେ ସିଲାବସ୍ ନିର୍ଦ୍ଧାରଣ, ପରୀକ୍ଷା ପରିଚାଳନା, ଡିଗ୍ରୀ ପ୍ରଦାନ ଆଦି ଜଞ୍ଜାଳରେ ପଶିଯାଇଛି । ଫଳରେ ତାହା ଏବେ ପରିଣତ ହୋଇଛି ମୁଖ୍ୟତଃ ଏକ 'ପରୀକ୍ଷା ପରିଚାଳନା ପ୍ରତିଷ୍ଠାନ'ରେ । ରବୀନ୍ଦ୍ରନାଥଙ୍କ ପରିକଳ୍ପିତ ସ୍ୱାଭାବିକ ବିଦ୍ୟାର୍ଜନ ଓ ଜ୍ଞାନ ବିଜ୍ଞାନର ଚର୍ଚ୍ଚା, ନୂତନ ଜ୍ଞାନର ଅନ୍ୱେଷଣ, ଶିକ୍ଷକ ଓ ଶିକ୍ଷାର୍ଥୀଙ୍କର ଚେତନାଗତ ବିକାଶ ତଥା ବିଶ୍ୱର ବିଭିନ୍ନ ସଂସ୍କୃତି ମଧ୍ୟରେ ସଂହତି ସ୍ଥାପନ ଆଦି ଆଭିମୁଖ୍ୟ ବହୁ ପରିମାଣରେ କ୍ଷୁଣ୍ଣ ହୋଇଛି ।

ବ୍ରହ୍ମଚର୍ଯ୍ୟାଶ୍ରମ ତଥା ବିଶ୍ୱଭାରତୀ ଆରମ୍ଭରୁ ଦେଶ ବିଦେଶର ବହୁ ବିଖ୍ୟାତ ଜ୍ଞାନୀ ଗୁଣୀ ବ୍ୟକ୍ତି ରବୀନ୍ଦ୍ରନାଥଙ୍କ ଆହ୍ୱାନ କ୍ରମେ ଶାନ୍ତିନିକେତନର ଅଭ୍ୟୁଦୟ ଶିକ୍ଷା ପୀଠରେ ଆସି ଯୋଗ ଦେଇଥିଲେ । ଭାରତୀୟ ବିଦ୍ୱାନଙ୍କ ମଧ୍ୟରେ ଥିଲେ – ହରି ଚରଣ ବନ୍ଦ୍ୟୋପାଧ୍ୟାୟ, ଜଗଦାନନ୍ଦ ରାୟ, ପଣ୍ଡିତ ବିଧୁଶେଖର ଶାସ୍ତ୍ରୀ, ବ୍ରହ୍ମବାନ୍ଧବ ଉପାଧ୍ୟାୟ, କ୍ଷିତିମୋହନ ସେନ, ଅଜିତ କୁମାର ଚକ୍ରବର୍ତ୍ତୀ, ନିତ୍ୟାନନ୍ଦ ବିନୋଦ ଗୋସ୍ୱାମୀ ପ୍ରମୁଖ । କଳା ଭବନ ସହ ସଂପୃକ୍ତ ଥିଲେ – ଅବନୀନ୍ଦ୍ରନାଥ ଠାକୁର, ନନ୍ଦଲାଲ ବସୁ, ବିନୋଦ ବିହାରୀ ମୁଖାର୍ଜି, ରାମକିଙ୍କର ବେଜ୍ ପ୍ରମୁଖ ବିଖ୍ୟାତ ଚିତ୍ରଶିଳ୍ପୀ ଏବଂ ଦୀନେନ୍ଦ୍ରନାଥ ଠାକୁର, ଭୀମରାଓ ଶାସ୍ତ୍ରୀ, ଇନ୍ଦିରା ଦେବୀ ଚୌଧୁରାଣୀ, ଶାନ୍ତିଦେବ ଘୋଷଙ୍କ ଭଳି ସଂଗୀତ ଶିଳ୍ପୀଗଣ ସଂଯୁକ୍ତ ଥିଲେ ସଂଗୀତ ଭବନ ସହିତ । ସେହିପରି ବିଦେଶୀ ଜ୍ଞାନୀ-ଗୁଣୀଙ୍କ ମଧ୍ୟରେ ଥିଲେ – ସି. ଏଫ୍. ଏଂଡ୍ରୁଜ୍, ଉଇଲିୟମ୍ ପିୟରସନ୍, ସିଲ୍ଭାଁ ଲେଭି, ମରିଟଜ୍ ଉଇଣ୍ଟରନିଟସ୍, ଭିନସେଣ୍ଟ୍ ଲେସନି, ଷ୍ଟେନ୍ କୋନୋ, କାର୍ଲୋ ଫର୍ମିଚି, ଗ୍ୟୁସେପେ ଟ୍ୟୁସି ପ୍ରମୁଖ । ଲିଓନାର୍ଡ୍ ଏଲମ୍‌ହାର୍ଷ୍ଟ ୧୯୨୨ରେ ଶ୍ରୀନିକେତନର ପ୍ରଥମ ଡିରେକ୍ଟର ଭାବରେ କାର୍ଯ୍ୟ କରିଥିଲେ ।

୧୯୫୧ ମସିହା ପରବର୍ତ୍ତୀ ବିଶ୍ୱଭାରତୀ, କେତେକ ପରିମାଣରେ ବିଶ୍ୱଭାରତୀର ପରିବର୍ତ୍ତିତ ରୂପ ହେଲେ ହେଁ, ମୁଁ ଶାନ୍ତିନିକେତନରେ ପହଞ୍ଚିଲା ବେଳକୁ ରବୀନ୍ଦ୍ରନାଥଙ୍କ

ଆତ୍ମା ଓ ଆଦର୍ଶ ଚାରିଆଡ଼େ ଲକ୍ଷ୍ୟ କରି ପାରିଥିଲି । ବେଶ୍ ଶାନ୍ତ, ସୁନ୍ଦର ପ୍ରାକୃତିକ ପରିବେଶରେ ପ୍ରାଥମିକ ଶିକ୍ଷାଠାରୁ ଉଚ୍ଚ ଶିକ୍ଷା ଓ ଗବେଷଣା ପର୍ଯ୍ୟନ୍ତ ଶିକ୍ଷକ-ଶିକ୍ଷାର୍ଥୀଙ୍କ ସୌହାର୍ଦ୍ଦ୍ୟ ଓ ସହଯୋଗରେ ଚାଲିଛି । ସବୁ ଦିଗରେ ଆଖିରେ ପଡୁଛି ସୁନ୍ଦର ଦୃଶ୍ୟ, ଭାସ୍କର୍ଯ୍ୟ ଓ ଭିତ୍ତି ଚିତ୍ର – କାନରେ ପଡୁଛି ଛାତ୍ର-ଛାତ୍ରୀଙ୍କର କାକଳି, କଳରବ ଓ ସଂଗୀତର ମୂର୍ଚ୍ଛନା । ଏ ପରିସ୍ଥିତି କାହା ପକ୍ଷରେ ପ୍ରୀତିପ୍ରଦ ନ ହେବ ? ସେତେବେଳେ ବିଦ୍ୟାଭବନର ଅଫିସ୍ ଓ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ମନ୍ଦିର ବା କାଚ ବଙ୍ଗଳା ପାଖ ଦୋତାଲା ଘରେ ଚାଲିଥାଏ । ସେହି କୋଠା ଘରେ ଗୋଟିଏ ଗୋଟିଏ ବଖରାରେ ବିଦ୍ୟାଭବନର ଅଧକ୍ଷ ଡକ୍ଟର ପ୍ରବୋଧ ଚନ୍ଦ୍ର ବାଗଚୀ ଏବଂ ଓଡ଼ିଆ ଅଧାପକ କୁଞ୍ଜ ବିହାରୀ ଦାଶ ବସୁଥାଆନ୍ତି । ଆମକୁ ଭାଷାତତ୍ତ୍ୱ ପଢ଼ାଉ ଥିବା ଅଧାପକ ଡକ୍ଟର ସିଦ୍ଧେଶ୍ୱର ଭଟ୍ଟାଚାର୍ଯ୍ୟ ଏବଂ ପାଲି-ପ୍ରାକୃତ ପଢ଼ାଉ ଥିବା ସିଂହଳୀ ଅଧାପକ ଶାନ୍ତି ଭିକ୍ଷୁଙ୍କ କୋଠରୀ ମଧ ଥିଲା ସେହିଠାରେ । ସେତେବେଳେ ଅଧାପକ ପ୍ରହ୍ଲାଦ ପ୍ରଧାନ ଚୀନ୍‌ରୁ ବାହୁଡ଼ି ଆସିଥିଲେ ଏବଂ ବିଶ୍ୱଭାରତୀର କାର୍ଯ୍ୟ ଛାଡ଼ି ଦେଇଥିଲେ ମଧ ତାଙ୍କର ପରିବାର ଶାନ୍ତିନିକେତନରେ ରହୁଥିଲେ । ମଝିରେ ମଝିରେ ପ୍ରହ୍ଲାଦବାବୁ କଟକ ରେଭେନ୍‌ସା କଲେଜରୁ ସେଠାକୁ ଯାଉଥିଲେ ଏବଂ ଆମର ସାକ୍ଷାତ୍ ଆଲୋଚନା ହେଉଥିଲା ନାନା ବିଷୟରେ – ଚୀନ୍‌ରେ ଥିବା ଭାରତୀୟ ଗ୍ରନ୍ଥଠାରୁ ଆରମ୍ଭ କରି ରେଭେନ୍‌ସା କଲେଜ ଓଡ଼ିଆ-ସଂସ୍କୃତ ମିଳିତ ବିଭାଗରେ ଅଧୟନ-ଅଧାପନା ବିଷୟ ପର୍ଯ୍ୟନ୍ତ ।

ଆମକୁ ସେଠାରେ ପାଠ ପଢ଼ାଉଥିବା ପ୍ରାୟ ସମସ୍ତ ପଣ୍ଡିତ ଅଧାପକଙ୍କ ସହିତ ଶ୍ରେଣୀ କକ୍ଷ ବାହାରେ ସଂପର୍କ ରହୁଥିଲା – ରାସ୍ତାଘାଟରେ, ଉତ୍ସବ ଅନୁଷ୍ଠାନରେ, ପଣ୍ୟ ବିପଣୀରେ, ଏପରିକି ଅଧାପକମାନଙ୍କ ବାସଗୃହରେ ଆମର ମିଳାମିଶା ହେଉଥିଲା । କୁଞ୍ଜବାବୁ ପ୍ରାୟ ପ୍ରତିଦିନ ଛାତ୍ରମାନଙ୍କୁ ସାଙ୍ଗରେ ଘେନି ସାନ୍ଧ୍ୟ ଭ୍ରମଣରେ ଯାଉଥିଲେ । ବିଦ୍ୟାଭବନର ନରେନ୍ଦ୍ରନାଥ ମିଶ୍ର, କଳାଭବନର ବିନୋଦ ରାଉତରାୟ ପ୍ରମୁଖ କେତେକ ଓଡ଼ିଆ ଛାତ୍ର ତାଙ୍କର ଭ୍ରମଣ-ସାଥି ଥିଲେ । ମଝିରେ ମଝିରେ ମୁଁ ସେହି ସାନ୍ଧ୍ୟ ଭ୍ରମଣରେ ଯୋଗ ଦେଉଥିଲି । ଭ୍ରମଣ ସମୟରେ ଢେଙ୍କିଶାଳଠାରୁ ଢେଙ୍କାନାଳ ପର୍ଯ୍ୟନ୍ତ ବହୁ ବିଷୟରେ ଆଲୋଚନା-ଚର୍ଚ୍ଚା ହେଉଥିଲା । କିନ୍ତୁ ଶାନ୍ତିନିକେତନରେ ମୁଁ ଓଡ଼ିଆ ଛାତ୍ର-ଛାତ୍ରୀଙ୍କ ସହ ଅଧିକ ମିଳାମିଶା କରୁ ନ ଥିଲି, ଅଣ-ଓଡ଼ିଆ ଛାତ୍ର-ଛାତ୍ରୀ ବିଶେଷତଃ ବିଦେଶାଗତ ଗବେଷକ ଛାତ୍ରଙ୍କ ସହ ସଂପର୍କ ରଖୁଥିଲି ବେଶି । କାରଣ ମୁଁ ଭାବୁଥିଲି – ଓଡ଼ିଆ ଛାତ୍ର-ଛାତ୍ରୀଙ୍କ ସହ ଭବିଷ୍ୟତରେ ମିଳାମିଶା କରିବାର ଅମାପ ସୁଯୋଗ ରହିଛି, କିନ୍ତୁ ଅଣଓଡ଼ିଆ ଛାତ୍ର-ଛାତ୍ରୀ, ଗବେଷକ ଓ ଅଧାପକଙ୍କ ସହ ମିଳାମିଶା କରି ଭାବ ଆଦାନ-ପ୍ରଦାନର ସୁଯୋଗ ଶାନ୍ତିନିକେତନରୁ

ଚାଲିଗଲା ପରେ ଆଉ ଅଧିକ ମିଳି ନପାରେ । ଏହାଦ୍ୱାରା ମୁଁ ଉପକୃତ ହୋଇଛି ବୋଲି ମନେ କରୁଛି । ସାହିତ୍ୟ ସଂସ୍କୃତି ସଂପର୍କରେ ମୋର ଧ୍ୟାନ-ଧାରଣାର ଦିଗ୍‌ବଳୟ ତ ସଂପ୍ରସାରିତ ହୋଇଛି, ତାହା ବ୍ୟତୀତ ମୋର ଆତ୍ମକୈନ୍ଦ୍ରିକ, ଘରକୋଣପଶା ମନୋଭାବ ବହୁ ପରିମାଣରେ ଦୂର ହୋଇ ପାରିଛି । ଅଣଓଡ଼ିଆଙ୍କ ସହିତ ଅଧିକ ମିଳାମିଶା କରିବା କଥାଟାକୁ କୁଞ୍ଜ ବାବୁ ପସନ୍ଦ କରୁ ନ ଥିଲେ; ନରେନ୍ଦ୍ରନାଥ ମିଶ୍ର ମୋର ଗତିରୀତି ଦେଖି ଆସାମାଜିକ, ସୃଷ୍ଟିଛଡ଼ା ଜୀବ ବୋଲି ମୋତେ ପରିହାସ କରୁଥିଲେ । ମୋ ଉଦ୍ଦେଶ୍ୟରେ ନରେନ୍ଦ୍ର ବାବୁଙ୍କର ଏହି 'ସୃଷ୍ଟିଛଡ଼ା' କଥାଟିକୁ ମୁଁ ସେହି ଦିନରୁ ଲେଖା ଲେଖିରେ ନିଜର ଛଦ୍ମନାମ ଭାବରେ ବ୍ୟବହାର କରି ଆସୁଛି ।

ହିନ୍ଦୀ ବିଭାଗର ଅଧ୍ୟାପକ ଶିବନାଥ, ବଙ୍ଗଳା ବିଭାଗର ଅଧ୍ୟାପକ ପଞ୍ଚାନନ ମଣ୍ଡଳ, ଡକ୍ଟର ପ୍ରବୋଧ ଚନ୍ଦ୍ର ସେନ, ଇଂରାଜୀ ବିଭାଗର ଅଧ୍ୟାପକ ଶିଶିର ଘୋଷ, ଇତିହାସ ବିଭାଗର ଅଧ୍ୟାପକ ସନ୍ତୋଷ ଘୋଷ – ଏମାନେ ଓ ଏମାନଙ୍କ ଭଳି ଅନ୍ୟ କେତେକ ଗବେଷକ-ପଣ୍ଡିତ ମୋତେ ପାଠ ପଢ଼ାଉ ନ ଥିଲେ; କିନ୍ତୁ ଏମାନଙ୍କ ସହିତ ମୋର ସଦ୍ଭାବ ଓ ବ୍ୟକ୍ତିଗତ ସଂପର୍କ ରହିଥିଲା । ଏବେ ସେମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ ଅଛନ୍ତି, ସେମାନଙ୍କ ସହିତ ପୂର୍ବ ସଂପର୍କ କ୍ଷୁଣ୍ଣ ହୋଇ ନାହିଁ । ଥରେ ମୁଁ ଭୀଷଣ ଶ୍ୱାସରୋଗରେ ପୀଡ଼ିତ ହୋଇ ଶାନ୍ତିନିକେତନ ହସ୍‌ପିଟାଲରେ ପଡ଼ିଥାଏଁ । ଓଡ଼ିଆ ଛାତ୍ର-ଛାତ୍ରୀ, ଅଧ୍ୟାପକଙ୍କ ସହିତ ଏହି ଅଣଓଡ଼ିଆ ଅଧ୍ୟାପକ, ଗବେଷକ, ପଣ୍ଡିତମାନେ ହସ୍‌ପିଟାଲରେ ମୋ ପାଖରେ ଯାଇ ଠିଆ ହେବାର ସ୍ପଷ୍ଟ ମନେ ପଡୁଛି । ଛାତ୍ର-ଅଧ୍ୟାପକ ଛାତ୍ର-ଛାତ୍ରଙ୍କ ମଧ୍ୟରେ ଏଇଭଳି ସଦ୍‌ଭାବ ଓ ବ୍ୟକ୍ତିଗତ ସଂପର୍କ ବର୍ତ୍ତମାନ ଢେର୍ ଊଣା ହୋଇ ଯାଇଥିବାର ଖବର ପାଉଛି ।

ଯେଉଁ ଅଢ଼େଇ ବର୍ଷ କାଳ ମୁଁ ଶାନ୍ତିନିକେତନରେ ଥିଲି, ସେତେବେଳେ ବିଖ୍ୟାତ ସାହିତ୍ୟିକ ଶ୍ରୀ ଅନ୍ନଦାଶଙ୍କର ରାୟ ସପରିବାର ସେଠାରେ ରହୁଥିଲେ । ଅନ୍ନଦାବାବୁ ଆଇ.ସି.ଏସ୍. ଚାକିରି ଛାଡ଼ି କେବଳ ଲେଖାଲେଖିରେ ସମୟ ବିତାଉଥିଲେ । ସବୁଜ ଗୋଷ୍ଠୀର ଏହି ସାଧକ ଓଡ଼ିଆରେ ଲେଖାଲେଖି କରୁ ନ ଥିଲେ ମଧ୍ୟ ଓଡ଼ିଆ ସାହିତ୍ୟ-କର୍ମର ଖବର ରଖୁଥିଲେ ଏବଂ ଆମ ସହିତ ସେ ବିଷୟରେ ଆଲୋଚନା କରୁଥିଲେ । ଉତ୍ତରାୟଣ (ରବୀନ୍ଦ୍ରନାଥଙ୍କ ବାସଗୃହ-ବୀଥିକା) ପଛକୁ ଏକ ବଡ଼ ବନ୍ଧ ବା ପୋଖରୀ କୂଳରେ ତାଙ୍କର ବସାଘର ଥିଲା । ବେଳେ ବେଳେ ଆମେ ସେଠାରେ କବିତାର ଆସର କରୁଥିଲୁଁ । ତାଙ୍କର ସ୍ତ୍ରୀ ଲୀଳାଦି' ମଧ୍ୟ ଏହି ଆସରରେ ଯୋଗ ଦେଉଥିଲେ । ସେ ଜଣେ ସାହିତ୍ୟ-ରସିକା ଥିଲେ; ବଙ୍ଗଳା ଭାଷାରେ ଏପରି ଚମତ୍କାର ଭାବରେ କଥାବାର୍ତ୍ତା କରୁଥିଲେ ଯେ ତହିଁରୁ ସେ ଯେ ଜଣେ ବିଦେଶିନୀ ମହିଳା, ତାହା ଜଣାପଡୁ ନ ଥିଲା ।

ଅନ୍ନଦାବାବୁ ଓ ଲୀଳାଦି' ମୋର କିଛି ସ୍ୱରଚିତ କବିତା-ଆବୃତ୍ତି ଶୁଣିଥିଲେ ଏବଂ ବିଭିନ୍ନ କବିତାର ପରିମାର୍ଜନ ପାଇଁ ପରାମର୍ଶ ଦେଇଥିଲେ । ମୋର ପ୍ରଥମ କବିତା ବହି 'ଚା କପ୍‌ରେ ଝଡ଼' (୧୯୫୩) ଉପରେ ଅନ୍ନଦାବାବୁ ଏକ ଉପଲବ୍‌ଧିମୂଳକ ମନ୍ତବ୍ୟ ଲେଖି ଦେଇଥିଲେ, ଯାହା ମୋତେ ବିଶେଷ ପ୍ରୋତ୍ସାହନ ଯୋଗାଇ ଦେଇଥିଲା ।

ଖ୍ୟାତନାମା ପଣ୍ଡିତ କ୍ଷିତିମୋହନ ସେନ, ଚୀନା ପଣ୍ଡିତ ତାନ୍ ୟୁନ୍ ସାନ୍, ଶିଳ୍ପୀ ନନ୍ଦଲାଲ ବସୁ ଓ ଭାସ୍କର ରାମକିଙ୍କର, ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର୍ ଆସିଥିବା ପ୍ରଫେସର୍ ନର୍ଥ ପ୍ରମୁଖଙ୍କ ସାନ୍ନିଧ ଲାଭ କରିବାର ସୁଯୋଗ ମୁଁ ପାଇଥିଲି । ପ୍ରଫେସର ନର୍ଥ୍ କଥାସାହିତ୍ୟ (fiction) ସଂପର୍କରେ ପାଞ୍ଚଟି କ୍ଲାସ୍‌ରେ ମୋତେ ପଢ଼ାଇଥିଲେ । ପ୍ରଥମ କ୍ଲାସ୍‌ଟି ପୂରାପୂରି ବ୍ୟର୍ଥ ହୋଇ ଯାଇଥିଲା, କାରଣ ମୁଁ ପ୍ରଫେସର ନର୍ଥଙ୍କ ଇଂରାଜୀ ଭାଷାର ଉଚ୍ଚାରଣ ଆଦୌ ବୁଝିପାରି ନ ଥିଲି । ମୋର ଏ ଅସୁବିଧା କଥା ତାଙ୍କୁ ଜଣାଇ ଦେବାରୁ ପରବର୍ତ୍ତୀ କ୍ଲାସ୍‌ମାନଙ୍କରେ ସେ ଧୀରେ ଧୀରେ ସ୍ପଷ୍ଟ ଉଚ୍ଚାରଣରେ ଇଂରାଜୀ କହିଥିଲେ । ପ୍ୟାରିସ୍‌ରୁ ଆସିଥିବା ଜଣେ ଫରାସୀ ଅଧ୍ୟାପକଙ୍କ କ୍ଲାସ୍‌ରେ ଯୋଗ ଦେଇ ମୁଁ କିଛିକାଳ ଫରାସୀ ଭାଷା ମଧ ଶିକ୍ଷା କରିଥିଲି । କିନ୍ତୁ ନିଜ ଭାଷା-ସାହିତ୍ୟର ଲେଖାପଢ଼ା ଚାପରେ ଅଧାଅଧିରୁ ଫରାସୀ ଭାଷା-ଶିକ୍ଷା ଛାଡ଼ି ଦେଇଥିଲି ।

ବିଦ୍ୟା ଭବନର ଅଧକ୍ଷ ଡକ୍ଟର ପ୍ରବୋଧ ଚନ୍ଦ୍ର ବାଗ୍‌ଚି (ପରେ ବିଶ୍ୱଭାରତୀର କୁଳପତି ହୋଇଥିଲେ) ଆମକୁ ଚର୍ଯ୍ୟାଗୀତିକା ପଢ଼ାଉଥିଲେ । ବଙ୍ଗଳା ଓ ଓଡ଼ିଆ ଛାତ୍ର-ଛାତ୍ରୀଙ୍କର ତାହା ମିଳିତ କ୍ଲାସ୍ ଥିଲା । କିଛି ହିନ୍ଦୀ ଗବେଷକ-ଛାତ୍ର ମଧ ଆସି ସେହି କ୍ଲାସ୍‌ରେ ବସୁଥିଲେ । ଅପଭ୍ରଂଶ ଭାଷା-ସାହିତ୍ୟ ଓ ତତ୍‌କାଳୀନ ସାଂସ୍କୃତିକ ଇତିହାସ ଉପରେ ଡକ୍ଟର ବାଗ୍‌ଚିଙ୍କର ବିଶେଷ ଦଖଲ ଥିଲା । ଚର୍ଯ୍ୟାଗୀତିକା ପ୍ରାଚୀନ ବଙ୍ଗଳା ଭାଷାର ରଚନା ବୋଲି ଥରେ ସେ କ୍ଲାସ୍‌ରେ ଆଲୋଚନା କରୁଥିଲାବେଳେ ମୁଁ କହିଲି – ଏଗୁଡ଼ିକ ପ୍ରାଚୀନ ସଡ଼ିଆ ରଚନା ବୋଲି ପଣ୍ଡିତ ବିନାୟକ ମିଶ୍ର, ଡକ୍ଟର କରୁଣାକର କରଙ୍କ ଭଳି କେତେକ ବିଦ୍ୱାନ୍ ମତ ପ୍ରକାଶ କରୁଛନ୍ତି । ଡକ୍ଟର ବାଗ୍‌ଚି ଏ କଥାରେ ଟିକିଏ ମୁରୁକି ହସିଲେ ଏବଂ କହିଲେ – ସେତେବେଳେ ଉତ୍ତର-ପୂର୍ବ ଓ ଦକ୍ଷିଣ-ପୂର୍ବ ଭାରତରେ ପ୍ରଚଳିତ ଅପଭ୍ରଂଶ ଭାଷାରେ ଚର୍ଯ୍ୟାଗୀତିକା ସମୂହ ଲିଖିତ ହୋଇଥିବାରୁ ଓଡ଼ିଆ, ବଙ୍ଗଳା, ଅସମୀୟା, ହିନ୍ଦୀ ଆଦି ଭାଷାର ପ୍ରାଚୀନ ରୂପ ଏହା ମଧରେ ମିଳିଯିବା ଅତି ସ୍ୱାଭାବିକ । ତାଙ୍କ କଥାରେ ପ୍ରତିବାଦ କଲି ବୋଲି ଡକ୍ଟର ବାଗ୍‌ଚି ମୋ ଉପରେ ବିରକ୍ତ ହେବାର ବା ରାଗିବାର କୌଣସି ଲକ୍ଷଣ ମୁଁ ସେତେବେଳେ ବା ତାହା ପରେ ଲକ୍ଷ୍ୟ କରି ନାହିଁ ।

ଏତେ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ଅଧିକାରୀ ହୋଇ ଏବଂ ବିଶ୍ୱଭାରତୀରେ ଏତେ ବଡ଼ ପଦ-ପଦବୀରେ ଭୂଷିତ ହୋଇ ଡକ୍ଟର ବାଗ୍‌ଚି କେବେ ଔଦ୍ଧତ୍ୟ, ଅହଂକାର ବା ଆସ୍ଫାଳନ ପ୍ରକାଶ କରୁ ନ ଥିଲେ । ଚାଲି ଚଳଣି, ଆଚାର ବ୍ୟବହାରରେ ସେ ଥିଲେ ଧୀର, ନମ୍ର ଓ ବିନୟୀ । ଶାନ୍ତିନିକେତନ ଆଶ୍ରମ ଭିତରେ ତଥା ବାହାରେ ସେ କେବେ ରାସ୍ତା ମଝିରେ ଚାଲି ଯାଉଥିବାର ମୁଁ ଦେଖି ନାହିଁ । ରାସ୍ତା ଧାରରେ ଗୁଳ୍ମ ଲତାର ବାଡ଼ ପାଖେ ପାଖେ ସେ ବରାବର ଏପରି କଡ଼ପଟିଆ ହୋଇ ବାଟ ଚାଲୁଥିଲେ ଯେ ବେଳେ ବେଳେ ତାଙ୍କ ପଞ୍ଜାବୀ ବା ଚଦର ବାଡ଼ରେ ଲଟକି ଯାଉଥିଲା । ଆମେ ଛାତ୍ର-ଛାତ୍ରୀମାନେ ପଛରୁ ଯାଇ ବାଡ଼ରୁ ତାଙ୍କର ପଞ୍ଜାବୀ ବା ଚଦରକୁ ମୁକୁଳାଇ ଦେଉଥିଲୁଁ । କେବଳ ଡକ୍ଟର ବାଗ୍‌ଚି ନୁହନ୍ତି, ପଣ୍ଡିତ କ୍ଷିତିମୋହନ ସେନ, ନନ୍ଦଲାଲ ବସୁଙ୍କ ଠାରୁ ଆରମ୍ଭ କରି ପ୍ରହ୍ଲାଦ ପ୍ରଧାନ, କୁଞ୍ଜ ବିହାରୀ ଦାଶଙ୍କ ପର୍ଯ୍ୟନ୍ତ ବିଶ୍ୱଭାରତୀର ପ୍ରାୟ ସମସ୍ତ ବଡ଼ ବଡ଼ ଅଧ୍ୟାପକ-ଗବେଷକ ପଣ୍ଡିତ ଫଳନ୍ତି ବୃକ୍ଷ ଭଳି ଥିଲେ ନମ୍ରନତ ଓ ଅନହଂକାରୀ । ପ୍ରତିଭା, ପାଣ୍ଡିତ୍ୟ ଓ ଜ୍ଞାନଗୁଣର ଏକ ଉଦ୍ଧତ, ଅବିନୀତ ଓ ଆକ୍ରମଣକାରୀ ଦିଗ ରହିଛି, ଯାହା ମୁଁ ଏମାନଙ୍କଠାରେ କେବେ ଲକ୍ଷ୍ୟ କରି ନାହିଁ । ଅବଶ୍ୟ, 'ପ୍ରଚଣ୍ଡ ପ୍ରତିଭା', 'ବିରାଟ ପଣ୍ଡିତ' ଚାରିଆଡ଼େ ଉଣାଧିକେ ଅଛନ୍ତି । କଟକ ରେଭେନ୍‌ସା କଲେଜ ପଛପଟେ ତାଳଦଣ୍ଡା କେନାଲ୍ କୂଳେ କୂଳେ ସେହିଭଳି କେତେକ ଅଧ୍ୟାପକ ପଣ୍ଡିତଙ୍କର ସାକ୍ଷାତ୍ ମିଳିଯିବ; ସେମାନେ ନିଜ ନିଜର ଜ୍ଞାନ ଗରିମା ବଳରେ ବୁଦ୍ଧିର ଖେଳ ଦେଖାଇ ଛାତ୍ରଛାତ୍ରୀମାନଙ୍କୁ ଏକାବେଳେକେ ଆକ୍ରାନ୍ତ କରି ପକାନ୍ତି – ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ହଟଚମଟ ଲଗାଇ ସମସ୍ତଙ୍କୁ ହତଚକିତ ବା ପରାଜିତ କରିବାରେ ଆନନ୍ଦ ପାଆନ୍ତି । ସେମାନଙ୍କ ଜ୍ଞାନ ଓ ବୌଦ୍ଧିକତାର ବୋଝ ଲଦି ଦେଇ ସଂପୃକ୍ତ ସମସ୍ତଙ୍କୁ ହୀନ ବା ତୁଚ୍ଛ ପ୍ରତିପାଦିତ କରିବାରେ ପତିଆରା ଦେଖାନ୍ତି । ଛାତ୍ରଛାତ୍ରୀ ଓ ଗବେଷକଗଣ ସେମାନଙ୍କ ନିକଟରେ ସଂକୁଚିତ ଓ ହୀନମନ୍ୟ ହୋଇ ଚଳନ୍ତି । ଏବେ ପୂଜ୍ୟପୂଜା ପ୍ରସଙ୍ଗରେ ସଭା ମଞ୍ଚ ଉପରୁ କିମ୍ବା ସମ୍ବାଦପତ୍ର ପୃଷ୍ଠାରୁ 'ପ୍ରଚଣ୍ଡ ପ୍ରତିଭା' କଥାଟା ଶୁଣି ବା ପଢ଼ି ଆମର ବେଶ୍ ଦେହସୁହା ହୋଇଗଲାଣି । କିନ୍ତୁ 'ପ୍ରଚଣ୍ଡ' ହେବା ଦୂରେ ଥାଉ, ପ୍ରକୃତ ପ୍ରତିଭା 'ଚଣ୍ଡ' ହୋଇପାରିବ କି ? ପ୍ରତିଭା ଓ ପାଣ୍ଡିତ୍ୟ ମଧ୍ୟରେ ଚଣ୍ଡତା ନ ଥାଏ, ଥାଏ ଚୋଦନା ଓ ଚମତ୍କାରିତା !

ବଙ୍ଗଳା-ଓଡ଼ିଆ ମିଳିତ କ୍ଲାସ୍‌ରେ ଡକ୍ଟର ସିଦ୍ଧେଶ୍ୱର ଭଟ୍ଟାଚାର୍ଯ୍ୟ ଆମକୁ ଭାଷା ତତ୍ତ୍ୱ ପଢ଼ାଉଥିଲେ । କଲିକତାର ଆର୍.ଜି. କର ମେଡ଼ିକାଲ କଲେଜ ହସ୍‌ପିଟାଲରେ ମୋର ଗୋଟାଏ ଛୋଟକାଟର ଅପରେସନ୍ ହେଲାରୁ ମୁଁ ତାଙ୍କର କେତୋଟି କ୍ଲାସ୍‌ରେ ଉପସ୍ଥିତ ହୋଇପାରି ନ ଥିଲି । ତେଣୁ ମୋ ପାଇଁ କିଛି ସ୍ୱତନ୍ତ୍ର ସମୟ ଦେଇ ଭାଷାର

କେତେକ ସୂତ୍ର ବୁଝାଇ ଦେବାକୁ ମୁଁ ତାଙ୍କୁ ଅନୁରୋଧ କଲି । ସେ ତହିଁରେ ରାଜି ହୋଇ ଏକ ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ସମୟରେ ମୋତେ ପଢ଼ିବା ପାଇଁ ଆସିବାକୁ କହିଲେ । କିନ୍ତୁ କୌଣସି କାରଣରୁ ମୁଁ ସେହି ନିର୍ଦ୍ଦିଷ୍ଟ ସମୟରେ ତାଙ୍କ ପାଖରେ ଉପସ୍ଥିତ ହୋଇ ପାରିଲି ନାହିଁ । ତହିଁ ପରଦିନ ଆମର ସାକ୍ଷାତ୍ ହେଲା ମାତ୍ରେ କେତେକ ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ସାମ୍ନାରେ ଡକ୍ଟର ଭଟ୍ଟାଚାର୍ଯ୍ୟ ମୋ ଉଦ୍ଦେଶ୍ୟରେ କହିଲେ – ''ମୋର ସମୟଠାରୁ କୃଷ୍ଣର ସମୟ ବଡ଼ ମୂଲ୍ୟବାନ୍ । କାଲି ମୁଁ ଅନ୍ୟ କାର୍ଯ୍ୟ ଛାଡ଼ି ତା' ଅପେକ୍ଷାରେ ଘଣ୍ଟେ କାଳ ଅପେକ୍ଷା କରିଥିଲି । ସେ କିନ୍ତୁ ଅନ୍ୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ବ୍ୟସ୍ତ ରହି ଆସିପାରିଲା ନାହିଁ ।'' କଥାଟା ମୋତେ ଏତେ ଖରାପ ଲାଗିଲା ଯେ ମୁଁ ତତ୍‌କ୍ଷଣାତ୍ ହାତ ଯୋଡ଼ି ନିଜର ଦୋଷ ପାଇଁ ତାଙ୍କଠାରେ କ୍ଷମା ପ୍ରାର୍ଥନା କଲି । ସେ ମୋର ହାତ ଧରି ଆପଣା ବସା ଘରକୁ ଘେନିଗଲେ, ବୌଦିଙ୍କ ହାତରେ ମୋତେ ଚା'ଜଳଖିଆ ଖୁଆଇଲେ ଏବଂ ବଗିଚାରେ ବସାଇ ଭାଷାତତ୍ତ୍ୱ ବୁଝାଇବାରେ ଲାଗିଲେ । ଥରେ ନୁହେଁ, କେତେ ଥର ଏହି ରୀତିରେ ମୋର ତାଙ୍କ ଘରେ ଭାଷାତତ୍ତ୍ୱ ପଢ଼ା ଚାଲିଥିଲା ।

ଆମକୁ ପାଲି-ପ୍ରାକୃତ ପଢ଼ାଉଥିଲେ ସିଂହଳୀ ଅଧ୍ୟାପକ ଶାନ୍ତି ଭିକ୍ଷୁ । ଫିକା ଗେରୁଆ ବସ୍ତ୍ର-ପରିହିତ ଲଣ୍ଡିତ-ମସ୍ତକ କୃଷ୍ଣକାୟ ବାଙ୍ଗରା ବ୍ୟକ୍ତି । ସାଙ୍ଗରେ ତାଙ୍କର ସହଧର୍ମିଣୀ ସେହିପରି ଲଣ୍ଡିତ-ମସ୍ତକା ଶ୍ୟାମବର୍ଣ୍ଣା ଭିକ୍ଷୁଣୀ । ସେମାନେ କହୁଥିବା ଭଙ୍ଗାଭଙ୍ଗା ଇଂରାଜୀ ଓ ବଙ୍ଗଳା ଭାଷା ଆମକୁ ବେଶ୍ ଆମୋଦ ଦେଉଥିଲା । ସ୍ନାତକୋତ୍ତର ପାଠ୍ୟକ୍ରମରେ ପାଲି-ପ୍ରାକୃତ, ଅପଭ୍ରଂଶ ସହିତ ମୁଁ ଗୋଟାଏ ପୂରା ପେପର୍ ବଙ୍ଗଳା ଭାଷା-ସାହିତ୍ୟ ପଢୁଥିଲି । ମୋତେ ବଙ୍ଗଳା ପଢ଼ାଉଥିଲେ ଅଧ୍ୟାପକ ସତ୍ୟେନ୍ ଘୋଷାଲ । ମୁଁ ତାଙ୍କ ପରିବାରର ଜଣେ ବ୍ୟକ୍ତି ପରି ହୋଇ ଯାଇଥିଲି । ଯେବେ ତାଙ୍କ ବସାଘରକୁ ଯାଉଥିଲି, ବୌଦି' ଅର୍ଥାତ୍ ମିସେସ୍ ଘୋଷାଲ ମୋତେ ନ ଖୁଆଇ ଛାଡୁ ନ ଥିଲେ । ତାଙ୍କର ଛୋଟ ଝିଅଟି ଚମତ୍କାର ରବୀନ୍ଦ୍ର-ସଂଗୀତ ଗାଇ ଆମକୁ ମୁଗ୍‌ଧ କରାଉଥିଲା । ଓଡ଼ିଆ ସାହିତ୍ୟର ପ୍ରାୟ ସମସ୍ତ ବିଷୟ ମୋତେ ପଢ଼ାଉଥିଲେ – କୁଞ୍ଜବାବୁ; ସେତେବେଳେ ସେ ଜଣେ ମାତ୍ର ବିଭାଗୀୟ ଅଧ୍ୟାପକ । ମୋର ଶାନ୍ତିନିକେତନ ଯିବା ସଂଗେ ସଂଗେ ଅଧ୍ୟାପକ ଚିନ୍ତାମଣି ବେହେରା ବିଶ୍ୱଭାରତୀ କାମ ଛାଡ଼ି ଓଡ଼ିଶା ଏଜୁକେସନ୍ ସର୍ଭିସ୍‌ରେ ଆସି ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଯୋଗ ଦେଲେ । ସେହିପରି ମୋର ଶାନ୍ତିନିକେତନ ଛାଡ଼ିବାର ଅଳ୍ପ କେତେ ମାସ ପୂର୍ବରୁ ଅଧ୍ୟାପକ ଦେବୀ ପ୍ରସନ୍ନ ପଟ୍ଟନାୟକ ଯାଇ ବିଶ୍ୱଭାରତୀର ଓଡ଼ିଆ ବିଭାଗରେ ଯୋଗ ଦେଲେ । ଏହି ଉଭୟ ବିଜ୍ଞ ଅଧ୍ୟାପକଙ୍କଠାରୁ ମୁଁ ଶିକ୍ଷାଲାଭ କରିପାରିଲି ନାହିଁ । ଦେବୀବାବୁ ଆପଣା ସଂଗୀତଜ୍ଞ ପତ୍ନୀ ସୁଲକ୍ଷଣାଙ୍କ ସହ ଉତ୍ତରାୟଣର ଏକ ବସାଘରେ ରହୁଥିଲେ । ଅନେକ ସମୟରେ

ତାଙ୍କ ଘରେ ଆମର ସଂଗୀତ ଆସର ବସୁଥିଲା । ଏଥିରେ ସୁଲକ୍ଷଣା ଦେବୀ ଓ ସେତେବେଳେ ବିଶ୍ୱଭାରତୀର ଏଗ୍ରୋ-ଇକନମିକ୍ ରିସାର୍ଚ୍ଚ ସେଣ୍ଟର୍ କର୍ମଚାରୀ ଗୋପୀନାଥ ପଟ୍ଟନାୟକ ମୁଖ୍ୟ ଅଂଶ ଗ୍ରହଣ କରୁଥିଲେ ।

ବିଶ୍ୱଭାରତୀ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ମୁଁ ଥିଲି ଦ୍ୱିତୀୟ ଦଳର ଛାତ୍ର, ଏକଲି ଏକା । ତେଣୁ ଅଧ୍ୟାପକମାନଙ୍କର ପ୍ରକୋଷ୍ଠରେ ବସି କିମ୍ବା ସେମାନଙ୍କର ବସାଘରକୁ ଯାଇ କ୍ଲାସ୍ କରିବାରେ ଅସୁବିଧା ନ ଥିଲା । ପ୍ରଥମ ଦଳର ଛାତ୍ର ଥିଲେ ତିନିଜଣ – ନରେନ୍ଦ୍ର ନାଥ ମିଶ୍ର, ଦୁର୍ଗାଚରଣ ପରିଡ଼ା ଓ ନରେନ୍ଦ୍ରମୋହନ ବେହେରା । ତୃତୀୟ ଦଳରେ ଥିଲେ ଦୁଇଜଣ ରାଧାରାଣୀ ପଟ୍ଟନାୟକ ଓ ଜଗବନ୍ଧୁ ସାହୁ । କମ୍ ଛାତ୍ରଛାତ୍ରୀ ଥିବାରୁ ପ୍ରତ୍ୟେକଙ୍କ ଉପରେ ଅଧ୍ୟାପକମାନଙ୍କର ନିଘା ରହୁଥିଲା ବେଶି । କେବଳ ଓଡ଼ିଆ ବିଭାଗ ନୁହେଁ, ବିଦ୍ୟାଭବନର ପ୍ରତ୍ୟେକ ବିଭାଗରେ ଛାତ୍ରଛାତ୍ରୀଙ୍କ ସଂଖ୍ୟା ଥିଲା ସୀମିତ ଏବଂ ଏବେ ମଧ୍ୟ ସେହିପରି ସୀମିତ ସଂଖ୍ୟାରେ ଛାତ୍ରଛାତ୍ରୀଙ୍କୁ ଗ୍ରହଣ କରାଯାଉଛି । ଏହାର ମୁଖ୍ୟ କାରଣ ହେଲା ଉଚ୍ଚ ଶିକ୍ଷା ବା ବିଶେଷଜ୍ଞଧର୍ମୀ ଅଧ୍ୟୟନ ପାଇଁ ଶିକ୍ଷାୟତନକୁ ସାହାଣ ମେଲା ବା ଅବାରିତ – ଦ୍ୱାର ନ କରିବା । ଭାରତର ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟରେ ବର୍ଷକୁ ବର୍ଷ ବିଭିନ୍ନ ବିଭାଗରେ ଗୋରୁଗୋଠ ପରି ଯେପରି ଛାତ୍ରଛାତ୍ରୀମାନେ ଭର୍ତ୍ତି ହୁଅନ୍ତି ଏବଂ ବିଭାଗ-ବିଭାଗ ମଧ୍ୟରେ ସିଟ୍ ସଂଖ୍ୟା ବଢ଼ାଇବା ପାଇଁ ଯେପରି ପ୍ରତିଦ୍ୱନ୍ଦ୍ୱିତା ଚାଲେ, ତହିଁରେ ଏମ୍.ଏ., ଏମ୍.ଫିଲ୍. ଆଦି ଡିଗ୍ରୀଧାରୀଙ୍କ ସଂଖ୍ୟା ବଢ଼ିବା ବ୍ୟତୀତ ବିଶେଷ ଲାଭ ହୁଏ ନାହିଁ । କେବଳ ଉପଯୁକ୍ତ ସାମର୍ଥ୍ୟ ଓ ଆଗ୍ରହ ଥିବା ବ୍ୟକ୍ତିମାନେ ଉଚ୍ଚ ଶିକ୍ଷା ପାଇଁ ଆଗଭର ହେବା ଉଚିତ ବୋଲି ଶିକ୍ଷାବିଦ୍‌ମାନେ ମତ ଦିଅନ୍ତି । କିନ୍ତୁ ଏ ହତଭାଗା ଦେଶରେ ସାମର୍ଥ୍ୟ ଓ ଆଗ୍ରହ ଥାଉ ବା ନ ଥାଉ, ପ୍ରତ୍ୟେକ ସ୍ନାତକ ଛାତ୍ରଛାତ୍ରୀ ଏମ୍.ଏ., ଏମ୍.ଏସ୍‌ସି., ଏମ୍.କମ୍. ଆଦି ପଢ଼ିବାକୁ ବାହାରି ପଡ଼ନ୍ତି । ବିଶ୍ୱଭାରତୀ ବିଦ୍ୟାଭବନରେ ଛାତ୍ରଛାତ୍ରୀଙ୍କୁ ସୀମିତ ସଂଖ୍ୟାରେ ଗ୍ରହଣ କରାଯିବାର ଅନ୍ୟ ଏକ କାରଣ ହେଲା – ମୁଖ୍ୟତଃ ଏକ ଆବାସିକ ଶିକ୍ଷାନୁଷ୍ଠାନ ଭାବରେ ସମସ୍ତ ଛାତ୍ରଛାତ୍ରୀଙ୍କୁ ହଷ୍ଟେଲ-ସୁବିଧା ଯୋଗାଇବାର ସମସ୍ୟା । ୧୯୫୨ରେ ମୁଁ ନାମ ଲେଖାଇବା ବେଳକୁ ବିଦ୍ୟା ଭବନର ସ୍ୱତନ୍ତ୍ର ହଷ୍ଟେଲ ନଥିଲା । ଶାନ୍ତିନିକେତନ ଶ୍ରୀନିକେତନ ମଝିରେ ଥିବା ବିନୟ ଭବନ ହଷ୍ଟେଲରେ ମୋତେ ପ୍ରାୟ ଛଅ ମାସ କାଳ ରହିବାକୁ ପଡ଼ିଥିଲା । ଶାନ୍ତିନିକେତନ ପୋଷ୍ଟ ଅଫିସ୍ ପଛରେ ବିଦ୍ୟାଭବନର ସ୍ୱତନ୍ତ୍ର ହଷ୍ଟେଲ ତିଆରି ସରିବା ସଂଗେ ସଂଗେ ମୁଁ ହେଲି ତହିଁର ସର୍ବପ୍ରଥମ ଅନ୍ତେବାସୀ । ପରେ ପରେ କେତେକ ବଙ୍ଗୀୟ ତଥା ତେଲୁଗୁ, କେରଳୀ ଓ ଉତ୍ତର ପ୍ରଦେଶୀ ଛାତ୍ର ଆସି ସେଠାରେ ସ୍ଥାନ ପାଇଲେ । ଥମାସ୍ ଓକେଲୋ ନାମକ ଜଣେ ଆଫ୍ରିକାନ୍ ନିଗ୍ରୋ ଯୁବକ କିଛି କାଳ ପାଇଁ

ବିଦ୍ୟାଭବନ ହଷ୍ଟେଲରେ ସ୍ଥାନ ପାଇଥିଲେ । ତାଙ୍କ ସହିତ ମୋର ବନ୍ଧୁତା ବେଶ୍ ଜମି ଯାଇଥିଲା । ସେ ଭଲ ଫୁଟ୍‌ବଲ ଖେଳୁଥିଲେ ଏବଂ ତାଙ୍କ ସହିତ ଖେଳିବା ପାଇଁ ବେଳେ ବେଳେ ମୋତେ ଡାକୁଥିଲେ । ମୁଁ କେତେକ ଗୃହାଭ୍ୟନ୍ତର ଖେଳରେ ଧୁରୀଣ ଥିଲେ ହେଁ, ବହିରାଙ୍ଗନ ଖେଳରେ ପଛୁଆ ଥିଲି ।

ବିଶ୍ୱଭାରତୀ ଲାଇବ୍ରେରୀର ବିପୁଳ ଗ୍ରନ୍ଥ ଓ ପତ୍ରପତ୍ରିକାର ଭଣ୍ଡାର ମୋ' ପାଇଁ ଏକ ଆକର୍ଷଣୀୟ ସ୍ଥାନ ଥିଲା । ବିଭାଗୀୟ ସ୍ୱତନ୍ତ୍ର ଓଡ଼ିଆ ଗ୍ରନ୍ଥାଗାର ସହିତ ସାଧାରଣ ଗ୍ରନ୍ଥାଗାରରେ ପୂରି ରହିଥିଲା ନାନା ଭାଷା ଓ ବିଷୟରେ ହଜାର ହଜାର ପୁସ୍ତକ ଓ ପତ୍ରିକା । କବି ରବୀନ୍ଦ୍ରନାଥ ବିଶ୍ୱର ବହୁ ଦେଶ ବୁଲି ଯେଉଁ ଗ୍ରନ୍ଥ ସବୁ ଆଣିଥିଲେ, ଅଥବା ଉପହାର ସ୍ୱରୂପ ପାଇଥିଲେ, ସେ ସବୁ ଅମୂଲ୍ୟ ଗ୍ରନ୍ଥମାନ ସେଠାରେ ସ୍ଥାନିତ ହୋଇଥିଲା । ଲାଇବ୍ରେରୀ ସଂପର୍କରେ ସବୁଠାରୁ ଉଲ୍ଲେଖଯୋଗ୍ୟ କଥା ହେଉଛି — ଛାତ୍ର-ଛାତ୍ରୀ ଓ ଗବେଷକଙ୍କ ପକ୍ଷରେ ଗ୍ରନ୍ଥଗୁଡ଼ିକର ପ୍ରାପ୍ତି-ସାଧ୍ୟତା । ଲାଇବ୍ରେରିୟାନ ଥିଲେ 'ରବୀନ୍ଦ୍ର ଜୀବନୀ'ର ବିଖ୍ୟାତ ଲେଖକ ପ୍ରଭାତ କୁମାର ମୁଖାର୍ଜି; କେଉଁ ଗ୍ରନ୍ଥଟି ଲାଇବ୍ରେରୀର କେଉଁ ଥାକରେ ଅଛି, ତାହା ଥିଲା ତାଙ୍କ ନଖ ଦର୍ପଣରେ ! ଗ୍ରନ୍ଥ ଖୋଜିବା ଓ ପାଇବାରେ ଆମକୁ ସାହାଯ୍ୟ ଦାନରେ ସେ ବରାବର ଥିଲେ ଅକୃପଣ । ଲାଇବ୍ରେରୀର ବହିଥାକ ମଝିରେ ମଝିରେ ବସିବା-ସ୍ଥାନ-ରହିଛି — ଛାତ୍ର-ଛାତ୍ରୀ, ଗବେଷକ, ଅଧ୍ୟାପକ ସେଠାରେ ବସି ଯେକୌଣସି ବହି ଚାହିଁବେ ପଢ଼ିପାରିବେ । ଛାତ୍ର-ଛାତ୍ରୀଙ୍କ ପକ୍ଷରେ ଲାଇବ୍ରେରୀ ବହିର ଏପରି ପ୍ରାପ୍ତି-ସାଧ୍ୟତା ଓଡ଼ିଶାର ବଡ଼ ବଡ଼ କଲେଜ ଓ ବିଶ୍ୱବିଦ୍ୟାଳୟରେ ମଧ୍ୟ ଦେଖିବାକୁ ମିଳେନା । କ୍ଲାସ୍ ନ ଥିବା ସମୟରେ ବିଶ୍ୱଭାରତୀ ଲାଇବ୍ରେରୀ ମଧ୍ୟରେ କିମ୍ବା ଲାଇବ୍ରେରୀ-ସଂଲଗ୍ନ ରିଡ଼ିଂ ରୁମ୍‌ରେ ବସି ପଢ଼ାପଢ଼ି କରିବା ମୋର ଏକ ପ୍ରକାର ନିଶା ହୋଇ ଉଠିଲା । ସେତେବେଳେ ଲାଇବ୍ରେରୀ ମଧ୍ୟାହ୍ନ ଭୋଜନାଦି ପାଇଁ ଅଳ୍ପ କେଇ ଘଣ୍ଟା ବନ୍ଦ ରହୁଥିଲେ ହେଁ, ରିଡ଼ିଂ ରୁମ୍ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଖୋଲା ରହୁଥିଲା । ରିଡ଼ିଂ ରୁମ୍‌କୁ ଓଡ଼ିଆ ପତ୍ର-ପତ୍ରିକା ସମେତ ବଙ୍ଗଳା, ହିନ୍ଦୀ ଆଦି ବିଭିନ୍ନ ଭାରତୀୟ ଭାଷା ତଥା ଇଂରାଜୀ, ଫରାସୀ ଆଦି କେତେକ ବିଦେଶୀ ଭାଷାର ପତ୍ର-ପତ୍ରିକା ଆସୁଥିଲା । ଦିନ ସାଢ଼େ ବାରଟା ସୁଦ୍ଧା ମୁଁ ମଧ୍ୟାହ୍ନ ଭୋଜନ ସାରି ଦେଇ ରିଡ଼ିଂ ରୁମ୍‌ରେ ଆସି ଦିନ ତିନିଟା ଯାଏଁ (ଉପର ଓଳି କ୍ଲାସ୍ ହେବା ପର୍ଯ୍ୟନ୍ତ) ବିଭିନ୍ନ ପତ୍ର-ପତ୍ରିକା ପଢୁଥିଲି । ଦରକାରୀ ବିଷୟ ସବୁ ନୋଟ୍ କରି ଆଣୁଥିଲି । କଲେଜ ଜୀବନରେ ପୂର୍ବରୁ ଚାରିବର୍ଷ ମଧ୍ୟରେ ମୁଁ ଯେତେ ପୁସ୍ତକ ଓ ପତ୍ରପତ୍ରିକା ପଢ଼ିବାର ସୁଯୋଗ ପାଇଥିଲି, ବିଶ୍ୱଭାରତୀରେ ଅଢ଼େଇ ବର୍ଷ ମଧ୍ୟରେ ତା'ଠାରୁ ଢେର୍ ବେଶି ପଢ଼ାପଢ଼ି କରିଥିଲି, ଯାହା ମୋର ଜ୍ଞାନ ଓ ଧ୍ୟାନ-ଧାରଣାର ଦିଗ୍‌ବଳୟକୁ ବିଶେଷ ଭାବେ ସଂପ୍ରସାରିତ କରିଥିଲା ।

ଶାନ୍ତିନିକେତନରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ସେମିନାର୍ କାର୍ଯ୍ୟକ୍ରମରେ ବେଶ୍ ଗୁରୁତ୍ୱ ଓ ତାତ୍ପର୍ଯ୍ୟ ଥିଲା । ପ୍ରତି ମାସ ଅନ୍ତତଃ ଯୋଡ଼ିଏ ଲେଖାଁଏ ସେମିନାର୍‌ରେ ଛାତ୍ରଛାତ୍ରୀମାନେ ପ୍ରବନ୍ଧ ପାଠ କରୁଥିଲେ ଏବଂ ପଠିତ ପ୍ରବନ୍ଧ ଉପରେ ଛାତ୍ର-ଅଧ୍ୟାପକ ମିଳିମିଶି ଆଲୋଚନା କରୁଥିଲେ । କୌଣସି କୌଣସି ସେମିନାର ବୈଠକରେ ବିଶ୍ୱଭାରତୀ କିମ୍ବା ବହିରାଗତ କେହି ବିଶିଷ୍ଟ ବ୍ୟକ୍ତି ଆମନ୍ତ୍ରିତ ହୋଇ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରସଙ୍ଗ ଉପରେ ଆଲୋଚନା କରୁଥିଲେ । ଏହାଦ୍ୱାରା ଆମେ ବିଶେଷ ଉପକୃତ ହେଉଥିଲୁ । ଏବେ ଆମ ରାଜ୍ୟର ଉଚ୍ଚ ଶିକ୍ଷାନୁଷ୍ଠାନଗୁଡ଼ିକରେ ସେମିନାର କାର୍ଯ୍ୟକ୍ରମ ବୋଇଲେ ଅନେକେ ସାଧାରଣତଃ ବଣଭୋଜି, ପ୍ରମୋଦ-ଭ୍ରମଣ, ସରସ୍ୱତୀ ପୂଜା ପରି ଆମୋଦଦାୟୀ କାର୍ଯ୍ୟକ୍ରମ ବୋଲି ବୁଝିଥାଆନ୍ତି । କିନ୍ତୁ ପ୍ରକୃତ ଓ ଅସଲ ସେମିନାର କାର୍ଯ୍ୟକ୍ରମ ହେଉଛି – ବିଭିନ୍ନ ବିଷୟରେ ଅଧ୍ୟାପକ-ଛାତ୍ରଙ୍କର ମିଳିତ ଆଲୋଚନା-ଚର୍ଚ୍ଚା । ଉଚ୍ଚ ଶିକ୍ଷା (ଅନର୍ସ, ଏମ୍.ଏ., ଏମ୍.ଫିଲ୍. ଇତ୍ୟାଦି) କ୍ଷେତ୍ରରେ ଏଭଳି ସେମିନାର ଅପରିହାର୍ଯ୍ୟ । ଏଥିରେ ପ୍ରଶ୍ନୋତ୍ତର, ମତ ବା ଭାବର ଆଦାନ-ପ୍ରଦାନ ଦ୍ୱାରା ବିଦ୍ୟାର୍ଥୀମାନେ କେବଳ ନୂତନ ଜ୍ଞାନ ଅର୍ଜନ କରନ୍ତି ନାହିଁ, ପୂର୍ବ ଅର୍ଜିତ ଜ୍ଞାନକୁ ପରିମାର୍ଜିତ ଓ ପରିପୁଷ୍ଟ କରିଥାଆନ୍ତି । ମାନବ ସଭ୍ୟତା ଆରମ୍ଭରୁ ବିଶ୍ୱର ସକଳ ପ୍ରକାର ଜ୍ଞାନ-ବିଜ୍ଞାନ ଆମେ ମୁଖ୍ୟତଃ ଏହି ଆଲୋଚନା-ଚର୍ଚ୍ଚା, ପ୍ରଶ୍ନୋତ୍ତର, ଦାୟିକା ବା ସମ୍ବାଦ, ଡାଇଲଗ୍ ଓ ଡିସ୍‌କସନ୍ ଦ୍ୱାରା ହିଁ ଲାଭ କରିଥାଉଁ । ବେଦର ସମ୍ବାଦସୂକ୍ତ, ପ୍ଲାଟୋ-ଏରିଷ୍ଟଟଲ ପ୍ରମୁଖ ଗ୍ରୀକ୍ ମନୀଷୀମାନଙ୍କର ଡାଇଲଗ୍, ଆମ ରାଜ୍ୟର ଦାୟିକା ବା ପ୍ରଶ୍ନୋତ୍ତର ପ୍ରଭୃତି ଏହାର ଉଜ୍ଜ୍ୱଳ ଉଦାହରଣ । ଭାରତରେ ପ୍ରାଚୀନ ଗୁରୁକୁଳ ବା ବ୍ରହ୍ମଚର୍ଯ୍ୟାଶ୍ରମଗୁଡ଼ିକରେ, ଯଜ୍ଞସ୍ଥଳରେ ମୁନିଋଷିମାନେ ଯେଉଁ 'ସଂପାନ' କରୁଥିଲେ, କିମ୍ବା ବୌଦ୍ଧ ବିହାର ଓ ସଂଘମାନଙ୍କରେ ଯେଉଁ 'ସଂଗୀତି' ବା 'ମହାସଂଗୀତି' ମାନ ଅନୁଷ୍ଠିତ ହେଉଥିଲା, ଜ୍ଞାନ-ବିଜ୍ଞାନର ବିକାଶ କ୍ଷେତ୍ରରେ ତାହାର ବଳିଷ୍ଠ ଭୂମିକା ଥିବାର ଦେଖାଯାଏ । ଆମ ରାଜ୍ୟରେ ପୂର୍ବରୁ ଆଧ୍ୟାତ୍ମ ଜ୍ଞାନ ଗୁରୁ-ଶିଷ୍ୟଙ୍କ ପ୍ରଶ୍ନୋତ୍ତର, ଶୁକ ପରୀକ୍ଷିତ ଉବାଚ ବା ଯଦୁ ଅବଧୂତ ସମ୍ବାଦ ମାଧ୍ୟମରେ ହିଁ ପ୍ରସାର ଲାଭ କରିଥିବାର ପରିଲକ୍ଷିତ ହୁଏ । ଏହିପରି ଦାୟିକା, ସମ୍ବାଦ, ଡାଇଲଗ୍ ବା ଡିସକସନ୍ ଜ୍ଞାନିପିପାସୁ ସମଧର୍ମା ବ୍ୟକ୍ତିମାନଙ୍କର ଏକତ୍ର ମେଳନ ବା ସହାବସ୍ଥାନ ଦ୍ୱାରା ସମ୍ଭବ ହୋଇଥାଏ । ସେମିନାର, ସିଂପୋସିୟମ୍ ହେଉଛି ତାହାରି ଆଧୁନିକ ରୂପ । ଉଚ୍ଚତର ଅଧ୍ୟୟନ ଅଧ୍ୟାପନା ସ୍ତରରେ ସେମିନାର କାର୍ଯ୍ୟକ୍ରମର ଉପଯୋଗିତା ସଂପର୍କରେ ଡକ୍ଟର ରାଧାକୃଷ୍ଣନ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ 'ଇଉନିଭରସିଟି ଏଜୁକେସନ୍ କମିସନ୍' (୧୯୪୮-୪୯) ସ୍ପଷ୍ଟ ମତ ବ୍ୟକ୍ତ କରିଛନ୍ତି –

Seminars : A group of mature minds working in one subject engages in a joint discussion. X X X The objectives are to stimulate discussion, clarify issues and arrive at the truth through co-operative approach. Seminars in this sense are not adapted for use at the under-graduate level, but should be employed for the development of Post-graduate student pursuing work for Master's or Doctor's degrees. (The Report of the University Education Commission, Vol. I, Published by the Manager of Publication, Govt. of India Press, Simla-1950, Pages 109-10)

ବିଶ୍ୱଭାରତୀ ବିଭାଗୀୟ ସେମିନାରରେ ସେତେବେଳେ ମୋର ଯେଉଁ ପ୍ରବନ୍ଧମାନ ପଠିତ ଓ ଆଲୋଚିତ ହୋଇଥିଲା, ତନ୍ମଧ୍ୟରୁ ଅଧିକାଂଶ ମୋ 'ପ୍ରଗତି ସାହିତ୍ୟ' (୧୯୫୮) ଗ୍ରନ୍ଥରେ ସନ୍ନିବେଶିତ ହୋଇଛି । 'ପ୍ରଗତି ସାହିତ୍ୟ'ର ଶେଷ ପ୍ରବନ୍ଧ 'ଫକୀରମୋହନ : ଦେଶ ଓ କାଳ' ଏମ୍.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ଦୁଇ ଶହ ମାର୍କର ସନ୍ଦର୍ଭର ଅଂଶବିଶେଷ । ଏହି ସନ୍ଦର୍ଭର ବହିଃ ପରୀକ୍ଷକ ଥିଲେ – Modern Oriya Literature ଗ୍ରନ୍ଥର ଲେଖକ ଅଧ୍ୟାପକ ପ୍ରିୟରଞ୍ଜନ ସେନ । ସେ ମହାଶୟ ମୋ ସନ୍ଦର୍ଭର ପ୍ରଶଂସା କରିବା ସଂଗେ ସଂଗେ କେତେକ ଯୁକ୍ତିଯୁକ୍ତ ପରିମାର୍ଜନ ପାଇଁ ପରାମର୍ଶ ଦେଇଥିଲେ । 'ଅନୁଷ୍ଠାନ' ଓ 'ପ୍ରତିଷ୍ଠାନ' କଥା ଯୋଡ଼ିକ ମଧ୍ୟରେ ଥିବା ତାତ୍ପର୍ଯ୍ୟପୂର୍ଣ୍ଣ ପାର୍ଥକ୍ୟ ସେ ମୋତେ ସ୍ପଷ୍ଟ ଭାବରେ ବୁଝାଇ ଦେଇଥିଲେ । ଏମ୍.ଏ. ତଥା ଏମ୍.ଫିଲ୍. ସ୍ତରରେ ସନ୍ଦର୍ଭ ରଚନାର ବ୍ୟବସ୍ଥା ଉତ୍ତମ ଓ ସ୍ପୃହଣୀୟ । ଶିକ୍ଷକ ଶିକ୍ଷାର୍ଥୀ ଏ ବ୍ୟବସ୍ଥାକୁ ନିଜ ନିଜର ନ୍ୟସ୍ତସ୍ୱାର୍ଥ ପାଇଁ ବ୍ୟବହାର ନ କଲେ, ଯାହା ଏବେ ଅଧିକାଂଶ ବିଶ୍ୱବିଦ୍ୟାଳୟରେ ହେଉଥିବାର ମୁଁ ଲକ୍ଷ୍ୟ କରୁଛି, ଏଥିରୁ ସୁଫଳ ମିଳିବା ଅବଶ୍ୟମ୍ଭାବୀ !

## ସାଧସାଧନାର ଶାଖା ଶାନ୍ତିନିକେତନ-୨

ବିଶ୍ୱଭାରତୀର ବିଦ୍ୟାଭବନରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ବ୍ୟତୀତ ସେତେବେଳେ କଳାଭବନରେ ବେଶି ଓଡ଼ିଆ ଛାତ୍ର ଛାତ୍ରୀ ଅଧ୍ୟୟନ କରୁଥିଲେ । ସେମାନେ ସାଧାରଣତଃ ଓଡ଼ିଶା ସରକାରଙ୍କ ବୃତ୍ତି ପାଇ ସେଠାକୁ ଚିତ୍ରକଳା ଶିକ୍ଷା କରିବା ପାଇଁ ଯାଉଥିଲେ । ଆମ ରାଜ୍ୟରେ ଚିତ୍ରକଳାଦି ଶିକ୍ଷା ପାଇଁ ସେ ସମୟରେ କିଛି ସୁବିଧା ନ ଥିବାରୁ ସରକାରଙ୍କ ପକ୍ଷରୁ ଏପରି ବୃତ୍ତି-ପ୍ରଦାନର ବ୍ୟବସ୍ଥା କରାଯାଇଥିଲା । ପରେ

ଖଲିକୋଟ କଳା ବିଦ୍ୟାଳୟ (୧୯୫୭) ପ୍ରତିଷ୍ଠିତ ହେବାରୁ ଏ ବ୍ୟବସ୍ଥା ବନ୍ଦ ହୋଇଯାଇଛି; ତାହା ଫଳରେ କଳାଭବନକୁ ଏବେ ଆଉ ବେଶି ଛାତ୍ରଛାତ୍ରୀ ଯାଉ ନାହାନ୍ତି । ମୋ ସମୟରେ କଳାଭବନରେ ଶିକ୍ଷାଲାଭ କରୁଥିଲେ – ଶ୍ରୀ ରବିନାରାୟଣ ନାୟକ, ଶ୍ରୀମତୀ ଭକ୍ତିଲତା ବେହୁରିଆ, ଶ୍ରୀ ବିନୋଦ ରାଉତରାୟ, ଶ୍ରୀ ଜଗନ୍ନାଥ ଦାସ, ସ୍ୱର୍ଗୀୟ ଯଦୁନାଥ ସୂପକାର ପ୍ରମୁଖ ଶିଳ୍ପୀବୃନ୍ଦ । ମୋର ଶାନ୍ତିନିକେତନ ଯିବା ପୂର୍ବରୁ ସେଠାରେ ମଧ ଶ୍ରୀ ଅଜିତକେଶରୀ ରାୟ, ସୋମ୍ ଦମ୍ପତି – ଗୌରାଙ୍ଗ ଓ ବୀଣା ପ୍ରମୁଖ ଏବର ଖ୍ୟାତନାମା ଶିଳ୍ପୀମାନେ ଅଧ୍ୟୟନ କରୁଥିଲେ । ସେହିପରି ସଙ୍ଗୀତ ଭବନରେ ନୃତ୍ୟ-ସଂଗୀତ ଶିଖୁଥିଲେ ଭଦ୍ରକର ବିଶିଷ୍ଟ ସଂଗୀତଜ୍ଞ ମନମୋହନ ସାବତଙ୍କ କନ୍ୟା ଶାନ୍ତିଲତା ସାବତ । ପରେ ବାରିପଦାର ବ୍ରତତୀ ମହାପାତ୍ର, ବ୍ରହ୍ମପୁରର ସରସ୍ୱତୀ ଗନ୍ତାୟତ ମଧ ସଂଗୀତ ଭବନରେ ଅଧ୍ୟୟନ କରିଥିଲେ । ମୋ ଥିବା କାଳରେ କନିକା ପ୍ରଜା ଆନ୍ଦୋଳନର ଅନ୍ୟତମ ନେତା ଶ୍ରୀ ଦିବାକର ଘଡ଼େଇଙ୍କ କନ୍ୟା ରତ୍ନମଞ୍ଜୁଳା ଘଡ଼େଇ ପାଠ ଭବନରେ ପଢୁଥିବା ସଙ୍ଗେ ସଙ୍ଗେ ନାଚଗୀତ ମଧ ଶିଖୁଥିଲେ । କବି ରବୀନ୍ଦ୍ରନାଥଙ୍କ ନୃତ୍ୟନାଟ୍ୟ 'ଚିତ୍ରାଙ୍ଗଦା'ରେ ସେ ସାଫଲ୍ୟର ସହ ଅଭିନୟ କରୁଥିଲେ ।

ଶାନ୍ତିନିକେତନ ଆଶ୍ରମର ସେତେବେଳେ ଏକ ଆକର୍ଷଣୀୟ କେନ୍ଦ୍ର ଥିଲା ସାଧାରଣ ଭୋଜନ-ଗୃହ । ସେଠାରେ ବିଶ୍ୱଭାରତୀର ପ୍ରାୟ ସମସ୍ତ ଭବନ ତଥା ବିଭାଗର ଶିକ୍ଷକ-ଶିକ୍ଷିକା ଓ ଛାତ୍ର ଛାତ୍ରୀଗଣ ଦିନ ମଧରେ ପାଞ୍ଚଥର ଖିଆପିଆ ପାଇଁ ଏକତ୍ର ହେଉଥିଲେ । ପ୍ରଭାତ କାଳରେ କୌଣସି ଉଷ୍ଣ ପାନୀୟ, ସକାଳ ଆଠ ଘଣ୍ଟା ବେଳେ ଜଳଖିଆ, ମଧାହ୍ନ ବାର ଘଣ୍ଟା ବେଳକୁ ଦିବା ଭୋଜନ, ଅପରାହ୍ନ ଚାରିଟା ବେଳକୁ ସ୍ୱଳ୍ପ ଜଳଖିଆ ସହିତ କିଛି ଉଷ୍ଣ ପାନୀୟ ଏବଂ ରାତି ଆଠଟା ବେଳକୁ ନୈଶ ଭୋଜନ ଅବକାଶରେ ଆଶ୍ରମର ଅଧିକାଂଶ ଶିକ୍ଷକ ଶିକ୍ଷିକା, ଛାତ୍ର ଛାତ୍ରୀ ଗବେଷକ-ଗବେଷିକା ପରସ୍ପର ମିଳାମିଶା, ଆଳାପ-ଆଲୋଚନା କରିବାକୁ ସୁଯୋଗ ପାଉଥିଲେ । ବେଳେବେଳେ ବହିରାଗତ ବିଶ୍ୱଭାରତୀର ନିମନ୍ତ୍ରିତ ଅତିଥିମାନେ ଆମ ସହିତ ସେହି ସାଧାରଣ ଭୋଜନଗୃହରେ ବସି ଏକତ୍ର ଭୋଜନ କରୁଥିଲେ । ସେବର ବିଶ୍ୱଭାରତୀର ଆଚାର୍ଯ୍ୟ ପଣ୍ଡିତ ନେହେରୁ ନିଜର କନ୍ୟା ଇନ୍ଦିରା ଗାନ୍ଧୀଙ୍କ ସହ ଥରେ ଆମ ସାଙ୍ଗରେ ସେଠାରେ ଭୋଜନ କରିଥିଲେ । ସାଧାରଣ ଭୋଜନ ଗୃହରେ ଆମର ଏକ ପ୍ରୀତିପଦ କାର୍ଯ୍ୟ ଥିଲା – ପରିଚାରକମାନଙ୍କ ଭାତ-ତରକାରୀ ଆଦି ପରିବେଷଣରେ ସାହାଯ୍ୟ କରିବା । କେତେକ ବିଦେଶିନୀ ଛାତ୍ରୀ ଓ ଗବେଷିକା ଶାଢ଼ୀ ପିନ୍ଧି, ପଣତ କାନିକୁ ଅଣ୍ଟାରେ ଭିଡ଼ି, ପରଷିବା ପାଇଁ ବାହାରି ପଡୁଥିଲେ । କଣ୍ଟା ଚାମଚରେ ଖାଇବାରେ ଅଭ୍ୟସ୍ତ ସେମାନେ ପୁଣି ଯେତେବେଳେ ଡାହାଣ-ବାମ ଉଭୟ ହାତ ଲଗାଇ ଡାଲି-ତରକାରୀ ହାଁପୁଡ଼ି

ଖାଉଥିଲେ, ତାହା ବେଶ୍ ଆମୋଦକର ଦୃଶ୍ୟ ଥିଲା । ଶାନ୍ତିନିକେତନର ସେହି ସାଧାରଣ ଭୋଜନ-ଗୃହର ସମାବେଶ ଏବେ ଆଉ ହେଉନାହିଁ ।

ଆଶ୍ରମରେ ପ୍ରାୟ ପ୍ରତି ସପ୍ତାହରେ କିଛି-ନା-କିଛି ନୃତ୍ୟ-ସଙ୍ଗୀତର ଆସର, ସାଧାରଣ ସାହିତ୍ୟ-ସଭା ଓ ବକ୍ତୃତାର ବ୍ୟବସ୍ଥା କରାଯାଇଥାଏ । ବିଶ୍ୱଭାରତୀର ଛାତ୍ର-ଛାତ୍ରୀଙ୍କ ଦ୍ୱାରା ଅଭିନୀତ 'ଚିତ୍ରାଙ୍ଗଦା', 'ତାସେର୍ ଦେଶ୍' ଆଦି ରବୀନ୍ଦ୍ରନାଥଙ୍କର ବିଭିନ୍ନ ନୃତ୍ୟନାଟ୍ୟ ପ୍ରତ୍ୟକ୍ଷ କରି ସେତେବେଳେ ମୁଁ ଅଭିଭୂତ ହୋଇ ପଡୁଥିଲି । ସାଧାରଣ ବକ୍ତୃତା ପ୍ରଦାନ କାର୍ଯ୍ୟକ୍ରମରେ ଥରେ ପଣ୍ଡିତ ନୀଳକଣ୍ଠ ଦାସ ଚୀନାଭବନ ସଭାକକ୍ଷରେ ବହୁ ପଣ୍ଡିତ ଓ ବିଜ୍ଞ ବ୍ୟକ୍ତିଙ୍କ ସମାବେଶରେ ଭାଷଣ ଦେଇଥିଲେ, ଯେତେ ଦୂର ମନେ ପଡୁଛି, ଜଗନ୍ନାଥ ଧର୍ମ ସଂପର୍କରେ । କଳାଭବନ 'ନନ୍ଦନ'ରେ ମଝିରେ ମଝିରେ ଚିତ୍ରକଳାର ପ୍ରଦର୍ଶନୀ ଅନୁଷ୍ଠିତ ହେଉଥିଲା । ତାହା ମଧ ମୋର ନୟନ-ମନ-ରସାୟନ କରୁଥିଲା । ସବୁଠାରୁ ବେଶି ଆକର୍ଷଣୀୟ ଥିଲା – ଶାନ୍ତିନିକେତନର ଋତୁ-କ୍ରମିକ ଉତ୍ସବଗୁଡ଼ିକ । ଦୋଳ ପୂର୍ଣ୍ଣିମାରେ ବସନ୍ତୋତ୍ସବ, ବର୍ଷା ଆରମ୍ଭରେ ହଳକର୍ଷଣ ଓ ବୃକ୍ଷରୋପଣ, ଶୀତ କାଳରେ ପୌଷମେଳା ପ୍ରଭୃତି କେବଳ ଆଶ୍ରମବାସୀଙ୍କ ନିମନ୍ତେ ନୁହେଁ, ବାହାରର ଲୋକମାନଙ୍କ ପାଇଁ ମଧ ଆକର୍ଷଣୀୟ ଓ ପ୍ରୀତିପଦ ହେଉଥିଲା । ପଶ୍ଚିମବଙ୍ଗ ଓ ଅନ୍ୟାନ୍ୟ ସ୍ଥାନରୁ ହଜାର ହଜାର ଦର୍ଶକ ଏହି ଉତ୍ସବ ଦିନମାନଙ୍କରେ ଶାନ୍ତିନିକେତନ ଆସି ଭିଡ଼ ଜମାଇଥାଆନ୍ତି । ବିଶେଷତଃ ଶାନ୍ତିନିକେତନର ବିଖ୍ୟାତ ପୌଷମେଳା କଥା ଏଠାରେ ଉଲ୍ଲେଖ କରିବି । ପୌଷ ମାସ ସାତ ଦିନରୁ ଏହି ମେଳା ଆରମ୍ଭ ହୋଇ ତିନି-ଚାରିଦିନ କାଳ ଚାଲିଥାଏ । ପୌଷ ସାତ ତାରିଖରେ କବି ରବୀନ୍ଦ୍ରନାଥ ସେଠାରେ ବ୍ରହ୍ମଚର୍ଯ୍ୟାଶ୍ରମ ବା ଆଶ୍ରମ ସ୍କୁଲ ଆରମ୍ଭ କରିଥିଲେ, ମହର୍ଷି ଦେବେନ୍ଦ୍ରନାଥ ଏହି ଦିନରେ ହିଁ ଦୀକ୍ଷାଲାଭ କରିଥିଲେ । ଏହାର ସ୍ମାରକୀ ସ୍ୱରୂପ ପୌଷମେଳାର ଅନୁଷ୍ଠାନ । ପୂର୍ବରୁ ଏହି ମେଳାର ଗୋଟିଏ ଦିନ ବିଶ୍ୱଭାରତୀର ସମାବର୍ତ୍ତନ ପାଇଁ ଉଦ୍ଦିଷ୍ଟ ଥିଲା, କିନ୍ତୁ ଏବେ ଆଉ ପୌଷମେଳା ଭିତରେ ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହେଉନାହିଁ । ପୌଷମେଳାରେ 'କବିଗାନ' ଓ 'ବାଉଲ୍' ନାଚଗୀତ ଗୋଟିଏ ଆକର୍ଷଣୀୟ ବିଭାବ । ବାଉଲ୍ ଗାନ ପ୍ରେମ-ପ୍ରୀତିର ଉଦ୍‌ବେଳିତ ପ୍ରବାହ; ଏଥିରେ ଓଡ଼ିଆ ଶରୀରଭେଦ ଭଜନ ପରି ଗୂଢ଼ ଅର୍ଥ ଅନ୍ତର୍ନିହିତ ଥାଏ । 'କବିଗାନ' ଓଡ଼ିଶାର ଦାସକାଠିଆ ସହିତ ତୁଳିତ ହୋଇପାରେ । ପୌଷମେଳା ଶେଷ ଦିନ ରାତିରେ ନାନା ପ୍ରକାର ରୋଷଣୀ ବାଣ ଫୁଟାଯାଏ । ହଜାର ହଜାର ଦର୍ଶକ ମୁଗ୍ଧଚକିତ ହୋଇ ତାହା ଉପଭୋଗ କରିଥାଆନ୍ତି ।

ଶାନ୍ତିନିକେତନରେ ମୁଁ ଯେଉଁ ଅଣ-ଓଡ଼ିଆ ବ୍ୟକ୍ତିମାନଙ୍କର ସାନ୍ନିଧ ଓ ସାହଚର୍ଯ୍ୟ ଲାଭ କରିଥିଲି, ସେମାନଙ୍କ ମଧରେ 'ଭାରତୀ ଦା' ଥିଲେ ମୋର ଅତି ଘନିଷ୍ଠ । ସେ

ଥିଲେ ବିଦ୍ୟାଭବନର ଅଫିସ୍ ସୁପରିନ୍‌ଟେଣ୍ଡେଣ୍ଟ୍ । ତାଙ୍କର ପ୍ରକୃତ ନାମ କାହାରିକୁ ଜଣା ନ ଥିଲା; 'ଶ୍ରୀ ଭାରତୀ' ନାମରେ ହିଁ ସେ ଦସ୍ତଖତ୍ କରୁଥିଲେ । ତାଙ୍କର ବ୍ୟକ୍ତିଗତ ଜୀବନ ଥିଲା ରହସ୍ୟମୟ । ପୂର୍ବରୁ ସେ କୁଆଡ଼େ ବଙ୍ଗଳାର ଟେରରିଷ୍ଟ୍ ଆନ୍ଦୋଳନରେ ଯୋଗ ଦେଇଥିଲେ; ଇଂରେଜ ଶାସନ କାଳରେ ତାଙ୍କ ନାମରେ ପୋଲିସ୍ କେସ୍ ହୋଇଥିଲା । ଶାନ୍ତିନିକେତନରେ ଆସି ସେ ଆତ୍ମଗୋପନ କରିଥିଲେ । ସେ ଥିଲେ ଅବିବାହିତ, ପୁଣି ତାନ୍ତ୍ରିକ । ଶ୍ମଶାନକୁ ଯାଇ ରାତ୍ରି କାଳରେ, କାଳୀ-ସାଧନା କରୁଥିଲେ । ଥରେ ଆମାବାସ୍ୟା ତିଥିରେ ରାତି ଅଧରେ ମୁଁ ତାଙ୍କ ସହିତ ଅଜୟ ନଦୀ କୂଳସ୍ଥ ଏକ ଶ୍ମଶାନକୁ ଯାଇଥିଲି । ମୋତେ ଗୋଟାଏ ବରଗଛ ମୂଳରେ ଠିଆ କରାଇ ଦେଇ – ଡରଭୟ ନ କରିବାକୁ କହି, ଶ୍ମଶାନର ଗୋଟିଏ ମୁଣ୍ଡରେ ଥିବା କାଳୀ ମୂର୍ତ୍ତିଙ୍କୁ ସେ ପୂଜା ଦେବାକୁ ଗଲେ । ଭୂତପ୍ରେତଙ୍କ ପ୍ରତି ମୋର ବିଶ୍ୱାସ ନ ଥିଲେ ହେଁ, ସେହି ନିର୍ଜନ ଭୟଙ୍କର ପରିବେଶରେ ମୁଁ ଟିକିଏ ଶଙ୍କିତ ଚିତ୍ତରେ ଠିଆ ହୋଇ ରହିଲି । କିଛି ସମୟ ପରେ ଭାରତୀ ଦା' ପୂଜା ଶେଷ କରି ବାହୁଡ଼ିଲେ ଏବଂ ମୋ କପାଳରେ ସିନ୍ଦୂର କିଂବା ପାଉଁଶ ଭଳି ଗୋଟାଏ ଜିନିଷର ଟିପା ମାରିଦେଲେ । ତନ୍ତ୍ର-ସାଧନା ଖରାପ କଥା ନୁହେଁ, ହିନ୍ଦୁ ଧର୍ମରେ ତନ୍ତ୍ରର ବିଶେଷ ସ୍ଥାନ ରହିଛି ବୋଲି ବାହୁଡ଼ା ପଥରେ ସେ ମୋତେ ବୁଝାଇ ବୁଝାଇ ଆସିଲେ । ସମଗ୍ର ବୀରଭୂମ ଜିଲ୍ଲା ତନ୍ତ୍ର ସାଧନା ପାଇଁ ବିଖ୍ୟାତ । ଆଉ କେତେକ ଜଣାଶୁଣା ତନ୍ତ୍ର ପୀଠ ପାଖଆଖରେ ଥିବାର ମୁଁ ଜାଣିଥିଲି । ଭାରତୀ ଦା'ଙ୍କ ସହିତ ବୁଲାବୁଲି କରି ତାହାର କିଛି ପ୍ରତ୍ୟକ୍ଷ ଅଭିଜ୍ଞତା ଲାଭ କରିଥିଲି । ବଙ୍ଗଳାର ଗ୍ରାମ୍ୟ ଜୀବନରେ ଚାଷବାସ, ବିବାହ ବ୍ରତ, ପୂଜାପାର୍ବଣାଦି ବିଷୟରେ ମଧ ଅବହିତ ହୋଇଥିଲି । ଶାନ୍ତିନିକେତନର ଅନତିଦୂରରେ ଥିବା ଆଦିବାସୀ ପଲ୍ଲୀକୁ ଯାଇ ଆମେ ଥରେ ଆଦିବାସୀଙ୍କର ଖାଦ୍ୟ ଚାଖିଥିଲୁଁ । ଘୁଷୁରୀ ମାଂସ ସହିତ ହାଣ୍ଡିଆର ବିଚିତ୍ର ସ୍ୱାଦ ଭାରତୀ ଦା'ଙ୍କୁ କିପରି ଲାଗୁଥିଲା ଜାଣେନା, ମୋତେ କିନ୍ତୁ ନିହାତି ଖରାପ ଲାଗୁ ନ ଥିଲା । ଭାରତୀ ଦା' ଆଉ ନାହାନ୍ତି । ଭଦ୍ରକ କଲେଜରେ କାର୍ଯ୍ୟ କରୁଥିଲା ବେଳେ ୧୯୬୧ କି ୬୨ ମସିହାରେ ଖବର ପାଇଲି ଯେ – ରୋଗ ଶଯ୍ୟାରେ ପଡ଼ି ସେ ତତ୍‌କାଳୀନ କେତେକ ଓଡ଼ିଆ ଛାତ୍ରଙ୍କୁ ମୋ କଥା ପଚାରୁଥିଲେ – ଜୀବନର ଶେଷ ମୁହୂର୍ତ୍ତରେ ମୋ ସାଙ୍ଗରେ ବୋଧହୁଏ 'କାରଣବାରି' ସେବନ କରିବା ପାଇଁ । ମୁଁ ହତଭାଗା ତାଙ୍କର ଶେଷ ଦର୍ଶନ ପାଇ ପାରିଲି ନାହିଁ, କି ତାଙ୍କୁ ମୋର ଶେଷ ସାନ୍ନିଧ ଦେଇ ପାରିଲି ନାହିଁ ।

କଲିକତାରୁ ସେତେବେଳେ ମାର୍କସ୍‌ବାଦୀ ସାହିତ୍ୟର ସ୍ରୋତ ଶାନ୍ତିନିକେତନ ଆଡ଼କୁ ବେଶ୍ ପ୍ରବାହିତ ହେଉଥାଏ  ଇଂରାଜୀ ଅନୁବାଦରେ ରୁଷୀୟ ତଥା ପୃଥିବୀର ଅନ୍ୟାନ୍ୟ

ଦେଶର ପ୍ରଗତିବାଦୀ କାବ୍ୟକବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧାଦିର ଗ୍ରନ୍ଥ ଓ ପତ୍ରପତ୍ରିକା ମୋତେ ପଢ଼ିବା ପାଇଁ ଭଲ ଲାଗୁଥାଏ । ଏହା ସବୁ ପଢ଼ିବା ସଂଗେ ସଂଗେ ବୋଲପୁର ଓ କଲିକତାର କେତେକ କମ୍ୟୁନିଷ୍ଟ୍ କର୍ମୀ ଓ ନେତାଙ୍କ ସହ ସଂପର୍କ ରଖିଥିଲି । ଦୋଳସାହୀ ହାଇସ୍କୁଲରେ ପଢ଼ିଲା ବେଳେ ସ୍ୱର୍ଗୀୟ ଗିରିଧାରୀ ସାହୁଙ୍କ ସଂପର୍କରେ ଆସି ମୁଁ କମ୍ୟୁନିଜିମ୍ ପ୍ରତି ପ୍ରବଣତା ପ୍ରକାଶ କରିଥିଲି । ସେହି ପ୍ରବଣତା ଭଦ୍ରକ ଓ କଟକରେ ଯଥାକ୍ରମେ ଆଇ.ଏ. ଏବଂ ବି.ଏ. ପଢ଼ିଲା ବେଳେ କ୍ରମଶଃ ଦାନା ବାନ୍ଧି ଯାଇଥିଲା । ଶାନ୍ତିନିକେତନରେ ମୁଁ ଏକପ୍ରକାର ଜଣେ କମ୍ୟୁନିଷ୍ଟ୍ କର୍ମୀ ପାଲଟି ଯାଇଥିଲି । କମ୍ୟୁନିଷ୍ଟ୍‌ମାନଙ୍କ ସଭାସମିତିରେ ଯୋଗଦାନ, କର୍ମୀ ଓ ନେତାଙ୍କ ସହ ଆଳାପ ଆଲୋଚନା, ବିଶେଷ କରି ମୋର ନିଶାଚର ଗତିରୀତି ଦେଖି କେତେକ ବନ୍ଧୁ ମୋତେ ସନ୍ଦେହୀ ଦୃଷ୍ଟିରେ ଦେଖିବାରେ ଲାଗିଲେ । ମୋର ସେତେବେଳେର ଲେଖା କବିତା, ଗଳ୍ପ ଆଦିରେ ସମାଜବାଦୀ ବାସ୍ତବତାର ଛାପ ଲକ୍ଷ୍ୟ କରି ସାହିତ୍ୟିକ ବନ୍ଧୁ ଶ୍ରୀ ନରେନ୍ଦ୍ରନାଥ ମିଶ୍ର, ମୋତେ ମାର୍କସ୍‌ବାଦୀ ଚେତନାର କବି ବୋଲି ଅଭିହିତ କଲେ । ପରେ ଅଧ୍ୟାପକ ଚିନ୍ତାମଣି ବେହେରା, ପ୍ରଫେସର୍ ନିତ୍ୟାନନ୍ଦ ଶତପଥୀ ପ୍ରମୁଖ ସମୀକ୍ଷକମାନେ ମୋର କାବ୍ୟ ସୃଷ୍ଟିକୁ ସେହି ମର୍ମରେ ହିଁ ଆଲୋଚନା କରି ଯାଇଛନ୍ତି ।

ଶାନ୍ତିନିକେତନରେ ମୁଁ ମୁଖ୍ୟତଃ କବିତା ଲେଖୁଥିଲି । ସେତିକିବେଳେ ରବୀନ୍ଦ୍ର ସଂଗୀତର ପ୍ରତୁଳ ପ୍ରଭାବ ମୋ ଉପରେ ପଡ଼ିଥିଲା । ଭାବ ଓ ସାଂଗୀତିକତାରେ ସମୃଦ୍ଧ ବହୁ ରବୀନ୍ଦ୍ର ସଂଗୀତର ମୁଁ ଥିଲି ଜଣେ ମୁଗ୍ଧ ଶ୍ରୋତା । ସେହି ସଂଗୀତର ଅନୁସରଣରେ ଗୁଡ଼ାଏ ଗୀତି କବିତା ବା ଲିରିକ୍ ଲେଖି ପକାଇଥିଲି ଯୁବସୁଲଭ ଉନ୍ମାଦନାରେ । ସେଥିରୁ ବାଛି ବାଛି ପଚାଶଟି ଗୀତିକବିତା ଗାନ କରାଯିବା ଉଦ୍ଦେଶ୍ୟରେ ପଠାଇ ଦେଇଥିଲି କଟକ ବେତାର କେନ୍ଦ୍ରକୁ । ବେତାରକେନ୍ଦ୍ର କର୍ତ୍ତୃପକ୍ଷ ତାହା ଗ୍ରହଣ କରି ମୋତେ କିଛି ପାରିତୋଷିକ ପ୍ରଦାନ କରିଥିଲେ । ମୋର ଆନନ୍ଦ କହିଲେ ନ ସରେ ! ସେହି ପାରିତୋଷିକ ଟଙ୍କାରେ ବାପାଙ୍କର ପ୍ରୋଭିଡ଼େଣ୍ଟ୍ ଫଣ୍ଡରୁ ମିଳିଥିବା କିଛି ଟଙ୍କା ମିଶାଇ କଲିକତାର କୋଣାର୍କ ପ୍ରେସ୍ (ଆସନ୍ତାକାଲି ପ୍ରେସ୍)ରୁ କାବ୍ୟଗ୍ରନ୍ଥଟିଏ ପ୍ରକାଶ କରାଇଲି । ତାହାହିଁ ମୋର ପ୍ରଥମ ପ୍ରକାଶିତ ଗ୍ରନ୍ଥ – 'ଚା କପ୍‌ରେ ଝଡ଼' (୧୯୫୩) । 'ମାନସଭୂମି' ଶୀର୍ଷକ ଏକ ଦୀର୍ଘ କବିତାକୁ ମିଶାଇ ଏଥିରେ ମୋଟ ଅଠରଟି କବିତା ସ୍ଥାନିତ ହୋଇଥିଲା । କବିତା-ନାଟକ ରଚନାରୁ ମୋର ସାହିତ୍ୟିକ ଜୀବନ ଆରମ୍ଭ କରିଥିଲି । ଏ ପର୍ଯ୍ୟନ୍ତ ମୋର ପାଞ୍ଚଟି କବିତା ବହି ପ୍ରକାଶିତ ହୋଇଛି; ତନ୍ମଧ୍ୟରୁ 'ଲଘୁପଞ୍ଚକ' (୧୯୮୩) ସୃଷ୍ଟିଛଡ଼ା ଛଦ୍ମନାମରେ ପ୍ରକାଶିତ । କିନ୍ତୁ ଏବେ କେହି ମୋତେ କବି ଭାବରେ ଗଣନା କରନ୍ତି ନାହିଁ । ନାଟ୍ୟକାର ତାଲିକାରେ ତ ମୋ ନାମରେ ଖଡ଼ିଗାର ପଡ଼େ ନାହିଁ ! ଅଥଚ

ମୁଁ ଗୋଟାଏ ନାଟକ (ଅପ୍ରକାଶିତ) ଏବଂ କିଛି ଏକାଙ୍କିକା ଲେଖିଛି । ମୋର ଗୋଟିଏ ଏକାଙ୍କୀ ସଞ୍ଚୟନ 'ଯଥା ନଳସ୍ୟ ଦମୟନ୍ତୀ' ୧୯୫୯ ମସିହାରେ ପ୍ରକାଶିତ ହୋଇଛି । ଭଦ୍ରକ ଅଞ୍ଚଳର ସୁପରିଚିତ ନାଟ୍ୟରଚନା, ଅଷ୍ଟାଦଶ ଶତାବ୍ଦୀ ଶେଷ ଭାଗର କବି ବଂଶୀବଲ୍ଲଭ ଗୋସ୍ୱାମୀଙ୍କ 'ମୋଗଲ ତାମସା' ସଂକଳନ ଓ ସଂପାଦନା ପୂର୍ବକ ୧୯୬୬ ମସିହାରେ ପ୍ରକାଶ କରାଇଛି ।

ସେହି ସମୟରେ ଶାନ୍ତିନିକେତନରୁ ଆମ ଦ୍ୱାରା ସଂପାଦିତ ହୋଇ କଲିକତାରୁ ସ୍ୱତନ୍ତ 'କବିତା' (୧୯୫୩) ପତ୍ରିକାର ପ୍ରକାଶ ଏକ ଉଲ୍ଲେଖନୀୟ ଘଟଣା । ସେତେବେଳେ ଶ୍ରୀ ହୃଦାନନ୍ଦ ମଲ୍ଲିକ (ପରେ ଧାମନଗରରୁ ବିଧାନସଭା ସଦସ୍ୟ) କୌଣସି କାରଣରୁ ଜନପ୍ରିୟ 'ଆସନ୍ତାକାଲି' ପତ୍ରିକା ସହ ନିଜର ସଂପର୍କ ଛିନ୍ନ କରି ଦେଇଥିଲେ । କଲିକତାରୁ ପ୍ରକାଶିତ ହୋଇ ସେଠାରେ ପ୍ରବାସୀ ଓଡ଼ିଆଙ୍କ ମଧ୍ୟରେ ତଥା ସମଗ୍ର ଓଡ଼ିଶାରେ 'ଆସନ୍ତାକାଲି'ର ପ୍ରସାର ଓ ପ୍ରତିଷ୍ଠା ମୁଖ୍ୟତଃ ତାଙ୍କରି କୃତିତ୍ୱ । ପତ୍ରିକାଟିକୁ ଯଥାସମ୍ଭବ ସଚିତ୍ର କରିବା – ଆକର୍ଷଣୀୟ ପ୍ରଚ୍ଛଦ ଓ ଗେଟ୍‌ଅପ୍‌ରେ ପ୍ରକାଶ କରିବା – ରାଶିଫଳ, ଓଡ଼ିଶାର ରାଜନୈତିକ ଓ ସାଂସ୍କୃତିକ ଘଟଣାବଳୀ ଉପରେ ମନ୍ତବ୍ୟ, ପ୍ରବାସୀ ଓଡ଼ିଆ ଅଞ୍ଚଳର ସାଂସ୍କୃତିକ କାର୍ଯ୍ୟାବଳୀର ବିବରଣୀ ସହ ଗଳ୍ପ-କବିତାଦି ପ୍ରକାଶ କରିବା – ସର୍ବୋପରି ମାସିକ ପତ୍ରିକା ପ୍ରକାଶନରେ ନିୟମିତତା ରକ୍ଷା କରିବା ଦିଗରେ ହୃଦାନନ୍ଦ ବାବୁ ବିଶେଷ ଧ୍ୟାନ ଦେଇଥିଲେ । ଫଳରେ ରାଜ୍ୟ ବାହାରେ ତଥା ଭିତରେ ପତ୍ରିକାଟି ବିଶେଷ ଜନପ୍ରିୟତା ଅର୍ଜନ କରିଥିଲା । 'ଆସନ୍ତାକାଲି' ଛାଡ଼ିଦେଲା ପରେ ସେ କଲିକତାରୁ ସେହିପରି ଏକ ସାହିତ୍ୟ ପତ୍ରିକା ପ୍ରକାଶନର ପରିକଳ୍ପନା କରୁଥିଲେ । ସେତେବେଳେ ମୁଁ ଶାନ୍ତିନିକେତନରୁ କଲିକତା ଆସିଲେ, ଅନେକ ସମୟରେ ଶ୍ୟାମବଜାର ଛକରେ ଥିବା 'ଓଡ଼ିଶା ହଷ୍ଟେଲ୍'ରେ ହୃଦାନନ୍ଦବାବୁଙ୍କ ପାଖରେ ରହୁଥିଲି । ହୃଦାନନ୍ଦବାବୁଙ୍କର ଆର୍ଥିକ ଅବସ୍ଥା ସେତେବେଳେ ଭଲ ନ ଥିଲା । ସେହି ଅବସ୍ଥାରେ ସେ ସାନ ପରିବାରଟି ଘେନି ଦୟନୀୟ ଭାବରେ ଓଡ଼ିଶା ହଷ୍ଟେଲ୍‌ର ଗୋଟିଏ ଛୋଟ ବଖରାରେ ରହୁଥାଆନ୍ତି । କିନ୍ତୁ ମନରେ ତାଙ୍କର ଉଚ୍ଚାଶା ଓ ସମାଜସେବା କରିବା ପାଇଁ କେତେକ ପରିକଳ୍ପନା ପୂରି ରହିଥିଲା ।

'ଆସନ୍ତାକାଲି' ଭଳି ଅନ୍ୟ ପତ୍ରିକାଟିଏ ବାହାର କରିବାକୁ ସେ ମୋ ସହିତ ତଥା ସର୍ବଶ୍ରୀ ଜଗଦୀଶ ପାଣି, ସୁକୁମାର ମହାନ୍ତି ପ୍ରମୁଖ କେତେଜଣ ପ୍ରବାସୀ ଓଡ଼ିଆ ସମାଜସେବୀଙ୍କ ସହ ଆଲୋଚନା କଲେ – ଆମର ପରାମର୍ଶ ଲୋଡ଼ିଲେ । ଆମେ ତାଙ୍କୁ ପରାମର୍ଶ ଦେଲୁଁ ଯେ – ସାଧାରଣ ସାଂସ୍କୃତିକ ମାସିକ ପତ୍ରିକାଟିଏ ବାହାର କରି ଆଉ ଲାଭ କ'ଣ ? କିଛି କବିତା, କେତୋଟି ଗଳ୍ପ, କିଛି ପ୍ରବନ୍ଧ-ଆଲୋଚନା ସ୍ଥାନିତ

କରି ଅନେକ ସାମୟିକ ପତ୍ରିକା ଓଡ଼ିଶାରୁ ବାହାରୁଛି – କଲିକତାରୁ ମଧ୍ୟ 'ଆସନ୍ତାକାଲି' ପ୍ରକାଶ ପାଇବାରେ ଲାଗିଛି । ବିଶେଷତଃ 'ଆସନ୍ତାକାଲି'ର ପ୍ରତ୍ୟୟକାରିତା ଓ ଜନପ୍ରିୟତାର ଉର୍ଦ୍ଧ୍ୱକୁ ଉଠି ତଦନୁରୂପ ଆଉ ଗୋଟିଏ ପତ୍ରିକା କଲିକତାରୁ ପ୍ରକାଶ ପୂର୍ବକ ତାହାର ସୁପ୍ରସାର ଘଟାଇବା କଷ୍ଟକର ବ୍ୟାପାର । ତେଣୁ ପତ୍ରିକା ପ୍ରକାଶ କ୍ଷେତ୍ରରେ ଏଣିକି ଆମର ଆଭିମୁଖ୍ୟ ବା ଦୃଷ୍ଟିକୋଣର ପରିବର୍ତ୍ତନ ଲୋଡ଼ା । ନିର୍ଦ୍ଦିଷ୍ଟ କୌଣସି ବିଷୟ ଘେନି – ସାହିତ୍ୟର କୌଣସି ଏକ ନିର୍ଦ୍ଦିଷ୍ଟ ବିଭାଗକୁ ଭିତ୍ତି କରି ପତ୍ରିକାଟିଏ ପ୍ରକାଶ କରିବା ଆବଶ୍ୟକ ହେଲାଣି । ଅର୍ଥାତ୍ ଓଡ଼ିଆ ପତ୍ରିକା ପ୍ରକାଶ କ୍ଷେତ୍ରରେ ଏଣିକି ସ୍ୱତନ୍ତ୍ରୀକରଣ ଲୋଡ଼ା – ସ୍ପେଶିଆଲାଇଜେସନ୍ ଦରକାର । ଏ ପରାମର୍ଶ ହୃଦାନନ୍ଦ ବାବୁ ଶୁଣିଲେ – ଏହାର ସାରବତ୍ତା ହୃଦୟଙ୍ଗମ କଲେ । ଶୁଭାରମ୍ଭ ହେଲା 'ଅଗ୍ରଣୀ' ପତ୍ରିକାର, ୧୯୫୩ ମସିହାରେ; ଏହା ବୋଧହୁଏ ପ୍ରଥମ ଗଳ୍ପଭିତ୍ତିକ ପତ୍ରିକା । ତଦ୍‌ପୂର୍ବରୁ କଟକରୁ 'ଓଡ଼ିଆ ଲେଖକ ସହଯୋଗ ସମିତି' ପକ୍ଷରୁ କଥାକାର ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତିଙ୍କ ସଂପାଦନାରେ ଯେଉଁ 'ଉଦୟ' ପତ୍ରିକା ପ୍ରକାଶ ପାଇଥିଲା, ତାହା କିନ୍ତୁ ଥିଲା ଗଳ୍ପ-ପ୍ରଧାନ; ତହିଁରେ କିଛି କିଛି କବିତା ମଧ୍ୟ ପ୍ରକାଶ ପାଉଥିଲା । 'ଅଗ୍ରଣୀ' ଥିଲା ବିଶୁଦ୍ଧ ଗଳ୍ପ-ପତ୍ରିକା । 'ଅଗ୍ରଣୀ' ପରେ ବ୍ରହ୍ମପୁର, ବାଲେଶ୍ୱର, କଟକ, ସମ୍ବଲପୁର ଆଦି ସ୍ଥାନରୁ କେତେକ ଗଳ୍ପ ପତ୍ରିକା ପ୍ରକାଶିତ ହୋଇଛି । 'ଅଗ୍ରଣୀ' ହିଁ ଏ କ୍ଷେତ୍ରରେ ଅଗ୍ରଣୀ, ଦିଗଦିଶାରୀ ବା ପଥ ପ୍ରଦର୍ଶକ ।

'ଅଗ୍ରଣୀ' ପତ୍ରିକାର ସଂପାଦନା ସହିତ ମୁଁ ଓତପ୍ରୋତ ଭାବରେ ଜଡ଼ିତ ଥିଲି । ଏଥିରେ ଗଳ୍ପ ସଂପର୍କରେ କ୍ଷୁଦ୍ର ଆଲୋଚନା ଓ ଛଦ୍ମନାମରେ 'ଫୁଟ୍‌ପାଥ୍‌ର ଡାଏରୀ' ଶୀର୍ଷକ ଏକ ଧାରାବାହିକ ଫିଚର୍ ଲେଖୁଥିଲି । ଅଳ୍ପ କେତୋଟି ସଂଖ୍ୟା ପ୍ରକାଶ ପାଇଲା ପରେ ଏହାର ପ୍ରସାର ଓ ସମାଦର ବୃଦ୍ଧି ଲାଭ କରିଥିଲା । 'ଅଗ୍ରଣୀ'ରେ କବିତା ପ୍ରକାଶ କରିବା ପାଇଁ କେତେକ କବି ବନ୍ଧୁ ହୃଦାନନ୍ଦବାବୁଙ୍କ ଉପରେ ଚାପ ପକାଇଥିଲେ । ଓଡ଼ିଶାରୁ ଏ ସଂପର୍କରେ କିଛି ଚିଠିପତ୍ର ମଧ୍ୟ ଆମର ହସ୍ତଗତ ହୋଇଥିଲା । ଏ ବିଷୟରେ 'କ'ଣ କରାଯିବ' ବୋଲି ହୃଦାନନ୍ଦବାବୁ ପଚାରିଲାରୁ ମୁଁ ତାଙ୍କୁ 'ଅଗ୍ରଣୀ ପ୍ରକାଶନୀ' ପକ୍ଷରୁ ସ୍ୱତନ୍ତ୍ର ଭାବେ କବିତାର ପତ୍ରିକାଟିଏ ପ୍ରକାଶ କରିବା ପାଇଁ ପରାମର୍ଶ ଦେଲି । ସେତେବେଳେ ବଙ୍ଗଳା ଓ ଇଂରାଜୀରେ ସ୍ୱତନ୍ତ୍ର କବିତା ପତ୍ରିକାମାନ ପ୍ରକାଶ ପାଉଥାଏ; ହୃଦାନନ୍ଦ ବାବୁଙ୍କୁ ତହିଁରୁ କିଛି ଆଣି ଦେଖାଇଲି । 'ଅଗ୍ରଣୀ' ପତ୍ରିକାର ସଫଳତାରେ ସେ ବିଶେଷ ଉତ୍ସାହିତ ହୋଇଥାନ୍ତି । ସ୍ଥିର ହେଲା – 'ଅଗ୍ରଣୀ'କୁ ପୂର୍ବ ଭଳି ଗଳ୍ପ ପତ୍ରିକା ରୂପେ ରଖି ସ୍ୱତନ୍ତ୍ର ଭାବରେ କବିତା ପତ୍ରିକାଟିଏ ପ୍ରକାଶ କରାଯିବ । ଆତ୍ମପ୍ରକାଶ କଲା ଅଗ୍ରଣୀ ପ୍ରକାଶନୀର 'କବିତା' – ଏହା ମଧ୍ୟ ହେଲା ଓଡ଼ିଆରେ ସର୍ବପ୍ରଥମ ସ୍ୱତନ୍ତ୍ର କବିତାର ପତ୍ରିକା ।

ଶାନ୍ତିନିକେତନରେ 'କବିତା' ପତ୍ରିକାର ସଂପାଦନା କାର୍ଯ୍ୟ ହେଉଥାଏ । କବି ଦୁର୍ଗାଚରଣ ପରିଡ଼ା ଏବଂ ମୁଁ ମିଳିତ ଭାବରେ ସଂପାଦନା କରୁଥାଉଁ । ପତ୍ରିକା ରେଜିଷ୍ଟ୍ରେସନ୍ ଇତ୍ୟାଦିର ଅସୁବିଧା ହେତୁ 'କବିତା'କୁ ସେତେବେଳେ 'ସଂକଳନ' ନାମରେ ଚିହ୍ନିତ କରାଯାଇଥିଲା । ଏହା ଥିଲା ଦ୍ୱିମାସିକ ସଂକଳନ । ଏହାର ପରିଚାଳନାରେ ଥିଲେ ହୃଦାନନ୍ଦବାବୁ ଏବଂ ସର୍ବଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ନିତ୍ୟାନନ୍ଦ ମହାପାତ୍ର, ପ୍ରହ୍ଲାଦ ପ୍ରଧାନ, କୁଞ୍ଜବିହାରୀ ଦାଶ ଓ ସଚ୍ଚିଦାନନ୍ଦ ରାଉତରାୟ ରହିଥିଲେ ଉପଦେଷ୍ଟା– ମଣ୍ଡଳୀରେ । 'କବିତା' ମଧ୍ୟ 'ଅଗ୍ରଣୀ' ଭଳି ଆଗ୍ରହୀ ସୁଧୀ ସମାଜରେ ସମାଦର ଲାଭ କରିଥିଲା । ଏହାର ମାତ୍ର ତିନିଟି ସଂଖ୍ୟା ବା ସଂକଳନ ବାହାରିଥିଲା । ପ୍ରଥମ ସଂଖ୍ୟାରେ ଚିନ୍ତାମଣି ବେହେରା, ଯଦୁନାଥ ଦାସ ମହାପାତ୍ର, କୁଞ୍ଜବିହାରୀ ଦାଶ, ବିନୋଦ ରାଉତରାୟ ପ୍ରମୁଖ ନଅ ଜଣ କବିଙ୍କର କବିତା – ଭାରତୀୟ ସାହିତ୍ୟରୁ ହିନ୍ଦୀ କବିତାର ସଂକ୍ଷିପ୍ତ ପରିଚୟ ସହିତ ସୂର୍ଯ୍ୟକାନ୍ତ ତ୍ରିପାଠୀ (ନିରାଲା) ଓ ସୁମିତ୍ରାନନ୍ଦନ ପନ୍ଥଙ୍କ କବିତାର ଅନୁବାଦ ଏବଂ ବିଦେଶୀ ସାହିତ୍ୟରୁ ମାର୍କିନ୍ ନିଗ୍ରୋ କବିତା, ସୋଭିଏଟ୍ ଦେଶ କବିତା ପ୍ରଭୃତିର ଅନୁବାଦ ପ୍ରକାଶ ପାଇଥିଲା । କବି ବିନୋଦଚନ୍ଦ୍ର ନାୟକଙ୍କର 'ନୀଳଚନ୍ଦ୍ରର ଉପତ୍ୟକା' କାବ୍ୟଗ୍ରନ୍ଥର ସମୀକ୍ଷା ଏହି ସଂଖ୍ୟାର ଏକ ବିଶିଷ୍ଟ ବିଭାବ ଥିଲା । ସଂପାଦକୀୟ ବକ୍ତବ୍ୟ ଥିଲା ଏହିପରି – 'କବିତା ଲେଖକକୁ ଦେଖିଲେ ଆଜି ଅନେକଙ୍କ ତୁଣ୍ଡରୁ ବାହାରି ପଡ଼େ – ଆହା, ବିଚାରା କବିଟିଏ ! କବି ଯେମିତି ସଂଗ୍ରାମବିମୁଖୀ ଗୋଟିଏ ନିରୀହ ଦୟନୀୟ ଜୀବ ! ସାଂପ୍ରତିକ ସମାଜ କବିକୁ ଆନ୍ତରିକ ଶ୍ରଦ୍ଧା ଓ ସମ୍ମାନ ଦେବାକୁ କୁଣ୍ଠିତ ହୁଏ – ଏହାହିଁ ନଗ୍ନ ସତ୍ୟ ! ବର୍ତ୍ତମାନ ପ୍ରଶ୍ନ ଉଠେ – ସାଧାରଣ ନାଗରିକ ପଦ୍ୟ ଅପେକ୍ଷା ଗଦ୍ୟ ପ୍ରତି ଏତେ ଶ୍ରଦ୍ଧାବାନ୍ କାହିଁକି ? ତା'ର କାରଣ ଅତି ସ୍ପଷ୍ଟ । ଗଦ୍ୟ ଆଜି ଗଣ-ଜୀବନର ଅତି ନିକଟବର୍ତ୍ତୀ ହୋଇଛି । ମଧ୍ୟଯୁଗୀୟ କୃତ୍ରିମତା ଏଥିରେ ନାହିଁ, ଅଛି ବାସ୍ତବ ସମାଜ-ଜୀବନ ପ୍ରତିବିମ୍ବନର ଆନ୍ତରିକ ସ୍ୱାକ୍ଷର । ଅନ୍ୟ ପକ୍ଷରେ କବିତା ସଂସ୍କାରଗତ ଆଳଙ୍କାରିକ କୃତ୍ରିମତା ଓ ଅବାଞ୍ଛିତ ଆତ୍ମବିଳାସ ଏ ପର୍ଯ୍ୟନ୍ତ ବି ଛାଡ଼ି ପାରିନି – ଯଥୋଚିତ ଭାବରେ ଜୀବନର ସମ୍ମୁଖୀନ ହୋଇ ପାରୁନି । X X ଆଜିର କବି ଯଦି ଏହିଭଳି ଆତ୍ମପ୍ରବଞ୍ଚନାକୁ ପ୍ରଶ୍ରୟ ଦିଏ ଏବଂ ତାର ଅଗଣନ ପାଠକକୁ ସମ୍ମାନ ଦେବାକୁ କୁଣ୍ଠିତ ହୁଏ, ତେବେ ପାଠକ ସମ୍ମାନ କରିବାକୁ ଯିବ କାହିଁକି କବିକୁ ? ପାଠକକୁ ସମ୍ମାନ କରିବା ଅଥବା ତା ଜୀବନର ବିଶ୍ୱସ୍ତ ଚିତ୍ରଣ ଦେବା ଏବଂ ତାର ଜଞ୍ଜାଳ-ଜୀର୍ଣ୍ଣ ଜୀବନରେ ଆଲୋକପାତ କରିବା, ଭିତର ଓ ବାହାର ଉଭୟ ମଧ୍ୟରେ ସାମଞ୍ଜସ୍ୟ ଆଣିବାର ଦାୟିତ୍ୱ ଆଜି କବି ଉପରେ ବେଶି ।

'କବିତାକୁ ଜନପ୍ରିୟ କରିବାକୁ ହେଲେ ଆମର ଐତିହ୍ୟ ପ୍ରତି ଆମକୁ ଅବହିତ ହେବାକୁ ପଡ଼ିବ । ପଡ଼ୋଶୀ ସାହିତ୍ୟ ଓ ଭାଷାର ଅବାଞ୍ଛନୀୟ ପ୍ରଭାବରୁ ମୁକ୍ତ ରହି ସ୍ୱୀୟ ସ୍ୱାତନ୍ତ୍ର୍ୟ ବଜାୟ ରଖିବାକୁ ହେବ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ କହିଲେ – ଆହରଣ କରିବାରେ ଲଜ୍ଜା ନାହିଁ, କିନ୍ତୁ ଆହରଣକୁ ଆତ୍ମସ୍ଥ କରିବା ଦରକାର । ଭାବ ଓ ପ୍ରକାଶଭଙ୍ଗୀ ଉଭୟ ଦିଗରୁ ନୂତନ ନୂତନ ପରୀକ୍ଷା-ନିରୀକ୍ଷା ଚଳେଇ କବିତାକୁ ଗତି-ଧର୍ମୀ କରିବାକୁ ପଡ଼ିବ ।

'ଏହା ହିଁ ମୋଟାମୋଟି ଆମର ଆଭିମୁଖ୍ୟ । ଜାଣୁ ନା, ଆମର ଏ ଉଦ୍ୟମରେ କେତେଦୂର ଆମେ ସାର୍ଥକ ହେବୁଁ । ପଥଚଲାରେ ଯଦି ବିଫଳତା ଆସେ, ତେବେ ସେ ବିଫଳତା ଆମକୁ ନୂତନ ଉଦ୍ୟମରେ ବ୍ରତୀ କରାଉ, ଏହା ହିଁ କାମନା ।' (କବିତା – ୧ମ ସଂକଳନ – ସେପ୍‌ଟେମ୍ବର – ଅକ୍ଟୋବର, ୧୯୫୩)

'କବିତା'ର ଦ୍ୱିତୀୟ ସଂକଳନରେ ନିତ୍ୟାନନ୍ଦ ମହାପାତ୍ର, ବୈକୁଣ୍ଠ ନାଥ ପଟ୍ଟନାୟକ, ଗୁରୁପ୍ରସାଦ ମହାନ୍ତି, ରାମପ୍ରସାଦ ପୁରୋହିତ, ଜାନକୀ ମହାନ୍ତି (ଭରଦ୍ୱାଜ) ପ୍ରମୁଖ କବିମାନଙ୍କର କବିତା ସ୍ଥାନିତ ହୋଇଥିଲା । ଭାରତୀୟ ସାହିତ୍ୟରୁ ବଙ୍ଗଳା କବିତାର ସଂକ୍ଷିପ୍ତ ପରିଚୟ ସହିତ କବି ଜୀବନାନନ୍ଦ ଦାସ ଓ ସୁଭାଷ ମୁଖୋପାଧ୍ୟାୟଙ୍କର କବିତାର ଅନୁବାଦ ଏବଂ ବିଦେଶୀ ସାହିତ୍ୟରୁ ତୁ.ୟୁ.ଆନ୍ (ଚୀନ୍), ଷ୍ଟିଫେନ୍ ସ୍ପେଣ୍ଡାର୍ (ଇଂରାଜୀ) ଓ ନାଜ୍‌ମ୍ ହିକ୍‌ମତ (ତୁର୍କୀ) ପ୍ରମୁଖଙ୍କ କବିତାର ଅନୁବାଦ ପ୍ରକାଶିତ ହୋଇଥିଲା । ଏହି ସଂଖ୍ୟାରେ 'ଆଧୁନିକ ତୁର୍କୀ କବିତା' ଶୀର୍ଷକରେ ମୁଁ ଏକ ଆଲୋଚନା ଲେଖିଥିଲି 'ସୃଷ୍ଟିଛଡ଼ା' ଛଦ୍ମନାମରେ । ଏହି ସଂଖ୍ୟାର ରାମପ୍ରସାଦ ପୁରୋହିତଙ୍କ କବିତାର କିୟଦଂଶ ପାଠକସମାଜ ଗୋଚରାର୍ଥେ ଉଦ୍ଧାର କରୁଛି –

ହେ ପ୍ରିୟ ସାରଥି !
ଧରଣୀରେ ଆଣିଦିଅ ବିପ୍ଳବର ସୁବର୍ଣ୍ଣ ପ୍ରଭାତୀ ।
ବନ୍ଧୁ ବିଦ୍ରୋହୀର
ତମରି ବିପ୍ଳବ ତାନେ ସୃଷ୍ଟି କର ନୂଆ ଏକ ସ୍ୱର ।
ମୃତ ଶତାବ୍ଦୀର ତମେ ନୁହେଁ ଏକ ଛିନ୍ନ ଇତିହାସ
ଗର୍ଭେ ତମ ଗର୍ଭୀଭୂତ ଧୂମାୟିତ ପିଙ୍ଗଳ ଆକାଶ ।
ଏ ଦେଶର ପ୍ରତି କାନେ ଅଭୟର ବାଣୀ ତମେ କହ
ତମରି ଇଂଗିତେ ହସେ ସୂର୍ଯ୍ୟ ଆଉ ନାଚେ ପଚା ଦେହ ।

ନୁହଁ ତମେ ବିପ୍ଳବର ଶେଷ ରାତ୍ରି
ସଂଗ୍ରାମର ପ୍ରଥମ ପ୍ରଭାତ
ତମରି ଶପଥେ ଫୁଟେ ଶତାବ୍ଦୀର ବିଜୟ ସଙ୍କେତ । x x
— (ସଂଗ୍ରାମର ପ୍ରଥମ ପ୍ରଭାତ, କବିତା ୨ୟ ସଂକଳନ – ୧୯୫୪)

ସେହିପରି, 'କବିତା'ର ତୃତୀୟ ସଂକଳନରେ ସ୍ୱର୍ଗୀୟ ଗଗନବିହାରୀ ମହାନ୍ତି, ପଦ୍ମଚରଣ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ, ବେଣୁଧର ରାଉତ, ଜଗନ୍ନାଥ ପ୍ରସାଦ ଦାସ, ଦୁର୍ଗାଚରଣ ପରିଡ଼ା ପ୍ରମୁଖ କବିମାନେ କବିତା ଲେଖିଥିଲେ । ଭାରତୀୟ ସାହିତ୍ୟରୁ ଆଧୁନିକ ଅସମୀୟା କବିତାର ସଂକ୍ଷିପ୍ତ ପରିଚୟ ସହିତ କବି ଦେବକାନ୍ତ ବରୁଆଙ୍କ କବିତାର ଅନୁବାଦ ଏବଂ ବିଦେଶୀ ସାହିତ୍ୟରୁ ବାସୋ, ପୁଞ୍ଜି ତୋମି ୟାସୋ (ଜାପାନୀ), ଭ୍ୱେରଲେନ୍ ଓ ପଲ୍ ଏଲୁଆର୍ (ଫରାସୀ), ଡିଲାନ୍ ଟମାସ୍ (ଇଂରାଜୀ) ପ୍ରଭୃତି କବିମାନଙ୍କ କବିତାର ଅନୁବାଦ ପ୍ରକାଶ ପାଇଥିଲା । ଏ ସଂଖ୍ୟାର ବିଶେଷ ଆକର୍ଷଣ ଥିଲା – ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକଙ୍କ ଦ୍ୱାରା ନିର୍ମଳା ଦେବୀଙ୍କ 'ଦିନାନ୍ତେ' କାବ୍ୟଗ୍ରନ୍ଥ ଏବଂ ମୋ ଦ୍ୱାରା ଟି.ଏସ୍. ଏଲିୟଟ୍‌ଙ୍କ The Three Voices of Poetry ଆଲୋଚନା ପୁସ୍ତକର ରିଭିଉ ବା ସମୀକ୍ଷା । ଏହି ସଂଖ୍ୟାରେ ପ୍ରକାଶିତ କବି ଦୁର୍ଗାଚରଣ ପରିଡ଼ାଙ୍କର ଏକ କ୍ଷୁଦ୍ର କବିତା ଉଦ୍ଧାର କରାଯାଉଛି; ଭାଷା ଓ ଭଙ୍ଗୀରେ କବିତାଟି ଉଚ୍ଚକୋଟୀର ଏବଂ ପରବର୍ତ୍ତୀ କାଳରେ ବହୁ ଚର୍ଚ୍ଚିତ ।

ଆକାଶ !
ଆଲିଙ୍ଗନ କର ମତେ ।
ଧରିତ୍ରୀ !
ଚୁମ୍ବନ କର ମୋର ଶିର ।
ତା'ର କେଶର ଆକାଶରେ
ମୁଁ ଆଜି ଫୁଟାଏଁ ସହସ୍ର ତାରା
ଚୁମ୍ବନର ।
ତା'ର ବୁକୁର ବୀଣାରେ
ମୁଁ ଫୁଟାଏଁ ସହସ୍ର ସୁର୍
ସ୍ପର୍ଶର ।
ତା'ର ଅତନୁ–ମନ୍ଦିରରେ
ମୁଁ ଦିଏଁ ପୁଷ୍ପାଞ୍ଜଳି

ସହସ୍ର ବାର
କାମନାର ।
– (କବିତା ୩ୟ ସଂକଳନ, ୧୯୫୪)

'କବିତା' ସଂକଳନ ପକ୍ଷରୁ ପ୍ରତିବର୍ଷ ପ୍ରକାଶିତ ଓଡ଼ିଆ କାବ୍ୟଗ୍ରନ୍ଥ ଗୁଡ଼ିକ ମଧ୍ୟରୁ ଶ୍ରେଷ୍ଠ ଗ୍ରନ୍ଥଟିଏ ବାଛି ତାହାର କବିଙ୍କୁ ପାରିତୋଷିକ ପ୍ରଦାନ କରିବାର ବ୍ୟବସ୍ଥା ହୋଇଥିଲା । ବିଚାରକ ମଣ୍ଡଳୀରେ ଥିଲେ କବି କୁଞ୍ଜବିହାରୀ ଦାଶ, 'ଡଗର' ସଂପାଦକ କବି ନିତ୍ୟାନନ୍ଦ ମହାପାତ୍ର ଏବଂ 'କବିତା'ର ସଂପାଦକ ଦ୍ୱୟ । ତଦନୁଯାୟୀ ୧୯୫୩ ମସିହାର ଶ୍ରେଷ୍ଠ କାବ୍ୟଗ୍ରନ୍ଥ ଭାବରେ ବିବେଚିତ ହୋଇଥିଲା – କବି ଅନନ୍ତ ପଟ୍ଟନାୟକଙ୍କର 'ଶାନ୍ତିଶିଖା' ।

ଦୁଃଖର କଥା, ସ୍ୱତନ୍ତ୍ର ଭାବରେ ଗଳ୍ପ ଓ କବିତା ପତ୍ରିକା ପ୍ରକାଶରେ ଆମର ସମସ୍ତ ପ୍ରଯତ୍ନ ଓ ପରିକଳ୍ପନାର ବାଳରିଷ୍ଟ ଘଟିଲା । 'ଅଗ୍ରଣୀ' ବର୍ଷାଧିକ କାଳ ଚାଲିଥିଲା – ପ୍ରାୟ ତେରଟି ସଂଖ୍ୟା ପ୍ରକାଶିତ ହୋଇଥିଲା । 'କବିତା'ର ତିନିଟି ସଂକଳନ ପ୍ରକାଶ ପାଇଥିଲା । ଦୀର୍ଘାୟୁ ନ ହେଲେହେଁ ଏହି ପତ୍ରିକା ଯୋଡ଼ିକ ଆମ ସାହିତ୍ୟ କ୍ଷେତ୍ରରେ ବାୟୁବଦଳର ସୂଚନା ଦେଇଥିଲା – ପତ୍ରପତ୍ରିକା ପ୍ରକାଶନ ଦିଗରେ ସ୍ୱତନ୍ତ୍ରୀକରଣର ଶୁଭାରମ୍ଭ କରିଥିଲା । ଆମର ସାଂସ୍କୃତିକ ଇତିହାସରେ 'ଅଗ୍ରଣୀ' ଓ 'କବିତା' ଗୋଟିଏ ଗୋଟିଏ ମାଇଲ୍ ଖୁଣ୍ଟି ରୂପେ ଚିହ୍ନିତ ହୋଇ ରହିବ ।

ନିଜର ଆର୍ଥିକ ସଂଗତି ପାଇଁ ଚଉଦ୍ୱାରସ୍ଥ ଓଡ଼ିଶା ଟେକ୍ସଟାଇଲ୍ ମିଲ୍‌ର ଏକ ନିଯୁକ୍ତି ଘେନି ହୃଦାନନ୍ଦ ବାବୁଙ୍କୁ ୧୯୫୫ ମସିହାରେ କଲିକତା ଛାଡ଼ିବାକୁ ପଡ଼ିଲା । ଆମେ ମଧ୍ୟ ସେହି ୧୯୫୫ ମଇ ମାସରେ ଶାନ୍ତିନିକେତନରେ ସ୍ନାତକୋତ୍ତର ଅଧ୍ୟୟନ ଶେଷ କରି ଓଡ଼ିଶା ଚାଲି ଆସିଲୁଁ । 'ଅଗ୍ରଣୀ' ଓ 'କବିତା' ବନ୍ଦ ହୋଇଯିବାର ଏହାହିଁ ମୁଖ୍ୟ କାରଣ । ତଥାପି କବି ରବୀନ୍ଦ୍ରନାଥଙ୍କ ଭାଷାରେ କହିବି –

ଜୀବନେ ଯେତେ ପୂଜା ହୋଇନି ଶେଷ
ଜାଣେ ହେ ଜାଣେ ତାହା ହୋଇନି ନାଶ ।
ଯେ ଫୁଲ ନ ଫୁଟୁଣୁ ଝରିଚି ମାଟି ପରେ
ଯେ ନଦୀ ମରୁ ପଥେ ହୋଇଚି ହ୍ରାସ,
ଜାଣେ ହେ ଜାଣେ ତାହା ହୋଇନି ନାଶ ।।

# 'ଡଗର'ର ଡେଉଁରିଆ ଡୋରି

ଯେତେଦୂର ମନେ ପଡୁଛି, ୧୯୫୪ ମସିହାର ଅଗଷ୍ଟ କି ସେପ୍‌ଟେମ୍ବର ମାସ ହେବ, କଲିକତା ସହରତଳି ଅଞ୍ଚଳ ଟିଟାଗଡ଼ଠାରେ ପ୍ରବାସୀ ଓଡ଼ିଆମାନଙ୍କ ଉଦ୍ୟମରେ 'ଜାତୀୟ ଉତ୍କଳ ସମ୍ମେଳନ' ଅନୁଷ୍ଠିତ ହେଉଥାଏ । ଶ୍ରୀ ହୃନ୍ଦାନନ୍ଦ ମଲ୍ଲିକ ଥାଆନ୍ତି ସମ୍ମେଳନର ଜଣେ ସଂଚାଳକ । କଲିକତାର ପ୍ରବାସୀ ଓଡ଼ିଆମାନଙ୍କର ସେତେବେଳେ ସେ ଅନ୍ୟତମ ନେତା । ଟିଟାଗଡ଼ଠାରେ ବିଭିନ୍ନ କଳକାରଖାନାରେ କାର୍ଯ୍ୟ କରୁଥିବା ଓଡ଼ିଆମାନଙ୍କୁ ସଂଗଠିତ କରି ସେ ସେଠାରେ ବଡ଼ ଧରଣର ସାଂସ୍କୃତିକ ସମ୍ମେଳନଟାଏ କରାଇ ପାରିଥିଲେ । ଓଡ଼ିଶାରୁ କବି କୃଷ୍ଣପ୍ରସାଦ ବସୁ, 'ସମାଜ' ସଂପାଦକ ଶ୍ରୀ ରାଧାନାଥ ରଥ, କବି ଓ ସୁବକ୍ତା ଶ୍ରୀ ମନମୋହନ ମିଶ୍ର, 'ଡଗର' ସଂପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ପ୍ରମୁଖ ସେହି ସମ୍ମେଳନରେ ଉଦ୍‌ବୋଧନ ଦେବାକୁ ଯାଇଥାଆନ୍ତି । ଶାନ୍ତିନିକେତନରୁ ଅଧ୍ୟାପକ କୁଞ୍ଜବିହାରୀ ଦାଶଙ୍କ ସହ ମୁଁ ମଧ୍ୟ ଆସି ସମ୍ମେଳନରେ ଅନ୍ୟତମ ବକ୍ତା ଭାବରେ ଯୋଗ ଦେଇଥିଲି । ମୋର ସଂକ୍ଷିପ୍ତ ଭାଷଣଟି 'ନୂତନ ସାହିତ୍ୟ' ଶିରୋନାମାରେ ମୁଁ ଲେଖିକରି ଘେନି ଯାଇଥିଲି । ପରେ ସେଇଟି ମୋର 'କେତୋଟି ସାହିତ୍ୟିକ ଅଭିଭାଷଣ' (୧୯୭୦) ଗ୍ରନ୍ଥରେ ସଂକଳିତ ହୋଇଛି । ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସହ ପୂର୍ବରୁ ମୋର ପରିଚୟ ଥିଲା । ତାଙ୍କ ଦ୍ୱାରା ସଂପାଦିତ 'ଡଗର' ପତ୍ରିକାରେ ମୋର କେତେକ କବିତା ପ୍ରକାଶ ପାଇଥିଲା । ପୁଣି, ଆମର 'କବିତା' ପତ୍ରିକା ସଂପର୍କରେ ତାଙ୍କ ସହିତ ପତ୍ରାଳାପ ହୋଇଥିଲା । ସେତେବେଳକୁ ମୋର ତାଙ୍କ ସହିତ ଏକ ପ୍ରକାର ବ୍ୟକ୍ତିଗତ ସଂପର୍କ ସ୍ଥାପିତ ହୋଇ ଯାଇଥିଲା । ଟିଟାଗଡ଼ ସମ୍ମେଳନ ଶେଷରେ ସେ ଦିନେ ଦୁଇ ଦିନ କଲିକତାରେ ଅଟକି ଗଲେ ଏବଂ ମୋତେ ସାଙ୍ଗରେ ଘେନି ବରାହନଗରସ୍ଥ ପାଠବାଡ଼ି ଆଶ୍ରମ, ଖିଦିରିପୁର ଓଡ଼ିଆ ବସତି ପ୍ରଭୃତିକୁ ବୁଲିଗଲେ । 'ଡଗର' ସଂପାଦନା କାର୍ଯ୍ୟରେ ତାଙ୍କର ଜଣେ ସହକାରୀ ଲୋଡ଼ା ଥିବା ବିଷୟ ସେତିକିବେଳେ ସେ ମୋ ଆଗରେ ପ୍ରକାଶ କଲେ । ମୁଁ ସେଥିପାଇଁ ଆଗ୍ରହ ପ୍ରକାଶ କଲାରୁ ସେ ଖୁସି ହେଲେ । ଶାନ୍ତିନିକେତନର ଏମ୍.ଏ. ପରୀକ୍ଷା ଦେଇ ସାରି ମୁଁ କଟକ ଯାଇ 'ଡଗର'ରେ ଯୋଗ ଦେବି ବୋଲି ତାଙ୍କୁ କଥା ଦେଲି ।

ପରୀକ୍ଷାଦି କାର୍ଯ୍ୟ ଶେଷ କରି ୧୯୫୫ ମସିହା ମେ' ମାସରେ ମୁଁ ଯେତେବେଳେ ଶାନ୍ତିନିକେତନରୁ ଯାଇ ନିଜ ଗାଁରେ ପହଞ୍ଚେ, ଦେଖିଲି – ମୋ ପାଇଁ ଗୋଟାଏ ଜାଲ ବିଛା ହୋଇ ରହିଛି । ପୂର୍ବରୁ ଗୋଟିଏ ଦୁଇଟି ସ୍ଥାନରେ ମୋର ବିବାହ ପ୍ରସ୍ତାବ ପଡ଼ିଥିଲା; କିନ୍ତୁ ପାଠପଢ଼ା ଶେଷ ନ ହେଲେ ବିବାହ କରିବି ନାହିଁ ବୋଲି ମୋର ଅଭିଭାବକ ଦାଦାଙ୍କୁ ଜଣାଇ ଦେଇଥିଲି । ଏବେ ତ ପାଠପଢ଼ା ସରିଲା ! ଦାଦା ବିଛାଇ ଥିବା

ଜାଲରେ ଧରାଦେବା ବ୍ୟତୀତ ମୋର ଗତ୍ୟନ୍ତର ନ ଥିଲା । ଶାନ୍ତିନିକେତନରେ ବଙ୍ଗଳା ଭାଷା-ସାହିତ୍ୟରେ ଏମ୍.ଏ. ପଢୁଥିବା ଜଲପାଇଗୁଡ଼ିର ଜଣେ ମହିଳା ମୋର ସତୀର୍ଥା ଥିଲେ । ତାଙ୍କ ସହିତ ମୋର ପ୍ରଣୟ ହୋଇ ଯାଇଥିଲା । ସେହି ପ୍ରଣୟକୁ ପରିଣୟରେ ପରିଣତ କରିବାକୁ ମନରେ ଭାବିଥିଲି । କିନ୍ତୁ ମୋର ଭାବନା ଭାବନାରେ ହିଁ ରହିଗଲା । ମୟୂରଭଞ୍ଜ ଜିଲ୍ଲାର ବହଳଦା ନିବାସୀ ଶ୍ରୀ ଭାସ୍କର ନାରାୟଣ ଦତ୍ତଙ୍କ କନ୍ୟା ଜୟନ୍ତୀଙ୍କ ସହ ମୋର ବିବାହ ପ୍ରସ୍ତାବରେ ଦାଦା ବହୁ ଦୂର ଆଗେଇ ଯାଇଥିଲେ; ପରିବାରର ଅନ୍ୟ ସମସ୍ତେ ବି ରାଜି ଥିଲେ । ଏ ପ୍ରସ୍ତାବ ସଂପର୍କରେ ମୋର ସକଳ ଆଳ ଓ ଆପତ୍ତି ସୁଅ ମୁହଁରେ କୁଟାଖିଅ ପରି ଭାସିଗଲା । ମୁଁ ଜାଲରେ ପଡ଼ିଗଲି । ଜୟନ୍ତୀଙ୍କର ଡାକ ନାମ ଥିଲା 'ଜରଦା' । ପାନ ଜରଦା ପରି ସେ ମୋ ପକ୍ଷରେ ଭାରି କଡ଼ା ହେବେ ବୋଲି ମନେ କରୁଥିଲି । କିନ୍ତୁ ପରେ ଜାଣିଲି ସେ ବାସ୍ତବରେ ମିଠାକଡ଼ା, ମୋର ଦେହ-ମନରେ ଠିକ୍ ଚଳିଗଲେ । ମଙ୍ଗଳକୃତ୍ୟର କିଛି ଦିନ ପରେ ମୁଁ ତାଙ୍କ ଆଗରେ ସେହି ବଙ୍ଗୀୟା ପ୍ରଣୟିନୀଙ୍କ ବିଷୟ ଫେଡ଼ି କହିଲି । ସୁଖର କଥା, ବିଷୟଟାକୁ ସେ ମନରେ ଧରିଲେ ନାହିଁ; ବରଂ ମୋର ମଙ୍ଗଳକୃତ୍ୟର ନିମନ୍ତ୍ରଣ-ପତ୍ର ପାଇ ସେହି ବଙ୍ଗୀୟା ଉପହାର ସ୍ୱରୂପ ପଠାଇଥିବା ବଙ୍କିମଚନ୍ଦ୍ରଙ୍କ ବଙ୍ଗଳା ଉପନ୍ୟାସଗୁଡ଼ିକ ଖୁସି ମନରେ ପଢ଼ିବାରେ ଲାଗିଲେ ।

ମଙ୍ଗଳକୃତ୍ୟ ନିମନ୍ତ୍ରଣ-ପତ୍ର ପଠାଇବା ସଂଗେ ସଂଗେ ମୁଁ ନିତ୍ୟାନନ୍ଦବାବୁଙ୍କୁ ଜଣାଇ ଦେଲି ଯେ – 'ଡଗର' ସଂପାଦନା କାର୍ଯ୍ୟରେ ଯୋଗ ଦେବା ପାଇଁ ମୋର ସାମାନ୍ୟ ବିଳମ୍ବ ହେବ । ଉତ୍ତରରେ ନିତ୍ୟାନନ୍ଦବାବୁ ମୋତେ ଯାହା ଲେଖିଥିଲେ, ତାହା ଏକ କ୍ଷୁଦ୍ର କବିତା । ତାଙ୍କର ପତ୍ରଟି ଅବିକଳ ଉଦ୍ଧାର କରିଦେଉଛି –

''ଡଗର ଅଫିସ୍, କଟକ-୧
୨୫ । ୬ । ୫୫

କଲ୍ୟାଣୀୟ କୃଷ୍ଣ,

ବିବାହର ଅର୍ଥ ଉଦ୍‌ବାହ ।
ଉପରକୁ ଉଠିବାକୁ ହେବ-ଉଜାଣି ।
ଆବରଣ ପରେ ବରଣ ।
ସଂଯମ ପରେ ସଂଭୋଗ ।
ଶୃଙ୍ଖଳା ହିଁ କଳା –
ସଂଗତିରୁ ସଂଗୀତ ।

ଏତିକି ମୋର କଲ୍ୟାଣ-ଉଭୟଙ୍କ ଉଦ୍ଦେଶ୍ୟରେ –

– ନିତ୍ୟାନନ୍ଦ''

ମଙ୍ଗଳକୃତ୍ୟର ପ୍ରାୟ ମାସକ ପରେ ନବବିବାହିତା ପତ୍ନୀଙ୍କୁ ଘରେ ଛାଡ଼ି ମୁଁ କଟକ ଚାଲି ଆସିଲି । ପୂର୍ବରୁ 'ଅଗ୍ରଣୀ' ଓ 'କବିତା' ପତ୍ରିକା ସଂପାଦନାରେ ମୁଁ କିଛି ଅଭିଜ୍ଞତା ହାସଲ କରିଥିଲି । ତେଣୁ 'ଡଗର' ସଂପାଦନା-କାର୍ଯ୍ୟ ମୋ ପକ୍ଷରେ ଆଦୌ ଅସୁବିଧାଜନକ ହେଲା ନାହିଁ । ସଂପାଦନାର ପ୍ରାୟ ସମସ୍ତ କାର୍ଯ୍ୟ ମୋ ଉପରେ ଛାଡ଼ି ଦେଇ ନିତ୍ୟାନନ୍ଦବାବୁ ନିଜର ରାଜନୈତିକ କାର୍ଯ୍ୟକ୍ରମରେ ବ୍ୟସ୍ତ ରହିଲେ । 'ଡଗର'ରେ ପୂରା ଦୁଇ ମାସ ରହିଛି କି ନାହିଁ, ବିଶ୍ୱଭାରତୀରେ ମୋର ପରୀକ୍ଷା-ଫଳ ପ୍ରକାଶ ପାଇଗଲା । ସମ୍ବାଦପତ୍ରରୁ ମୋର ପରୀକ୍ଷା-ଫଳ ଦେଖି ଭଦ୍ରକ କଲେଜର ତତ୍‌କାଳୀନ ସେକ୍ରେଟେରୀ ସୁପରିଚିତ ଏଡ୍‌ଭୋକେଟ୍ ଶ୍ରୀ ନରେନ୍ଦ୍ର ପ୍ରସାଦ ଦାସ ନିତ୍ୟାନନ୍ଦ ବାବୁଙ୍କୁ ପତ୍ର ଲେଖିଲେ ଯେ – କୃଷ୍ଣକୁ ଶୀଘ୍ର ଭଦ୍ରକ କଲେଜକୁ ପଠାଇ ଦିଅ; କଲେଜରେ ଜଣେ ଓଡ଼ିଆ ଅଧ୍ୟାପକର ଆବଶ୍ୟକତା ରହିଛି । ମୁଁ ଟିକିଏ ଦ୍ୱନ୍ଦ୍ୱରେ ପଡ଼ିଗଲି । ଜୀବନରେ ଶିକ୍ଷକତା କରିବି ବୋଲି ବହୁ ପୂର୍ବରୁ ମନ ସ୍ଥିର କରି ସାରିଥିଲି । ଏ କ୍ଷେତ୍ରରେ ସ୍ୱର୍ଗୀୟ ଶିକ୍ଷକ ଗଗନବିହାରୀ ମହାନ୍ତି ମୋର ଆଦର୍ଶ ଥିଲେ । ଶିକ୍ଷକତାକୁ ଜୀବିକା କରି ତାହା ସାଙ୍ଗରେ ସାହିତ୍ୟ-କର୍ମ ଚଳାଇ ଯିବା ମୋ ପକ୍ଷରେ ସୁକର ହେବ ବୋଲି ପରିକଳ୍ପନା କରିଥିଲି । ଏବେ ସେହିପରି ଏକ ସୁଯୋଗ ପାଇଥିବାରୁ ମନରେ ଆନନ୍ଦ ହେଲା, କିନ୍ତୁ 'ଡଗର' ସଂପାଦନା-କାର୍ଯ୍ୟ ଛାଡ଼ି ଯାଉଥିବାରୁ ଦୁଃଖ ବି ହେଉଥିଲା । ନିତ୍ୟାନନ୍ଦବାବୁ ମୋର ଦ୍ୱନ୍ଦ୍ୱ ଭାବ ଲକ୍ଷ୍ୟ କରି କହିଲେ ଯେ – ଏହା ତ ଏକ ଅସ୍ଥାୟୀ ନିଯୁକ୍ତି ! ଡିସେମ୍ବର ଯାଏଁ କଲେଜରେ ରହି ତା'ପରେ 'ଡଗର'କୁ ଚାଲି ଆସିବ ଏବଂ ସ୍ଥାୟୀ ନିଯୁକ୍ତି ପାଇବା ପର୍ଯ୍ୟନ୍ତ ଏଠାରେ ରହିଯିବ, ତାହା ହିଁ ହେଲା । ୧୯୫୫ ମସିହା ସେପ୍ଟେମ୍ବରରୁ ଡିସେମ୍ବର ଯାଏଁ ଭଦ୍ରକ କଲେଜରେ ଅସ୍ଥାୟୀ ଭାବରେ ପ୍ରାୟ ଚାରିମାସ କାର୍ଯ୍ୟ କରି ମୁଁ ପୁଣି 'ଡଗର'କୁ ବାହୁଡ଼ି ଆସିଲି । ପ୍ରାୟ ଆଠ ମାସ ପରେ ସ୍ଥାୟୀ ନିଯୁକ୍ତି ପାଇ ୧୯୫୬ ମସିହା ଅଗଷ୍ଟ ମାସରେ ଭଦ୍ରକ କଲେଜରେ ଯୋଗ ଦେଲି ।

ପାଖାପାଖି ଯେଉଁ ବର୍ଷେ କାଳ 'ଡଗର'ରେ କାର୍ଯ୍ୟ କଲି, ତାହା ମୋ ପକ୍ଷରେ ଥିଲା ଏକ ସାହିତ୍ୟ-କର୍ମ-ମୁଖର ସମୟ । 'ଡଗର'କୁ ଏକ ବିଧିବଦ୍ଧ ସାହିତ୍ୟ ପତ୍ରିକାର ରୂପ ଦେବା ପାଇଁ ନିତ୍ୟାନନ୍ଦବାବୁ ଚାହୁଁଥିଲେ; ପୂର୍ବରୁ ତାହା ଥିଲା ମୁଖ୍ୟତଃ ରଙ୍ଗ ବ୍ୟଙ୍ଗର ପତ୍ରିକା । ସେତେବେଳେ ରଙ୍ଗ ବ୍ୟଙ୍ଗର ପତ୍ରିକା ଭାବରେ ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ 'ନିଆଁଖୁଣ୍ଟା'ର ବିଶେଷ ଆଦର ଓ ପ୍ରସାର ଥିଲା । ତେଣୁ ବୋଧହୁଏ 'ଡଗର'ରୁ ରଙ୍ଗରସର ଲେଖା ଊଣା କରି ସେହି ସ୍ଥାନରେ ଗୁରୁଗମ୍ଭୀର ସାହିତ୍ୟିକ ରଚନା ପ୍ରକାଶ କରି ପତ୍ରିକାଟିର ଆଭିମୁଖ୍ୟରେ ପରିବର୍ତ୍ତନ ଆଣିବାକୁ ନିତ୍ୟାନନ୍ଦବାବୁ ଆଗ୍ରହୀ ଥିଲେ । ମୁଁ ତାଙ୍କର ସେହି ଆଗ୍ରହ ଅନୁଯାୟୀ କାର୍ଯ୍ୟ କରିବାରେ ଲାଗିଲି ।

'ଡଗର'ରେ ଏଣିକି ପୂର୍ବାପେକ୍ଷା ଅଧିକ କବିତା, ଗଳ୍ପ, ପ୍ରବନ୍ଧାଦି ପ୍ରକାଶ ପାଇଲା; ରଙ୍ଗରସ ବିଭାଗ ଟିକିଏ ସଂକୁଚିତ ହୋଇଗଲା । 'ବହିପତ୍ର' ବିଭାଗଟି କେବଳ 'ପୁସ୍ତକ ପରିଚୟ'ରେ ସୀମିତ ନ ରହି ରୀତିମତ 'ଗ୍ରନ୍ଥ ସମୀକ୍ଷା'ରେ ପରିଣତ ହେଲା । ସଂପାଦକୀୟ ପରେ ପରେ 'ସାହିତ୍ୟ ଓ ସଂସ୍କୃତି' ନାମରେ ଏକ ସ୍ୱତନ୍ତ୍ର ବିଭାଗ ସ୍ଥାନିତ ହେଲା, ଯହିଁରେ ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ଘଟୁଥିବା ତଦାନୀନ୍ତନ ଘଟଣା ସମୂହ ମତ ଓ ମନ୍ତବ୍ୟ ସହ ପ୍ରକାଶ ପାଇଲା । ପତ୍ରିକାଟିର ସ୍ୱତନ୍ତ୍ର ପୃଷ୍ଠାରେ ଲେଖକ-ଲେଖିକାଙ୍କର ସଂକ୍ଷିପ୍ତ ପରିଚୟ ଦିଆଗଲା, ଏହିପରି କେତେକ ନୂତନ ବିଭାବ ଓ ବିଭାଗ ଘେନି 'ଡଗର'ର ଏକ ବିଧିବଦ୍ଧ ସାହିତ୍ୟିକ ଆଭିମୁଖ୍ୟ ପ୍ରକଟ ହୋଇ ପଡ଼ିଲା ।

'ଡଗର'ର କେତେକ ବିଶେଷାଙ୍କ ପ୍ରକାଶ ସେହି ସମୟରେ ଏକ ଉଲ୍ଲେଖନୀୟ ଘଟଣା । ସ୍ୱାଧୀନତା-ପରବର୍ତ୍ତୀ ଦଶବର୍ଷ କାଳ (୧୯୪୭-୫୬) ମଧ୍ୟରେ ଆମ ସାହିତ୍ୟର ବିଭିନ୍ନ ବିଭାଗରେ ବିକାଶର ଧାରା କଳନା କରି ତାହାର ମୂଲ୍ୟାଙ୍କନ ପାଇଁ ଏକ ବିଶେଷ ସଂଖ୍ୟା ପ୍ରକାଶ କରିବାକୁ ମୁଁ ନିତ୍ୟାନନ୍ଦବାବୁଙ୍କୁ ପ୍ରସ୍ତାବ ଦେଲି । ନିତ୍ୟାନନ୍ଦବାବୁ ତହିଁରେ ସମ୍ମତ ହେଲେ । ୧୯୫୬ ମସିହା ଜୁଲାଇ-ଅଗଷ୍ଟ ସଂଯୁକ୍ତ ସଂଖ୍ୟା (ବିଂଶ ବର୍ଷ- ୧ମ ଓ ୨ୟ ସଂଖ୍ୟା) ରୂପେ 'ଡଗର'ର ସାହିତ୍ୟ ବିଶେଷାଙ୍କ ପ୍ରକାଶ ପାଇଲା । ଏଥିରେ ଏକ ଦୀର୍ଘ ସମ୍ପାଦକୀୟ ଲେଖି ନିତ୍ୟାନନ୍ଦବାବୁ ଆମ ଭାଷା-ସାହିତ୍ୟର ଯେଉଁ ବିଚାର-ବିମର୍ଶ କରିଛନ୍ତି, ତାହା ଅତ୍ୟନ୍ତ ଉପାଦେୟ । ସ୍ୱାଧୀନତା ପରବର୍ତ୍ତୀ ବା ଯୁଦ୍ଧୋତ୍ତର ସାହିତ୍ୟର ଏପରି ଅନ୍ତର୍ଦୃଷ୍ଟିସଂପନ୍ନ ସମୀକ୍ଷା କ୍ୱଚିତ୍ ଦେଖିବାକୁ ମିଳେ । ସାହିତ୍ୟ ବିଶେଷାଙ୍କ ବର୍ତ୍ତମାନ ଜନସାଧାରଣରେ ଦୁଷ୍ପ୍ରାପ୍ୟ ଥିବାରୁ ସେହି ଗୁରୁତ୍ୱପୂର୍ଣ୍ଣ ସଂପାଦକୀୟର ଅଂଶବିଶେଷ ଏଠାରେ ଉଦ୍ଧାର କରୁଛି – 'ସାମ୍ପ୍ରତିକ ସାହିତ୍ୟକୁ ଗୋଟିଏ ସୀମା ଭିତରେ ଆବଦ୍ଧ କରି ସମାଲୋଚନାର ପଥ ସୁଗମ କରିବା ନିମନ୍ତେ ଆମ୍ଭେମାନେ ଏହି ବିଶେଷାଙ୍କରେ ଅଧୁନା, ବିଗତ ଦଶନ୍ଧିର ସାହିତ୍ୟକୁ ହିଁ ବୀକ୍ଷଣାର ପରିଧି ମଧ୍ୟରେ ପରିବେଷ୍ଟିତ କରିଛୁଁ । ଏହି କାଳକୁ ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳ କହିବାରେ ଯେତିକି ତାତ୍ପର୍ଯ୍ୟ ଅଛି, ସ୍ୱାଧୀନତା-ପରବର୍ତ୍ତୀ ବର୍ତ୍ତମାନ ଯୁଗ କହିବାରେ ସେତିକି ଯାଥାର୍ଥ୍ୟ ନିହିତ । ତଥାପି ଆମ ସାହିତ୍ୟ ଯେଉଁଠି ସ୍ଥାନୀୟ ବିଭାବରେ ବିଭୂଷିତ ସେଠାରେ ଉତ୍ତର-ସ୍ୱାଧୀନତା କାଳର ଓ ଯେଉଁଠି ଦେଶାନ୍ତର ପ୍ରଭାବରେ ଭାବିତ, ତାହାକୁ ଯୁଦ୍ଧୋତ୍ତର କାଳୀନ ସାହିତ୍ୟ କହିଲେ, ବାସ୍ତବ ବେଷ୍ଟନୀରେ ସହଜ ସଂବୋଧ ହେବ ।

'xxx ସ୍ୱାଧୀନତା ପୂର୍ବ କାଳକୁ ଅନେକେ ରାଧାନାଥ-ଫକୀରମୋହନ ଯୁଗ, ସତ୍ୟବାଦୀ ଓ ସବୁଜ ଯୁଗ ନାମରେ ନାମିତ କରିଥାନ୍ତି । ମାତ୍ର ବ୍ୟକ୍ତି ବା ଗୋଷ୍ଠୀ

ବିଶେଷକୁ ନେଇ ସାହିତ୍ୟିକ ବିକାଶ ଧାରାର ବିଭାଜନ କ୍ୱଚିତ୍ ଯଥାର୍ଥ ହୋଇଥାଏ । ତଟସ୍ଥ ବିଚାରରେ ସ୍ପଷ୍ଟ ହୋଇଯିବ ଯେ ରାଧାନାଥ, ମଧୁସୂଦନ, ଫକୀରମୋହନ କିମ୍ବା ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଅଥବା କାଳିନ୍ଦୀ-ଅନ୍ନଦା-ବୈକୁଣ୍ଠନାଥ· କେହି ହେଲେ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟା ନୁହନ୍ତି, କିମ୍ୱା ସତ୍ୟବାଦୀ ବା ସବୁଜ ସମିତିର ବୈଶିଷ୍ଟ୍ୟ ଓଡ଼ିଆ ସାହିତ୍ୟରେ ନୂତନ ଯୁଗର ଆବାହକ ନୁହନ୍ତି ।

'ଯଦି ଦେଶାନ୍ତର ସାହିତ୍ୟର ପ୍ରଭାବକୁ ଯୁଗ ବୋଲି ଧରାଯାଏ, ତେବେ ମାନିବାକୁ ପଡ଼ିବ ଯେ ଉକ୍ତ ବୃତ୍ତିର କ୍ରିୟା ଓ ପ୍ରତିକ୍ରିୟା ସମଭାବରେ ବିଗତ ଅର୍ଦ୍ଧ ଶତାବ୍ଦୀର ଊର୍ଦ୍ଧ୍ୱ କାଳ ଓଡ଼ିଆ ସାହିତ୍ୟର ରୀତି ହୋଇ ଆସିଛି । ରାଧାନାଥ ସାହିତ୍ୟରେ ଦେଶୀୟ ଆଙ୍ଗିକ ମାତ୍ର ବୈଦେଶିକ ଆତ୍ମିକତା ଯେପରି ପରିଲକ୍ଷିତ, ଫକୀରମୋହନ ସାହିତ୍ୟରେ ତତ୍ ପରିବର୍ତ୍ତେ ଉଭୟ ଭାଷା ଓ ଭାବରେ ଅକ୍ଷୁଣ୍ଣ ସ୍ଥାନୀୟ ମର୍ଯ୍ୟାଦା ସୁରକ୍ଷିତ । ସତ୍ୟବାଦୀ ସମକାଳୀନ ସାହିତ୍ୟରେ ଜାତୀୟତା ପ୍ରାଣ ହେଲେ ହେଁ ବୈଦେଶିକ ସ୍ପର୍ଦ୍ଧା ତତ୍କାଳୀନ ସାହିତ୍ୟକୁ ସ୍ୱତନ୍ତ୍ର ରଖିପାରି ନାହିଁ । ଏକ ଦିଗରେ ମୌଳିକ ଜାତୀୟ ସାହିତ୍ୟ ସୃଷ୍ଟି ହେଉଥିଲେ ହେଁ, ପ୍ରତ୍ୟଙ୍ଗରେ ବୈଦେଶିକ ସାହିତ୍ୟର ନାନା ବିଭାବ ଆମ ସାହିତ୍ୟକୁ ଆଲିଙ୍ଗନ କରିପାରିଲା । ଏ ନଭରେ ଏକ ମେଘପଟଳ ହେଲା ସବୁଜ ସାହିତ୍ୟିକମାନଙ୍କର ନବୀନ ପ୍ରଚେଷ୍ଟା । ପୂର୍ଣ୍ଣ ମାତ୍ରାରେ ବୈଦେଶିକ ଶିକ୍ଷା-ସଭ୍ୟତାରେ ପ୍ରଭାବିତ ଉନ୍ନତ ଅନୁକାରୀ ବଙ୍ଗ ସାହିତ୍ୟ ହିଁ ଏହି ସାହିତ୍ୟ-ପର୍ବର ଆଦର୍ଶ ହୋଇଥିଲା ପରି ମନେ ହୁଏ । ଏହି ପ୍ରକ୍ରିୟାରେ ଜେର୍ ଉତ୍ତର-ସ୍ୱାଧୀନତା କାଳରେ ମଧ୍ୟ ଅତି ସୁସ୍ପଷ୍ଟ । ତଥାପି ଏ ଦେଶର ଆତ୍ମା ଯେପରି ଅମର, ଏ ଜାତିର ସାହିତ୍ୟ ସେହିପରି ଅଚ୍ଛେଦ୍ୟ ଏବଂ ଅକ୍ଳେଦ୍ୟ । ସେ ତା'ର ବିଶିଷ୍ଟତାରେ ସୌଷ୍ଠବମୟ – ବିଚିତ୍ରତାରେ ସଚିତ୍ର । ତେଣୁ ବୈଦେଶିକ ପ୍ରଭାବ ମଧ୍ୟ ସାହିତ୍ୟରେ ନୂତନ ଯୁଗର ଗୋଟିଏ ଶଙ୍କୁ ନୁହେଁ ।

'x x x କେବଳ ମାତ୍ର ନବ ନବ ପ୍ରୟୋଗ-ପରୀକ୍ଷା ବା experiment ହିଁ ଏହି ଯୁଦ୍ଧୋତ୍ତର ଯୁଗରେ ବା ସ୍ୱାଧୀନତା-ପର କାଳରେ ଓଡ଼ିଆ ସାହିତ୍ୟରେ ବିଶେଷ ଭାବରେ ଦେଖିବାକୁ ମିଳେ । ଏହା ହିଁ ଆଧୁନିକ ସାହିତ୍ୟର ବିଶେଷତ୍ୱ । ପ୍ରାଚୀନ ଓଡ଼ିଆ ସାହିତ୍ୟ ଭାଷା-ଆଙ୍ଗିକରେ ବହୁଧା ନବ ପ୍ରୟୋଗ-ପରୀକ୍ଷା ଯେ କରିଛି ଏଥିରେ ସନ୍ଦେହ ନାହିଁ । ମାତ୍ର ଅନ୍ତର୍ନିହିତ ଭାବରେ ବିଶେଷ ପରୀକ୍ଷା ବା ପ୍ରୟୋଗ ବୈଷ୍ଣବ ସାହିତ୍ୟରେ ମଧ୍ୟ ପ୍ରାଞ୍ଜଳ । ତଥାପି ଆଙ୍ଗିକ ଓ ଆତ୍ମିକରେ ତଥା ଶୈଳୀ ଓ ସଂବୋଧିରେ ନାନା ପ୍ରୟୋଗ କୁଶଳତାର ସହିତ ବର୍ତ୍ତମାନ କରାଯାଉଛି । ମାତ୍ର ଏହାକୁ ପରଂପରାର ବିଚ୍ୟୁତି ବୋଲିବାକୁ ଗଲେ, ସତ୍ୟରେ ଅପଳାପ ରହିଯିବ । ଉଦାହରଣ ସ୍ୱରୂପ – କବିତାରେ ଅମିତ୍ରାକ୍ଷର, ଗଦ୍ୟ ଛନ୍ଦ ଓ ମୁକ୍ତ ଛନ୍ଦ (Blank verse, Verse libers, Verse libre)କୁ

ଅଭିନବ ପ୍ରୟୋଗ ଆଖ୍ୟା ଦିଆଯାଇ ନ ପାରେ । ସଂସ୍କୃତ ଶ୍ଳୋକ ତଥା ସୂକ୍ତାଦି ଏହି ପର୍ଯ୍ୟାୟଭୁକ୍ତ । ଏପରିକି ଗ୍ରାମୀଣ ବିଛା-ସାପ ଝାଡ଼ିବା ମନ୍ତ୍ରାଦିଠାରୁ କାନ୍ଦଣା-ବିଳାପ ତଥା ମୂଲିଆର ଉଦ୍‌ବୋଧନ, ସବାରି ବେହେରାଙ୍କ ଡାକ ଭିତରେ ଏହି ଛନ୍ଦ ସମୂହର ପ୍ରାଚୁର୍ଯ୍ୟ ମିଳିଥାଏ । ସୁତରାଂ ଆଧୁନିକତମ ଗଦ୍ୟଶୈଳୀକୁ ଅତୀତର ପୁନରୁତ୍‌ଥାନ ବା ନବ ସଂସ୍କରଣ ହିଁ କହିବା ଯୁକ୍ତିସଂଗତ ।

'ଗଦ୍ୟରେ ମଧ ଗଳ୍ପ, ଉପନ୍ୟାସ, ନକ୍‌ସାଦି ନାନା ଆଙ୍ଗିକ ତଥା ଶୈଳୀର ପ୍ରୟୋଗ ଦେଖାଯାଉଛି । କିନ୍ତୁ ଆତ୍ମିକରେ ମାନବାତ୍ମାର ଉଦ୍‌ବୋଧନୀ ଯେତେ ମିଳୁନାହିଁ, ଯାନ୍ତ୍ରିକ ବିଶାଳତାରେ ହତଶ୍ୱାସ, ମାନବର ବିହ୍ୱଳ ଓ କିଂକର୍ତ୍ତବ୍ୟହୀନ ଭାବ ଅଧିକ ପ୍ରକାଶ ପାଇଛି । ଫଳରେ ନାନା ବୌଦ୍ଧିକ ଯୁକ୍ତି ଓ କଥନିକା ତଥା ଭାଷା ବଦଳରେ ପ୍ରକାଶ ବୈଚିତ୍ର୍ୟ ତଳେ ସଭ୍ୟ ମାନବର ପଳାୟନ ମନୋଭାବ ଆଶ୍ରୟ ନେବାରେ ବିଶେଷ ଚେଷ୍ଟିତ ।

'ଓଡ଼ିଆ ସାହିତ୍ୟ ଗତ ପାଞ୍ଚ ବର୍ଷରେ ଯେଉଁ ଗତି ନେଇଛି, ତାହା ଏହି ସଂଖ୍ୟାରେ ପ୍ରକାଶିତ ପୁସ୍ତକ ସୂଚୀରେ ମିଳିପାରିବ । ଏହି ଦଶନ୍ଧିର ପ୍ରଥମ ପଞ୍ଚକରେ ଉପନ୍ୟାସ ଉପରେ ଓଡ଼ିଆ ପାଠକର ଯେଉଁ ଆସ୍ଥା ଥିଲା, ତାହା କମିଛି – ଅଥଚ କ୍ଷୁଦ୍ର ଗଳ୍ପର ସ୍ୱାଦ ବୃଦ୍ଧି ପାଇ ନାହିଁ । କବିତା ଏକାବେଳେକେ ମୁମୂର୍ଷୁ ଅବସ୍ଥାରେ । ପ୍ରବନ୍ଧ ପ୍ରତି ପ୍ରୀତି ଅପେକ୍ଷାକୃତ ବଢ଼ିଛି । ଅଥଚ ପ୍ରଥମ ପଞ୍ଚକରେ ରୋମାଞ୍ଚକର ଡିଟେକ୍‌ଟିଭ୍ ଉପନ୍ୟାସର ଯେଉଁ କାଟ୍‌ତି ଥିଲା, ତାହା ନଗଣ୍ୟ ଭାବରେ ହ୍ରାସ ପାଇଥିଲେ ହେଁ ପାଠକର ଅଧିକ ଚିତ୍ତାକର୍ଷଣୀୟ ବସ୍ତୁ ହୋଇ ରହିଛି । କଲେଜମାନଙ୍କରେ ଓଡ଼ିଆ ପାଠ୍ୟକ୍ରମ ବୃଦ୍ଧି ପାଇବା ଫଳରେ ସାହିତ୍ୟ-ଆଲୋଚନାର ଯୁଗାରମ୍ଭ ସ୍ପଷ୍ଟ ଦୃଷ୍ଟିଗୋଚରକୁ ଆସେ । ଇତି ମଧରେ ପତ୍ରପତ୍ରିକା ବୃଦ୍ଧି ପାଇଛି ଏବଂ ନାଟକର ଉତ୍କର୍ଷ ମଧ ସାଧିତ ହୋଇ ପାରିଛି । ଏ ସମସ୍ତ ସାହିତ୍ୟ ମଧବିତ୍ତ ଶ୍ରେଣୀ ମଧରେ ଅଧିକ ପ୍ରଚାରିତ । ଉଚ୍ଚସ୍ତର ବା ଧନୀକ ଓଡ଼ିଆ ପରିବାରରେ ଏବେ ମଧ ସାହିତ୍ୟ ବାସନ୍ଦ । ଗାଁର ମଳିମୁଣ୍ଡିଆଙ୍କ ମୁଣ୍ଡରେ ମଧ ଏ ସାହିତ୍ୟ ପ୍ରବେଶ କରିବାର ପଥ ପାଏ ନାହିଁ । କେବଳ ନାଟକରେ ସାହିତ୍ୟ ସଂଗୀତ ନୃତ୍ୟଭଂଗୀ ସହିତ ଅଙ୍ଗଭଙ୍ଗୀ ମଧ ନିୟୋଜିତ ଥିବାରୁ ନାଟକ ସାହିତ୍ୟ ଅନେକାଂଶରେ ଜନ-ସାହିତ୍ୟ ଆଖ୍ୟା ବହନ କରିପାରେ । କିନ୍ତୁ ପ୍ରକୃତ ଜନସାହିତ୍ୟ ଏବେ ମଧ ଶସ୍ତା ଦୁଇ-ପଇସିଆ କ୍ଷୁଦ୍ର ପୁସ୍ତକରେ ପର୍ଯ୍ୟବସିତ । ଏହି ସବୁ ଜନସାହିତ୍ୟର ଧର୍ମ ରୁଚି ନୁହେଁ, 'ସମ୍ବାଦ', ଯଥା କମଳାହରଣ, ବନ୍ୟାବିପତ୍ତି ଇତ୍ୟାଦି । ଶିଶୁସାହିତ୍ୟ ଏବେ ମଧ ପାଠ୍ୟପୁସ୍ତକ ମଧରେ ରୁଦ୍ଧଶ୍ୱାସ ହୋଇ ପଡ଼ିଛି । ପୁସ୍ତକ ଓ ପତ୍ରିକାର ମୁଦ୍ରଣ ପରିପାଟୀରେ ଆଧୁନିକ ଆବିଷ୍କାରର

ବରଦାନ ସଫଳ ହୋଇପାରି ନାହିଁ । ଏହା ହିଁ ଓଡ଼ିଆ ସମସାମିୟିକ ସାହିତ୍ୟର ସଂକ୍ଷିପ୍ତ ପରିକ୍ରମା ।

'ଓଡ଼ିଆ ସାହିତ୍ୟର ବାହକ ଏବେ ଆଉ ଭାଗବତ ଟୁଙ୍ଗୀ ନାହିଁ କିମ୍ବା ତାଳପତ୍ର ଖେଦାରେ ଅବରୁଦ୍ଧ ନୁହେଁ । ସାହିତ୍ୟର ବାହକ ବର୍ତ୍ତମାନ ପୁସ୍ତକ, ପତ୍ରିକା, ସମ୍ବାଦପତ୍ର, ଚଳଚ୍ଚିତ୍ର, ରେଡ଼ିଓ, ନାଟକ ଓ ଗ୍ରାମୋଫୋନ୍ । ଏଥିମଧ୍ୟରୁ ସମ୍ବାଦପତ୍ର ହିଁ ଜୀବନ ଓ ସାହିତ୍ୟ ମଧ୍ୟରେ ସର୍ବାଧିକ ସଂଯୋଗ-ସୂତ୍ର । ସହରମାନଙ୍କରେ ସିନେମା ହିଁ ସର୍ବୋତ୍କୃଷ୍ଟ ସାହିତ୍ୟ-ପରିବେଷକ । ଫଳରେ ବର୍ତ୍ତମାନ ଉତ୍କଳର ମୁଖ୍ୟ ସହରମାନଙ୍କରେ ସାହିତ୍ୟର ମାଧ୍ୟମ ଆଉ ଓଡ଼ିଆ ହୋଇ ରହି ନାହିଁ । ଏହା ଏକ ଭୀଷଣ ପରିସ୍ଥିତି । x x x

'କୌଣସି ଛାଟ ଦ୍ୱାରା ଯଦି କମଠ ଗତିରୁ ଉଚ୍ଚାଟ ସୃଷ୍ଟି କରା ନ ଯାଏ, ତେବେ ବିଶ୍ୱ ସାହିତ୍ୟ ସଭାରେ ସେ ଆପାଙ୍‌କ୍ତେୟ ହୋଇ ରହିଯିବା ବିଚିତ୍ର ନୁହେଁ । ଯେଉଁ ଭାଷାଭାଷୀ ବିଦ୍ୟାର୍ଥୀ ପୃଥିବୀରେ ଅଦ୍ୟାବଧି ଆହରିତ ଜ୍ଞାନ ଅର୍ଜନ ନିମନ୍ତେ ମାତୃଭାଷା ବ୍ୟତିରେକେ ଅନ୍ୟ ଭାଷା ଶିକ୍ଷାର ଆବଶ୍ୟକତା ନ ଦେଖେ, ସେହି ଭାଷା ହିଁ ବଳିଷ୍ଠ ଏବଂ ପୂର୍ଣ୍ଣାଙ୍ଗ । ଏହି ବଚନକୁ ପ୍ରମିତି କରି ଆମ ଭାଷାକୁ ମାପିଲେ, ବାସ୍ତବିକ ନିରାଶ ହେବାକୁ ପଡ଼େ । ଆମ୍ଭେମାନେ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛୁଁ, ଏହି ପ୍ରମାପରେ ଆମ୍ଭମାନଙ୍କର ଭାଷା ଅତି ଦୀନ ଏବଂ ନଗଣ୍ୟ ବୋଲି ସ୍ୱୀକାର କରିବାକୁ ହେବ । ବ୍ୟକ୍ତିଗତ ଉଦ୍ୟମରେ ଏ ଦିଗରେ ଏ କାଳରେ କୌଣସି କାର୍ଯ୍ୟ କରିହେବ ନାହିଁ । ତେଣୁ ଓଡ଼ିଶା ସରକାର ଏଥିପାଇଁ ଯତ୍‌ପରୋନାସ୍ତି ଉଦ୍ୟମ କରିବା ଅତ୍ୟାବଶ୍ୟକ ହୋଇ ପଡ଼ିଛି । ନଚେତ୍ ଶତାବ୍ଦୀ ପରେ ଏ ଭାଷା ଲୋପ ହୋଇଯିବାର ଆଶଙ୍କା ଯଥେଷ୍ଟ ରହିଛି ।'

ସେହି ସାହିତ୍ୟ ବିଶେଷାଙ୍କରେ ବିଶିଷ୍ଟ ବିଜ୍ଞ ବ୍ୟକ୍ତିମାନଙ୍କ ଦ୍ୱାରା ଲିଖିତ ଏହି ପ୍ରବନ୍ଧମାନ ପ୍ରକାଶ ପାଇଥିଲା :–

୧ । ଆମର ସାଂସ୍କୃତିକ ବିକାଶ – ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି

୨ । ଓଡ଼ିଆ ବିଜ୍ଞାନ ସାହିତ୍ୟ – ଅଧ୍ୟାପକ ଗୋକୁଳାନନ୍ଦ ମହାପାତ୍ର

୩ । ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳରେ ଓଡ଼ିଆ କଥାସାହିତ୍ୟ – ସୁରେନ୍ଦ୍ର ମହାନ୍ତି

୪ । ବର୍ତ୍ତମାନ ଓଡ଼ିଆ କାହାଣୀ – ତାରିଣୀ ଚରଣ ଦାସ

୫ । ଗତ ଦଶନ୍ଧିରେ ଓଡ଼ିଆ ଐତିହାସିକ ଗବେଷଣାର ଅଗ୍ରଗତି – ଅଧ୍ୟାପକ ଘନଶ୍ୟାମ ଦାସ

୬ । ଓଡ଼ିଶା ଇତିହାସର ନୂତନ ଆଲୋକ – ଶ୍ରୀମତୀ ଶାନ୍ତି ମିଶ୍ର

୭ । ଓଡ଼ିଆ ଲୋକ ସାହିତ୍ୟ – ଚକ୍ରଧର ମହାପାତ୍ର

୮ । ପ୍ରଗତିଶୀଳ କଳା ଓ ଓଡ଼ିଆ ଶିଳ୍ପୀର ବ୍ୟକ୍ତିତ୍ୱ – ବିନୋଦ ରାଉତରାୟ

୯ । ସ୍ୱାଧୀନତାପର ଓଡ଼ିଆ ସମାଲୋଚନା ସାହିତ୍ୟ – ଅଧ୍ୟାପକ ନଟବର ସାମନ୍ତରାୟ

୧୦ । ଗତ ଦଶ ବର୍ଷର ଓଡ଼ିଆ ଆଲୋଚନା ପ୍ରବନ୍ଧ – ଅଧ୍ୟାପକ ପଠାଣି ପଟ୍ଟନାୟକ

୧୧ । ଓଡ଼ିଶାରେ ସାମ୍ବାଦିକତାର ଦଶ ବର୍ଷ – ଚନ୍ଦ୍ରଶେଖର ମହାପାତ୍ର

୧୨ । ୧୯୪୬ରୁ ୧୯୫୬ ପର୍ଯ୍ୟନ୍ତ ଓଡ଼ିଆ କାବ୍ୟ କବିତାର ଅଗ୍ରଗତି – ଅଧ୍ୟାପକ ଜାନକୀ ମହାନ୍ତି

୧୩ । ସ୍ୱାଧୀନତା-ପରବର୍ତ୍ତୀ ଓଡ଼ିଆ କାବ୍ୟ ସାହିତ୍ୟ – ଅଧ୍ୟାପକ ଚିନ୍ତାମଣି ବେହେରା

୧୪ । ନାଟକର ଦଶବର୍ଷ – କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

୧୫ । ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଐତିହାସିକ ଅଭ୍ୟୁଦ୍‌ଥାନ – କାଳିନ୍ଦୀ ଚରଣ ପାଣିଗ୍ରାହୀ

୧୬ । ଓଡ଼ିଆରେ ପର୍ଯ୍ୟଟନ ସାହିତ୍ୟ – ଅଧ୍ୟାପକ ଗୋପାଳ ଚନ୍ଦ୍ର ମିଶ୍ର

୧୭ । ଏବର ଶିଶୁ ସାହିତ୍ୟ – କୃଷ୍ଣ ଚରଣ ବେହେରା

୧୮ । ଓଡ଼ିଆ ପୁସ୍ତକ ପ୍ରକାଶନର ଭବିଷ୍ୟତ୍ – ଡକ୍ଟର ହରେକୃଷ୍ଣ ମହତାବ ।

ଉକ୍ତ ବିଶେଷାଙ୍କରେ ୧୯୫୧-୫୬ ଏହି ପାଞ୍ଚବର୍ଷ ମଧ୍ୟରେ ଯେଉଁ ସବୁ ଉଲ୍ଲେଖନୀୟ ଓଡ଼ିଆ ସାହିତ୍ୟ ଗ୍ରନ୍ଥର ପ୍ରଥମ ସଂସ୍କରଣ ପ୍ରକାଶିତ ହୋଇଥିଲା, ତାହାର ଯଥାସମ୍ଭବ ଏକ ପୂର୍ଣ୍ଣାଙ୍ଗ ତାଲିକା କାବ୍ୟ-କବିତା, ଉପନ୍ୟାସ, କାହାଣୀ, ନାଟକ, ପର୍ଯ୍ୟଟନ, ପ୍ରବନ୍ଧ ଓ ସମାଲୋଚନା, ଜୀବନୀ ଓ ସ୍ମୃତି ଚିତ୍ର, ଶିଶୁ ଓ କିଶୋର ସାହିତ୍ୟ, ଅନୁବାଦ ଏବଂ ବିବିଧ – ଏହି ଦଶଟି ବିଭାଗରେ ପ୍ରଦାନ କରାଯାଇଥିଲା । ଓଡ଼ିଆ ସାହିତ୍ୟରେ ଜାତୀୟ ଯୁଗର ପ୍ରବର୍ତ୍ତକ, ଆଧୁନିକ କାଳର ବିଶିଷ୍ଟ ଦ୍ୟୁତି ଏବଂ ଓଡ଼ିଆ ସାହିତ୍ୟାକାଶରେ ଉଦୀୟମାନ୍ ଜ୍ୟୋତି ପୁଞ୍ଜ ଶୀର୍ଷକରେ ପ୍ରାୟ ସତୁରୀ ଜଣ କବି-ଲେଖକ ସାହିତ୍ୟିକଙ୍କର ରେଖାଚିତ୍ର ଓ ଆଲୋକ ଚିତ୍ର ମଧ୍ୟ ମୁଦ୍ରିତ ହୋଇଥିଲା । ମୋଟାମୋଟି ଭାବରେ ସାହିତ୍ୟ ବିଶେଷାଙ୍କଟି ଏପରି ଉଚ୍ଚକୋଟୀର ହୋଇଥିଲା ଯେ, ତାହା ଏପର୍ଯ୍ୟନ୍ତ ଏକ ସଂଗ୍ରହଣୀୟ ସଂଖ୍ୟା ହୋଇ ରହିଛି ଏବଂ ବିଭିନ୍ନ ସାହିତ୍ୟ ସମୀକ୍ଷକ ଓ ଗବେଷକଙ୍କ କାର୍ଯ୍ୟରେ ଲାଗୁଛି ।

'ଡଗର' ସାହିତ୍ୟ ବିଶେଷାଙ୍କ ବ୍ୟତୀତ ଆଉ କେତେକ ବିଶେଷାଙ୍କ ପ୍ରକାଶ ପାଇଁ ନିତ୍ୟାନନ୍ଦବାବୁଙ୍କ ସହ ପରାମର୍ଶ କରିଥିଲି ଏବଂ ତଦନୁଯାୟୀ ଯୋଜନା ମଧ୍ୟ

ପ୍ରସ୍ତୁତ କରାଯାଇଥିଲା । ମୁଁ 'ଡଗର' ପ୍ରତିଷ୍ଠାନ ଛାଡ଼ି ଭଦ୍ରକ କଲେଜରେ ଯୋଗ ଦେଇ ଥିଲେ ମଧ୍ୟ ବରାବର 'ଡଗର' ପ୍ରକାଶନ ସହ ସଂପୃକ୍ତ ଥିଲି ଏବଂ ଏହି ସବୁ ବିଶେଷାଙ୍କ ପ୍ରକାଶରେ ନିତ୍ୟାନନ୍ଦବାବୁଙ୍କୁ ଯଥାଶକ୍ତି ସାହାଯ୍ୟ-ସହଯୋଗ ପ୍ରଦାନ କରୁଥିଲି । 'ଡଗର'ର ସେହିସବୁ ବିଖ୍ୟାତ ବିଶେଷାଙ୍କ ହେଉଛି – ଗଳ୍ପ ବିଶେଷାଙ୍କ (ନଭେମ୍ବର, ୧୯୫୬), ସମାଲୋଚନା ବିଶେଷାଙ୍କ (୧୯୫୮), ରାଧାନାଥ ବିଶେଷାଙ୍କ (ଜାନୁୟାରୀ, ୧୯୬୧), ଗଙ୍ଗାଧର ବିଶେଷାଙ୍କ (ଫେବୃୟାରୀ, ୧୯୬୮), ଆଧୁନିକ କବିତା ବିଶେଷାଙ୍କ (ଏପ୍ରିଲ୍-ମେ-ଜୁନ୍, ୧୯୬୯ ଯୁକ୍ତ ସଂଖ୍ୟା) ପ୍ରଭୃତି । 'ଡଗର'ର ଏହି ବିଶେଷାଙ୍କମାନ ବିଶେଷତଃ ସାହିତ୍ୟ ବିଶେଷାଙ୍କ ଭଳି ସର୍ବଦିଗସ୍ପର୍ଶୀ ମର୍ଯ୍ୟାଦାବନ୍ତ ପ୍ରକାଶନ ଏବେ ଆମର ପତ୍ରପତ୍ରିକା ପ୍ରତିଷ୍ଠାନଗୁଡ଼ିକ କ୍ୱଚିତ୍ କରୁଥିବାର ଦେଖା ଯାଇଛି ।

ସେତେବେଳେ କଟକ ପିଠାପୁରସ୍ଥ 'ଡଗର' ଅଫିସ୍ ଏକ ସାଂସ୍କୃତିକ ପୀଠରେ ପରିଣତ ହୋଇଥିଲା । ରାଜ୍ୟର ବହୁ ପ୍ରବୀଣ ତଥା ତରୁଣ ସାହିତ୍ୟିକ, କବି-ଲେଖକ, ସଂଗୀତଜ୍ଞ ଓ ଚିତ୍ରଶିଳ୍ପୀ ସେଠାକୁ ଆସୁଥିଲେ ଏବଂ ବିଭିନ୍ନ ପ୍ରକାର ଆଲୋଚନା-ଚର୍ଚ୍ଚାରେ ପରିବେଶକୁ ସରଗରମ କରି ରଖୁଥିଲେ । ସେମାନଙ୍କ ସହିତ ମିଳାମିଶା କରିବା ଏବଂ ସାହିତ୍ୟ, କଳା, ରାଜନୀତି ଆଦି ବିଷୟରେ ଭାବ-ବିନିମୟ କରିବାର ସୌଭାଗ୍ୟ ମୋତେ ମିଳିଥିଲା । ମୁଁ ସେତେବେଳେ ପିଠାପୁର 'ଡଗର' ପ୍ରେସ୍ ପାଖରେ ଏକ ଘର ଭଡ଼ା ନେଇ ସସ୍ତ୍ରୀକ ରହୁଥିଲି । ଆଗ ଓ ପଛରେ ଟିକିଏ ଖୋଲା ଜାଗା ଥାଇ ଦୋତାଲା ଘର; ଉପର ତାଲାରେ ରହୁଥାଆନ୍ତି – 'ଝଙ୍କାର' ପତ୍ରିକାର ତତ୍‌କାଳୀନ ପରିଚାଳନା ସଂପାଦକ ଶ୍ରୀ ଚକ୍ରଧର ସାମଲ । ବଡ଼ ଅମାୟିକ ସଂସ୍କୃତିପ୍ରେମୀ ଭଦ୍ରଲୋକ ସେ, କବିତା ଓ ଆଲୋଚନା ପ୍ରବନ୍ଧ ଲେଖୁଥିଲେ ବେଶ୍ । 'ଝଙ୍କାର' ଛାଡ଼ିଲା ପରେ ସେ ସାହିତ୍ୟ କ୍ଷେତ୍ରରୁ ବିଦାୟ ଘେନିଗଲେ । ତାଙ୍କର ଲେଖାଲେଖି ଆଖିରେ ପଡ଼ିବା ତ ଦୂରର କଥା ! ତାଙ୍କର ଚେହେରାଟି ମଧ୍ୟ ଏବେ କାହିଁ କେଉଁଠି ଦେଖିବାକୁ ମିଳୁ ନାହିଁ । ତଳ ତାଲାରେ ରହୁଥାଏଁ ମୁଁ । ସ୍ତ୍ରୀ ସେତେବେଳେ ଅନ୍ତଃସତ୍ତ୍ୱା ଥାଆନ୍ତି । ମଝିରେ ମଝିରେ ତାଙ୍କୁ ଡାକ୍ତର ଦେଖାଇବାକୁ ପଡୁଥାଏ । ତାଙ୍କର ପ୍ରଥମ ଡେଲିଭରି କଟକ ବଡ଼ ଡାକ୍ତରଖାନାରେ କରାଇବାର ଇଚ୍ଛା ଥାଏ ।

ସମାଜସେବୀ ସଂସ୍କୃତିପ୍ରେମୀ ବ୍ୟକ୍ତି ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ କଥା ପାଶୋରି ପାରିବି ନାହିଁ । ତାଙ୍କର ଆତ୍ମଚରିତ 'ଡଗର'ରେ ଧାରାବାହିକ ଭାବରେ ପ୍ରକାଶ ପାଉଥାଏ । ପ୍ରାୟ ପ୍ରତି ମାସରେ ଥରେ ଦୁଇଥର ଲେଖାଏଁ ସେ ଆସନ୍ତି । ନିତ୍ୟାନନ୍ଦବାବୁ ଓ ମୋ ସହିତ ଦେଶର ରାଜନୀତି ବିଷୟରେ ମୁଖ୍ୟତଃ କଥାବାର୍ତ୍ତା କରନ୍ତି । ମୋର

ବାମପନ୍ଥୀ ଚିନ୍ତାଧାରାକୁ ମଝିରେ ମଝିରେ ସେ ଉସ୍‌କାଇ ଦେଉଥିଲେ ଏବଂ ପୃଥିବୀର ବିଭିନ୍ନ ଦେଶକୁ ସଂକ୍ରମିତ ହେଉଥିବା ମାର୍କସବାଦୀ ଆନ୍ଦୋଳନର ଗତି-ପ୍ରକୃତି ପ୍ରତି ନିଘା ଦେବାକୁ କହୁଥିଲେ । ନିତ୍ୟାନନ୍ଦବାବୁ କିନ୍ତୁ ମୋର ବାମପନ୍ଥୀ ଭାବଧାରା ଓ କମ୍ୟୁନିଜିମ୍-ପ୍ରୀତି ପସନ୍ଦ କରୁ ନ ଥିଲେ । ତାଙ୍କର ଉପଯୁକ୍ତ ଯୁକ୍ତିଟି ଏ ପର୍ଯ୍ୟନ୍ତ ମୋର ସ୍ପଷ୍ଟ ମନେ ଅଛି – ଜନସେବା ବା ଦେଶ ସେବା କରିବ ତ ଦଳ କାହିଁକି ? ନିର୍ଦ୍ଦିଷ୍ଟ ମତାଦର୍ଶ କାହିଁକି ? ସନ୍ତାନସନ୍ତତିଙ୍କୁ ସ୍ତନ୍ୟପାନ କରାଇବା କିମ୍ବା ଲାଳନପାଳନ କରିବା ପାଇଁ ମାଆମାନେ କ'ଣ ଦଳ ଗଢ଼ିବେ ? ତମେ ଯଦି ଜନସେବା କରିବାକୁ ଚାହୁଁଛ, କୌଣସି ଦଳ ମତାଦର୍ଶରେ ସଂପୃକ୍ତ ନ ହୋଇ ସ୍ୱାଧୀନ ଭାବରେ ତାହା କରି ପାରିବ । ଏଠାରେ ସୂଚାଇ ଦେବା ଉଚିତ ଯେ – ନିତ୍ୟାନନ୍ଦବାବୁ ନିଜକୁ କୌଣସି ରାଜନୈତିକ ଦଳରେ ସାମିଲ୍ ନ କରି ସ୍ୱାଧୀନ ପ୍ରାର୍ଥୀ ଭାବରେ ଭଦ୍ରକରୁ ନିର୍ବାଚନ ଲଢ଼ି ଦୁଇଥର ଓଡ଼ିଶା ଆସେମ୍ଲିକୁ ନିର୍ବାଚିତ ହୋଇଥିଲେ ।

କବିଚନ୍ଦ୍ର କାଳୀଚରଣ, କବି ରାଧାମୋହନ ଗଡ଼ନାୟକ ଓ ଅନନ୍ତ ପଟ୍ଟନାୟକ, କଥାକାର ରାଜକିଶୋର ପଟ୍ଟନାୟକ ଓ ସୁରେନ୍ଦ୍ର ମହାନ୍ତି, ହାସ୍ୟରସିକ ଫତୁରାନନ୍ଦ, ସାହିତ୍ୟିକ ମୁରାରି ମୋହନ ଜେନା, ସୁଲେଖକ ଉମେଶ ପାଣିଗ୍ରାହୀ ଓ ଲକ୍ଷ୍ମୀନାରାୟଣ ମହାନ୍ତି, ନେତ୍ରୀ ଓ ସାହିତ୍ୟିକା ଶ୍ରୀମତୀ ସରଳା ଦେବୀ, କବି ବିଦ୍ୟୁତ୍ ପ୍ରଭା ଓ ତୁଳସୀ ଦାସ ପ୍ରମୁଖ ସାହିତ୍ୟ କ୍ଷେତ୍ରର ଶିଷ୍ଟ ବିଶିଷ୍ଟ ବହୁ କବି ଲେଖକ ସେତେବେଳେ 'ଡଗର' ଅଫିସ୍‌କୁ ଆସୁଥିଲେ । ସେମାନଙ୍କ ସଖ୍ୟ ଓ ସାନ୍ନିଧ୍ୟ-ଲାଭ ମୋ ପକ୍ଷରେ ବଡ଼ ପ୍ରୀତିପଦ ଓ ଉପାଦେୟ ହୋଇଥିଲା । କେତେକଙ୍କ ସହିତ ସଂପର୍କରେ ଆନ୍ତରିକତା ଓ ଘନିଷ୍ଠତା ପ୍ରତିଷ୍ଠିତ ହୋଇଥିଲା, ଯାହା ମୋର ସାହିତ୍ୟିକ ଜୀବନର ବଳିଷ୍ଠ ଭୂମିକା ରୂପେ ବରାବର କାର୍ଯ୍ୟ କରିଆସିଛି । ଏହି କବି ଲେଖକମାନଙ୍କ ରୁଚି, ଆଚରଣ ଓ ମନ ମେଜାଜ ବିଷୟରେ ବିଭିନ୍ନ ଘଟଣା ମୋର ସ୍ମୃତିର ସଙ୍ଖାଳି ହୋଇ ରହିଛି । ଶ୍ରୀମତୀ ସରଳା ଦେବୀ ନିତ୍ୟାନନ୍ଦବାବୁଙ୍କର ସଂପର୍କୀୟା ମାଉସୀ ହିସାବରେ ଆମ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନର ପାତ୍ରୀ ଥିଲେ । ସେ ଯେତେବେଳେ 'ଡଗର' ଅଫିସ୍‌କୁ ଆସୁଥିଲେ, ଆମକୁ କିଛି କାର୍ଯ୍ୟ କରାଇ ଦେଉ ନ ଥିଲେ । ଆମ ଆଗରେ ଆପଣା ଗଞ୍ଜପେଡ଼ି ଫିଟାଇ ଦେବା ସଂଗେ ସଂଗେ 'ଚା' ଆଣ – ପାନ ଆଣ' ଇତ୍ୟାଦି କେତେ କ'ଣ ଫର୍‌ମାସ୍ କରୁଥିଲେ । 'ମୁଁ କେତେ ଲେଖା ଦେଲିଣି, ଡଗରରେ କାହିଁକି ପ୍ରକାଶ ପାଉ ନାହିଁ' ବୋଲି କୈଫିୟତ୍ ତଲବ କରୁଥିଲେ; ତେଣୁ ସେ ଆସିଲା ମାତ୍ରେ ଅନେକ ସମୟରେ ନିତ୍ୟାନନ୍ଦ ବାବୁ ଦେହଛପା ଦେଇ ରହୁଥିଲେ, ମୋତେ ମାଉସୀଙ୍କୁ ସାମନା କରିବାକୁ ହେଉଥିଲା – ତାଙ୍କର ଯାବତୀୟ ଅଳି ଅର୍ଦ୍ଦଳି ସହ୍ୟ କରିବାକୁ ପଡୁଥିଲା । ଦିନେ

ସେହିପରି ଏକ ପରିସ୍ଥିତିରେ ସେ ମୋ ଦ୍ୱାରା ଚା', ପାନ ମଗାଇଲେ । ଚା' ପିଇ ସାରିଲା ପରେ ପାନ ଚୋବାଇ ଚୋବାଇ ଝରକା ବାଟ ଦେଇ ବାରମ୍ବାର ପାନପିକ ବାହାରକୁ ପକାଇବାରେ ଲାଗିଲେ । ତେଣେ ଝରକା ସେ-ପଟରେ ନିତ୍ୟାନନ୍ଦବାବୁ ନିଜର ଖଦଡ଼ ଧୋତି ସଫା କରି ଶୁଖାଇବା ପାଇଁ ଟାଙ୍ଗି ଥାଆନ୍ତି । କିଛି ସମୟ ପରେ ଦେଖାଗଲା – ସଫା ଧୋତିଟା ସରଳା ଦେବୀଙ୍କ ପାନ ପିକରେ ଠାଏ ଠାଏ ରକ୍ତାଭ ହୋଇ ଉଠିଛି । କିନ୍ତୁ ସେଥିପ୍ରତି ମାଉସୀଙ୍କର ଶୋଚନା ନାହିଁ । ସେ ନିଶ୍ଚିନ୍ତରେ ବସି ଖଣ୍ଡିକ ପରେ ଖଣ୍ଡିଏ ପାନ ଚୋବାଇବା ସଂଗେ ସଂଗେ ଆମ ସହିତ ଗପିବାରେ ଲାଗିଥାଆନ୍ତି ଏବଂ ମଝିରେ ମଝିରେ ସେହିପରି ଝରକା ବାଟ ଦେଇ ବାହାରକୁ ପାନପିକ ପକାଉ ଥାଆନ୍ତି ।

ଚିତ୍ରଶିଳ୍ପୀ ନିତ୍ୟାନନ୍ଦ ମହାପାତ୍ର (ଲକ୍ଷ୍ନୌ), ଲକ୍ଷ୍ମୀଧର ଦାସ, ବିନୋଦ ରାଉତରାୟ ପ୍ରମୁଖ ସେତେବେଳେ 'ଡଗର' ସହ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ ଏବଂ ପ୍ରକାଶ ପାଇଁ ବିଭିନ୍ନ ଚିତ୍ର ଯୋଗାଇ ଦେଉଥିଲେ । ଫତୁରାନନ୍ଦ ଓ ସ୍ୱୟଂ 'ଡଗର' ସଂପାଦକ ନିତ୍ୟାନନ୍ଦବାବୁ ବରାବର କାର୍ଟୁନ୍ ବା ବ୍ୟଙ୍ଗ ଚିତ୍ର ଆଙ୍କି 'ଡଗର'ରେ ପ୍ରକାଶ ପାଇଁ ମଧ୍ୟ ଦେଉଥିଲେ । ଲେଖାଲେଖି କରିବା ସଂଗେ ସଂଗେ ଏ ଉଭୟ ବ୍ୟକ୍ତି ଯେ ନିୟମିତ ଚିତ୍ର ଆଙ୍କୁଥିଲେ, ଏକଥା ହୁଏତ ଅନେକେ ଜାଣନ୍ତି ନାହିଁ । ସେତେବେଳେ 'ଡଗର'ର ପ୍ରତି ସଂଖ୍ୟାରେ କିଛି-ନା-କିଛି ବ୍ୟଙ୍ଗ ଚିତ୍ର ଓ ସାଧାରଣ ଚିତ୍ର ପ୍ରକାଶ ପାଉଥିଲା । ଏବେ ଆମର ସାହିତ୍ୟ ପତ୍ରିକାମାନଙ୍କରେ କିଛି ଆଲୋକଚିତ୍ର ପ୍ରକାଶ ପାଉଥିଲେ ହେଁ ଶିଳ୍ପୀମାନଙ୍କ ସୃଷ୍ଟି ଚିତ୍ରକଳା କ୍ୱଚିତ୍ ପ୍ରକାଶ ପାଇଥାଏ । ସୃଜନଶୀଳତାର ସମାନ କୋଟୀରେ ସାହିତ୍ୟ ଓ ଚିତ୍ରକଳାର ସ୍ଥାନ; ତେଣୁ ସାହିତ୍ୟ-ପତ୍ରିକାମାନଙ୍କର ଅଳଙ୍କରଣ ସଂଗେ ସଂଗେ ନାନ୍ଦନିକ ମର୍ଯ୍ୟାଦା ବୃଦ୍ଧି ପାଇଁ ଲେଖା ସହ ରେଖାର ସମାବେଶ ଲୋଡ଼ା । ଏଥିପ୍ରତି ଅଧିକାଂଶ ପ୍ରକାଶକ ଓ ସଂପାଦକ ଧ୍ୟାନ ଦେଉ ନ ଥିବା ଦୁଃଖର କଥା ।

ସର୍ବଶ୍ରୀ ଜୟକୃଷ୍ଣ ମିଶ୍ର, ଗୋପାଳ ଚନ୍ଦ୍ର ମିଶ୍ର, ନଟବର ସାମନ୍ତରାୟ, ପଠାଣି ପଟ୍ଟନାୟକ, ତାରିଣୀ ଚରଣ ଦାସ, ଶ୍ୟାମସୁନ୍ଦର ମିଶ୍ର ପ୍ରଭୃତିଙ୍କ ଭଳି କେତେକ ଅଧ୍ୟାପକ ମଧ୍ୟ ମଝିରେ ମଝିରେ 'ଡଗର' ଅଫିସ୍‌କୁ ଆସୁଥିଲେ ଏବଂ ଆମ ସହିତ ବିଭିନ୍ନ ସାହିତ୍ୟିକ ବିଷୟରେ ଆଲୋଚନା କରୁଥିଲେ । ଏହି ଆଲୋଚନା ମୋ ପକ୍ଷରେ ବଡ଼ ଉତ୍ସାହପ୍ରଦ ଓ ସୃଷ୍ଟି-ପ୍ରଚୋଦକ ହେଉଥିଲା । ଏମାନଙ୍କ ମଧ୍ୟରୁ ଜୟକୃଷ୍ଣବାବୁ ଓ ଗୋପାଳବାବୁ ପୂର୍ବରୁ (୧୯୫୦-୫୨) ରେଭେନ୍‌ସା କଲେଜରେ ମୋର ଅଧ୍ୟାପକ ଥିଲେ । ଥରେ ଜୟକୃଷ୍ଣବାବୁ 'ଡଗର'ରେ ପ୍ରକାଶ ପାଇଁ କ'ଣ ଗୋଟିଏ ଲେଖା ପଠାଇଥିଲେ; ଦୁଇ ତିନିମାସ ବିତି ଯାଇଥିଲେ ହେଁ ଲେଖାଟି କୌଣସି କାରଣରୁ ପ୍ରକାଶ

ପାଇ ନଥାଏ । ତେଣୁ ଜୟକୃଷ୍ଣବାବୁ ଖପ୍‌ପା ହୋଇ ଆମକୁ ଗାଳି କରିବାକୁ ମନେ ମନେ ଠିକ୍ କରି ଦିନେ 'ଡଗର' ଅଫିସ୍‌କୁ ଆସିଲେ । ଆମେ ସେତେବେଳେ ଅଫିସ୍‌ରେ ବସି କାମ କରୁଥାଉଁ । ଜୟକୃଷ୍ଣବାବୁଙ୍କୁ ଯେଉଁମାନେ ଦେଖିଥିବେ, ସେମାନେ ଜାଣିଥିବେ – ସେ ବେଶ୍ ଲମ୍ବା ଚଉଡ଼ାର ଥୁକୁଲ୍ ଥାକୁଲ୍ ହୋଇ ମଣିଷଟିଏ । ଡଗର ଅଫିସ୍‌ର ଅନୁଚ୍ଚ ଦ୍ୱାର ଟପି ଭିତରକୁ ପଶି ଆସିଲାବେଳେ ଢାଏ କରି ତାଙ୍କର ମୁଣ୍ଡଟି ଦୁଆର ବନ୍ଧରେ ବାଡ଼େଇ ହୋଇଗଲା । ତା'ପରେ ମଥାକୁ ଆଉଁସୁ ଆଉଁସୁ ସେ ପାଟି କରି କହିବାରେ ଲାଗିଲେ – 'ନିତ୍ୟାନନ୍ଦ ବାବୁ, ମୁଁ ଉଦ୍ ହତ ହୋଇଗଲି ! କୃଷ୍ଣ, ମୁଁ ଉଦ୍ ହତ ହୋଇଗଲି ! ନିତ୍ୟାନନ୍ଦବାବୁ ତାଙ୍କର ବନ୍ଧୁ, ମୁଁ ତାଙ୍କର ଛାତ୍ର । ଆମେ ଦୁହେଁ ଏହି ଅପ୍ରତ୍ୟାଶିତ ଘଟଣାରେ ଟିକିଏ ବ୍ୟସ୍ତ ହୋଇ ପଡ଼ିଲୁଁ ଏବଂ ତାଙ୍କର 'ଉଦ୍‌ହତ' ହେବା କଥାଟି ହୃଦୟଙ୍ଗମ କରି ପାରିଲୁ ନାହିଁ । କିଛି କ୍ଷଣ ସେ ଧୀରସ୍ଥିର ହୋଇ ବସିଲା ପରେ ପାଣି ଗିଲାସେ ପିଇଲେ ଏବଂ ମୁଣ୍ଡର ବ୍ୟଥା ଉପଶମ ହେବାରୁ ଆମକୁ ଗୁମର କଥାଟା ଫେଡ଼ି କହିଲେ । ତାଙ୍କ ଭଳି ଜଣେ ବିଖ୍ୟାତ ଅଧ୍ୟାପକଙ୍କ ଲେଖା 'ଡଗର'ରେ ପ୍ରକାଶ କରି ନ ଥିବାରୁ ସେ ଆମକୁ ଗାଳି ଦେବା ପାଇଁ ଯେପରି ଉଦ୍ଧତ ହୋଇ ପଡ଼ିଥିଲେ, ଏ ଦଣ୍ଡ ତାହାରି ଫଳ । (ଉଦ୍ + ହନ୍ + ତ = ଉଦ୍ଧତ) ଯେ ଉଦ୍ଧତ, ସେ ଆଚ୍ଛା କରି ହତ ହୋଇଥାଏ । ମାତ୍ର ଉନ୍ନତ ହେଉଛି ସେହି ବ୍ୟକ୍ତି, ଯେ ବିଶେଷ ଭାବରେ ନତ (ଉଦ୍ + ନମ୍ + ତ = ଉନ୍ନତ) । ତେଣୁ ଔଦ୍ଧତ୍ୟ, ଅହଂକାର ନୈବ ନୈବ ଚ !

ଫତୁରାନନ୍ଦ 'ଡଗର' ଅଫିସ୍‌କୁ ବରାବର ହାସ୍ୟ ମୁଖର କରି ରଖିଥିଲେ । ଲେଖାଲେଖିରେ ସେ ଯେପରି ନିପୁଣ ଥିଲେ, ବୈଠକୀ ଗଳ୍ପ-ଗୁଜବ କରିବାରେ ଥିଲେ ସେହିପରି ଧୁରୀଣ । ସେତେବେଳେ ସେ ବ୍ୟାଧିମୁକ୍ତ ହୋଇଥିଲେ ହେଁ, ଆଖି ଯୋଡ଼ିକରେ ଭଲ ଦେଖିପାରୁ ନ ଥିଲେ । 'ଡଗର'ର ପ୍ରତିଷ୍ଠାତା କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଜୀବନ ଭଳି ତାଙ୍କ ଜୀବନରେ ରଙ୍ଗରସ ଓ ବେଦନା-କାରୁଣ୍ୟର ଅପୂର୍ବ ସମବାୟ ସାଧିତ ହୋଇଥିଲା । ସେ ନିଜେ ହସୁଥିଲେ କମ୍, କିନ୍ତୁ ଅନ୍ୟମାନଙ୍କୁ ହସାଉଥିଲେ ବେଶି । କାନ୍ତକବିଙ୍କ ଜୀବନ ସହିତ ସାଦୃଶ୍ୟ ଥିବାରୁ ଏବଂ ରଙ୍ଗରସର ସାହିତ୍ୟ ସୃଷ୍ଟିରେ ହାତ ଦେଇଥିବାରୁ ସେ ବୋଧହୁଏ 'ଡଗର' ସହ ଘନିଷ୍ଠ ଭାବରେ ସଂପୃକ୍ତ ହୋଇ ପଡ଼ିଥିଲେ । ପିଠାପୁର ସଦର ରାସ୍ତା ଉପରେ ଥିବା ନିଜର ଘରଟିକୁ 'ଡଗର' ପ୍ରେସ୍ ଓ ଅଫିସ୍ ପାଇଁ ଛାଡ଼ି ଦେଇଥିଲେ । ନିଜେ ରହୁଥିଲେ ଅଦୂରରେ ଝାଞ୍ଜିରିମଙ୍ଗଳାସ୍ଥ ପୈତୃକ ବାସଭବନରେ । କିନ୍ତୁ ସେଠାରେ ଭୋଜନ କରି 'ଡଗର' ପ୍ରେସ୍‌କୁ ଆସି କୁଳୁକୁଞ୍ଚା ପକାଉଥିଲେ । 'ଡଗର'ର ସାଂସ୍କୃତିକ ପରିବେଶରେ ଆମମାନଙ୍କ ଭଳି କବି-ଲେଖକଙ୍କ ମେଳରେ ଆପଣା ବିଡ଼ମ୍ବିତ

ଜୀବନର ଅଭୀପ୍‌ସାକୁ ହୁଏତ କିଛି ପରିମାଣରେ ଚରିତାର୍ଥ କରିପାରୁଥିଲେ । ପରବର୍ତ୍ତୀ କାଳରେ ନିତ୍ୟାନନ୍ଦବାବୁ ଯେବେ ଭୁବନେଶ୍ୱରରେ ଅବସ୍ଥାନ କଲେ ଏବଂ ରାଜନୈତିକ କାର୍ଯ୍ୟକଳାପରେ ବ୍ୟସ୍ତ ରହି 'ଡଗର' ବ୍ୟାପାର ପ୍ରତି ବିଶେଷ ଧ୍ୟାନ ଦେଇପାରିଲେ ନାହିଁ, ସେତେବେଳେ ଫତୁରାନନ୍ଦ ନିଜର ସାଧମତେ 'ଡଗର' ପରିଚାଳନା ଦାୟିତ୍ୱ ତୁଲାଇଥିଲେ ଏବଂ ଦୀର୍ଘକାଳ ପତ୍ରିକାଟିକୁ ବଞ୍ଚାଇ ରଖିପାରିଥିଲେ । ସେତେବେଳେ 'ଡଗର' ଓ ଫତୁରାନନ୍ଦ ପ୍ରାୟ ଏକ ଓ ଅଭିନ୍ନ ହୋଇ ଯାଇଥିଲେ । କିନ୍ତୁ ତାଙ୍କର ଶାରୀରିକ ପ୍ରତିବନ୍ଧକତାର ସୁଯୋଗ ନେଇ କେତେକ ସଂସ୍କୃତି-ବ୍ୟବସାୟୀ 'ଡଗର' ପତ୍ରିକାକୁ ନିଜ ନିଜର ନ୍ୟସ୍ତସ୍ୱାର୍ଥ ଚରିତାର୍ଥ ସକାଶେ ଉପଯୋଗ କରିବାରୁ ନିତ୍ୟାନନ୍ଦବାବୁ ବାଧ ହୋଇ ପ୍ରେସ୍ ସହ ପତ୍ରିକାଟିକୁ ଭୁବନେଶ୍ୱର ଖାରବେଳ ନଗରସ୍ଥ ଆପଣା ବାସଭବନ 'କାନ୍ତକୁଟୀର'କୁ ସ୍ଥାନାନ୍ତରିତ କରିନେଲେ । ଡଗର ପ୍ରକାଶନ ଏବେ ସାମୟିକ ଭାବରେ ବନ୍ଦ ରହିଛି ।

ନିତ୍ୟାନନ୍ଦ ବାବୁ ଜଣେ କଥାକାର ଭାବରେ ସେତେବେଳକୁ ଆମ ସାହିତ୍ୟରେ ପ୍ରତିଷ୍ଠା ଲାଭ କରି ସାରିଥିଲେ । ଭୁଲ୍, ଜୀଅନ୍ତା ମଣିଷ, ଜୀବନର ଲକ୍ଷ୍ୟ, ପୀରତି ପଥ ଖସଡ଼ା, ହିଡ଼ମାଟି ପ୍ରଭୃତି ଉପନ୍ୟାସ ଏବଂ କ୍ଷଣିକା, ଏ଼ଗାରଟା ଆଦି ଗଳ୍ପ ଗ୍ରନ୍ଥ ପ୍ରକାଶ ପାଇ ତାଙ୍କୁ ଖ୍ୟାତନାମା କରାଇଥିଲା । 'ଡଗର'ରେ ମୋର ରହଣି ସମୟରେ ସେ ବେଶି ଗଳ୍ପ ଲେଖୁଥିଲେ – ଗଳ୍ପ ଲେଖିବାକୁ ବାଧ ହେଉଥିଲେ କହିଲେ ଚଳେ । କାରଣ, 'ଡଗର'ରେ ପ୍ରକାଶ ପାଇଁ ଭଲ ଗଳ୍ପ ଆସୁ ନ ଥିଲା ବେଳେ ସେ ଗଳ୍ପ ଲେଖି କେତେକ ନିଜ ନାମରେ କିନ୍ତୁ ଅଧିକାଂଶ ଛଦ୍ମ ନାମରେ ପତ୍ରିକା ପୃଷ୍ଠାରେ ସ୍ଥାନିତ କରୁଥିଲେ । ଗଳ୍ପ ରଚନାର ଆଙ୍ଗିକ (ଶୈଳୀ ଓ ଭାଷାବିନ୍ୟାସ) କ୍ଷେତ୍ରରେ ସେ ଏପରି ପରୀକ୍ଷା-ପ୍ରୟୋଗ କରିଛନ୍ତି ଯେ – ବିଭିନ୍ନ ଛଦ୍ମନାମରେ ପ୍ରକାଶିତ ଗଳ୍ପଗୁଡ଼ିକ ମଧ୍ୟରୁ କେଉଁ ଗଳ୍ପଟି ତାଙ୍କ ନିଜର ଲେଖା, ଏବେ ତାହା ସ୍ଥିର କିରବା ଦୁଷ୍କର ହୋଇ ପଡ଼ିଛି । 'ଡଗର'ର ପୁରୁଣା ସଂଖ୍ୟାଗୁଡ଼ିକରୁ ମୋତେ ତାହା ଚିହ୍ନଟ କରିଦେବାକୁ ସେ କେତେଥର କହିଲେଣି । କିନ୍ତୁ ପ୍ରାୟ ଚାଳିଶି ବର୍ଷ ତଳର ସେହି ଛଦ୍ମ ନାମକରଣ ସବୁ ମୋର ସ୍ମୃତି ପଟରେ ବଡ଼ ଅସ୍ପଷ୍ଟ ହୋଇ ଯାଇଛି । ସେହି ସମୟରେ ନିତ୍ୟାନନ୍ଦବାବୁ ନିଜର ବିଖ୍ୟାତ ଗ୍ରନ୍ଥ 'ପତ୍ର ଓ ପ୍ରତିମା'ର ରମ୍ୟରଚନା ବା ଲଘୁ ପ୍ରବନ୍ଧଗୁଡ଼ିକ ଲେଖୁଥିଲେ । ତହିଁରୁ ଭକ୍ତି, ପ୍ରେମ, ସଭ୍ୟତା ଭଳି କେତୋଟି ରମ୍ୟରଚନା ଉପରେ ଆମର ଆଲୋଚନା ହୋଇଥିଲା । ତାଙ୍କର ଏହି ରଚନା ପତ୍ରାକାରରେ ଲେଖା; ତହିଁରେ କବିତାର ଭାବାବେଗ ଓ ଗଳ୍ପର କଥକତା ରହିଥିବାରୁ ପ୍ରବନ୍ଧର ଗୁରୁଗାମ୍ଭୀର୍ଯ୍ୟ ଊଣା ହେବା ସଂଗେ ସଂଗେ ଉପଭୋଗ୍ୟ ହୋଇ ଉଠିଛି । ଏହା ଏକ ସ୍ୱତନ୍ତ୍ର ଶୈଳୀ – ରମ୍ୟରଚନା ବା Belles-Lettres

ଭାବରେ ବିଶ୍ୱର ବିଭିନ୍ନ ସାହିତ୍ୟରେ ସ୍ୱୀକୃତି ଲାଭ କରିଛି ବୋଲି ମୁଁ ତାଙ୍କୁ ବୁଝାଇ କହିଲି । ଏହି ଶୈଳୀ ସଂପର୍କରେ ଆଦୌ ସଚେତନ ନ ଥାଇ ସେ 'ପତ୍ର ଓ ପ୍ରତିମା'ର ରଚନା ସବୁ ଲେଖି ଯାଇଛନ୍ତି ବୋଲି ଆଶ୍ଚର୍ଯ୍ୟ-ଆନନ୍ଦ ପ୍ରକାଶ କଲେ ।

'ଡଗର'ରେ ଥିବା ସମୟରେ ମୋର ଶିକ୍ଷାନବିସ୍ କାର୍ଯ୍ୟ ମଧ ଚାଲିଥିଲା । ସେତେବେଳେ ମୁଁ ଯେଉଁ କବିତା ଓ ଗଳ୍ପ ଲେଖୁଥିଲି, ମଝିରେ ମଝିରେ ନିତ୍ୟାନନ୍ଦ ବାବୁ ଓ ଫତୁରାନନ୍ଦଙ୍କୁ ତାହା ପଢ଼ି ଶୁଣାଉଥିଲି । ନିତ୍ୟାନନ୍ଦବାବୁ ମୋର ଲେଖା ପରିମାର୍ଜନ କରିବାକୁ ନାନା ପରାମର୍ଶ ଦେଉଥିଲେ । ବିଶେଷତଃ ଭାବୋପଯୋଗୀ ଭାଷାର ପ୍ରୟୋଗ, ଭାଷାର ଶୁଦ୍ଧତା ରକ୍ଷା ଓ ଠିକ୍ ବନାନ ଲେଖିବାରେ ତାଙ୍କର ଶିକ୍ଷା ମୋର ସାହିତ୍ୟିକ ଜୀବନରେ ବିଶେଷ ସହାୟକ ହୋଇଛି । ଫତୁରାନନ୍ଦଙ୍କ ଠାରୁ ମୁଁ ଶିଖିଛି – ଭାଷାର ଟିପିକାଲ୍ କଟକୀ ପ୍ରୟୋଗ । କବିତା ଓ ଗଳ୍ପ ରଚନାରେ କିଛି କିଛି ହାସ୍ୟରସର ଛୁଙ୍କ ଦେବା ପାଇଁ ଫତୁରାନନ୍ଦ ମୋତେ ବରାବର ଉସ୍‌କାଉଥିଲେ । ବସ୍ତୁତଃ ମୋର ବିଭିନ୍ନ ପଦ୍ୟ ଓ ଗଦ୍ୟ ରଚନାରେ – ବିଶେଷତଃ ପରବର୍ତ୍ତୀ କାଳରେ ରଚିତ ଲିମେରିକ୍ ବା ଲଘୁପଞ୍ଚକରେ ଯେଉଁ ରଙ୍ଗବ୍ୟଙ୍ଗର ଛିଟା ଲାଗିଛି, ତାହା ଫତୁରାନନ୍ଦୀ ପ୍ରଭାବର ଫଳ ବୋଲି ମୁଁ କହିବି । ପ୍ରାୟ ଅର୍ଦ୍ଧ ଶତାବ୍ଦୀ ତଳେ 'ଡଗର'ର ଯେଉଁ ଡେଉଁରିଆ-ଡୋରି ଦେହରେ ବାନ୍ଧିଥିଲି, ତାହା ମୋର ଧ୍ୟାନ-ଧାରଣା ଓ ଚିନ୍ତାଚେତନାରେ କୁହୁକ ପରି କାର୍ଯ୍ୟ କରୁଥିବାର ଦେଖୁଛି ।

## କଣ୍ଟକ ଓ କୁସୁମର ମାଳା-୧

ଭଦ୍ରକ କଲେଜରେ କାର୍ଯ୍ୟାରମ୍ଭ କଲା ପରେ ମୁଁ 'ଚଇତି ତାମସା'ର ଖୋଜାଲୋଡ଼ା ଓ ବିଚାର ଆଲୋଚନା ତ କରିଥିଲି ! ଏହା ବ୍ୟତୀତ ଆଉ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ମନୋନିବେଶ କଲି । କବିଶେଖର ଚିନ୍ତାମଣି ମହାନ୍ତି (୧୮୬୭-୧୯୩୪) ଆଧୁନିକ ଯୁଗର ଜଣେ ବିଶିଷ୍ଟ ସାହିତ୍ୟ-ସ୍ରଷ୍ଟା । ବହୁପ୍ରସୂ ଥିଲେ ସେ । ଚାରିଟି ବିପୁଳକାୟ ଗ୍ରନ୍ଥଖଣ୍ଡରେ ତାଙ୍କର ରଚନାବଳୀ ପ୍ରକାଶ ପାଇଥିଲା । ତଥାପି କିଛି ରଚନା ଓ ଆତ୍ମଜୀବନୀ 'ଜୀବନ ପଞ୍ଜିକା' ଅପ୍ରକାଶିତ ଥିଲା । ସେହି ରଚନାବଳୀରୁ କିଛି ପଢ଼ି ଦେଖିଲି – କବି ଶେଖରଙ୍କ ସାହିତ୍ୟ ସୃଷ୍ଟିରେ ବିଭିନ୍ନ ବୈଶିଷ୍ଟ୍ୟ ରହିଛି, କେତେକ କ୍ଷେତ୍ରରେ ସେ ଚମତ୍କାର ମୌଳିକତା ପ୍ରଦର୍ଶନ କରିଛନ୍ତି । କିନ୍ତୁ ତାଙ୍କର ସାହିତ୍ୟ ସୃଷ୍ଟି ସ୍ୱଳ୍ପାଲୋଚିତ ହୋଇ ରହିଛି । ସେହି ସ୍ୱଳ୍ପାଲୋଚନା ମଧ୍ୟରେ ପୁଣି କବିଙ୍କ ପ୍ରତି ସୁବିଚାର କରାଯାଇ ନାହିଁ – କିଛି ଅଯୌକ୍ତିକ ଅବମାନନାସୂଚକ ମନ୍ତବ୍ୟ କରାଯାଇଛି ।

କାବ୍ୟସାହିତ୍ୟ କ୍ଷେତ୍ରରେ କବି ରାଧାନାଥଙ୍କ ଦ୍ୱାରା ଏବଂ କଥାସାହିତ୍ୟ କ୍ଷେତ୍ରରେ ଫକୀରମୋହନଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ କୁଆଡ଼େ ଅନୁକରଣ-ପ୍ରଧାନ ସାହିତ୍ୟ ସୃଷ୍ଟି କରିଛନ୍ତି । ଏପରି ଅଯଥାର୍ଥ ଉପରଠାଉରିଆ ମନ୍ତବ୍ୟ ପ୍ରକାଶ କରିଥିବା ଆଲୋଚକ ବୋଧହୁଏ କବିଶେଖର ଚିନ୍ତାମଣିଙ୍କ କାବ୍ୟସାହିତ୍ୟ ଓ କଥାସାହିତ୍ୟ ଭଲ ଭାବରେ ପଢ଼ି ଦେଖି ନାହାନ୍ତି । ଏହି ପ୍ରସଙ୍ଗରେ ସାହିତ୍ୟ ଜଗତରେ ପ୍ରଚଳିତ ଥିବା ଏକ ପ୍ରବଚନ ମୋର ମନେ ପଡ଼ି ଯାଉଛି – ପୃଥିବୀର ସବୁ ବଡ଼ ବଡ଼ ସାହିତ୍ୟ-ସ୍ରଷ୍ଟାଙ୍କୁ ଯଦି ଗୋଟିଏ ଧାଡ଼ିରେ ପାଖାପାଖି ଠିଆ କରି ଦିଆଯାଏ, ତା'ହେଲେ ଦେଖାଯିବ ଯେ ଜଣେ ଆଉ ଜଣକ ପକେଟରେ ହାତ ପୂରାଇଛନ୍ତି । ଏହି ପ୍ରବଚନ ଦୃଷ୍ଟିରୁ ବଡ଼ ବଡ଼ ସାହିତ୍ୟ-ସ୍ରଷ୍ଟାଙ୍କୁ ପକେଟ୍‌ମାର୍ ବୋଲି କହି ହେବ କି ?

କବିଶେଖର ଚିନ୍ତାମଣି ଆପଣା 'ସାଳନ୍ଦୀ' କାବ୍ୟ କବି ରାଧାନାଥଙ୍କ 'ଚିଲିକା' କାବ୍ୟ ଆଦର୍ଶରେ ଲେଖିଥାଇ ପାରନ୍ତି କିମ୍ବା ନିଜର 'ଯୁଗଳମଠ', 'ରୂପା ଚୁଡ଼ୀ' ଆଦି ଗଳ୍ପ-ଉପନ୍ୟାସ ଫକୀର ମୋହନଙ୍କ ପ୍ରଭାବରେ ରଚନା କରିଥାଇ ପାରନ୍ତି । କିନ୍ତୁ 'ସାଳନ୍ଦୀ', 'ଚିଲିକା' ନୁହେଁ; କିମ୍ବା 'ଯୁଗଳମଠ', 'ଛ'ମାଣ ଆଠଗୁଣ୍ଠ' ନୁହେଁ । ଏହିପରି କବିଶେଖର ଚିନ୍ତାମଣିଙ୍କ ବିଭିନ୍ନ କାବ୍ୟ-କବିତା, ଗଳ୍ପ-ଉପନ୍ୟାସ, ପ୍ରବନ୍ଧ-ଚରିତ ସାହିତ୍ୟାଦିର ଯେଉଁ ବୈଶିଷ୍ଟ୍ୟ ରହିଛି, ତାହା ଦକ୍ଷ ସମୀକ୍ଷକଙ୍କ ଦ୍ୱାରା ପ୍ରତିପାଦିତ ହୋଇପାରି ନାହିଁ । ବିଶେଷତଃ ଭ୍ରମଣ ବୃତ୍ତାନ୍ତ ବା ପର୍ଯ୍ୟଟନ-ସାହିତ୍ୟ ସୃଷ୍ଟିରେ କବିଶେଖରଙ୍କ ମୌଳିକତା ପ୍ରଦର୍ଶିତ ହୋଇ ନାହିଁ । ଧରାକୋଟ ଦର୍ଶନ, ଜୟପୁର, ଜ ିଗଡ଼ ଭ୍ରମଣ, ଚିଲିକା ଭ୍ରମଣ, ପୁଣ୍ୟପୀଠ (ପାରଳାଖେମଣ୍ଡୀ ଭ୍ରମଣ ବୃତ୍ତାନ୍ତ), କଟକରେ ଚାରିଦିନ, କଳାହାଣ୍ଡି ଭ୍ରମଣ ପ୍ରଭୃତି ଗଦ୍ୟ ଓ ପଦ୍ୟରେ ଲେଖା ତାଙ୍କର ଭ୍ରମଣ ବୃତ୍ତାନ୍ତ ସ୍ୱଳ୍ପ ପରିମାଣରେ ରଚିତ ତତ୍‌କାଳୀନ ପର୍ଯ୍ୟଟନ ସାହିତ୍ୟକୁ ଯେ ସମୃଦ୍ଧ କରିଛି ଏବଂ ନିଜସ୍ୱ ଗୁଣ ଓ ମହିମାରେ ଯେ ଉଦ୍ଭାସିତ ହୋଇ ଉଠିଛି, ଏଥିରେ ମୋର ତିଳେ ହେଲେ ସନ୍ଦେହ ନାହିଁ ।

ଅନ୍ୟ ଏକ ଦିଗରେ କବିଶେଖର ଚିନ୍ତାମଣିଙ୍କ କୃତିତ୍ୱ ବିଷୟରେ ଅନେକ ସଚେତନ ନୁହନ୍ତି । ୧୯୦୩ ମସିହାରୁ ଆରମ୍ଭ କରି ଚିନ୍ତାମଣି ଦୀର୍ଘକାଳ ଦକ୍ଷିଣ ଓଡ଼ିଶାରେ ଆପଣା କର୍ମଜୀବନ ବିତାଇଥିଲେ ଏବଂ ସେହି ଅଞ୍ଚଳରୁ ହିତବାଦିନୀ, ଉତ୍କଳବାସୀ, ସ୍ୱଦେଶଲକ୍ଷ୍ମୀ, ମନୋରମା, ଜ୍ଞାନଦର୍ପଣ ପ୍ରଭୃତି ସାପ୍ତାହିକ ଓ ମାସିକ ପତ୍ର ପତ୍ରିକା ସଂପାଦନା କରିଥିଲେ । ଏଠାରେ ଆମକୁ ସ୍ମରଣ ରଖିବାକୁ ହେବ ଯେ – ସେତେବେଳେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଦକ୍ଷିଣ ଓଡ଼ିଶା ପ୍ରଶାସନିକ କ୍ଷେତ୍ରରେ ତତ୍କାଳୀନ ମାନ୍ଦ୍ରାସ ପ୍ରେସିଡ଼େନ୍‌ସି ସହ ସଂଯୁକ୍ତ ଥିଲା ଏବଂ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟର ପରମ

ଯାଠ ସେହି ଅଞ୍ଚଳରେ ତେଲୁଗୁ ଭାଷାର ପ୍ରବଳ ପ୍ରଭାବ ରହିଥିଲା । କୋର୍ଟ କଚେରୀ, ଶିକ୍ଷାନୁଷ୍ଠାନମାନଙ୍କରେ ତେଲୁଗୁ ଭାଷା ପ୍ରଚଳିତ ଥିଲା । ଫଳରେ ଓଡ଼ିଆ ଭାଷାର ବେଶ୍ ବିକୃତି ଘଟିଥିଲା; ତାହାର ଏକ ନମୁନା ଏଠାରେ ଦେଉଛି । ଗଞ୍ଜାମ କଲେକ୍ଟରେଟ୍ ପ୍ରେସ୍‌ରେ ମୁଦ୍ରିତ ସାପ୍ତାହିକ 'ଗଞ୍ଜାମ ଗେଜେଟ୍' ପତ୍ରିକା ତ୍ରିଭାଷୀ ଥିଲା – ଇଂରାଜୀ, ତେଲୁଗୁ ଓ ଓଡ଼ିଆ ଭାଷାର ଲେଖା ପ୍ରକାଶ କରୁଥିଲା । ତାହାରି ୧୮୬୦ ମସିହା ଅପ୍ରେଲ ୫ ତାରିଖ ସଂଖ୍ୟାରୁ ଏହି ନମୁନାଟି :–

## ।। ପ୍ରକଟନ ପତ୍ରିକା ।।

''ଏ ତଲେ ଉଦାହରଣ କରିବା ସଂଗତି ତାଲୁକାଅମଲଦାରମାନେ ଆପଣା ଇଲାକା ଯାବନ୍ତକରଣ କାର୍ଯିଙ୍କି ଜଣା କରିବାର ଅଛି । ଗ୍ରାମକରଣ କାର୍ଯିଏ ଆପଣା ସ୍ୱକାର୍ଯ୍ୟାର୍ଥେ ଦୂର ପ୍ରଦେଶମାନଙ୍କୁ ଶିଲ ନହୁଣ୍ଣ ଯିବାରେ ସରକାର କମିମାନଙ୍କୁ ପ୍ରତିବନ୍ଧକ ହୋଇ ଥିବାରୁ କାରଣ ହେଉଥିବାର ଏ ଉତାର ତାହାଙ୍କୁ ଦି୧୫ନକୁ ଅଧିକ କାଳ ଶିଲ ହେବାକୁ ଜରର ଥିବା ପକ୍ଷକୁ ତାଲୁକା ଅମଲଦାରଙ୍କ ମୂଳରୁ ।। କଲକଟରଙ୍କୁ ଯଣା କରି ଘେନି ତାହାଙ୍କ ଶିଲ ନ ଘେନୁଣ୍ଣ ।। ଆପଣା ଗ୍ରାମମାନଙ୍କୁ ଛାଡ଼ି ଯିବାକୁ ନାହିଁ ଏଥି ଉତାର ସେପରି କିୟେ ହେଲେ ଯିବାସରିକି ଯରିମାନ ହେବ ବୋଲି ଜାଣିମାର ଅଛି ।''

ବହୁ ପୂର୍ବରୁ (୧୯୦୫) ସମ୍ବଲପୁର ଓଡ଼ିଶା ସହ ଏକ ଶାସନାଧୀନ ହୋଇଥିଲେ ମଧ ଗଞ୍ଜାମ ୧୯୩୫ ମସିହା ପର୍ଯ୍ୟନ୍ତ ଓଡ଼ିଶା ସହିତ ଏକତ୍ର ହୋଇ ପାରି ନଥିଲା । ଦକ୍ଷିଣ ଓଡ଼ିଶାର ଏହି ଦୁଃସ୍ଥିତି କାଳରେ ଯେଉଁ କେତେଜଣ ବିଶିଷ୍ଟ ବ୍ୟକ୍ତି ଓଡ଼ିଶା ସହ ଗଞ୍ଜାମ ଏକତ୍ରୀକରଣ ତଥା ସେ ଅଞ୍ଚଳରେ ଓଡ଼ିଆ ଭାଷାର ମର୍ଯ୍ୟାଦା ରକ୍ଷା ପାଇଁ ନିଷ୍ଠାପର ପ୍ରଚେଷ୍ଟା କରିଥିଲେ, ସେମାନଙ୍କ ମଧରେ କବିଶେଖର ଚିନ୍ତାମଣି ଅନ୍ୟତମ । ରମ୍ଭାରୁ ପ୍ରକାଶିତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସଂପାଦିତ 'ପ୍ରଜାବନ୍ଧୁ' ପତ୍ରିକାରେ ୧୯୦୬ ମସିହାରେ କବିଶେଖର ଆପଣା 'ଗଞ୍ଜାମ ଭ୍ରମଣ' ପଦ୍ୟରେ ଲେଖିଥିଲେ :–

କହିଛନ୍ତି ଶୋଭା ଦେଖି ରାୟ କବିବର
'ଗଞ୍ଜାମ ସଂକ୍ଷିପ୍ତସାର ଉତ୍କଳ ଦେଶର' ।
ଉତ୍କଳର ଅନ୍ତର୍ଗତ ଥିଲା ଏହି ମାଟି
ବିଚ୍ଛିନ୍ନ କରୁଛି ଏବେ ଛତ୍ରଗଡ଼ ଘାଟି । x x
x x ଗଞ୍ଜାମ ଉତ୍କଳ ଦେଶ ନୁହେଁ ଭିନ୍ନ ଭିନ୍ନ
ବିଦେଶୀୟ ରାଜନୀତି କରୁଛି ବିଚ୍ଛିନ୍ନ ।

ଉତ୍କଳ ଗଣ୍ଡି, ଗଞ୍ଜାମ ମୁଣ୍ଡ ଅଟେ ତା'ର
ଏକ ଜାତି ଏକ ଭାଷା ଆଚାର ବେଭାର
ମୁଣ୍ଡ ଗଣ୍ଡି ଏକତ୍ରିତ ନ ହେଲେ କିପରି
ଠିଆ ହେବ ଦୃଢ଼େ ସେହୁ ପ୍ରାଣଶକ୍ତି ଧରି !

ସେହିପରି ୧୯୨୪ ମସିହାରେ 'ମୁକୁର' ପତ୍ରିକାର ୧୯ଶ ଭାଗ ୯ମ ସଂଖ୍ୟାରେ 'ଗଞ୍ଜାମରେ ଓଡ଼ିଆ ଦୁର୍ଦ୍ଦଶା' ଶୀର୍ଷକ ଏକ ପ୍ରବନ୍ଧରେ ସେ ଲେଖିଥିଲେ – 'ଓଡ଼ିଆ ଜାତି ଖଣ୍ଡ-ବିଖଣ୍ଡ ହୋଇ ବିଭିନ୍ନ ପ୍ରଦେଶର ଶାସନାଧୀନ ରହିବାରୁ କି ଅସୁବିଧା ଭୋଗ କରୁଅଛି, ତାହା କହିବାର ଆବଶ୍ୟକତା ନାହିଁ । ସେ କଥା ହାଟରେ ପଡ଼ି ଦାଣ୍ଡରେ ଗଡ଼ାଗଡ଼ି । ଓଡ଼ିଆମାନଙ୍କର ରାଜଦ୍ୱାରରେ ପ୍ରତ୍ୟେକ ଗୁହାରିପତ୍ରରେ ସେ ଅନ୍ତରାୟ-ଅସୁବିଧା ବାରମ୍ବାର ଚର୍ବିତ ଚର୍ବଣ ହୋଇଅଛି ଓ ହେଉଅଛି । କେବଳ ରାଜନୀତିକ ଅନ୍ତରାୟ ନୁହେଁ, ପ୍ରବଳ ଜାତିର ପ୍ରବଳ ଚାପା ସେ ବୋଝ ଉପରେ ନଳିତାବିଡ଼ା । ମୁଁ କୋଡ଼ିଏ ବର୍ଷ କାଳ ଗଞ୍ଜାମରେ କଟାଇ ଅଛି । ଏହି ଦୀର୍ଘ କାଳର ଅନୁଭୂତିରେ ମୁଁ ବୁଝିଅଛି – ଗଞ୍ଜାମବାସୀ ଓଡ଼ିଆ ଭାଇମାନଙ୍କର ଦୁର୍ଗତି ଅସହନୀୟ । ତେଲଙ୍ଗାମାନେ ସେମାନଙ୍କୁ ବଡ଼ ଇତର ଦୃଷ୍ଟିରେ ଦେଖନ୍ତି । ତୁ, ରେ ପ୍ରଭୃତି ତାଚ୍ଛଲ୍ୟ ପ୍ରକାଶର ତ କଥା ହିଁ ନାହିଁ, ଅଧିକନ୍ତୁ ସେମାନେ ଓଡ଼ିଆଙ୍କୁ 'ଓଡ଼୍‌ଡ଼ି' ବୋଲି କହନ୍ତି । ଓଡ଼ିଆମାନେ ଶିକ୍ଷିତ ପଦସ୍ଥ ହେଉନ୍ତୁ – ଏହା ସେମାନଙ୍କର ଇଚ୍ଛା ନୁହେଁ । କୌଣସି ଗୋଟିଏ ଭଲ କାର୍ଯ୍ୟ କରିବାକୁ ଗଲେ, ସେମାନଙ୍କଠାରୁ ପ୍ରତିବନ୍ଧକ ଯଥେଷ୍ଟ ମିଳିପାରେ, ମାତ୍ର ସହାନୁଭୂତି ମିଳେ ନାହିଁ ।' ପ୍ରବନ୍ଧ ମଧ୍ୟରେ ତେଲଙ୍ଗାମାନଙ୍କ ଦ୍ୱାରା ଓଡ଼ିଆ-ନିର୍ଯ୍ୟାତନାର କେତେକ ବ୍ୟକ୍ତିଗତ ଅନୁଭୂତି-ଅଭିଜ୍ଞତାର କଥା କବିଶେଖର ଉଲ୍ଲେଖ କରିଛନ୍ତି । ଓଡ଼ିଶା ସହିତ ଗଞ୍ଜାମ ମିଶ୍ରଣର କୋଡ଼ିଏ ବର୍ଷ ପରେ ମୁଁ ଯେତେବେଳେ ପ୍ରଥମେ (୧୯୫୭) ବ୍ରହ୍ମପୁର-ଗୋପାଳପୁର ବୁଲିବା ପାଇଁ ଯାଇଥିଲି, ସେତେବେଳେ ମଧ୍ୟ ସେହି ଅଞ୍ଚଳରେ କବିଶେଖରଙ୍କ କଥିତ ତେଲେଙ୍ଗାମାନଙ୍କର ପ୍ରଭାବ-ପ୍ରତିପତ୍ତି ଲକ୍ଷ୍ୟ କରିଥିଲି; ଏବେ ଅବଶ୍ୟ ତାହା ଊଣା ହୋଇ ଯାଇଛି । ଯାହାହେଉ, ଗଞ୍ଜାମ ସମେତ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇ ଏକ ଶାସନାଧୀନରେ ରଖିବା ପାଇଁ ତଥା ସେହି ଅଞ୍ଚଳରେ ଉତ୍କଳୀୟ ସଂସ୍କୃତିର ମର୍ଯ୍ୟାଦା ରକ୍ଷା ପାଇଁ ୧୯୦୨ ମସିହାରେ ଗଞ୍ଜାମର ରମ୍ଭା ବୈଠକରୁ ଯେଉଁ ସଂଘବଦ୍ଧ ଆନ୍ଦୋଳନ ଆରମ୍ଭ ହୋଇଥିଲା, ତହିଁରେ କବିଶେଖର ଚିନ୍ତାମଣିଙ୍କର ପରୋକ୍ଷ କିନ୍ତୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା ।

ତେଣୁ କବିଶେଖରଙ୍କ ସାହିତ୍ୟ ସୃଷ୍ଟି, ପତ୍ରପତ୍ରିକା ସଂପାଦନା ମାଧ୍ୟମରେ ସମାଜ-ସେବା ଇତ୍ୟାଦି କୃତିତ୍ୱର ଯଥାଯଥ ମୂଲ୍ୟାୟନ ପାଇଁ ତଥା ଆଧୁନିକ ଯୁଗର ସାମାଜିକ

ଓ ସାଂସ୍କୃତିକ ପୃଷ୍ଠଭୂମିରେ ତାଙ୍କୁ ଉପଯୁକ୍ତ ପ୍ରତିଷ୍ଠା ଦେବା ପାଇଁ ମୁଁ ଯତ୍ନବାନ ହେଲି । ମୁଖ୍ୟତଃ ଏହି ଉଦ୍ଦେଶ୍ୟରେ ୧୯୫୮ ମସିହାରେ 'ଚିନ୍ତାମଣି ସାହିତ୍ୟ ପରିଷଦ' ଭଦ୍ରକରେ ପ୍ରତିଷ୍ଠିତ ହେଲା । 'କବିଶେଖର ଚିନ୍ତାମଣିଙ୍କ ସାହିତ୍ୟର ସମ୍ୟକ୍ ଆଲୋଚନା ଓ ପରିପ୍ରଚାର ସଂଗେ ସଂଗେ ଜାତୀୟ ସାହିତ୍ୟର ଅନ୍ୟାନ୍ୟ ପ୍ରତିଭାବାନ୍ ପୁରୁଷଙ୍କର ପୂଜାରାଧନା କରିବା ଏବଂ ଭଦ୍ରକ ଅଞ୍ଚଳର ତରୁଣ ସାହିତ୍ୟିକମାନଙ୍କୁ ଉତ୍ସାହ ପ୍ରଦାନ କରିବା ପରିଷଦର ପ୍ରଧାନ ଲକ୍ଷ୍ୟ' ବୋଲି ଘୋଷଣା କରାଯାଇଥିଲା । ପୁରୁଣାବଜାରସ୍ଥ ନାରାୟଣଚନ୍ଦ୍ର ହାଇସ୍କୁଲର ପ୍ରବୀଣ ଶିକ୍ଷକ ଏବଂ କବିଶେଖରଙ୍କ ସାନ୍ନିଧ ଲାଭ କରିଥିବା ସାହିତ୍ୟିକ ଶ୍ରୀ ଉଦୟ ନାରାୟଣ ମହାନ୍ତି ଏହାର ସଭାପତି ଥିଲେ । ସଂପାଦକ ଥିଲେ ସେହି ନାରାୟଣ ଚନ୍ଦ୍ର ହାଇସ୍କୁଲର ଅନ୍ୟତମ ଶିକ୍ଷକ ଯୁବ ସାହିତ୍ୟିକ ଶ୍ରୀ ସତ୍ୟେନ୍ଦ୍ର ନାଥ ବେନାର୍ଜି । ଛଅଜଣ ସାହିତ୍ୟପ୍ରେମୀ ନିଷ୍ଠାପର କର୍ମୀଙ୍କୁ ଘେନି ନିମ୍ନମତେ ପରିଷଦର କାର୍ଯ୍ୟ ନିର୍ବାହିକା ସମିତି ଗଠିତ ହୋଇଥିଲା – ସଭାପତି – ଶ୍ରୀ ଉଦୟ ନାରାୟଣ ମହାନ୍ତି, ଉପ-ସଭାପତି – ଅଧ୍ୟାପକ କୃଷ୍ଣ ଚରଣ ବେହେରା, ସଂପାଦକ – ଶ୍ରୀ ସତ୍ୟେନ୍ଦ୍ରନାଥ ବେନାର୍ଜି, ସଭ୍ୟବୃନ୍ଦ – ଶ୍ରୀ ସୋମନାଥ ମହାନ୍ତି, ଶ୍ରୀ ଜଗଦୀଶ ପ୍ରସାଦ, ଶ୍ରୀ ସୁଧାଂଶୁ ଶେଖର ଚକ୍ରବର୍ତ୍ତୀ, ଶ୍ରୀ ଗୋପାଳ ମୋହନ ପାଣ୍ଡିଆ, ଶ୍ରୀ ଯୋଗେନ୍ଦ୍ରନାଥ ରାଉତ ଓ ଅଧ୍ୟାପକ କମଳାକାନ୍ତ ଲେଙ୍କା ।

ଏହି ସାହିତ୍ୟ ପରିଷଦ ନିୟମିତ ଭାବରେ କବିଶେଖର ଚିନ୍ତାମଣିଙ୍କ ଜୟନ୍ତୀ ଓ ଶ୍ରାଦ୍ଧୋତ୍ସବ ପାଳନ କରୁଥିଲା । ରାଜ୍ୟର ବିଭିନ୍ନ ସାହିତ୍ୟିକ ଓ ସଂସ୍କୃତିପ୍ରେମୀ ନେତୃସ୍ଥାନୀୟ ବ୍ୟକ୍ତି ଉକ୍ତ ଉତ୍ସବମାନଙ୍କରେ ଯୋଗ ଦେଇ କବିଶେଖରଙ୍କ ସାହିତ୍ୟ ସୃଷ୍ଟିର ବିଚାର-ବିଶ୍ଳେଷଣ କରୁଥିଲେ । ୧୯୬୭ ମସିହା ମାର୍ଚ୍ଚ ୩ ତାରିଖରେ ପରିଷଦ ପକ୍ଷରୁ ଭଦ୍ରକ ହାଇସ୍କୁଲ ପରିସର ମଧ୍ୟରେ କବିଙ୍କର ଜୟନ୍ତୀ ଶତବାର୍ଷିକୀ ସମାରୋହ ସହକାରେ ପରିପାଳିତ ହୋଇଥିଲା । ପରିଷଦର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେଉଛି – 'କବିଶେଖର ଚିନ୍ତାମଣି (ଜୀବନୀ, ସ୍ମୃତିଚିତ୍ର, ସାହିତ୍ୟାଲୋଚନା)' ଗ୍ରନ୍ଥର ସଂକଳନ ଓ ସଂପାଦନା । ଗ୍ରନ୍ଥଟି କଟକର ଫ୍ରେଣ୍ଡସ୍ ପବ୍ଲିଶର୍ସ୍ କର୍ତ୍ତୃକ ପ୍ରକାଶିତ ହୋଇଥିଲା ୧୯୬୪ ମସିହା ଜାନୁଆରୀ ମାସରେ । ଏଥିରେ ପଦ୍ମଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ, ଡାକ୍ତର ରାଧାଚରଣ ପଣ୍ଡା, ଶ୍ରୀ ଶତ୍ରୁଘ୍ନ ନାଥ, ଶ୍ରୀ କପିଳେଶ୍ୱର ଦାସ, ଅଧ୍ୟାପକ ରାଜକିଶୋର ରାୟ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡା, ଶ୍ରୀ ଅନନ୍ତ ପଟ୍ଟନାୟକ, କବିଚନ୍ଦ୍ର କାଳୀଚରଣ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ କବି ଚିନ୍ତାମଣିଙ୍କ ଜୀବନୀ ଓ ସ୍ମୃତିଚିତ୍ର ଲେଖିଥିଲେ । କବିଙ୍କ ସାହିତ୍ୟ ଆଲୋଚନା କରିଥିଲେ – ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର କୁଞ୍ଜବିହାରୀ ଦାଶ, ଅଧ୍ୟାପକ ଚିନ୍ତାମଣି ବେହେରା, ଡକ୍ଟର ନରେନ୍ଦ୍ରନାଥ ମିଶ୍ର,

ଅଧ୍ୟାପକ ଜୟକୃଷ୍ଣ ମିଶ୍ର, ଶ୍ରୀ ବଳଭଦ୍ର ବହିଦାର, ଅଧ୍ୟାପକ ସୁଧାଂଶୁ ଶେଖର ରାୟ, ଶ୍ରୀ କୃଷ୍ଣଚନ୍ଦ୍ର କର, ଅଧ୍ୟାପକ ପଠାଣି ପଟ୍ଟନାୟକ, ଶ୍ରୀ ଉଦୟନାଥ ଷଡ଼ଙ୍ଗୀ ପ୍ରମୁଖ ସାହିତ୍ୟିକ ଓ ସଂସ୍କୃତିପ୍ରେମୀ ବ୍ୟକ୍ତିବୃନ୍ଦ । କବିଶେଖର ଚିନ୍ତାମଣିଙ୍କ ମୂଲ୍ୟାୟନ କ୍ଷେତ୍ରରେ ଗ୍ରନ୍ଥଟି ଏପର୍ଯ୍ୟନ୍ତ ଅନତିକ୍ରମ୍ୟ ହୋଇ ରହିଥିବାର ମନେ ହୁଏ ।

ଏ ଗ୍ରନ୍ଥର ସଂକଳନ ଓ ସଂପାଦନା କାର୍ଯ୍ୟରେ ଶ୍ରୀ ସୋମନାଥ ମହାନ୍ତିଙ୍କ (୧୮୯୧) ସାହାଯ୍ୟ-ସହଯୋଗ ପାସୋରି ପାରିବି ନାହିଁ । ଶ୍ୱାସ ରୋଗାକ୍ରାନ୍ତ ହୋଇ ମଧ୍ୟ ସୋମନାଥବାବୁ ଚାରିଆଡ଼କୁ ଧାଁ-ଦଉଡ଼ କରି ଶିଷ୍ଟ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଭେଟି ଗ୍ରନ୍ଥ ପାଇଁ ଲେଖା ସଂଗ୍ରହ କରିଥିଲେ ଏବଂ 'ସମାଜ' ପ୍ରତିଷ୍ଠାନର ସତ୍ୟବାଦୀ ପ୍ରେସ୍‌ରେ ଗ୍ରନ୍ଥ ମୁଦ୍ରଣର ତତ୍ତ୍ୱାବଧାନ କରିଥିଲେ । ସେ ଥିଲେ କବିଶେଖରଙ୍କ ସଂପର୍କୀୟ; କାୟା ସହିତ ଛାୟା ପରି ବହୁକାଳ ରୁଗ୍‌ଣ କବିଙ୍କର ସେବା କରିଥିଲେ । ରାଜ୍ୟ ଓ ରାଜ୍ୟ ବାହାରର ବିଭିନ୍ନ ସ୍ଥାନ ଭ୍ରମଣ ବେଳେ ସେ ଥିଲେ କବିଶେଖରଙ୍କ ସଙ୍ଗୀ ଓ ସାରଥି । ପରିମାଣ ସ୍ୱଳ୍ପ ହେଲେ ମଧ୍ୟ ସୋମନାଥ କିଛି ଲେଖାଲେଖି କରିଥିଲେ । ତାଙ୍କର 'ଚୈତନ୍ୟ ଡେଙ୍ଗୁରା' ଉପଦେଶାତ୍ମକ ପଦ୍ୟ (୧୯୦୯) ଓ 'ଭୁବନେଶ୍ୱର' ଖଣ୍ଡକାବ୍ୟ (୧୯୧୫) ତାହାର ପ୍ରମାଣ । ପ୍ରଥମ ପୁସ୍ତକଟି ବଡ଼ଖେମଣ୍ଡି ଗଜପତି ଭୀମଦେବ ପ୍ରେସ୍‌ରେ ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ଏବଂ ଦ୍ୱିତୀୟ ପୁସ୍ତକଟି କଟକର ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା । ତାଙ୍କର ଘନିଷ୍ଠ ସାନ୍ନିଧ ଲାଭର ସୁଯୋଗ ମୁଁ ପାଇଥିଲି ଏବଂ ଚଳିତ ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧର ନାନା ସାଂସ୍କୃତିକ ସମ୍ବାଦ ତାଙ୍କ ତୁଣ୍ଡରୁ ଶୁଣିବାର ସୌଭାଗ୍ୟ ଅର୍ଜନ କରୁଥିଲି । ବିଶେଷତଃ ତତ୍କାଳୀନ ରାଜା-ଜମିଦାରଙ୍କ ଦରବାରର ଆଦବକାଇଦା, ସଂସ୍କୃତି ପ୍ରୀତି ଓ କବି-ଲେଖକମାନଙ୍କ ପ୍ରତି ପୃଷ୍ଠପୋଷକତା ପ୍ରଦର୍ଶନ ସଂପର୍କରେ କେତେକ ମୁଖରୋଚକ କଥା ତାଙ୍କଠାରୁ ଶୁଣିଥିଲି । ସେତେବେଳେ କେତେକ ରାଜା-ଜମିଦାର ସାହିତ୍ୟପ୍ରେମୀ ଥିଲେ; କେହି କେହି ସାହିତ୍ୟ ସୃଷ୍ଟି କରୁଥିଲେ ମଧ୍ୟ କବି-ଲେଖକଙ୍କୁ ବେତନ ଦେଇ ସେମାନେ ନିଜ ପାଖରେ ରଖୁଥିଲେ, ସେମାନଙ୍କ ରଚିତ ପୁସ୍ତକ ପ୍ରକାଶ ପାଇଁ ଅର୍ଥ ସାହାଯ୍ୟ ମଧ୍ୟ କରୁଥିଲେ । କବିଶେଖର ଚିନ୍ତାମଣି ତଥା ରାଜ୍ୟର ଅନ୍ୟ କେତେକ କବି-ଲେଖକ ରାଜା ଜମିଦାରଙ୍କଠାରୁ ଏହିପରି ପୃଷ୍ଠପୋଷକତା ଲାଭ କରିଥିଲେ । ଜମିଦାରୀ ଉଚ୍ଛେଦ ଓ ରାଜଗି ଲୋପ ପରେ ଏହି ପୃଷ୍ଠପୋଷକତା ବନ୍ଦ ହୋଇଯାଇଛି । ଅନ୍ୟ ପକ୍ଷରେ ଏବେ ଆମ ସମାଜରେ ଅନ୍ୟାନ୍ୟ ଧନାଢ୍ୟ ବ୍ୟକ୍ତି କବି-ଲେଖକମାନଙ୍କୁ ବିଶେଷ ପୃଷ୍ଠପୋଷକତା କରୁ ନ ଥିବାର ଦେଖା ଯାଉଛି । ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗ ପକ୍ଷରୁ ଅନୁରୂପ ପୃଷ୍ଠପୋଷକତା କରାଯାଉଛି ସତ୍ୟ, କିନ୍ତୁ ତାହା ଓଟ ମୁହଁରେ ଜିରାଟିଏ ହୋଇ ରହୁଛି ।

'ଚିନ୍ତାମଣି ସାହିତ୍ୟ ପରିଷଦ' ପ୍ରାୟ ତେର ବର୍ଷ କାଳ ସକ୍ରିୟ ଥିଲା । ୧୯୭୧ ମସିହାରେ ଭଦ୍ରକରୁ ମୋର କର୍ମସ୍ଥଳ ପରିବର୍ତ୍ତିତ ହେଲା ପରେ ଏବଂ ସଭାପତି ଉଦୟ ନାରାୟଣବାବୁ ଓ ସୋମନାଥବାବୁଙ୍କ ବୟସାଧିକ୍ୟ ହେତୁ ଏହାର କାର୍ଯ୍ୟକ୍ରମ ଶିଥିଳ ହୋଇ ପଡ଼ିଲା । ବର୍ତ୍ତମାନ ଏହି ସାଂସ୍କୃତିକ ପ୍ରତିଷ୍ଠାନଟି ନିଷ୍କ୍ରିୟ ଅବସ୍ଥାରେ ରହିଛି । 'ଚିନ୍ତାମଣି ସାହିତ୍ୟ ପରିଷଦ' ବ୍ୟତୀତ ଭଦ୍ରକର ଅନ୍ୟ କେତେକ ସାଂସ୍କୃତିକ ପ୍ରତିଷ୍ଠାନ ଓ ପତ୍ରିକା ପ୍ରକାଶନ ସହିତ ମୁଁ ସଂପୃକ୍ତ ଥିଲି । ଉଦାହରଣ ସ୍ୱରୂପ – ୧୯୬୧ ମସିହା ବେଳକୁ ମୋର ଶ୍ରଦ୍ଧେୟ ଛାତ୍ର ଶ୍ରୀ ଅନନ୍ତଚରଣ ଶୁକ୍ଳଙ୍କ ସଂପାଦନାରେ 'ଆଲୋକ ରେଖା' ନାମକ ଯେଉଁ ସାହିତ୍ୟ ପତ୍ରିକା ପ୍ରକାଶ ପାଇଥିଲା; ତାହାର ଉପଦେଷ୍ଟା-ମଣ୍ଡଳୀରେ ମୋତେ ଅନ୍ତର୍ଭୁକ୍ତ କରାଯାଇଥିଲା । ପତ୍ରିକାର ମାତ୍ର ଚାରିଟି ସଂଖ୍ୟା ପ୍ରକାଶ ପାଇଥିଲା; କିନ୍ତୁ ଲେଖା ଓ ରେଖାରେ ସମୃଦ୍ଧ ହୋଇ ଏହା ବେଶ୍ ଜନପ୍ରିୟତା ଅର୍ଜନ କରିଥିଲା । ମୋର ବିତର୍କିତ 'ମଇଳାକୁଣ୍ଡ' ଗଳ୍ପଟି କଟକ ବେତାରକେନ୍ଦ୍ରରୁ ପ୍ରସାରିତ ହେବା ସଂଗେ ସଂଗେ ଏହି ପତ୍ରିକାରେ ପ୍ରକାଶ ପାଇଥିଲା । ଗଳ୍ପରେ ଥିବା 'ଭୋଳା ମାରଓ୍ୱାଡ଼ିଙ୍କ ପୁଅ' କାଳ୍ପନିକ ଚରିତ୍ରକୁ ଘେନି ବିବାଦ ଲାଗିଗଲା । ମୋତେ ଅଭିଯୁକ୍ତ କରି ଭଦ୍ରକର ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟ ସୁଦୂର ରାଜସ୍ଥାନର କୋର୍ଟ୍‌ରେ ମକଦ୍ଦମା କରିବାକୁ ବାହାରିଲେ । ବିଚରା ଦରଜିଟିଏ ମୁଁ; ମୋ ତିଆରି ଟୋପି ଯଦି କାହା ମଥାରେ ଖାପ ଖାଇଗଲା, ମୁଁ ତହିଁକି ଆଉ କରିବି କ'ଣ ? ଓଡ଼ିଶାରୁ ରାଜସ୍ଥାନକୁ ଟଣା-ଓଟରାରେ ମୋତେ ହଲାପଟା କରିବା ସେହି ସଂପ୍ରଦାୟର ଉଦ୍ଦେଶ୍ୟ ଥିଲା । ଗାନ୍ଧିବାଦୀ ସମାଜସେବୀ ଗୋକୁଳାନନ୍ଦ ମହାନ୍ତି ସଂପ୍ରଦାୟର ନେତାଙ୍କୁ ବୁଝାଇ ଶୁଝାଇ କେଶ୍ କରିବା ଉଦ୍ୟମରୁ ବିରତ କରାଇଲେ, ନୋହିଲେ ମୋର ଦଫାରଫା ହୋଇଯାଇ ଥାଆନ୍ତା ! ନିରୀହା ଆଦିବାସୀ ଯୁବତୀମାନେ କିପରି ଗଣଭୋଗ୍ୟା ହୋଇ ସମାଜର ବିଭିନ୍ନ ଶ୍ରେଣୀର ପୁରୁଷଙ୍କ ଦ୍ୱାରା ଏକପ୍ରକାର ମଇଳାକୁଣ୍ଡରେ ପରିଣତ ହେଉଛନ୍ତି, ତାହାରି ବାସ୍ତବ ଚିତ୍ର ଗଳ୍ପଟି ମଧ୍ୟରେ ଅଙ୍କିତ ହୋଇଛି ଏବଂ ମଣିଷ-ଜୀବନକୁ ଘେନି ମଇଳାକୁଣ୍ଡ କରିବାକୁ ସମାଜର କି ଅଧିକାର ଅଛି ବୋଲି ପ୍ରଶ୍ନ କରାଯାଇଛି । ଏତିକିରେ କେତେକ ବ୍ୟକ୍ତିଙ୍କର ନ୍ୟସ୍ତ ସ୍ୱାର୍ଥ ପଦାରେ ପଡ଼ିଯିବାରୁ ଏବଂ ସେମାନଙ୍କର ପ୍ରେୟ ଉତ୍ୟକ୍ତ ହେବାରୁ ଅଯଥା ଗୋଳମାଳଟାଏ ଘଟିଥିଲା ।

ଭଦ୍ରକ କଲେଜରେ ମୋର ଅଧ୍ୟୟନ-ଅଧ୍ୟାପନା ଠିକ୍ ବାଟରେ ଚାଲିଥିଲା । ସଦ୍ୟ ଶାନ୍ତିନିକେତନସ୍ଥ ବିଶ୍ୱଭାରତୀର ଶିକ୍ଷା-ବ୍ୟବସ୍ଥାରେ ଅନୁପ୍ରାଣିତ ହୋଇ ଆସିଥିବା ମୋ ଭଳି ଜଣେ ସ୍ୱପ୍ନପ୍ରବଣ ଓ ପରିକଳ୍ପନା-ପରିପ୍ଲୁତ ଯୁବକ ପକ୍ଷରେ ଶିକ୍ଷକତା ଠିକ୍ ବୃତ୍ତି ବା ଚାକିରି ଭାବରେ ଗୃହୀତ ହୋଇ ନ ଥିଲା । ମୋର ଗୁରୁ ସ୍ୱର୍ଗୀୟ ଗଗନବିହାରୀ

ମହାତ୍ମିଙ୍କ ଆଦର୍ଶ ଓ ପ୍ରେରଣାରେ ମୁଁ ଏହାକୁ ଏକ ବ୍ରତ ଭାବରେ ଗ୍ରହଣ କରି ନେଇଥିଲି । ତେଣୁ ଓଡ଼ିଆ ଭାଷା ସାହିତ୍ୟର ଛାତ୍ରଛାତ୍ରୀଙ୍କୁ ଭଲ ଭାବରେ ପ୍ରସ୍ତୁତ ହୋଇ ପାଠ ପଢ଼ାଇବା, ଛାତ୍ରଛାତ୍ରୀଙ୍କ ସହ ଘନିଷ୍ଠ ଭାବରେ ମିଳାମିଶା କରି ସେମାନଙ୍କର ଶିକ୍ଷାଗତ, ସ୍ୱାସ୍ଥ୍ୟଗତ, ଏପରିକି ଆର୍ଥିକ ସମସ୍ୟା ବୁଝାଶୁଝା କରିବାରେ ମନଧ୍ୟାନ ଦେଇଥିଲି । ଲେଖାଲେଖି କରିବା ପାଇଁ ଆଗ୍ରହୀ କେତେକ ଛାତ୍ରଛାତ୍ରୀଙ୍କୁ ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା-ପ୍ରବୋଦନା ଦେବା ସଂଗେ ସଂଗେ ସେମାନଙ୍କ ଲେଖା ପ୍ରକାଶ ପାଇଁ କିଛି ସୁବିଧା ସୁଯୋଗ ଯୋଗାଇ ଦେଇଥିଲି । କଲେଜରେ 'ଓଡ଼ିଆ ସାହିତ୍ୟ ସମାଜ' ପ୍ରତିଷ୍ଠିତ ହୋଇଥିଲା ଏବଂ ତାହାର ବାର୍ଷିକ ମୁଖପତ୍ର 'ଅର୍ଘ୍ୟ' ନିୟମିତ ପ୍ରକାଶ ପାଉଥିଲା । ତହିଁରେ କମଳାକାନ୍ତ ଲେଙ୍କା, କ୍ଷେତ୍ରବାସୀ ନାୟକ, ନିତ୍ୟାନନ୍ଦ ପତି (ଏ ତିନିଜଣ ପରଲୋକଗତ), ମନୋରମା ବିଶ୍ୱାଳ ମହାପାତ୍ର, ରବିନାରାୟଣ ସେନାପତି ପ୍ରମୁଖ ପରବର୍ତ୍ତୀ କାଳର ବିଭିନ୍ନ କବି ଲେଖକ ପ୍ରଥମେ ଆତ୍ମ-ପ୍ରକାଶ କରିଥିଲେ । କଲେଜ ମ୍ୟାଗାଜିନ୍ 'ପଲ୍ଲୀ ଭାରତୀ' ଅତିରକ୍ତ 'ଅର୍ଘ୍ୟ' ପତ୍ରିକାର ପ୍ରାୟ ପନ୍ଦରଟି ବାର୍ଷିକ ସଂଖ୍ୟା 'ଓଡ଼ିଆ ସାହିତ୍ୟ ସମାଜ' ପକ୍ଷରୁ ପ୍ରକାଶିତ ହୋଇଥିଲା । ୧୯୭୧ ମସିହାରେ କଲେଜଟି ସରକାରୀ ହେବା ସଂଗେ ମୋର ସ୍ଥାନାନ୍ତରୀକରଣ ପରେ 'ଅର୍ଘ୍ୟ' ଆଉ ପ୍ରକାଶିତ ହେବାର ଦେଖୁ ନାହିଁ । ଏବେ ରାଜ୍ୟର ବିଭିନ୍ନ ସ୍ଥାନରେ ଥିବା ଭଦ୍ରକ କଲେଜର ମୋର ପ୍ରାକ୍ତନ ଛାତ୍ରଛାତ୍ରୀଙ୍କ ସହିତ କେବେ କିପରି ସାକ୍ଷାତ ହୋଇଗଲେ, ସେମାନଙ୍କ ତୁଣ୍ଡରୁ ଶୁଣିଥାଏଁ – ସାର୍, 'ଅର୍ଘ୍ୟ'ରେ ମୋର ଲେଖା ପ୍ରକାଶ କରି ଆପଣ ମୋତେ ଯେଉଁ ପ୍ରେରଣା ଦେଇଥିଲେ, ସେହି ପ୍ରେରଣା ବଳରେ ମୁଁ ଲେଖାଲେଖିରେ ବର୍ତ୍ତମାନ କିଛି ଅଗ୍ରଗତି କରିଛି । କିମ୍ୱା, ସାର୍, ମୋର ଆର୍ଥିକ ଦୁରବସ୍ଥା ମଧ୍ୟରେ ଆପଣ କଲେଜ ହଷ୍ଟେଲରେ ମୋର ଫ୍ରି-ଫୁଡ୍‌ର ବ୍ୟବସ୍ଥା କରି ନ ଥିଲେ ଅଥବା ମୋର କଲେଜ-ଫି ଛାଡ଼ କରାଇ ଦେଇ ନ ଥିଲେ, ମୁଁ ପାଠ ପଢ଼ି ପାରି ନ ଥାନ୍ତି ଇତ୍ୟାଦି କଥା ଶୁଣିଲା କ୍ଷଣି ମୋ ମନରେ ଆନନ୍ଦ ଓ ସନ୍ତୋଷ ଆସେ ।

ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ ଓ ଗଙ୍ଗାଧର ବଳ ୧୯୫୭-୫୮ ମସିହାରେ ଭଦ୍ରକ କଲେଜ ଛାଡ଼ି ସରକାରୀ ନିଯୁକ୍ତି ଘେନି ଅନ୍ୟତ୍ର ଚାଲିଯିବାରୁ ମୁଁ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ମୁଖ୍ୟ ଅଧ୍ୟାପକ ଭାବରେ କାର୍ଯ୍ୟ କଲି । ୧୯୫୭ ଡିସେମ୍ବର ମାସରେ ମୋତେ ମଧ୍ୟ ପାରଳାଖେମୁଣ୍ଡିସ୍ଥ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି କଲେଜରେ ଯୋଗ ଦେବା ପାଇଁ ସରକାରୀ ନିଯୁକ୍ତି-ପତ୍ର ମିଳିଥିଲା । ଗୋଟିଏ ସରକାରୀ ଚିଠିରେ ଶ୍ରୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ମହାପାତ୍ର ନୀଳମଣି ସାହୁ ଓ ମୋତେ – ତିନି ଜଣଙ୍କର ନିଯୁକ୍ତି ଆଦେଶ ଆସିଥିଲା । ଗୋବିନ୍ଦ ବାବୁ ଓ ନୀଳମଣି ବାବୁ ସରକାରୀ କଲେଜରେ ଯୋଗ ଦେଲେ ।

ମୁଁ କିନ୍ତୁ ସରକାରୀ କଲେଜ ଛାଡ଼ି ସେହି ବେସରକାରୀ ଭଦ୍ରକ କଲେଜରେ ରହିଯିବାକୁ ସ୍ଥିର କଲି । ଏହାର କାରଣ ଅନ୍ୟତ୍ର ଉଲ୍ଲେଖ କରିଛି । ବିଭାଗୀୟ ମୁଖ୍ୟ ଅଧ୍ୟାପକ ଭାବରେ କିଛି ଅଧିକା ଦାୟିତ୍ୱ ବହନ କରିବା ସଂଗେ ସଂଗେ ଅଧ୍ୟାପନା କ୍ଷେତ୍ରରେ ନିଜକୁ ଅଧିକ ଯୋଗ୍ୟ ଓ ସମର୍ଥ କରିବା ପାଇଁ ସାଧନାନିଷ୍ଠ ହେଲି । କଲେଜ ମଧ୍ୟରେ କେବଳ ଶିକ୍ଷାଦୀକ୍ଷା କ୍ଷେତ୍ରରେ ନୁହେଁ, କଲେଜ ବାହାରେ ସମଗ୍ର ଉତ୍ତର ଓଡ଼ିଶାରେ ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ସାଧ୍ୟମତେ କିଛି କିଛି କାର୍ଯ୍ୟ କରିବାରେ ଲାଗିଲି । ମୟୂରଭଞ୍ଜ, କେନ୍ଦୁଝର ଓ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ବିଭିନ୍ନ ଶିକ୍ଷାନୁଷ୍ଠାନ, ଯୁବକ ସଂଘ, କ୍ଲବ୍-ପାଠାଗାର ପ୍ରଭୃତିର ସଭାସମିତିରେ ବକ୍ତୃତା ଦେବାରେ ଲାଗିଲି । ଏପରିକି କେତେକ ରାଜନୈତିକ ସଭାରେ ଯୋଗ ଦେଇ ସାମାଜିକ ଓ ରାଷ୍ଟ୍ରୀୟ ବ୍ୟାପାର ବିଷୟରେ ଆଲୋଚନା କଲି । କଲେଜରେ ଛାତ୍ରବତ୍ସଳ ଶିକ୍ଷକ ଭାବରେ ମୋର ସୁନାମ ତଥା କଲେଜ ବାହାରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୋର ପ୍ରଶଂସନୀୟ ଭୂମିକା ସେତେବେଳେ ଭଦ୍ରକର କେତେକ ଅସହିଷ୍ଣୁ ବ୍ୟକ୍ତିଙ୍କର ଈର୍ଷାର କାରଣ ହୋଇଥିଲା, ତାହାର କୁଫଳ ପରେ ପରେ ମୋତେ ଭୋଗିବାକୁ ପଡ଼ିଲା । କାହାରି କିଛି କ୍ଷତି ନ କରି ତମେ ନିଜ ବାଟରେ କିଛି ଭଲ କାର୍ଯ୍ୟ କର; ତହିଁରେ ବି ତମର ରକ୍ଷା ନାହିଁ । ଏ ସମାଜରେ ନିର୍ଦ୍ଧନ ଯେପରି ଧନୀ ବ୍ୟକ୍ତିକୁ ଈର୍ଷା କରେ – ଅପାଠୁଆ ଯେପରି ପାଠୁଆ ବ୍ୟକ୍ତିକୁ ଈର୍ଷା କରେ, କର୍ମକୋଢ଼ି ଲୋକ ସେହିପରି କର୍ମୋଦ୍ୟୋଗୀ ବ୍ୟକ୍ତିକୁ ଈର୍ଷା କରିଥାଏ । ହାୟ ଇଷ୍ଟ-ବିନାଶିନୀ ଈର୍ଷା ! ତଥାପି, କଳା ବାଦଲର ରଜତ ରେଖା ପରି ଈର୍ଷାର ଗୋଟାଏ ଭଲ ଦିଗ ରହିଛି । ଏହାକୁ ପ୍ରତିଯୋଗିତାମୁଖୀ କରାଇ ପାରିଲେ, ବେଶ୍ ଲାଭ ହୋଇପାରେ । ଆରେ, ସେ ଲୋକଟା କେମିତି ଉନ୍ନତି କରୁଛି – କିପରି ସୁନାମ ଅର୍ଜୁଛି ! ଦେଖେ, ମୁଁ ଯଦି ତାହାରି ଭଳି ଉଦ୍‌ଯୋଗ କର୍ମ କରିପାରେ, ଉପରକୁ ଉଠିଯାଇ ପାରିବି !

ଦିନେ କଲେଜ ଗଭର୍ଣ୍ଣିଂ ବଡ଼ିର ସେକ୍ରେଟେରୀ ଏଡ଼ଭୋକେଟ୍ ନରେନ୍ଦ୍ର ପ୍ରସାଦ ଦାସ ମୋତେ ଜନାନ୍ତିକେ କହିଲେ – ତମ ବିରୋଧରେ ଗୋଟାଏ ଯୋଡ଼ାଏ ବେନାମୀ ଚିଠି ମୁଁ ପାଇଛି । ତମେ ସେଥିରେ ବ୍ୟସ୍ତ ହେବ ନାହିଁ କୃଷ୍ଣ ବାବୁ, ମୁଁ ସେ ଚିଠିକୁ ଚିରି ଅଳିଆ ଗଦାକୁ ଫିଙ୍ଗି ଦେଇଛି । ତମେ କଲେଜ ପାଇଁ ଠିକ୍ ଭାବରେ ତମର କର୍ତ୍ତବ୍ୟ କରିଯାଅ ! ନରବାବୁଙ୍କ କଥା ଶୁଣି ମୁଁ ଟିକିଏ ଛାନିଆଁ ହୋଇ ପଡ଼ିଲି । ମୋର ଆଉ କେଉଁଠି କ'ଣ ଦୋଷ ଦୁର୍ବଳତା ରହିଗଲା ? ବେନାମୀ ଚିଠିରେ ମୋ ବିରୋଧରେ କ'ଣ ସବୁ ଲେଖା ଯାଇଛି ? ଏ କଥା ନରବାବୁଙ୍କୁ ପଚାରିବା ପାଇଁ ହଠାତ୍ ଭରସି ପାରିଲି ନାହିଁ । ଏହାର କେତେ ବର୍ଷ ପୂର୍ବରୁ ମୁଁ ନିଜେ ମଧ୍ୟ ଖଣ୍ଡିଏ ବେନାମୀ ଚିଠି

ପାଇଥିଲି । କଲେଜ ନାଟ୍ୟ ସଂସଦ ଦାୟିତ୍ୱରେ ଥାଏ । ସେ ପର୍ଯ୍ୟନ୍ତ କଲେଜ ନାଟ୍ୟାଭିନୟରେ ନାରୀ ଭୂମିକାରେ ଛାତ୍ରମାନେ ଅଂଶଗ୍ରହଣ କରୁଥିଲେ । ବ୍ୟାପାରଟା ମୋର ପସନ୍ଦ ହେଲା ନାହିଁ । କଲେଜ ଅଧକ୍ଷ ଶ୍ରୀଯୁକ୍ତ ରକ୍ଷିତ୍‌ଙ୍କ ଅନୁମତି ନେଇ ମୁଁ ଦୁଇ ଜଣ ଛାତ୍ରୀ ଅଳକା ସିଂହ ଓ ଅର୍ଚ୍ଚନା ଚାନ୍ଦଙ୍କୁ ଆଣି କଲେଜ ରଙ୍ଗମଞ୍ଚରେ ନାରୀ ଭୂମିକାରେ ଠିଆ କରାଇଲି । (ଅଳକା ଓ ଅର୍ଚ୍ଚନା ଉଭୟେ ନାଟ୍ୟାମୋଦୀ; ଅଳକା ଏବେ ଅଳକା ଚାନ୍ଦ – ରାଉରକେଲାର ସ୍ୱନାମଧନ୍ୟା ଶିକ୍ଷିକା, ସଂଗୀତ ସାଧିକା ଓ ସୁପରିଚିତ 'ମ୍ୟୁଜିକ୍ ସର୍କଲ'ର ସଂଚାଳିକା ।) ଏତିକିରେ ସଂସ୍କୃତିର ହାଣ୍ଡି ମାରା ହୋଇଗଲା ! ଏପରି କଦର୍ଯ୍ୟ କାର୍ଯ୍ୟ (?) କରି ମୁଁ କଲେଜର ଛାତ୍ର-ଛାତ୍ରୀଙ୍କ ମଧରେ ଥିବା ସଂପର୍କକୁ କଳୁଷିତ କରିଛି ବୋଲି ସେହି ବେନାମୀ ଚିଠିରେ ଅଭିଯୋଗ କରାଯାଇଥିଲା । ଏଥିରେ କିଛି କାଳ ମୋର ମନକଷ୍ଟ ହିଁ ସାର ହୋଇଥିଲା । ଯାହାହେଉ, ଏହା ପରେ କଲେଜ ନାଟ୍ୟାଭିନୟରେ ନାରୀ ଭୂମିକାରେ ଛାତ୍ରୀମାନଙ୍କ ଅଂଶଗ୍ରହଣ ଗତରେ ପଡ଼ିଗଲା – ଶୋଭନା ସାହୁ, ବିଜୟଲକ୍ଷ୍ମୀ ମଦୁଆଳ ପ୍ରମୁଖ ଛାତ୍ରୀମାନେ ଅଭିନୟରେ କୃତିତ୍ୱ ପ୍ରଦର୍ଶନ କରି ସେତେବେଳେ ଯଶସ୍ୱିନୀ ହୋଇଥିଲେ ।

କଲେଜରେ ଅଧାପିକାଙ୍କ ଅଭାବରୁ ହଠାତ୍ ଛାତ୍ରୀନିବାସର ଜଣେ ସୁପରିନ୍‌ଟେଣ୍ଡେଣ୍ଟ୍ ଲୋଡ଼ା ପଡ଼ିଲା । କର୍ତ୍ତୃପକ୍ଷ ମୋତେ ସେହି ଦାୟିତ୍ୱ ନେବାକୁ କହିଲେ । ମୁଁ ସେତେବେଳେ କଲେଜର କନିକା ହଷ୍ଟେଲ୍ ଦାୟିତ୍ୱରେ ଥାଏଁ । ଏକାବେଳେ ଦୁଇଟି ହଷ୍ଟେଲ୍‌ର ଦାୟିତ୍ୱ ନେବା କଷ୍ଟକର ବୋଲି ମୁଁ କଲେଜ ଅଧକ୍ଷ ଓ ସେକ୍ରେଟେରୀ ନରବାବୁଙ୍କୁ ଜଣାଇଲି । ପରବର୍ତ୍ତୀ କାଳରେ ମୁଁ କଟକ ରେଭେନ୍ସା କଲେଜ ଛାତ୍ରୀନିବାସ ଦାୟିତ୍ୱରେ ଅଢ଼େଇ ବର୍ଷ ଥିଲି ଏବଂ ଭଦ୍ରକ ମହିଳା କଲେଜ ଅଧକ୍ଷ ଭାବରେ କାର୍ଯ୍ୟ କରିଥିଲି ଦୁଇ ବର୍ଷ । ମୋର ଅଭିଜ୍ଞତାରୁ କହିବି – ଆମର ସାମାଜିକ ପରିସ୍ଥିତି ଦୃଷ୍ଟିରୁ ଶହେ ଜଣ ଅନ୍ତେବାସୀ ଥିବା ଛାତ୍ରାବାସକୁ ଚଳାଇବା ଯେତେ କଷ୍ଟକର ନୁହେଁ, ଦଶଜଣ ଅନ୍ତେବାସିନୀ ଥିବା ଛାତ୍ରୀନିବାସକୁ ଚଳାଇବା ତାହାଠାରୁ ଢେର୍ ବେଶି କଷ୍ଟକର । ଭଦ୍ରକ କଲେଜ କର୍ତ୍ତୃପକ୍ଷ ମୋର ଆପତ୍ତି ଶୁଣିଲେ ନାହିଁ ଏବଂ କଲେଜରେ ଜଣେ ଅଧାପିକା ନିଯୁକ୍ତି ପାଇ ଛାତ୍ରୀନିବାସର ଦାୟିତ୍ୱ ନେବା ପର୍ଯ୍ୟନ୍ତ ମୋତେ ଅଳ୍ପ କିଛି ଦିନ ପାଇଁ କାର୍ଯ୍ୟ ତୁଲାଇ ଯିବାକୁ ନିର୍ଦ୍ଦେଶ ଦେଲେ । ଛାତ୍ରୀନିବାସରେ ସେତେବେଳେ ପ୍ରାୟ ଷାଠିଏ ଜଣ ଛାତ୍ରୀ ରହୁଥିଲେ । ସବୁ କଥା ଠିକ୍‌ଠାକ୍ ଚାଲିଥିଲା । ଗଣେଶ ପୂଜାକୁ ଅନ୍ତେବାସିନୀମାନେ କରୁଥିବା ଭୋଜି ପାଇଁ ଅଧାପକ ଓ ଗଭର୍ଣ୍ଣିଂ ବଡ଼ିର ସଭ୍ୟମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଭୋଜି ଖାଇବା ପୂର୍ବରୁ ଅଳ୍ପ ସମୟ ପାଇଁ ଛାତ୍ରୀମାନେ ନିମନ୍ତ୍ରିତ ଅତିଥିମାନଙ୍କ ସମକ୍ଷରେ ନାଟଗୀତର ମନୋରଂଜନ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ । ସେହି କାର୍ଯ୍ୟକ୍ରମରେ

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଲେଖା ପୂର୍ବରୁ ମୁଦ୍ରିତାକାରରେ ପ୍ରକାଶିତ ଗୋଟିଏ ଏକାଙ୍କିକା ଥିଲା । ଏକାଙ୍କିକାର ଗୋଟିଏ ଚରିତ୍ର ତୁଣ୍ଡରେ କାଳୀବାବୁ ଏହି ସଂଳାପଟି ଖଞ୍ଜିଥିଲେ – 'ମଣିଷ, ନା ସଜୀବ୍ ମାରଓ୍ୱାଡ଼ୀ ଦୋକାନ' ? ସଂଳାପଟି ଅଭିନେତ୍ରୀ-ଛାତ୍ରୀ ଉଚ୍ଚାରଣ କରିବା ପରେ ପରେ ସେହି ଶାନ୍ତ ସୁନ୍ଦର ସାନ୍ଧ୍ୟ ପରିବେଶ ଦୋହଲି ଗଲା । ମାରଓ୍ୱାଡ଼ୀ ସଂପ୍ରଦାୟର ଜଣେ ଦୁଇ ଜଣ ନିମନ୍ତ୍ରିତ ଅତିଥି ସେହି ସୁଧୀଜନ ସମାବେଶରୁ ଉଠି ଚାଲିଗଲେ । ଗଭର୍ଣ୍ଣିଂ ବଡ଼ିର ସେକ୍ରେଟେରୀ ନରବାବୁ, ସଭ୍ୟ ଭଦ୍ରକର ସିଭିଲ୍ ଏସ୍.ଡ଼ି.ଓ. ପ୍ରମୁଖ ସେମାନଙ୍କୁ ଯେତେ ବୁଝାଶୁଝା କଲେ, ସେମାନେ ତାହା ଗ୍ରହଣ କଲେ ନାହିଁ । ସେମାନେ ଭଦ୍ରକର ଚନ୍ଦନ ବଜାରରେ ଯାଇ ସେହି ରାତିରେ ମାରଓ୍ୱାଡ଼ୀ ସଂପ୍ରଦାୟର ଏକ ସଭା କଲେ । ଛାତ୍ରୀନିବାସର ସୁପରିନ୍‌ଟେଣ୍ଡେଣ୍ଟ୍ ମୁଁ ଏବଂ କଲେଜର ତତ୍‌କାଳୀନ ଭାରପ୍ରାପ୍ତ ଅଧକ୍ଷ ବଳରାମ ସାହୁ ଜାଣିଶୁଣି କଲେଜର ପୃଷ୍ଠପୋଷକ ଏହି ସଂପ୍ରଦାୟ-ବିଶେଷକୁ ନିନ୍ଦିତ କରିବା ପାଇଁ ଏପରି ନାଟ୍ୟାଭିନୟର ଆୟୋଜନ କରିଥିଲେ; ସେଥିପାଇଁ ସେ ଦୁହିଁଙ୍କି କଲେଜରୁ ବହିଷ୍କାର କରାଯାଉ ବୋଲି ପ୍ରସ୍ତାବ କରି ସେକ୍ରେଟେରୀ ନରବାବୁଙ୍କ ପାଖକୁ ପଠାଇ ଦେଲେ ।

ଏ ଘଟଣାରେ ମୁଁ ବିଶେଷ ମର୍ମାହତ ହୋଇ ପଡ଼ିଲି । ମୋରି ଦୋଷରୁ ଏପରି କାଣ୍ଡଟାଏ ଘଟିଗଲା ବୋଲି ପଶ୍ଚାତ୍ତାପ କଲି – କବିଚନ୍ଦ୍ର କାଳୀଚରଣଙ୍କ ଏକାଙ୍କିକାରୁ ଏହି ଆପତ୍ତିଜନକ ସଂଳାପଟି ଉଠାଇ ଦେଇଥିଲେ କିମ୍ୱା ତାହାର ପରିମାର୍ଜନ କରି ଦେଇଥିଲେ, ଏହି ଦୁର୍ଘଟଣା ଘଟି ନ ଥାନ୍ତା । ମାରଓ୍ୱାଡ଼ୀ ବନ୍ଧୁମାନଙ୍କର ଆହତ ଭାବାବେଗ ପାଇଁ ମୁଁ ଯାଇ ଦୁଃଖ ପ୍ରକାଶ କରିବାକୁ ପ୍ରସ୍ତୁତ ହେଉଥିଲି, କିନ୍ତୁ ଘଟଣାଟି ହଠାତ୍ କଲେଜର ଛାତ୍ର ସମାଜ ଓ ଭଦ୍ରକବାସୀଙ୍କ ହାତକୁ ଚାଲିଯିବାରୁ ମୋର ଇଚ୍ଛା ପୂରଣ ହୋଇପାରିଲା ନାହିଁ । କଲେଜ ଛାତ୍ର ଇଉନିୟନ୍‌ର ସେକ୍ରେଟେରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ବର୍ତ୍ତମାନ ବିଶିଷ୍ଟ ଏଡ୍‌ଭୋକେଟ୍) ମୋ ପାଖକୁ ଆସି ଆନୁପୂର୍ବିକ ସବୁ କଥା ଶୁଣି ମାରଓ୍ୱାଡ଼ୀ ସଂପ୍ରଦାୟ ନିକଟରେ ମୋର ଦୁଃଖ ପ୍ରକାଶ କରିବାକୁ ପସନ୍ଦ କଲେ ନାହିଁ । ଦୁଇ ଦିନ ପରେ ଘଟଣାଟି ଏକ ଛାତ୍ର ଆନ୍ଦୋଳନର ରୂପ ନେଲା; ଶହ ଶହ ଛାତ୍ର ଛାତ୍ରୀ କ୍ଲାସ୍ ଛାଡ଼ି ଏକ ପଟୁଆରରେ ମାରଓ୍ୱାଡ଼ୀ ସଂପ୍ରଦାୟ ବିପକ୍ଷରେ ନାନା ସ୍ଲୋଗାନ୍ ଦେଇ ଚନ୍ଦନ ବଜାରସ୍ଥ ମାରଓ୍ୱାଡ଼ୀପଟି ଅଭିମୁଖରେ ଗତି କଲେ । ଗତିପଥରେ କିଛି ସ୍କୁଲ ଛାତ୍ର ଓ ଜନସାଧାରଣ ପଟୁଆରରେ ଯୋଗ ଦେଲେ । ସହରରେ ଆଇନ୍ ଶୃଙ୍ଖଳା ବିଘ୍ନିତ ହେବା ଆଶଙ୍କାରେ ପ୍ରଶାସନ ସତର୍କ ହୋଇ ରହିଲା । ସୁଖର କଥା, ସେ ଦିନ ଏ ଛାତ୍ର ଆନ୍ଦୋଳନରେ କିଛି ଅଘଟଣ ବା ଅଶୋଭନୀୟ ବ୍ୟାପାର ଘଟି ନାହିଁ ।

କୌଣସି ସ୍ଥାନରେ ମଡ଼ ପଡ଼ିଥିଲେ, ସୁରାକ ପାଇ କାହିଁ କୁଆଡୁ ଗିଧ ପଲ ଯେପରି ଆସି ଭିଡ଼ ଜମାନ୍ତି, ଏହି ଛାତ୍ର-ଆନ୍ଦୋଳନର ଖବର ପାଇ ସେହିପରି କେତେକ ରାଜନୈତିକ ଦଳର ନେତା ଭଦ୍ରକରେ ଆସି ପହଞ୍ଚିଗଲେ । ସେମାନଙ୍କ ସହିତ ସ୍ଥାନୀୟ ପାତିନେତା ଏବଂ ଦଳର ଆନୁଗତ୍ୟ ଅନୁଯାୟୀ ଭିନ୍ନ ଭିନ୍ନ ସମ୍ବାଦପତ୍ରର ପ୍ରତିନିଧିମାନେ ଏହି ଆନ୍ଦୋଳନର ସମାଧାନ ଆଳରେ ନାନା ପ୍ରକାର ମନ୍ତ୍ରଣା କରିବାରେ ଲାଗିଲେ । ମନ୍ତ୍ରଣା ଚାଲିଲା ଭଦ୍ରକ ଆଇ.ବି.ଠାରେ ଏବଂ ମହତାବ ଭବନରେ । ଡାକରା ପାଇ ମୁଁ ଯାଇ ମନ୍ତ୍ରୀ ଓ ନେତାଙ୍କ ସମକ୍ଷରେ ସବୁ କଥା ଫେଡ଼ି କହିଲି । ସେତେବେଳେ ବିଜୁ ପଟ୍ଟନାୟକ ରାଜ୍ୟର ମୁଖ୍ୟମନ୍ତ୍ରୀ ଏବଂ ନୀଳମଣି ରାଉତରାୟ ତାଙ୍କ ମନ୍ତ୍ରୀମଣ୍ଡଳର ଜଣେ ସଦସ୍ୟ । ମହତାବବାବୁଙ୍କ ସହିତ ସେମାନଙ୍କର ରାଜନୈତିକ ଦ୍ୱନ୍ଦ୍ୱ ଚାଲିଥାଏ । ଯାହାହେଉ, ବହୁ ବ୍ୟକ୍ତିଙ୍କର ପ୍ରଭାବ ବଳରେ ଛାତ୍ର ଆନ୍ଦୋଳନ ବନ୍ଦ ହୋଇଗଲା । ମାରୱାଡ଼ୀ ବନ୍ଧୁମାନଙ୍କୁ ଶାନ୍ତ କରି ଦିଆଗଲା । ମୋତେ ମହତାବବାବୁ ଓ ନିତ୍ୟାନନ୍ଦ ମହାପାତ୍ରଙ୍କ ଲୋକ ବୋଲି ମନେ କରି ମୋ ବିରୁଦ୍ଧରେ କିଛି କାର୍ଯ୍ୟାନୁଷ୍ଠାନ କରାଯାଇ ଥାଆନ୍ତା ! କିନ୍ତୁ କଲେଜର ଭାରପ୍ରାପ୍ତ ଅଧ୍ୟକ୍ଷ ବଳରାମବାବୁଙ୍କ ଯୋଗୁ ମୁଁ ରକ୍ଷା ପାଇଗଲି । ଅଭିଯୋଗ ଥିଲା ଆମ ଦୁହିଁଙ୍କ ବିରୁଦ୍ଧରେ । ବଳରାମବାବୁ ନୀଳମଣି ରାଉତରାୟଙ୍କ ପାଖ ଲୋକ ଥିବାରୁ ଦଣ୍ଡିତ ହେବେ କିପରି ? ଆଉ ସେ ଦଣ୍ଡିତ ନ ହେଲେ, ମୋତେ ବା ଦଣ୍ଡିତ କରାଯିବ କାହିଁକି ? ଏ ଘଟଣାଟି ମୁଁ କବିଚନ୍ଦ୍ର କାଳୀଚରଣଙ୍କୁ ପତ୍ର ଲେଖି ଜଣାଇ ଦେଲି । ଉତ୍ତରରେ କବିଚନ୍ଦ୍ର ମୋତେ ଲେଖିଲେ ଯେ – ଏକାଙ୍କିକାଟି ଲେଖିଛି ମୁଁ; ମୋତେ ଦୋଷ ଦେବାର କଥା । ସେମାନେ ତୁଚ୍ଛାଟାରେ ତମକୁ ଦୋଷୀ କରୁଛନ୍ତି କାହିଁକି ?

ପୂଜା, ବଡ଼ଦିନ, ଗ୍ରୀଷ୍ମାବକାଶ ଭଳି ଲମ୍ବା ଲମ୍ବା ଛୁଟିରେ ମୁଁ ପ୍ରାୟ ନିଜ ଗାଁ ତିହିଡ଼ି ଥାନାର ଅର୍ଜୁନବିନ୍ଧାକୁ ଯାଉଥିଲି । ଗାଁରୁ ମଝିରେ ମଝିରେ ବାଁଶଡ଼ା, ଘଣ୍ଟେଶ୍ୱର, ଚାନ୍ଦିବାଲି, ମତୋ ପ୍ରଭୃତି ଅଞ୍ଚଳରେ ଥିବା ଆମର ବନ୍ଧୁବାନ୍ଧବଙ୍କ ଘରକୁ ବୁଲି ଯାଉଥିଲି । ନଈନାଳ-ଭରା ସେହି ସବୁ ଅଞ୍ଚଳରେ ସେତେବେଳେ ରାସ୍ତାଘାଟର ସୁବିଧା ନ ଥିଲା । ଯାତାୟାତ ପାଇଁ ଡଙ୍ଗା ଥିଲା ଏକମାତ୍ର ବାହନ । ଦୁଇ ତଟରେ ହେନ୍ତାଳ ବଣ ଓ ଧାନ କ୍ଷେତ ଶୋଭିତ ମନ୍ତେଇ ଓ ସାଳନ୍ଦୀ ନଦୀରେ ନୌକା-ଯାତ୍ରାର ରୋମାଞ୍ଚକାରିତା ମୋ ସ୍ମୃତିରେ ସତେଜ ହୋଇ ରହିଛି । ସେହି ଭେଡ଼ା ଓ କନିକା ଅଞ୍ଚଳରେ ସେତେବେଳେ ଶିକ୍ଷାଦୀକ୍ଷାର ବିଶେଷ ପ୍ରସାର ଘଟି ନ ଥିଲା । ସ୍ୱାସ୍ଥ୍ୟସେବାର ବ୍ୟବସ୍ଥା ମଧ୍ୟ ଯଥେଷ୍ଟ ନ ଥିଲା । କିନ୍ତୁ ସେହି ଅଞ୍ଚଳ ଥିଲା ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଭଣ୍ଡାର ଘର । ପ୍ରଚୁର ଧାନ ଚାଉଳ ସାଙ୍ଗକୁ ଦୁଧ, ଦହି, ମାଛ, ଶୁଖୁଆ ଜିଲ୍ଲାର ବିଭିନ୍ନ ସ୍ଥାନକୁ ତଥା ଜିଲ୍ଲା

ବାହାରକୁ ସେଠାରୁ ରପ୍ତାନି କରାଯାଉଥିଲା । ୧୯୦୬ ମସିହାରେ ରଚିତ ନିଜର 'କନିକା' ଖଣ୍ଡକାବ୍ୟରେ ଶ୍ରୀ ଦୟାନିଧି ମିଶ୍ର ସେହି ଅଞ୍ଚଳର ସମୃଦ୍ଧି ଓ ପ୍ରାକୃତିକ ଶୋଭାର ଯେଉଁ ଚିତ୍ର ଆଙ୍କିଥିଲେ, ତାହା ଯଥାର୍ଥ ଥିବାର ମୁଁ ଲକ୍ଷ୍ୟ କରିଥିଲି : –

ବିଚିତ୍ର ଉଦାର ସୁନୀଳ ସାଗର
ସଦା ପ୍ରେମୋନ୍ମତ୍ତ ଶୋଭାର ଆକର
ତା'ର ତୀରେ ରାଜେ କନିକା ଧରଣୀ
ଉଭା କିବା ରମା କେଶବ-ଘରଣୀ !

କିନ୍ତୁ ସେହି ଅଞ୍ଚଳ ଜମିଦାରଙ୍କ ଅନ୍ୟାୟ ଅତ୍ୟାଚାରରେ ଲଣ୍ଡଭଣ୍ଡ ହୋଇ ଯାଇଥିଲା । ମୋର ଛାତ୍ରାବସ୍ଥାରେ ଶ୍ରୀ ଚକ୍ରଧର ବେହେରାଙ୍କ ନେତୃତ୍ୱରେ କନିକାର ପ୍ରଜା ଆନ୍ଦୋଳନ ଘୋରତର ହୋଇଥିଲା । ଅଯଥା କରଭାର ଓ ନିପୀଡ଼ନରେ ଲୋକେ ବିଦ୍ରୋହୀ ହୋଇ ଉଠିଥିଲେ । ଜାତୀୟ କବି ବାଞ୍ଛାନିଧି ମହାନ୍ତି 'ଦୁଃଖିନୀ କନିକା'ରେ ଗାଇଥିଲେ –

କେତେ ଦିନ ଆଉ ଦୁଃଖିନୀ କନିକା ଅନୀତି ଯାତନା ସହିବ ?
ଦୁଃଖ ସହିବାକୁ ଦୁଃଖିନୀ ଲଲାଟେ ଲିହିଥିଲା କିବା ଦଇବ ॥
କର ଦେଇ ଦେଇ ସାରିଛି ସମ୍ବଳ
ମାଡ଼ ଖାଇ ଖାଇ ହରାଇଛି ବଳ
ଆହା ବୋଲିବାକୁ ସାହା କେହି ନାହିଁ କାହା ଆଗେ ଦୁଃଖ କହିବ ॥

X X X

ଦୁଃଖ ସହି ସହି କନିକା ରମଣୀ
ଅହଲ୍ୟା ସୁନ୍ଦରୀ ହୋଇଲା ପାଷାଣୀ
ନାହିଁ କି ଭାରତେ କେହି ବୀର ରାମ ପାଦ ପରଶେ ଉଦ୍ଧାରିବ ॥
ତା' ଦୁଃଖ ଫେଇବା ପାଇଁ ଗୋପବନ୍ଧୁ
ଉତ୍କଳର ପ୍ରାଣ ଦୀନଜନବନ୍ଧୁ
ବରି ନେଲେ ଦୀର୍ଘ କାରାବାସ ଦଣ୍ଡ ନାହିଁ କେହି ଏହା ହେଜିବ ॥

ସେହିପରି ପଣ୍ଡିତ ଗୋପବନ୍ଧୁ ଦାସ ଆପଣା 'ବନ୍ଦୀର ଆତ୍ମକଥା'ରେ ଲେଖିଥିଲେ –

ଭଦରଖବାସୀ, ଆଉ ଏକ କଥା
ପଡ଼େ ଏବେ ମନେ ଦିଏ ମର୍ମବ୍ୟଥା ।
ଦୁଃଖିନୀ କନିକା କରୁଣ କୁହାଟ
ଲାଗେ ଯେହ୍ନେ ଭେଦି ବିଲ ବନ ପାଟ

ସାଳନ୍ଦୀ ସଲିଳେ ପ୍ରତିଧ୍ୱନି ତାନେ
କୁଳିଶ ନିନାଦ ବାଜଇ ମୋ କାନେ ।
ଭଦ୍ରଖ କନିକା ଚିର ପ୍ରତିବେଶୀ
କନିକା ଦୁଃଖ କି କହିବି ବିଶେଷି ! x x
ମହା ବିପର୍ଯ୍ୟୟ, ମହା ବିଭୀଷିକା
କଂପେ ମହାତଙ୍କେ ଦୁଃଖିନୀ କନିକା ।

କନିକା ପ୍ରଜା-ଆନ୍ଦୋଳନର ନେତା ଚକ୍ରଧରବାବୁଙ୍କ ତୁଣ୍ଡରୁ ଆନ୍ଦୋଳନ ସଂପର୍କିତ କେତେକ ଦୁଃସାହସିକ କାର୍ଯ୍ୟର ବର୍ଣ୍ଣନା ଶୁଣିଥିଲି । ଚକ୍ରଧରବାବୁ ଭଦ୍ରକ ହାଇସ୍କୁଲରେ ମୋ ବାପାଙ୍କର ପଢ଼ା-ସାଙ୍ଗ ଥିଲେ । ମୋତେ ସେ ଖୁବ୍ ଶ୍ରଦ୍ଧା କରୁଥିଲେ । କେତେ ଥର ମୋତେ ସେ କହିଛନ୍ତି – ଶିକ୍ଷକତା କରିବା ସଂଗେ ସଂଗେ ସାଧ୍ୟମତେ କିଛି କିଛି ସମାଜସେବା କାର୍ଯ୍ୟ କର ! ତମ ଗ୍ରାମାଞ୍ଚଳରେ ଦରିଦ୍ର ଅସହାୟ ଜନତାର ସମସ୍ୟାକୁ ବୁଝୁଥାଅ ! ତାଙ୍କର ପରାମର୍ଶ ଅନୁଯାୟୀ ମୁଁ ସନ୍ତୋଷଜନକ ଭାବରେ ଜନସେବା କରିପାରି ନାହିଁ । ମୁଖ୍ୟତଃ ଅଧ୍ୟାପନା ଓ ଲେଖାପଢ଼ା କାର୍ଯ୍ୟରେ ଜୀବନ ବିତାଇ ଦେଲି । ଯାହାହେଉ, ୧୯୫୨-୫୩ ମସିହା ବେଳକୁ ଜମିଦାରୀ ଉଚ୍ଛେଦ କାର୍ଯ୍ୟକାରୀ ହେବାରୁ କନିକା ଲୋକେ ଟିକିଏ ଆଶ୍ୱସ୍ତ ହେଲେ । ୧୯୬୨ ମସିହା ଗ୍ରୀଷ୍ମଋତୁରେ ସେହି ଭେଡ଼ା ଓ କନିକା ଅଞ୍ଚଳକୁ ମୁଁ ବୁଲିବାକୁ ଯାଇଥିଲି । ପ୍ରାକୃତିକ ବିପର୍ଯ୍ୟୟ ହେତୁ ସେହି ଫସଲୀ ବର୍ଷରେ ଧାନ ଅମଳ ଭଲ ହୋଇ ନ ଥିଲା । ମେ-ଜୁନ୍ ମାସରେ ସେ ଅଞ୍ଚଳରେ ଉତ୍କଟ ଖାଦ୍ୟାଭାବ ଦେଖା ଦେଇଥିଲା । ସମସ୍ୟାଟିକୁ ସଂପୃକ୍ତ ସକଳଙ୍କ ଦୃଷ୍ଟିପଥାରୂଢ଼ କରିବା ଉଦ୍ଦେଶ୍ୟରେ ମୁଁ 'ପ୍ରଜାତନ୍ତ୍ର'ର ୧୬।୬।୬୨ ତାରିଖ ସଂଖ୍ୟାରେ 'ସଂପାଦକଙ୍କୁ ପତ୍ର' ବିଭାଗରେ ଗୋଟିଏ ଲେଖା ପ୍ରକାଶ କରାଇଲି । ଲେଖାଟିର କିୟଦଂଶ ଏଠାରେ ଉଦ୍ଧାର କରୁଛି –

## ।। ଭଦ୍ରଖ ସବଡ଼ିଭିଜନ୍‌ରେ ଖାଦ୍ୟାଭାବ ।।

ମହାଶୟ, ଭଦ୍ରକ ସବ୍‌ଡ଼ିଭିଜନ୍‌ର ତିହିଡ଼ି ଓ ଚାନ୍ଦବାଲି ଥାନା ଅନ୍ତର୍ଗତ ମତୋ, ଗଦୀ, ପୀରହାଟ, ଅର୍ଜୁନବିନ୍ଧା, ତିଆଡ଼ିସାହି ପ୍ରଭୃତି କେତେକ ଅଞ୍ଚଳ ମୁଁ ଗତ ମାସ ମଧ୍ୟରେ ବୁଲି ଦେଖିଛି, ଖାଦ୍ୟାଭାବ ଏହି ଅଞ୍ଚଳରେ ଉତ୍କଟ ଆକାରରେ ଦେଖା ଦେଲାଣି । ଗତ ଦୁଇ ତିନି ବର୍ଷ ଧରି ଏ ଅଞ୍ଚଳରେ ବନ୍ୟା ଓ ମରୁଡ଼ି ଲାଗି ରହୁଥିବା ହେତୁ ଧାନ ଚାଷ ଭଲ ହୋଇ ନାହିଁ । ଏପରିକି ଅନେକ ବଡ଼ ବଡ଼ ଚାଷୀଙ୍କ ଘରୁ ଏହି ଆଷାଢ଼ ମାସରୁ ଧାନ ସରିଗଲାଣି । ସେମାନେ ନୂଆ ଧାନ ଅମଳ ହେବା ପର୍ଯ୍ୟନ୍ତ ପ୍ରାୟ ୬ ମାସ କାଳ କିପରି ଚଳିବେ ବସି ଭାଳୁଛନ୍ତି । ବର୍ତ୍ତମାନ ଏ ଅଞ୍ଚଳର ଶତକଡ଼ା ୬୫

ଜଣଙ୍କ ଘରେ ଦାନା ନାହିଁ । ବହୁ ଲୋକ ଘର ଦ୍ୱାର ଛାଡ଼ି କଲିକତା ପଳାଇ ଗଲେଣି । ସରକାରୀ ଚାଉଳ ବିକ୍ରୟ-କେନ୍ଦ୍ରମାନଙ୍କରେ ଟଙ୍କାକୁ ସେ ୨.୯ (ଦୁଇ ସେର ଦୁଇ ଛଟାଙ୍କି) କରି ଚାଉଳ ମିଳୁଛି । ପ୍ରତ୍ୟେକ ପରିବାରର ଆବଶ୍ୟକ ଅନୁଯାୟୀ ଏହି ଚାଉଳ ମଧ୍ୟ ଯୋଗାଇ ଦିଆଯାଉ ନାହିଁ । ଲୋକେ ମୂଳ ମଜୁରୀ ଲାଗି – ବେଲାକଂସା, ଗହଣାଗାଣ୍ଠି ବିକ୍ରୟ କରି 'ଢୋକେ ପି ଦଣ୍ଡେ ଜୀ' ନ୍ୟାୟରେ କାଳ କାଟୁଛନ୍ତି । ଅନେକ ପରିବାର ଦିନ ଓଳିଟା ଖାଇ ରାତି ଓଳି ଉପାସ ରହୁଥିବାର ମୁଁ ସ୍ୱଚକ୍ଷୁରେ ଦେଖିଛି । x x x ଏହି ପରିସ୍ଥିତିରେ ସରକାରୀ ପ୍ରତିକାର ତୁରନ୍ତ ଲୋଡ଼ା ହେଉଛି । ନିକଟରେ (ଜୁନ୍ ୧୭ ତାରିଖ) ଆମର ଯୋଗାଣ ବିଭାଗ ମନ୍ତ୍ରୀ ଖାଦ୍ୟ ପରିସ୍ଥିତି ସଂପର୍କରେ ଏକ ପ୍ରେସ୍ ନୋଟ୍ ପ୍ରକାଶ କରିଛନ୍ତି । ସେଥିରେ ସେ କହିଛନ୍ତି ଯେ ସରକାରଙ୍କ ନିକଟରେ ଯଥେଷ୍ଟ ପରମାଣରେ ଧାନ ଚାଉଳ ରହିଛି ଏବଂ ଖାଦ୍ୟାଭାବର ଯେ କୌଣସି ପରିସ୍ଥିତି ସମ୍ଭାଳିବା ପାଇଁ ସରକାର ପ୍ରସ୍ତୁତ ଅଛନ୍ତି । କଟକ ଜିଲ୍ଲାରେ ପ୍ରାୟ ୩୦୦ ଓ ବାଲେଶ୍ୱର ଜିଲ୍ଲାରେ ପ୍ରାୟ ୨୦୦ ସରକାରୀ ଚାଉଳ ବିକ୍ରୟ କେନ୍ଦ୍ର ଖୋଲାଯାଇ ଥିବାର ମନ୍ତ୍ରୀ ମହୋଦୟ ଜଣାଇଛନ୍ତି । ସରକାରଙ୍କର ଏ ସତର୍କତା ଏବଂ ଅଭୟବାଣୀ ପ୍ରଶଂସନୀୟ । x x ବର୍ତ୍ତମାନ ପରିସ୍ଥିତିରେ ସରକାରଙ୍କର କର୍ତ୍ତବ୍ୟ ହେଉଛି – (୧) ଲୋକମାନଙ୍କୁ ଯେପରି ଯଥେଷ୍ଟ ପରିମାଣରେ ମୂଳମଜୁରୀ ମିଳେ ତାହାର ବ୍ୟବସ୍ଥା କରିବା, (୨) ସ୍ଥାନ କାଳ ପାତ୍ର ଦେଖି ଧାନ ଚାଉଳ ରିଲିଫ୍ ବଣ୍ଟନ କରିବା, (୩) ଅଧିକ ସଂଖ୍ୟାରେ ଚାଉଳ ବିକ୍ରୟ କେନ୍ଦ୍ର ଖୋଲିବା, (୪) ଧାନଚାଉଳର ବର୍ତ୍ତମାନ ଦର ଶସ୍ତା କରିବା ତଥା ନିତ୍ୟ ବ୍ୟବହାର୍ଯ୍ୟ ଜିନିଷପତ୍ରର ଦରବୃଦ୍ଧି ରୋକିବା ଏବଂ (୫) ଚାଷୀମାନଙ୍କୁ ବିହନ, ବଳଦ, ସାର ଆଦି ଚାଷୋପକରଣ ବିନା ମୂଲ୍ୟରେ ବା ଋଣ ଆକାରରେ ଯୋଗାଇଦେବା ।

– ଶ୍ରୀ କୃଷ୍ଣଚରଣ ବେହେରା, ଭଦ୍ରକ କଲେଜ

ଏହି 'ସମ୍ପାଦକଙ୍କୁ ପତ୍ର' ପ୍ରକାଶ ପାଇବାର ଛଅ ମାସ ପରେ ମୁଁ ହଠାତ୍ ଦିନେ କଲେଜ ଅଧ୍ୟକ୍ଷଙ୍କଠାରୁ ଏହିପରି କନ୍‌ଫିଡ଼େନ୍‌ସିଆଲ୍ ଚିଠି ପାଇଲି – "No. 135, Dated Bhadrak, the 23rd January, 63. You have published an article under the heading 'Food Shortage in Bhadrak Sub-division' in the local newspaper Prajatantra dated 17.7.62 in which you have criticised the Government action and the Press Communique issued by Govt. This goes against the code of conduct of employees of Govt.-aided institutions.

You are required to show cause why disciplinary action will not be taken against you, on or before 30th instant.

Sd./

Principal, Bhadrak College

ଦୁଃଖ ଓ ବିସ୍ମୟରେ ମୁଁ ଟିକିଏ ବିଚଳିତ ହୋଇ ପଡ଼ିଲି । ଏହି ବ୍ୟାପାରରେ ମୋର ଦୋଷ କେଉଁଠି ରହିଲା, ବୁଝିପାରିଲି ନାହିଁ । ଏକ ସ୍ୱାଧୀନ ଗଣତାନ୍ତ୍ରିକ ରାଷ୍ଟ୍ରରେ ମୋର ମତ ପ୍ରକାଶ କରିବାର ଅଧିକାର କ'ଣ ନାହିଁ ? ସରକାରୀ ଚାକିରିରେ ସ୍ୱାଧୀନତା ଅତି ସଂକୁଚିତ ହେଉଥିବାର ଜାଣି ମୁଁ ତାହା ପ୍ରତ୍ୟାଖ୍ୟାନ କରିଥିଲି । କିନ୍ତୁ ଏହି ଘଟଣାରୁ ମୋର ହୃଦ୍‌ବୋଧ ହେଲା ଯେ – ସରକାରୀ ସାହାଯ୍ୟପ୍ରାପ୍ତ ପ୍ରାଇଭେଟ୍ କଲେଜ ଚାକିରିରେ ମଧ୍ୟ ସ୍ୱାଧୀନତା ବିପନ୍ନ ଓ ସଂକୁଚିତ । ଯାହା ହେଉ, କଲେଜ ଅଧକ୍ଷ କନ୍‌ଫିଡ଼େନ୍‌ସିଆଲ୍ ଚିଠିର ଉତ୍ତର ମୁଁ ୨୮-୧-୬୩ ତାରିଖରେ ନିମ୍ନମତେ ଲେଖି ପଠାଇ ଦେଲି – "Sir, With reference to your Letter No. 135 dated the 23rd instant I beg to state that I had published an article regarding food shortage in some areas of Bhadrak Sub-division, which I have visited during the last summer vacation, not only in the Prajatantra but also in the Samaj during the month of July, 1962. I belong to that area and had seen with my own eyes the miserable condition of the people due to food shortage.

I had neither criticised the Govt. action and the Press Communique issued by the Govt., nor I had any intention to do so in my said article. Rather I had praised the Govt. for its cautious step and action, and had given some suggestions on the basis of the Press Communique towards the solution of this problem, as a citizen of a democratic state."

ଏହି କୈଫିୟତ-ଲିପି ଉପରେ କଲେଜ ଗଭର୍ଣ୍ଣିଂ ବଡ଼ି ୩୧-୧-୬୩ ତାରିଖ ମିଟିଂରେ ନିମ୍ନଲିଖିତ ପ୍ରସ୍ତାବ ଗ୍ରହଣ କରି ମୋତେ ଜଣାଇ ଦେଲେ – "The G. B. was of opinion that though there was no direct criticism of Govt., the article seemed to exaggerate the facts and was likely to produce panic in the minds of the people. Resolved that Sri

K.C. Behera be cautioned not to write such articles in future. ଗଭର୍ଣ୍ଣିଂ ବଡ଼ିର ଏ ପ୍ରସ୍ତାବ ମୋତେ ବଡ଼ କଷ୍ଟ ବୋଧ ହେଲା । ରକ୍ଷା ହୋଇଛି, ଭବିଷ୍ୟତରେ ଜଣେ ଲେଖକ ଭାବରେ ମୋତେ କି ଧରଣର ଲେଖା ଲେଖିବାକୁ ହେବ, ସେ ବିଷୟରେ ଗଭର୍ଣ୍ଣିଂ ବଡ଼ି କିଛି ନିର୍ଦ୍ଦେଶ ଦେଇ ନ ଥିଲେ ! ମୋର କେରିୟର୍ ବା କର୍ମଜୀବନରେ କିଛି ଦାଗ ରଖିଯିବାକୁ କଲେଜ କର୍ତ୍ତୃପକ୍ଷଙ୍କ ଉଦ୍ଦେଶ୍ୟ ଥିବାର ମନେ କରି ମୁଁ ଏହି ପ୍ରସ୍ତାବ ବିପକ୍ଷରେ ଆଇନ୍‌ଗତ କାର୍ଯ୍ୟାନୁଷ୍ଠାନ ପାଇଁ ଗଭର୍ଣ୍ଣିଂ ବଡ଼ିକୁ ଅନୁମତି ମାଗିଲି । ଗଭର୍ଣ୍ଣିଂ ବଡ଼ି ମୋର ଏହି ଅନୁମତି ପ୍ରାର୍ଥନା ଉପରେ ୨୫-୮-୬୩ ତାରିଖ ମିଟିଂରେ ନିମ୍ନ ପ୍ରସ୍ତାବଟି ଗ୍ରହଣ କଲେ – "Resolved that permission be not given to Sri K.C. Behera to take legal action against the G.B., as he was cautioned to be more careful in his writings, and there is no occasion for any legal action."

(Resolution No. 127 dated 25.8.63)

ଏତିକିରେ ଏହି ଅଯଥା, ଅପ୍ରୀତିକର ବ୍ୟାପାରରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ଏଥିରୁ ମୋର ହୃଦୟଙ୍ଗମ ହେଲା ଯେ – ସରକାରୀ ସ୍ତରରେ କେତେକ ପଦାଧିକାରୀ ପ୍ରଭାବଶାଳୀ ବ୍ୟକ୍ତି ଏବଂ କଲେଜ ସ୍ତରରେ କିଛି ଈର୍ଷାପର ମାତବର ଲୋକ ମୋ ବିପକ୍ଷରେ କାର୍ଯ୍ୟ କରୁଛନ୍ତି । ଏଣିକି କଲେଜ ଭିତରେ ତଥା ବାହାରେ ମୋତେ ଖୁବ୍ ସତର୍କ ହୋଇ କାର୍ଯ୍ୟ କରିବାକୁ ହେବ ବୋଲି ବିଚାରିଲି । ସେତେବେଳେ ମୋର ଛାତ୍ର ଭଦ୍ରକର ଶ୍ରୀ କ୍ଷେତ୍ରବାସୀ ନାୟକ ଓଡ଼ିଆ ଭାଷା ସାହିତ୍ୟରେ ସ୍ନାତକୋତ୍ତର ଶିକ୍ଷା ଲାଭ କରି କୌଣସି କର୍ମ ନିଯୁକ୍ତି ଅପେକ୍ଷାରେ ଥାଆନ୍ତି । ଶ୍ରୀ ଶୈଳେନ୍ଦ୍ର ମହାପାତ୍ର, ନବକିଶୋର ମହାନ୍ତି, ରଘୁନାଥ ସାମଲ, ସତ୍ୟେନ୍ଦ୍ରନାଥ ବେନାର୍ଜି ପ୍ରମୁଖ ଛାତ୍ରମାନେ ମଧ୍ୟ କିଛି କିଛି ସାଂସ୍କୃତିକ କାର୍ଯ୍ୟରେ ମନୋନିବେଶ କରିଥାଆନ୍ତି । ଏମାନଙ୍କୁ ଘେନି ଭଦ୍ରକରେ ଗୋଟାଏ ବଡ଼ ଧରଣର ସାହିତ୍ୟ ସମାବେଶ କରିବା ପାଇଁ ଚିନ୍ତା କଲି । ଭଦ୍ରକର ଏକ ଉଲ୍ଲେଖନୀୟ ସାରସ୍ୱତ ପରଂପରା ରହିଛି । ପୁଣି, ଆଲୋଚ୍ୟ ସମୟରେ ବହୁ ପ୍ରବୀଣ ଓ ତରୁଣ କବି-ଲେଖକ ସାହିତ୍ୟ ସୃଷ୍ଟିରେ ସକ୍ରିୟ ଥିଲେ । ସେମାନଙ୍କୁ ଏକତ୍ର କରି ଭାବ-ବିନିମୟ କରିବା ତଥା ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା-ପ୍ରଚୋଦନା ଯୋଗାଇବା ଆବଶ୍ୟକ ଥିଲା । ଆମେ ବହୁ ବିଚାର ଆଲୋଚନା କରି 'ଭଦ୍ରକ ଲେଖକ ସମ୍ମେଳନ' କରାଇବା ପାଇଁ ସିଦ୍ଧାନ୍ତ ନେଲୁଁ । ସାହିତ୍ୟିକ ଉଦୟନାରାୟଣ ମହାନ୍ତିଙ୍କ ସଭାପତିତ୍ୱରେ ତଥା କ୍ଷେତ୍ରବାସୀ ନାୟକଙ୍କ ସଂପାଦକତ୍ୱରେ ଏକ ପନ୍ଦର-ଜଣିଆ ଅଭ୍ୟର୍ଥନା ସମିତି ଗଠିତ ହେଲା । ୧୯୬୩ ଅକ୍ଟୋବର ୧୨ ଓ ୧୩ ତାରିଖ ଦୁଇଦିନ କାଳ ଭଦ୍ରକ ହାଇସ୍କୁଲ ପରିସର ମଧ୍ୟରେ

ଲେଖକ ସମ୍ମେଳନ ଅନୁଷ୍ଠିତ ହୋଇଥିଲା । ସମଗ୍ର ସବଡ଼ିଭିଜନ୍‌ରୁ ବହୁ କବି-ଲେଖକ ଏଥିରେ ଯୋଗଦେଇ କବିତାପାଠରେ ତଥା ବିଭିନ୍ନ ଆଲୋଚନା ଚର୍ଚ୍ଚାରେ ଯୋଗ ଦେଇଥିଲେ । ହଦଗଡ଼ଠାରେ ଚାଲିଥିବା ସାଲନ୍ଦୀ ଯୋଜନାର କାର୍ଯ୍ୟସ୍ଥଳକୁ କବି-ଲେଖକମାନଙ୍କୁ ପ୍ରମୋଦ ଭ୍ରମଣରେ ନିଆଯାଇଥିଲା । ଏହା ପୂର୍ବରୁ ଭଦ୍ରକଠାରେ ଏତେ ବଡ଼ ଲେଖକ ସମ୍ମେଳନ ମୋ ଜାଣିବାରେ ହୋଇ ନ ଥିଲା ।

ସମ୍ମେଳନ ଉପଲକ୍ଷେ ଏକ ଶୋଭନୀୟ ସ୍ମରଣିକା ପ୍ରକାଶ ପାଇଥିଲା । ଏଥିରେ ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀ ଗୋକୁଳାନନ୍ଦ ନାୟକ, ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, କବି ନୀଳାଦ୍ରି ଦତ୍ତ, ଶ୍ରୀ ଶତ୍ରୁଘ୍ନ ନାଥ, ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି, ଶ୍ରୀ ଗୌର ଗୋପାଳ ଜେନା, ଶ୍ରୀ ବିଶ୍ୱନାଥ ବଳ, ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି, ଶ୍ରୀ ଭଗବାନ ନାୟକ ବର୍ମା, ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ଦେବୀ, ମନୋରମା ବିଶ୍ୱାଳ ପ୍ରମୁଖ ବିଭିନ୍ନ କବି-ଲେଖକଙ୍କର କେତେକ ଉପାଦେୟ ଲେଖା ପ୍ରକାଶିତ ହୋଇଥିଲା । 'ଭଦ୍ରକର ଇତିହ ଓ ଇତିହାସ', 'ଚଇତି ତାମସା', 'ଗଣକବି ଜଗନ୍ନାଥ ପାଣିଙ୍କ ଲୀଳା-ଯାତ୍ରା' ଇତ୍ୟାଦି କିଛି ନାମ-ଦରଜ-ହୋଇ-ନ-ଥିବା ଲେଖା ମୁଁ ସ୍ମରଣିକାରେ ଲେଖିଥିଲି । ଲେଖାରେ ନାମ ଦରଜ ନ କରିବାର କାରଣ ଫେଡ଼ି କହିଦିଏଁ । ସମ୍ମେଳନର ପ୍ରସ୍ତୁତି ପୂର୍ବରୁ ଆରମ୍ଭ କରି ଉଦ୍‌ଯାପନ ପର୍ଯ୍ୟନ୍ତ ପ୍ରାୟ ସମସ୍ତ କାର୍ଯ୍ୟକ୍ରମର ଅନ୍ତରାଳରେ ମୁଁ ଥିଲି । କିନ୍ତୁ ନେପଥ୍ୟରେ ଥାଇ ସବୁ କାର୍ଯ୍ୟ କରୁଥିଲି ବା କରାଉଥିଲି । ସମ୍ମେଳନରେ ମୋର ଏହି ପ୍ରଚ୍ଛନ୍ନ ଭୂମିକା କଥା ସେତେବେଳେ ଅନେକେ ଜାଣି ନ ଥିଲେ । ଜାଣିଥିଲେ, ମୋ ପ୍ରତି ଈର୍ଷାପରାୟଣ ହୋଇ କେତେକ ପ୍ରଭାବଶାଳୀ ବ୍ୟକ୍ତି ସମ୍ମେଳନ କାର୍ଯ୍ୟରେ ବାଧାବିଘ୍ନ ଘଟାଇବା ସଂଗେ ସଂଗେ ମୋ ପାଇଁ ଆଉ କିଛି ଶତ୍ରୁ ସୃଷ୍ଟି କରିଥାଆନ୍ତେ । ଶିକ୍ଷା-ସଂସ୍କୃତି କ୍ଷେତ୍ରରେ ମୁଁ ନିରୁପଦ୍ରବ ଭାବରେ କିଛି କାର୍ଯ୍ୟ କରିବାକୁ ଚାହୁଁଥିଲି ।

ଏହି ଲେଖକ ସମ୍ମେଳନ ସ୍ମରଣିକାର ପରିଶିଷ୍ଟରେ ଦେଢ଼ ଶହରୁ ବେଶି ଭଦ୍ରକର କବି-ଲେଖକମାନଙ୍କ ପରିଚୟ ପ୍ରଦାନ କରାଯାଇଥିଲା । ଏହି ପରିଚୟ ପଞ୍ଜିକାରେ ଅତୀତର କେତେକ ସାହିତ୍ୟସାଧକଙ୍କ ସହିତ (ଯଥା – କବିଶେଖର ଚିନ୍ତାମଣି, 'ଶବ୍ଦନିଧି'ର ସଂକଳୟିତା ଚତୁର୍ଭୁଜ ପଟ୍ଟନାୟକ, କବି ଜଗନ୍ନାଥ ପାଣି, କବି ବଂଶୀବଲ୍ଲଭ ଗୋସ୍ୱାମୀ, ଜାତୀୟକବି ବାଞ୍ଛାନିଧି ମହାନ୍ତି, କଥାକାର ବୈଷ୍ଣବ ଚରଣ ଦାସ, 'ରତ୍ନକୋଷ'ର ସଂପାଦକ ନାଟ୍ୟକାର ଭାଗୀରଥି ମହାପାତ୍ର, କାନ୍ତକବି ଲକ୍ଷ୍ମୀକାନ୍ତ ପ୍ରମୁଖ) ସେତେବେଳେ କର୍ମରତ ଥିବା ବହୁ କବି-ଲେଖକଙ୍କ କୃତି ଓ କୃତିତ୍ୱ ସନ୍ନିବେଶିତ ହୋଇଥିଲା । ଏବେ ଭଦ୍ରକ ଏକ ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ ହୋଇଛି । ଅଧିକ ସଂଖ୍ୟାରେ ଜିଲ୍ଲାର କବି-ଲେଖକ ଲେଖନୀ ଚାଳନା କରୁଛନ୍ତି । ସେମାନଙ୍କ ନିକଟରେ ସ୍ମରଣିକାର

ଏହି ପରିଚୟ ପଞ୍ଜିକା ଏବଂ ଭଦ୍ରକ ସଂପର୍କିତ ଅନ୍ୟାନ୍ୟ ରଚନା ପ୍ରେରଣାର ଉତ୍ସ ହୋଇ ରହିବ । ସ୍ମରଣିକାଟିର ମୁଦ୍ରଣ ଓ ପ୍ରକାଶରେ ବିଶେଷ ସହାୟତା କରିଥିଲେ – ସାମ୍ବାଦିକ ଶ୍ରୀ ବାବାଜୀଚରଣ ନାୟକ ଏବଂ ମୋର ପ୍ରିୟ ଛାତ୍ର କ୍ଷେତ୍ରବାସୀ ନାୟକ, ନବକିଶୋର ମହାନ୍ତି ଓ ଶୈଳେନ୍ଦ୍ର ମହାପାତ୍ର ଏହାଁର ସଂକଳନ ସଂପାଦନା କାର୍ଯ୍ୟ ତୁଲାଇଥିଲେ । ସକଳ ପ୍ରକାର ସାହିତ୍ୟକର୍ମ ବାକି ରଖି ଦେଇ କ୍ଷେତ୍ରବାସୀ ତ ଅକାଳରେ ଆମକୁ ଛାଡ଼ି ଚାଲିଗଲେ; ନବ ଓ ଶୈଳେନ୍ଦ୍ର ଉଭୟେ ଇଂରାଜୀ ଭାଷା-ସାହିତ୍ୟର ଅଧ୍ୟାପନା କ୍ଷେତ୍ରରେ ଏବେ ସୁନାମ ଅର୍ଜିଛନ୍ତି ଏବଂ ସାଧମତେ ସାହିତ୍ୟ ସାଧନା କରି ଚାଲିଛନ୍ତି ।

## କଣ୍ଟକ କୁସୁମର ମାଳା-୨

ଭଦ୍ରକ କଲେଜ ପରିସର ମଧ୍ୟରେ ତଥା ବାହାରେ ଯେଉଁ କେତେକ ଉଲ୍ଲେଖନୀୟ କାର୍ଯ୍ୟ କରିଥିଲି, ଏବେ ଗୋଟି ଗୋଟି କରି ତାହା ସବୁ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ମହୁମାଛି ଯେପରି ଫୁଲରୁ ଫୁଲକୁ ଉଡ଼ି ମହୁ ସଂଗ୍ରହ କରେ – କକୁଡ଼ା ଯେପରି ଅଣ୍ଡା ପରେ ଅଣ୍ଡା ଦେଇଚାଲେ, ମହୁ ଓ ଅଣ୍ଡା କିପରି କାହା କାର୍ଯ୍ୟରେ ଲାଗୁଛି ଜାଣେ ନାହିଁ, ମୁଁ ସେହିପରି ଲାଭ-ଲୋକସାନି ପ୍ରତି ନିଘା ନ ଦେଇ ବୋଧହୁଏ ସ୍ୱଭାବ ପ୍ରକୃତିବଶତଃ କାର୍ଯ୍ୟ କରି ଯାଉଥିଲି । କାର୍ଯ୍ୟଗୁଡ଼ିକର ଫଳାଫଳ ପ୍ରତି ଅଧିକାଂଶ କ୍ଷେତ୍ରରେ ଦୃଷ୍ଟି ଦେଉ ନ ଥିଲି – ପ୍ରତ୍ୟେକ କ୍ରିୟା ସଂପର୍କରେ ସତର୍କ ହେଉ ନଥିଲି । ସେଇଥିପାଇଁ ହୁଏତ କୁସୁମର ମାଳା ସହିତ କଣ୍ଟକର ମାଳା ମୋତେ ପିନ୍ଧିବାକୁ ପଡୁଥିଲା ।

କଲେଜର ଅଧ୍ୟାପକମାନଙ୍କୁ ଘେନି ସେତେବେଳେ 'ସାହିତ୍ୟ ସନ୍ଧ୍ୟା'ର ଆୟୋଜନ କରାଯାଉଥିଲା । ପ୍ରତି ମାସରେ ଥରେ ଲେଖାଏଁ ଜଣେ ଅଧ୍ୟାପକଙ୍କ ବାସଗୃହରେ 'ସାହିତ୍ୟ ସନ୍ଧ୍ୟା'ର ବୈଠକ ବସୁଥିଲା । ବୈଠକରେ କୌଣସି ଜଣେ ଅଧ୍ୟାପକ ସାହିତ୍ୟ-ସଂସ୍କୃତି ବିଷୟକ ଗୋଟିଏ ପ୍ରବନ୍ଧ ପାଠ କରୁଥିଲେ ଏବଂ ପଠିତ ପ୍ରବନ୍ଧ ଉପରେ ଆଲୋଚନା କରୁଥିଲେ । ଏହି 'ସାହିତ୍ୟ ସନ୍ଧ୍ୟା'ରେ ମୁଖ୍ୟତଃ ଓଡ଼ିଆ, ଇଂରାଜୀ ଓ ହିନ୍ଦୀ ଭାଷା-ସାହିତ୍ୟର ଅଧ୍ୟାପକମାନେ ଯୋଗ ଦେଉଥିଲେ । ବେଳେବେଳେ ସହରର ବିଶିଷ୍ଟ ଏଡ଼୍‌ଭୋକେଟ୍ ଶ୍ରୀ ରାଖାଲ ଚନ୍ଦ୍ର ଦାସଙ୍କର ସୁଶୋଭିତ ଉଦ୍ୟାନରେ ବୈଠକ ବସୁଥିଲା । ରାଖାଲ ବାବୁ ଜଣେ ସୁରୁଚିସଂପନ୍ନ ସଂସ୍କୃତିପ୍ରେମୀ ବ୍ୟକ୍ତି । ସହରର ମଧ୍ୟସ୍ଥଳରେ ତାଙ୍କର ବାସଗୃହ-ସଂଲଗ୍ନ ଏକ ବିସ୍ତୃତ ବଗିଚାରେ ସେ ନାନା ପ୍ରକାର ସୁଦୃଶ୍ୟ ଗଛଲତା ଲଗାଇଥିଲେ । ବିଭିନ୍ନ ଋତୁରେ ସେହି ଗଛଲତାରେ ସୁରଭିଯୁକ୍ତ ବିଚିତ୍ର ପୁଷ୍ପରାଶିର ସମ୍ଭାର ତଳେ ସବୁଜ ଘାସର କଅଁଳ ଶେଯ । ତାକୁ ଦେଖିଲା କ୍ଷଣି ମୋର

ମନେ ପଡ଼ି ଯାଉଥିଲା ଶାନ୍ତିନିକେତନ ଉତ୍ତରାୟଣରେ ଥିବା କବି ରବୀନ୍ଦ୍ରନାଥଙ୍କ ବାସଭବନ-ସଂଲଗ୍ନ ଗଛଲତା ପୂର୍ଣ୍ଣ ସୁରମ୍ୟ ଉଦ୍ୟାନ । ରାଖାଲ ବାବୁଙ୍କ ଉଦ୍ୟାନରେ ଏବେ ସୁଦ୍ଧା ବିଭିନ୍ନ ସାହିତ୍ୟ-ସଂସ୍କୃତିର ସଭାସମିତି ଅନୁଷ୍ଠିତ ହୋଇଥାଏ । ଭଦ୍ରକ ବାହାରୁ ମଧ୍ୟ ବିଭିନ୍ନ ଖ୍ୟାତନାମା ପଣ୍ଡିତ ବ୍ୟକ୍ତି ସେଠାରେ ଆସି ପ୍ରବଚନ ବା ଉଦ୍‌ବୋଧନ ଦେଇଥାଆନ୍ତି ।

ସେହି 'ସାହିତ୍ୟ ସନ୍ଧ୍ୟା'ର ଏକ ଫଳଶ୍ରୁତି ହେଉଛି – 'ଦଶହରା' ଗ୍ରନ୍ଥ (୧୯୬୦) ପ୍ରକାଶ । ଏଥିରେ 'ସାହିତ୍ୟ ସନ୍ଧ୍ୟା'ର ପଠିତ କେତୋଟି ବଛା ବଛା ପ୍ରବନ୍ଧସହ ଅନ୍ୟ କେତେକ ପ୍ରବନ୍ଧ ମିଶାଇ ସର୍ବମୋଟ ଦଶଟି ଲେଖା ପ୍ରକାଶ ପାଇଥିଲା । ଅଧ୍ୟାପକ ନରେନ୍ଦ୍ରମୋହନ ବେହେରାଙ୍କ ଲିଖିତ 'ପ୍ରାକ୍ ରାଧାନାଥ ସାହିତ୍ୟର ଭୂମିକା' ଓ 'ସବୁଜ ସାହିତ୍ୟ', ଅଧ୍ୟାପକ ସୁଧାଂଶୁଶେଖର ରାୟଙ୍କ 'ଦ୍ୱୈତବାଦୀ ରାଧାନାଥଙ୍କ ଦୁଃଖବାଦ' ଓ 'ଫକୀରମୋହନଙ୍କ ଆସ୍ତିକତା', ଅଧ୍ୟାପକ ନିଶାମଣି ମିଶ୍ରଙ୍କର 'ପଞ୍ଚସଖା-ପୂର୍ବ ଓଡ଼ିଆ ପଦ୍ୟ ସାହିତ୍ୟ', ଅଧ୍ୟାପକ ଜୟାନନ୍ଦ ଗୋସ୍ୱାମୀଙ୍କ 'ଷୋଡ଼ଶ ଶତାବ୍ଦୀ ପୂର୍ବର ଓଡ଼ିଆ ଗଦ୍ୟ' ପ୍ରଭୃତି ଆଲୋଚନା କେତେକ ଦିଗରୁ ନୂଆ ଧରଣର ଥିଲା । ମୋର 'ଗୀତାଞ୍ଜଳି ଓ ଜୀବନ ସଂଗୀତ' ତୁଳନାତ୍ମକ ଆଲୋଚନା ମଧ୍ୟ ସୁଧୀମଣ୍ଡଳୀର ପସନ୍ଦଯୋଗ୍ୟ ହୋଇଥିଲା । 'ପ୍ରାକ୍-ରାଧାନାଥ ସାହିତ୍ୟର ଭୂମିକା' ପ୍ରବନ୍ଧରେ ନରେନ୍ଦ୍ରମୋହନ ସେତେବେଳେ କବି ଭୀମ ଭୋଇଙ୍କଠାରେ ଯେଉଁ ଆଧୁନିକତାର ସୂଚନା ଦେଇଥିଲେ, ଆନନ୍ଦର କଥା, ପରବର୍ତ୍ତୀ କାଳରେ ଅଧ୍ୟାପକ କୁମୁଦ ଚନ୍ଦ୍ର ଦାଶଙ୍କ ଭଳି କେତେକ ସମୀକ୍ଷକ ତାହାର ଯାଥାର୍ଥ୍ୟ ସ୍ୱୀକାର କରିଥିବାର ଦେଖାଯାଏ । 'ଉତ୍କଳ ସାହିତ୍ୟ' ପତ୍ରିକାର ନୂତନ ପ୍ରସ୍ଥରେ (୧୯୭୬) 'ଆଧୁନିକ ଓଡ଼ିଆ କବିତାର ଇତିହାସ' ପ୍ରବନ୍ଧରେ କୁମୁଦଚନ୍ଦ୍ର ଭୀମଭୋଇଙ୍କୁ 'ଆଧୁନିକ କବି' ଭାବରେ ହିଁ ଆଲୋଚନା କରିଛନ୍ତି । 'ଦଶହରା' ଗ୍ରନ୍ଥକୁ ଆମେ କଲେଜ ଗଭର୍ଣ୍ଣିଂ ବଡ଼ିର ସେକ୍ରେଟାରୀ ଏଡ୍‌ଭୋକେଟ୍ ନରେନ୍ଦ୍ର ପ୍ରସାଦ ଦାସଙ୍କୁ ଉତ୍ସର୍ଗ କରିଥିଲୁ । ନରବାବୁଙ୍କ ଘରକୁ ଯାଇ ମୁଁ ଯେତେବେଳେ ଗ୍ରନ୍ଥଟି ତାଙ୍କୁ ଉପହାର ଦିଏ, ସେ ବଡ଼ ଖୁସି ହେଲେ ଏବଂ 'ସାହିତ୍ୟ ସନ୍ଧ୍ୟା' ଇତ୍ୟାଦି କରି କଲେଜ ଅଧ୍ୟାପକଙ୍କ ଭିତରେ ମୁଁ ଦଳ ବାନ୍ଧୁଥିବାର ତାଙ୍କ ପାଖରେ ଅଭିଯୋଗ ହୋଇଛି ବୋଲି ସୂଚନା ଦେଲେ । ବିସ୍ମିତ ହେଲି – ସାହିତ୍ୟ-ସଂସ୍କୃତିର ଆଲୋଚନା-ଚର୍ଚ୍ଚା ଉଦ୍ଦେଶ୍ୟରେ, କିଛି ସଂଗଠିତ ଆନୁଷ୍ଠାନିକ କାର୍ଯ୍ୟ କଲେ, କ'ଣ 'ଦଳ ବାନ୍ଧିବା' ହୁଏ ! ବୋଧହୁଏ ରାଜନୀତି କ୍ଷେତ୍ରରୁ 'ଦଳ ବାନ୍ଧିବା' – 'ଦଳ ଗଢ଼ିବା' କଥା ଏପରି ଅଦ୍ଭୁତ ଅର୍ଥ ବହନ କରିଛି । ଚୋରି ଡକାୟତି ପାଇଁ ଦଳ ବନ୍ଧାଯାଏ, ଏବେ ଆତ୍ମସେବା ପାଇଁ ରାଜନୀତି କ୍ଷେତ୍ରରେ ଦଳ ଗଢ଼ାଯାଉଛି । ସାହିତ୍ୟ-ସଂସ୍କୃତି କ୍ଷେତ୍ରରେ ଦଳ ବାନ୍ଧିବା ବା ଦଳ ଗଢ଼ିବା ନିନ୍ଦନୀୟ ହେବ କାହିଁକି, ଯଦି ସେପରି ଦଳ ବାନ୍ଧିବାର କିଛି ମହତ୍

ଉଦ୍ଦେଶ୍ୟ ଥାଏ । ତାହା ହେଲେ ଆମର 'ସତ୍ୟବାଦୀ ଗୋଷ୍ଠୀ' ସଂଗଠିତ ହୋଇଥିଲା କାହିଁକି ? କାହିଁକି ବା 'ସବୁଜ ଦଳ' ଗଢ଼ା ହୋଇଥିଲା ?

'ଦଶହରା' ଗ୍ରନ୍ଥ ମୁଁ ପ୍ରଫେସର କୁଞ୍ଜ ବିହାରୀ ତ୍ରିପାଠୀଙ୍କୁ ଆଣି ଉପହାର ଦେଇଥିଲି । ଡକ୍ଟର ତ୍ରିପାଠୀ ସେତେବେଳେ କଟକ ରେଭେନ୍ସା କଲେଜ ଓଡ଼ିଆ ଭାଷା-ସାହିତ୍ୟ ବିଭାଗର ପ୍ରଫେସର ଓ ମୁଖ୍ୟ ଅଧ୍ୟାପକ, ତତ୍ ସଂଗେ ସଂସ୍କୃତ ଭାଷା-ସାହିତ୍ୟର ବିଭାଗ ମୁଖ୍ୟ । ବିଭାଗ ଦୁଇଟି ଏକତ୍ର ମିଶି ରହିଥାଏ । ସେତେବେଳକୁ ସ୍ୱାଧୀନତା-ଲାଭର ବାର ତେର ବର୍ଷ ଅତିକ୍ରାନ୍ତ ହୋଇଥାଏ । ତଥାପି ଆମର ସରକାର ଓ ସଂସ୍କୃତି-ପ୍ରେମୀ ବୁଦ୍ଧିଜୀବୀଙ୍କ ବିଚାରରେ ବୋଧହୁଏ ଇଂରାଜୀ, ଅର୍ଥନୀତି, ଉଦ୍ଭିଦ ବିଜ୍ଞାନ ବା ରସାୟନ ବିଦ୍ୟା ଭଳି ଓଡ଼ିଆ ଓ ସଂସ୍କୃତ ଭାଷା-ସାହିତ୍ୟ ସମୃଦ୍ଧ ବା ବିକାଶପ୍ରାପ୍ତ ହୋଇ ନ ଥିଲା । ତେଣୁ ହୁଏତ ଆମର ଶିକ୍ଷାପତ୍ରରେ ଗୋଟିଏ ହାଣ୍ଡିରୁ ଦହି-ମାଛ ଭଳି ଓଡ଼ିଆ-ସଂସ୍କୃତକୁ ପରଷି ଦିଆଯାଉଥିଲା । ଯାହା ହେଉ, ପ୍ରଫେସର ତ୍ରିପାଠୀ 'ଦଶହରା' ଗ୍ରନ୍ଥ ଦେଖି ଖୁସି ହେଲେ ଏବଂ ଆମର ସଂଗଠିତ ଉଦ୍ୟମକୁ ବେଶ୍ ପସନ୍ଦ କଲେ । ଏହା ସଂଗେ ସଂଗେ ସେ ମତ ପ୍ରକାଶ କଲେ ଯେ – ରେଭେନ୍ସା କଲେଜର ଓଡ଼ିଆ-ସଂସ୍କୃତ ବିଭାଗର ଅଧ୍ୟାପକମାନଙ୍କ ପକ୍ଷରୁ ଅନୁରୂପ ଏକ ସାଧୁ ଉଦ୍ୟମ କରାଯାଇପାରେ । ଆନନ୍ଦର କଥା – ତାଙ୍କରି ସଂଚାଳନାରେ ପ୍ରାୟ ତିନି ବର୍ଷ ପରେ ଓଡ଼ିଆ-ସଂସ୍କୃତ ବିଭାଗର ଅଧ୍ୟାପକମାନଙ୍କ ଆଲୋଚନା-ପ୍ରବନ୍ଧର ଏକ ସଂକଳନ କରାଯାଇଥିଲା । 'ଓଡ଼ିଆ ସାହିତ୍ୟ ସମୀକ୍ଷଣ' ନାମରେ ସଂକଳନଟି ୧୯୬୩ ମସିହାରେ କଟକର 'ଆଲୋକ ସାହିତ୍ୟ ପ୍ରତିଷ୍ଠାନ' ପକ୍ଷରୁ ପ୍ରକାଶିତ ହୋଇଥିଲା ।

ଭଦ୍ରକ କଲେଜରେ ସେତେବେଳେ ଓଡ଼ିଆ ଭାଷା-ସାହିତ୍ୟ ବିଷୟରେ ଅନର୍ସ୍ ଶ୍ରେଣୀ ଫିଟାଇବା ପାଇଁ ମୋତେ ଏକପ୍ରକାର ନାକେଦମ୍ ହେବାକୁ ପଡ଼ିଥିଲା । ନବବଧୂର ନାକଫୁଲ ପରି ସେତେବେଳେ ସମଗ୍ର ଓଡ଼ିଶାରେ ଗୋଟିଏ ମାତ୍ର ବିଶ୍ୱବିଦ୍ୟାଳୟ – ଉତ୍କଳ ବିଶ୍ୱବିଦ୍ୟାଳୟ, ତହିଁରେ ପୁଣି ରେଭେନ୍ସା ଓ ଖ୍ରୀଷ୍ଟ କଲେଜ ଏହି ଦୁଇଟି ମାତ୍ର ଶିକ୍ଷାୟତନରେ ଓଡ଼ିଆ ଅନର୍ସ ଶ୍ରେଣୀ ଫିଟିଥିଲା । ସତୁରୀ ଦଶକ ବେଳକୁ ଭଦ୍ରକ କଲେଜ ରାଜ୍ୟର ଅନ୍ୟତମ ସମୃଦ୍ଧ ଓ ବୃହତ୍ତର ଶିକ୍ଷାନୁଷ୍ଠାନ ଭାବରେ ଖ୍ୟାତି ଲାଭ କରିଥିଲା । କେବଳ ଉତ୍ତର ଓଡ଼ିଶାରୁ ନୁହେଁ, ଦକ୍ଷିଣ ଓ ପଶ୍ଚିମ ଓଡ଼ିଶାରୁ ଛାତ୍ରଛାତ୍ରୀ ଏହାର ଖ୍ୟାତିରେ ଆକୃଷ୍ଟ ହୋଇ ଏଠାକୁ ଶିକ୍ଷା ଲାଭ ପାଇଁ ଆସୁଥିଲେ । ତେଣୁ କଲେଜରେ ଓଡ଼ିଆ ଅନର୍ସ ଶିକ୍ଷାର ବ୍ୟବସ୍ଥା କରିବା ପାଇଁ ମୁଁ ଅଧ୍ୟକ୍ଷ ଓ ଗଭର୍ଣ୍ଣିଂବଡ଼ିର ସେକ୍ରେଟାରୀ ନରବାବୁଙ୍କୁ ଅନୁରୋଧ କଲି । କଲେଜ କର୍ତ୍ତୃପକ୍ଷ ଏଫିଲିଏସେନ୍ ପାଇଁ ବିଶ୍ୱବିଦ୍ୟାଳୟକୁ ଆବେଦନ କଲେ । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଜଣାଇ ଦେଲେ ଯେ –

ଓଡ଼ିଆ ବିଭାଗରେ ଅନ୍ତତଃ ଆଠ ବର୍ଷର ଶିକ୍ଷାଦାନୀ ଅଭିଜ୍ଞତାସଂପନ୍ନ ଅଧାପକ ଥିଲେ, ଅନର୍ସ ଶ୍ରେଣୀ ଫିଟାଯାଇ ପାରିବ । ବସ୍ତୁତଃ ଓଡ଼ିଆ ଅନର୍ସ ଶ୍ରେଣୀ ଫିଟାଇବା ବିପକ୍ଷରେ ତାହା ଥିଲା ଏକ ଧୂଆଁବାଣ । ବିଶ୍ୱବିଦ୍ୟାଳୟର କେତେକ ବରିଷ୍ଠ ଅଧାପକଙ୍କୁ ପଚାରି ବୁଝିଲି – ସୁପ୍ରତିଷ୍ଠିତ ଡିଗ୍ରୀ କଲେଜ ମାନଙ୍କରେ ଅନର୍ସ ଶ୍ରେଣୀକୁ ଏଫିଲିଏସନ୍ ଦେବା ସଂପର୍କରେ ସେପରି କିଛି ବିଧାନ ବା ନିୟମ ନାହିଁ । ଆଠ ବର୍ଷର ଶିକ୍ଷାଦାନୀ ଅଭିଜ୍ଞତା ଖୋଜିବା ଏକ ପ୍ରଥା ମାତ୍ର, ଯାହାକୁ ଆନୁଷଙ୍ଗିକ, ଅନୁକୂଳ ପରିସ୍ଥିତି ଦେଖି ବଦଳାଇ ଦିଆଯାଇପାରେ । ଆଖି ଆଗରେ ଦେଖିଲି – ଭଦ୍ରକ କଲେଜର ଅର୍ଥନୀତି, ଇଂରାଜୀ ଆଦି ବିଭାଗରେ ଆଠବର୍ଷର ଅଭିଜ୍ଞତାସଂପନ୍ନ ଅଧାପକ ନ ଥାଇ ମଧ ଅନର୍ସ ଶ୍ରେଣୀ ଫିଟି ଯାଉଛି । ଓଡ଼ିଆ ବିଭାଗ ପ୍ରତି ତାହା ପ୍ରଯୋଜ୍ୟ ନ ହେବ କାହିଁକି ? ଏ ବିଷୟ ରେଭେନ୍ସା କଲେଜର ଓଡ଼ିଆ ବିଭାଗ ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀଙ୍କୁ ଜଣାଇଲି । କୁଞ୍ଜବାବୁ ବିଶ୍ୱବିଦ୍ୟାଳୟର ଏକାଡ଼େମିକ୍ କାଉନ୍‌ସିଲ୍ ଓ ସିନେଟ୍‌ର ସଦସ୍ୟ ଥିଲେ । କଥାଟା ବୁଝିବା ପାଇଁ ସେ ମୋତେ ଆଶ୍ୱାସନା ଦେଲେ । କିନ୍ତୁ ତହିଁରୁ କିଛି ଫଳ ମିଳିଲା ନାହିଁ । ସେଥିପାଇଁ କଲେଜରେ ଓଡ଼ିଆ ଅନର୍ସ ଶ୍ରେଣୀ ଫିଟାଇବାକୁ ବିଶ୍ୱବିଦ୍ୟାଳୟ *ନଂ. ଏ/ଏସ୍.ଡ଼ି./୩୩୨ ତା ୩.୪.୧୯୫୮* ପତ୍ରରେ ନୀତିଗତ ଏଫିଲିଏସନ୍ ଦେଇଥିଲେ ହେଁ ମୋର ଆଠବର୍ଷର ଶିକ୍ଷାଦାନୀ ଅଭିଜ୍ଞତା ହେବା ପର୍ଯ୍ୟନ୍ତ ଅର୍ଥାତ୍ ୧୯୬୪ ମସିହା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା ।

କିନ୍ତୁ ଯେଉଁ ୧୯୬୪-୬୫ ଶିକ୍ଷା ବର୍ଷରେ କଲେଜରେ ଓଡ଼ିଆ ଅନର୍ସ ଶ୍ରେଣୀ ଫିଟିବାର କଥା, ତାହାର ଅବ୍ୟବହିତ ପୂର୍ବରୁ ଏକ ବିଘ୍ନ ସୃଷ୍ଟି ହେଲା, ଯାହା ଫଳରେ ମୋର ଆଠବର୍ଷର ଅଭିଜ୍ଞତା ବିଚାର ଦୂରେ ଥାଉ, କଲେଜରେ ମୋର ସ୍ଥିତି ଏକ ପ୍ରକାର ବିପନ୍ନ ହୋଇ ପଡ଼ିଲା । କଲେଜ ସହ ସଂପୃକ୍ତ କେତେକ ଦୁଷ୍ଟବୁଦ୍ଧିସଂପନ୍ନ ବ୍ୟକ୍ତି ମୋର ଗୁପ୍ତ ଶତ୍ରୁ ଥିଲେ । ଈର୍ଷା-ପ୍ରଣୋଦିତ ହୋଇ ସେମାନେ ଏହି ବାଧାବିଘ୍ନ ସୃଷ୍ଟି କରିଥିବା ମୋର ଦୃଢ଼ ବିଶ୍ୱାସ । ତାହା ହେଉଛି – ମୋର ଲେଖା 'ବେଦୀ' ଗଳ୍ପକୁ ଘେନି ଗୋଳଯୋଗ ଓ ତମ୍ପି ତୋଫାନ, ଯାହା ଆମର ସଂସ୍କୃତି କ୍ଷେତ୍ରରେ ଏକ ଇତିହାସ ହୋଇ ରହିଛି । ସେ ଐତିହାସିକ ବିବରଣୀ ପରେ ପରେ ଉଲ୍ଲେଖ କରୁଛି । ୧୯୬୪ ଜୁଲାଇ ମାସ ବେଳକୁ ମୋର ସୌଭାଗ୍ୟବଶତଃ ବାଧାବିଘ୍ନ ଦୂର ହୋଇଗଲା ଏବଂ ସେହି ଶିକ୍ଷା ବର୍ଷରୁ ଭଦ୍ରକ କଲେଜରେ ଓଡ଼ିଆ ଅନର୍ସ ଶ୍ରେଣୀ ଫିଟିଗଲା ।

ବିଂଶ ଶତକର ସପ୍ତମ ଦଶକ – ବିଶେଷତଃ ୧୯୬୪ ମସିହା ମୋ ପକ୍ଷରେ ଚମକପ୍ରଦ ଘଟଣାବହୁଳ କାଳ । ଏହି ଦଶକରେ ମଣିଷର ଚନ୍ଦ୍ରାଭିଯାନ, ଚୀନ ଓ ପାକିସ୍ଥାନର ଭାରତ ଆକ୍ରମଣ, ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରଭୃତି

କ୍ରାନ୍ତିକାରୀ ଘଟଣାବଳୀ ସହିତ ତାଳ ଦେଇ ବୋଧହୁଏ ମୋର ଜୀବନ ଯାତ୍ରା ଚାଲିଥିଲା । ଚଉଷଠୀ ବର୍ଷାରମ୍ଭରେ କ୍ଷେତ୍ରବାସୀ, ନବ, ଶୈଳେନ୍ଦ୍ର, ପ୍ରମୁଖ ଭଦ୍ରକର ଯୁବ ସାହିତ୍ୟିକମାନେ ଏକ ସାହିତ୍ୟ ପ୍ରକାଶନ ସଂସ୍ଥା ସ୍ଥାପନ ଓ ଖଣ୍ଡିଏ ପତ୍ରିକା ପ୍ରକାଶ ବିଷୟରେ ମୋ ସହିତ ଆସି ପରାମର୍ଶ କଲେ । ସେମାନଙ୍କର ଉତ୍ସାହ-ଉଦ୍ଦୀପନା ଦେଖି ମୁଁ କଲିକତାର 'ଅଗ୍ରଣୀ' ଓ 'କବିତା' ତଥା କଟକର 'ଡଗର' ପତ୍ରିକା ପ୍ରକାଶନ-ସଂସ୍ଥାରୁ ଲାଭ କରିଥିବା ଅଭିଜ୍ଞତା ଭିତ୍ତିରେ ସେମାନଙ୍କୁ କିଛି ବାଟ ବତାଇ ଦେଲି । ଆରମ୍ଭ ହେଲା ଭଦ୍ରକର ଶତରୂପା ପ୍ରକାଶନୀ ଏବଂ ତାହାର ଦ୍ୱିମାସିକ ମୁଖପତ୍ର 'ଶତରୂପା' । ଏ ତିନିଜଣଙ୍କ ସହ ମିଶିଥିଲେ ଅଧ୍ୟାପକ ରାମଚନ୍ଦ୍ର ରାଉତ, ଶ୍ରୀ ଶଶାଙ୍କ ଶେଖର ମହାନ୍ତି, କବି ମୁକୁନ୍ଦ ପ୍ରସାଦ ମହାନ୍ତି, ଶ୍ରୀ ରଘୁନାଥ ସାମଲ ଓ ସାମ୍ବାଦିକ ବାବାଜୀଚରଣ ନାୟକ । ସହର ମଧ୍ୟ ସ୍ଥଳରେ ଥିବା ବାବାଜୀ ବାବୁଙ୍କର ଶ୍ରୀପ୍ରେସ୍‌ରେ 'ଶତରୂପା' ଛପା ହେବାର ବ୍ୟବସ୍ଥା କରାଗଲା । ସାମ୍ବାଦିକ ସୁବଳ ଜେନା ପ୍ରକାଶନୀର ପ୍ରସାର ଦାୟିତ୍ୱରେ ରହିଲେ, କଚେରୀ ବଜାରରେ ଥିବା ତାଙ୍କର 'ବିଦ୍ୟାମନ୍ଦିର' ପୁସ୍ତକ-ପତ୍ରିକା ଦୋକାନରେ 'ଶତରୂପା'ର ବିକ୍ରୀବଟା ଓ ଗ୍ରାହକମାନଙ୍କୁ ଯୋଗାଣର ବ୍ୟବସ୍ଥା ହେଲା । ପତ୍ରିକା ପ୍ରକାଶ ପାଇଁ ଅସଲ କଞ୍ଚାମାଲ୍ ଲେଖା ଯୋଗାଡ଼ କଲା ବେଳକୁ ଦେଖାଗଲା – ଗଳ୍ପର ଘୋର୍ ଅଭାବ । ସୁଲେଖକ ଶ୍ରୀ ମଙ୍ଗୁଳୁ ଚରଣ ବିଶ୍ୱାଳଙ୍କଠାରୁ ଗଳ୍ପଟିଏ ମିଳିଥାଏ । ଖ୍ୟାତନାମା ଅନୁବାଦକ ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି ଅନୂଦିତ ଗଳ୍ପଟିଏ ପ୍ରକାଶ ପାଇଁ ଦେବାକୁ କହିଥାଆନ୍ତି । 'ଶତରୂପା'ର ଗଳ୍ପ-ସଂପାଦନା ଦାୟିତ୍ୱରେ ଥିବା କ୍ଷେତ୍ରବାସୀ ଯାଇ ମୋ ପାଖରେ ପହଞ୍ଚିଲେ ଗଳ୍ପଟିଏ ପାଇଁ । ସେତେବେଳକୁ 'ସୃଷ୍ଟିର ସ୍ୱପ୍ନ' (୧୯୫୮) ଓ 'ଗୋପନ ପତ୍ର' (୧୯୬୨) ନାମକ ମୋର ଦୁଇଟି ଗଳ୍ପଗୁଚ୍ଛ ପ୍ରକାଶ ପାଇ ସାରିଥାଏ । ବିଭିନ୍ନ ପତ୍ରପତ୍ରିକାରେ ମଧ୍ୟ ମୌଳିକ ଗଳ୍ପମାନ ପ୍ରକାଶିତ ହେଉଥାଏ । ଗାଳ୍ପିକ ଭାବରେ ମୋର ଯତ୍ କିଞ୍ଚିତ୍ ଖ୍ୟାତି କ୍ଷେତ୍ରବାସୀଙ୍କୁ ମୋ ପ୍ରତି ଆକୃଷ୍ଟ କରାଇଥିଲା । ପାଖରେ ଥିଲା ମୋର 'ବେଦୀ' ଗଳ୍ପ । କ୍ଷେତ୍ରବାସୀଙ୍କୁ ତାହା ପଢ଼ି ଶୁଣାଇଲି । ସେ ସଂଗେ ସଂଗେ ଗଳ୍ପକୁ 'ଶତରୂପା' ପାଇଁ ଘେନି ଯିବାକୁ ବାହାରିଲେ । ମୁଁ କହିଲି – ଏ ଗଳ୍ପ ସଂପର୍କରେ କେହି କେହି ପ୍ରତିକ୍ରିୟା ପ୍ରକାଶ କରିପାରନ୍ତି ' ତମେ ଯଦି ସେ ପ୍ରତିକ୍ରିୟାର ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ, ନେଇ ଛାପି ଦେଇପାର । ଦିନେ ଶ୍ରୀ ମନୋଜ ଦାସ କଟକରୁ କଲିକତା ଯିବା ବାଟରେ ମୋ ପାଖରେ ଆସି ପହଞ୍ଚିଲେ । ସେତେବେଳେ ସେ କଟକରୁ 'ଦିଗନ୍ତ' ପତ୍ରିକା ପ୍ରକାଶ କରୁଥାଆନ୍ତି । ତହିଁରେ ପ୍ରକାଶ ପାଇଁ ମୋତେ ଗଳ୍ପ ଦେବାକୁ ଅନୁରୋଧ କଲେ । ଟିକିଏ ଭିନ୍ନ ଧରଣର ଗଳ୍ପ ମୁଁ ଲେଖିଛି, ତାହା ପ୍ରକାଶ କରି ପାରିବେ କି ବୋଲି ପଚାରିଲି । ସେ କହିଲେ – ଗଳ୍ପ ପଠାଇ ଦିଅନ୍ତୁ, ଦେଖିବି । କଲିକତାରୁ ବାହୁଡ଼ିଲା ପରେ ମୁଁ ଯେପରି ଆପଣଙ୍କ ଲେଖା

ପାଏଁ । ନିକଟସ୍ଥ ବକ୍ସବାଟିରେ ସେତେବେଳେ ଦିଗନ୍ତ ଅଫିସ୍ କାର୍ଯ୍ୟ କରୁଥାଏ । ମୁଁ ସେହି ଠିକଣାରେ 'ବେଦୀ' ଗଳ୍ପ ପଠାଇଦେଲି । କିନ୍ତୁ ଦୁଇ ତିନି ମାସ ଗଲାଣି, ତାହା 'ଦିଗନ୍ତ'ରେ ବାହାରିଲା ନାହିଁ । ମଝିରେ 'ଡଗର' ସଂପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଭଦ୍ରକ ଆସିଥିଲାବେଳେ ଗଳ୍ପଟି ତାଙ୍କୁ ପଢ଼ି ଶୁଣାଇଥିଲି । ତାହାର କିଛି ପରିବର୍ତ୍ତନ ଓ ପରିମାର୍ଜନ ପାଇଁ ସେ ପରାମର୍ଶ ଦେଇଥିଲେ ଏବଂ ପରିମାର୍ଜିତ ଗଳ୍ପ 'ଡଗର'କୁ ପ୍ରକାଶ ପାଇଁ ପଠାଇବାକୁ କହି ଯାଇଥିଲେ । କ୍ଷେତ୍ରବାସୀ ମୋ କଥା ଶୁଣିଲେ ନାହିଁ । 'ଡଗର' ପାଇଁ ଗଳ୍ପର ଅଭାବ ନାହିଁ ବୋଲି କହି 'ବେଦୀ' ଗଳ୍ପର ପାଣ୍ଡୁଲିପି ମୋଠାରୁ ଘେନିଗଲେ ।

'ଶତରୂପା'ର ପ୍ରଥମ ସଂଖ୍ୟା (ଫେବୃୟାରୀ-ମାର୍ଚ୍ଚ, ୧୯୬୪) ପ୍ରକାଶ ପାଇବା ପରେ ପରେ ମୁଁ ଯାହା ଆଶଙ୍କା କରୁଥିଲି, 'ବେଦୀ' ଗଳ୍ପ ସଂପର୍କରେ ତାହାହିଁ ଘଟିଲା । ପ୍ରଥମେ ଶ୍ରୀ ଗୋଦାବରୀଶ ମହାପାତ୍ରଙ୍କ ସଂପାଦିତ 'ନିଆଁଖୁଣ୍ଟା' ପତ୍ରିକାର ମାର୍ଚ୍ଚ-୧୯୬୪ ସଂଖ୍ୟାରେ 'ଲେଖା ଓ ଲେଖକ' ଶୀର୍ଷକରେ 'ବେଦୀ' ଗଳ୍ପର ଏକ ତୀବ୍ର ଆକ୍ଷେପମୂଳକ ଆଲୋଚନା ପ୍ରକାଶ ପାଇଲା । 'କଳିଙ୍ଗ' ଓ 'ମାତୃଭୂମି' ଆଦି ସମ୍ବାଦପତ୍ରମାନଙ୍କରେ ଏହା ସଂପର୍କରେ ବିଭିନ୍ନ ସମ୍ବାଦ ତଥା ଗଳ୍ପର ଶ୍ଳୀଳତା-ଅଶ୍ଳୀଳତା ଘେନି କିଛି ଅଭିମତ ପ୍ରକାଶିତ ହେଲା । ରାଜ୍ୟର ବିଭିନ୍ନ ଅଞ୍ଚଳରୁ ମୋର କେତେକ ପରିଚିତ ବନ୍ଧୁ ଓ ଅପରିଚିତ ପାଠକ-କେହି ଗଳ୍ପ ଉପରେ କଟୁ ସମାଲୋଚନା କରି, ବା କେହି ଅନୁକୂଳ ମନ୍ତବ୍ୟ ଦେଇ ମୋତେ ପତ୍ର ଲେଖିଲେ । ମୋଟାମୋଟି ଆମ ସାହିତ୍ୟ କ୍ଷେତ୍ରରେ 'ବେଦୀ' ଗଳ୍ପ ସେତେବେଳେ ବିବାଦ ଓ ବିତର୍କର କେନ୍ଦ୍ରବିନ୍ଦୁ ହୋଇ ଉଠିଲା । ଏ ଘଟଣା ଏକାବେଳେକେ ନୂଆ ନୁହେଁ । ରାଜ୍ୟର ସାଂସ୍କୃତିକ କ୍ଷେତ୍ରରେ ଗତ ଊନବିଂଶ ଶତାବ୍ଦୀ ଶେଷ ଭାଗରୁ ସାହିତ୍ୟରେ ଶ୍ଳୀଳତା-ଅଶ୍ଳୀଳତା ଘେନି ଏହିପରି ବିବାଦ ବିତର୍କ ଚାଲି ଆସିଛି । 'ଇନ୍ଦ୍ରଧନୁ' – 'ବିଜୁଳି' ପତ୍ରିକା ଦ୍ୱୟର 'ଅଜାଯୁଦ୍ଧ' ବିଷୟ କିଏ ନ ଜାଣେ ? ଭଞ୍ଜପ୍ରେମୀ ଓ ଭଞ୍ଜବିରୋଧୀଙ୍କର ସେହି ଉତ୍‌ଖାତ କେଳିରେ ମୁଖ୍ୟ ପ୍ରସଙ୍ଗ ଥିଲା ସାହିତ୍ୟର ଶ୍ଳୀଳତା-ଅଶ୍ଳୀଳତା । ସେତେବେଳେ ଏହି ବିତର୍କ ଓ ବାକ୍ ବିତଣ୍ଡା ଏପରି ଅଶୋଭନୀୟ ସ୍ତରରେ ପହଞ୍ଚିଗଲା ଯେ, କବି ମଧୁସୂଦନ ରାଓ 'ସାବାସ୍ ସାହିତ୍ୟ ଚର୍ଚ୍ଚା ସାବାସ୍ ସାବାସ୍' ଓ 'ଭଣ୍ଡରସାୟନ କାବ୍ୟ' ନାମକ ଯୋଡ଼ିଏ ବ୍ୟଙ୍ଗ କବିତା ତାହାରି ଉଦ୍ଦେଶ୍ୟରେ ଲେଖି ପକାଇଥିଲେ ।

ଶେଷୋକ୍ତ କବିତାରୁ କିୟଦଂଶ ଏଠାରେ ଉଦ୍ଧାର କରୁଛି –

ଉତ୍କଳ ସାହିତ୍ୟ କ୍ଷେତ୍ରେ ଲାଗିଛି ସମର
ଅବ୍ଦ ବ୍ୟାପୀ ଶବ୍ଦମୟ ମହା ଭୟଙ୍କର ।

କୁକ୍ଷଣେ ସୁରୁଚିଧ୍ୱଜୀ 'ଲାଲାଜୀ' ଭୀଷଣ
ମନ୍ତ୍ର ପରିତନ୍ତ୍ର-ରଣରଥୀ ବିଚକ୍ଷଣ ।
ଭଞ୍ଜକୀର୍ତ୍ତି-ବିଭଞ୍ଜନ ବ୍ୟାପାର ପ୍ରୟାସୀ
ସମର ପ୍ରାଙ୍ଗଣେ ରଙ୍ଗେ ଦେଖାଦେଲେ ଆସି ।
ବଜାଇଲେ ନୀତି ଭେରୀ ଗରଜି ଭୈରବେ
ଚକିତେ ଗୋଲୋକଧନ୍ଦା ଶୁଣିଲେ ସେ ରବେ ।
ବୃଷଭ ଗର୍ଜନ ଶୁଣି ବୃଷଭ ଯେସନ
ପୁଙ୍ଗବ 'ଗୋଲକଧନ୍ଦା' ଗରଜି ତେସନ
ମିଳିଲେ ନଛୋଡ଼ବନ୍ଦା ସମର ଚତ୍ୱରେ
ଏହି ରୂପେ ବାକ୍ୟ ଯୁଦ୍ଧ ଉପୁଜିଲା ଖରେ ।
ଗୋଲୋକ ଶିବିରେ ଲାଗିଥିଲା କୋଳାହଳ
କିନ୍ତୁ ଏ କି ସହସା ଯେ ହୋଇଲା ନିଶ୍ଚଳ ।
ସମ୍ମୁଖେ ହୋଇଲେ ଉଭା ଛଇଳାମଣିର
ଭ୍ରୂରୂ ସମ 'ଇନ୍ଦ୍ରଧନୁ' ହସ୍ତେ ଧରି ବୀର ।
ଆଦି ରସ-ରସାତଳ ଅତଳ ବିତଳ
ମନ୍ଥନ କୁଶଳ ଅଭିନବ ଆଖଣ୍ଡଳ ।
ପୀରତିଆ ନାମେ ଶୂର ଭଞ୍ଜ ଅନ୍ତେବାସୀ
ଉଲ୍ଲାସେ କହଇ-ଦେଖ ଯୋଦ୍ଧୃବୃନ୍ଦେ ଆସି ।
ମନ୍ତ୍ରପୂତ ଏହି ଧନୁ କଟାକ୍ଷ ସଂଗୀତ
ବ୍ୟାଖ୍ୟା ଶରେ ହେଲେ ଯୁକ୍ତ ଜିଣେ ତ୍ରିଜଗତ ।
x x x x x x x x x x x x
ତେଣେ ଉପୁଜିଲା ତ୍ରାସ ଲାଲା ଶିବିରରେ
ଧନୁ ଆସ୍ଫାଳନ ଦେଖି ବିପକ୍ଷ ଦଳରେ ।
x x x x x x x x x x x x
ଶରଣ ବତ୍ସଳ ଦେବ ସ୍ମରଣ ମାତ୍ରକେ
ଉପସ୍ଥିତ ହେଲେ ଆସି ଲାଲାଙ୍କ କଟକେ ।
ବୋଇଲେ – ଦେଖ ଏ ଅସ୍ତ୍ର 'ବିଜୁଳି' ସୁନ୍ଦର
ଅନୁଗତ ଯାର ନିତ୍ୟ ବଜ୍ର ଭୟଙ୍କର ।
ବିଜୁଳିର ଉପହାସ ସଂଗେ ବଜ୍ରନାଦୀ
ଗୋଟାକେତେ ଭାଷ୍ୟ ଘେନି ହୁଅ ହେ ବିବାଦୀ ।

ଆହ୍ଲାଦେ ଗରଜି ସର୍ବେ ରୁଚିଧ୍ୱଜୀ ବୀରେ
ହାସ୍ୟଭାଷ୍ୟରଙ୍ଗେ ତହୁଁ ମାତିଲେ ଅଧୀରେ ।

କେବଳ ଓଡ଼ିଆ ସାହିତ୍ୟରେ ନୁହେଁ, ବିଶ୍ୱର ଅନ୍ୟାନ୍ୟ ସାହିତ୍ୟ କ୍ଷେତ୍ରରେ ମଧ୍ୟ ମଝିରେ ମଝିରେ ଏହିପରି ଅଶ୍ଳୀଳତା-ଅଶାଳୀନତା ଘେନି ବିବାଦର ବିତର୍କ ଦେଖା ଦେଇଛି । ଇଂରାଜୀ ସାହିତ୍ୟର 'ଲେଡ଼ି ଚେଟାର୍ଲିସ୍ ଲଭର୍' (୧୯୨୮), 'ଲୋଲିତା' (୧୯୫୫) – ଫରାସୀ ସାହିତ୍ୟର 'ମ୍ୟାଡ଼ାମ୍ ବୋଭାରି' (୧୮୫୭), 'ନାନା' (୧୮୮୦) – ରୁଷୀୟ ସାହିତ୍ୟର 'ଆନ୍ନା କାରେନିନା' (୧୮୭୭) ପ୍ରଭୃତି ବହୁ ସାହିତ୍ୟକୃତି ଅଶ୍ଳୀଳତା ଅଭିଯୋଗରେ ଅଭିଯୁକ୍ତ ହୋଇଛି । କବି ରବୀନ୍ଦ୍ରନାଥଙ୍କର 'ସ୍ତନ', 'ଚୁମ୍ବନ', 'ବିବସନା' ('କଡ଼ି ଓ କୋମଲ୍' କାବ୍ୟ ସଞ୍ଚୟନରେ ଅନ୍ତର୍ଭୁକ୍ତ) ପ୍ରଭୃତି କବିତାଗୁଡ଼ିକ ବିରୋଧରେ ଅଶ୍ଳୀଳତାର ଅଭିଯୋଗ ଆସିଛି । ଅଧିକାଂଶ କ୍ଷେତ୍ରରେ ଏପରି ଅଭିଯୋଗମାନ ଆଇନ୍ ଅଦାଲତର ପରିସର ପର୍ଯ୍ୟନ୍ତ ଲମ୍ୱିଯାଇଛି । କିନ୍ତୁ ମୋର 'ବେଦୀ' ଗଳ୍ପ ବିରୋଧରେ କେହି ଅଦାଲତରେ ଅଭିଯୋଗ କରି ନାହାନ୍ତି – ଏପରିକି ଭଦ୍ରକ କଲେଜ ଗଭର୍ଣ୍ଣିଂ ବଡ଼ି ପାଖରେ ଲିଖିତାକାରରେ କେହି ଅଭିଯୋଗ ପେଶ୍ କରି ନ ଥିବାର ମୁଁ ଜାଣେ । ତଥାପି ଗଭର୍ଣ୍ଣିଂ ବଡ଼ି ପକ୍ଷରୁ କଲେଜ୍ ଅଧ୍ୟକ୍ଷ No. 553/ 24.4.1964 ଗୋପନ-ଛାପିତ ପତ୍ରରେ ମୋତେ ଲେଖିଥିଲେ –

I have been directed to say that on account of your obscene publication appearing in **Satarupa,** a Local Journal, under the caption 'Vedi', public resentment and criticism is afloat. The Governing Body feels that such a publication casts reflection on the moral tone and reputation of the institution of which you are a member.

You are therefore, called upon to explain why disciplinary actions will not be taken against you for the above publication. If your explanation does not reach the undersigned by the 30th instant, it will be presumed that you have no explanation to offer in defence and necessary action will be taken against you.

Sd./B. Sahoo
24.4.64
Actg. Principal,.
Bhadrak College.

ଏହି କୈଫିୟତ୍ ତଲବରେ ମୁଁ ବିଚଳିତ ହୋଇ ପଡ଼ିଲି । ଗୋଟିଏ ଗଳ୍ପ ଲେଖି କି ଦୋଷ ବା ଗର୍ହିତ କାର୍ଯ୍ୟ କରିଛି, ଭାବି ଭାବି କିଛି ଠିକ୍ କରି ପାରିଲି ନାହିଁ । ମୋତେ ଗୋଟିକ ପରେ ଗୋଟିଏ ଫାନ୍ଦରେ ପକାଇ ନିନ୍ଦିତ ଓ କର୍ମଚ୍ୟୁତ କରିବାର ଚକ୍ରାନ୍ତ କେତେକ କ୍ଷମତାସୀନ ପ୍ରଭାବଶାଳୀ ବ୍ୟକ୍ତି କଲେଜ କର୍ତ୍ତୃପକ୍ଷଙ୍କ ଜରିଆରେ କରି ଚାଲିଛନ୍ତି ବୋଲି ପୂର୍ବରୁ ସୂଚନା ପାଇଥିଲି । ଭଦ୍ରକ ସହରରେ ମୋର କେତେକ ଶୁଭେଚ୍ଛୁ ବନ୍ଧୁ ଏ ବ୍ୟାପାରର ସେହି ସମ୍ଭାବ୍ୟ ପରିଣତି ବିଷୟରେ ମତ ଦେଲେ ଏବଂ ସତର୍କତାର ସହିତ କୈଫିୟତ୍ ଫର୍ଦ୍ଦ ପ୍ରସ୍ତୁତ କରିବା ପାଇଁ ପରାମର୍ଶ ଦେଲେ । ମୋତେ କୈଫିୟତ୍ ତଲବ୍ ବିଷୟ ଗୋପନଜ୍ଞାପିତ ବା କନ୍‌ଫିଡ଼େନ୍‌ସିଆଲ୍ ଥିଲେ ହେଁ, ସଂଗେ ସଂଗେ କେତେକ ସମ୍ବାଦପତ୍ରରେ ତାହା ପ୍ରକାଶ ପାଇଗଲା । ବଡ଼ ବ୍ୟସ୍ତ ଓ ବିବ୍ରତ ହୋଇ ମୁଁ ଦୁଶ୍ଚିନ୍ତାରେ ମାସ ମାସ କାଳ କଟାଇବାରେ ଲାଗିଲି । ଭଲ ଭାବରେ ଖିଆପିଆ କରିପାରିଲି ନାହିଁ । ରାତିରେ ନିଦ ହେଲା ନାହିଁ । ଦିନେ ସକାଳୁ ଉଠିଛି, ମୋର ସ୍ତ୍ରୀ ମୋତେ ଦେଖି ବିସ୍ମିତ ହୋଇ କହିଲେ – ହଠାତ୍ ତମ ମଥାରେ ଏତେ ଚୁଳ ପାଚିଗଲା କିମିତି ? କାହିଁକି ଏତେ ଚିନ୍ତା କରୁଛ ! ଏଣିକି ସେ ଗପ-ଫପ ଲେଖା ବନ୍ଦ କର ! ଟିକିଏ ଶାନ୍ତିରେ ରୁହ । ସ୍ତ୍ରୀଙ୍କର କଥାରେ ମୁଁ ନା, ହସି ପାରିଲି ନା, କାନ୍ଦି ପାରିଲି !

ଏ ଘଟଣା ଆଉ କେବଳ ଭଦ୍ରକ କଲେଜର ବ୍ୟାପାର ହୋଇ ରହିଲା ନାହିଁ, କ୍ରମେ ସମଗ୍ର ରାଜ୍ୟର ସମସ୍ୟା ହୋଇ ଠିଆ ହେଲା । ସମସ୍ୟା ଥିଲା ଦୁଇ ପ୍ରକାର – ସାହିତ୍ୟରେ ଅଶ୍ଳୀଳତାର ନିରୂପଣ ଏବଂ କୌଣସି ସାହିତ୍ୟ ସୃଷ୍ଟିକୁ ଘେନି ତାହାର ସ୍ରଷ୍ଟାକୁ ଅଭିଯୁକ୍ତ ବା ଦଣ୍ଡିତ କରିବାର ସମସ୍ୟା । ପ୍ରଥମ ପ୍ରକାର ସମସ୍ୟା ନୂତନ ନ ଥିଲା । ଓଡ଼ିଆ ସାହିତ୍ୟରେ ତଥା ଅନ୍ୟାନ୍ୟ ସାହିତ୍ୟରେ ବାରମ୍ବାର ବିଭିନ୍ନ ରଚନାରେ ଅଶ୍ଳୀଳତାର ଅଭିଯୋଗ ହୋଇଛି, କିନ୍ତୁ ଯଥାଯଥ ଭାବରେ ତହିଁର ଅଶ୍ଳୀଳତା ନିରୂପିତ ହୋଇପାରି ନାହିଁ । ଅନୁରୂପ ଭାବରେ ଅଭିଯୁକ୍ତ ଅଧିକାଂଶ ରଚନା କାଳକ୍ରମେ କେବଳ ଅଭିଯୋଗମୁକ୍ତ ହୋଇ ନାହିଁ, ଉତ୍କୃଷ୍ଟ ସାହିତ୍ୟ-ସୃଷ୍ଟି ଭାବରେ ପରିଗଣିତ ହୋଇଛି । ଉକ୍ତ .'ବେଦୀ' ଗଳ୍ପ କ୍ଷେତ୍ରରେ ମଧ ତାହାହିଁ ଘଟିଲା । ମାତ୍ର ଦ୍ୱିତୀୟ ପ୍ରକାର ସମସ୍ୟା ଓଡ଼ିଶାରେ ବୋଧହୁଏ ନୂଆ । କବି ରାଧାନାଥ ରାୟଙ୍କ କେତେକ କାବ୍ୟ ବିରୋଧରେ ଅଶ୍ଳୀଳତା ଓ ଅନୈତିକତାର ଅଭିଯୋଗ ଆସିଥିଲା । ରାଧାନାଥ ଥିଲେ ପଦସ୍ଥ ସରକାରୀ କର୍ମଚାରୀ, କିନ୍ତୁ ଏହି ଅଭିଯୋଗର ତାଙ୍କ ଚାକିରିରେ ଆଞ୍ଚ ଆସିଥିବାର କିମ୍ବା ତାଙ୍କୁ ଦଣ୍ଡିତ କରାଯାଇଥିବାର ଜଣା ନାହିଁ । ଚାକିରିର କାର୍ଯ୍ୟଧାରା ସହିତ ଯଦି ସାହିତ୍ୟ ସୃଷ୍ଟିର ସଂପର୍କ ନାହିଁ, ତାହା ହେଲେ କୌଣସି ସାହିତ୍ୟ-ସୃଷ୍ଟିକୁ ଘେନି ତାହାର ସ୍ରଷ୍ଟାକୁ ଅଭିଯୁକ୍ତ ବା ଦଣ୍ଡିତ କରାଯିବ କାହିଁକି ?

ଉକ୍ତ ସମସ୍ୟା ଯୋଡ଼ିକ ସଂପର୍କରେ ସେତେବେଳେ କେହି କେହି ପତ୍ର ପତ୍ରିକାରେ ଆଲୋଚନା କରିଥିଲେ । ବ୍ରହ୍ମପୁର, ସମ୍ବଲପୁର, ବାଲେଶ୍ୱର ପ୍ରଭୃତି ସ୍ଥାନର କେତେକ ଅଧ୍ୟାପକ ଓ ସଂସ୍କୃତିପ୍ରେମୀ ବ୍ୟକ୍ତି ମୋତେ ଚିଠିପତ୍ର ଲେଖିଥିଲେ । କେନ୍ଦ୍ରାପଡ଼ା ଓ ଅନୁଗୁଳ କଲେଜର ଅଧ୍ୟାପକମାନେ ଆଉ ଗୋଟିଏ ପାଦ ଆଗେଇ ଯାଇ ନିଜ ନିଜର ଷ୍ଟାଫ୍ କ୍ଲବ୍ ଜରିଆରେ ଏ ସମସ୍ୟାର ଆଲୋଚନା କରି ଲେଖକର ସ୍ୱାଧୀନତା ପକ୍ଷରେ ତଥା ଭଦ୍ରକ କଲେଜ ଗଭର୍ଣ୍ଣିଂ ବଡ଼ିର କାର୍ଯ୍ୟାନୁଷ୍ଠାନ ବିପକ୍ଷରେ ମତ ପ୍ରକାଶ କରିଥିଲେ । ଗଭର୍ଣ୍ଣିଂ ବଡ଼ିର ସେକ୍ରେଟାରୀ ଏଡ଼୍‌ଭୋକେଟ୍ ନରବାବୁ ଦିନେ ମୋତେ କହିଲେ – ଗଭର୍ଣ୍ଣିଂ ବଡ଼ିର ଅଳ୍ପ କେତେ ଜଣ ସଦସ୍ୟ ବିଶେଷତଃ ସରକାରୀ ସଦସ୍ୟ ଜଣକ ତମ ଲେଖାର ଅଶ୍ଳୀଳତା ଉପରେ ଗୁରୁତ୍ୱ ଦେଉଛନ୍ତି । ତେଣୁ କୈଫିୟତ୍ ପତ୍ରରେ ତମେ ନାମଜ୍ୟାଦା ସାହିତ୍ୟିକମାନଙ୍କର ଲେଖାଟି ସଂପର୍କରେ ଅନୁକୂଳ ମତ ସଂଲଗ୍ନ କରି ତାହା ଅଶ୍ଳୀଳ ନୁହେଁ ବୋଲି ଦର୍ଶାଅ । ମୁଁ ତାହାହିଁ କଲି । କଲେଜ ଅଧ୍ୟକ୍ଷଙ୍କଠାରେ ଗଭର୍ଣ୍ଣିଂ ବଡ଼ି ଉଦ୍ଦେଶ୍ୟରେ ଦାଖଲ କରିଥିବା ମୋର କୈଫିୟତ୍ ପତ୍ର ଏଠାରେ ଅବିକଳ ଉଦ୍ଧାର କରୁଛି –

**To**

**The Principal,**
**Bhadrak College, Bhadrak**

**Sir,**

With reference to your Confidential letter No. 553 dated 24.4.64, I beg to state that my short story "Vedi" published in the **Satarupa** is a piece of literary art and is not obscene either in content or in form. The purpose of the short story is given below in Oriya Language.

ଯେଉଁ ଦେହ ବା ଜନନେନ୍ଦ୍ରିୟକୁ ଆମେ କଲ୍ୟାଣକର ସୃଷ୍ଟି କାର୍ଯ୍ୟ ପାଇଁ ବ୍ୟବହାର କରୁଁ, ତାହା ନଗ୍ନ ବା ଅଶ୍ଳୀଳ ବୋଲି ବିବେଚିତ ହେବ କାହିଁକି ? ଆମର ସାଂସ୍କୃତିକ ପରଂପରାରେ କେବେ ଏହା ଅଶ୍ଳୀଳ ବୋଲି ବିବେଚିତ ହୋଇ ନାହିଁ । ଋକ୍ ବେଦର ଶିଶ୍ନଦେବ କଥାରୁ ଆରମ୍ଭ କରି ଆମର ଶକ୍ତିପୂଜା, ଲିଙ୍ଗୋପାସନା, ତନ୍ତ୍ରମତ, ସହଜିଆ ବୈଷ୍ଣବ ଧର୍ମ ଓ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ପର୍ଯ୍ୟନ୍ତ ସର୍ବତ୍ର ଏହାର ପ୍ରମାଣ ମିଳେ । ପୁଣି ଆମ ଚତୁର୍ବର୍ଗ ପୁରୁଷାର୍ଥ ସାଧନା ମଧ୍ୟରେ କାମବର୍ଗର ସ୍ଥାନ ନିରୂପିତ ହୋଇଥିବାର ଦେଖାଯାଏ । ସେହି ପରଂପରା ଅନୁସରଣରେ 'ବେଦୀ' କ୍ଷୁଦ୍ରଗଳ୍ପ ମଧ୍ୟରେ କୁହାଯାଇଛି

ଯେ – ମଣିଷର ଏହି ମୁକ୍ତ ଅନାବୃତ୍ତ ଦେହ ହେଉଛି 'ପ୍ରେମର ପୂଜାବେଦୀ' । ଠାକୁରଙ୍କ ଚରଣ ତଳେ ପୂଜା-ବେଦୀ ଉପରେ ଆମେ ଯେପରି ଭକ୍ତି ଅର୍ଘ୍ୟ ନିବେଦନ କରୁଁ, ଦେହର ବେଦୀ ଉପରେ ସେହିପରି ପ୍ରେମ ଅର୍ଘ୍ୟ ନିବେଦନ କରିବା । ଉଦ୍ଦେଶ୍ୟ ଅନ୍ୟ କିଛି ନୁହେଁ, କେବଳ ନବଜାତକ ପାଇଁ – ନୂତନ ସୃଷ୍ଟି ପାଇଁ ଦେହବେଦୀ ଉପରେ ଏ ପ୍ରେମ-ନିବେଦନ । କ୍ଷୁଦ୍ର ଗଳ୍ପରେ ମୂଳରୁ ଚୂଳଯାଏଁ ବାରମ୍ବାର ଏହି ସୃଷ୍ଟି ତତ୍ତ୍ୱର କଥା କୁହାଯାଇଛି :-

*"ସୂର୍ଯ୍ୟ ଚନ୍ଦ୍ର ମରୁତ୍ ବ୍ୟୋମ, କୋଟି କୋଟି ଜୀବଜନ୍ତୁ ତହିଁରେ ଆତଯାତ ହେଉଛନ୍ତି । ଏ ବିଶ୍ୱ ସୃଷ୍ଟିର ହୃତ୍‌ପିଣ୍ଡ ରୂପେ ତାହା ସତତ ଅସ୍ଥିର, କଂପମାନ ।"*

*ପୁଣି – "କି ମନ୍ତ୍ର ଏ ? – ତାହାର ପିତୃତ୍ୱକୁ ଆହ୍ୱାନ ଜଣାଉଛି !"*

*ଆଉ ଏକ ସ୍ଥାନରେ – "ସୃଷ୍ଟିର ପବିତ୍ର ପ୍ରେରଣାରେ ତହିଁରେ ଅସମ୍ଭବ ଚାଞ୍ଚଲ୍ୟ ଓ ବେପଥୁ ।"*

*ଏବଂ ଶେଷରେ – "କୈଳାସର ଶିବଲିଙ୍ଗ ଏ, ମଙ୍ଗଳମୟ ଜନନେନ୍ଦ୍ରିୟ-ଦୀର୍ଘ, ବିପୁଳ ଓ ବିସ୍ତୀର୍ଣ୍ଣ ।*

ଏଥିରେ ଗଙ୍ଗାର ପବିତ୍ରତା ଅଛି – ଅଛି ସର୍ପର ଉଗ୍ରତା । ଏହା ତ୍ରିଶୂଳର ଶୌର୍ଯ୍ୟ ଓ ଡମ୍ବରୁର ଉଦ୍‌ବୋଧନ ଧାରଣ କରେ । ଶକ୍ତି ସହିତ ମିଳିତ ହୋଇ ବିଶ୍ୱ ପ୍ରଜନନ ପାଇଁ ଏହା ଯେପରି ବ୍ୟସ୍ତ ଓ ବ୍ୟାକୁଳ !"

କ୍ଷୁଦ୍ରଗଳ୍ପ ମଧ୍ୟରେ ତପୁ ଓ ଲିଲି ଏହି ପବିତ୍ର ସୃଷ୍ଟି କାର୍ଯ୍ୟ ନିମିତ୍ତ ମିଳିତ ହୋଇଛନ୍ତି । ପୁଣି ଆରମ୍ଭରେ କୁହାଯାଇଛି – ଲିଲି ହେଉଛି 'ରୂପ ରସ ଗନ୍ଧର ଗାୟତ୍ରୀ' ଏବଂ ତପୁ ହେଉଛି 'ଶୌର୍ଯ୍ୟ ବୀର୍ଯ୍ୟର ସବିତା' । ଏ କଥାର ତାତ୍ପର୍ଯ୍ୟ କଣ ? ଋକ୍‌ବେଦର ତୃତୀୟ ମଣ୍ଡଳରେ ସ୍ପଷ୍ଟ ଉଲ୍ଲେଖ ଅଛି – ପ୍ରତ୍ୟହ ତ୍ରିସନ୍ଧ୍ୟାକାଳରେ ସବିତାଙ୍କ ଉଦ୍ଦେଶ୍ୟରେ ଗାୟତ୍ରୀ-ମନ୍ତ୍ର ନିବେଦନ କରିବାକୁ ହୁଏ । ଏଠାରେ ଗାୟତ୍ରୀ-ରୂପିଣୀ ଲିଲି, ସବିତା-ରୂପୀ ତପୁ ନିକଟରେ ନିବେଦିତା । ତେଣୁ ସେମାନେ ଦୁହେଁ ଉଚ୍ଛୃଙ୍ଖଳ, ବ୍ୟଭିଚାରଗ୍ରସ୍ତ ନୁହନ୍ତି – କିମ୍ବା କୌଣସି ଅସତ୍ ଅଭିପ୍ରାୟ ଘେନି ମିଳିତ ହୋଇ ନାହାନ୍ତି । ଆମର ପବିତ୍ର ସାମାଜିକ ବିବାହ ଅନୁଷ୍ଠାନରେ ବର-କନ୍ୟାଙ୍କ ମଧ୍ୟରେ ଯେପରି 'ଶୁଭ ଦୃଷ୍ଟି' ବିନିମୟ ହୋଇଥାଏ, ସେମାନଙ୍କ ମଧ୍ୟରେ ପ୍ରଥମେ ସେହିପରି 'ଦୁର୍ଲ୍ଲଭ ଶୁଭ ଦୃଷ୍ଟି' ବିନିମୟ ହୋଇଥିବାର ବର୍ଣ୍ଣନା କ୍ଷୁଦ୍ରଗଳ୍ପ ମଧ୍ୟରେ ପ୍ରଦତ୍ତ ହୋଇଛି । ମୋଟ କଥା-ପବିତ୍ର, କଲ୍ୟାଣକର ସୃଷ୍ଟି କ୍ରିୟା ଲାଗି ସଂଯମ ଓ ସାମାଜିକ ଶୃଙ୍ଖଳା ମଧ୍ୟରେ ଦେହ-ବେଦୀ ଉପରେ ପ୍ରେମ-ଅର୍ଘ୍ୟ ନିବେଦନ କରିବା ହେଉଛି କ୍ଷୁଦ୍ରଗଳ୍ପର ମର୍ମବାଣୀ ।

In the short story this theme or purpose has been presented through a high-toned language and dignified style. On the whole the short story is a piece of literature and as such it has nothing to do with the moral tone and reputation of the institution. I am sorry and helpless, if there is any public resentment and criticism. The moral tone and reputation of an educational institution are kept high by its member's good qualities like dutifulness, sincerity, faithfulness, character and integrity. To the best of my knowledge and belief I do not lack in these qualities. If my writing is bad, I may be a bad writer. But that does not mean I am a bad lecturer. As a lecturer I have rather been trying my best to bring good name and reputation for the institution, which I am serving for last 8 years. As a lecturer of this institution I had been sent by the Utkal University as delegate to the All India Writers Conference held in Madras in 1959. I have also been a delegate to the All India Oriental Conference twice in 1959 and 1961.

I may kindly be permitted to state here further that leaving aside my two poetry books, and a collection of one-act plays, I have so far published two books on literary criticism namely ପ୍ରଗତି ସାହିତ୍ୟ and କଥା ସାହିତ୍ୟ which have been highly praised in literary circles of Orissa. I have also written ବାଣିଜ୍ୟିକ ପତ୍ରାଳାପ, a book on commercial correspondence, the only book of its kind in Oriya language, for B.Com. Student of the Utkal University. Moreover, I have published many research articles in the Agra University Journal and other periodicals of the state.

Many established writers and literary critics of Orissa have appreciated the short story 'Vedi' from different points of view and have opined that it is not obscene. Some of them are quoted below.

Dr. K.B. Dash, M.A., Ph.D., Reader, Oriya Department, Ravenshaw College, Cuttack :– 'ବେଦୀ'ର ଲେଖକ ଅଶ୍ଳୀଳ ଲେଖିବା ଉଦ୍ଦେଶ୍ୟରେ ଲେଖିଛନ୍ତି – ମନେ ହେଉ ନାହିଁ । ସମସ୍ତ ବର୍ଣ୍ଣନାରେ ସେ ଯେପରି ନିସ୍ପୃହ, ଉଦାସୀନ ରହିଛନ୍ତି । ତାଙ୍କ କଳନାରେ-ଶରୀର ସଂଗେ ଶରୀରର ମିଳନ, ପରମ ଓ ଚରମ ସତ୍ୟ, ଏହା ଅଶ୍ଳୀଳ ନୁହେଁ । ଦେହ-ବେଦୀ ଉପରେ ମିଳନର ହୋମ ଶିଖା । 'ଯଜ୍ଞାତ୍ ଭବତି ପର୍ଜନ୍ୟଂ' । ସେହିପରି ଏହି ମିଳନ-ଯଜ୍ଞରୁ ହିଁ ପବିତ୍ର ସୃଷ୍ଟି ସମ୍ଭବ । ସୃଷ୍ଟି ତଳେ ଅଶ୍ଳୀଳତା ଅଛି ବୋଲି ଯେଉଁ ଗତାନୁଗତିକ ଧାରଣା ଅଛି, ଲେଖକ ତାହା ଦୂର କରିବାକୁ ଚାହାନ୍ତି ।

Sri Surendra Mahanty, Editor, the Kalinga and one of the reputed Story-writers of Orissa :- ଅଶ୍ଳୀଳତାର ଦ୍ୟୋତନା ପାଇଁ ତାହା ଉଦ୍ଦିଷ୍ଟ ନୁହେଁ । କୋଣାର୍କରେ ଉତ୍କୀର୍ଣ୍ଣ ଯୁଗନଦ୍ଧ ନରନାରୀମାନଙ୍କର ତାହା ଏକ ଭାବମୟ ବାଣୀ ଚିତ୍ର । ଭିକ୍ଟୋରିଆନ୍ ଯୁଗର ଧପ୍ପାବାଜୀ ମୋରାଲିଟିର ପ୍ରଭାବରେ ଆମର ରୁଚି-ସାରା ଭାରତୀୟ ସାହିତ୍ୟରେ-ଅଗ୍ନିମାନ୍ଦ୍ୟଗ୍ରସ୍ତ ହୋଇ ପଡ଼ିଅଛି । ତା' ନ ହେଲେ, ଭାରତୀୟ ସାହିତ୍ୟରେ ଯୌନ ଆବେଗ ଓ ସଂପର୍କ Pornography ବା ଅଶ୍ଳୀଳତା ରୂପେ ଆଦୌ ବିବେଚିତ ହେଉ ନ ଥିଲା ।

Comments of the Matrubhumi on the Satarupa in general and on my story in particular in its issue of the 2nd March, 1964 : ଅଧାପକ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ)ଙ୍କର 'ଓଡ଼ିଆ ଯୁଦ୍ଧ ସାହିତ୍ୟ' ଓ ଅଧାପକ ଗଂଗାଧର ବଳଙ୍କର 'ବିଦଗ୍ଧ ଚିନ୍ତାମଣି – କାବ୍ୟ ନା ଧର୍ମଗ୍ରନ୍ଥ' ଆଲୋଚନା, ଅଧାପକ କୃଷ୍ଣ ଚରଣ ବେହେରାଙ୍କ 'ବେଦୀ' ଗଳ୍ପ, ଡକ୍ଟର କୁଞ୍ଜ ବିହାରୀ ଦାଶଙ୍କର 'ଇଚ୍ଛାବତୀ' କବିତା ଭଳି କେତୋଟି ଉପାଦେୟ ଲେଖାରେ ଏ ସଂଖ୍ୟା ସମୃଦ୍ଧ ।

Sri B.N. Kar, Secretary, Utkal Sahitya Samaj, Cuttack and joint editor, The Matrubhumi :– ମୁଁ ବୁଝୁଛି ଯେ – ଯାହା ସତ୍ୟ, ଯାହା ସୁନ୍ଦର, ତାହା ହିଁ ଆପଣ ପ୍ରକାଶ କରିଛନ୍ତି ।

Sri Upendra Pr. Mohanty, Headmater, Bhadrak High School, Fellow, Utkal University and one of the reputed writers of Orissa :– 'ଶତରୂପା' ତ ଆପଣଙ୍କ କଲେଜର ମୁଖପତ୍ର ବା ସାହିତ୍ୟ ପତ୍ରିକା ନୁହେଁ । ଆପଣଙ୍କ କଲେଜ ତରଫରୁ ପ୍ରକାଶିତ କୌଣସି ପତ୍ରପତ୍ରିକାରେ ଆପଣଙ୍କ କଲେଜର କୌଣସି ଅଧାପକ ବା ଅଧାୟୀ ଯଦି କିଛି 'ଅଶ୍ଳୀଳ' ବା ଆପତ୍ତିଜନକ

ଲେଖା ଲେଖି ପ୍ରକାଶ କରିଥାନ୍ତେ, ତେବେ ଆପଣଙ୍କ Governing Body ର ଗଭର୍ଣ୍ଣିଂ କରିବାକୁ ବାହାରିବାଟା ସମୀଚୀନ ହୋଇଥାନ୍ତା । ମାତ୍ର ଏ ତ ସେପରି ଘଟଣା ନୁହେଁ ! ତା'ଛଡ଼ା ଆପଣ ଅଧ୍ୟାପନା କ୍ଷେତ୍ରରେ କିମ୍ବା ବ୍ୟକ୍ତିଗତ ଜୀବନରେ କେବେ କାହା ପ୍ରତି ଯେ ଅଶ୍ଳୀଳ ବ୍ୟବହାର ଦେଖାଇଛନ୍ତି, ତା' ତ ମୁଁ ଜାଣେ ନାହିଁ ! ମୁଁ ଏକା କାହିଁକି, ଭଦ୍ରକର ପ୍ରାୟ ସମସ୍ତ ଜାଣିବା-ଶୁଣିବା ଲୋକ ଆପଣଙ୍କୁ ଜଣେ ସଚ୍ଚରିତ୍ର ଅଧ୍ୟାପକ ବୋଲି ଜାଣନ୍ତି । ତେବେ ଏଇ ସାମାନ୍ୟ 'ବେଦୀ' ଲେଖା ପାଇଁ କଣ ଆପଣଙ୍କର ସମସ୍ତ ପୁଣ୍ୟ ପଚିଗଲା ? ଆପଣ କୈଫିୟତ୍ ତଲବର ଯୋଗ୍ୟ ହେଲେ ?

ମୁଁ ଯେତେ ଭାବରେ ବୁଝିଛି, ଆପଣଙ୍କ 'ବେଦୀ' ଗଳ୍ପଟିର (ଗଳ୍ପ ତ ?) ନୈତିକ ଭିତ୍ତି ଆଦୌ ଦୁର୍ବଳ ନୁହେଁ । ବରଂ ତା' ମୂଳରେ ଗୋଟିଏ ଅତି ଶୁଦ୍ଧ, ପୂତ, ନିର୍ମଳ ଭାବ ରହିଛି । ତାହା ହିଁ ଲେଖାଟିର ପ୍ରାଣ ଏବଂ ମୋର ମନେ ହୁଏ – ତାହାହିଁ ବୟାନ କରିବା ଆପଣଙ୍କ ଉଦ୍ଦେଶ୍ୟ । ତାହା ହେଉଛି – ସୃଷ୍ଟିର ପୁଷ୍ଟି ବିଧାନ ଓ ସୃଷ୍ଟି ରକ୍ଷା ଉଦ୍ଦେଶ୍ୟରେ ବିଶୁଦ୍ଧ ମନୋଭାବ ନେଇ ତରୁଣ ତରୁଣୀର ଦୈହିକ ମିଳନ ଏକ ପବିତ୍ର କାର୍ଯ୍ୟ । ଭଗବତ୍ ସୃଷ୍ଟ ଜନନେନ୍ଦ୍ରିୟ ସେହି ପବିତ୍ର କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ । ତାହା ଏକ ସୁପବିତ୍ର, ସୁପରିକଳ୍ପିତ ବସ୍ତୁ । ତାକୁ ହୀନ କାମୁକତାର ଅସ୍ତ୍ର ବୋଲି ମନେ କରିବା ଭୁଲ୍ । ମୋର ମନେ ହୁଏ, ଆପଣଙ୍କ କ୍ଷୁଦ୍ର ଲେଖାଟିରେ ଆପଣ ଦେହ-ବେଦୀ ଉପରେ ସୃଷ୍ଟି ପୂଜାର ଏକ ଚିତ୍ର ଅଙ୍କନ କରିଛନ୍ତି । ଏ ତ ଅଶ୍ଳୀଳ ଚିତ୍ର ନୁହେଁ ! ଏହା ସନାତନ ଲିଙ୍ଗ ପୂଜାର ଚିତ୍ର ।

ଏଇ ତତ୍ତ୍ୱ ନ ବୁଝି ନୈତିକତାର ଦ୍ୱାହି ଦେଇ ଯଦି କେହି ଆପଣଙ୍କୁ ଅଶ୍ଳୀଳତା ଦୋଷରେ ଦୋଷୀ କରିବାକୁ ଯାଏ, ତେବେ କହିବାକୁ ହେବ – ଅନ୍ଧ ଦେଶକୁ ଗଲି ଦର୍ପଣ ବିକି, ଇତ୍ୟାଦି ।

Dr. Mayadhar Manasingh, M.A., Ph.D., Chief Compiler, Oriya Encyclopaedia, Utkal University and one of the reputed writers of Orissa.

ଯେଉଁ ଅଧ୍ୟାପକର ଚରିତ୍ର, ସାଧୁତା ଓ ଦକ୍ଷତା ଉପରେ କିଛି କହିବାର ନାହିଁ, କେବଳ ଗୋଟାଏ ଲେଖାର ଆଳରେ ତା'ର ଅବସ୍ଥିତିକୁ ମାରାତ୍ମକ ଧରାଯିବ ? ଆମେ ସାହିତ୍ୟରେ ଯୌନ ଶାଳୀନତା ପାଇଁ ଯଦି ଏପରି ଅତ୍ୟଧିକ ସଚେତନ, ତେବେ 'ମଯାତି' ଓ 'ପାର୍ବତୀ'ର ଲେଖକ ଶିକ୍ଷା ବିଭାଗରୁ ତଡ଼ା ନ ଖାଇଲେ କିପରି ? କୋଣାର୍କ ବା ସମଗ୍ର ଭାରତର ଗର୍ବ ହେଉଛି କିପରି ?

Sri Kalindi Charan Panigrahi, Member, Indian Sahitya Akademy and one of the reputed writers of Orissa :– Let me particularly make a reference to the short story "Bedi" contributed by you. It struck me as a fine piece of art, that arouses the feelings of violent sensuousness having a strong resemblance with those of the sexy and amorous figures of men and women in the niches of the famous temples of Konark, Puri and Khajuraho.

Sri Nityananda Mahapatra M.L.A., Editor, the Dagaro and one of the reputed writers of Orissa :– ତା ୨୫/୪/୬୪ ତାରିଖ 'କଳିଙ୍ଗ' ରେ ମୁଁ ଗୋଟିଏ ଖବର ପଢ଼ିଲି । କଲେଜର ଗଭର୍ଣ୍ଣିଂ ବଡ଼ି କୁଆଡ଼େ ତମକୁ 'ବେଦୀ' ଗଳ୍ପଟି ଅଶ୍ଳୀଳ ବୋଲି କୈଫିୟତ୍ ତଲବ୍ କରିଛନ୍ତି । ମୋର ଯେତେଦୂର ମନେ ପଡୁଛି – ଗଳ୍ପଟି ବୋଧହୁଏ 'ଶତରୂପା'ରେ ପ୍ରକାଶ ପାଇଥିଲା । ଗଳ୍ପର ପାଣ୍ଡୁଲିପି ତମେ ମୋତେ ଥରେ ଦେଖାଇଥିଲ । ମୁଁ ସେଥିରେ କେତକ ସଂଶୋଧନ କରିବାକୁ ସୂଚନା ଦେଇଥିଲି । 'ଶତରୂପା'ରେ ସେହି ସଂଶୋଧିତ ଗଳ୍ପ ହିଁ ପ୍ରକାଶ ପାଇଛି । ସଂଶୋଧନ ପରେ ଲେଖାଟି 'ଡଗର'କୁ ପଠାଇବା ପାଇଁ ମୁଁ କହିଥିଲି । କି ଅବସ୍ଥାରେ ଲେଖାଟି 'ଶତରୂପା'କୁ ଦେଲ, ମୁଁ ଜାଣେ ନାହିଁ । କଳା ସମ୍ବନ୍ଧରେ ଯାହାର ସାମାନ୍ୟ ଜ୍ଞାନ ଥିବ, ସେ ଏ ଲେଖାକୁ ଯଦି ଅଶ୍ଳୀଳ ବୋଲି କହେ, ତେବେ ମୋର ଯେଉଁ ସାମାନ୍ୟ କଳା କୁଶଳତା ଅଛି ବୋଲି ଦେଶରେ କେହି କେହି ପ୍ରଶଂସା କରିଥାନ୍ତି, ସେହିମାନଙ୍କୁ ହିଁ ମୂର୍ଖ କହିବା ଛଡ଼ା ମୋର ଅନ୍ୟ ଉପାୟ ନାହିଁ । ତମେ ଗଳ୍ପଟିକୁ ଭଦ୍ରକରୁ ପ୍ରକାଶିତ ଏକ ପତ୍ରିକାରେ କାହିଁକି ବାହାର କଲ ? ଏଇଟା ତାର ପ୍ରାୟଶ୍ଚିତ । ମୋର ନିବେଦନ, ତମେ ନିର୍ଭୀକ ଭାବରେ ସତ୍ୟ ପ୍ରକାଶ କରିଯାଅ । ସାହିତ୍ୟିକ ଯେତେବେଳେ ସତ୍ୟକୁ ଗୋପନ କରେ, ସେତେବେଳେ ତା'ର ମୃତ୍ୟୁ ହୁଏ । ତମେ ବଞ୍ଚି ରହ, ମୁଁ ଏତିକି ଚାହେଁ ।

ଯେଉଁମାନେ ନାରୀକୁ ଭୋଗର ସାମଗ୍ରୀ ରୂପେ ମନେ କରନ୍ତି, ସେହିଭଳି ନିର୍ଲଜ୍ଜ କାମାତୁର, ଦୁଶ୍ଚରିତ୍ର ବ୍ୟକ୍ତିମାନେ ହିଁ ଗୋଟିଏ ସୁନ୍ଦର କଳାର ସତ୍ୟ ଓ ଶିବ ରୂପ ଦର୍ଶନ କରିବାକୁ ଅକ୍ଷମ ହେବା ସ୍ୱାଭାବିକ । ନାରୀ ଅଙ୍ଗର ଆକର୍ଷଣ ଭିତରେ ସୃଷ୍ଟିର ଯେଉଁ ମହତ୍ତମ ସୂଚନା ରହିଛି, ତାକୁ କାମପ୍ରବଣତାର ମାପକାଠିରେ ମାପି ହେବ ନାହିଁ । ତେଣୁ ଦୁଃଖ କରିବାର କିଛି ନାହିଁ ।

Prof. Dr. Narendranath Mishra, M.A., Ph.D., Oriya Deptt. Visva-Bharati, Santiniketan, West Bengal :– କଳା ଓ ସୌନ୍ଦର୍ଯ୍ୟ ଦୃଷ୍ଟିରେ ଯାହା ମହତ୍, ସାଧାରଣ ସାମାଜିକ ଦୃଷ୍ଟିରେ ତା' କୁତ୍ସିତ ଓ ଅଶ୍ଳୀଳ ବିବେଚିତ ହେବା ସ୍ୱାଭାବିକ । ଆପଣଙ୍କ ଏ ଚିତ୍ର ଆମ ଦେଶରେ ବା ବିଦେଶୀ ସାହିତ୍ୟରେ ଆଦୌ ନୂଆ ନୁହେଁ । ସେକ୍ସପିୟରଙ୍କ ସନେଟ୍, ହୁଇଟ୍‌ମାନ୍‌ଙ୍କ କବିତାର ଭାବ ଛଟା ମୁଁ ତ ବେଶ୍ ଆପଣଙ୍କ ଲେଖାରେ ଦେଖି ପାରୁଛି । ଖୋଜି ବସିଲେ, ବୋଦ୍‌ଲେୟାର୍ ଓ ତାଙ୍କ ସମଧର୍ମୀ ଆଧୁନିକ କବିତା ଓ ବହୁ Naturalist ଗଦ୍ୟ ଲେଖକଙ୍କ କୃତିରୁ ଏହାର ବହୁଳ ଦୃଷ୍ଟାନ୍ତ ଅଭାବ ହେବ ନାହିଁ ।

Lastly I pray that before any decision is taken by the Governing Body on this issue, I may kindly be allowed to be heard in person.

Yours faithfully

Bhadrak
Sd./

30.4.1964
(Krushna Charan Behera)
Senior Lecturer and Head of the Oriya Department, Bhadrak College.

କଲେଜ ଗଭର୍ଣ୍ଣିଂ ବଡ଼ିର ଅବ୍ୟବହିତ ପରବର୍ତ୍ତୀ ବୈଠକରେ ମୋର ଏ କୈଫିୟତ୍ ପତ୍ର ଉପସ୍ଥାପିତ ହେଲା । ସେତେବେଳକୁ ଶ୍ରୀ ବଳରାମ ସାହୁଙ୍କ ପରିବର୍ତ୍ତେ ବିଶିଷ୍ଟ ଦର୍ଶନଶାସ୍ତ୍ର ଅଧ୍ୟାପକ ଡକ୍ଟର ଶ୍ରୀନିବାସ ସାହୁ କଲେଜର ଅଧ୍ୟକ୍ଷ ପଦରେ ଅଧିଷ୍ଠିତ ହୋଇଥିଲେ । ଡକ୍ଟର ସାହୁ ଦେଶ ବିଦେଶ ବୁଲିଥିଲେ, ସାହିତ୍ୟରେ ଶ୍ଳୀଳତା-ଅଶ୍ଳୀଳତା ସଂପର୍କରେ ସମଗ୍ର ବ୍ୟାପାରକୁ ବହ୍ୱାରମ୍ଭେ ଲଘୁକ୍ରିୟାରେ ପରିଣତ କରି ଗୋଟିଏ ମାତ୍ର ବାକ୍ୟରେ ପ୍ରସ୍ତାବ ଗୃହୀତ କରାଇନେଲେ – The matter is dropped. କିନ୍ତୁ ଏ ବ୍ୟାପାର ସହିତ ସଂପୃକ୍ତ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଡ୍ରପ୍ ହୋଇପାରିଲା ନାହିଁ । ସାହିତ୍ୟରେ ଅଶ୍ଳୀଳତା, କବି-ଲେଖକଙ୍କର ସ୍ୱାଧୀନତା, ଓଡ଼ିଶାରେ ସାହିତ୍ୟ–ସୃଷ୍ଟି ଏକ ବୃତ୍ତି ହୋଇପାରେ କି ନା, ଅନ୍ୟାନ୍ୟ ବୃତ୍ତି ସହିତ ସାହିତ୍ୟ କର୍ମର ସଂପର୍କ ଆଦି ବିଷୟ ବର୍ଷାଧିକ କାଳ ଚାରିଆଡ଼େ ସଭା-ସମିତିରେ ତଥା ପତ୍ରପତ୍ରିକା ପୃଷ୍ଠାରେ ଆଲୋଚିତ ହେବାରେ ଲାଗିଲା । ମୋର କେତେକ ସ୍ନାତକୋତ୍ତର ଶ୍ରେଣୀର ଛାତ୍ର ଓ ଅଧ୍ୟାପକ ବନ୍ଧୁ ଏହି ବିଚାର-ଆଲୋଚନାରେ ପ୍ରବୃତ୍ତ ହୋଇଥିଲେ । ନିଜେ ମୁଁ *'ଅଶ୍ଳୀଳତା ବିପକ୍ଷରେ'* ଶୀର୍ଷକ ଏକ ଦୀର୍ଘ ଆଲୋଚନା-ପ୍ରବନ୍ଧ ଲେଖିଥିଲି । ତାହା ମୋର *'ଅଶ୍ଳୀଳତା ବିପକ୍ଷରେ*

*ଓ ଅନ୍ୟାନ୍ୟ ପ୍ରବନ୍ଧ'* (୧୯୬୬) ଗ୍ରନ୍ଥରେ ସନ୍ନିବେଶିତ ହୋଇଛି । କଟକସ୍ଥ ଉତ୍କଳ ସାହିତ୍ୟ ସମାଜର ଆହ୍ୱାନ କ୍ରମେ ବାଣୀପୀଠ ଶ୍ରୀ ରାମଚନ୍ଦ୍ର ଭବନରେ ତା ୨୦/୭/ ୧୯୬୯ ତାରିଖରେ 'ସାହିତ୍ୟରେ ଅଶ୍ଳୀଳତା' ନାମକ ଏକ ଲିଖିତ ଅଭିଭାଷଣ ପ୍ରଦାନ କରିଥିଲି । 'ଲେଖକ ଲାଗି ଲାଇସେନ୍ସ' (୧୯୬୬), 'ସାହିତ୍ୟର ଦୁଇଟି ଶକ୍ତି' (୧୯୭୨) ପ୍ରଭୃତି ପ୍ରବନ୍ଧ ଲେଖି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲି । 'ବେଦୀ' ଗଳ୍ପକୁ ଘେନି ଆଲୋଡ଼ନଜନିତ ଏହି ସାହିତ୍ୟ-କର୍ମ ଆମର ସାଂସ୍କୃତିକ ଇତିହାସରେ ଉପେକ୍ଷଣୀୟ ହୋଇ ନ ପାରେ ।

ପରେ ପରେ 'ବେଦୀ' ଗଳ୍ପ ଆମର ପାଠକ-ସମାଜରେ ଗୃହୀତ ହୋଇଥିବାର ମନେ ହୁଏ । 'ଓଡ଼ିଆ ଯୁବ ଲେଖକ ସମ୍ମେଳନ' ଗଳ୍ପ-ସଞ୍ଚୟନରେ ତଥା କେତେକ ସାହିତ୍ୟିକ ବନ୍ଧୁଙ୍କ ବ୍ୟକ୍ତିଗତ ଉଦ୍ୟମରେ କରାଯାଇଥିବା ଶ୍ରେଷ୍ଠ ଗଳ୍ପ ସଂଚୟନଗୁଡ଼ିକରେ ଏହା ସ୍ଥାନ ଲାଭ କରିଛି । ଏହି ଗଳ୍ପକୁ ଅଗ୍ରସ୍ଥାପିତ କରି ମୋର ଗଳ୍ପଗୁଚ୍ଛ 'ବେଦୀ ଇତ୍ୟାଦି ଗଳ୍ପ' ୧୯୭୧ ମସିହାରେ କଟକ ନିମିଚୌଡ଼ିର ଜେ. ମହାପାତ୍ର ଏଣ୍ଡ କୋ. ପ୍ରକାଶନସଂସ୍ଥା ବିପଣୀସ୍ଥ କରିଛି । ଉକ୍ତ ଗଣ୍ଡଗୋଳ ସମୟରେ ପ୍ରାୟ ପାଞ୍ଚ ଛଅ ମାସ କାଳ ମୁଁ ଗଳ୍ପ ରଚନା ବନ୍ଦ କରି ଦେଇଥିଲେ ହେଁ ପରେ ପରେ ଅଧିକରୁ ଅଧିକ ଗଳ୍ପ ଲେଖିବା ପାଇଁ ପ୍ରଚୋଦିତ ହୋଇଛି । ଗଳ୍ପ ଲେଖା ବନ୍ଦ କରିବାକୁ ମୋ ସ୍ତ୍ରୀଙ୍କର ପରାମର୍ଶ ବା ନିର୍ଦ୍ଦେଶ ଗ୍ରହଣ କରିପାରି ନାହିଁ । ଏହି ଗଣ୍ଡଗୋଳର ପର ବର୍ଷ ଅର୍ଥାତ୍ – ୧୯୬୫ ମସିହାରେ କଟକର ବିଖ୍ୟାତ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ବିଷୁବ ମିଳନରେ ଗଳ୍ପ ରଚନା ପାଇଁ ମୋତେ ପୁରସ୍କୃତ ଓ ସମ୍ମାନିତ କରାଯାଇଥିଲା । ସମ୍ମାନ-ଲିପିର ବକ୍ତବ୍ୟ ଥିଲା ଏହିପରି – *''ସମାଜର ଆଧୁନିକ ସମସ୍ୟାମାନଙ୍କର ସୂକ୍ଷ୍ମ ବିଶ୍ଳେଷଣ ଓ ନୈତିକତା ନାମରେ ପ୍ରଚଳିତ ମିଥ୍ୟାଚାର ପ୍ରତି ବିଦ୍ରୂପ ଶ୍ରୀ କୃଷ୍ଣଚରଣ ବେହେରାଙ୍କ ବିଭିନ୍ନ ଗଳ୍ପରେ ପ୍ରସ୍ଫୁଟିତ ହୋଇଛି । ତାଙ୍କର ସାବଲୀଳ ଭାଷା ଓ ପ୍ରକାଶଭଙ୍ଗୀ ପ୍ରଶଂସନୀୟ ।''*

# ରୁଗ୍ଣ ଶିକ୍ଷାଯଜ୍ଞର ଋତ୍ୱିକ୍

ଭଦ୍ରକ କଲେଜରେ ମୋର ପନ୍ଦର ବର୍ଷ କାଳ (୧୯୫୬-୭୧) କର୍ମଜୀବନ ଉତ୍‌ଥାନ-ପତନର ଏକ ସର୍ପିଳ ଗତିରେ ଚାଲିଥିଲା । ପୁଣି, ସେହି ଗତିପଥର ଶେଷ ଭାଗଟି ଥିଲା ବେଶ୍ ବିପଦସଂକୁଳ ଏବଂ ଏକ ଦୁଃସ୍ୱପ୍ନ ପରି ଭୀତିପ୍ରଦ ।

ଉଚ୍ଚ ଶିକ୍ଷାର ଏକ ଆଦର୍ଶ ଘେନି ୧୯୪୮ ମସିହାରେ ବେସରକାରୀ ଶିକ୍ଷାୟତନ ଭାବରେ ଭଦ୍ରକ କଲେଜ ଆରମ୍ଭ ହୋଇଥିଲା । ତାହାର ପ୍ରଥମ ଦଳ ଛାତ୍ରଙ୍କ ମଧ୍ୟରେ

ମୁଁ ଥିଲି ଅନ୍ୟତମ । ପ୍ରଥମେ ଛାତ୍ର ଭାବରେ ଓ ପରେ ଶିକ୍ଷକ ରୂପେ ମୁଁ ଅନୁଭବ କରିଥିଲି ଯେ – କଲେଜର ପ୍ରାଣ ପ୍ରତିଷ୍ଠାତା ଏଡ୍‌ଭୋକେଟ୍ ନରେନ୍ଦ୍ର ପ୍ରସାଦ ଦାସ (ନରବାବୁ), ଏବେ କଲେଜ ବସାଉଥିବା ଅଧିକାଂଶ ନେତାଙ୍କ ଭଳି କୌଣସି ନ୍ୟସ୍ତ ସ୍ୱାର୍ଥ ଘେନି ଏକ ମାମୁଲି ଶିକ୍ଷାୟତନ ଭାବରେ ଭଦ୍ରକ କଲେଜକୁ ଆରମ୍ଭ କରି ନ ଥିଲେ । ସ୍ୱାଧୀନତା-ପରବର୍ତ୍ତୀ କାଳରେ ରାଜ୍ୟରେ ଉଚ୍ଚ ଶିକ୍ଷାର ବିସ୍ତାର ତଥା ଅଧ୍ୟୟନ-ଅଧ୍ୟାପନର ଏକ ମହାନ କେନ୍ଦ୍ର ରୂପେ କଲେଜଟିକୁ ଠିଆ କରାଇବା ପାଇଁ ସେ ଗଭର୍ଣ୍ଣିଂ ବଡ଼ିର ସେକ୍ରେଟେରୀ ହିସାବରେ ଆପ୍ରାଣ ଉଦ୍ୟମ କରିଥିଲେ । ତତ୍‌କାଳୀନ ରାଜନୀତିକ ଓ ସାଂସ୍କୃତିକ କ୍ଷେତ୍ରରେ ବିଶିଷ୍ଟ ନେତା ମହତାବ ବାବୁଙ୍କ ସମେତ ଭଦ୍ରକ ଅଞ୍ଚଳର ବିଭିନ୍ନ ଦୂରଦ୍ରଷ୍ଟା ଶିକ୍ଷାପ୍ରେମୀ ବ୍ୟକ୍ତି ତାଙ୍କର ଏ ସଦୁଦ୍ୟମ ପ୍ରତି ଅକୁଣ୍ଠ ସାହାଯ୍ୟ-ସହଯୋଗ ପ୍ରଦାନ କରିଥିଲେ । ଏପରି କି, ମହତାବବାବୁଙ୍କ ପ୍ରସ୍ତାବ କ୍ରମେ ଭଦ୍ରକରେ ଏକ ଶିକ୍ଷାସମିତି ସଂଗଠିତ ହୋଇଥିଲା ଏବଂ ସେହି ସମିତି ପକ୍ଷରୁ ଭଦ୍ରକ କଲେଜକୁ କେନ୍ଦ୍ର କରି ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ କାର୍ଯ୍ୟାରମ୍ଭ କରାଯାଇଥିଲା । ସେହି ଶିକ୍ଷା ସମିତି ଓ ବିଶ୍ୱବିଦ୍ୟାଳୟର ମେମୋରେଣ୍ଡମ୍ ଆଦି କିଛି କାଗଜପତ୍ର ମୁଁ ନରବାବୁଙ୍କ ପାଖରେ ଦେଖିଥିଲି ।

ଭଦ୍ରକରେ ଭବିଷ୍ୟତରେ ସ୍ନାତକୋତ୍ତର ଶିକ୍ଷା ବ୍ୟବସ୍ଥା କରାଯିବ ଏବଂ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବ, ସେହି ଆଶାରେ ମୁଁ ସରକାରୀ କଲେଜର ନିଯୁକ୍ତିକୁ ପ୍ରତ୍ୟାଖ୍ୟାନ କରି ଭଦ୍ରକ କଲେଜରେ ରହିବା ପାଇଁ ସ୍ଥିର କଲି । ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିଶନ୍ ଦ୍ୱାରା ନିର୍ବାଚିତ ହୋଇ ୧୯୫୭ ମସିହାରେ ମୁଁ ପାରଳାଖେମୁଣ୍ଡିସ୍ଥ ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜରେ ନିଯୁକ୍ତି-ପତ୍ର ପାଇଥିଲି । ମୋ ସାଙ୍ଗରେ ଏକତ୍ର କାର୍ଯ୍ୟ କରୁଥିବା ମହାପାତ୍ର ନୀଳମଣି ସାହୁ କିନ୍ତୁ ଭଦ୍ରକ ଛାଡ଼ି ପାରଳାଖେମୁଣ୍ଡି କଲେଜରେ ଯାଇ ଯୋଗ ଦେଇଥିଲେ । କେବଳ ନିଜ ଅଞ୍ଚଳରେ ମାଟି କାମୁଡ଼ି ପଡ଼ି ରହିବା ମୋର ଉଦ୍ଦେଶ୍ୟ ନ ଥିଲା; ଉଚ୍ଚତର ଅଧ୍ୟାପନା ପାଇଁ ନିଜକୁ ଯୋଗ୍ୟ ଓ ସମର୍ଥ କରିବା ପାଇଁ – ଭଲ ଶିକ୍ଷକଟିଏ ହୋଇ ଉତ୍ତର ଓଡ଼ିଶାରେ ଶିକ୍ଷା-ସଂସ୍କୃତିର ପ୍ରସାର ପାଇଁ ଯଥାସାଧ୍ୟ ଉଦ୍ୟମ କରିବରେ ଲାଗିଲି । ଭଦ୍ରକ କଲେଜ ଗଭର୍ଣ୍ଣିଂ ବଡ଼ି ସେତେବେଳେ ଅଧ୍ୟାପକମାନଙ୍କର ଉଚ୍ଚତର ଅଧ୍ୟୟନ ଓ ଗବେଷଣା-କାର୍ଯ୍ୟ ପାଇଁ କିଛି ସୁବିଧା-ସୁଯୋଗର ବ୍ୟବସ୍ଥା ମଧ୍ୟ କରି ଦେଇଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ସଂସ୍କୃତ ଭାଷା-ସାହିତ୍ୟ ବିଭାଗର ମୁଖ୍ୟ ପ୍ରଫେସର ପ୍ରହ୍ଲାଦ ପ୍ରଧାନଙ୍କ ତତ୍ତ୍ୱାବଧାନାରେ ଗବେଷଣା କରି ୧୯୬୭ ମସିହାରେ ମୁଁ ଡକ୍ଟରେଟ୍ ଡିଗ୍ରୀ ଲାଭ କଲି । ସେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ଫିଟି ନ ଥିଲା ଏବଂ ରାଜ୍ୟର ସରକାରୀ ଓ ବେସରକାରୀ

କଲେଜମାନଙ୍କରେ ଏହି ଭାଷା-ସାହିତ୍ୟ ବିଷୟଟି ଏକ ସ୍ୱତନ୍ତ୍ର ବିଭାଗରେ ଅବସ୍ଥାପିତ ହୋଇ ନ ଥିଲା; ତାହା ସଂସ୍କୃତ ବିଭାଗ ସହ ମିଶି କରି ରହିଥିଲା । ରାଜ୍ୟର ସେତେବେଳେ ସେହି ଏକମାତ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ସରକାରୀ ଓ ବେସରକାରୀ କଲେଜମାନଙ୍କରେ ଓଡ଼ିଆ ଭାଷା-ସାହିତ୍ୟ ବିଷୟରେ ଡକ୍ଟରେଟ ଡିଗ୍ରୀଧାରୀ ଅଧ୍ୟାପକଙ୍କ ସଂଖ୍ୟା ଥିଲା ନଗଣ୍ୟ – ସଂଖ୍ୟାରେ ଚାରି କି ପାଞ୍ଚ ଜଣ ମାତ୍ର ।

ଅଧ୍ୟୟନ-ଅଧ୍ୟାପନା ଭଲ ଭାବରେ ଚାଲିଥିବାରୁ ଏବଂ ବିଶ୍ୱବିଦ୍ୟାଳୟ ପରୀକ୍ଷାଫଳ ବେଶ୍ ଭଲ ହେଉଥିବାରୁ ସେତେବେଳେ ଭଦ୍ରକ କଲେଜକୁ ଉତ୍ତରରେ ମୟୂରଭଂଜଠାରୁ ଦକ୍ଷିଣରେ ଗଞ୍ଜାମ ଜିଲ୍ଲା ପର୍ଯ୍ୟନ୍ତ ବିଭିନ୍ନ ଅଞ୍ଚଳରୁ ଛାତ୍ରଛାତ୍ରୀମାନେ ଆକୃଷ୍ଟ ହୋଇ ଆସୁଥିଲେ । କଲେଜର ସୁନାମ ଚାରିଆଡ଼େ ବ୍ୟାପି ଯାଇଥିଲା । ସବୁ ଠିକ୍‌ଠାକ୍ ଚାଲିଥିଲା – ଶିକ୍ଷାଯଜ୍ଞ ଯଥାରୀତି ଅନୁଷ୍ଠିତ ହେଉଥିଲା । ହଠାତ୍ ସେହି ଜୟନ୍ତ ଯଜ୍ଞକର୍ମରେ ୧୯୬୯ ମସିହା ବେଳକୁ ବିଘ୍ନ ଘଟିବାରେ ଲାଗିଲା । ବିଭିନ୍ନ କାରଣରୁ କଲେଜର ତତ୍‌କାଳୀନ ଗଭର୍ଣ୍ଣିଂ ବଡ଼ି ସହିତ ଅଧ୍ୟକ୍ଷ ବଳରାମ ସାହୁଙ୍କର ଭଲ ପଟିଲା ନାହିଁ । ଶିକ୍ଷକ ଭାବରେ ତଥା ଶିକ୍ଷା-ପ୍ରଶାସକ ଭାବରେ ଅଧ୍ୟକ୍ଷ ଜଣେ ଦକ୍ଷ ବ୍ୟକ୍ତି ଥିଲେ, କିନ୍ତୁ ସେ କକ୍ଷଚ୍ୟୁତ ହୋଇ ପଡ଼ିଲେ ଯେତେବେଳେ ସେହି ସୁପରିଚିତ ସଂସ୍କୃତ ସୂକ୍ତ ଅନୁଯାୟୀ ଯୌବନ, ଧନସଂପତ୍ତି, ପ୍ରଭୁତ୍ୱ ଓ ଅବିବେକିତା ତାଙ୍କୁ ଆବକ୍ଷ କବଳିତ କରିପକାଇଲା । ତା'ପରେ ପ୍ରାୟ ଦେଢ଼ ବର୍ଷ କାଳ ସେହି ପବିତ୍ର ଯଜ୍ଞପୀଠରେ ଏକ ବିଷାଦ ବେଦନାମୟ ନାଟକ, ଦୃଶ୍ୟ ପରେ ଦୃଶ୍ୟ ଅଭିନୀତ ହୋଇ ଚାଲିଲା – କଲେଜର ଜଣେ ଅବିବାହିତା ଅଧ୍ୟାପିକାଙ୍କ ପାଖକୁ ଲେଖିଥିବା ବିବାହିତ ଅଧ୍ୟକ୍ଷଙ୍କ ପ୍ରେମପତ୍ରର ଆବିଷ୍କାର ତଥା ଚାରିଆଡ଼େ ତାହାର ପ୍ରସାର, ଗଭର୍ଣ୍ଣିଂ ବଡ଼ି ସହିତ ଅଧ୍ୟକ୍ଷଙ୍କର ତୀବ୍ର ମତଭେଦ ଏବଂ ପରିଣତିରେ ତାଙ୍କର ବହିଷ୍କାର, ଆତ୍ମରକ୍ଷା ତଥା ଆସନରକ୍ଷା ପାଇଁ ଅଧ୍ୟକ୍ଷଙ୍କର କେତେକ ରାଜନୀତିକ ନେତା, ଅଧ୍ୟାପକ ଓ ନେତୃସ୍ଥାନୀୟ ଛାତ୍ରଙ୍କୁ ହାତ କରିବା ଏବଂ କଲେଜର ଅନ୍ୟ ଏକ ସମାନ୍ତରାଳ ଗଭର୍ଣ୍ଣିଂ ବଡ଼ିର ଦ୍ୱନ୍ଦ୍ୱ ଘେନି ହାଇକୋର୍ଟରେ ମାମଲା ଚାଲିବା, ଇତ୍ୟାଦି ଇତ୍ୟାଦି ।

ସେହି ପରିସ୍ଥିତିରେ ମୋର ନିଜର କିଛି ଭୂମିକା ରହିଥିଲା । କଲେଜର ମୂଳ ବା ପ୍ରଥମ ଗଭର୍ଣ୍ଣିଂ ବଡ଼ି, ଶ୍ରୀ ସାହୁଙ୍କ ବଦଳରେ ମୋତେ ଅଧ୍ୟକ୍ଷ ପଦରେ ନିଯୁକ୍ତି ଦେଲେ । ଅଧ୍ୟକ୍ଷ ପଦ ପାଇଁ ମୁଁ ଆଶାୟୀ ନ ଥିଲି କିମ୍ବା ସେଥିପାଇଁ ଦର୍ଖାସ୍ତ କରି ନ ଥିଲି । କଲେଜରେ ମୋର କାର୍ଯ୍ୟକାଳ ଆଠ ବର୍ଷରୁ ଅଧିକ ହୋଇଥିଲା ଏବଂ ମୋର ଏକ ଅଧିକା ଉଚ୍ଚତର ବିଶ୍ୱବିଦ୍ୟାଳୟ ଡିଗ୍ରୀ ରହିଥିଲା – ବୋଧହୁଏ ତାହାରି ଭିତ୍ତିରେ ମୋତେ ଏ ନିଯୁକ୍ତି ଦିଆଯାଇଥିଲା । କିନ୍ତୁ ପୂର୍ବ ଅଧ୍ୟକ୍ଷ ମୋତେ ତ ଦାୟିତ୍ୱ ହସ୍ତାନ୍ତର କଲେ

ନାହିଁ ! ତାହା ପରିବର୍ତ୍ତେ ମୁଁ କଲେଜ ଅଫିସରେ ବସି ଅଧ୍ୟକ୍ଷ କାର୍ଯ୍ୟ କରୁଥିଲା ବେଳେ ନିଜର କେତେକ ଅନୁଗତ ଛାତ୍ରଙ୍କ ଦ୍ୱାରା ମୋ କାର୍ଯ୍ୟରେ ବାଧା ସୃଷ୍ଟି କରାଇଲେ । କେତେକ ଛାତ୍ର ମୋ ଉପରେ ଶାରୀରିକ ଆକ୍ରମଣ କରିବାକୁ ମାଡ଼ି ଆସୁଥିଲା ବେଳେ ଅନ୍ୟ କେତେକ ଛାତ୍ର ମୋତେ କଲେଜ ଅଫିସ୍ ମଧ୍ୟରେ ଗୋଟାଏ ପ୍ରକୋଷ୍ଠରେ ପୂରାଇ ଦେଇ ରକ୍ଷା କଲେ । ନୋହିଲେ, ସେଦିନ ମୋର ଅବସ୍ଥା କ'ଣ ହୋଇ ଥାଆନ୍ତା, କହିପାରୁ ନାହିଁ । ଉଭୟଙ୍କ ଛାତ୍ର ନେତାଏ ମୋତେ ନ ପାଇ କଲେଜ ଅଫିସର କିଛି ଆସବାବ୍ ଓ ଫାଇଲ୍-ପତ୍ର ଉପରେ ନିଜର ରାଗ ଶୁଝାଇ ନେଲେ । ସେହିଦିନଠାରୁ ମୁଁ, ହଠାତ୍ ପୁରୁଣା ବା ପ୍ରଥମ ଗଭର୍ଣ୍ଣିଂ ବଡ଼ି ଦ୍ୱାରା ସ୍ଥାନଚ୍ୟୁତ ଅଧ୍ୟକ୍ଷ, କଲେଜର ଦଳେ ଛାତ୍ର, କିଛି ଅଧ୍ୟାପକ ଏବଂ ନୂଆ ବା ଦ୍ୱିତୀୟ ଗଭର୍ଣ୍ଣିଂ ବଡ଼ିର ଶତ୍ରୁ ହୋଇ ଉଠିଲି । ଡାକରେ ଆସୁଥିବା ମୋର ଚିଠିପତ୍ର ବାଟମାରଣା ହେବାରେ ଲାଗିଲା । ରାତିରେ କଲେଜ କ୍ୟାଂପସ୍‌ରେ ଥିବା ମୋର ବସା ଘରକୁ ଟେକାପଥର ଫିଙ୍ଗା ହେଲା । କଲେଜରେ ତଥା ଭଦ୍ରକ ସହରର ରାସ୍ତାଘାଟରେ କେତେକ ଛାତ୍ର ମୋତେ ଦେଖିଲା କ୍ଷଣି ନାନା ପ୍ରକାର କଦର୍ଯ୍ୟ କମେଣ୍ଟ୍ ମାରିଲେ – ଥୁ ଥୁ କରି ତଳେ ଛେପ ପକାଇବାରେ ଲାଗିଲେ । ସେତେବେଳେ ମୁଁ ଭୀଷଣ ମାନସିକ ଯନ୍ତ୍ରଣାରେ କାଳ କଟାଉଥାଏଁ ।

ଅଧ୍ୟକ୍ଷ-କାର୍ଯ୍ୟ କରିପାରୁ ନାହିଁ, ନାମକୁ ମାତ୍ର ଅଧ୍ୟକ୍ଷ ହୋଇ ରହିବି କାହିଁକି ? ତତ୍‌କାଳୀନ ପ୍ରଥମ ଗଭର୍ଣ୍ଣିଂ ବଡ଼ିର ସେକ୍ରେଟେରୀ ଏଡ଼ଭୋକେଟ୍ ଦେବାନନ୍ଦ ମହାପାତ୍ରଙ୍କୁ ମୋର ମନୋଭାବ ଜଣାଇ ଦେଲି । ତହୁଁ ଗଭର୍ଣ୍ଣିଂ ବଡ଼ି ମୋତେ ଛାଡ଼ି ରାଜନୀତି ବିଜ୍ଞାନ ବିଭାଗର ଅଧ୍ୟାପକ ଗୋକୁଳାନନ୍ଦ ରାୟଙ୍କୁ ଅଧ୍ୟକ୍ଷ ନିଯୁକ୍ତ କଲେ । ଶ୍ରୀ ରାୟଙ୍କୁ ମଧ୍ୟ ପୂର୍ବ ଅଧ୍ୟକ୍ଷ ଦାୟିତ୍ୱ ହସ୍ତାନ୍ତର କଲେ ନାହିଁ । ବରଂ କେତେକ ଅନୁଗତ ଛାତ୍ର ଓ ଅଧ୍ୟାପକଙ୍କ ଦ୍ୱାରା ତାଙ୍କୁ ନାନା ବାଟରେ ହଇରାଣ-ହରକତ କଲେ – ଅପଦସ୍ଥ କରାଇଲେ । ଛାତ୍ରମାନଙ୍କ ମଧ୍ୟରେ ଦୁଇଟି ଦଳ ହୋଇ ଗୋଟିଏ ଦଳ ପ୍ରଥମ ଗଭର୍ଣ୍ଣିଂ ବଡ଼ିକୁ ଏବଂ ଅନ୍ୟ ଦଳଟି ଦ୍ୱିତୀୟ ଗଭର୍ଣ୍ଣିଂ ବଡ଼ିକୁ ସମର୍ଥନ କଲେ । ସେତେବେଳେ କଲେଜର ଶିକ୍ଷକ ଓ ଅଣଶିକ୍ଷକ କର୍ମଚାରୀଙ୍କ ସଂଖ୍ୟା ପ୍ରାୟ ଦୁଇ ଶହ । ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରଥମ ଗଭର୍ଣ୍ଣିଂ ବଡ଼ିକୁ ସମର୍ଥନ କରୁଥିଲେ । ଆଉ କେତେକ କର୍ମଚାରୀ ଓ ଶିକ୍ଷକ, ନା ପ୍ରଥମ – ନା ଦ୍ୱିତୀୟ – କୌଣସି ଗଭର୍ଣ୍ଣିଂ ବଡ଼ିକୁ ବାହ୍ୟତଃ ସମର୍ଥନ ଜଣାଉ ନ ଥିଲେ, କିମ୍ବା ପୂର୍ବ ଅଧ୍ୟକ୍ଷ ବା ପରବର୍ତ୍ତୀ ଅଧ୍ୟକ୍ଷ କାହାରିଠାରେ ଆନୁଗତ୍ୟ ସ୍ୱୀକାର କରୁ ନ ଥିବାର ବାହାରକୁ ଦେଖାଇ ହେଉଥିଲେ । ବାଦୁଡ଼ି ପରି ସେମାନେ ପଶୁ ଦଳରେ, କି ପକ୍ଷୀ ଦଳରେ – କାହିଁରେ ନଥିବାର ଜଣାଯାଉଥିଲା । ଦିବାଲୋକରେ ନିରପେକ୍ଷତାର ଗଛ ଡାଳରେ ଓଲାୟମାନ ରହି ସନ୍ଧ୍ୟାରେ ସେମାନେ ନିଶାଚର ହୋଇ

ଚଳୁଥିଲେ । କେତେବେଳେ ପଶୁ ଦଳରେ ତ, କେତେବେଳେ ପକ୍ଷୀ ଦଳରେ ସେମାନଙ୍କୁ ଦେଖିବା ପାଇଁ ମିଳୁଥିଲା । ସେମାନଙ୍କର ଏହି ସୁବିଧାବାଦୀ ଭୂମିକା କଲେଜର ଉଭୟ ଗଭର୍ଣ୍ଣିଂ ବଡ଼ିକୁ ସେତେବେଳେ ଟିକିଏ ଅସୁବିଧାରେ ପକାଇଥିଲା ।

ଏହି ପରିଚାଳନାଗତ ଦୁଃସ୍ଥିତି ମଧ୍ୟରେ ଶିକ୍ଷାୟତନର ଅସଲ କାର୍ଯ୍ୟଟି ଘୋର ବାଧାପ୍ରାପ୍ତ ହୋଇଥିଲା । କ୍ଲାସ୍‌ଗୁଡ଼ିକ ଠିକ୍ ଭାବରେ ହେଲା କି ନାହିଁ, ଶିକ୍ଷକ ଓ ଅଣଶିକ୍ଷକ କର୍ମଚାରୀମାନେ ନିଜ ନିଜର ଡିଉଟି କରୁଛନ୍ତି କି ନାହିଁ, ପରୀକ୍ଷା ସବୁ ବିଧି ମୁତାବକ ପରିଚାଳିତ ହେଉଛି କି ନାହିଁ – କିଏ ତାହା ବୁଝିବ ବା ଦେଖାଶୁଣା କରିବ ? ଦୁଇଜଣ ଅଧ୍ୟକ୍ଷଙ୍କ ମଧ୍ୟରୁ କାହାର ଆଦେଶ ଓ ପରାମର୍ଶ ଅନୁସାରେ ଛାତ୍ରମାନେ ଚଳିବେ ? କ୍ଲାସ୍‌ଗୁଡ଼ିକରେ ଛାତ୍ର-ଉପସ୍ଥାନ ଊଣା ହେବାରେ ଲାଗିଲା । କେତେକ ଛାତ୍ର କଲେଜ ଗେଷ୍ଟ୍-ହାଉସ୍‌ରେ ଦିନ ରାତି ଡେରା ପକାଇ ବିଳାସ ବ୍ୟସନରେ ମଜଗୁଲ୍ ହୋଇ ରହିଲେ । ଛାତ୍ର ସମାଜ ଓ କର୍ମଚାରୀଙ୍କ ମଧ୍ୟରେ ଏକପ୍ରକାର ଅରାଜକତା ଦେଖାଦେଲା । ଦିବାଧ୍ୟାୟିନୀ ତଥା ଛାତ୍ରୀନିବାସର ଅନ୍ତେବାସିନୀମାନେ ଆତଙ୍କ ଓ ସଂକୋଚରେ ଚଳପ୍ରଚଳ କଲେ । ବର୍ଷ ବର୍ଷ କାଳ ସେଠାରେ ଯେଉଁ ଶିକ୍ଷାଯଜ୍ଞ ବିଧିବଦ୍ଧ ଭାବରେ ଚାଲିଥିଲା, ତାହା କ୍ରମେ ଦୁର୍ବଳ ଓ ରୁଗ୍‌ଣ ହୋଇ ପଡ଼ିଲା । ସେତେବେଳେ କଲେଜରେ କିପରି ପଢ଼ାଶୁଣା ହେଉଥିଲା ଏବଂ ଛାତ୍ରମାନଙ୍କ ମଧ୍ୟରେ କିପରି ଶୃଙ୍ଖଳା ଥିଲା, ତାହାରି ପ୍ରତ୍ୟକ୍ଷ ଅନୁଭୂତିର ଏକ ଉଦାହରଣ ଏଠାରେ ଦେଉଛି । ଦିନେ ଆଇ.ଏ. ଓଡ଼ିଆ ଅପ୍‌ସନାଲ୍ କ୍ଲାସ୍‌ରେ ମୁଁ 'ମଥୁରା ମଙ୍ଗଳ' କାବ୍ୟ ପଢ଼ାଉଥିଲି । ପଚିଶ ଜଣ ଯାଏଁ ଛାତ୍ରଛାତ୍ରୀ କ୍ଲାସରେ ଥାଆନ୍ତି । ଘଣ୍ଟା ବାଜିଲାରୁ ପଢ଼ାସାରି ମୁଁ କ୍ଲାସ-ରୁମ୍‌ରୁ ବାହାରି ଆସୁଛି, ରୁମ୍ ଭିତରୁ କେହି ଜଣେ ଛାତ୍ର ପାଟି କରି ଉଠିଲା – 'ଶଳାଟା କି ପାଠ ପଢ଼ାଉଛି ରେ !' ହଠାତ୍ ମୁଁ ରୁମ୍ ଦ୍ୱାରବନ୍ଧରେ ଠିଆ ହୋଇଯାଇ କ୍ଲାସ୍ ଭିତରକୁ ଗମ୍ଭୀର ହୋଇ ଚାହିଁଲି । ଛାତ୍ରମାନେ ହୋ-ହା ଅଟ୍ଟହାସ୍ୟ କରି ରୁମ୍‌ର ପଛଦ୍ୱାର ବାଟେ କିଏ କୁଆଡ଼େ ପଳାଇ ଗଲେ । ସେତେବେଳେ ତେର ବର୍ଷର ଅଭିଜ୍ଞତା ଥିବା ଜଣେ ଶିକ୍ଷକଙ୍କ ପ୍ରତି ଏହା ହିଁ ଥିଲା ଛାତ୍ରମାନଙ୍କର ପୁରସ୍କାର !

କଲେଜର ଅସଲ କାର୍ଯ୍ୟ ପାଠପଢ଼ାର ଦୁରବସ୍ଥା ଲକ୍ଷ୍ୟ କରି ମୁଁ ପ୍ରାଣରେ ବଡ଼ ପୀଡ଼ା ଅନୁଭବ କଲି । କିନ୍ତୁ ଦୁରବସ୍ଥା ଦୂରୀକରଣର ଉପାୟ କ'ଣ ? ଉପଯୁକ୍ତ ପ୍ରତିକାର କାହିଁ ? ସହସା ସେହି ବିଷଣ୍ଣ ପ୍ରାୟାନ୍ଧକାର ପରିବେଶରେ ଆଶାର ଏକ ଆଲୋକ ରେଖା ଆଖିରେ ପଡ଼ିଲା । ଖବର ମିଳିଲା – ସୁପରିଚିତ ଶିକ୍ଷାବିତ୍ ପ୍ରଫେସର୍ ଶତ୍ରୁଘ୍ନ ନାଥ ସରକାରଙ୍କ ପକ୍ଷରୁ କଲେଜ ଅଧ୍ୟକ୍ଷ ରୂପେ ନିଯୁକ୍ତ ହୋଇଛନ୍ତି । ନ୍ୟସ୍ତ ସ୍ୱାର୍ଥର ବଶବର୍ତ୍ତୀ ଜଣେ ଦୁଇଜଣ ଅଧ୍ୟାପକ ଏ ଖବର ପାଇଲା ମାତ୍ରେ ପ୍ରଫେସର ନାଥଙ୍କୁ ନ

ଆସିବା ପାଇଁ ପ୍ରବର୍ତ୍ତାଇ ପତ୍ର ଲେଖିଥିଲେ । କିନ୍ତୁ ତହିଁରୁ ଫଳ ଫଳିଲା ନାହିଁ । ପୂର୍ବରୁ ପ୍ରଥମ ଗଭର୍ଣ୍ଣିଂ ବଡ଼ି ରାଜ୍ୟର ଶିକ୍ଷାବିଭାଗରୁ କଲେଜକୁ ଜଣେ ଅଧ୍ୟକ୍ଷ ଡେପୁଟେସନ୍‌ରେ ପଠାଇବା ପାଇଁ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ । ତଦନୁସାରେ ପ୍ରଫେସର ନାଥ ଆସି ପହଞ୍ଚିଗଲେ । ତାଙ୍କୁ କଲେଜ ଅଫିସ ଭିତରକୁ ପ୍ରବେଶ କରିବା ପାଇଁ ଦିଆଗଲା ନାହିଁ । କେତେକ ଛାତ୍ରନେତା ଆନ୍ଦୋଳନ ଆରମ୍ଭ କଲେ – 'ଶତ୍ରୁଘ୍ନ ନାଥ, ଗୋ ବ୍ୟାକ୍' ସ୍ଲୋଗାନ୍ ଦେଇ କ୍ଲାସ୍ କରାଇ ଦେଲେ ନାହିଁ – ଅଫିସ୍ କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି କଲେ । କିନ୍ତୁ ପ୍ରଫେସର ନାଥ 'ବ୍ୟାକ୍' କରିଯିବା ପାଇଁ ଆସି ନଥିଲେ । କଲେଜରେ ବି.ଏସ୍‌ସି. ଲେବୋରେଟରୀ ସମ୍ମୁଖସ୍ଥ ଏକ ଆମ୍ବଗଛ ମୂଳରେ ବସି ସେ ଅଫିସ୍ କାର୍ଯ୍ୟ କରିବାରେ ଲାଗିଲେ । ସେହି ଗଣ୍ଡଗୋଳିଆ ପରିସ୍ଥିତିରେ କଲେଜର ରେକର୍ଡ଼ପତ୍ର ଓ ସଂପତ୍ତିବାଡ଼ିର ସୁରକ୍ଷା ପାଇଁ ରାଜ୍ୟ ପ୍ରଶାସନ ପକ୍ଷରୁ ପଦକ୍ଷେପ ନିଆଯାଇ କଲେଜ ଅଫିସ୍‌କୁ ସିଲ୍ କରି ଦିଆଯାଇଥିଲା ଏବଂ ଜଣେ ମାଜିଷ୍ଟ୍ରେଟ୍‌ଙ୍କୁ କଲେଜର ଏଡ୍‌ମିନିଷ୍ଟ୍ରେଟିଭ୍ ଅଫିସର୍ ରୂପେ ନିଯୁକ୍ତ କରାଯାଇଥିଲା । ଏହାଦ୍ୱାରା ଆସନଚ୍ୟୁତ ପୂର୍ବ ଅଧ୍ୟକ୍ଷଙ୍କର ଏକପ୍ରକାର ପକ୍ଷଛେଦନ ହୋଇ ଯାଇଥିଲା; କଲେଜ କ୍ୟାଂପସ୍‌ରେ ଥିବା ନିଜର ବସାଘରେ ବସି ତଥାକଥିତ ଅଫିସ୍ କାର୍ଯ୍ୟରେ ସେ ଖଣ୍ଡିଉଡ଼ା ଦେଉଥିଲେ ।

ପ୍ରଫେସର୍ ନାଥ ଥିଲେ ଭଦ୍ରକର ସ୍ଥାନୀୟ ବ୍ୟକ୍ତି । ଭଦ୍ରକରେ ତାଙ୍କର କିଛି ଶିକ୍ଷକ, କେତେକ ପଢ଼ାସାଙ୍ଗ, ଆତ୍ମୀୟ ସ୍ୱଜନ ଓ ବହୁ ଶୁଭେଚ୍ଛୁ ବନ୍ଧୁ ରହିଥିଲେ । ଭଦ୍ରକ କଲେଜ ସହ ତାଙ୍କର ସଂପର୍କ ମଧ୍ୟ ଆକସ୍ମିକ ଓ ତତ୍‌କାଳୀନ ନ ଥିଲା । କଲେଜ ପ୍ରତିଷ୍ଠା ସମୟରେ ସେ ବିଲାତରେ ଥିଲେ ଏବଂ ସେକ୍ରେଟେରୀ ନରବାବୁଙ୍କ ଅନୁରୋଧକ୍ରମେ କଲେଜ ପାଇଁ ବିଲାତରୁ କିଛି ଅର୍ଥ ବ୍ୟବସ୍ଥା କରି ପଠାଇଥିଲେ । ପରେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ, ବିଭିନ୍ନ ଟ୍ରେନିଂ କଲେଜ ପ୍ରଭୃତିରେ କାର୍ଯ୍ୟ କରୁଥିଲାବେଳେ ଭଦ୍ରକ କଲେଜର ଅଗ୍ରଗତି ବିଷୟରେ ବରାବର ଖବର ରଖୁଥିଲେ । ତେଣୁ ୧୯୬୯ ମସିହା ଅକ୍ଟୋବର-ନଭେମ୍ବର ବେଳକୁ ସରକାରୀ କର୍ମରୁ ତାଙ୍କର ଅବସର ନେବା ପାଇଁ ଅଳ୍ପ କେତେ ମାସ ବାକି ଥିଲାବେଳେ ସେ ଏହି କଲେଜର ଦୁରବସ୍ଥା ଲକ୍ଷ୍ୟ କରି ଯଥାସାଧ୍ୟ ଅବସ୍ଥା ସୁଧାରିବା ପାଇଁ ଏଠାକୁ ଚାଲି ଆସିଥିଲେ । ରାଜ୍ୟର ଶିକ୍ଷା ବିଭାଗରେ ଦୀର୍ଘକାଳ ଅଧ୍ୟାପକ ଓ ଅଧ୍ୟକ୍ଷ ଭାବରେ କାର୍ଯ୍ୟ କରି ସେ ଶିକ୍ଷା-ବ୍ୟବସ୍ଥା ଓ ଛାତ୍ର-ଶିକ୍ଷକଙ୍କ ସମସ୍ୟାଦି ବିଷୟରେ ପ୍ରଚୁର ଅଭିଜ୍ଞତା ଲାଭ କରିଥିଲେ । ଶିକ୍ଷାଦୀକ୍ଷା ସଂପର୍କରେ ସେ ଓଡ଼ିଆ ଓ ଇଂରାଜୀରେ କେତେକ ଉଚ୍ଚକୋଟୀର ପ୍ରବନ୍ଧ ଲେଖିଥିଲେ । ଏ ଯାବତ୍ ତାଙ୍କର ଶକ୍ତିଶାଳୀ ଲେଖନୀରୁ ଆମେ ଏହି ପୁସ୍ତକଗୁଡ଼ିକ ପାଇଛୁଁ – 'ଆମେ ଓ ସେମାନେ', 'ଜୀବନ ଶିକ୍ଷା', 'ଶିକ୍ଷାର ଧାରା', 'ଆମ ଭାଷାବିଭବ', 'Education

: Styles and Strategies', 'Contemporary Concerns in Education' ଇତ୍ୟାଦି । ଏହା ବ୍ୟତୀତ କବି ଭୀମଭୋଇ ଓ ମହିମା ଧର୍ମ ସଂପର୍କରେ ତାଙ୍କର କେତେକ ପ୍ରବନ୍ଧ ଓ ପୁସ୍ତକ ମଧ ପ୍ରକାଶ ପାଇଛି । ସର୍ବୋପରି ତାଙ୍କର ଥିଲା ଏକ ପ୍ରଭାବଶାଳୀ ବ୍ୟକ୍ତିତ୍ୱ – ନମ୍ରତା, ନିଷ୍ଠାପରତା ଓ ଅମାୟିକ ସ୍ୱଭାବ ଥିଲା ଯାହାର ଗୋଟିଏ ବିଶିଷ୍ଟ ବିଭାବ । କର୍ତ୍ତବ୍ୟ-କର୍ମରେ ସେ ପର୍ବତ ପରି କଠୋର ଥିଲେ, ଛାତ୍ରବତ୍ସଳତା ଓ ଶିକ୍ଷକ-ପ୍ରୀତିରେ ଥିଲେ ଲବଣୀ ପରି କୋମଳ । ବଟବୃକ୍ଷ ପରି ସେ ଥିଲେ ସହିଷ୍ଣୁ, ଆକାଶ ପରି ଅନହଂକାରୀ । ଈର୍ଷା କରିବା ବା ପ୍ରତିଶୋଧ ନେବା ମନୋଭାବ ସେ ଦେହର ମଳି ପରି ଝାଡ଼ିଝୁଡ଼ି ଦେଇଥିଲେ । ତାଙ୍କର ସେହି ଯାଦୁକରୀ ବ୍ୟକ୍ତିତ୍ୱର ପ୍ରଭାବ ଅବିଳମ୍ବେ କଲେଜର ଛାତ୍ରସମାଜ ତଥା ଶିକ୍ଷକ ଓ ଅଣଶିକ୍ଷକ କର୍ମଚାରୀଙ୍କ ଉପରେ ଅନୁଭୂତ ହେଲା ।

ତାଙ୍କର ଜୀବନ-ଯାପନର ଆଭିମୁଖ୍ୟ ଥିଲା ଏକାନ୍ତ ଭାବେ ମାନବିକ । ଦୟା, କରୁଣା, ସହାନୁଭୂତି ଓ ସମବେଦନାରେ ତାଙ୍କର ମୁଖମଣ୍ଡଳ ଶ୍ରାବଣୀ ବାଦଲ ପରି ଦିଶୁଥିଲା ଗୁରୁ ଗମ୍ଭୀର । ସମସ୍ତଙ୍କୁ ମମତା-ଡୋରିରେ ବାନ୍ଧି ରଖିବା – ଶ୍ରଦ୍ଧା ପ୍ରୀତିରେ ଆପଣାର କରିବା ଲକ୍ଷ୍ୟ ଘେନି ସେ କଲେଜରେ କାର୍ଯ୍ୟାରମ୍ଭ କଲେ । କ୍ଲାସ୍‌ଗୁଡ଼ିକ ଠିକ୍ ଭାବରେ ହେଉଛି କି ନାହିଁ, ଲାଇବ୍ରେରୀ ଓ ଲେବୋରେଟରୀଗୁଡ଼ିକ ଯଥାରୀତି ଛାତ୍ର ଓ ଶିକ୍ଷକମାନଙ୍କ ଦ୍ୱାରା ବ୍ୟବହୃତ ହେଉଛି କି ନାହିଁ, ଅଧ୍ୟାପକ ଓ ଅଣଶିକ୍ଷକ କର୍ମଚାରୀମାନେ ନିୟମିତ କାର୍ଯ୍ୟ କରୁଛନ୍ତି କି ନାହିଁ – ପ୍ରତିଦିନ ସେ ବୁଲି ବୁଲି ଦେଖିଲେ । କଲେଜ କ୍ୟାଂପସ୍ ଭିତରେ ପାଞ୍ଚ ଛଅଟି ହଷ୍ଟେଲ ଥିଲା । ତଥାପି କଲେଜ ବାହାରେ ଭଦ୍ରକ ସହର ଭିତରେ ବହୁ ସଂଖ୍ୟକ ସାନ ବଡ଼ ମେସ୍ କରି ଛାତ୍ରମାନେ ରହୁଥିଲେ । ପ୍ରଫେସର୍ ନାଥ ପ୍ରତ୍ୟେକ ହଷ୍ଟେଲକୁ ମଝିରେ ମଝିରେ ଭିଜିଟ୍ କରି – ସହରର ପ୍ରତ୍ୟେକ ମେସ୍‌କୁ ଯାଇ ଛାତ୍ରମାନଙ୍କର ସୁଖ ଦୁଃଖ, ଅଭାବ ଅସୁବିଧା ବିଷୟ ବୁଝିଲେ । ବିପଦ ଆପଦରେ ସାନ୍ତ୍ୱନା ଓ ସାହାଯ୍ୟ ଦେଲେ । କେତେ ଥର ମୁଁ ତାଙ୍କ ସହିତ କଲେଜ ପାର୍ଶ୍ୱସ୍ଥ ଜଗନ୍ନାଥପୁର, ଛାନୁଗଞ୍ଜ ଆଦି ସ୍ଥାନରେ ଥିବା ଛାତ୍ରମାନଙ୍କର ମେସ୍‌କୁ ବୁଲିଯାଇଥିଲି ।

ସେତେବେଳେ କଲେଜରେ ବହୁ ମୁସଲିମ୍ ଛାତ୍ର ପଢୁଥିଲେ; ଅଳ୍ପ କେତେକ ମୁସଲିମ୍ ଅଧ୍ୟାପକ ଓ ଅଣଶିକ୍ଷକ କର୍ମଚାରୀ କାର୍ଯ୍ୟ କରୁଥିଲେ । ସେମାନଙ୍କ ମଧ୍ୟରୁ କେତେ ଜଣ, ବହିଷ୍କୃତ ଅଧକ୍ଷ ଓ ଦ୍ୱିତୀୟ ଗଭର୍ଣ୍ଣିଂ ବଡ଼ିର ସମର୍ଥକ ଥିଲେ । ପ୍ରଫେସର ନାଥଙ୍କର ଜଣେ ମୁସଲିମ୍ ବନ୍ଧୁ ଆସି ଖବର ଦେଲେ ଯେ – ସେମାନେ ତାଙ୍କୁ ଖଣ୍ଡ ଖଣ୍ଡ କରି ହାଣି ଦେବାକୁ ବାହାରିଛନ୍ତି । ପ୍ରଫେସର ନାଥ ତହିଁରେ ଭୀତତ୍ରସ୍ତ ନ ହୋଇ ସେହି ବନ୍ଧୁଙ୍କୁ ସାଙ୍ଗରେ ଘେନି ସହରର ମୁସଲମାନ ବସ୍ତିମାନଙ୍କରେ ବୁଲିଲେ – ବିଶେଷତଃ

ପୁରୁଣା ବଜାରର ବିଭିନ୍ନ ମହଲାରେ ବୁଲି ମୁସଲିମ୍ ଛାତ୍ରମାନଙ୍କୁ ଭେଟିଲେ, ସେମାନଙ୍କର ଅଭିଭାବକଙ୍କ ସହ ସଂପର୍କ ସ୍ଥାପନ କଲେ । ସମସ୍ତଙ୍କ ପ୍ରତି ସେ ମୈତ୍ରୀ-ପ୍ରୀତିର ହାତ ବଢ଼ାଇ ଦେଲାରୁ ହିଂସା-ପ୍ରଣୋଦିତ ମନୋବୃତ୍ତି ସ୍ୱତଃ ଅବନମିତ ହୋଇଗଲା – ତାଙ୍କ ନିକଟରେ ନତି ସ୍ୱୀକାର କଲା । ପରେ ସେହି ମୁସଲିମ୍ ଛାତ୍ର-ଅଧ୍ୟାପକ ତଥା ପ୍ରଫେସର ନାଥଙ୍କୁ ବିରୋଧ କରୁଥିବା ବିଭିନ୍ନ ବ୍ୟକ୍ତିଙ୍କ ତୁଣ୍ଡରୁ ଶୁଣାଗଲା – ସରକାର ତାଙ୍କୁ ପୂର୍ବରୁ କଲେଜକୁ ଅଧକ୍ଷ କରି ପଠାଇଲେ ନାହିଁ କାହିଁକି ?

କଲେଜରେ ଅଶାନ୍ତ ପରିବେଶ ହେତୁ ୧୯୬୯-୭୦ ଶିକ୍ଷା ବର୍ଷରେ କୌଣସି କଲେଜ ପରୀକ୍ଷା ହୋଇ ପାରି ନଥିଲା । ଅଥଚ ବିଶ୍ୱବିଦ୍ୟାଳୟ ବିଧି ଅନୁସାରେ ସେକେଣ୍ଡ ଇୟର ଓ ଫୋର୍ଥ ଇୟର ଛାତ୍ର-ଛାତ୍ରୀମାନେ ପ୍ରିଟେଷ୍ଟ ଓ ଟେଷ୍ଟ ପରୀକ୍ଷା ଦେଇ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ସେଣ୍ଟଅପ୍ ହେବାର କଥା । ସେମାନଙ୍କର ଟେଷ୍ଟ ପରୀକ୍ଷା ତଥା ଫାଷ୍ଟ .ଇୟର୍ ଓ ଥାର୍ଡ୍ ଇୟର ଛାତ୍ର-ଛାତ୍ରୀମାନଙ୍କର ଷାଣ୍ମାସିକ ପରୀକ୍ଷା ପାଇଁ ବିଜ୍ଞପ୍ତି ପ୍ରକାଶ ପାଇଲା ମାତ୍ରେ, ସେ ବର୍ଷ ଭଲ ପଢ଼ାପଢ଼ି ହୋଇ ନଥିବାର ଆଳ ଦେଖାଇ, କେତେକ ନେତୃ ସ୍ଥାନୀୟ ଛାତ୍ର ଆନ୍ଦୋଳନ ଆରମ୍ଭ କଲେ – ପରୀକ୍ଷା ସଂପର୍କିତ ବିଜ୍ଞପ୍ତିମାନ ନୋଟିସ୍-ବୋର୍ଡ଼ରୁ ଛିଡ଼ାଇ ପକାଇଲେ – ହଷ୍ଟେଲ ଓ କ୍ଲାସମାନଙ୍କରେ ପଶି ପରୀକ୍ଷା ବର୍ଜନ କରିବା ପାଇଁ ଛାତ୍ର-ଛାତ୍ରୀମାନଙ୍କୁ ମତାଇବାରେ ଲାଗିଲେ । ପ୍ରଫେସର ନାଥ ସେମାନଙ୍କୁ ବହୁତ ବୁଝାଶୁଝା କଲେ, ବିଶ୍ୱବିଦ୍ୟାଳୟର ବିଧି, ନିୟମ ଦେଖାଇଲେ – ସେମାନଙ୍କର ଅଭିଭାବକଙ୍କୁ ଭେଟି ପରୀକ୍ଷାର ଅନିବାର୍ଯ୍ୟତା ଦର୍ଶାଇଲେ । ବହୁ କଷ୍ଟରେ ସେ ଛାତ୍ର ନେତାମାନଙ୍କୁ ପରୀକ୍ଷାରେ ବସିବା ପାଇଁ ରାଜି କରାଇ ଦେଲେ । ପରୀକ୍ଷା କରାଯିବ, ପରୀକ୍ଷା ଖାତା ସବୁ ମୂଲ୍ୟାଙ୍କିତ ହେବ, ଫଳ ପ୍ରକାଶ କରାଯାଇ ପୁଣି ନିର୍ଦ୍ଦିଷ୍ଟ ସମୟ ଭିତରେ ବିଶ୍ୱବିଦ୍ୟାଳୟ ପରୀକ୍ଷା ପାଇଁ ଛାତ୍ର-ଛାତ୍ରୀଙ୍କର ଫର୍ମ୍ ପୂରଣ ହେବ । ଏସବୁ କାର୍ଯ୍ୟ ଲାଗି ସମୟ ଏକାନ୍ତ ଭାବେ ସୀମିତ । ଏଣେ ପରୀକ୍ଷାକୁ ଭଣ୍ଡୁର କରିବା ପାଇଁ କେତେକ ବ୍ୟକ୍ତି ଚକ୍ରାନ୍ତ କରୁଥାଆନ୍ତି । କିନ୍ତୁ ପ୍ରଫେସର ନାଥଙ୍କ ସୁପରିଚାଳନାରେ ସବୁ କାର୍ଯ୍ୟ ଠିକ୍‌ଠାକ୍ ଚାଲିଲା । ପରୀକ୍ଷା ପାଇଁ ପ୍ରଶ୍ନ ପତ୍ର ଛାପା ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହେଲା । ସେତେବେଳେ ପ୍ରଫେସର ନାଥ ଭଦ୍ରକ ସହରର ଇନିସ୍‌ପେକ୍‌ସନ ବାଙ୍ଗ୍‌ଲୋର ଗୋଟିଏ ପ୍ରକୋଷ୍ଠରେ ପୋଲିସ୍ ଜଗୁଆଳି ମଧ୍ୟରେ ରହୁ ଥାଆନ୍ତି; ଏପରିକି ପ୍ରଥମ କେତେ ମାସ ବନ୍ଧୁକଧାରୀ ପୋଲିସ୍ ନିରାପତ୍ତାରେ କଲେଜକୁ ଯିବା-ଆସିବା କରୁଥାଆନ୍ତି । ସକାଳେ ମୁଁ କଟକ ଯାଇ ଦିନେ ଦୁଇ ଦିନର ପ୍ରଶ୍ନପତ୍ର ଛାପା କରାଇ ରାତିରେ ଆଣି ତାଙ୍କ ପାଖରେ ପହଞ୍ଚାଇ ଦେଉଥାଏ, ପରୀକ୍ଷା ଯଥାରୀତି ଚାଲିଥାଏ । ଏହିପରି କିଛି ବାଧାବିଘ୍ନ ମଧ୍ୟରେ ପରୀକ୍ଷାଦି କାର୍ଯ୍ୟ ସରି ଛାତ୍ର-ଛାତ୍ରୀଙ୍କର ଫର୍ମ୍ ପୂରଣ

ହୋଇଗଲା । କଲେଜର ଗୋଟାଏ ବଡ଼ ଦରକାରୀ କାର୍ଯ୍ୟ, ଯାହା ତତ୍‌କାଳୀନ ପରିସ୍ଥିତିରେ ହୋଇପାରିବ ନାହିଁ ବୋଲି ଅନେକେ ଆଶଙ୍କା କରୁଥିଲେ, ତାହା ବେଶ୍ ସୁରୁଖୁରୁରେ ହୋଇଥିବାର ସଂପୃକ୍ତ ସମସ୍ତ ବ୍ୟକ୍ତି ହୃଦୟଙ୍ଗମ କଲେ ।

'ଆମେ ଓ ସେମାନେ' (୧୯୮୨) ଗ୍ରନ୍ଥ ଆରମ୍ଭରେ ପ୍ରଫେସର ନାଥ ଉଲ୍ଲେଖ କରିଛନ୍ତି – ''ବୁଝିବା ଓ କାମ କରିଯିବା ଦେଶ ଓ ଦଶର ପ୍ରଗତି ପାଇଁ । କଳି ପାଇଁ ବେଳ ନାହିଁ । ବେଳ ଓ ବୟସ ଅଛି କେବଳ ସହଯୋଗ ପାଇଁ ଓ ମିଳିତ ମସୁଧା ପାଇଁ । ଅନ୍ଧପୁଟୁଳି ବାନ୍ଧି ଆମେ ସବୁ ଅନ୍ଧାର କରି ଦେଉଛୁଁ । ଉନ୍ମୁକ୍ତ ମନରେ ବିଚାର କଲେ ଆମେ ସବୁ ଏ ଯୁଗଯନ୍ତ୍ରଣାକୁ ଯୋଗ ଓ ସଂଯୋଗରେ ପରିଣତ କରିପାରିବା ।'' ଏହି ଗୁରୁତ୍ୱପୂର୍ଣ୍ଣ କଥା ସେ ତୁଚ୍ଛାଟାରେ କହି ନାହାନ୍ତି, ତଦନୁଯାୟୀ ବାସ୍ତବ କ୍ଷେତ୍ରରେ କାର୍ଯ୍ୟ କରିଛନ୍ତି ମଧ୍ୟ । ଏ ନୀତିବାକ୍ୟର ହାତ ଧରି ସେ ବୋଧହୁଏ ଏ ପର୍ଯ୍ୟନ୍ତ ଜୀବନ-ଯାତ୍ରା ପଥରେ ଚାଲିଛନ୍ତି । ଭଦ୍ରକ କଲେଜରେ ତାଙ୍କର ଅଧ୍ୟକ୍ଷତାରୁ ଏହାର ମଧ୍ୟ ପ୍ରକୃଷ୍ଟ ପ୍ରମାଣ ମିଳିଥାଏ । ଆପଣାର ବିରୋଧୀ ଓ ସହଯୋଗୀ, ଶତ୍ରୁ ଓ ମିତ୍ର – ସମସ୍ତଙ୍କୁ ସାଙ୍ଗରେ ଘେନି, ନିନ୍ଦା ଓ ପ୍ରଶଂସା ପ୍ରତି ଅନୀହା ପ୍ରକାଶ କରି ସେ କଲେଜର ସ୍ୱାଭାବିକ ପରିସ୍ଥିତି ଫେରାଇ ଆଣିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ଏବଂ ତହିଁରେ ସାଫଲ୍ୟମଣ୍ଡିତ ହୋଇଥିଲେ । ତାଙ୍କର ଏହି କୃତିତ୍ୱ ସଂପୃକ୍ତ ସମସ୍ତ ବ୍ୟକ୍ତି ଶ୍ରଦ୍ଧାର ସହ ସ୍ମରଣ ରଖିବେ ।

କଲେଜ ଅବସ୍ଥା ଶାନ୍ତ ପଡ଼ିବା ସଂଗେ ସଂଗେ ଅଧ୍ୟୟନ-ଅଧ୍ୟାପନା ପୂର୍ବଭଳି ନିରୁପଦ୍ରବ ଭାବରେ ଚାଲିଲା । ଜଣେ ଉପଯୁକ୍ତ ଋତ୍ୱିକ୍ ଭାବରେ ପ୍ରଫେସର ନାଥ ସେହି ରୁଗ୍‌ଣ ଶିକ୍ଷା ଯଜ୍ଞକୁ ନିରାମୟ ଓ ତେଜୋଦୀପ୍ତ କରି କଲେଜର ହୃତ ଗୌରବ ଫେରାଇ ଆଣି ପାରିଲେ । ଏହା ତାଙ୍କ ନିଜ ପକ୍ଷରେ ଯେପରି ଏକ ମହାନ୍ ସିଦ୍ଧି, ରାଜ୍ୟର ଶିକ୍ଷା ବିଭାଗର ଇତିହାସରେ ସେହିପରି ଏକ ଉଲ୍ଲେଖନୀୟ ଅଧ୍ୟାୟ । ତାହାରି ମଧ୍ୟରେ ଓଡ଼ିଶା ହାଇକୋର୍ଟରେ ଚାଲିଥିବା କଲେଜ ସଂକ୍ରାନ୍ତୀୟ ମାମଲାର ବିଚାର ଶେଷ ହୋଇଥିଲା; ରାୟ ଯାଇଥିଲା ପ୍ରଥମ ଗଭର୍ଣ୍ଣିଂ ବଡ଼ି ସପକ୍ଷରେ । ବହିଷ୍କୃତ ପୂର୍ବ ଅଧ୍ୟକ୍ଷ ଶ୍ରୀ ସାହୁ ସମସ୍ତ ଆଶା ଭରସା ହରାଇ କଲେଜ କ୍ୟାମ୍ପସ୍‌ର ବସା ଘର ଛାଡ଼ି ସହରସ୍ଥ ସ୍ୱଗୃହକୁ ଚାଲିଯାଇଥିଲେ । ଗଭର୍ଣ୍ଣିଂ ବଡ଼ି ଓ ଷ୍ଟାଫ୍ କାଉନ୍‌ସିଲ୍ କଲେଜକୁ ସରକାରୀ କରିବା ପାଇଁ ପ୍ରସ୍ତାବମାନ ଗୃହୀତ କରାଇ ନେଇଥିଲେ । ଯେଉଁ ସରକାରୀ ଚାକିରିକୁ ଏକଦା ମୁଁ ପ୍ରତ୍ୟାଖ୍ୟାନ କରିଥିଲି, ପରିସ୍ଥିତି ଚାପରେ ବାଧ୍ୟ ହୋଇ ସେହି ଚାକିରି କରିବା ପାଇଁ ଉକ୍ତ ପ୍ରସ୍ତାବ ଅଙ୍ଗୀକାର କଲି । ସରକାରୀ ସ୍ତରରେ ପ୍ରସ୍ତାବଟି ଅନୁମୋଦିତ ହେବାର ସୂଚନା ମିଳିଲା । ରାଜ୍ୟ ସରକାର ସେହି ଲକ୍ଷ୍ୟରେ ସରକାରୀ

କଲେଜରୁ ଅଧ୍ୟାପକ ଶ୍ରୀ ତ୍ରିଲୋଚନ ମିଶ୍ରଙ୍କୁ ୧୯୭୧ ମସିହା ଆରମ୍ଭରେ କଲେଜ ଅଧକ୍ଷ ରୂପେ ନିଯୁକ୍ତି ଦେଇ ପଠାଇଲେ । ପ୍ରଫେସର ନାଥ ବଡ଼ ସାଧ-ସାଧନା କରି ଦଳ ଛଡ଼ାଇବା କାର୍ଯ୍ୟଟି ସଂପନ୍ନ କରିଥିଲେ, କଉ ମାଛ ଧରିବାରେ ଆଉ କିଛି ଅସୁବିଧା ନ ଥିଲା । ମାଘ ମାସ ଶୀତର ଜଡ଼ତା ଊଣା ହୋଇ ଯାଇଥିଲା, ଫଗୁଣର ବାସନ୍ତିକା ଅବତରଣରେ ଆଉ ବୈଚିତ୍ର୍ୟ କ'ଣ ଥିଲା ? ୧୯୭୧ ମସିହା ମାର୍ଚ୍ଚ ମାସରୁ ଅଧ୍ୟାପକ ମିଶ୍ରଙ୍କର ଅଧକ୍ଷତାରେ ବିଧିବଦ୍ଧ ଭାବେ କଲେଜଟି ସରକାରୀ ହୋଇଗଲା । ତାହା କିନ୍ତୁ ପ୍ରସଙ୍ଗାନ୍ତର ।

## ଯଉବନ-ଜଳ-କଲ୍ଲୋଳ

ସଂସ୍କୃତରେ ଗୋଟିଏ ସୂକ୍ତି ରହିଛି : ଯୌବନ, ଧନସଂପତ୍ତି, ପ୍ରଭୁତ୍ୱ ଓ ଅବିବେକିତା, ଏଥିରୁ ପ୍ରତ୍ୟେକଟି କ୍ଷତିକାରକ ବା ଅନିଷ୍ଟର ମୂଳ କାରଣ । ଯେଉଁ ବ୍ୟକ୍ତିଠାରେ ଏ ଚାରିଟିଯାକ ଏକାଠି ହୋଇଥାଏ, ସେ ମଣିଷପଣରୁ ଗଲା ବୋଲି ଜାଣ ! ସୂକ୍ତିଟି ମଧ୍ୟରେ କିଛି ସତ୍ୟତା ଥିଲେ ହେଁ, ଏହା ଏକ ଅତିକଥନ ବୋଲି ମନେ ହୁଏ । ଅବିବେକିତା ମଣିଷ ପକ୍ଷରେ କ୍ଷତିକାରକ ନିଶ୍ଚୟ । କିନ୍ତୁ ଯୌବନ, ଧନସଂପତ୍ତି ଓ ପ୍ରଭୁତ୍ୱ ସବୁବେଳେ ସବୁ କ୍ଷେତ୍ରରେ ଅନିଷ୍ଟକର ହୋଇ ନ ଥାଏ । ଯୌବନ ଓ ଧନସଂପତ୍ତି ବ୍ୟକ୍ତି ତଥା ସମାଜର କାର୍ଯ୍ୟରେ ଲାଗିଥାଏ ବା ଉପକାର କରିଥାଏ ବହୁ କ୍ଷେତ୍ରରେ । ଯୌବନ ହୋଇପାରେ ଅଳ୍ପକାଳ ସ୍ଥାୟୀ, ଧରାଯାଉ ମଣିଷ ଜୀବନର ଅଠର ବର୍ଷ ବୟସରୁ ଅଠତିରିଶ ବର୍ଷ ବୟସ ପର୍ଯ୍ୟନ୍ତ । ଏହି କାଳ ତ ମଣିଷର ଶକ୍ତି, ସାହସ ପ୍ରକାଶ ପାଇବାର କାଳ, ଉଦ୍ଦାମ କର୍ମପ୍ରବଣତାର ସମୟ ! ବିଶେଷତଃ ଏତିକିବେଳେ ମଣିଷ ଉତ୍ତାଳ ସମୁଦ୍ରକୁ ଲମ୍ଫ ଦେଇପାରେ, ହିଂସ୍ର ଜୀବଜନ୍ତୁଙ୍କୁ ସାମନା କରିପାରେ, ବୀର ଦର୍ପରେ ଲଢ଼େଇ କରିପାରେ ଶତ୍ରୁ ସହିତ । ସେହିପରି ପ୍ରଭୁତ୍ୱର ମଧ୍ୟ ଆବଶ୍ୟକତା ରହିଛି ଆପଣା ପରିବାରରେ, ସମାଜରେ ଓ ରାଷ୍ଟ୍ରରେ । ପରିବାର ଓ ସମାଜରେ ମୁଖିଆ ଲୋକ ନ ରହିଲେ, ଗଣତନ୍ତ୍ର ଶାସନରେ ନେତା ନ ରହିଲେ, କାମ ଚଳିବ କିପରି ? ବସ୍ତୁତଃ ପ୍ରଭୁତ୍ୱ ଓ ନେତୃତ୍ୱ ମଧ୍ୟରେ ଦୂରତ୍ୱ ଅତ୍ୟନ୍ତ ଊଣା । ଜଣେ ବ୍ୟକ୍ତି ଯେଉଁମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବ, ସେମାନଙ୍କ ମନ ବୁଝି ହୃଦୟବତ୍ତାର ସହ କାର୍ଯ୍ୟ କଲେ, କିଛି ଅସୁବିଧା ନାହିଁ । କବି ରାଧାନାଥ ରାୟଙ୍କ କାବ୍ୟର ଏକ ଶ୍ଳୋକ ଏହି ପ୍ରସଙ୍ଗରେ ଉଲ୍ଲେଖନୀୟ – 'ଶିଖି ନାହିଁ ଚିହ୍ନିବାକୁ ପର ମନ, ସେ କି ପ୍ରଭୁ ପଣକୁ ଭାଜନ !'

ଯୌବନରୁ ଯୁବକ, ଯୁବକରୁ 'ଯୁବଲେଖକ ସମ୍ମେଳନ', ଯାହା ସହିତ ମୁଁ ବିଂଶ ଶତାବ୍ଦୀର ଅଷ୍ଟମ ଦଶକ ଆରମ୍ଭରୁ ସଂପୃକ୍ତ ହୋଇଥିଲି । ସେତେବେଳେ ମୋର ବୟସ ପ୍ରାୟ ଚାଳିଶ । ମୋତେ ଆପଣ ଯୁବକ କହିବେ କି ? ତଥାପି ୧୯୭୧ ମସିହା ଫେବୃୟାରୀ ମାସ ନଅ ତାରିଖରେ କନ୍ଧମାଳ ଜିଲ୍ଲାର ସଦର ମହକୁମା ଫୁଲବାଣୀଠାରେ ଅନୁଷ୍ଠିତ ସମ୍ମେଳନର ସପ୍ତମ ବାର୍ଷିକ ଅଧିବେଶନରେ ମୋତେ ସଭାପତି ଭାବରେ ନିର୍ବାଚିତ କରାଗଲା । ସଂପାଦକ ଭାବରେ ନିର୍ବାଚିତ ହେଲେ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ । ପାଟଶାଣୀ କିନ୍ତୁ ଯୁବ କବି । ମୋର ଯେତେଦୂର ମନେ ପଡୁଛି, ସେତେବେଳେ ସେ କଟକ ଆଇନ କଲେଜରେ ଅଧ୍ୟୟନରତ ଥିଲେ । ଆଉ ମୁଁ ଭଦ୍ରକ ପ୍ରାଇଭେଟ୍ କଲେଜରେ ପ୍ରାୟ ପନ୍ଦର ବର୍ଷର ଅଭିଜ୍ଞତାସଂପନ୍ନ ଅଧ୍ୟାପକ । 'ଯୁବ ଲେଖକ ସମ୍ମେଳନ'ର ଅନ୍ୟତମ ପ୍ରତିଷ୍ଠାତା ସଦସ୍ୟ ଶ୍ରୀ ନରସିଂହ ନନ୍ଦ ଲେଖିଛନ୍ତି, ''ବୟସ ନୁହେଁ, ଚିନ୍ତାଧାରାର ଯୁବତ୍ୱକୁ ହିଁ ଏ ସଂସ୍ଥା ସ୍ୱାଗତ କରିବ । କାରଣ ଯୁବ ଶବ୍ଦର ଅର୍ଥ ହିଁ ନୂତନ ଏବଂ ନୂତନ ଚିନ୍ତାଧାରାକୁ ସର୍ବଦା ସ୍ୱାଗତ କରିବା ଓ ଆଗ୍ରହୀ ହେବା ଏକ ଚିରନ୍ତନ ମାନବୀୟ ଧର୍ମ ।'' (ଓଡ଼ିଆ ଯୁବ ଲେଖକ ସମ୍ମେଳନ ସ୍ମରଣିକା, ୧୯୭୧-୭୨)

ଏଠାରେ 'ଓଡ଼ିଆ ଯୁବ ଲେଖକ ସମ୍ମେଳନ' ସଂପର୍କରେ କିଛି ସୂଚନା ଦେବା ଲୋଡ଼ା ପଡୁଛି । ଏହାର ଭ୍ରୂଣ କଟକ ଓ ପୁରୀର 'ରବିବାସରୀୟ ସାହିତ୍ୟ ସଂସଦ'ରେ ନିହିତ । ସୁପରିଚିତ ପ୍ରଜାତନ୍ତ୍ର ପ୍ରଚାର ସମିତିର 'ବିଷୁବ ମିଳନ' ସାରସ୍ୱତ ସମାବେଶରେ ଯୁବ ଲେଖକମାନଙ୍କୁ ଉପଯୁକ୍ତ ସ୍ଥାନ ଦିଆଯାଉ ନ ଥିବା ଧାରଣା ଘେନି କେତେକ କବି ଓ ଲେଖକ ଏହି ସାହିତ୍ୟ ସଂସଦ ଗଠନ କରିଥିଲେ; ସେମାନଙ୍କ ମଧ୍ୟରେ ଥିଲେ ସର୍ବଶ୍ରୀ ଅନ୍ନଦା ପ୍ରସାଦ ରାୟ, କୈଳାସ ଲେଙ୍କା, ଭଗବାନ ନାୟକ ବର୍ମା, ଗୁରୁ ମହାନ୍ତି, ସତ୍ୟ ମହାପାତ୍ର, ମହେଶ୍ୱର ମୂଳିଆ ପ୍ରମୁଖ । ଭୁବନେଶ୍ୱରସ୍ଥ ଗୋଦାବରୀଶ ସାହିତ୍ୟ ସଂସଦର କେତେକ ସଦସ୍ୟ ଓ ପୁରୀର ସମାଜସେବୀ ମୁରାରି ତ୍ରିପାଠୀଙ୍କ ସହଯୋଗରେ ଏମାନେ 'ଓଡ଼ିଆ ଯୁବ ଲେଖକ ସମ୍ମେଳନ' ଗଠନ କରି ପୁରୀର ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ତାହାର ପ୍ରଥମ ଅଧିବେଶନ ସମାରୋହ ସହକାରେ ଅନୁଷ୍ଠିତ କରାଇଲେ ।

ଯୁବ ଲେଖକ ସମ୍ମେଳନ ନିଖିଳ ଉତ୍କଳ ସ୍ତରୀୟ ଏକ ସଂସ୍କୃତି-ପ୍ରତିଷ୍ଠାନ । ଏଥିରେ କବି-ଲେଖକଙ୍କ ସହିତ ଚିତ୍ରଶିଳ୍ପୀ, ସଙ୍ଗୀତ ସାଧକମାନେ ମଧ୍ୟ ସଭ୍ୟ ଭାବରେ ଯୋଗ ଦେଇଥିଲେ । କେତେକ ସାହିତ୍ୟ-ସଂସ୍କୃତିପ୍ରେମୀ ବି ଅଂଶଗ୍ରହଣ କରୁଥିଲେ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ ସାଧନ ଥିଲା ଏହାର ଲକ୍ଷ୍ୟ ବା ଆଭିମୁଖ୍ୟ । ଉକ୍ତ ଲକ୍ଷ୍ୟକୁ ବାସ୍ତବ ରୂପରେଖ ଦେବା ନିମନ୍ତେ ନିମ୍ନଲିଖିତ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା --

(କ) ଓଡ଼ିଆ ଲେଖକ ଲେଖିକାମାନଙ୍କ ମଧ୍ୟରେ ଭାବଗତ ସଂହତି ସ୍ଥାପନ ।

(ଖ) ବିଭିନ୍ନ ପ୍ରାନ୍ତୀୟ ଭାଷାର ସାହିତ୍ୟିକମାନଙ୍କ ସହିତ ଭାବବିନିମୟ ଓ ସମ୍ବନ୍ଧ ସ୍ଥାପନ ।

(ଗ) ଓଡ଼ିଆ ଭାଷା-ସାହିତ୍ୟର ଗବେଷଣା ।

(ଘ) ପୁସ୍ତକ ଓ ପତ୍ରିକା ପ୍ରକାଶନ ।

(ଙ) ପାଠାଗାର ସ୍ଥାପନ ।

(ଚ) କୃତି ସାହିତ୍ୟିକ ଓ କଳାକାରମାନଙ୍କୁ ଉପାୟନ ପ୍ରଦାନ ଏବଂ ଦୁଃସ୍ଥ ସାହିତ୍ୟିକଙ୍କୁ ସାହାଯ୍ୟ ପ୍ରଦାନ ।

(ଛ) ବିଭିନ୍ନ ସମୟରେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ବନ୍ଧରେ ଆଲୋଚନାଚକ୍ର, ସଭା ଓ ସମ୍ମିଳନୀ ଆଦିର ଆୟୋଜନ ।

(ଜ) ଅନ୍ୟାନ୍ୟ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ସହଯୋଗ ସ୍ଥାପନ ।

(ଝ) ଓଡ଼ିଆ ସାହିତ୍ୟର ପାଠକ ବୃଦ୍ଧି ନିମନ୍ତେ ବିଶେଷ ଉଦ୍ୟମ

(ଞ) ବିଭିନ୍ନ ଅଞ୍ଚଳରେ ଅନୁଷ୍ଠାନର ଶାଖା ସ୍ଥାପନ ।

ଯୁବ ଲେଖକ ସମ୍ମେଳନର ପ୍ରତିଷ୍ଠାତା ସଭ୍ୟମାନେ କିଛି ଉଚ୍ଚାଶା ପୋଷଣ ପୂର୍ବକ ଏହି କାର୍ଯ୍ୟକ୍ରମ ପ୍ରସ୍ତୁତ କରିଥିଲେ । କିନ୍ତୁ ଏହି କାର୍ଯ୍ୟକ୍ରମ ମଧ୍ୟରୁ ଅଧିକାଂଶ ରୂପାୟିତ ବା ଫଳବତୀ ହୋଇପାରି ନାହିଁ । ଏହାହିଁ ବିଡ଼ମ୍ବନାର ବିଷୟ । ପ୍ରାୟ ପନ୍ଦର ବର୍ଷ ପ୍ରତିଷ୍ଠାନଟି ସକ୍ରିୟ ଭାବରେ କାର୍ଯ୍ୟ କଲା ପରେ ଏହା ଦିଗ୍‌ଭ୍ରଷ୍ଟ ହୋଇଯାଇଛି । ପ୍ରତିଷ୍ଠାତା ସଦସ୍ୟମାନଙ୍କ ମଧ୍ୟରୁ କେତେକ ଗତାୟୁ ହୋଇଛନ୍ତି, ଆଉ କେତେକ ନିଷ୍କ୍ରିୟ ହୋଇ ବସିଯାଇଛନ୍ତି । ପ୍ରତି ବର୍ଷ କାର୍ଯ୍ୟକାରୀ ସମିତି ବଦଳି ଯାଉଥିବାରୁ କର୍ମକର୍ତ୍ତାମାନେ କୌଣସି ଦୀର୍ଘକାଳୀନ ସାହିତ୍ୟ-କର୍ମର ରୂପାୟନ କରିପାରୁ ନାହାନ୍ତି । ପୁଣି, ଏହାର ଏକ ସ୍ଥାୟୀ ଅଫିସ୍ ବା କାର୍ଯ୍ୟାଳୟ ନାହିଁ । କର୍ମକର୍ତ୍ତାମାନେ ସମ୍ମେଳନର କାଗଜପତ୍ର ନିଜ ନିଜ ପକେଟ୍‌ରେ ଧରି କାର୍ଯ୍ୟ କରୁଥାଆନ୍ତି । ସେହି ପକେଟ୍‌ରେ ମଧ୍ୟ ଥାଏ ପ୍ରତିଷ୍ଠାନର ପଇସାପତ୍ର । ଅର୍ଥାତ୍ ଏହାର କୌଣସି ସ୍ଥାୟୀ ପାଣ୍ଠି ନଥିଲା । ବାର୍ଷିକ ସମ୍ମେଳନ ପୂର୍ବରୁ ଚାନ୍ଦା ଆକାରରେ କିମ୍ବା ସ୍ମରଣିକା ଆଦିରେ ପ୍ରକାଶିତ ବିଜ୍ଞାପନ ସୂତ୍ରରୁ ଯାହା କିଛି ଟଙ୍କା ପଇସା ମିଳିଥାଏ, ତାହା ସେହି ବାର୍ଷିକ ଉତ୍ସବରେ ହିଁ ଖର୍ଚ୍ଚ ହୋଇଯାଏ । ତା'ପରେ ବର୍ଷସାରା କର୍ମକର୍ତ୍ତାମାନେ ହାତଗୁଡ଼ୁ ଖାଇ ଗଣ୍ଡିଲି ବହିବାରେ ଲାଗି ଥାଆନ୍ତି । ଏହିସବୁ କାରଣରୁ ଏବେ ଯୁବ ଲେଖକ ସମ୍ମେଳନର କାର୍ଯ୍ୟକ୍ରମ ଶିଥିଳ ହୋଇଯାଇଛି । ବର୍ତ୍ତମାନ ପ୍ରତିଷ୍ଠାନଟି ଏକପ୍ରକାର ନିଷ୍କ୍ରିୟ ।

୧୯୭୧ ମସିହାରେ ମୁଁ 'ଓଡ଼ିଆ ଯୁବ ଲେଖକ ସମ୍ମେଳନ'ର ଦାୟିତ୍ୱ ଗ୍ରହଣ କରିବା ପୂର୍ବରୁ ଏହାର ଭଦ୍ରକ ଅଧିବେଶନ ବେଳୁ ଏହା ସହିତ ସଂପର୍କ ସ୍ଥାପନ କରିଥିଲି । ଏହା ଭିତରକୁ ମୋତେ ଟାଣିଥିଲେ ପ୍ରତିଷ୍ଠାନର ଅନ୍ୟତମ ପ୍ରତିଷ୍ଠାତା-ସଦସ୍ୟ ଶ୍ରୀ ଭଗବାନ ନାୟକ ବର୍ମା । ମୋ ପୂର୍ବରୁ ସମ୍ମେଳନର କର୍ମକର୍ତ୍ତା (ସଭାପତି ଓ ସଂପାଦକ) ଥିଲେ ନିମ୍ନମତେ ।

| ଅଧିବେଶନ | ସ୍ଥାନ ଓ କାଳ | ସଭାପତି | ସଂପାଦକ |
|---|---|---|---|
| ପ୍ରଥମ | ପୁରୀ-୧୯୬୫ | ଅଖିଳମୋହନ ପଟ୍ଟନାୟକ | ସତ୍ୟ ମହାପାତ୍ର |
| ଦ୍ୱିତୀୟ | ଭୁବନେଶ୍ୱର-୧୯୬୬ | ରାମନାଥ ପଣ୍ଡା | କୈଳାସ ଲେଙ୍କା |
| ତୃତୀୟ | ଭଦ୍ରକ-୧୯୬୭ | ଜୀବନାନନ୍ଦ ପାଣି | ଭଗବାନ ନାୟକ ବର୍ମା |
| ଚତୁର୍ଥ | ସମ୍ବଲପୁର-୧୯୬୮ | ରଜନୀକାନ୍ତ ଦାସ | ପ୍ରଫୁଲ୍ଲ କୁମାର ତ୍ରିପାଠୀ |
| ପଞ୍ଚମ | ବଲାଙ୍ଗୀର-୧୯୬୯ | ବ୍ରଜନାଥ ରଥ | ପୂର୍ଣ୍ଣାନନ୍ଦ ଦାନୀ |
| ଷଷ୍ଠ | ବ୍ରହ୍ମପୁର-୧୯୭୦ | ନାରାୟଣ ଶତପଥୀ | ଶରତ ପଟ୍ଟନାୟକ |
| ସପ୍ତମ | ଫୁଲବାଣୀ-୧୯୭୧ | କୃଷ୍ଣଚରଣ ବେହେରା | ପ୍ରସନ୍ନ କୁମାର ପାଟଶାଣୀ |

ଭଦ୍ରକରୁ ମୋ ସହିତ କବି କମଳାକାନ୍ତ ଲେଙ୍କା, କବି ଶ୍ରୀମତୀ କମଳ କୁମାରୀ ରାଉତ, ପ୍ରାବନ୍ଧିକ ଶ୍ରୀ ବୀରେନ୍ଦ୍ର କୁମାର ନାୟକ ପ୍ରମୁଖ ଅଳ୍ପ କେତେଜଣ ଫୁଲବାଣୀ ସମ୍ମେଳନକୁ ଯାଇଥିଲେ । ପାହାଡ଼ିଆ ଘାଟୀ ପରେ ଘାଟୀ ଡେଇଁ ଯେତେବେଳେ ମୁଁ ଅରଣ୍ୟ ପର୍ବତ-ଘେରା ଫୁଲବାଣୀରେ ପହଞ୍ଚିଲି, ମନରେ ଅପୂର୍ବ ଆନନ୍ଦ ଜାତ ହେଲା । ପୂର୍ବରୁ କେବେ ସେ ଅଞ୍ଚଳକୁ ଯାଇ ନ ଥିଲି । ଏହାର ଠିକ୍ ଦଶ ବର୍ଷ ପରେ ୧୯୮୧ ମସିହାରେ ଫୁଲବାଣୀ ଯେ ମୋର କର୍ମକ୍ଷେତ୍ର ହେବ, ଏକଥା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଯାହାହେଉ, ୧୯୭୧ ମସିହା ବେଳକୁ ଭଦ୍ରକ କଲେଜର ଅଶାନ୍ତ ଉଷ୍ମ ପରିସ୍ଥିତି ଥଣ୍ଡା ପଡ଼ିଯାଇଥାଏ । କଲେଜଟିର ପରିଚାଳନା ଦାୟିତ୍ୱ ରାଜ୍ୟ ସରକାରଙ୍କୁ ହସ୍ତାନ୍ତର କରାଯିବାର ସ୍ଥିର ହୋଇଥାଏ । ତେଣୁ ମୁଁ ନିଶ୍ଚିନ୍ତ ହୋଇ ସାହିତ୍ୟ କର୍ମରେ ମନ ଦେଲି । ଫୁଲବାଣୀଠାରେ ମୁଁ ଯୁବ ଲେଖକ ସମ୍ମେଳନର ଦାୟିତ୍ୱ ନେଲା ବେଳେ ଭାବି ନ ଥିଲି ଯେ ମୋତେ ଏତେ ବଡ଼ ଗୋଟାଏ କାର୍ଯ୍ୟଭାର ତୁଲାଇବାକୁ ପଡ଼ିବ । କିନ୍ତୁ ସମ୍ମେଳନର କାର୍ଯ୍ୟକାରୀ ସମିତିର ସଭ୍ୟ-ସଭ୍ୟାମାନେ, ବିଶେଷତଃ ସଂପାଦକ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ ମୋର ଦାୟ ଦାୟିତ୍ୱ ଊଣା କରିବାରେ ବେଶ୍ ସାହାଯ୍ୟ ସହଯୋଗ କଲେ । ସେହିବର୍ଷ କାର୍ଯ୍ୟକାରୀ ସମିତିର ସଭ୍ୟ-ସଭ୍ୟାମାନେ ଥିଲେ – ଉପସଭାପତି ବୀଣାପାଣି

ମହାନ୍ତି, ଯୁଗ୍ମ ସଂପାଦକ ଧୀରେନ ଆଚାର୍ଯ୍ୟ ଓ ଗୌରୀପ୍ରସାଦ ମହାପାତ୍ର, କୋଷାଧ୍ୟକ୍ଷ ମୁକୁନ୍ଦପ୍ରସାଦ ମହାନ୍ତି, ସଭ୍ୟବୃନ୍ଦ ଶୁଭେନ୍ଦୁ ମୁଣ୍ଡ, ଶୈଳବାଳା ରଥ, ଶିଶିର ମହାପାତ୍ର, ଧ୍ରୁବ ଖୁଣ୍ଟିଆ, ଗଣେଶ୍ୱର ମହାପାତ୍ର, ଅଶ୍ୱିନୀ କୁମାର ମିଶ୍ର, ତୁଳସୀ ଓଝା, ନବୀନ ସୁନ୍ଦର ସୁବୁଦ୍ଧି, ଭାନୁପ୍ରକାଶ ଯୋଶୀ, ଦଣ୍ଡପାଣି ମିଶ୍ର, ହୁସେନ ରବି ଗାନ୍ଧୀ, ରାୟଶ୍ରୀ ଉପେନ୍ଦ୍ର ପ୍ରସାଦ ନାୟକ, ଦେବେନ୍ଦ୍ରନାଥ ମାନସିଂହ, ରବି ଦାସ ଓ ସୁବୋଧ ଦାସ । ଏହା ବ୍ୟତୀତ ଥିଲେ କୋଡ଼ିଏ ଜଣ ବିଶେଷ ନିମନ୍ତ୍ରିତ ସଭ୍ୟ – ବ୍ରଜନାଥ ରଥ, ପୂର୍ଣ୍ଣାନନ୍ଦ ଦାନୀ, କୃଷ୍ଣଚନ୍ଦ୍ର ମିଶ୍ର, ବିଚିତ୍ରାନନ୍ଦ କର, ଗୁରୁ ମହାନ୍ତି, ଅବନୀ କୁମାର ବରାଳ, କୈଳାସ ଲେଙ୍କା, ସଦାଶିବ ଦାସ, ନାରାୟଣ ଶତପଥୀ, ମନୋରମା ବିଶ୍ୱାଳ, ଦିଲୀପ କୁମାର ଦୀକ୍ଷିତ, ଏକାଦଶୀ ପ୍ରସାଦ ବୋଇତାର, ଭଗବାନ ନାୟକବର୍ମା, ନିମାଇଁ ପଟ୍ଟନାୟକ, କମଳାକାନ୍ତ ଲେଙ୍କା, ସତ୍ୟପ୍ରିୟ ମହାପାତ୍ର, ଗୌର ପଟ୍ଟନାୟକ, ଶରତ ପଟ୍ଟନାୟକ, ବାସୁଦେବ ପାଠୀ ଓ ସୌରୀନ୍ଦ୍ର ବାରିକ ।

ଦୀର୍ଘ ପ୍ରସ୍ଥ ସମଗ୍ର ରାଜ୍ୟରୁ କବି ଲେଖକମାନେ ଯୁବ ଲେଖକ ସମ୍ମେଳନରେ ପ୍ରତିନିଧିତ୍ୱ କରୁଥିଲେ । ଏହା କାର୍ଯ୍ୟକାରୀ ସମିତିର ସଭ୍ୟ ସଭ୍ୟାଙ୍କ ତାଲିକାରୁ ଯେ – କେହି ଲକ୍ଷ୍ୟ କରିପାରିବେ । ବହୁ ଅଣ-ସଭ୍ୟ ମଧ୍ୟ ସମ୍ମେଳନର ବିଭିନ୍ନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରୁଥିଲେ । ଆମର କାର୍ଯ୍ୟକ୍ରମ କେବଳ ରାଜ୍ୟର ଉପକୂଳବର୍ତ୍ତୀ ଅଞ୍ଚଳରେ ସୀମିତ ନଥିଲା; ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଓଡ଼ିଶାରେ ବି ପରିବ୍ୟାପ୍ତ ହୋଇଥିଲା । ବ୍ରହ୍ମପୁର, ଖୋର୍ଦ୍ଧା, ଭଦ୍ରକ, ସମ୍ବଲପୁର, ବଲାଙ୍ଗୀର, ବୁର୍ଲା, ଝାରସୁଗୁଡ଼ା, ରାଜଗାଙ୍ଗପୁର, ରାଉରକେଲା, ବ୍ରଜରାଜନଗର, ବରଗଡ଼, ବାରିପଦା ପ୍ରଭୃତି ସ୍ଥାନରେ କାର୍ଯ୍ୟକାରୀ ସମିତିର ବୈଠକ, କବିତା ପାଠୋତ୍ସବ ଓ ଆଲୋଚନାଚକ୍ର ଇତ୍ୟାଦି ଅନୁଷ୍ଠିତ ହୋଇଥିଲା । ଏହି ଆସରଗୁଡ଼ିକରେ ସମ୍ମେଳନର ସଭ୍ୟ-ସଭ୍ୟାମାନଙ୍କ ବ୍ୟତୀତ ସ୍ଥାନୀୟ କବି-ଲେଖକମାନେ ମଧ୍ୟ ଯୋଗ ଦେଉଥିଲେ ।

ଏହି ପ୍ରସଙ୍ଗରେ ଗୋଟିଏ କୌତୂହଳପ୍ରଦ ଘଟଣା ଉଲ୍ଲେଖ କରିବି । ବରଗଡ଼ର ଟାଉନ୍ ହଲ୍‌ରେ ଯୁବ ଲେଖକ ସମ୍ମେଳନର ସହଯୋଗୀ ସଂସ୍ଥା 'ବାସନ୍ତୀ ସାହିତ୍ୟ ସଂସଦ' ପକ୍ଷରୁ ଏକ କବିତା ପାଠୋତ୍ସବ ହେଉଥାଏ । କୌଣସି କାର୍ଯ୍ୟ ଉପଲକ୍ଷେ ସେତେବେଳେ ବରଗଡ଼ ଯାଇଥିବା ଡକ୍ଟର ହରେକୃଷ୍ଣ ମହତାବ ଆସରରେ ଉପସ୍ଥିତ ଥିଲେ । ଆମର କେତେକ ସଭ୍ୟ-ସଭ୍ୟାଙ୍କ ସମେତ ବହୁ ସ୍ଥାନୀୟ କବି ଓଡ଼ିଆ ଭାଷାର କବିତାମାନ ପାଠ କରିଥିଲେ । ସଭାପତି ଅଭିଭାଷଣରେ ମୁଁ ମନ୍ତବ୍ୟ ପ୍ରକାଶ କରିଥିଲି ଯେ – ଦୁଃଖର କଥା, ଏହି ଆସରରେ ସ୍ଥାନୀୟ କବିମାନେ କବିତା ପାଠ କରିଥିଲେ ମଧ୍ୟ ଜଣେ କେହି ହେଲେ ସମ୍ବଲପୁରୀ ବା କୋଶଲୀ ଭାଷାର କବିତା

ପାଠ କଲେ ନାହିଁ । କିଛି ସମଲପୁରୀ କବିତା ଏଠାରେ ପଢ଼ା ଯାଇଥିଲେ, ମୁଁ ବଡ଼ ଖୁସି ହୋଇଥାଆନ୍ତି । ଡକ୍ଟର ମହତାବ ଦର୍ଶକମଣ୍ଡଳୀର ଆଗ ଧାଡ଼ିରେ ବସିଥାଆନ୍ତି । କବିତାର ଆସର ଶେଷ ହେଲା ପରେ ସେ ମୋତେ କହିଲେ – ଏ କି କଥା ହୋ ! ସମଲପୁରୀ ଭାଷାର କବିତା ପଢ଼ାଯିବ କାହିଁକି ? ଆପଣ କ'ଣ ଓଡ଼ିଶାକୁ ଭାଷା ଦିଗରୁ ଭାଗ ଭାଗ କରିବାକୁ ଚାହାନ୍ତି ?

ମହତାବଙ୍କ ଭଳି ଜଣେ ଜନନାୟକଙ୍କ ତୁଣ୍ଡରୁ ଏ କଥା ଶୁଣି ମୁଁ କ୍ଷଣକ ପାଇଁ ନିର୍ବାକ୍ ହୋଇ ରହିଗଲି । ତା'ପରେ କହିଲି – ଯେଉଁ ଭାଷାରେ ଜଣେ କବି କଥାବାର୍ତ୍ତା କରୁଛି, ସେହି ଭାଷାରେ ଭାବ ପ୍ରକାଶ କରିବାରେ ଅସୁବିଧା କ'ଣ ? ଏହାଦ୍ୱାରା ରାଜ୍ୟ ଭାଗ ହେବାର ପ୍ରଶ୍ନ ଉଠୁଛି କାହିଁକି ? ଆମର କଥାବାର୍ତ୍ତା ସେଦିନ ଆଉ ଅଗ୍ରଗତି କଲା ନାହିଁ । ଏ ଘଟଣାର ଛତିଶ ବର୍ଷ ପରେ ଏବେ କୋଶଲୀ ବା ସମଲପୁରୀ ଭାଷା-ସାହିତ୍ୟର ସ୍ଥିତି କ'ଣ, ତାହା ସଚେତନ ବୁଦ୍ଧିଜୀବୀମାନେ ହୃଦୟଙ୍ଗମ କରୁଥିବେ ।

ସେଦିନ ରାତିରେ ମୁଁ ବରଗଡ଼ରୁ ବଲାଙ୍ଗୀର ଗଲି । ସାଙ୍ଗରେ ଥାଆନ୍ତି ଅଧ୍ୟାପକ କ୍ଷେତ୍ରବାସୀ ନାୟକ, କବି ଶ୍ରୀନିବାସ ଉଦ୍‌ଗାତା ପ୍ରମୁଖ କେଇଜଣ ବନ୍ଧୁ । କ୍ଷେତ୍ରବାସୀ ସେତେବେଳେ ବଲାଙ୍ଗୀର କଲେଜରେ ଅଧ୍ୟାପନା କରୁଥାଆନ୍ତି । ମଇ ମାସରେ ପଶ୍ଚିମ ଓଡ଼ିଶାରେ ଭୀଷଣ ଗରମ, ଗୁଳୁଗୁଳି । ତଥାପି ରାତି ଅଧରେ ଏକ କାର୍‌ରେ ବଲାଙ୍ଗୀର ଯାତ୍ରା ମନ୍ଦ ଲାଗିଲା ନାହିଁ । ବରଗଡ଼ ପଞ୍ଚାୟତ କଲେଜ ପରିସରରେ ଅଧ୍ୟାପକ ବନ୍ଧୁ ଫନୀ ମହାନ୍ତିଙ୍କ ବ୍ୟବସ୍ଥାରେ ଗୋଟିଏ ଛୋଟ ବଖରାରେ ମୁଁ ରହୁଥିଲି । ବଲାଙ୍ଗୀର ଗଲାବେଳେ ସେହି ବଖରାର ଝରକା ବନ୍ଦ ନ କରି ଘରେ ଚାବି ଦେଇ ଚାଲିଗଲି । ଦୁଇଦିନ ପରେ ବଲାଙ୍ଗୀରରୁ ବାହୁଡ଼ା ପଥରେ କବିତୀର୍ଥ ବରପାଲିରେ ଓଳିଟିଏ ଅଟକି ଗଲି । ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ସାଧନାପୀଠ ବୁଲି ଦେଖିବାର ଲୋଭ କ'ଣ ସମ୍ବରଣ କରିହୁଏ ? ସେଠାରେ କବିପୁତ୍ର ଭଗବାନ ବାବୁଙ୍କ ଆତିଥ୍ୟ, ଆଦର ଆପ୍ୟାୟନ ମୋର ଅପାସୋରା ହୋଇ ରହିଛି । ବରପାଲିରୁ ଯାଇ ବରଗଡ଼ରେ ପହଞ୍ଚି ଦେଖିଲା ବେଳକୁ ମୁଁ ରହିଥିବା ବଖରାର ଝରକା ବାଟେ କେହି ଜଣେ ମୋର ପେଣ୍ଟ ସାର୍ଟ ସବୁ ଚୋରି କରି ନେଇଛି । ଏ ଅସୁବିଧା, ଲାଜର କଥା କହିବି କାହାକୁ ? ପିନ୍ଧିଥିବା ଖଣ୍ଡିଏ ପେଣ୍ଟ ଓ ଖଣ୍ଡିଏ ସାର୍ଟରେ ମୁଁ ବରଗଡ଼ରୁ ସମ୍ବଲପୁର ଆସିଲି । ସମ୍ବଲପୁରଠାରେ 'ଶୀତଳ ଷଷ୍ଠୀ' ପର୍ବ ଉପଲକ୍ଷେ 'କୋଶଳ ସାହିତ୍ୟ ସମାଜ' ପକ୍ଷରୁ ପାଟଣା ହାଉସ୍‌ରେ ଏକ ସାହିତ୍ୟ ସମାରୋହର ଆୟୋଜନ କରାଯାଇଥାଏ । ଏଥିରେ ଓଡ଼ିଆ ଉପନ୍ୟାସ ଓ ସମାଲୋଚନା ସାହିତ୍ୟ ସଂପର୍କରେ ଦୁଇଟି ସଂପାନର କାର୍ଯ୍ୟକ୍ରମ ଥାଏ । ମୁଁ ଉପନ୍ୟାସ ପ୍ରସଙ୍ଗରେ ମୋର ବକ୍ତବ୍ୟ

ଉପସ୍ଥାପନ କରିଥିଲି । ଡକ୍ଟର ପ୍ରଫୁଲ୍ଲ କୁମାର ପତି, ଅଧ୍ୟାପକ ବାଳକୃଷ୍ଣ ଶତପଥୀ, ଯୋଗେଶ ଚନ୍ଦ୍ର ପଣ୍ଡା, ରତ୍ନାକର ଚଇନି ପ୍ରମୁଖ ଆଲୋଚନାରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ସେଦିନ 'କୋଶଳ ସାହିତ୍ୟ ସମାଜ' ଦ୍ୱାରା ଆୟୋଜିତ ସାହିତ୍ୟିକମାନଙ୍କର ପଙ୍‌କ୍ତି ଭୋଜନ ମୋର ଅବିସ୍ମରଣୀୟ ହୋଇ ରହିଛି । ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଓ ମଧୁସୂଦନ ପତି 'କୋଶଳ ସାହିତ୍ୟ ସମାଜ'ର ଯଥାକ୍ରମେ ସଭାପତି ଓ ସଂପାଦକ ଭାବରେ ନୁହେଁ, ଏକ ବିଦଗ୍ଧ ସାହିତ୍ୟିକ ଗୋଷ୍ଠୀର ଅତିଥିବତ୍ସଳ ସ୍ନେହୀ ଅଭିଭାବକ ହିସାବରେ ଆମ୍ଭମାନଙ୍କର ପରିଚର୍ଯ୍ୟା କରିଥିଲେ । ସେଥର ସମ୍ବଲପୁରରେ ଦିନକ ରହଣି ଭିତରେ ସାହିତ୍ୟିକ ସତ୍ୟନାରାୟଣ ବହିଦାର ଓ ସଙ୍ଗୀତଶାସ୍ତ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ ସହିତ ଅନ୍ତରଂଗ ଆଳାପ ଆଲୋଚନା ହୋଇଥିଲା ।

ଭଦ୍ରକ କଲେଜର ପରିଚାଳନା ଦାୟିତ୍ୱ ସରକାରଙ୍କୁ ହସ୍ତାନ୍ତର ହୋଇଗଲା ପରେ ୧୯୭୧ ମସିହା ଅଗଷ୍ଟ ମାସରେ ମୋତେ ମୟୂରଭଞ୍ଜର ବାରିପଦାସ୍ଥ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜକୁ ବଦଳି କରାଗଲା । ମୟୂରଭଞ୍ଜ ସହିତ ମୁଁ ଅପରିଚିତ ନ ଥିଲି । ମୋର ବହୁ ଛାତ୍ର ସେହି ଜିଲାର ବିଭିନ୍ନ ସ୍କୁଲ୍‌ରେ ଶିକ୍ଷକତା କରୁଥିଲେ । ଶଶୁରାଳୟ ମଧ୍ୟ ସେହି ଜିଲ୍ଲାରେ । ତେଣୁ ଯୁବ ଲେଖକ ସମ୍ମେଳନ ପାଇଁ କାର୍ଯ୍ୟ କରିବାକୁ କିଛି ଅସୁବିଧା ହେଲା ନାହିଁ । ବାରିପଦାରେ ସମ୍ମେଳନର ଅଷ୍ଟମ ବାର୍ଷିକ ଅଧିବେଶନ କରିବାକୁ ପୂର୍ବରୁ ସ୍ଥିର ହୋଇଥିଲା । ତା' ସାଙ୍ଗକୁ ସିଦ୍ଧାନ୍ତ ହୋଇଥିଲା କଲିକତାରେ ପୂର୍ବାଞ୍ଚଳ ଲେଖକ ସମ୍ମେଳନ କରାଇବାକୁ । ଏହା ଥିଲା ଏକ ଅଭିନବ ଯୋଜନା । ଭାରତର ପୂର୍ବାଞ୍ଚଳରେ ଥିବା ଅସମୀୟା, ବଙ୍ଗଳା, ହିନ୍ଦୀ, ମୈଥିଳୀ, ଓଡ଼ିଆ, ଉର୍ଦ୍ଦୁ ଆଦି ଭାଷାର କବି ଲେଖକମାନଙ୍କୁ ଘେନି ଏକ ସମ୍ମେଳନ କରାଇବାର ପରିକଳ୍ପନା । କଲିକତାରେ ରହୁଥିବା ଏଡ୍‌ଭୋକେଟ୍ ଶ୍ରୀଚରଣ ବରାଳ ସଭାପତି ଏବଂ ଶ୍ରୀ ଦେବେନ୍ଦ୍ରନାଥ ମାନସିଂହ ସଂପାଦକ ଥାଇ ଏକ ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା । କେତେକ ଓଡ଼ିଆ ମାନ୍ୟଗଣ୍ୟ ଲୋକ ଓ ବଙ୍ଗୀୟ ଶିଷ୍ଟ ବିଶିଷ୍ଟ ବ୍ୟକ୍ତି ଅଭ୍ୟର୍ଥନା ସମିତିର ସଦସ୍ୟ ଥିଲେ । କଲିକତାର ଶ୍ରୀଶିକ୍ଷାୟତନ ହଲ୍‌ରେ ୧୯୭୨ ମସିହା ଫେବୃୟାରୀ ୨୬-୨୭ ତାରିଖରେ ଦୁଇଦିନ ବ୍ୟାପୀ ପୂର୍ବାଞ୍ଚଳ ଲେଖକ ସମ୍ମେଳନ ଅନୁଷ୍ଠିତ ହେଲା । ତତ୍‌କାଳୀନ କେନ୍ଦ୍ରମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ସମ୍ମେଳନ (Eastern Zone Writers' Conference) ଉଦ୍‌ଘାଟନ କରିଥିଲେ । ଉଦ୍‌ଘାଟନ ଉତ୍ସବରେ ସଭାପତିତ୍ୱ କରିଥିଲେ ସୁପରିଚିତ ବଙ୍ଗୀୟ ଲେଖକ ସତ୍ୟକାନ୍ତ ଗୁହ ଏବଂ ମୁଖ୍ୟ ଅତିଥି ଭାବେ ଉଦ୍‌ବୋଧନ ଦେଇଥିଲେ ଶ୍ରୀ ଅଶୋକ କୁମାର

ସରକାର । ଶ୍ରୀ ଅନ୍ନଦାଶଙ୍କର ରାୟ (ଉଭୟ ଓଡ଼ିଆ ଓ ବଙ୍ଗଳା ସାହିତ୍ୟସ୍ରଷ୍ଟା) ମୁଖ୍ୟ ବକ୍ତାର ଆସନ ଗ୍ରହଣ କରିଥିଲେ । ବକ୍ତା ଭାବରେ ନିଜ ନିଜର ବକ୍ତବ୍ୟ ଉପସ୍ଥାପନ କରିଥିଲେ ସର୍ବଶ୍ରୀ ଦକ୍ଷିଣାରଂଜନ ବୋଷ, ବିଷ୍ଣୁକାନ୍ତ ଶାସ୍ତ୍ରୀ ଓ ହୋମେନ୍ ବରଗୁହାଁଇ । ପରିପୂର୍ଣ୍ଣ ସଭାକକ୍ଷ ମଧ୍ୟରେ ସମାରୋହ ସହକାରେ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା ।

ଏହି ସମ୍ମେଳନରେ ଚାରିଗୋଟି ସଂପାନ ଅନୁଷ୍ଠିତ ହେଲା । ପ୍ରଥମ ସଂପାନର ବିଷୟ ଥିଲା – ପୂର୍ବାଞ୍ଚଳ ସାହିତ୍ୟର ନିର୍ଦ୍ଦିଷ୍ଟ ସଂପର୍କ ସହ ଆଧୁନିକ କବିତା । ଏଥିରେ ସଭାପତିତ୍ୱ କରିଥିଲେ କବି ସଚ୍ଚି ରାଉତରାୟ ଏବଂ ମୁଖ୍ୟ ଅତିଥି ଥିଲେ କବି ସୁଭାଷ ମୁଖୋପାଧ୍ୟାୟ । ଓଡ଼ିଶା, ବଙ୍ଗଳା, ଆସାମ, ମଣିପୁର, ତ୍ରିପୁରା ଆଦି ରାଜ୍ୟର କେତେକ କବି ସଂପାନରେ ପ୍ରବନ୍ଧ ପାଠ କରିଥିଲେ, ଆଉ କେତେକ ଆଲୋଚନାରେ ଅଂଶଗ୍ରହଣ କରିଥିଲେ । ଦ୍ୱିତୀୟ ସଂପାନର ବିଷୟ - ପୂର୍ବାଞ୍ଚଳ ସାହିତ୍ୟର ନିର୍ଦ୍ଦିଷ୍ଟ ସଂପର୍କ ସହ ଆଧୁନିକ କଥା ସାହିତ୍ୟ । ସଭାପତିତ୍ୱ କରିଥିଲେ ଶ୍ରୀ କିଶୋରୀଚରଣ ଦାସ ଓ ମୁଖ୍ୟ ଅତିଥି ଥିଲେ ଶ୍ରୀ ସନ୍ତୋଷ କୁମାର ଘୋଷ । ନିଜ ନିଜ ରାଜ୍ୟର କଥାସାହିତ୍ୟ ଘେନି ଏଥିରେ କେତେକ ଲେଖକ ପ୍ରବନ୍ଧ ଉପସ୍ଥାପନ କରିଥିଲେ ଏବଂ କେତେଜଣ ଆଲୋଚନାରେ ଭାଗ ନେଇଥିଲେ । ତୃତୀୟ ସଂପାନର ବିଷୟ ଥିଲା – ପୂର୍ବାଞ୍ଚଳର ଆଧୁନିକ ନାଟ୍ୟକର୍ମରେ ପରୀକ୍ଷା-ନିରୀକ୍ଷା । ଏଥିରେ ସଭାପତିତ୍ୱ କରିଥିଲେ ଡକ୍ଟର ଭବେନ୍ଦ୍ରନାଥ ସାଇକିଆ ଏବଂ ମୁଖ୍ୟ ଅତିଥି ଥିଲେ ଶ୍ରୀ ମନୋରଂଜନ ଦାସ । ବିଭିନ୍ନ ଭାଷାଭାଷୀ ଲେଖକମାନେ ପ୍ରବନ୍ଧ ପାଠ ଓ ଆଲୋଚନା ମାଧ୍ୟମରେ ନିଜ ନିଜ ସାହିତ୍ୟରେ ଚାଲିଥିବା ନାଟ୍ୟକର୍ମର ପରୀକ୍ଷା ନିରୀକ୍ଷା ସଂପର୍କରେ ସୂଚନା ଦେଇଥିଲେ । ଚତୁର୍ଥ ସଂପାନର ପ୍ରସଙ୍ଗ-ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକର ଲେଖକଙ୍କ ମଧ୍ୟରେ ପାରସ୍ପରିକ ଯୋଗାଯୋଗର ସମସ୍ୟା । ଏଥିରେ ଅଧ୍ୟାପକ ଚିନ୍ତାମଣି ବେହେରା ସଭାପତିତ୍ୱ କରିଥିଲେ ଏବଂ ମୁଖ୍ୟ ଅତିଥି ଥିଲେ ଶ୍ରୀ ଶରତ କୁମାର କର । ଏଥିରେ ସେହିପରି ବିଭିନ୍ନ ଭାଷାର କବି-ଲେଖକମାନେ ପ୍ରବନ୍ଧ ପାଠ କରିଥିଲେ ତଥା ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।

ସଂପାନଗୁଡ଼ିକ ବ୍ୟତୀତ କବିତା ପାଠୋତ୍ସବ ଥିଲା ସମ୍ମେଳନର ଏକ ଆକର୍ଷଣୀୟ ଘଟଣା । ଏଥିରେ ପୂର୍ବାଞ୍ଚଳ ଭାଷାଗୁଡ଼ିକର ବହୁ କବି ଅଂଶଗ୍ରହଣ କରିଥିଲେ । ସଭାପତି ଥିଲେ ଶ୍ରୀ ମନୀନ୍ଦ୍ର ରାୟ ଏବଂ ମୁଖ୍ୟ ଅତିଥି ଶ୍ରୀ ପି. ଲାଲ । କବି ସୀତାକାନ୍ତ ମହାପାତ୍ରଙ୍କ ଦ୍ୱାରା ପାଠୋତ୍ସବ ଉନ୍ମୋଚିତ ହୋଇଥିଲା । ଡକ୍ଟର ଜଗନ୍ନାଥ ଚକ୍ରବର୍ତ୍ତୀ ଓ ଡକ୍ଟର ଆଇ.ଆର୍. ବାବୁସିଂହ (ମଣିପୁର) ମୁଖ୍ୟବକ୍ତା ଭାବରେ ଯୋଗଦାନ କରିଥିଲେ ।

ସମ୍ମେଳନର ଉଦ୍‌ଯାପନ ଉତ୍ସବରେ ମୁଁ ପୌରୋହିତ୍ୟ କରିଥିଲି । ମୁଖ୍ୟ ଅତିଥି ଭାବେ ଉଦ୍‌ବୋଧନ ଦେଇଥିଲେ ଶ୍ରୀ ପ୍ରେମେନ୍ଦ୍ର ମିତ୍ର । ମୁଖ୍ୟବକ୍ତା ଭାବରେ ଥିଲେ ଶ୍ରୀ ବିନୋଦ ନାୟକ, ଶ୍ରୀ କଲ୍ୟାଣ ମଲ୍ଲ ଲୋଧା ଓ ଶ୍ରୀ ଦିଲୀପ କୁମାର ସେନଗୁପ୍ତ । ଦୁଇଦିନିଆ ସମ୍ମେଳନର ସମସ୍ତ ଅତିଥି ଓ ଅଂଶଗ୍ରହଣକାରୀଙ୍କ ଉଦ୍ଦେଶ୍ୟରେ ସାଧୁବାଦ ଅର୍ପଣ କରିଥିଲେ ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ । ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକର ଭାଷା-ସାହିତ୍ୟର କାବ୍ୟସାହିତ୍ୟ, କଥାସାହିତ୍ୟ ଓ ନାଟ୍ୟକର୍ମ ସଂପର୍କରେ ବିଭିନ୍ନ ତଥ୍ୟ ଓ ସୂଚନା ଏହି ସମ୍ମେଳନରୁ ଜଣାପଡ଼ିଥିଲା । ସବୁଠାରୁ ଉଲ୍ଲେଖନୀୟ କଥା ହେଉଛି – ପୂର୍ବାଞ୍ଚଳର ଏହି ପାଞ୍ଚ ଛଅଟି ଭାଷାର କବି-ଲେଖକମାନଙ୍କ ସୌହାର୍ଦ୍ଦ୍ୟପୂର୍ଣ୍ଣ ବନ୍ଧୁମିଳନ ଓ ଅନ୍ତରଂଗ ଆଳାପ ଆଲୋଚନା, ଯାହା ତତ୍‌ପୂର୍ବରୁ ସମ୍ଭବ ହୋଇ ନ ଥିଲା ଏବଂ ତତ୍‌ପରେ ବି ହୋଇଥିବାର ଜଣାପଡ଼ି ନାହିଁ । ଅବଶ୍ୟ କଲିକତାରେ ପ୍ରବାସୀ ଓଡ଼ିଆମାନଙ୍କ ସମ୍ମେଳନ କେତେଥର ଅନୁଷ୍ଠିତ ହୋଇଛି, ତହିଁରୁ ଗୋଟିକରେ (୧୯୫୪ ମସିହାରେ ଟିଟାଗଡ଼ଠାରେ ଅନୁଷ୍ଠିତ) ମୁଁ ଯୋଗଦେବାର ସୁଯୋଗ ପାଇଥିଲି ।

ଏହି ସମ୍ମେଳନ ଉପଲକ୍ଷେ ଏକ କ୍ଷୁଦ୍ରପତ୍ରିକା (ଲିଟିଲ୍ ମେଗାଜିନ୍) ତଥା ଚାରୁକଳାର ପ୍ରଦର୍ଶନୀ ଉଦ୍‌ଘାଟନ କରିଥିଲେ ଶ୍ରୀହର୍ଷ ମିଶ୍ର । ସଂଗୀତ ଶିଳ୍ପୀ ଅକ୍ଷୟ ମହାନ୍ତି, ଶାନ୍ତନୁ ମହାପାତ୍ର ଏବଂ ନୃତ୍ୟ ଶିଳ୍ପୀ ପଙ୍କଜ ଦାସ, ବିଜୟ ଲକ୍ଷ୍ମୀ ଦାସ, ସଂଗୀତା ମହାପାତ୍ର ପ୍ରମୁଖ ମନୋରଂଜନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ । ପ୍ରହରାଜ ସତ୍ୟନାରାୟଣ ନନ୍ଦଙ୍କ ସଂପାଦନାରେ ଇଂରାଜୀ ଭାଷାରେ ସ୍ମରଣିକାଟିଏ ମଧ ପ୍ରକାଶ ପାଇଥିଲା । ସମ୍ମେଳନର ସାଫଲ୍ୟ ସଂପର୍କରେ ସେତେବେଳେ କଲିକତା, ଗୌହାଟୀ ଓ ପାଟନାରୁ ପ୍ରକାଶିତ ବିଭିନ୍ନ ପତ୍ରପତ୍ରିକାରେ ମତ ଓ ମନ୍ତବ୍ୟ ପ୍ରକାଶ ପାଇଥିଲା । ଉଦାହରଣ ସ୍ୱରୂପ – କଲିକତାର ବିଖ୍ୟାତ 'ଦେଶ' ପତ୍ରିକାର ୪.୩.୧୯୭୨ ତାରିଖ ସଂଖ୍ୟାରେ ଲେଖା ଯାଇଥିଲା – "ପୂର୍ବାଞ୍ଚଳର ବିଭିନ୍ନ ରାଜ୍ୟର ଲେଖକ ଓ ବୁଦ୍ଧିଜୀବୀ ଏହି ଅନୁଷ୍ଠାନରେ ଉପସ୍ଥିତ ଥିଲେ । ଏହି ସମ୍ମେଳନ ଏକ ଐତିହାସିକ ଘଟଣା ବୋଲି କଥିତ ହେଉଛି । ପୂର୍ବରୁ ଏ ପ୍ରକାର କୌଣସି ସମ୍ମେଳନ ଅନୁଷ୍ଠିତ ହୋଇନାହିଁ । ଏହି ସମ୍ମେଳନର ଉଦ୍ୟୋକ୍ତା ବଙ୍ଗାଳୀମାନେ ନୁହନ୍ତି । ଓଡ଼ିଶାର ତରୁଣ ଲେଖକ ସମ୍ମେଳନ ହେଉଛି ଏହାର ଆୟୋଜନକାରୀ । ସେହି ତରୁଣ ଲେଖକମାନେ ବିଭିନ୍ନ ରାଜ୍ୟର ପ୍ରତିନିଧିମାନଙ୍କ ସୁବିଧା ପାଇଁ କଲିକତାକୁ ସମ୍ମେଳନର କେନ୍ଦ୍ରସ୍ଥଳ ରୂପେ ବାଛିଛନ୍ତି । ଏଠାରେ ପ୍ରସଙ୍ଗତଃ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶାର ଏହି ତରୁଣ ଲେଖକ ସମ୍ମେଳନ୍ ଏକ ଜୀବନ୍ତ ପ୍ରତିଷ୍ଠାନ । ପ୍ରତିବର୍ଷ ଏମାନେ ନିଜ ରାଜ୍ୟରେ ଅତ୍ୟନ୍ତ ସଫଳତାର ସହ

ସାହିତ୍ୟ ସମ୍ମେଳନର ଆୟୋଜନ କରିଥାଆନ୍ତି । ଏଥର ସେମାନେ ନିଜ ସମ୍ମେଳନର ସୀମା ବିସ୍ତୃତ କରିଛନ୍ତି ।’’

ପୂର୍ବାଞ୍ଚଳ ଲେଖକ ସମ୍ମେଳନର ଉଦ୍‌ଘାଟନ ଉତ୍ସବରେ ମୁଁ ପ୍ରାରମ୍ଭିକ ଭାଷଣ ପ୍ରଦାନ କରିଥିଲି । ଭାଷଣଟି ଓଡ଼ିଆ ଓ ଇଂରାଜୀ ଭାଷାରେ ଲିଖିତ ଓ ମୁଦ୍ରିତ ହୋଇଥିଲା; ତହିଁରୁ ମୁଁ ଓଡ଼ିଆ ଅଂଶତକ ମଞ୍ଚରେ ପାଠ କରିଥିଲି । ଏଠାରେ ଭାଷଣଟିର ଅଂଶବିଶେଷ ଉଦ୍ଧାର କରିବା ଉଚିତ ମନେ କରୁଛି – ‘‘ସୁଧୀବୃନ୍ଦ, ପ୍ରାଚୀ ହିଁ ପ୍ରାଚୀନ ଏବଂ ସେହି ପ୍ରାଚୀନରେ ଅକିଞ୍ଚନ-ଭାବ କିଛି ନାହିଁ । ଆମ୍ଭେମାନେ ପୂର୍ବାଞ୍ଚଳର ଏକ ମହାନ୍ ଗୌରବୋଜ୍ଜ୍ୱଳ ପରମ୍ପରାର ପୃଷ୍ଠପଟରେ ଦଣ୍ଡାୟମାନ । ଆଜକୁ ପ୍ରାୟ ଦୁଇ ହଜାର ବର୍ଷ ତଳେ ସମ୍ରାଟ ଅଶୋକ ଏହି ଭୂଖଣ୍ଡରେ ବ୍ୟକ୍ତି-ବ୍ୟକ୍ତି ମଧ୍ୟରେ, ଜାତି-ଜାତି ମଧ୍ୟରେ ଯେଉଁ ସହନଶୀଳତା, ମୈତ୍ରୀ ଭାବ ଓ ସାଂସ୍କୃତିକ ସଂହତି ପ୍ରଚାର କରି ଯାଇଥିଲେ, ତାହା ଭାରତ ଇତିହାସରେ ଏବେ ସୁଦ୍ଧା ଆଦର୍ଶ ସ୍ଥାନୀୟ ହୋଇ ରହିଛି । ପରେ ପରେ ସେହି ମହାନ୍ କଲ୍ୟାଣକର ପଥରେ ପଥିକ ହୋଇଛନ୍ତି ସିଦ୍ଧ ନାଥଯୋଗୀ ବୃନ୍ଦ, ପ୍ରେମାବତାର ଶ୍ରୀଚୈତନ୍ୟ, ମହାପୁରୁଷ ଶଙ୍କର ଦେବ, ସନ୍ଥ କବୀର, ଗୋସ୍ୱାମୀ ତୁଳସୀ ଦାସ ଏବଂ ଅନ୍ୟ କେତେକ ସଂହତି-ମନ୍ତ୍ରର ଉଦ୍‌ଗାତା । ଗୋଟିଏ ଶୁଚିଶୁଭ୍ର ସୂତ୍ରରେ ବିଭିନ୍ନ ସମାଜ ଓ ବିଭିନ୍ନ ଜାତିକୁ ସେମାନେ ସଂହତ କରି ବାନ୍ଧି ରଖିଛନ୍ତି ଯୁଗ ଯୁଗ କାଳ । ଆମ୍ଭେମାନେ ସେମାନଙ୍କର ଉତ୍ତରସାଧକ ରୂପେ ସେହି ପବିତ୍ର ମୈତ୍ରୀ ଓ ସଂହତି ମନ୍ତ୍ର ବହନ କରି ଚାଲିଛୁଁ ଏବଂ ତାହାର ଐତିହାସିକ ଉଦ୍‌ଘୋଷଣା ନିମିତ୍ତ ଆଜି ଏଠାରେ ସମବେତ ହୋଇଛୁଁ ।

‘‘ଶିଳ୍ପୀ ହିସାବରେ କବି ବା ଲେଖକ ସମାଜ-ଭେଦ ମାନେ ନା, ଜାତିଭେଦ ବା ଧର୍ମଭେଦ ସ୍ୱୀକାର କରେନା । ତାହାର ତୃତୀୟ ନୟନ ସମକ୍ଷରେ ଏକମାତ୍ର ଧର୍ମ – ଜୀବନ, ଏକମାତ୍ର ଜାତି – ମଣିଷ । ତେଣୁ ସେ ଯେଉଁ ‘ପଞ୍ଚମ ବେଦ’ ସାହିତ୍ୟ ସୃଷ୍ଟି କରେ, ତହିଁରେ ସେହି ଏକମାତ୍ର ଧର୍ମ, ଏକମାତ୍ର ଜାତିର କଥା ହିଁ ପ୍ରକାଶ କରେ, ଏବଂ ସେହି ସାହିତ୍ୟରେ ଉଚ୍ଚନୀଚ, ବ୍ରାହ୍ମଣ ଶୂଦ୍ର ସମସ୍ତେ ପ୍ରବେଶାଧିକାର ପାଇଥାଆନ୍ତି । ସେଥିପାଇଁ ଜାତୀୟ ସଂହତି ପ୍ରତିଷ୍ଠାରେ ସାହିତ୍ୟ-ସଂସ୍କୃତିର ଦାନ ସର୍ବାଗ୍ରେ ସ୍ୱୀକାର୍ଯ୍ୟ, ଭାବଜୀବୀ ସାହିତ୍ୟସାଧକର ଭୂମିକା ସର୍ବପ୍ରଥମେ ଉଲ୍ଲେଖନୀୟ । ଏଠାରେ ସନ୍ଥ କବୀରଙ୍କର ଗୋଟିଏ ଚମତ୍କାର କଥା ମନେ ପଡ଼ୁଛି । ହିନ୍ଦୁ-ମୁସଲମାନଙ୍କ ମଧ୍ୟରେ ମୈତ୍ରୀ ସ୍ଥାପନ ପାଇଁ କବୀର ଉଦ୍ୟମ କରିବାରୁ ଦୁଇଟିଯାକ ଗୋଷ୍ଠୀର ଲୋକେ ଯାଇ ବାଦ୍‌ଶାହାଙ୍କ ନିକଟରେ ନାଲିସ୍ କଲେ । କବୀର ତଲବ୍ ପାଇ ବାଦ୍‌ଶାହାଙ୍କ ଦରବାରକୁ ଯାଇ ଦେଖନ୍ତି – ମୁଦେଇଙ୍କ ଲାଗି ନିର୍ଦ୍ଦିଷ୍ଟ ଗୋଟିଏ କାଠଗଡ଼ା ମଧ୍ୟରେ ମହନ୍ତ ଓ

ମୋଲ୍ଲା ଏକା ସାଙ୍ଗରେ ଦଣ୍ଡାୟମାନ । କବୀର କହିଲେ, ଆରେ ମୁଁ ତ ଠିକ୍ ଏଇୟା ଚାହୁଁଥିଲି ! କିନ୍ତୁ ତୁମେମାନେ ଗୋଟାଏ ଭୁଲ କଲ । ହିଂସା, ବିଦ୍ୱେଷ ମଧ୍ୟରେ ତୁମେମାନେ ଆଜି ମିଳିତ ହୋଇଛ । ମୁଁ ଚାହୁଁଥିଲି – ପ୍ରେମ ଓ ମୈତ୍ରୀ ଭାବରେ ମିଳିତ ହୁଅ, ବାଦଶାହାଙ୍କ ଦରବାରରେ ନୁହେଁ, ଭଗ୍‌ବାନଙ୍କ ସିଂହାସନ ତଳେ ଏକତ୍ର ହୁଅ !

''ବାସ୍ତବିକ ହିଂସା, ବିଦ୍ୱେଷ, ଦ୍ୱନ୍ଦ୍ୱ, କୂଟଚକ୍ରାନ୍ତର ଶୀତଳ ଯୁଦ୍ଧ ମଧ୍ୟରେ ଯେଉଁ ମିଳନ ବା ସହାବସ୍ଥାନ, ତାହାର ମୂଲ୍ୟ କ'ଣ ? ତାହା ବା କେତେ ଦିନ ପାଇଁ ? ତାହାର ଅସାରତା ଇତିହାସରେ କେତେଥର ପ୍ରତିପାଦିତ ହୋଇଯାଇଛି; ନିକଟରେ ବାଂଲାଦେଶ ମଧ୍ୟ ତାହା ହିଁ ପ୍ରମାଣ କରିଛି । ଏ କ୍ଷେତ୍ରରେ ଯାହା ସ୍ଥାୟୀ ଓ ଶୁଭଙ୍କର, ତାହା ହେଉଛି ନାଡ଼ିର ଯୋଗ, ହୃଦୟର ବନ୍ଧନ । ଭାବଗତ ସଂହତି ବା ସାଂସ୍କୃତିକ ସଂହତିର ମହତ୍ତ୍ୱ ଏଇଥିରୁ ସ୍ପଷ୍ଟ ସୂଚିତ ହୁଏ । ଏହି ପ୍ରକାର ସଂହତି ହିଁ ଜାତୀୟ ସଂହତିର ଭିତ୍ତି ସ୍ତମ୍ଭ । xxxx

''ଆସନ୍ତୁ, ଆଜି ଆମ୍ଭେମାନେ ଏହି ପବିତ୍ର ମିଳନ-ମଣ୍ଡପରେ ଜୀବନ ସହିତ ଜୀବନର ଯୋଗ ସ୍ଥାପନ କରିବା ! ବିଭିନ୍ନ ଭାଷାର ଅପ୍ରାକୃତିକ ପ୍ରାଚୀର ଲଂଘନ କରି ପରସ୍ପର ମଧ୍ୟରେ ଭାବ ବିନିମୟ କରିବା । ସାହିତ୍ୟ ସୃଷ୍ଟି ମଧ୍ୟରେ ଆମେ ହେବା ସର୍ବତ୍ରଗାମୀ । ଓଡ଼ିଆ ଯୁବ ଲେଖକ ସମ୍ମେଳନ ଆନୁକୂଲ୍ୟରେ ଅନୁଷ୍ଠିତ ଏହି ବୈଠକ ଭଳି ପୁଣି ଆମ୍ଭେମାନେ ଏକତ୍ର ମିଳିତ ହେବା ବାରମ୍ବାର, ଭିନ୍ନ ଭିନ୍ନ ସ୍ଥାନରେ । ତାହା ଦ୍ୱାରା ଆମ୍ଭମାନଙ୍କ ହୃଦୟର ବନ୍ଧନ ଦୃଢ଼ କରିବା ସଂଗେ ସଂଗେ ଭାରତବର୍ଷର ଅଖଣ୍ଡତା ଓ ଜାତୀୟ ସଂହତିର ସୁରକ୍ଷା ଲାଗି ଯଥାସମ୍ଭବ ସହାୟତା କରିପାରିବା । xxx''

ଏହି ପୂର୍ବାଞ୍ଚଳ ଲେଖକ ସମ୍ମେଳନର ଅନୁଷ୍ଠାନ ହେତୁ ସେବର୍ଷ ଯୁବ ଲେଖକ ସମ୍ମେଳନର ବାର୍ଷିକ ଅଧିବେଶନ ବସିବାରେ ବିଳମ୍ବ ଘଟିଲା । ୧୯୭୨ ମସିହା ଏପ୍ରିଲ ମାସ ୭, ୮, ଓ ୯ ତାରିଖ ତିନିଦିନ ବ୍ୟାପୀ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଲା ବାରିପଦାର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ନଗରଠାରେ । ସେତେବେଳେ ମୟୂରଭଞ୍ଜର କଲେକ୍ଟର ଥାଆନ୍ତି କବି ସୀତାକାନ୍ତ ମହାପାତ୍ର । ତାଙ୍କର ସଭାପତିତ୍ୱରେ ଅଧିବେଶନର ଏକ ଅଭ୍ୟର୍ଥନା ସମିତି ଗଠିତ ହେଲା । ତହିଁରେ କାର୍ଯ୍ୟକାରୀ ସଭାପତି ଭାବରେ ଶ୍ରୀ ଗୋକୁଳ ଚନ୍ଦ୍ର ଶତପଥୀ, ଉପସଭାପତି ଭାବରେ ସର୍ବଶ୍ରୀ ପ୍ରମୋଦଚନ୍ଦ୍ର ଭଞ୍ଜଦେଓ, ଶ୍ରୀ ବିଜୟଭୂଷଣ ମିଶ୍ର ଓ ଶ୍ରୀ ଜଗନ୍ନାଥ ଦାସ, ସଂପାଦକ ଭାବରେ ଶ୍ରୀ ଲକ୍ଷ୍ମୀନାରାୟଣ ଦାସ, ଯୁଗ୍ମ ସଂପାଦକ ଭାବେ ଶ୍ରୀ ଆନନ୍ଦଶଙ୍କର ଦାସ ଓ ଶ୍ରୀ ପ୍ରତାପରୁଦ୍ର କର ଏବଂ କୋଷାଧ୍ୟକ୍ଷ ରୂପେ ଶ୍ରୀ ପୂର୍ଣ୍ଣଚନ୍ଦ୍ର ବିନ୍ଧାଣୀ କାର୍ଯ୍ୟ କରିଥିଲେ । ସଭ୍ୟ ଭାବରେ

ଥିଲେ ମୟୂରଭଞ୍ଜର ପନ୍ଦର ଜଣ ବିଶିଷ୍ଟ ବ୍ୟକ୍ତି । କାର୍ଯ୍ୟ ସୁପରିଚାଳନା ପାଇଁ ଖାଦ୍ୟପେୟ, ସାଜସଜ୍ଜା, ଅନୁସନ୍ଧାନ, ପତ୍ରପତ୍ରିକା ପ୍ରଦର୍ଶନୀ, ମୁଦ୍ରଣ ଓ ସ୍ମରଣିକା, ମନୋରଂଜନ, ମହିଳା ପ୍ରତିନିଧିଙ୍କ ଚର୍ଚ୍ଚା ଇତ୍ୟାଦି ଆଠଟି ଉପ-ସମିତି ଗଠିତ ହୋଇଥିଲା । ତିନିଦିନିଆ ଏହି ଅଧିବେଶନରେ ଉଦ୍‌ଘାଟନ, ଉଦ୍‌ଯାପନ, ସାଂଗଠନିକ ଆଲୋଚନା ଓ ନିର୍ବାଚନ କାର୍ଯ୍ୟ ବ୍ୟତୀତ/ପାଞ୍ଚଟି ବିଷୟରେ ସଂପାନ ଅନୁଷ୍ଠିତ ହେଲା; ଯଥା – 'ଲେଖକ ଓ ପାଠକ-ସମାଜ : ସଂପର୍କ ଓ ସହଯୋଗ', 'ଓଡ଼ିଆ ପତ୍ରପତ୍ରିକାର ବର୍ତ୍ତମାନ ସ୍ଥିତି ଓ ଭବିଷ୍ୟତ୍ ସମ୍ଭାବନା', 'ସାଂପ୍ରତିକ ସାହିତ୍ୟରେ ଚାରୁକଳାର ଭୂମିକା', 'ସାଂପ୍ରତିକ ନାଟକ ଓ ରଙ୍ଗମଞ୍ଚ' ଏବଂ 'ଗଣସାହିତ୍ୟ : କଣ ଓ କାହିଁକି ?' ଆଲୋଚନାରେ ତର୍କ ବିତର୍କ, ମତ ଖଣ୍ଡନ-ମଣ୍ଡନ ବେଶ୍ ଉଷ୍ମତା ଲାଭ କରିଥିଲା । କବିତା ପାଠୋତ୍ସବରେ ବହୁ ସଂଖ୍ୟକ ତରୁଣ ଓ ପ୍ରବୀଣ କବି ଅଂଶ ଗ୍ରହଣ କରିଥିଲେ । ସାଂଗଠନିକ ଆଲୋଚନା ଓ ନିର୍ବାଚନ ହୋଇଥିଲା ସରଗରମ । ଶେଷଦିନ ସନ୍ଧ୍ୟାରେ ନିମନ୍ତ୍ରିତ ଅତିଥି ଓ ସମ୍ମେଳନର ସଭ୍ୟ-ସଭ୍ୟାମାନଙ୍କ ଚିତ୍ତବିନୋଦନ ପାଇଁ ମୟୂରଭଞ୍ଜର ବିଖ୍ୟାତ ଛଉନାଚ ପ୍ରଦର୍ଶିତ ହୋଇଥିଲା ।

ଏହି ଅଷ୍ଟମ ଅଧିବେଶନରେ ମୋର ସଭାପତି-ଅଭିଭାଷଣ ମଧ୍ୟ ଥିଲା ଲିଖିତ ଓ ମୁଦ୍ରିତ । ତହିଁରୁ କିୟଦଂଶ ଏଠାରେ ଉଦ୍ଧାର କରୁଛି – ''ଜଣେ ବ୍ୟକ୍ତି ପକ୍ଷରେ ଆଠ ନଅଟି ବର୍ଷ ପୌଗଣ୍ଡ ବା କୈଶୋର କାଳ ହୋଇପାରେ । ମାତ୍ର ଗୋଟିଏ ସଚଳ ଓ ଜୀବନ୍ତ ଅନୁଷ୍ଠାନ ପକ୍ଷରେ ଆଠଟି ବର୍ଷ ଆତ୍ମପ୍ରତିଷ୍ଠା ତଥା ଆତ୍ମପ୍ରସାର ପାଇଁ ଯଥେଷ୍ଟ । ଅତୀତରେ ଆମର 'ପ୍ରାଚୀ ସମିତି' ବା 'ସବୁଜ ସାହିତ୍ୟ ସମିତି' ବିଧିବଦ୍ଧ ଅନୁଷ୍ଠାନ ହିସାବରେ ସ୍ୱଳ୍ପକାଳ କାର୍ଯ୍ୟ କରି ସାରସ୍ୱତ କ୍ଷେତ୍ରରେ ସୁସ୍ପଷ୍ଟ ମୁଦ୍ରାଙ୍କ ଥୋଇଦେଇ ଯାଇଛି । ପ୍ରଥମ ବିଶ୍ୱଯୁଦ୍ଧ ପରେ ୟୁରୋପର Avant-Garde ଆନ୍ଦୋଳନ ମାତ୍ର ଅଳ୍ପ କେତୋଟି ବର୍ଷ ମଧ୍ୟରେ ଯେଉଁ ଫଳଶ୍ରୁତି ପ୍ରଦାନ କରିଛି, ତାହାର ପ୍ରଭାବ ଗଭୀର ଓ ସୁଦୂରପ୍ରସାରୀ ହୋଇଛି । ଓଡ଼ିଆ ଯୁବ ଲେଖକ ସମ୍ମେଳନ ଏହି ସ୍ୱଳ୍ପକାଳ ମଧ୍ୟରେ କ'ଣ କରିଛି, ତାହା ବିଚାର କରିବେ ଅନ୍ୟମାନେ । ଆପଣା କୃତିତ୍ୱ ବିଷୟରେ ଆପେ କହି ବୁଲିବା ସୁନ୍ଦର ହେବ ନାହିଁ । କିନ୍ତୁ ଆମ୍ଭେମାନେ ଅବଶ୍ୟ ଆତ୍ମଦର୍ଶନ ଓ ଆତ୍ମସମୀକ୍ଷା କରି ପାରିବା, ନିଜ ପାଖରେ ନିଜ କାମର କୈଫିୟତ ମାଗି ପାରିବା । ତାହାଦ୍ୱାରା ଆମ୍ଭେମାନେ ନିଜର ଦୋଷତ୍ରୁଟି ସଂପର୍କରେ ସଚେତନ ହେବା ସଂଗେ ସଂଗେ ଭବିଷ୍ୟତ କାର୍ଯ୍ୟକ୍ରମ ପାଇଁ ନବ ପ୍ରେରଣା, ନୂତନ ଉନ୍ମାଦନା ଲାଭ କରିବା । ଆମର ସଂପାଦକଙ୍କ ବିବରଣୀକୁ ଆପଣମାନେ ସେହି ଦୃଷ୍ଟିରୁ ଗ୍ରହଣ କରିବା ପାଇଁ ମୋର ଅନୁରୋଧ ।

''ବନ୍ଧୁଗଣ, ଦଳବାନ୍ଧି ଅନୁଷ୍ଠାନ ଗଢ଼ି ଅଥବା ଏହିପରି ସଭା ସମ୍ମେଳନ କରି ସାହିତ୍ୟ ସୃଷ୍ଟି କରାଯାଇ ପାରେନା । ସାହିତ୍ୟ-ସୃଜନ ଉଦ୍ଦେଶ୍ୟରେ ଟ୍ରେଡ୍ ୟୁନିୟନ ଗଠନ ତ ଏକାବେଳେକେ ଅଚଳ ! ସୃଷ୍ଟି, ପ୍ରେମ ବା ପ୍ରଣୟ ପରି, ଏକକ ଓ ଅନନ୍ୟ କ୍ରିୟା । ସୃଷ୍ଟି କାର୍ଯ୍ୟରେ ସ୍ରଷ୍ଟା ବଡ଼ ଏକଲା ଓ ନିଃସଙ୍ଗ – ଉଚ୍ଚ ପର୍ବତ ଶୃଙ୍ଗ ଅଥବା ତୁଙ୍ଗ ମନ୍ଦିର ଚୂଡ଼ାପରି । କିନ୍ତୁ ପ୍ରେମ ଓ ପ୍ରଣୟ ବ୍ୟାପାରରେ ଯେପରି ଉଦ୍ଦୀପନ ବିଭାବମାନ ରହିଛି, ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ସେହିପରି ସଭା-ସମ୍ମେଳନମାନଙ୍କର ଆବଶ୍ୟକତା ଅଛି । ଆମ୍ଭେମାନେ ଅନୁଷ୍ଠାନ ଗଢ଼ି ସାହିତ୍ୟ ସୃଷ୍ଟି ପାଇଁ ଉପଯୁକ୍ତ ପରିବେଶ ତିଆରି କରିପାରିବା, ଲେଖାଲେଖି କରିବା ପାଇଁ ନିଜ ମଧ୍ୟରେ ଉତ୍ସାହ ଉଦ୍ଦୀପନା ଜାଗରୂକ କରିପାରିବା । ଓଡ଼ିଆ ଯୁବ ଲେଖକ ସମ୍ମେଳନ, ଗତ ଆଠ ବର୍ଷ କାଳ ଏ ଦିଗରେ କିଛି କରିଛି ବୋଲି ମୁଁ ନମ୍ରତାର ସହ କହିବି । ଏହି ଅନୁଷ୍ଠାନର ପ୍ରଚେଷ୍ଟାରେ ଏବେ ସମଗ୍ର ଓଡ଼ିଶା ବିଭିନ୍ନ ସାରସ୍ୱତ କାର୍ଯ୍ୟକ୍ରମ ଦ୍ୱାରା କିପରି ସ୍ପନ୍ଦନାୟିତ ହେଉଛି, ତାହା ଯେକୌଣସି ବ୍ୟକ୍ତି ଲକ୍ଷ୍ୟ କରିପାରିବେ ।

''ଜୀବନ ସଂପର୍କରେ ଆମ୍ଭମାନଙ୍କର ନିଜସ୍ୱ ସ୍ୱପ୍ନ ରହିଛି, ସମାଜ ସଂପର୍କରେ ଆମ୍ଭମାନଙ୍କର ନିର୍ଦ୍ଦିଷ୍ଟ ପରିକଳ୍ପନା ରହିଛି । ଶିଳ୍ପୀ ହିସାବରେ ଆମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକ ଏ ପୃଥିବୀକୁ ସୁନ୍ଦରତର କରି, ସମୃଦ୍ଧତର କରି ଗଢ଼ିବାକୁ ଚାହୁଁ, ଯେପରି ଚାହିଁଥିଲେ କାଳିଦାସ – ସେକ୍ସପିୟର, ଯେପରି ଚାହିଁଥିଲେ ଜଗନ୍ନାଥ ଦାସ – ଫକୀରମୋହନ । ସେଇଥି ଲାଗି ହିଁ ଆମ୍ଭେମାନେ ଲେଖୁଛୁଁ, ଶିଳ୍ପୀର ଜୀବନାଦର୍ଶ ସମସ୍ତଙ୍କ ମେଳରେ ପ୍ରସାର କରିବା ପାଇଁ ଲେଖନୀ ଧାରଣ କରିଛୁଁ । x x x

''ସାହିତ୍ୟର ମୁଖ୍ୟତଃ ଦୁଇଟି ଶକ୍ତି ରହିଛି । ଗୋଟିଏ ହେଉଛି ତାହାର 'ବିନୋଦିନୀ ଶକ୍ତି' ଏବଂ ଅପରଟି 'ଉଦ୍‌ବୋଧନୀ ଶକ୍ତି' । ଗୋଟିଏ ଗୌରୀ ହେଲେ, ଅନ୍ୟଟି ଦୁର୍ଗା – ପ୍ରଥମଟି ଆମକୁ ମୁଗ୍ଧ କରେ, ଦ୍ୱିତୀୟଟି ଉଦ୍‌ବୁଦ୍ଧ କରେ । ପ୍ରତ୍ୟେକ ଉନ୍ନତ ଉଚ୍ଚକୋଟୀର ସାହିତ୍ୟ-ସୃଷ୍ଟିରେ ଏହି ଉଭୟ ଶକ୍ତିର ସୁନ୍ଦର ସମନ୍ୱୟ ସାଧିତ ହୋଇଥାଏ । ଆମର ସାଂପ୍ରତିକ ସାହିତ୍ୟ-ସୃଷ୍ଟିରେ କିଛି 'ବିନୋଦିନୀ ଶକ୍ତି' ରହିଛି ସତ୍ୟ, କିନ୍ତୁ 'ଉଦ୍‌ବୋଧନୀ ଶକ୍ତି'ର ଘୋର ଅଭାବ୍ ପରିଲକ୍ଷିତ ହେଉଛି । ବର୍ତ୍ତମାନ ଆମର ଅଧିକାଂଶ କବି ଓ ଲେଖକ, ପାଠକ ସମାଜ ପାଇଁ ଆନନ୍ଦର ଆୟୋଜନରେ ସମର୍ଥ ହୋଇଥିଲେ ହେଁ, ଅଙ୍ଗୁଳିମେୟ କେତେଜଣ, ପାଠକପାଠିକାଙ୍କୁ ଉଦ୍‌ବୁଦ୍ଧ କରିବାରେ ସଫଳକାମ ହୋଇଛନ୍ତି । ଏହା ଏକ ଶୋଚନୀୟ ବ୍ୟାପାର । ଏହି ପରିସ୍ଥିତିରେ ଆମ୍ଭମାନଙ୍କର ମଧୁ ସ୍ୱପ୍ନର ଜୀବନ – ଉନ୍ନତ ପରିକଳ୍ପନାର ସମାଜ ଆମରି ଭିତରେ ହିଁ ସୀମାବଦ୍ଧ ହୋଇ ରହିଯାଉଛି । ପାଠକ ସମାଜରେ ସୁପ୍ରଚାରିତ ଓ ସୁପ୍ରସାରିତ

ହୋଇପାରୁ ନାହିଁ । କେତେକ କ୍ଷେତ୍ରରେ ପ୍ରଚାରିତ ଓ ପ୍ରସାରିତ ହେଉଥିଲେ ହେଁ, ତାହା ପାଠକପାଠିକାମାନଙ୍କୁ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରିପାରୁ ନାହିଁ ।''

ଅଷ୍ଟମ ବାର୍ଷିକ ଉତ୍ସବ ଉପଲକ୍ଷେ ସଭାସ୍ଥଳରେ ଏକ ପତ୍ରପତ୍ରିକା ଓ ପୁସ୍ତକ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା । ଦୁଇଟି ସ୍ମରଣିକା ମଧ୍ୟ ପ୍ରକାଶ ପାଇଥିଲା । ଗୋଟିଏ ଯୁବ ଲେଖକ ସମ୍ମେଳନ ପକ୍ଷରୁ ଏବଂ ଅନ୍ୟଟି ଅଭ୍ୟର୍ଥନା ସମିତି ତରଫରୁ । ସମ୍ମେଳନ ସ୍ମରଣିକା ପ୍ରାୟ ଅଢ଼େଇ ଶହ ପୃଷ୍ଠା ବିଶିଷ୍ଟ ଥିଲା । ଏଥିରେ ସମ୍ମେଳନ ସଂପାଦକ ପ୍ରସନ୍ନ କୁମାର ପାଟଶାଣୀଙ୍କ ବାର୍ଷିକ ବିବରଣୀ ସହ ଜିଲାଓ୍ୱାରି ସଭ୍ୟ ତାଲିକା ସ୍ଥାନିତ ହୋଇଥିଲା ଏବଂ ପ୍ରକାଶ ପାଇଥିଲା ଅଣତିରିଶ ଜଣ ଲେଖକ ଲେଖିକାଙ୍କର ପ୍ରବନ୍ଧାବଳୀ । ସେହିପରି ଅଭ୍ୟର୍ଥନା ସମିତିର ସ୍ମରଣିକାରେ ଶୋଭା ପାଇଥିଲା ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଏକ ପୂର୍ଣ୍ଣାବୟବ ଫଟୋଚିତ୍ର ଏବଂ ସଦ୍ୟ ଗତାୟୁ ହୋଇଥିବା (୩୦.୩.୧୯୭୧) ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କର ଏକ ଆବକ୍ଷ ଫଟୋଚିତ୍ର । ଏଥିରେ ବିଶେଷତଃ ମୟୂରଭଞ୍ଜର ବିଭିନ୍ନ ବିଭାବକୁ ଘେନି ନଅଟି ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ତାହା ମଧ୍ୟରେ ଥିଲା 'ମୟୂରଭଞ୍ଜ ଦର୍ଶନ' ଶୀର୍ଷକ ମୋର ଏକ କ୍ଷୁଦ୍ର ଆଲୋଚନା । ତହିଁରୁ କିଛି ଅଂଶ ଏଠାରେ ଉଦ୍ଧାର କରୁଛି – ''ପ୍ରଚୁର ଅରଣ୍ୟ ସଂପଦ ତଥା ଖଣିଜ ସଂପଦ ପରିପୂର୍ଣ୍ଣ ଏହି ଜିଲ୍ଲାରେ ବାର ଲକ୍ଷରୁ ଅଧିକ ଲୋକ ରହିଛନ୍ତି । ଜିଲ୍ଲାଟି ଆଦିବାସୀ-ବହୁଳ । ସେହି ଆଦିବାସୀଙ୍କ ମଧ୍ୟରୁ ସାନ୍ତାଳ ଓ କୋହ୍ଲଙ୍କ ସଂଖ୍ୟା ପ୍ରାୟ ସାଢ଼େ ଚାରି ଲକ୍ଷ ହେବ । ମୟୂରଭଂଜର ସଂସ୍କୃତିକୁ ଏହି ଆଦିବାସୀ ସଂପ୍ରଦାୟର ଅବଦାନ ଯଥେଷ୍ଟ ରହିଛି । ସେମାନଙ୍କ ସାମାଜିକ ରୀତିନୀତି, ଚାଲିଚଳଣି, ଧର୍ମବିଶ୍ୱାସ ସମସ୍ତଙ୍କର ଅନୁଧ୍ୟାନର ବିଷୟ । ପୂର୍ବରୁ ରାୟ ବାହାଦୁର ଏସ୍.ସି. ରାୟ, ଚାରୁଲାଲ୍ ମୁଖାର୍ଜି ପ୍ରମୁଖ ଏମାନଙ୍କର ସାମାଜିକ ତଥା ସାଂସ୍କୃତିକ ଜୀବନ ବିଷୟରେ ଅନୁସନ୍ଧାନ କରିଥିଲେ । ଏବେ ମଧ୍ୟ କେତେକ ଗବେଷକ ସେ ଦିଗରେ ଅନୁସନ୍ଧାନ ଚଳାଇଛନ୍ତି । ଆଦିବାସୀମାନଙ୍କର ଶାନ୍ତ ସରଳ ଜୀବନ ଯାପନ ରୀତି ମୟୂରଭଞ୍ଜକୁ ଏକ ସ୍ୱତନ୍ତ୍ର ଐଶ୍ୱର୍ଯ୍ୟ ଆଣି ଦେଇଛି । x x x

''ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓଙ୍କ (୧୮୭୦-୧୯୧୨) ସମୟରେ ମୟୂରଭଞ୍ଜର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇଥିଲା । ଶାସନ, ସମାଜ, ସଂସ୍କୃତି ବିଭିନ୍ନ କ୍ଷେତ୍ରରେ ଶ୍ରୀରାମଚନ୍ଦ୍ରଙ୍କର ଶୁଭଦାନ ରହିଛି । ମୟୂରଭଞ୍ଜ ଲାଇଟ୍ ରେଲଓ୍ୱେ, ଗୋରୁମହିଷାଣୀ ଲୁହାଖଣି, ମୟୂରଭଞ୍ଜ ଟସର ଶିଳ୍ପ, ବାରିପଦା ପବ୍ଲିକ୍ ଲାଇବ୍ରେରୀ ଓ ମ୍ୟୁନିସିପାଲିଟି – ଏ ସମସ୍ତ ଶ୍ରୀରାମଚନ୍ଦ୍ରଙ୍କର କୀର୍ତ୍ତି । ଏହି ପ୍ରାତଃ ସ୍ମରଣୀୟ ମହାରାଜାଙ୍କର ଜନମଙ୍ଗଳକର କାର୍ଯ୍ୟ କେବଳ ମୟୂରଭଞ୍ଜ ମଧ୍ୟରେ ସୀମାବଦ୍ଧ ନଥିଲା । ୧୯୦୩ ମସିହାରେ କଟକ

ସହରରେ ଉତ୍କଳ ସମ୍ମିଳନୀର ଯେଉଁ ପ୍ରଥମ ଐତିହାସିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା, ଶ୍ରୀରାମଚନ୍ଦ୍ର ତହିଁରେ ସଭାପତିତ୍ୱ କରିଥିଲେ । ରେଭେନ୍ସା କଲେଜ, କଟକର ଉତ୍କଳ ସାହିତ୍ୟ ସମାଜର ଗୃହ ନିର୍ମାଣରେ ତଥା ଅନ୍ୟାନ୍ୟ ବହୁ ଲୋକହିତକର କାର୍ଯ୍ୟରେ ତାଙ୍କର ଉଦାର ଦାନଶୀଳତା ପ୍ରକାଶ ପାଇଛି । ତାଙ୍କର ପୁତ୍ର ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ମଧ୍ୟ ବହୁ ଉନ୍ନୟନମୂଳକ କାର୍ଯ୍ୟ ପ୍ରତି ଧ୍ୟାନ ଦେଇଥିଲେ । ଖିଚିଂ ଓ ବାରିପଦାଠାରେ ଦୁଇଟି ମିଉଜିୟମ୍ ପ୍ରତିଷ୍ଠା ଏହାଙ୍କ ରାଜତ୍ୱ କାଳରେ କରାଯାଇଥିଲା । ବହୁ ପ୍ରତ୍ନତାତ୍ତ୍ୱିକ ଉପାଦାନ ଉକ୍ତ ଦୁଇଟି ମିଉଜିୟମ୍‌ରେ ସଂରକ୍ଷିତ ହୋଇ ରହିଛି । xxx

"ମୋର ମୟୂରଭଞ୍ଜ ଦର୍ଶନର ପରମ ସହାୟକ ଥିଲେ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ । ବିଭିନ୍ନ ସମୟରେ ଦେଖାସାକ୍ଷାତ୍ ବେଳେ ମୟୂରଭଞ୍ଜର ବିଶେଷତ୍ୱ କଥା ସେ ମୋତେ କହୁଥିଲେ । କେତେବର୍ଷ ତଳେ (ବୋଧହୁଏ ୧୯୬୨ ମସିହା) କାଶ୍ମୀର ଶ୍ରୀନଗରଠାରେ ନିଖିଳ ଭାରତ ପ୍ରାଚ୍ୟ ବିଦ୍ୟା ସମ୍ମେଳନରେ ଯୋଗ ଦେଇ ସାରି ପଠାନ୍‌କୋଟ୍‌ଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ତାଙ୍କ ସାଙ୍ଗରେ ରେଳଯାତ୍ରା କରିବାର ସୁଯୋଗ ପାଇଥିଲି । ବାଟସାରା ଖିଚିଂ ମନ୍ଦିରର ଭାସ୍କର୍ଯ୍ୟ ଏବଂ ତାହାର ପ୍ରତ୍ନତାତ୍ତ୍ୱିକ ମୂଲ୍ୟ ବିଷୟରେ ସେ ଅନେକ କଥା କହିଥିଲେ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ଘେନି ଗଳ୍ପ କରିଥିଲେ । ତାହା ସବୁ ମୋର ସ୍ମୃତିରେ ଗଣ୍ଠିଧନ ଭଳି ଚିରଦିନ ସାଇତା ହୋଇ ରହିବ । xxx"

ବାରିପଦାରେ ଅନୁଷ୍ଠିତ ଅଷ୍ଟମ ବାର୍ଷିକ ଅଧିବେଶନ ପରେ ଯୁବ ଲେଖକ ସମ୍ମେଳନର ଅନ୍ୟାନ୍ୟ ଅଧିବେଶନ ଜୟପୁର (କୋରାପୁଟ), ଭବାନୀପାଟଣା, କେନ୍ଦୁଝରଗଡ଼ ଇତ୍ୟାଦି ସ୍ଥାନରେ କରାଯାଇଥିଲା । ମୁଁ ଏଥିମଧ୍ୟରୁ କେନ୍ଦୁଝର ଅଧିବେଶନରେ ଯୋଗ ଦେଇଥିଲି ଏବଂ ଏକ ସଂପାନରେ 'ସମାଲୋଚକର ଭୂମିକା' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲି । ତା'ପରେ ସମ୍ମେଳନ ସହିତ ମୋର ଯୋଗାଯୋଗ ପ୍ରାୟ ଛିନ୍ନ ହୋଇଯାଇଛି । ସମ୍ମେଳନର କାର୍ଯ୍ୟକ୍ରମ କ୍ରମଶଃ ଶିଥିଳ ହୋଇଯାଉଥିବାର ଜଣାପଡୁଛି । ଯାହାହେଉ, ଯେଉଁ କେତେ ବର୍ଷ ଓଡ଼ିଆ ଯୁବ ଲେଖକ ସମ୍ମେଳନ ସକ୍ରିୟ ଥିଲା, ତାହାର କାର୍ଯ୍ୟକ୍ରମର ସାଫଲ୍ୟ ଆମ ସାଂସ୍କୃତିକ ଇତିହାସରେ ଏକ ସ୍ୱତନ୍ତ୍ର ଅଧ୍ୟାୟ ରୂପେ ସ୍ଥାନ ଲାଭ କରିବ; ଏହା ବିନା ଦ୍ୱିଧାରେ ବୋଲାଯାଇପାରେ । ରାଜ୍ୟର ଚତୁର୍ଦ୍ଦିଗରେ ସମ୍ମେଳନର ଶଙ୍ଖନାଦ ଧ୍ୱନିତ ହୋଇଛି ଏବଂ ବହୁ କବି-ଲେଖକ ଏଥିରେ ଉଦ୍‌ବୁଦ୍ଧ ହୋଇ ଏଯାଏଁ ସାହିତ୍ୟ ସୃଷ୍ଟି କରି ଚାଲିଛନ୍ତି । ଏହାରି ପ୍ରଭାବରେ ଅକ୍ଷର, ଅନାମ, ଡ ଞ ଢ, ଅବଧୂତ ପ୍ରଭୃତି ସାଂସ୍କୃତିକ ଗୋଷ୍ଠୀ ସୃଷ୍ଟି ହୋଇଛନ୍ତି । ଯଉବନ-ଜଳକଲ୍ଲୋଳ ଥମି ଯାଇଥିଲେ ହେଁ ତାହାର ପ୍ରଭାବ ବରାବର ଅନୁଭୂତ ହେଉଛି ।

# ମୟୂର ବାହନରେ ମଧୁକର

ପ୍ରାଇଭେଟରୁ ଗଭର୍ଣ୍ଣମେଣ୍ଟ – ୧୯୭୧ ମସିହା ମାର୍ଚ୍ଚ ମାସରେ ଭଦ୍ରକ କଲେଜର ଭେକ ବଦଳିଗଲା ପରେ ମୋତେ ମୟୂରଭଞ୍ଜର ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜକୁ ବଦଳି କରାଗଲା । ଅଗଷ୍ଟ ମାସରେ ମୁଁ ସପରିବାର ବାରିପଦା ଚାଲିଗଲି ।

ଭଦ୍ରକ କଲେଜ ସହିତ ରାଜ୍ୟର ଆଉ ଯୋଡ଼ିଏ ବଡ଼ କଲେଜ – ପଶ୍ଚିମ ଓଡ଼ିଶାର ବରଗଡ଼ କଲେଜ ଓ ଦକ୍ଷିଣ ଓଡ଼ିଶାର ବ୍ରହ୍ମପୁରସ୍ଥ ଖଲ୍ଲିକୋଟ କଲେଜର ଭେକ ବଦଳିଥିଲା ଏକା ସାଙ୍ଗରେ । ବେସରକାରୀରୁ ସରକାରୀ ସଂସ୍ଥା ହେବା ଫଳରେ ଏହି କଲେଜଗୁଡ଼ିକର ଲାଭ ହେଲା କ'ଣ ? ଆମ ରାଜ୍ୟର ଉଚ୍ଚଶିକ୍ଷା କ୍ଷେତ୍ରରେ ଏହି ତିନିଟିଯାକ କଲେଜ ଥିଲା ସୁପ୍ରତିଷ୍ଠିତ । ସରକାରୀ ଖେତାବ୍ ପାଇଲା ପରେ ଏଗୁଡ଼ିକର ଉଲ୍ଲେଖଯୋଗ୍ୟ ଉନ୍ନତି ବା ସମୃଦ୍ଧି ହୋଇଥିବାର ବୋଲାଯାଇ ନ ପାରେ । ବରଗଡ଼ ଓ ଖଲ୍ଲିକୋଟ କଲେଜ କଥା ଶୁଣୁଛି, କିନ୍ତୁ ଭଦ୍ରକ କଲେଜ କଥା ସ୍ୱଚକ୍ଷୁରେ ଦେଖୁଛି; ବୈଷୟିକ ଦିଗରୁ ତଥା ଶିକ୍ଷାଗତ ଦୃଷ୍ଟିରୁ ଏହି କଲେଜଟିର ଉନ୍ନତି ବା ଅଭିବୃଦ୍ଧି ସନ୍ତୋଷଜନକ ନୁହେଁ । ପ୍ରାଇଭେଟ୍ ମ୍ୟାନେଜ୍‌ମେଣ୍ଟ ଅଧୀନରେ ଥିବା ବେଳେ ଏହା ଯେପରି ଦ୍ରୁତ ଗତିରେ ଉନ୍ନତି କରି ଚାଲିଥିଲା, ତାହା ଏବେ ବ୍ୟାହତ ହୋଇଛି । କଲେଜକୁ ଏକ ବିଶ୍ୱବିଦ୍ୟାଳୟରେ ପରିଣତ କରିବା ପାଇଁ ଡକ୍ଟର ହରେକୃଷ୍ଣ ମହତାବ ଏବଂ ଅନ୍ୟାନ୍ୟ ଶିକ୍ଷାବିଦ୍ ଯେଉଁ ପରିକଳ୍ପନା କରିଥିଲେ, ତାହା ରୂପାନ୍ୱିତ ହେବା ଅସମ୍ଭବ ମନେ ହେଲାଣି । ସରକାରୀ ଶଗଡ଼ଗୁଳାରେ କଲେଜଟି କୌଣସିମତେ ଚାଲିଛି ମାତ୍ର ।

କେବଳ କଲେଜ ନୁହେଁ, ଆମ ରାଜ୍ୟର କେତେକ ହାଇସ୍କୁଲ ପକ୍ଷରୁ ମଧ୍ୟ ଅନେକ ସମୟରେ ଦାବି ହେଉଛି – ଆମକୁ ସରକାରୀ ସଂସ୍ଥା କରିନିଅ । ଏଥିପାଇଁ ଆନ୍ଦୋଳନ, ଅନଶନ, ଧର୍ମଘଟ ପର୍ଯ୍ୟନ୍ତ ଚାଲିଛି । କାହିଁକି ଏପରି ହେଉଛି ? ସରକାରୀ ବାହୁଚ୍ଛାୟା ତଳେ ପ୍ରତିଷ୍ଠାନର ତଥା ପ୍ରତିଷ୍ଠାନ ସହ ସଂପୃକ୍ତ ସମସ୍ତ କର୍ମଚାରୀଙ୍କର ନିରାପତ୍ତା ରହିଛି – ରହିଛି ମଧ୍ୟ କାମଚୋର ହେବାର ଅମାପ ସୁଯୋଗ । ତମେ ନିଜର କର୍ତ୍ତବ୍ୟ କର୍ମ କର ବା ନ କର, ରେକର୍ଡ଼ପତ୍ର ଠିକ୍ ଥିଲେ ବେତନ ଗଣ୍ଡାକ ଥୁଆ । ଜଣେ ଜଣେ ଅଧ୍ୟାପକ କେବଳ ବେତନ ମିଳିବା ଦିନ କଲେଜକୁ ଯାଇଥାଆନ୍ତି, ବାକି ଦିନମାନଙ୍କରେ ଅନ୍ୟାନ୍ୟ ଧନ୍ଦାରେ ଲାଗିଥାଆନ୍ତି – ଏପରି ଦୁଃଖଦାୟକ ଘଟଣାର ଖବର ମୋ ପାଖରେ ଅଛି । ଶିକ୍ଷାୟତନକୁ ସରକାରୀ ପ୍ରତିଷ୍ଠାନ କରିବା ମୂଳରେ ସଂପୃକ୍ତ ବିଭିନ୍ନ ଶ୍ରେଣୀର କର୍ମଚାରୀଙ୍କ ଏହିପରି କିଛି ସୁବିଧା ବ୍ୟତୀତ ଅସଲ କାର୍ଯ୍ୟ

ଅଧ୍ୟୟନ – ଅଧ୍ୟାପନାର ବିଶେଷ ସୁବିଧା ସୁଯୋଗ ହୋଇପାରେ ନା । ତେଣୁ ଛାତ୍ରସମାଜ କ୍ଷତିଗ୍ରସ୍ତ ହୁଅନ୍ତି – ଶିକ୍ଷାବ୍ୟବସ୍ଥା ବିପର୍ଯ୍ୟସ୍ତ ହୋଇପଡ଼େ ।

ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି – ସ୍ୱାଧୀନତା । ବେସରକାରୀ ଶିକ୍ଷାନୁଷ୍ଠାନରେ ଅଧ୍ୟୟନ-ଅଧ୍ୟାପନା ତଥା ତତ୍‌ସଂପର୍କିତ ଆନୁଷଙ୍ଗିକ କାର୍ଯ୍ୟରେ ଯେତେ ସ୍ୱାଧୀନତା ରହିଛି, ସରକାରୀ ଶିକ୍ଷାୟତନରେ ସେହି ସେହି କ୍ଷେତ୍ରରେ ସେତିକି ସ୍ୱାଧୀନତା ନାହିଁ । ମୁଁ ବେସରକାରୀ କଲେଜରେ ପ୍ରାୟ ସତର ବର୍ଷ ଏବଂ ସରକାରୀ କଲେଜରେ ପ୍ରାୟ କୋଡ଼ିଏ ବର୍ଷ କାର୍ଯ୍ୟ କରିଛି । ଜୀବନର ଏହି ସଇଁତିରିଶ ବର୍ଷର ଅଭିଜ୍ଞତାରୁ କହିବି – ଅଧ୍ୟୟନ-ଅଧ୍ୟାପନା, ଶିକ୍ଷାଦୀକ୍ଷା ଦିଗରୁ ପ୍ରାଇଭେଟ୍ କଲେଜରେ ମୁଁ ଯେପରି ସ୍ୱାଧୀନ ଭାବରେ କାର୍ଯ୍ୟ କରିପାରିଛି, ଗଭର୍ଣ୍ଣମେଣ୍ଟ କଲେଜରେ କାର୍ଯ୍ୟ କରିବାକୁ ସେପରି ସ୍ୱାଧୀନତା ପାଇପାରି ନାହିଁ । ପ୍ରଥମେ ଭଦ୍ରକ କଲେଜରେ ଅଧ୍ୟାପନା କରି ମୁଁ ଯେପରି ତୃପ୍ତି ଓ ସନ୍ତୋଷ ଲାଭ କରିଛି, ପରବର୍ତ୍ତୀ କାଳରେ ରାଜ୍ୟର ତିନି ତିନିଟି ସରକାରୀ କଲେଜରେ ଅଧ୍ୟାପନାରୁ ସେପରି ସନ୍ତୋଷ ଲାଭ କରିନାହିଁ । ଆମର ପ୍ରାଇଭେଟ୍ ଶିକ୍ଷାନୁଷ୍ଠାନରେ ସରକାରୀ ଅଙ୍କୁଶ ଯେ କାର୍ଯ୍ୟକର ହେଉନାହିଁ, ତାହା ବୋଲାଯାଇ ନ ପାରେ । କିନ୍ତୁ ଅଧ୍ୟୟନ-ଅଧ୍ୟାପନା କ୍ଷେତ୍ରରେ ତାହା ସେତେ ପ୍ରତିବନ୍ଧକ ହୁଏନା । ମହାତ୍ମା ଗାନ୍ଧୀ ତଥା କେତେକ ଶିକ୍ଷାବିଦ୍, ଶିକ୍ଷାବ୍ୟବସ୍ଥା ବିଶେଷତଃ ଉଚ୍ଚ ଶିକ୍ଷାବ୍ୟବସ୍ଥା ସରକାରୀ ହେବା ବିପକ୍ଷରେ ମତ ପ୍ରକାଶ କରିଛନ୍ତି । ଆର୍ଥିକ ଓ ପରମାର୍ଥିକ ଉଭୟ ଦିଗରୁ ଏହି ମତର ସାରବତ୍ତା ଆମେମାନେ ବିଚାର କରି ଦେଖୁଛୁଁ କି ?

ମୟୂରଭଞ୍ଜ ମୋ ପକ୍ଷରେ ସଂପୂର୍ଣ୍ଣ ନୂଆ ନ ଥିଲା । ଜିଲ୍ଲାଟିର ଆରଣ୍ୟକ ପ୍ରକୃତି ଓ ଜାଙ୍ଗଲିକ ସୁଷମା ମୋତେ ବେଶ୍ ଆକର୍ଷିତ କରିଥିଲା । ୧୯୫୫ ମସିହାରେ ଏହି ଜିଲ୍ଲାର ରାଇରଙ୍ଗପୁର ସବ୍‌ଡ଼ିଭିଜନ୍‌ସ୍ଥ ବହଲଦାରୁ ଅର୍ଦ୍ଧାଙ୍ଗିନୀଙ୍କୁ ଲାଭ କରିଥିବାରୁ ସେହି ଅଞ୍ଚଳ ସହ ମୋର ସମ୍ପ୍ରେମାତ୍ମକ ସଂପର୍କ ସ୍ଥାପିତ ହୋଇଯାଇଥିଲା ଏବଂ ମୁଁ ବାରମ୍ବାର ସେଆଡ଼କୁ 'ଅସାର ସଂସାର ମଧ୍ୟେ ସାର ଶ୍ୱଶୁର ମନ୍ଦିର' ଭାବି ବୁଲି ଯାଉଥିଲି । ବାରିପଦାସ୍ଥ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ଅବସ୍ଥାପିତ ହେଲା ପରେ ସେ ଅଞ୍ଚଳ ସହିତ ମୋର ସଂପର୍କ ଆହୁରି ଘନିଷ୍ଠ ଓ ଅନ୍ତରଙ୍ଗ ହୋଇଉଠିଲା । କେବଳ ବହଲଦା କି ବାରିପଦା ନୁହେଁ; ଯଶିପୁର, କରଞ୍ଜିଆ, ରାଇରଙ୍ଗପୁର, ଉଦଳା, ଚିତ୍ରଡ଼ା, ଗୋରୁମହିଷାଣୀ, ଖିଚିଂ ଆଦି ଜିଲ୍ଲାର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ସହିତ ମୁଁ ପରିଚିତ ହୋଇଗଲି । ଭଦ୍ରକ କଲେଜରେ ପଢୁଥିବା ମୋର ଅନେକ ଛାତ୍ରଛାତ୍ରୀ ଜିଲ୍ଲାର ଏହିସବୁ ସ୍ଥାନରେ ବିଭିନ୍ନ କର୍ମନିଯୁକ୍ତି ପାଇ ରହିଥିଲେ – ବିଶେଷତଃ ବାଳାଶ୍ରମ, ହାଇସ୍କୁଲ, କଲେଜରେ ଶିକ୍ଷକ ଭାବେ କାର୍ଯ୍ୟ କରୁଥିଲେ । ଶିକ୍ଷାନୁଷ୍ଠାନ ଓ ଅନ୍ୟାନ୍ୟ ସାଂସ୍କୃତିକ

ପ୍ରତିଷ୍ଠାନର ସଭାସମିତିରେ ସେମାନେ, ମୋର ବକ୍ତୃତା ଦେବାର ଯେଉଁ ଟିକକ ଶକ୍ତି-ସାମର୍ଥ୍ୟ ଥିଲା, ତାହାରି ଉପଯୋଗ କରିବାରେ ଲାଗିଲେ । ମୋର ଠାକୁର ଦେଖା ଓ କଦଳୀବିକା ଏକା ସାଙ୍ଗରେ ଚାଲିଲା । ବକ୍ତୃତା ଦେବା ସହିତ ମୟୂରଭଞ୍ଜର ବହୁ ଗୁରୁତ୍ୱପୂର୍ଣ୍ଣ ଓ ଦର୍ଶନୀୟ ସ୍ଥାନ ମୁଁ ବୁଲି ଦେଖିବାର ସୁଯୋଗ ପାଇଲି ।

ମୟୂରଭଞ୍ଜର ମେରୁଦଣ୍ଡ ରୂପେ ବିରାଜିତ ଶିମିଳିପାଳ ପର୍ବତମାଳା ଓ ତାହାର ଅରଣ୍ୟାନୀ କେଉଁ ଦର୍ଶକର ମନପ୍ରାଣକୁ ମୁଗ୍ଧ ନ କରିବ ? ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ସହିତ ହାତୀ, ବାଘ, ଭାଲୁ, ହରିଣ ଆଦି ବିଭିନ୍ନ ଜୀବଜନ୍ତୁଙ୍କର ଲୀଳା ଯଥାର୍ଥରେ ଏହାକୁ ରାଜ୍ୟର ଏକ ଉତ୍କୃଷ୍ଟ ପର୍ଯ୍ୟଟନ-କେନ୍ଦ୍ରର ମାନ୍ୟତା ଦେଇଛି । କେବଳ ସୁନ୍ଦର ନୁହେଁ, ଭୀଷଣ ଓ ଭୟାନକ ମଧ ମନପ୍ରାଣରେ ଯେ ପୁଲକ ଓ ରୋମାଞ୍ଚ ସୃଷ୍ଟି କରିଥାଏ – ଶିମିଳିପାଳ ଭ୍ରମଣରେ ମୋର ଏହି ଧାରଣା ବଦ୍ଧମୂଳ ହୋଇଛି । ଶିମିଳିପାଳ ପ୍ରକୃତିର ଦାନ, କିନ୍ତୁ ଖିଚିଂ ମନୁଷ୍ୟକୃତ ଭାସ୍ୱର ଭାସ୍କର୍ଯ୍ୟର ଉପହାର । ମୟୂରଭଞ୍ଜର ପଶ୍ଚିମ ସୀମାରେ ଖଇର ବନ୍ଦନ ଓ କଣ୍ଟକରା ନଦୀର ସଙ୍ଗମସ୍ଥଳରେ ଅବସ୍ଥିତ ଖିଚିଂ ଏକ ବଡ଼ ଗ୍ରାମ; ମୟୂରଭଞ୍ଜର ତାହା ପ୍ରାଚୀନ ରାଜଧାନୀ ଥିଲା । ଏଠାରେ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ କୀଚକେଶ୍ୱରୀ ପ୍ରତିଷ୍ଠିତା ଥିଲେ । କୀଚକେଶ୍ୱରୀଙ୍କ ମନ୍ଦିର ସହିତ ଅନ୍ୟ କେତେକ ମନ୍ଦିର ଖ୍ରୀଷ୍ଟୀୟ ଦଶମ-ଏକାଦଶ ଶତାବ୍ଦୀରେ ଏଠାରେ ନିର୍ମିତ ହୋଇଥିଲା । ଏଠାରୁ ରାଜଧାନୀ ଉଠାଇ ନିଆଗଲା ପରେ ସ୍ଥାନଟିର ଗୁରୁତ୍ୱ ହାନି ହୋଇଗଲା ଏବଂ ରକ୍ଷଣାବେକ୍ଷଣ ଅଭାବରୁ ବୋଧହୁଏ ମନ୍ଦିରଗୁଡ଼ିକ ଭାଙ୍ଗିରୁଜି ଗଲା । ବିଂଶ ଶତାବ୍ଦୀର ଚତୁର୍ଥ ଦଶକରେ ମୂଳ ଖିଚିଂ ମନ୍ଦିରର ଧ୍ୱଂସାବଶେଷ ଘେନି ଏବର ମନ୍ଦିରଟି ନିର୍ମିତ ହୋଇଛି । ଏ ଦିଗରେ ଐତିହାସିକ ପରମାନନ୍ଦ ଆଚାର୍ଯ୍ୟ ଓ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ପ୍ରଚେଷ୍ଟା ଉଲ୍ଲେଖଯୋଗ୍ୟ । ଖିଚିଂ ମନ୍ଦିରାବଳୀର ହୃତଗୌରବ ପୁନଃ ସଂସ୍ଥାପନରେ ଉଭୟଙ୍କର ଭୂମିକା ରହିଛି । ଏହି ମନ୍ଦିରଗୁଡ଼ିକର ସ୍ଥାପତ୍ୟ କଳା ଚମତ୍କାର । ନିକଟରେ ଥିବା ଏକ-ଶିଳାଖଣ୍ଡରେ ନିର୍ମିତ ଚଉଦଟି ସ୍ତମ୍ଭ ଦର୍ଶକର ବିସ୍ମୟ ଉତ୍ପାଦକ । ନଷ୍ଟଭ୍ରଷ୍ଟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ସେଠାରେ ସଂରକ୍ଷିତ ହୋଇଛି ଏକ କ୍ଷୁଦ୍ର ମିଉଜିୟମ୍‌ରେ; କ୍ଷୁଦ୍ର ହେଲେ ହେଁ ଯାଦୁଘର ବା ପ୍ରଦର୍ଶନଶାଳାଟି ତୁଚ୍ଛ, ନଗଣ୍ୟ ନୁହେଁ । ଏଥିରେ ସଂରକ୍ଷିତ ସାନବଡ଼ କେତୋଟି ଗଣେଶମୂର୍ତ୍ତି, ଗଜସିଂହ ଉପରେ ନାଗକନ୍ୟା-ଶୋଭିତ ସ୍ତମ୍ଭ, ଅର୍ଦ୍ଧନାରୀଶ୍ୱର ବିଗ୍ରହ, ସପ୍ତାଶ୍ୱଯୁକ୍ତ ରଥ ଉପରେ ସୂର୍ଯ୍ୟ ମୂର୍ତ୍ତି, ଚଣ୍ଡ-ପ୍ରଚଣ୍ଡଙ୍କର ବିକଟାଳ ବିଗ୍ରହ ପ୍ରଭୃତି କଳାପ୍ରେମୀ ଦର୍ଶକଙ୍କର ଦୃଷ୍ଟି ଆକର୍ଷଣ କରିବ ।

ଖିଚିଂ ପାଖରେ ରରୁଆଁ ଗ୍ରାମ – ସୁଲେଖକ ଉମେଶଚନ୍ଦ୍ର ପାଣିଗ୍ରାହୀ ଓ ତାଙ୍କର କନ୍ୟା କବି ସୁଜାତା ପ୍ରିୟମ୍ବଦାଙ୍କର ବାସସ୍ଥଳୀ । ଯେତେଥର ମୁଁ ଖିଚିଂ ଯାଇଛି, ରରୁଆଁରେ

ଉମେଶ ବାବୁ ଓ ସୁଜାତାଙ୍କ ସାକ୍ଷାତ୍ ନ କରି ବାହୁଡ଼ି ନାହିଁ । ୧୯୫୫-୫୬ ମସିହାରେ କଟକରେ 'ଡଗର' ପ୍ରତିଷ୍ଠାନରେ କାର୍ଯ୍ୟ କରୁଥିଲାବେଳେ ଉମେଶ ବାବୁଙ୍କ ସହ ମୋର ପ୍ରଣୟ ସ୍ଥାପିତ ହୋଇଥିଲା । ମଝିରେ ମଝିରେ ସେ 'ଡଗର'କୁ ଆସୁଥିଲେ । ଲେଖାଲେଖି ସଂପର୍କରେ ଆମ ମଧ୍ୟରେ ଆଲୋଚନା ହେଉଥିଲା – ବିଶେଷତଃ ଆମ ସାହିତ୍ୟରେ ଭ୍ରମଣବୃତ୍ତାନ୍ତର ଅଭାବ କଥା ପଡୁଥିଲା । ସେତେବେଳକୁ କବିଶେଖର ଚିନ୍ତାମଣି ମହାନ୍ତି, ଶଶିଭୂଷଣ ରାୟ, ମାୟାଧର ମାନସିଂହ ପ୍ରମୁଖ ଅଳ୍ପ କେତେଜଣ ଭ୍ରମଣ ବୃତ୍ତାନ୍ତ ଲେଖିଥାଆନ୍ତି । ଉମେଶ ବାବୁ କାଁ ଭାଁ ଗଳ୍ପ ଲେଖିବା ସହିତ ମୁଖ୍ୟତଃ ଭ୍ରମଣ ବୃତ୍ତାନ୍ତ ରଚନାରେ ମନୋନିବେଶ କରିଥାଆନ୍ତି – ଭିନ୍ନଭାଷୀ କେତେକ ପର୍ଯ୍ୟଟକ ଲେଖକଙ୍କର ଭ୍ରମଣ ବୃତ୍ତାନ୍ତ ଓଡ଼ିଆରେ ଅନୁବାଦ କରୁଥାଆନ୍ତି । କିନ୍ତୁ ପ୍ରାୟ ପନ୍ଦର ବର୍ଷ ପରେ ରରୁଆଁରେ ତାଙ୍କ ସହିତ ସାକ୍ଷାତ୍ ହେଲା ବେଳକୁ ଜାଣିବାକୁ ପାଇଲି – ସେ ଲେଖାଲେଖି ଆଉ କରୁନାହାନ୍ତି । ଆପଣା କନ୍ୟା ସୁଜାତାଙ୍କ କବିତା ରଚନା କଥା ସେ ପ୍ରକାଶ କଲେ ଏବଂ ସେହି କବିତାରୁ କିଛି ପାଠ କରି ମୋତେ ଶୁଣାଇଥିଲେ ।

ଖିଚିଂ ଓ ଉଦଳାସ୍ଥ କେତେକ ସ୍ଥାନରେ ମୁଗୁନି ପଥରର ହସ୍ତଶିଳ୍ପ ଅନ୍ୟତ୍ର ବିରଳ । ପଥରର ଥାଳି, ସାନବଡ଼ ଗିନା, ପିକଦାନି ଓ ଆସ୍‌ଟ୍ରେ, ବିଭିନ୍ନ ଦେବଦେବୀଙ୍କ ମୂର୍ତ୍ତି, ଗୃହସଜ୍ଜାର ଉପକରଣ ପ୍ରଭୃତି ରାଜ୍ୟରେ ତଥା ରାଜ୍ୟ ବାହାରେ ଗ୍ରାହକତ୍ୱ ଲାଭ କରିଛି । ମୁଗୁନି ପଥରର ସେହି ହସ୍ତଶିଳ୍ପରୁ କିଛି ଏବେ ବି ମୋ ଗୃହସ୍ଥଳୀରେ ବ୍ୟବହୃତ ହେଉଛି । ମୟୂରଭଞ୍ଜ ଟସରଶିଳ୍ପ ମଧ୍ୟ ଭାରତ ବିଖ୍ୟାତ । ଏହି ଶିଳ୍ପଜାତ ମଠା ଲୁଗାପଟା, କାଣ୍ଡିଆ ଚଦର ଇତ୍ୟାଦି ବ୍ୟବହାରରେ ଯେପରି ସୁନ୍ଦର, ସେହିପରି ସମ୍ଭ୍ରାନ୍ତ ଶ୍ରେଣୀର । ସବାଇ ଘାସ ଏ ଅଞ୍ଚଳରେ ପ୍ରଚୁର ପରିମାଣରେ ବଢ଼ିଥାଏ । ଏଥିରେ ପ୍ରସ୍ତୁତ ଟାଣ ଦଉଡ଼ି ଓ ନରମ ମସିଣା ଘରେ ଘରେ ବ୍ୟବହୃତ ହୋଇଥାଏ ।

ବାରିପଦାସ୍ଥ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ମୁଁ ଯୋଗ ଦେଲା ବେଳକୁ ସେଠାରେ ଅଧ୍ୟକ୍ଷ ଥାଆନ୍ତି ଶ୍ରୀ ବୈଦ୍ୟନାଥ ମିଶ୍ର – ଇଂରେଜୀ ଭାଷା ସାହିତ୍ୟର ଅଧ୍ୟାପକ, ଜଣେ ସଂସ୍କୃତିପ୍ରେମୀ ବ୍ୟକ୍ତି । ସେ ବୋଧହୁଏ ପୂର୍ବରୁ ମୋ ବିଷୟରେ କିଛି ଜାଣିଥିଲେ; ମୁଁ କଲେଜରେ ଯୋଗଦେବା ସଂଗେ ସଂଗେ ମୋତେ କେତେଗୁଡ଼ିଏ ଶିକ୍ଷାଗତ ଆନୁଷଙ୍ଗିକ କାର୍ଯ୍ୟକ୍ରମର ଦାୟିତ୍ୱ ଦେଇଦେଲେ, ତାହା ମଧ୍ୟରେ ପ୍ରଧାନ ଥିଲା କଲେଜ ନାଟ୍ୟ ସଂସଦର ଉପ-ସଭାପତି ଦାୟିତ୍ୱ । ପୂର୍ବରୁ କଲେଜରେ ଯେଉଁ ନାଟ୍ୟାଭିନୟାଦି ହେଉଥିଲା, ତହିଁରେ କିଛି ବିଶୃଙ୍ଖଳା ସୃଷ୍ଟି ହୋଇଥିଲା । ଅଧ୍ୟକ୍ଷ ଶ୍ରୀ ମିଶ୍ର ସେ ବିଷୟରେ ସୂଚନା ଦେଇ ମୋତେ କହିଲେ ଯେ ଆପଣ ଯଦି ନିର୍ବିଘ୍ନରେ ଶୃଙ୍ଖଳାର ସହିତ ନାଟ୍ୟାଭିନୟ କରାଇ ପାରିବେ, ତାହାହେଲେ କଲେଜର ସୁନାମ ହେବ । ଅଧ୍ୟକ୍ଷଙ୍କ କଥାକୁ ମୁଁ ଏକ ଚ୍ୟାଲେଞ୍ଜ୍

ରୂପେ ଗ୍ରହଣ କଲି । ଭଦ୍ରକ କଲେଜର ନାଟ୍ୟାଭିନୟ ସଂପର୍କରେ ପୂର୍ବରୁ ମୋର କିଛି ଅଭିଜ୍ଞତା ଥିଲା । କଲେଜର ନାଟ୍ୟାଭିନୟ ଇତିହାସରେ ମୁଁ ସେତେବେଳେ ନାରୀ ଚରିତ୍ର ଭୂମିକାରେ ପ୍ରଥମେ ଦୁଇଜଣ ଛାତ୍ରୀଙ୍କୁ ରଙ୍ଗମଞ୍ଚରେ ଠିଆ କରାଇ କେତେକ ବ୍ୟକ୍ତିଙ୍କ ଦ୍ୱାରା ସମାଲୋଚିତ ହୋଇଥିଲି । ବାରିପଦାରେ ତେଣୁ ନାଟ୍ୟାଭିନୟ କ୍ଷେତ୍ରରେ ମୋତେ ବିଶେଷ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା ନାହିଁ । ଭଦ୍ରକର ମୋର ଜଣେ ନାଟ୍ୟପ୍ରେମୀ ଛାତ୍ର ଶ୍ରୀ ଗୌରୀପଦ ତ୍ରିପାଠୀ ସେତେବେଳେ ସେଠାରେ ଅଧ୍ୟାପକ ଥିଲେ । ନାଟ୍ୟାଭିନୟର ନିର୍ଦ୍ଦେଶନା ଦେବା ସଂଗେ ସଂଗେ ଆନୁଷଙ୍ଗିକ ବିଭିନ୍ନ କାର୍ଯ୍ୟରେ ସେ ମୋତେ ସହାୟତା କଲେ ।

ସେତେବେଳେ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ ବାରିପଦାର ବଡ଼ଦାଣ୍ଡ ଉପରେ ଥିବା ରାଜପ୍ରାସାଦରେ ଅବସ୍ଥିତ ଥିଲା । କଲେଜ ପରିସରରେ ବିସ୍ତୃତ ପ୍ରାଙ୍ଗଣର ଗୋଟିଏ ପଟରେ ଥିଲା ଅଭିନୟ ମଞ୍ଚ । ନାଟ୍ୟକାର କାର୍ତ୍ତିକଚନ୍ଦ୍ର ରଥ, କି ରତ୍ନାକର ଚଇନି କାହାରି ଜଣକର ନାଟକର ଅଭିନୟ ହେଉଥାଏ, ବର୍ତ୍ତମାନ ସ୍ୱଷ୍ଟ ମନେ ପଡୁନାହିଁ । ପ୍ରେକ୍ଷାଳୟ ଦର୍ଶକମାନଙ୍କ ଦ୍ୱାରା ଭରପୂର । ଦୃଶ୍ୟ ପରେ ଦୃଶ୍ୟ ନାଟ୍ୟାଭିନୟ ଠିକ୍‌ଠାକ୍ ଚାଲିଥାଏ । ହଠାତ୍ କଲେଜର ଏକ ଶ୍ରେଣୀ ପ୍ରକୋଷ୍ଠରୁ ଢୋ କରି ଗୋଟାଏ ବୋମା ଫୁଟିଲା । ଆମେ ବିଚଳିତ ହୋଇ ପଡ଼ିଲୁ; ଦର୍ଶକମଣ୍ଡଳୀ ମଧ୍ୟରେ ବି ଟିକିଏ ଗଣ୍ଡଗୋଳ ସୃଷ୍ଟି ହେଲା । ଅକସ୍ମାତ୍ ରଙ୍ଗମଞ୍ଚ ଉପରୁ ମାଇକ୍‌ରେ ଘୋଷଣା କରି ଦିଆଗଲା ଯେ ଦର୍ଶକବୃନ୍ଦ ଏଥିରେ ବ୍ୟସ୍ତ ବିବ୍ରତ ହେବାର କିଛି କାରଣ ନାହିଁ । ନାଟ୍ୟାଭିନୟର ସାଫଲ୍ୟ ହେତୁ ଆମର କେତେକ ବନ୍ଧୁ ବାଣ ଫୁଟାଇ ଆନନ୍ଦ ଉଲ୍ଲାସ ପ୍ରକାଶ କରିଛନ୍ତି । ଆପଣମାନେ ଧୀରସ୍ଥିର ହୋଇ ବସନ୍ତୁ, ଅଭିନୟ ଯଥାରୀତି ଚାଲିବ ।

ନାଟ୍ୟାଭିନୟ ଶେଷ ହେଲା ପରେ ଅଧ୍ୟକ୍ଷ ଶ୍ରୀ ମିଶ୍ର ଶାନ୍ତିରେ ନିଃଶ୍ୱାସଟିଏ ମାରି ଆମମାନଙ୍କୁ ଧନ୍ୟବାଦ ଜଣାଇଥିଲେ । କଲେଜରେ ଯେଉଁ କେତୋଟି ବର୍ଷ ମୁଁ ନାଟ୍ୟ ସଂସଦ ଦାୟିତ୍ୱରେ ଥିଲି, ପ୍ରତିବର୍ଷ କେତେକ ବଛାବଛା ଛାତ୍ରଛାତ୍ରୀଙ୍କୁ ଅଭିନୟର ସୁଯୋଗ ଦେଇଥିଲି । ଗୌରୀପଦ ସେମାନଙ୍କୁ ଉପଯୁକ୍ତ ଅଭିନୟ ଶିକ୍ଷା ଦେଇଥିଲେ । ପରବର୍ତ୍ତୀ କାଳରେ ସେମାନଙ୍କ ମଧ୍ୟରୁ କେତେଜଣ କୁଶଳୀ କଳାକାର ରୂପେ ଉତ୍ତୀର୍ଣ୍ଣ ହୋଇଛନ୍ତି । ଏହି ପ୍ରସଙ୍ଗରେ ମୁଁ ଶ୍ରୀ ଉତ୍ତମ ମହାନ୍ତିଙ୍କର ଶୁଭନାମ ଉଚ୍ଚାରଣ କରିବି । ବଙ୍ଗୀୟ ଅଭିନୟ ଜଗତର ଉତ୍ତମ କୁମାରଙ୍କ ଭଳି ଶ୍ରୀ ମହାନ୍ତି ଆମ ଏଠାରେ ଉଚ୍ଚକୋଟୀର ଅଭିନୟ ପାଇଁ ଯଶସ୍ୱୀ ହୋଇଛନ୍ତି ।

ଅଭିନେତା ଉତ୍ତମ ମହାନ୍ତିଙ୍କ ସହିତ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜର ଆଉ କେତେକ ଛାତ୍ରଛାତ୍ରୀଙ୍କ ସଂପର୍କରେ ଆସିଥିଲି, ଯେଉଁମାନେ ପରବର୍ତ୍ତୀ କାଳରେ ବିଭିନ୍ନ

କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି ଏବଂ ମୋର ଗର୍ବ ଗୌରବର କାରଣ ହୋଇଛନ୍ତି । ଡକ୍ଟର ନିଗମାନନ୍ଦ ବେହେରା, ଡକ୍ଟର ସୁଶାନ୍ତ କୁମାର ବସା, ଡକ୍ଟର ମନ୍ଦାକିନୀ ଦାସ, ସୁଧୀର କୁମାର ମହାନ୍ତ, ବିକାଶଚନ୍ଦ୍ର ଦାସ, ଧୀରେନ ମହାନ୍ତି, ରାହାସବିହାରୀ ଶତପଥୀ ପ୍ରମୁଖ ଅଧ୍ୟାପନା କ୍ଷେତ୍ରରେ ସୁନାମ ଅର୍ଜିଛନ୍ତି । ଶିବାନୀ ଭଟ୍ଟାଚାର୍ଯ୍ୟ, ଅର୍ଚ୍ଚନା ଡେଭିଡ୍, ପୁରୁଷୋତ୍ତମ ବେହେରାଙ୍କ ଭଳି କେତେଜଣ ଛାତ୍ରଛାତ୍ରୀ ଭଲ ଶିକ୍ଷକ ଭାବରେ ପରିଚିତ ହୋଇଛନ୍ତି । ଭଲ ଫୁଟବଲ୍ ଖେଳୁଥିବା ଛାତ୍ର ଶ୍ରୀ ଗଙ୍ଗଲାଇ ବେହେରା ଏବେ ରାଜ୍ୟର ଭିଜିଲାନ୍ସ ବିଭାଗରେ ଜଣେ ଡିଏସ୍‌ପି । ଅନର୍ସ୍ ଛାତ୍ର ଶ୍ରୀ ଅଶ୍ୱିନୀ କୁମାର ଦାସ ବର୍ତ୍ତମାନ ଖ୍ୟାତନାମା କବି । ଶ୍ରୀ ନିମାଇ ମହାନ୍ତି ବାରିପଦାର ବାର୍‌ର ଏବେ ଜଣେ ନାମଜ୍ୟାଦା ସଦସ୍ୟ । ମୟୂରଭଞ୍ଜର ଛଉନୃତ୍ୟ ସଂପର୍କରେ ସେ ଉଚ୍ଚକୋଟୀର ଗବେଷଣା – ପ୍ରବନ୍ଧଟିଏ ପ୍ରସ୍ତୁତ କରିଛନ୍ତି । ଶ୍ରୀ ସନ୍ତୋଷ ମହାନ୍ତିଙ୍କ ସହ ମିଶି ସେତେବେଳେ ସେ 'ସାହିତ୍ୟିକା' ନାମରେ ଏକ ପ୍ରତିଷ୍ଠାନ ଗଢ଼ିଥିଲେ । ବାରିପଦାର 'ମୟୂର ସାହିତ୍ୟ ପରିଷଦ' ସହ ମଧ୍ୟ ନିମାଇ ସଂପୃକ୍ତ ଥିଲେ । ଏହାର ସଭାପତି ଥିଲେ ଶିକ୍ଷାବିତ୍ ଓ ସାହିତ୍ୟିକ ଗୋକୁଳଚନ୍ଦ୍ର ଶତପଥୀ । ନିମାଇଙ୍କ ଅନୁରୋଧରେ ମୁଁ କେତେଥର ଏହି ସାଂସ୍କୃତିକ ପ୍ରତିଷ୍ଠାନ ଯୋଡ଼ିକର କାର୍ଯ୍ୟକ୍ରମରେ ଯୋଗ ଦେଇଛି । ନିମାଇ ବର୍ତ୍ତମାନ ଗୀତିକବିତା ରଚନାରେ ଧୁରୀଣତା ଅର୍ଜନ କରିଛନ୍ତି; ସିନେମା ଓ କ୍ୟାସେଟ୍‌ରେ ତାହା ପ୍ରସାରିତ ହେଉଛି । ବାରିପଦା-ଭଞ୍ଜପୁରରୁ କେତେଜଣ ଯୁବଛାତ୍ର ମିଶି ସାହିତ୍ୟ ସଂଗଠନଟିଏ ଗଢ଼ି ତାହାର ଏକ ମୁଖପତ୍ର ପ୍ରକାଶ କରିବାକୁ ଚାହିଁଲେ । ମୁଖପତ୍ରଟିର ନାମ ମୁଁ ବାଛି ଦେଲି – 'ଉତ୍ତରାପଥ' । କିନ୍ତୁ ହଠାତ୍ ପତ୍ରିକା ପ୍ରକାଶ ନ କରିବା ପାଇଁ ମୁଁ କେତେକ କାରଣ ଦର୍ଶାଇ ଯୁବ ଛାତ୍ରମାନଙ୍କୁ ପରାମର୍ଶ ଦେଲି । ମାତ୍ର ଯୁବ ଉନ୍ମାଦନାର ଉତ୍ତାଳ ତରଙ୍ଗ କି କୌଣସି ବାଧାବନ୍ଧନ ମାନେ ? 'ଉତ୍ତରାପଥ' ପ୍ରକାଶ ପାଇଲା, କିନ୍ତୁ ଯୋଡ଼ିଏ ସଂଖ୍ୟା ବାହାରିଲା ପରେ ବନ୍ଦ ହୋଇଗଲା । ତୁଚ୍ଛା ସାହିତ୍ୟ-ପ୍ରୀତି ଘେନି ଏବଂ ବ୍ୟବସାୟ ଦିଗ ପ୍ରତି ଧ୍ୟାନ ନ ଦେଇ ପତ୍ରିକାଟିଏ ପ୍ରକାଶ କଲେ, ସାଧାରଣତଃ ଏହା ହିଁ ଘଟିଥାଏ ।

ଯୁବ ଶିଳ୍ପୀ କାଶୀନାଥ ବାରିକଙ୍କ କଥା ପାସୋରି ନାହିଁ । ସେ କେବଳ ରେଖାର ସାଧନା କରୁ ନ ଥିଲେ, ଲେଖାର ଅଭ୍ୟାସ ମଧ୍ୟ ଜାରି ରଖିଥିଲେ । ମୁଖ୍ୟତଃ ତାଙ୍କରି ଉଦ୍ୟମରେ ଆମେ ବାରିପଦାରେ ଶିଳ୍ପୀ ବିମ୍ବାଧର ବର୍ମାଙ୍କ ସ୍ମୃତିସଭା କରାଇଥିଲୁ, ଶିଳ୍ପୀ ଯତୀନ ଦାସଙ୍କ କୃତିତ୍ୱ ସଂପର୍କରେ ଆଲୋଚନା କରିଥିଲୁ । ଆମ ସହିତ ଏହି ମହତ୍ କାର୍ଯ୍ୟରେ ଯୋଗ ଦେଉଥିଲେ ବାରିପଦାର ବିଖ୍ୟାତ ଫଟୋଗ୍ରାଫର ଶ୍ରୀ ପୂର୍ଣ୍ଣଚନ୍ଦ୍ର ବିନ୍ଧାଣୀ, ସଂସ୍କୃତିପ୍ରେମୀ ସଂଗଠନକାରୀ ଲକ୍ଷ୍ମୀନାରାୟଣ ଦାସ (ଟୁରି ବାବୁ) ଓ ଅଧ୍ୟାପକ

ମୋହନ ଲାଲ ସାହୁ । ମୁଁ ବାରିପଦାରୁ ବଦଳି ହୋଇ କଟକ ରେଭେନ୍ସା କଲେଜକୁ ଆସିବା ବେଳେ କାଶୀନାଥ, କବି ରବୀନ୍ଦ୍ରନାଥଙ୍କର ଆବକ୍ଷ ଚିତ୍ରଟିଏ ଅଙ୍କନ କରି ମୋତେ ଉପହାର ଦେଇଥିଲେ; ମୁଁ ତାହା ଗଣ୍ଡିଧନ କରି ସାଇତି ରଖିଛି ।

ବାରିପଦାର ସାଂସ୍କୃତିକ ପରମ୍ପରା ସମୃଦ୍ଧ ଥିବା ସଂପର୍କରେ ମୁଁ ଅବହିତ ଥିଲି । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ପୂର୍ଣ୍ଣଚନ୍ଦ୍ର ଭଞ୍ଜ ପ୍ରମୁଖଙ୍କ ପୃଷ୍ଠପୋଷକତାରେ ସ୍ୱାଧୀନତା ପୂର୍ବରୁ ସେଠାରେ ବିଭିନ୍ନ ସାହିତ୍ୟିକ କାର୍ଯ୍ୟକ୍ରମ ପ୍ରଚଳିତ ଥିଲା । 'ଉତ୍କଳ ପ୍ରଭା' (୧୮୯୧), 'ଭଞ୍ଜ ପ୍ରଦୀପ' (୧୯୩୧) ପ୍ରଭୃତି ଉଚ୍ଚକୋଟୀର ସାହିତ୍ୟ-ପତ୍ର ପ୍ରକାଶ ପାଉଥିଲା । ଐତିହାସିକ ପରମାନନ୍ଦ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ 'ବାରିପଦା ସାହିତ୍ୟ ସଂସଦ' ଏବଂ ତାହା ପୂର୍ବରୁ 'ବାରିପଦା ସାହିତ୍ୟ ସମାଜ' (ସଞ୍ଚାଳକ ବସନ୍ତ କୁମାର ଶତପଥୀ) ମୁଁ ଗଲା ବେଳକୁ ଏକପ୍ରକାର ନିଷ୍କ୍ରିୟ ହୋଇପଡ଼ିଥିଲା । ଏଥିରୁ ଗୋଟିକୁ ସକ୍ରିୟ କରିବା ପାଇଁ ଉଦ୍ୟମ ହେଲା । ଗୋକୁଳଚନ୍ଦ୍ର ଶତପଥୀଙ୍କ ସଭାପତିତ୍ୱରେ 'ବାରିପଦା ସାହିତ୍ୟ ସଂସଦ' ପୁନର୍ଗଠିତ ହେଲା । ସଂସଦ ପକ୍ଷରୁ ମୟୂରଭଂଜର ବିଭିନ୍ନ ସ୍ଥାନରେ ସାହିତ୍ୟ ସଭାମାନ ଅନୁଷ୍ଠିତ ହେଉଥିଲା । ଏହି ସଭାରେ ନାଟ୍ୟକାର ଆନନ୍ଦଶଙ୍କର ଦାସ, କବି ଲକ୍ଷ୍ମୀ କୁମାରୀ ଦାସ, କବି ସୀତାକାନ୍ତ ମହାପାତ୍ର (ସେତେବେଳେ ଥିଲେ ମୟୂରଭଞ୍ଜର କଲେକ୍ଟର), ସାହିତ୍ୟିକ ସାତକଡ଼ି ହୋତା ଏବଂ କଲେଜର କେତେକ ଅଧ୍ୟାପକ ଯୋଗଦେଇ ସାହିତ୍ୟାଲୋଚନାରେ ଅଂଶଗ୍ରହଣ କରୁଥିଲେ । ଏପର୍ଯ୍ୟନ୍ତ ସାହିତ୍ୟ ସଂସଦଟି କର୍ମକ୍ଷମ ଥିବା ଆନନ୍ଦର କଥା ।

ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜର ଅଧ୍ୟାପକମଣ୍ଡଳୀ ସେତେବେଳେ ଏକପ୍ରକାର ସଂଘବଦ୍ଧ ଭାବରେ ବା ଇଂରାଜୀରେ ଯାହା ବୋଲାଯାଏ 'ଟିମ୍ ସ୍ପିରିଟ୍'ରେ କାର୍ଯ୍ୟ କରୁଥିଲେ । ବୈଦ୍ୟନାଥ ମିଶ୍ରଙ୍କ ପରେ ଶିବ କୁମାର ପଣ୍ଡା କଲେଜ ଅଧକ୍ଷ ଭାବେ ଯୋଗ ଦେଇଥିଲେ । ଶ୍ରୀ ପଣ୍ଡାଙ୍କ ଅଧକ୍ଷତାରେ କାର୍ଯ୍ୟ କରିବା ବେଶ୍ ପ୍ରୀତିପଦ ଓ ଉତ୍ସାହଜନକ । ଇତିହାସ ବିଭାଗର ଯୁଗଳ କିଶୋର ଦ୍ୱିବେଦୀ, ରସାୟନ ଶାସ୍ତ୍ର ବିଭାଗର ସୁରେନ୍ଦ୍ର ଚନ୍ଦ୍ର ମହାନ୍ତି ଓ ସୂର୍ଯ୍ୟମଣି ବେହେରା, ସଂସ୍କୃତ ବିଭାଗର ରାମଚନ୍ଦ୍ର ଆଚାର୍ଯ୍ୟ, ହିନ୍ଦୀ ବିଭାଗର ଅଜୟ କୁମାର ପଟ୍ଟନାୟକ, ଇଂରେଜୀ ବିଭାଗର ସତ୍ୟନାରାୟଣ ମହାନ୍ତି, ଉଦ୍ଭିଦ ବିଜ୍ଞାନ ବିଭାଗର ଭବନ୍ତୀ ମହାନ୍ତି, ରାଜନୀତି ବିଜ୍ଞାନ ବିଭାଗର ପ୍ରଫୁଲ୍ଲ କୁମାର ରଥ ପ୍ରମୁଖ ଅଧ୍ୟାପକମାନଙ୍କ ସହିତ ଏକମନ ଏକପ୍ରାଣ ହୋଇ ମୁଁ କାର୍ଯ୍ୟ କରୁଥିଲି । ଓଡ଼ିଆ ବିଭାଗରେ ତ ବନ୍ଧୁବତ୍ସଳ ରାଘବାନନ୍ଦ ନାୟକ, ବନବାଳା ମହାନ୍ତି, ଉମେଶ ଚନ୍ଦ୍ର ମିଶ୍ର, ଦାମୋଦର ମିଶ୍ର, ଆନନ୍ଦ କୁମାର ପଟ୍ଟନାୟକ, ହୀରକ ପ୍ରମାଣିକ ଥିଲେ ! ପରେ ଆସି ଯୋଗଦେଲେ ରାଧାମୋହନ ମିଶ୍ର,

ବୈଷ୍ଣବଚରଣ ବଳ, ମୋହନ ଲାଲ ସାହୁ ପ୍ରମୁଖ । ମୋରି ପ୍ରଚେଷ୍ଟାରେ ସେଠାରେ ଅଧ୍ୟାପକମାନଙ୍କର ଏକ 'ଚର୍ଚ୍ଚାଚକ୍ର' ଆରମ୍ଭ ହୋଇଥିଲା । ଆଗ୍ରହୀ ବନ୍ଧୁମାନେ ମଝିରେ ମଝିରେ ସନ୍ଧ୍ୟା ସମୟରେ ଜଣେ ଜଣେ ଅଧ୍ୟାପକଙ୍କ ବାସଗୃହରେ ଏକତ୍ର ହୋଇ ଏକ ନିର୍ଦ୍ଦିଷ୍ଟ ପ୍ରସଙ୍ଗରେ ଆଲୋଚନା-ଚର୍ଚ୍ଚା କରୁଥିଲେ, କିମ୍ବା ଲିଖିତ ପ୍ରବନ୍ଧ ଉପରେ ମତ ବିନିମୟ କରୁଥିଲେ । ମୋର ସୁପରିଚିତ 'ବିପ୍ଳବ' ପ୍ରବନ୍ଧଟି କଲେଜ ଅଧ୍ୟକ୍ଷଙ୍କ ବାସଗୃହରେ ଅନୁଷ୍ଠିତ ସେହିପ୍ରରି ଏକ ବୈଠକରେ ପଠିତ ଓ ଆଲୋଚିତ ହୋଇଥିଲା । ଏହି ପରମ୍ପରା ମୁଁ ପୂର୍ବରୁ ଭଦ୍ରକ କଲେଜ ଅଧ୍ୟାପକମାନଙ୍କ ମେଳରେ ଆରମ୍ଭ କରିଥିଲି ।

ଅନ୍ୟ ଏକ ଉତ୍କୃଷ୍ଟ ପରମ୍ପରା କଲେଜର ଓଡ଼ିଆ ଭାଷା-ସାହିତ୍ୟର ଅନର୍ସ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ମେଳରେ ପ୍ରବର୍ତ୍ତନ କରିଥିଲି । କଲେଜ ମାଗାଜିନ୍ 'ଭଞ୍ଜ ଭାରତୀ' ତ ପ୍ରକାଶ ପାଉଥିଲା ! ଓଡ଼ିଆ ସେମିନାର୍ ପକ୍ଷରୁ 'ଭାରତିକା' ନାମରେ ଏକ ବାର୍ଷିକ ସାହିତ୍ୟପତ୍ର ବାହାର କରିବାର ଉଦ୍ୟମ ହେଲା । ଛାତ୍ରଛାତ୍ରୀଙ୍କ ମଧ୍ୟରେ ଥିବା ସୃଜନାତ୍ମକ ଶକ୍ତି – ବିଶେଷତଃ ସମାଲୋଚନା କରିବାର ପ୍ରବଣତା ଜାଗରୂକ କରିବା ଉଦ୍ଦେଶ୍ୟରେ ଏହା କରାଯାଇଥିଲା । ଏଥିରେ ମୁଖ୍ୟତଃ ଅନର୍ସ ଛାତ୍ରଛାତ୍ରୀଙ୍କର ଆଲୋଚନା ପ୍ରବନ୍ଧମାନ ପ୍ରକାଶ ପାଉଥିଲା । ପ୍ରତି ମାସରେ ଅନ୍ତତଃ ଥରେ ଲେଖାଏଁ ଓଡ଼ିଆ ସେମିନାର ବୈଠକ ହେଉଥିଲା । ତହିଁରେ ଛାତ୍ରଛାତ୍ରୀଙ୍କର ଲେଖାମାନ ପଠିତ ଓ ଆଲୋଚିତ ହେଉଥିଲା । ସେମିନାର୍‌ର ବିଶେଷ ଅଧିବେଶନମାନଙ୍କରେ ବିଶିଷ୍ଟ ସାହିତ୍ୟିକଙ୍କୁ ନିମନ୍ତ୍ରଣ କରି ସେମାନଙ୍କ ଅଭିଭାଷଣର ବ୍ୟବସ୍ଥା କରାଯାଉଥିଲା । କବି ସୀତାକାନ୍ତ ମହାପାତ୍ର, ଖ୍ୟାତନାମା ବଙ୍ଗଳା ସାହିତ୍ୟିକ ଶ୍ରୀ ଅବଧୂତ, ବିଶିଷ୍ଟ ସାହିତ୍ୟିକ ଓ ସମାଜସେବୀ ନିତ୍ୟାନନ୍ଦ ମହାପାତ୍ର ଏବଂ ଚିତ୍ତରଂଜନ ଦାସ ସେହି କାର୍ଯ୍ୟକ୍ରମରେ ଯେଉଁ ଭାଷଣ ଦେଇଥିଲେ, ତାହା 'ଭାରତିକା' ପୃଷ୍ଠାରେ ପ୍ରକାଶ ପାଇଥିଲା । ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କୁ ମଧ୍ୟ ସେମିନାର ବୈଠକକୁ ନିମନ୍ତ୍ରଣ କରାଯାଇଥିଲା; ମାତ୍ର ଅସୁବିଧା ବଶତଃ କଟକରୁ ବାରିପଦା ଆସି ନ ପାରି ସେ ନିଜର ବାରିପଦା ରହଣି ସଂପର୍କରେ ଏକ ଚମତ୍କାର ସ୍ମୃତିଚିତ୍ର ଲେଖି ପଠାଇଥିଲେ । ଲେଖାଟି 'ଭାରତିକା' ପୃଷ୍ଠାରେ ସ୍ଥାନିତ ହୋଇଥିଲା । ଯେଉଁ ସାଢ଼େ ତିନି ବର୍ଷରୁ କିଂଚିତ୍ ଅଧିକ କାଳ ମୁଁ ବାରିପଦାରେ ଥିଲି, 'ଭାରତିକା'ର ତିନିଟି ବାର୍ଷିକ ସଂକଳନ ପ୍ରକାଶ କରାଇଥିଲି । ଏବେ ଆଉ ତାହା ପ୍ରକାଶ ପାଉ ନଥିବାର ଖବର ପାଉଛି । ଓଡ଼ିଆ ସେମିନାର ବୈଠକ ଆଉ ମଧ୍ୟ ସେପରି ହେଉନାହିଁ । ଭଲ ପରମ୍ପରାଟିଏ ପ୍ରବର୍ତ୍ତନ କରିଦେବା ହୁଏତ ସହଜ, କିନ୍ତୁ ତାହା ନିୟମିତ ଚଳାଇ ରଖିବା ବଡ଼ କଷ୍ଟକର ।

ମୟୂରଭଞ୍ଜ ଏକ ସାନ୍ତାଳ-ବହୁଳ ଜିଲ୍ଲା । ସମଗ୍ର ଜିଲ୍ଲାରେ ଏମାନଙ୍କର ସଂଖ୍ୟା ପ୍ରାୟ ପାଞ୍ଚ ଲକ୍ଷ । ଏମାନଙ୍କର ଜୀବନଧାରା ସହିତ ମୁଁ ପୂର୍ବରୁ ପରିଚିତ ଥିଲି । ନିଜ ଜିଲ୍ଲା ଛାଡ଼ି କେତେକ ସାନ୍ତାଳ-ପରିବାର ବାଲେଶ୍ୱର, ଭଦ୍ରକ ଆଦି ସହରକୁ ଚାଲି ଆସନ୍ତି । ବଣ ଜଙ୍ଗଲରେ ସେମାନଙ୍କର ଜୀବନ-ଚର୍ଯ୍ୟା ସହରୀ ପ୍ରଭାବରେ ପରିବର୍ତ୍ତିତ ହୋଇଯାଏ । ଯେଉଁ ସହରବାସୀ ବାବୁମାନଙ୍କୁ 'ଦିକୁ' ନାମ ଦେଇ ସେମାନେ ନାକ ଟେକନ୍ତି, କ୍ରମେ ସେମାନେ ସେହି 'ଦିକୁ'ରେ ପରିଣତ ହୋଇଯାଆନ୍ତି । ବାରିପଦାରେ ଥିଲାବେଳେ ମୁଁ ସାନ୍ତାଳମାନଙ୍କ ମଧ୍ୟରେ 'ଦିକୁ ହଟାଓ' ଆନ୍ଦୋଳନ ଦାନା ବାନ୍ଧୁଥିବାର ଦେଖି ଆସିଥିଲି । ଜିଲ୍ଲାର ବଣପାହାଡ଼ ଘେରା ପ୍ରାକୃତିକ ପରିବେଶରେ ସେମାନେ କିନ୍ତୁ ଶାନ୍ତ ସୁନ୍ଦର ଜୀବନ ଯାପନ କରନ୍ତି । ଚାଷ କାର୍ଯ୍ୟରେ ଦିନମାନ କଠିନ ପରିଶ୍ରମ କରି ସନ୍ଧ୍ୟାବେଳେ ନାଚଗୀତରେ ଜୀବନକୁ ଉପଭୋଗ କରନ୍ତି । ଚାଷକାର୍ଯ୍ୟ ସହିତ ଶାଳପତ୍ର, ମହୁ, ଝୁଣା, ଫଳମୂଳ ଇତ୍ୟାଦି ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରି ଜୀବିକାର୍ଜନରେ ସହାୟତା ପାଇଥାଆନ୍ତି । ବଣପାହାଡ଼ ସହ ସେମାନଙ୍କ ଜୀବନ ଓତପ୍ରୋତ ଭାବରେ ଜଡ଼ିତ । ହାଣ୍ଡିଆ ସେମାନଙ୍କର ପ୍ରିୟ ପାନୀୟ । ମକର, ରଜ ଆଦି ପର୍ବପର୍ବାଣିରେ ହାଣ୍ଡିଆର ବନ୍ୟା ଖେଳିଯାଏ । ସେପରି ସ୍ୱାଦଯୁକ୍ତ ନ ହେଲେ ହେଁ ହାଣ୍ଡିଆ ଉତ୍ତେଜକ । ଶାରୀରିକ ଶ୍ରମ ପାଇଁ ଏହା ଶକ୍ତି ଯୋଗାଇଥାଏ । କେବଳ ହାଣ୍ଡିଆ ପିଇ ଲୋକେ ଦିନ ଦିନ କୌଣସି ଖାଦ୍ୟଦ୍ରବ୍ୟ ନ ଖାଇ ରହିଯାଇ ପାରନ୍ତି । ବିଚିତ୍ର କଥା – ଦେବଦେବୀଙ୍କୁ ମଧ୍ୟ ଏହା ନୈବେଦ୍ୟ ରୂପେ ଅର୍ପଣ କରାଯାଇଥାଏ । ବାରିପଦାରେ ଥିଲାବେଳେ ସାନ୍ତାଳମାନଙ୍କ ଜୀବନଚର୍ଯ୍ୟା ଘେନି ମୁଁ କିଛି ଗଳ୍ପ ଓ ଆଲୋଚନା ଲେଖିଥିଲି ।

ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ ପ୍ରତିଷ୍ଠାର ପଚିଶ ବର୍ଷ ପୂରି ଯାଇଥିଲା, ତେଣୁ କଲେଜରେ ରଜତ ଜୟନ୍ତୀ ଉତ୍ସବ ପାଳନ କରିବା ପାଇଁ ସ୍ଥିର ହେଲା । ଅଧ୍ୟକ୍ଷ ଶ୍ରୀ ପଣ୍ଡା ମୋତେ ଉତ୍ସବ ପାଳନର କେତେକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେଇଥିଲେ । କଲେଜ ନାଟ୍ୟସଂସଦର କାର୍ଯ୍ୟକ୍ରମ ତ ରହିଥିଲା ! ଉତ୍ସବ ଉପଲକ୍ଷେ ଏକ ଶୋଭନୀୟ ସ୍ମରଣିକା ପ୍ରକାଶର ଅଧିକା ଦାୟିତ୍ୱ । ଶିକ୍ଷାବିତ୍ ଗୋକୁଳଚନ୍ଦ୍ର ଶତପଥୀଙ୍କ ଅଧ୍ୟକ୍ଷତାରେ ସ୍ମରଣିକା କମିଟି ଗଠିତ ହୋଇଥିଲା, ତହିଁରେ ମୁଁ ସଂଚାଳକ ଭାବରେ କାର୍ଯ୍ୟ କରିଥିଲି । କମିଟି ସ୍ଥିର କଲା – ରଜତ ଜୟନ୍ତୀ ଦିନ ହିଁ ସ୍ମରଣିକା ପ୍ରକାଶ ପାଇବ ଏବଂ ସଂପୃକ୍ତ ଅତିଥି, ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ତାହା ବିତରଣ କରାଯିବ । ହାତରେ ବେଶି ସମୟ ନ ଥିଲା; ମୁଁ ଲେଖା ଓ ଫଟୋଚିତ୍ର ସଂଗ୍ରହରେ ଲାଗିପଡ଼ିଲି । କଟକସ୍ଥ ଗୋସ୍ୱାମୀ ପ୍ରେସ୍‌ରେ

ସ୍ମରଣିକା ଛାପା ହୋଇ ଠିକ୍ ସମୟରେ ବାରିପଦାରେ ପହଞ୍ଚିଗଲା । ସ୍ମରଣିକାଟି ଲେଖା ଓ ରେଖାରେ ଥିଲା ସମୃଦ୍ଧ । ଏହାର ସୁଦୃଶ୍ୟ ପ୍ରଚ୍ଛଦପଟ ଆଙ୍କିଥିଲେ ଶିଳ୍ପୀ ଅଧ୍ୟାପକ ପ୍ରତାପ କୁମାର ପଟ୍ଟନାୟକ । ମୟୂରଭଞ୍ଜ ଶିକ୍ଷା, ଭୂତତ୍ତ୍ୱ ଓ ଖଣିଜ ସଂପଦ, ଟସର ଶିଳ୍ପ, ଆଦିବାସୀ ଭାଷା, ଝୁମର ଗୀତ ପ୍ରଭୃତି ବିଭିନ୍ନ ବିଭାବ ଘେନି ଇଂରାଜୀ ଓ ଓଡ଼ିଆ ଭାଷାରେ ପ୍ରବନ୍ଧମାନ ଏଥିରେ ପ୍ରକାଶ ପାଇଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟ୍‌ର ପ୍ରଥମ ବୈଠକରେ ୧.୫.୧୯୪୪ ତାରିଖରେ ପ୍ରୋ-ଚାନ୍‌ସେଲର ରୂପେ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜଦେବ ଯେଉଁ ଭାଷଣ ଦେଇଥିଲେ, ତାହାର ଅଂଶବିଶେଷ ମଧ୍ୟ ସ୍ମରଣିକାରେ ସ୍ଥାନିତ ହୋଇଥିଲା । ସେହି ଉପାଦେୟ ଭାଷଣର ବର୍ତ୍ତମାନ ପାଇଁ ପ୍ରାସଙ୍ଗିକତା ଥିବା ମନେ କରି ଏଠାରେ ମୁଁ ତାହା ଉଦ୍ଧାର କରିବାକୁ ଉଚିତ ମନେ କରୁଛି ।

''ପୃଥିବୀ ଯେତେବେଳେ ଧ୍ୱଂସର କବଳରେ କଲବଲ, ସେତିକିବେଳେ ଏ ଉତ୍କଳ ବିଶ୍ୱବିଦ୍ୟାଳୟର ଜନ୍ମ । ଯାହା ଆଜି ଧ୍ୱଂସକାଳୀନ ଯନ୍ତ୍ରଣା ବୋଲି ମନେ ହେଉଛି, ତାହା ହୁଏତ ପୃଥିବୀର ପୁନର୍ଜନ୍ମର ପୂର୍ବାଭାସ ହୋଇପାରେ । ଏହିଭଳି ମୁହୂର୍ତ୍ତରେ କେତେକ ଶ୍ରେଷ୍ଠ ଭାବଧାରା ଜନ୍ମିଥାଏ ଓ ବିକଶିତ ହୋଇଥାଏ । କାରଣ ଏହିଭଳି ମୁହୂର୍ତ୍ତରେ ଲୋକେ ପ୍ରକୃତରେ ଏକତା, ମିଳିତ ଯନ୍ତ୍ରଣା ଓ ଦ୍ରୁତ ନିଷ୍ପତ୍ତିର ମହତ୍ତ୍ୱ ବୁଝିଥାନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ଯୁଦ୍ଧର ଏହି ଘନଘଟା ଭିତରେ ଜନ୍ମଲାଭ କରିଥିଲେ ମଧ୍ୟ ଯେଉଁ ମହତ୍ ଉଦ୍ଦେଶ୍ୟ ଘେନି ଏହା କଳ୍ପିତ ହୋଇଛି, ସେହିଭଳି ଭାବରେ ପରିକଳ୍ପିତ ହେଲେ, ଏହା ବିଶ୍ୱବିଦ୍ୟାଳୟର ଉଚ୍ଚତମ ଆଦର୍ଶ ରକ୍ଷା କରିପାରିବ ଓ ଯୁବସମାଜ ଭିତରେ ଏହିଭଳି ଗୁଣ ଫୁଟାଇ ପାରିବ; ଯଦ୍ୱାରା ବାହାରକୁ ଦେଖାଯାଉଥିବା ଅନୈକ୍ୟ ଭିତରେ ଐକ୍ୟ ପ୍ରତିଷ୍ଠିତ ହୋଇପାରିବ । XXX ପୃଥିବୀର ବିଶେଷତଃ ଭାରତବର୍ଷର ସଂସ୍କୃତି ଲାଗି ଆମେ ଯେପରି ଆମ ସ୍ୱତନ୍ତ୍ର ଅବଦାନ ଦେଇପାରିବା, ସେଥିଲାଗି ଏହି ବିଶ୍ୱବିଦ୍ୟାଳୟ ଏତିକିବେଳୁ ଭଲ କରି ଭାବିଚିନ୍ତି ଏପରି ଓଡ଼ିଆ ତିଆରି କରିବା ଦରକାର, ଯେଉଁମାନେ ତାଙ୍କ ପୂର୍ବପୁରୁଷଙ୍କର ଯୋଗ୍ୟ ପ୍ରତିନିଧି ହେବେ । ଆମର ଅତୀତରେ ଯାହା ସତ୍ୟ-ଶିବ-ସୁନ୍ଦର ଥିଲା, ତାହା ସହିତ ବିକାଶୋନ୍ମୁଖୀ ଆଧୁନିକ ଭାବାଧାରାର ଏକ ମଧୁର ସମନ୍ୱୟ ଆବଶ୍ୟକ । ଆଧୁନିକ ବିଶ୍ୱବିଦ୍ୟାଳୟ ଅନେକ ମତିମାନ ଲୋକ ତିଆରି କରିଛି ସତ, କିନ୍ତୁ ଅନ୍ୟପକ୍ଷରେ ଦେଖାଯାଏ ଯେ ଅନେକ ସମୟରେ କେବଳ କାରଖାନାରୁ କଳ ତିଆରି ହେଲାଭଳି ଲୋକ ତିଆରି ହୋଇ ବାହାରନ୍ତି । ମୁଁ ବିଶ୍ୱବିଦ୍ୟାଳୟ ଶିକ୍ଷା ବିଷୟରେ ଜଣେ ବିଶେଷଜ୍ଞ ଭଳି କହିବାକୁ ଯାଉ ନାହିଁ । ତେଣୁ ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଯେଉଁସବୁ

ବିପଦ ଓ ତ୍ରୁଟି ରହିଛି, ସେ କଥା ମନେ ରଖି ଆମ ଶିକ୍ଷାନୀତି ଅଧିକତର କାର୍ଯ୍ୟକାରୀ ଭିତ୍ତି ଉପରେ ପ୍ରତିଷ୍ଠିତ କରିବା ଉଚିତ । ତେଣୁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଆତ୍ମମର୍ଯ୍ୟାଦା-ସଂପନ୍ନ, ଅନୁରକ୍ତ, କର୍ତ୍ତବ୍ୟପରାୟଣ, ଧର୍ମଭୀରୁ ଓ ସଚ୍ଚା ନାଗରିକ ଯେପରି ଉତ୍ତୁରନ୍ତି, ସେଥିପ୍ରତି ନଜର ଦେଇ ଆମକୁ ଏହି ବିଶ୍ୱବିଦ୍ୟାଳୟ ଗଢ଼ିବାକୁ ହେବ ।''

ସ୍ମରଣିକାରେ ଅଳ୍ପ କେତେଜଣ ଛାତ୍ରଛାତ୍ରୀଙ୍କର ଲେଖା ପ୍ରକାଶ ପାଇଥିଲା । ମୟୂରଭଞ୍ଜର ବିଭିନ୍ନ ବିଭାବ ସଂପର୍କିତ କେତେକ ଫଟୋଚିତ୍ର ମଧ୍ୟ ଏହାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥିଲା । ସ୍ମରଣିକାଟି ଏକ ସଂଗ୍ରହଣୀୟ ଦଲିଲ୍ ବୋଲି ସେତେବେଳେ ମତ ପ୍ରକାଶ ପାଇଥିଲା ।

୧୯୭୨ ମସିହାରେ ବାରିପଦାରେ 'ଓଡ଼ିଆ ଯୁବ ଲେଖକ ସମ୍ମେଳନ'ର ଅଷ୍ଟମ ବାର୍ଷିକ ଅଧିବେଶନର ଅନୁଷ୍ଠାନ ଏବଂ ସେହି ବର୍ଷ ସମ୍ମେଳନ ପକ୍ଷରୁ କୋଲକାତାଠାରେ ଅନୁଷ୍ଠିତ 'ପୂର୍ବାଞ୍ଚଳ ଲେଖକକୁଳ ସମ୍ମେଳନ' – ଯହିଁରେ ସଭାପତି ଭାବରେ ମୁଁ ଓତପ୍ରୋତ ଭାବରେ ସଂପୃକ୍ତି ଥିଲି – ତାହା ଏକ ସ୍ୱତନ୍ତ୍ର ଅଧ୍ୟାୟର ବିଷୟ । ଅନ୍ୟ ପର୍ଯ୍ୟାୟରେ ତାହା ଉଲ୍ଲେଖ କରିଛି ।

ମୋର ମୟୂରଭଞ୍ଜ ମଜ୍ଜନ ଶେଷ ହୋଇ ଆସୁଗଲା । ୧୯୭୫ ମସିହା ମେ ମାସରେ କଟକ ରେଭେନ୍ସା କଲେଜକୁ ବଦଳି ଆଦେଶ ଆସିଥିଲା । ଗ୍ରୀଷ୍ମ ଛୁଟିରେ କଥାଟା ପ୍ରଚାରିତ ହୋଇଗଲା ପରେ ବାରିପଦାର ବିଭିନ୍ନ ସାଂସ୍କୃତିକ ପ୍ରତିଷ୍ଠାନ ପକ୍ଷରୁ ମୋତେ ବିଦାୟ ସମ୍ବର୍ଦ୍ଧନା ଦିଆଯାଇଥିଲା । କଲେଜ ପଶ୍ଚାତ ଭାଗରେ ଗୋକୁଳଚନ୍ଦ୍ର ଶତପଥୀଙ୍କ ବାସଗୃହରେ ଏହି ଉପଲକ୍ଷେ ଯେଉଁ ବନ୍ଧୁ ମିଳନ ଅନୁଷ୍ଠିତ ହୋଇଥିଲା, ତାହା ମୋର ସ୍ମୃତିପଟରେ ଅଲିଭା ହୋଇ ରହିଛି । ମୟୂରଭଞ୍ଜର କଲେକ୍ଟର୍ ସୀତାକାନ୍ତ ମହାପାତ୍ର, ସମାଜସେବୀ ହରିଶ୍ଚନ୍ଦ୍ର ଦାଶଙ୍କ ସମେତ ସହରର କବି, ଲେଖକ, ଅଧ୍ୟାପକମାନେ ସେଠାରେ ଏକତ୍ର ହୋଇଥିଲେ । ରାଜ୍ୟର ସେହି ଅଞ୍ଚଳ ପ୍ରତି ମୋର ପ୍ରୀତିର ବନ୍ଧନ ଯେ କେତେ ଦୃଢ଼, ତାହା ସେଠାରେ ମୁଁ ଅନୁଭବ କରିପାରିଥିଲି । ସେହି ବର୍ଷ ଜୁନ୍ ମାସରେ ଦେଶରେ ଜରୁରୀକାଳୀନ ପରିସ୍ଥିତି (ଇମର୍ଜେନ୍ସି) ଜାରି ହୋଇଗଲା । ଇମର୍ଜେନ୍ସିରେ ମୋର ବଦଳି ଆଦେଶ କାର୍ଯ୍ୟକର ହୋଇପାରିବା ବିଷୟରେ ମନରେ ଆଶଙ୍କା ଉପୁଜିଥିଲା । ଯାହାହେଉ, ଜୁନ୍ ଶେଷ ସପ୍ତାହରେ ପେଡ଼ିପୁଟୁଳା ବାନ୍ଧି ମୁଁ ମୟୂରଭଞ୍ଜ ଛାଡ଼ିଲି । ପଛରେ ରହିଗଲା ସାଢ଼େ ତିନିବର୍ଷର କର୍ମମୁଖର ଜୀବନ ।

# କନ୍ଧମାଳର ସୁଗନ୍ଧ

୧୯୮୧ ମସିହା ଅଗଷ୍ଟ ମାସରେ କନ୍ଧମାଳ ଜିଲ୍ଲାର ସଦର ମହକୁମା ଫୁଲବାଣୀରେ ଥିବା ସରକାରୀ କଲେଜକୁ ବଦଳି ହୋଇ ଆସିଲି । ଏହାର ପାଞ୍ଚ ମାସ ପୂର୍ବରୁ ଫୁଲବାଣୀ ଯାଇଥିଲି ଓଡ଼ିଶା ସାହିତ୍ୟ ଏକାଡ଼େମୀର 'ରାଜନୈତିକ କଥା ସାହିତ୍ୟ' ଶୀର୍ଷକ ଏକ ସଂପାନରେ ଅଂଶଗ୍ରହଣ କରିବା ପାଇଁ । ପୁଣି, ସେହିଠାରୁ 'ଓଡ଼ିଆ ଯୁବ ଲେଖକ ସମ୍ମେଳନ'ର ସପ୍ତମ ଅଧିବେଶନରେ ୧୯୭୧ ମସିହାରେ ମୁଁ ସଭାପତି ଭାବରେ ନିର୍ବାଚିତ ହୋଇଥିଲି । ତେଣୁ ଫୁଲବାଣୀ ସହିତ ମୁଁ ଅପରିଚିତ ନ ଥିଲି । ଏହାର ପ୍ରାକୃତିକ ପରିବେଶ ମୋତେ ଭଲ ଲାଗିଥିଲା । ତାହାହିଁ ମୋତେ ଆକୃଷ୍ଟ କରି ଆଣିଲା ଫୁଲବାଣୀକୁ । କଲେଜରେ ଜଏନ୍ କଲାପରେ କଟକ ଓ ଫୁଲବାଣୀର ମୋର କେତେକ ବନ୍ଧୁ କହିଲେ – ଉପର ମହଲରେ ଆପଣଙ୍କର ହାତ ଥାଉଁ ଥାଉଁ ଆପଣ ଏ ବଦଳି ବନ୍ଦ କରିପାରିଲେ ନାହିଁ ! ସେତେବେଳେ ରାଜ୍ୟର ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ । ତାଙ୍କ ସହିତ ପୂର୍ବରୁ ମୋର ଭଲ ପରିଚୟ ଥିଲା । ତାଙ୍କୁ ମୁଁ 'ଭାଇ' ବୋଲି ସମ୍ବୋଧନ କରୁଥିଲି । ପୁଣି, ମୋର ଜଣେ ପ୍ରିୟ ଛାତ୍ର ଯୁଗଳକିଶୋର ପଟ୍ଟନାୟକ ସେତେବେଳେ ମନ୍ତ୍ରୀମଣ୍ଡଳର ସଦସ୍ୟ । ବଦଳି ଅର୍ଡ଼ର ପାଇଲା ପରେ ମୁଁ କାହାରିକୁ କିଛି ନ କହି ସିଧା ଫୁଲବାଣୀ କଲେଜରେ ଯାଇ ଜଏନ୍ କରିଗଲି । ପରେ ଯୁଗଳ ବାବୁଙ୍କ ସହ ସାକ୍ଷାତ୍ ହେଲାରୁ ସେ ମୋତେ କହିଲେ – ଆପଣ ଫୁଲବାଣୀ ଯିବା ପୂର୍ବରୁ ମୋତେ ଥରେ କହିଲେ ନାହିଁ ! 'ଓଡ଼ିଆ ଗବେଷଣା ପରିଷଦ' (ପ୍ରତିଷ୍ଠା : ଅକ୍ଟୋବର ୧୯୮୦) ଆରମ୍ଭ ହୋଇଛି । ଆଗରେ ପୁଣି ଓଡ଼ିଶା ସାହିତ୍ୟ ଏକାଡ଼େମୀର ରଜତ ଜୟନ୍ତୀ ଉତ୍ସବ; ଏଥିରେ ଗବେଷଣା ପରିଷଦକୁ କିଛି ଦାୟିତ୍ୱ ଦେବା ପାଇଁ ଆମେ ସ୍ଥିର କରିଛୁଁ । ଆପଣ ଫୁଲବାଣୀ ଗଲେ, ଏଠାରେ କ୍ଷେତ୍ରବାସୀ (ଡଃ କ୍ଷେତ୍ରବାସୀ ନାୟକ, ପରିଷଦର ସେକ୍ରେଟେରୀ) ଏକାକୀ ଏହିସବୁ କାର୍ଯ୍ୟ ତୁଲାଇ ପାରିବ ତ ?

ଯୁଗଳବାବୁ ସେତେବେଳେ ସଂସ୍କୃତି ବିଭାଗ ଦାୟିତ୍ୱରେ ଥାଆନ୍ତି । ତାଙ୍କୁ ମୋର ଉତ୍ତର ଥିଲା – ମଝିରେ ମଝିରେ ମୁଁ କଟକ ଆସି ଏସବୁ କାର୍ଯ୍ୟ ବୁଝାଶୁଝା କରିବି । ମୋର ତିନୋଟିଯାକ ପିଲା ପୁଣି କଟକରେ ପାଠ ପଢୁଛନ୍ତି । ପ୍ରାୟ ପ୍ରତ୍ୟେକ ସପ୍ତାହାନ୍ତରେ ମୋତେ କଟକ ଆସିବାକୁ ହେବ । ଏଠାରେ କୌଣସି କାର୍ଯ୍ୟ ଅଟକିବ ନାହିଁ । କଲେଜର କେତେକ ଅଧ୍ୟାପକ ଓ ଫୁଲବାଣୀ ସହରର କେତେକ ବିଶିଷ୍ଟ ବ୍ୟକ୍ତି ମଧ୍ୟ ମୋର ସେଠାରେ ରହଣି ସଂପର୍କରେ ପ୍ରଶ୍ନବାଚୀ ମନରେ ପୋଷଣ କରିଥିଲେ । ସାମ୍ବାଦିକ ଶ୍ରୀ ନାଜିର୍ ଆଖତାର୍ ଦିନେ ପଚାରିଦେଲେ – ଆପଣ ଏଠାରେ କିଛି ବର୍ଷ ରହିବେ, ନା ପଳେଇ

ଯିବେ ? ତାଙ୍କୁ ଉତ୍ତର ଦେଲି – ରହିବା ପାଇଁ ତ ଆସିଛି ! କନ୍ଧମାଳର ପ୍ରାକୃତିକ ପରିବେଶ ଓ ସରଳ ସୁନ୍ଦର ଜନଜୀବନ ମୋତେ ଏଠାକୁ ଆକର୍ଷିତ କରି ଆଣିଛି । ଦେଖାଯାଉ, କେତେ ବର୍ଷ ଏଠାରେ ରହିପାରିବି !

କନ୍ଧମାଳରେ ରହୁଁ ରହୁଁ ପ୍ରାୟ ସାଢ଼େ ଚାରି ବର୍ଷ ରହିଗଲି । ସେଠାରେ ମୋର ରହିବାର ଅସୁବିଧା ଥିଲା ମୁଖ୍ୟତଃ ଦୁଇଟି । ସେଠାକୁ ମୁଁ ଯିବା ସଂଗେ ସଂଗେ ସରକାରୀ ବାସଗୃହଟି ପାଇଗଲି । ମାତ୍ର ଖିଆପିଆ ? ପରିବାର ରହିଲା କଟକରେ । ତେଣୁ ରନ୍ଧାବଢ଼ା କରି ଗଣ୍ଡେ ଖାଇବାକୁ ଦେବ କିଏ ? କଲେଜ ପାଖରେ ସେତେବେଳେ କୌଣସି ହୋଟେଲ୍ ନ ଥିଲା, ହୋଟେଲ୍ ଥିଲା ପ୍ରାୟ ଦୁଇ କିଲୋମିଟର ଦୂର ଫୁଲବାଣୀ ସହରରେ । ପ୍ରତ୍ୟହ ଦିନରେ କ୍ଲାସ୍ ମଝିରେ ଏବଂ ରାତି ନଅଟା ବେଳେ ସହରକୁ ଯାଇ ଖିଆପିଆ କରିବା ଅସୁବିଧାଜନକ ଥିଲା । କିଛିଦିନ ଖିଆପିଆର ଅବ୍ୟବସ୍ଥାରେ କଟିଲା ପରେ କଲେଜ ଅଫିସ୍‌ର ଏକାଉଣ୍ଟେଣ୍ଟ କହଁର ବାବୁ ଲେଡ଼ିଜ୍ କମନ୍‌ରୁମ୍‌ର ପିଅନ ସୁକୁମାୟାକୁ ମୋ ବାସଗୃହରେ ଦୁଇଓଳି ରାନ୍ଧିବା ପାଇଁ ବ୍ୟବସ୍ଥା କରିଦେଲେ । ସୁକୁମାୟା ଜଣେ ବିଧବା ନେପାଳୀ ସ୍ତ୍ରୀଲୋକ, ଆପଣା ଝିଅ ରୀନା ଓ ପୁଅ ବାବୁଙ୍କୁ ଘେନି କଲେଜ ପାଖ ଗୋଟିଏ ଭଡ଼ା ଘରେ ରହୁଥାଏ । ମାଆ-ଝିଅ ଦୁହେଁ ମିଶି ରୋଷେଇବାସ କରିଦିଅନ୍ତି ଏବଂ ଅଧିକାଂଶ ସମୟରେ ମୋ ବସାରେ ଖିଆପିଆ କରନ୍ତି ।

ଦ୍ୱିତୀୟ ଅସୁବିଧାଟି ହେଲା – ଯୁଗଳବାବୁ ଯାହା ଆଶଙ୍କା କରିଥିଲେ, 'ଓଡ଼ିଆ ଗବେଷଣା ପରିଷଦ' କାର୍ଯ୍ୟରେ ଅବ୍ୟବସ୍ଥା ଓ ଶିଥିଳତା । ପରିଷଦର ସେକ୍ରେଟେରୀ କ୍ଷେତ୍ରବାସୀ ଏକାକୀ ସବୁ ବ୍ୟାପାର ତୁଲାଇ ପାରୁ ନ ଥିଲେ । ବିଶେଷତଃ ଯେତେବେଳେ 'ଓଡ଼ିଶା ସାହିତ୍ୟ ଏକାଡ଼େମୀ'ର ରଜତ ଜୟନ୍ତୀ ଉତ୍ସବରେ ଓଡ଼ିଆ ସାହିତ୍ୟ ବିଭାଗର ଦାୟିତ୍ୱ ପରିଷଦ ଉପରେ ନ୍ୟସ୍ତ କରାଗଲା, ତାହାର ପ୍ରସ୍ତୁତି ପର୍ବରେ ମୋର କଟକରେ ବାରମ୍ବାର ଉପସ୍ଥିତି ଅପରିହାର୍ଯ୍ୟ ହୋଇ ପଡ଼ିଲା । ସେତେବେଳେ କାର୍ଯ୍ୟକାରୀ ସମିତିର ଶ୍ରୀ ଚିତ୍ତରଂଜନ ଦାସ (ଉପସଭାପତି), ଅଧ୍ୟାପିକା ଶ୍ରୀମତୀ ଶରତ୍ କୁମାରୀ ମିଶ୍ର (କୋଷାଧକ୍ଷ) ଓ ଅଧ୍ୟାପିକା ଲାବଣ୍ୟ ନାୟକଙ୍କ ବ୍ୟତୀତ ଅନ୍ୟ ସମସ୍ତେ କଟକ ବାହାରେ ରହୁଥିଲେ । ତେଣୁ ମୋତେ ବାରମ୍ବାର ଫୁଲବାଣୀରୁ କଟକ ଆସିବା ପାଇଁ ହେଉଥିଲା । ଏହାଦ୍ୱାରା ମୋର ଅଧ୍ୟାପନା-କାର୍ଯ୍ୟ ଖଇଚା ଧରିଗଲା । କଲେଜର ଛାତ୍ରଛାତ୍ରୀ ବିଶେଷତଃ ଅନର୍ସ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଅସନ୍ତୋଷ ପ୍ରକାଶ ପାଇଲା । କଣ କରାଯିବ ? ମୁଁ ଟିକିଏ ବ୍ୟସ୍ତ ହୋଇ ପଡ଼ିଲି ।

ସେତେବେଳେ ରାଜ୍ୟ ସରକାରଙ୍କ ଉଚ୍ଚ ଶିକ୍ଷା ବିଭାଗର ସେକ୍ରେଟେରୀ ଥାଆନ୍ତି ମୋର ପୂର୍ବ ପରିଚିତ କବି ସୀତାକାନ୍ତ ମହାପାତ୍ର । ମୋ ଅବସ୍ଥା କଥା ଜଣାଇ ତାଙ୍କୁ

ଖଣ୍ଡିଏ ବ୍ୟକ୍ତିଗତ ପତ୍ର ଲେଖିଲି । ତାହାର ଏକ ସମବେଦନାସୂଚକ ଉତ୍ତର ସୀତାକାନ୍ତବାବୁଙ୍କଠାରୁ ପାଇଲି ମଧ୍ୟ । କିନ୍ତୁ ବଦଳି ଏତେ ସହଜ ନଥିଲା । ସେତେବେଳେ ଫୁଲବାଣୀ, କଳାହାଣ୍ଡି, ବଲାଙ୍ଗୀର, ସୁନ୍ଦରଗଡ଼ ପ୍ରଭୃତି ଅଞ୍ଚଳରେ ଥିବା ସରକାରୀ କଲେଜଗୁଡ଼ିକୁ ଯିବା ପାଇଁ ସାଧାରଣତଃ ଅଧ୍ୟାପକମାନେ କୁଣ୍ଠା ପ୍ରକାଶ କରୁଥିଲେ । ତେଣୁ ସେହି ଅଞ୍ଚଳରେ ନିଯୁକ୍ତି, ବଦଳି ଆଦି କ୍ଷେତ୍ରରେ ସରକାର କେତେକ କଟକଣା ଜାରି କରାଇଥିଲେ ।

କଲେଜଟି ସବୁଜ ଗଛଲତାପୂର୍ଣ୍ଣ ଏକ ପାହାଡ଼ ପାଦଦେଶରେ ଅବସ୍ଥିତ । ଗୋଟିଏ ପଟରେ ପାହାଡ଼ ଓ ଅନ୍ୟ ପଟରେ କୁଳୁକୁଳୁ-ନାଦିନୀ ସାଲୁଙ୍କୀ ନଦୀ । ଏମାନେ ଯେପରି ବାତ୍ସଲ୍ୟ ସ୍ନେହରେ କଲେଜକୁ କୋଳେଇ ଧରିଛନ୍ତି । ଚାରିଆଡ଼େ ଶାଳବଣି ଓ କୁରେଇ ଫୁଲର ସମ୍ଭାର । ଫୁଲବଣିରୁ ବୋଧହୁଏ ସ୍ଥାନଟିର ନାମ ହୋଇଛି ଫୁଲବାଣୀ । କଲେଜର ଅଧ୍ୟକ୍ଷ ସେତେବେଳେ ଶ୍ରୀ ଜେ.ଜେ. ମୋହନ ରାଓ । ମୁଁ ସେଠାରେ ଯୋଗ ଦେବା ସଂଗେ ସଂଗେ ସେ ମୋତେ କଲେଜ ନାଟ୍ୟସଂସଦର ଦାୟିତ୍ୱ ଦେଇଦେଲେ । ପୂର୍ବ ବର୍ଷ କଲେଜରେ କୌଣସି କାରଣରୁ ନାଟ୍ୟାଭିନୟ ହୋଇପାରି ନଥିଲା । ଶ୍ରୀ ରାଓଙ୍କର ଧାରଣା ହୋଇଥିଲା ଯେ ମୁଁ ଛାତ୍ରମାନଙ୍କୁ ସଂଗଠିତ କରି ନାଟ୍ୟାଭିନୟ କରାଇ ପାରିବି । ଆଶ୍ଚର୍ଯ୍ୟର କଥା, ମୁଁ ଯେଉଁଠିକି ଯାଉଛି, କଲେଜର ନାଟ୍ୟ ସଂସଦ ମୋର ପିଛା ଛାଡୁନାହିଁ । ଯାହାହେଉ, ମୁଁ ଦାୟିତ୍ୱ ନେଇ ସେ ବର୍ଷ କଲେଜରେ ନାଟ୍ୟାଭିନୟ ସମାରୋହ ସହକାରେ କରାଇ ଦେଇ ପାରିଲି । ଏ ଦିଗରେ କଲେଜ ଅଧ୍ୟାପକମାନଙ୍କର ସାହାଯ୍ୟ ସହଯୋଗ ପାସୋରି ପାରିବି ନାହିଁ ।

ସେତେବେଳେ କଲେଜର ମୋଟ ଛାତ୍ରଛାତ୍ରୀଙ୍କ ସଂଖ୍ୟା ଥିଲା ପ୍ରାୟ ଏକ ହଜାର । ଏଥିରୁ ଅନୁସୂଚିତ ଜନଜାତିର ଛାତ୍ରସଂଖ୍ୟା ଦେଢ଼ଶହ ଭିତରେ ଏବଂ ଅନୁସୂଚିତ ଜାତିର ଛାତ୍ର ପ୍ରାୟ ଏକ ଶହ । ଅନୁସୂଚିତ ଜନଜାତି ମଧ୍ୟରେ ପ୍ରାୟ ସଭିଏଁ ଥିଲେ କନ୍ଧ । ସେମାନଙ୍କୁ ବିଭିନ୍ନ ବିଷୟରେ ଶିକ୍ଷାଦାନ କରିବା କଷ୍ଟକର ହେଉଥିଲା । କିନ୍ତୁ ଯେଉଁ କନ୍ଧ ଛାତ୍ରଛାତ୍ରୀମାନେ ଖ୍ରୀଷ୍ଟିଆନ୍ ପରିବାରରୁ ଆସିଥିଲେ, ସେମାନେ ଅଧିକ ଗ୍ରହଣକ୍ଷମ ଥିଲେ । ଓଡ଼ିଆ ଅନର୍ସ ଶ୍ରେଣୀରେ କିଛି କନ୍ଧ ଛାତ୍ର ମଧ୍ୟ ଥିଲେ, ଯେଉଁମାନଙ୍କ ମାତୃଭାଷା 'କୁଇ' ବା 'କୁଭୀ' । ସେମାନଙ୍କୁ ଓଡ଼ିଆ ସାହିତ୍ୟ-ପାଠ ବାଟି ପିଆଇ ଦେଲା ଭଳି କାର୍ଯ୍ୟ କରିବାକୁ ପଡୁଥିଲା । ଆମେ ସେତେବେଳେ ଓଡ଼ିଆ ଭାଷା ସାହିତ୍ୟ ବିଭାଗରେ ମୋତେ ମିଶାଇ ଛଅଜଣ ଅଧ୍ୟାପକ କାର୍ଯ୍ୟ କରୁଥିଲୁଁ – ସର୍ବଶ୍ରୀ ରାଧାମୋହନ ମିଶ୍ର, ମଧୁସୂଦନ କର, ହରପ୍ରସାଦ ମିଶ୍ର, ରଙ୍ଗାଧର ନାୟକ ଓ କୈଳାସ ଚନ୍ଦ୍ର ତ୍ରିପାଠୀ । ଆମେ ଏକ ପ୍ରକାର 'ଟିମ୍ ସ୍ପିରିଟ୍' ଘେନି କାର୍ଯ୍ୟ କରୁଥିଲୁଁ । ନୂଆ କରି ଅନର୍ସ ଶ୍ରେଣୀ

ଫିଟିଥାଏ । ମୁଁ ଅଧକ୍ଷଙ୍କୁ କହି ଓଡ଼ିଆ ସେମିନାର୍ ପାଇଁ କଲେଜର ଏକ ସ୍ୱତନ୍ତ୍ର ଶ୍ରେଣୀ ପ୍ରକୋଷ୍ଠ ବ୍ୟବସ୍ଥା କରାଇଲି । ସେହି ପ୍ରକୋଷ୍ଠରେ ଗୋଟିଏ ସାନ ଆଲମିରାରେ କିଛି ସହାୟକ ଓ ଆକର-ଗ୍ରନ୍ଥ ଅଧ୍ୟାପକ ଓ ଛାତ୍ରଛାତ୍ରୀଙ୍କ ବ୍ୟବହାର ପାଇଁ ସଂରକ୍ଷିତ ଥାଏ ଏବଂ ସବୁ ଅନର୍ସ କ୍ଲାସ୍ ତଥା କିଛି ଟିଉଟୋରିଆଲ୍ କ୍ଲାସ୍ ସେଠାରେ ହେଉଥାଏ । ଇତି ମଧ୍ୟରେ କଲେଜର ଅଧକ୍ଷ ହୋଇ ଆସିଥାଆନ୍ତି ରେଭେନ୍ସା କଲେଜର ମୋର ସହକର୍ମୀ ଗଣିତଶାସ୍ତ୍ର ଅଧ୍ୟାପକ କାହ୍ନୁଚରଣ ପଣ୍ଡା । ତାଙ୍କରି ସହଯୋଗରେ, ଅନ୍ୟାନ୍ୟ ବିଭାଗରେ ସେମିନାର୍ କାର୍ଯ୍ୟକ୍ରମ ଚାଲି ନ ଥିବା ବା ଶିଥିଳ ହୋଇଥିବା ବେଳେ, ମୁଁ ଓଡ଼ିଆ ସେମିନାର୍ କାର୍ଯ୍ୟ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କୁ ଘେନି ରୀତିମତ ଚଳାଇଥିଲି ।

ଏହି ପ୍ରସଙ୍ଗରେ ଗୋଟିଏ ଅପାସୋରା ଘଟଣା ଏଠାରେ ଉଲ୍ଲେଖ କରିବି । ସେତେବେଳେ ଅନର୍ସ୍ ଶ୍ରେଣୀରେ 'ମାଦଳା ପାଞ୍ଜି'ର ଅଂଶବିଶେଷ ପଢ଼ା ହେଉଥାଏ କିନ୍ତୁ ପ୍ରାଚୀ ସମିତି-ପ୍ରକାଶିତ 'ମାଦଳା ପାଞ୍ଜି' ପୁସ୍ତକ-ବିପଣୀରେ ମିଳୁ ନ ଥାଏ । ତେଣୁ ମୁଁ କ୍ଲାସ୍‌ରେ ତାହା ପଢ଼ାଇଲା ବେଳେ ଛାତ୍ରଛାତ୍ରୀମାନେ ଭକୁଆ ହୋଇ ବସୁଥିଲେ । 'ମାଦଳା ପାଞ୍ଜି'ର ଦୁଇଟି କପି ମୋ ପାଖରେ ଥାଏ । ଦିନେ ମୁଁ କ୍ଲାସ୍‌ରେ କହିଲି – କଟକକୁ ବହି ପାଇଁ ଅର୍ଡ଼ର ଦିଆଯାଇଛି । ବହି କେବେ ଆସିବ, କିମ୍ବା ଆସିବ କି ନା, କହିପାରୁ ନାହିଁ । ମୋ ପାଖରେ ବହିଟିର ଅଧିକା କପି ଖଣ୍ଡିଏ ରହିଛି । ତାହା ମୁଁ କୌଣସି ଛାତ୍ର ବା ଛାତ୍ରୀଙ୍କୁ ଦାନ କରିଦେବି । ଯେଉଁ ପିଲାର ଆର୍ଥିକ ଅବସ୍ଥା ଅସ୍ୱଚ୍ଛଳ, ଏବଂ ତୃତୀୟ ବାର୍ଷିକ ଶ୍ରେଣୀ-ପରୀକ୍ଷାରେ ଯିଏ ଅନର୍ସରେ ସର୍ବୋଚ୍ଚ ନମ୍ବର ରଖିଥିବ, ମୁଁ ତାକୁଇ ବହିଟି ଦେଇଦେବି । ଅନୁସନ୍ଧାନ କରି ମୁଁ ଜଣେ ଛାତ୍ରୀଙ୍କୁ ଠାବ କଲି, ତାଙ୍କର ନାମ ଏବେ ମନେ ପଡୁ ନାହିଁ । ଛାତ୍ରୀ ଜଣକ ଅନର୍ସରେ ଭଲ ନମ୍ବର ରଖିଥିଲେ ଏବଂ ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । କିଛି ଦିନ ପରେ କ୍ଲାସ୍‌ରେ 'ମାଦଳା ପାଞ୍ଜି' ପୁସ୍ତକଟି ତାଙ୍କୁ ଦାନ କରିଦେଲି ଏବଂ ସେ ଭଲ ମନରେ ତାହା ଗ୍ରହଣ କଲେ । ମାତ୍ର ଅଦ୍ଭୁତ କଥା ! ତହିଁ ପରଦିନ ଛାତ୍ରୀ ଜଣକ କ୍ଲାସ୍‌ରେ ବହି ଖଣ୍ଡିକ ମୋତେ ଫେରସ୍ତ ଦେଇ କହିଲେ – ସାର୍, ବହିଟି ମୁଁ ନେବି ନାହିଁ । ଏଥିରେ ମୁଁ ବଡ଼ ବିସ୍ମିତ ହୋଇ ଛାତ୍ରୀଙ୍କୁ ବହି ନ ନେବାର କାରଣ ପଚାରିଲି । ଛାତ୍ରୀ କାରଣ ଜଣାଇବାକୁ ପ୍ରଥମେ କୁଣ୍ଠା ପ୍ରକାଶ କଲେ । ବହୁତ କୁହାପୁଛା କଲା ପରେ ସେ କହିଲେ – ସାର୍, ଆପଣ ମୋର ଦାରିଦ୍ର୍ୟକୁ ଏହା ଦ୍ୱାରା ଆକ୍ଷେପ ଓ ଉପହାସ କରୁଛନ୍ତି । କଥାଟା ଶୁଣି ମୁଁ ଏକାବେଳେକେ ହତବାକ୍ ହୋଇଗଲି । କିଛି କ୍ଷଣ ପରେ କହିଲି – ନା, ତମକୁ ବହିଟି ଦେବାରେ ମୋର ସେପରି କିଛି ମତଲବ୍ ନଥିଲା । ମୋତେ଼ ଭୁଲ୍ ବୁଝନା ! ତମର ସ୍ୱାଭିମାନକୁ କ୍ଷୁଣ୍ଣ ନ କରି ମୁଁ ବହିଟି ଫେରସ୍ତ ନେଉଛି ।

ମୋର ବିଭାଗୀୟ ବନ୍ଧୁମାନେ ଘଟଣାଟି ଜାଣି ବେଶ୍ ଆମୋଦ ପାଇଲେ । କହିଲେ – କଲେଜରୁ ଫ୍ରି-ଷ୍ଟୁଡ଼େଣ୍ଟସିପ୍ ବା ସୋସିଆଲ୍ ସର୍ଭିସ୍ ଗିଲ୍ଡରୁ ଅର୍ଥ ସାହାଯ୍ୟ ନେଲାବେଳେ ତାଙ୍କର ସ୍ୱାଭିମାନ କେଉଁଠି ଥାଏ ? 'ମାଦଳାପାଞ୍ଜି' ବହିଟିକୁ ଆପଣ ଅନ୍ୟ ଜଣେ ଅନର୍ସ ଛାତ୍ରକୁ ବାଛି ଦେଇ ଦିଅନ୍ତୁ ! ବସ୍ତୁତଃ ତାହା ହିଁ କଲି ।

କଲେଜ ଲାଇବ୍ରେରୀଟି ବେଶ୍ ସମୃଦ୍ଧ ଥିଲା । ଇଂରେଜୀ ସାହିତ୍ୟ, ଇତିହାସ, ନୃତତ୍ତ୍ୱ, ସମାଜ ବିଜ୍ଞାନ ଆଦି ବିଷୟକ ଗ୍ରନ୍ଥ ଥିଲା ବହୁ ସଂଖ୍ୟାରେ । ଆଦିବାସୀ, ବିଶେଷତଃ କନ୍ଧ ସମାଜ ସଂପର୍କରେ କିଛି ଉପାଦେୟ ଗ୍ରନ୍ଥ ଥିଲା, ଯାହା ମୋର ବିଶେଷ କାର୍ଯ୍ୟରେ ଲାଗିଲା । କଲେଜ କ୍ଲାସ୍ ସାରି ମୁଁ ଅଧିକାଂଶ ସମୟ ଲାଇବ୍ରେରୀରେ କଟାଉଥିଲି । ପୂର୍ବରୁ ସେଠାରେ ଓଡ଼ିଆ ଅନର୍ସ କ୍ଲାସ୍ ନ ଥିବାରୁ ବୋଧହୁଏ ଓଡ଼ିଆ ବହି ବେଶି ନ ଥିଲା । ଅଧକ୍ଷଙ୍କୁ କହି ମୁଁ କିଛି ଭଲ ଓଡ଼ିଆ ବହି, ଯାହା ଶିକ୍ଷକ ଓ ଅନର୍ସ ଛାତ୍ରଛାତ୍ରୀଙ୍କ କାର୍ଯ୍ୟରେ ଲାଗିବ, ମଗାଇ ନେଲି । ଅଧିକାଂଶ ଛାତ୍ର କିନ୍ତୁ ବହିପଢ଼ା ପ୍ରତି ଆଗ୍ରହ ପ୍ରକାଶ କରୁ ନ ଥିଲେ । କ୍ରୀଡ଼ା କୌତୁକ, ନାଟ ତାମସା, ବଣଭୋଜି, ପର୍ଯ୍ୟଟନ ପ୍ରଭୃତି ପ୍ରତି ଥିଲେ ବେଶ୍ ଆଗ୍ରହୀ । ସେମାନଙ୍କ ଭିତରେ ପୁସ୍ତକ ପଠନ-ମନସ୍କତା ସୃଷ୍ଟି କରିବା କଠିନ ବ୍ୟାପାର ଥିଲା । ସେତେବେଳେ ଫୁଲବାଣୀ ସହରରେ କୌଣସି ସିନେମା ଥିଏଟର୍ ନ ଥିଲା । ଚିତ୍ତବିନୋଦନ ପାଇଁ ବେଳେବେଳେ କରାଯାଉଥିବା ଭି.ଡ଼ି.ଓ. ସୋ'ରେ ଛାତ୍ରମାନେ ଯାଇ ଭିଡ଼ ଜମାଉଥିଲେ ।

ଥରେ କିଛି ଛାତ୍ର, ଅଳ୍ପ ସଂଖ୍ୟକ ଅଧ୍ୟାପକଙ୍କ ସାଙ୍ଗରେ ସାତକୋଶିଆ ପରିଭ୍ରମଣରେ ଯାଇଥିଲେ । ସେଠାରେ ସାତକୋଶିଆ ଗଣ୍ଡରେ ଗାଧୋଉ ଗାଧୋଉ ଜଣେ ଛାତ୍ର, ଗୋଡ଼ ଖସିଯିବାରୁ ଗଭୀର ଜଳରେ ପ୍ରାଣ ବିସର୍ଜନ କଲେ । ସନ୍ଧ୍ୟା ବେଳେ ଖବର ଆସି ପହଞ୍ଚିଲା କଲେଜରେ । ଅଧକ୍ଷ ସେତେବେଳେ ଛୁଟିରେ ଅନ୍ୟତ୍ର ଯାଇଥିବାରୁ ମୁଁ କଲେଜ ଦାୟିତ୍ୱରେ ଥାଏ । ଖବର ପାଇ ମୋ ମଥା ଘୂରିଗଲା । ସଂଗେ ସଂଗେ କେତେକ ଅଧ୍ୟାପକଙ୍କୁ ସଂଗରେ ଘେନି ଫୁଲବାଣୀ ଟାଉନ୍ ଥାନାକୁ ଗଲି । କଲେକ୍ଟରଙ୍କୁ ମଧ ଖବର ଦିଆଗଲା । ଥାନାରୁ ସାତକୋଶିଆକୁ ଟେଲିଫୋନ୍ କରି ଜାଣିଲୁଁ – ଦମକଳ କେନ୍ଦ୍ରର କର୍ମଚାରୀମାନେ ପହଞ୍ଚି ଗଣ୍ଡ ଭିତରେ ବୁଡ଼ି ଯାଇଥିବା ଛାତ୍ରକୁ ଖୋଜୁଛନ୍ତି । ସେଦିନ ରାତିରେ ମୁଁ ଶୋଇ ପାରିଲି ନାହିଁ । ବୁଡ଼ି ମରିଥିବା ଛାତ୍ରର ଅଭିଭାବକଙ୍କୁ ବାଲିଗୁଡ଼ାକୁ ଦୁଃସମ୍ବାଦଟା ଜଣାଇ ଦିଆଗଲା । ପରଦିନ ସକାଳେ ହତଭାଗା ଛାତ୍ରଟିର ମୃତ ଶରୀର ଆସି କଲେଜରେ ପହଞ୍ଚିଲା । ଛାତ୍ରଟିର ଅଭିଭାବକ ଆସି ପହଞ୍ଚିଗଲେ ମଧ ।

କଲେଜ ବାହାରେ କନ୍ଧମାଳ ଜିଲ୍ଲାର ବିଭିନ୍ନ ସ୍ଥାନରେ ତଥା ପାଖ ଆଖ ଅଞ୍ଚଳରେ ଅନୁଷ୍ଠିତ ସାଂସ୍କୃତିକ ସଭାସମିତିରେ ଯୋଗ ଦେବାର ସୁବିଧାସୁଯୋଗ ମୁଁ ହାତଛଡ଼ା କରୁ ନ ଥିଲି । ଫୁଲବାଣୀ ସଦର ହସ୍‌ପିଟାଲ୍ ପାଖରେ ଥିବା 'ମୋହନଦାସ କରମଚାନ୍ଦ କଲଚରାଲ୍ ଏସୋସିଏସନ୍'ର ସଭାଗୃହଠାରେ ବରାବର ସରକାରୀ ବା ବେସରକାରୀ ଉଦ୍‌ଯୋଗରେ ଜାତୀୟ ସଂହତି ସପ୍ତାହ, ବିଶ୍ୱ ସ୍ୱାସ୍ଥ୍ୟ ଦିବସ, ଗାନ୍ଧୀ ଜୟନ୍ତୀ, ପଣ୍ଡିତ ଗୋପବନ୍ଧୁ ଜୟନ୍ତୀ, ଓଡ଼ିଶା ଦିବସ (ଏପ୍ରିଲ୍ ପହିଲା), ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଜୟନ୍ତୀ ପ୍ରଭୃତି ଅନୁଷ୍ଠାନରେ ମୋତେ ଅଂଶଗ୍ରହଣ କରିବାକୁ ପଡ଼ିଥିଲା – କେଉଁଥିରେ ମୁଖ୍ୟ ଅତିଥି ଭାବେ, ଆଉ କେଉଁଥିରେ ବା ମୁଖ୍ୟ ବକ୍ତା ଭାବରେ । କନ୍ଧମାଳ ଜିଲ୍ଲାର ଘୁମୁସର ଉଦୟଗିରି, ବାଲିଗୁଡ଼ା, ଟିକାବାଲି, ତୁମୁଡ଼ି ବନ୍ଧ, ରାଇକିଆ, ଚକାପାଦ, ଦାରିଙ୍ଗିବାଡ଼ି, ବୌଦ (ସେତେବେଳେ ସ୍ୱତନ୍ତ୍ର ଜିଲ୍ଲା ହୋଇ ନଥିଲା) ପ୍ରଭୃତି ସ୍ଥାନରେ ସାଂସ୍କୃତିକ ଅନୁଷ୍ଠାନରେ ଯୋଗ ଦେଉଥିଲି, କିମ୍ବା ଆନନ୍ଦ-ଭ୍ରମଣ କରୁଥିଲି । ସେତେବେଳେ ମୋର ବନ୍ଧୁ ଶ୍ରୀ ପୀତବାସ ମହାପାତ୍ର ଫୁଲବାଣୀଠାରେ ବନ ବିଭାଗର ଅଫିସର୍ (କେନ୍ଦୁପତ୍ର ବିଭାଗ) ଭାବରେ ଅବସ୍ଥାପିତ ଥିଲେ । ତାଙ୍କରି ସହ ଗୋଟା ଜିଲ୍ଲାଟାର ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନ ବୁଲି ଦେଖିବାର ସୁଯୋଗ ପାଇଥିଲି । ସଦର ଏସ୍.ଡ଼ି.ଓ. (ସବ୍ କଲେକ୍ଟର୍) ଶ୍ରୀ ହୋତା କନ୍ଧ ଗ୍ରାମଗୁଡ଼ିକ ବୁଲାଇ ଦେଖାଇବାର ମଧ ସୁବିଧା କରି ଦେଇଥିଲେ ।

ଘୁମୁସର-ଉଦୟଗିରିଠାରେ ମୋର ପ୍ରିୟ ଛାତ୍ର ଶ୍ରୀ ନିରଞ୍ଜନ ମହାନ୍ତି 'ସୁଭଦ୍ରା ମହତାବ ସେବାସଂଘ' ନାମରେ ଏକ ବେସରକାରୀ ସ୍ୱେଚ୍ଛାସେବୀ ସଂସ୍ଥା ପ୍ରତିଷ୍ଠା କରିଥିଲେ । ସେଠାରେ କିଛି ଅନାଥ ପିଲାଙ୍କୁ ଆଶ୍ରୟ ଦେଇ ସେମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ ଆଦିର ଯତ୍ନ ନେଉଥିଲେ । ବିଭିନ୍ନ ଜନମଙ୍ଗଳ କାର୍ଯ୍ୟରେ ବ୍ରତୀ ଥିବା ତାଙ୍କର ଏହି ସେବାମୂଳକ ପ୍ରଚେଷ୍ଟା ବେଶ୍ ପ୍ରଶଂସନୀୟ । ଦୁଇ ଥର ମୁଁ ସେଠାକୁ ଯାଇ ସେବାସଂଘର ଅନ୍ତେବାସୀମାନଙ୍କୁ ଉଦ୍‌ବୋଧନ ଦେଇଥିଲି । ଇତି ମଧରେ ଶ୍ରୀ ମହାନ୍ତି ନିଜର କାର୍ଯ୍ୟକ୍ରମ ଭୁବନେଶ୍ୱର ଓ ରାଜ୍ୟର ଅନ୍ୟ କେତେକ ସ୍ଥାନକୁ ସଂପ୍ରସାରିତ କରିଥିବା ଦେଖି ବଡ଼ ଆନନ୍ଦ ଲାଭ କରୁଛି ।

ଫୁଲବାଣୀରେ 'ଯୁବ ଲେଖକ ସାମ୍ମୁଖ୍ୟ' ନାମରେ ଏକ ସାହିତ୍ୟ ପ୍ରତିଷ୍ଠାନ ଥିଲା । ମୁଁ ସେଠାକୁ ଗଲାମାତ୍ରେ ପ୍ରତିଷ୍ଠାନ ସହ ସଂପୃକ୍ତ ହୋଇ ପଡ଼ିଲି । କଲେଜର କେତେକ ଅଧାପକ ଏବଂ ନାଜିର୍ ଆଖତାର୍, ପଞ୍ଚାନନ ଅଗ୍ରୱାଲା ପ୍ରମୁଖ କେଇଜଣ ସ୍ଥାନୀୟ ଲେଖକ ଓ ସାମ୍ବାଦିକଙ୍କୁ ଘେନି ଲେଖକ ସାମ୍ମୁଖ୍ୟର ବାର୍ଷିକୋତ୍ସବ ସହ ବୌଦ-କନ୍ଧମାଳ ଜିଲ୍ଲା ଲେଖକ ସମ୍ମେଳନର ଆୟୋଜନ କରାଇଲି । ତତ୍‌କାଳୀନ କଲେକ୍ଟର୍

ଶ୍ରୀ ପଟ୍ଟନାୟକ ଓ ସବ୍‌କଲେକ୍ଟର୍ ଶ୍ରୀ ହୋତାଙ୍କ ପୃଷ୍ଠପୋଷକତାରେ ସମ୍ମେଳନ, ସମଗ୍ର ଜିଲ୍ଲାର କବି ଲେଖକଙ୍କ ସମାବେଶରେ ସମାରୋହ ସହକାରେ ଅନୁଷ୍ଠିତ ହୋଇଥିଲା । 'ଈପ୍‌ସିତା' ନାମକ ଏକ ମନୋଜ୍ଞ ସାହିତ୍ୟ-ସଂକଳନ ସମ୍ମେଳନ ଉପଲକ୍ଷ୍ୟେ ପ୍ରକାଶ ପାଇଥିଲା ।

କନ୍ଧମାଳ ଜିଲ୍ଲାରେ ସାଧାରଣ ଜନଜୀବନର ଦାରିଦ୍ର୍ୟ ଓ ଅଧୋଗତି ସେତେବେଳେ ମୋତେ ବିଶେଷ ଆଲୋଡ଼ିତ କରିଥିଲା । ସଦର ମହକୁମା ଓ ଅଞ୍ଚ କେତୋଟି ସହର ବଜାରକୁ ଛାଡ଼ିଦେଲେ, ଗ୍ରାମାଞ୍ଚଳର ଅବସ୍ଥା ଥିଲା ଶୋଚନୀୟ । ଭଂଗା ଘରଦ୍ୱାର, ରୁଗ୍ଣ ପୁଷ୍ଟିହୀନ ଶିଶୁ, ଅର୍ଦ୍ଧନଗ୍ନ ବା ଉଲଗ୍ନ ନରନାରୀ ସର୍ବତ୍ର ଆଖିରେ ପଡୁଥିଲା । ଅଶିକ୍ଷା, କୁସଂସ୍କାର, ଅନ୍ଧବିଶ୍ୱାସ ଜନସାଧାରଣଙ୍କ ଜୀବନକୁ କବଳିତ କରି ରଖିଥିଲା । ଯେଉଁ ଯେଉଁ ସ୍ଥାନରେ ଖ୍ରୀଷ୍ଟିୟାନ୍ ମିଶନ୍ ସବୁ କାର୍ଯ୍ୟ କରୁଥିଲା, ସେଠାରେ ଅବସ୍ଥା ଥିଲା ଟିକିଏ ଉନ୍ନତ । ସରକାରୀ ଯୋଜନା କିଛି ପ୍ରବର୍ତ୍ତିତ ହୋଇଥିଲା ସତ୍ୟ, ମାତ୍ର ଲୋକେ ତାହାର ସୁଫଳ ପାଇପାରୁ ନ ଥିଲେ, କିମ୍ବା ତାହାର ଉପଯୋଗ କରୁ ନଥିଲେ । ବାଳାଶ୍ରମ, ପ୍ରାଥମିକ ବିଦ୍ୟାଳୟମାନ ସ୍ଥାପିତ ହୋଇଥିଲା, କିନ୍ତୁ ସେଠାରେ ଛାତ୍ର ବା ଅନ୍ତେବାସୀଙ୍କର ଉପସ୍ଥିତି ଥିଲା ଊଣା । ସ୍ୱାସ୍ଥ୍ୟକେନ୍ଦ୍ର ଓ ଚିକିତ୍ସାଳୟମାନ ଥିଲା, ମାତ୍ର ସେଠାକୁ ରୋଗୀମାନେ ଯିବାକୁ କୁଣ୍ଠିତ ହେଉଥିଲେ । ଗୁଣି ଗାରୁଡ଼ି, ମନ୍ତ୍ରତନ୍ତ୍ରରେ ରୋଗ ନିବାରଣ ପାଇଁ ଆଗ୍ରହ ପ୍ରକାଶ କରୁଥିଲେ । ସେ କାଳର ମୟୂରଭଂଜ ଓ କନ୍ଧମାଳର ସାଧାରଣ ଜନଜୀବନର ତୁଳନା କଲେ, କନ୍ଧମାଳର ଜନଜୀବନ ଅପେକ୍ଷାକୃତ ଅନୁନ୍ନତ ଥିବାର ମନେ ହୋଇଥିଲା । ଅରଣ୍ୟ ସଂପଦରେ କନ୍ଧମାଳ ଭରପୂର । ଏହାର ହଳଦୀ, ଅଦା ଓ ଲଘୁ ବନଜାତ ଦ୍ରବ୍ୟ ଚାରିଆଡ଼େ ଆଦୃତ । ସାଲୁଙ୍କି ନଦୀ କୂଳେ କୂଳେ ଫଳୁଥିବା ବଡ଼ ବଡ଼ ବାଇଗଣ ବେଶ୍ ଲୋଭନୀୟ; ଏହାର ସ୍ୱାଦ ମୁଁ ଏପର୍ଯ୍ୟନ୍ତ ପାସୋରି ପାରିନାହିଁ । କେତୋଟି କ୍ଷୁଦ୍ର ଜଳସେଚନ ଯୋଜନା କନ୍ଧମାଳରେ କାର୍ଯ୍ୟକର ହୋଇଥିବା ହେତୁ କୃଷି କିଛି ପରିମାଣରେ ଉନ୍ନତି ଲାଭ କରିଛି । ତଥାପି ଜିଲ୍ଲାର ଦାରିଦ୍ର୍ୟ ଘୁଞ୍ଚିବା ସହଜ ହେଉନାହିଁ ।

ଅନ୍ଧବିଶ୍ୱାସ, କୁସଂସ୍କାର ଓ ପ୍ରଥାବଦ୍ଧତା କନ୍ଧମାଳର ଜନଜୀବନକୁ କିପରି ବିପର୍ଯ୍ୟସ୍ତ କରିଛି, ଏଠାରେ ତାହାର ଏକ ଉଦାହରଣ ଦେବି । ଏହା ମୋର ପ୍ରତ୍ୟକ୍ଷ ଅଭିଜ୍ଞତା । ଫୁଲବାଣୀ ସହରଠାରୁ ଅନତି ଦୂରରେ ନୀଳାପଦର ଗ୍ରାମ । ଅରଣ୍ୟ ପର୍ବତ ପରିବେଷ୍ଟିତ କ୍ଷୁଦ୍ର ଗ୍ରାମଟି ସେଦିନ ଆନନ୍ଦ ମହୋତ୍ସବରେ ପ୍ରକଂପିତ । ଜ୍ୟେଷ୍ଠ ମାସର ପ୍ରଚଣ୍ଡ ରୌଦ୍ରର ପ୍ରକୋପ ସେଠି ଯେପରି ସହସା ପ୍ରଶମିତ ହୋଇ ଯାଇଛି । ସେ ଅଞ୍ଚଳର ପ୍ରାୟ ଚାରିହଜାର ନରନାରୀଙ୍କ ସମାବେଶରେ ସ୍ଥାନଟି ଲାଭ କରିଛି ଏକ ପ୍ରକାର ନୂତନ ଐଶ୍ୱର୍ଯ୍ୟ ।

ଦିନ ପ୍ରାୟ ଦଶଟା ବେଳେ ଯାଇ 'ଝାଗଡ଼ି' ସ୍ଥାନରେ ପହଞ୍ଚିଲି । ସାଙ୍ଗରେ ଶ୍ରୀମାନ୍ ରୋହିତ କୁମାର ପ୍ରଧାନ – ଟିକାବାଲି ଅଞ୍ଚଳର ଜଣେ ସମର୍ଥ ଯୁବକ; ମୋର ଜଣେ ପ୍ରିୟ ଛାତ୍ର ହେଲେ ହେଁ ସେଦିନ କିନ୍ତୁ ସେ ମୋର ଗୁରୁ ଓ ଗାଇଡ୍ । ଝାଗିଡ଼ି ବିଷୟରେ ପୂର୍ବରୁ ମୁଁ ବାଲିଗୁଡ଼ାରୁ କିଛି ତଥ୍ୟ ସଂଗ୍ରହ କରିଥିଲି । ତାକୁଇ ପୁଞ୍ଜି କରି କେଇ ବର୍ଷ ତଳେ 'ନୂଆ ମେରିଆ' ନାମରେ ଗଳ୍ପଟିଏ ଲେଖିଥିଲି । ସେଦିନ ନୀଳାପଦର ଯିବା ବାଟରେ ରୋହିତଙ୍କଠାରୁ ପୁଣି ଥରେ ଝାଗିଡ଼ି ବିଷୟରେ ଆନୁପୂର୍ବିକ ସବୁ କଥା ଶୁଣିଲି । ସାମାନ୍ୟ କିଛି ପ୍ରଭେଦ ଥିଲେ ହେଁ, ବାଲିଗୁଡ଼ା ଓ ଫୁଲବାଣୀ ଅଞ୍ଚଳର ଝାଗିଡ଼ି ଅନୁଷ୍ଠାନ ମୋଟାମୋଟି ଏକପ୍ରକାର ।

ଝାଗିଡ଼ି ବାସ୍ତବିକ 'ନୂଆ ମେରିଆ' । ମାଟି ଦେବତାଙ୍କ ତୁଷ୍ଟି ବିଧାନ ପାଇଁ ପୂର୍ବରୁ ବୌଦ-କନ୍ଧମାଳ ଅଞ୍ଚଳରେ ନରବଳି (ମେରିଆ) ଦିଆଯାଉଥିଲା । ଊନବିଂଶ ଶତାବ୍ଦୀ ମଧ୍ୟ ଭାଗରେ ତତ୍‌କାଳୀନ ଇଂରେଜ ସରକାର ଏହା ନିଷିଦ୍ଧ କରିଦେବାରୁ ତାହା ପରଠୁଁ ମଣିଷ ସ୍ଥାନରେ ପୋଢ଼ (ମଇଁଷି) ଓ ଘୁଷୁରି ବଳି ଦିଆ ହୋଇ ଆସୁଛି । ଗ୍ରାମ ମଧ୍ୟରେ ଭଲ ଫସଲ ନ ହେଲେ 'ଟାଣାପେନୁ' ବା ମାଟି ଦେବତାଙ୍କର ପୂଜା-ଆରାଧନା କରାଯାଇଥାଏ । 'କେଡୁ' ଓ 'ଝାଗିଡ଼ି' ଭେଦରେ ମାଟି ଦେବତାର ପୂଜା ଦୁଇ ପ୍ରକାର ।

କେବଳ ଯେ ଆଦିବାସୀ କନ୍ଧମାନେ ଝାଗିଡ଼ି ପାଳନ କରନ୍ତି, ତାହା ନୁହେଁ । ଏହି ଅଞ୍ଚଳର ହରିଜନ ଓ କେତେକ ସବର୍ଣ୍ଣ ଜାତିର ଲୋକ ମଧ୍ୟ ମାଟି ଦେବତା ପୂଜାରେ ବିଶ୍ୱାସୀ ଏବଂ ସେମାନେ ଝାଗିଡ଼ି ପର୍ବରେ ଅଂଶଗ୍ରହଣ କରିଥାଆନ୍ତି । ଏହା ପୂରାପୂରି ଏକ ବିଶ୍ୱାସ ଓ ସଂସ୍କାରର କଥା । ଆଧୁନିକ ଶିକ୍ଷା, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ପ୍ରସାର ଏ ଅଞ୍ଚଳର ଅଧିକାଂଶ ଲୋକଙ୍କ ମତିଗତି, ଧ୍ୟାନ ଧାରଣାରେ ବିଶେଷ ପରିବର୍ତ୍ତନ ଆଣିପାରି ନାହିଁ । ଯୁଗଯୁଗର ସଂସ୍କାର ଓ ବଦ୍ଧମୂଳ ବିଶ୍ୱାସ ଅକ୍ଟୋପସ୍ ପରି ସେମାନଙ୍କୁ କାବୁ କରିଥିବାର ଦେଖାଯାଉଛି ।

ଦୀର୍ଘ ପନ୍ଦର ଦିନ କାଳ ଝାଗିଡ଼ି ପର୍ବ ଚାଲେ । ପୂର୍ବରୁ ଗ୍ରାମବାସୀମାନେ ଚାନ୍ଦାଭେଦା କରି ପର୍ବପାଳନ ପାଇଁ ପ୍ରସ୍ତୁତ ହୋଇଥାଆନ୍ତି । ଶହ ଶହ ଟଙ୍କା ମୂଲ୍ୟରେ ମଇଁଷିଟାଏ କିଣା ହୋଇଥାଏ । ଯେତିକି ଟଙ୍କାରେ ମଇଁଷି କିଣା ହୁଏ, ସେତିକି ଟଙ୍କା ଦକ୍ଷିଣା ରୂପେ ମାଟି ଦେବତାଙ୍କର ପୂଜକ ଗୁରୁଙ୍କୁ ଦିଆଯାଇଥାଏ । ଝାଗିଡ଼ି ଶେଷ ଦିନ ଚାନ୍ଦା ଟଙ୍କାରେ ଅନ୍ୟ ଗ୍ରାମମାନଙ୍କରୁ ନିମନ୍ତ୍ରିତ ଲୋକଙ୍କୁ ମଧ୍ୟ ଖାଇବା-ପିଇବା ପାଇଁ ଦିଆଯିବାର ବିଧି ରହିଛି ।

ଝାଗିଡ଼ି ସ୍ଥାନରେ ପନ୍ଦର ଦିନ କାଳ ମାଟି ଦେବତାଙ୍କର ପୂଜା ଚାଲିଥାଏ । ପର୍ବର ଶେଷ ଦିନ ପ୍ରଧାନ ଉତ୍ସବ – ବଳିଦାନ । ବଳି ପାଇଁ ଆସିଥିବା ମଇଁଷିଟିକୁ ଏକ ପବିତ୍ର ଜୀବ ରୂପେ ଗ୍ରାମବାସୀମାନେ ଖାଇବା ପିଇବାକୁ ଦେଇ ପାଳି ଥାଆନ୍ତି । ବିଚରା ମଇଁଷିଟି ଆସନ୍ନ ବିପଦ ସଂପର୍କରେ ସଂପୂର୍ଣ୍ଣ ନିସ୍ପୃହ ଥାଇ ମହାଦେବଙ୍କ ଷଣ୍ଢ ପରି ବିନା ବାଧା ବିନା ପ୍ରତିବନ୍ଧକରେ ଗ୍ରାମରେ ବୁଲୁଥାଏ ।

ସେଦିନ ନୀଳାପଦର ଗ୍ରାମରେ ପହଞ୍ଚିଲା ବେଳକୁ ଝାଗିଡ଼ି ଶେଷ ଦିନର ପୂଜା-ପର୍ବ ଆରମ୍ଭ ହୋଇ ଯାଇଥାଏ । ମୁକ୍ତାକାଶ ତଳେ ଆମ୍ବ, ପଣସ, ଶାଳଗଛ ଘେରା ଏକ ପଥୁରିଆ ଉଚ୍ଚ ସ୍ଥାନକୁ ଚାରିପଟରୁ କାଠ ବାଡ଼ ଦେଇ ଘେରି ଦିଆଯାଇଥାଏ । ଘେର ମଝିରେ ପୂଜା ସ୍ଥାନରେ ଜମା ହୋଇଥାଏ ଗୁଡ଼ାଏ ଶୁଖିଲା ପିତା ତଙ୍କା (ଲାଉ ଜାତୀୟ) ତୁମ୍ବୀ – କେଉଁ ମୁନିଋଷିଙ୍କ ପରିତ୍ୟକ୍ତ ଆଶ୍ରମର କମଣ୍ଡଳୁ ପରି । ତୁମ୍ବୀଗୁଡ଼ାକରେ ଗତ ପନ୍ଦର ଦିନ ହେଲା ମାଟି ଦେବତାଙ୍କୁ ଭୋଗରାଗ ନୈବିଦ୍ୟ ଦିଆଯାଇଥାଏ । ତୁମ୍ବୀଗଦା କଡ଼ରେ ଜଳୁଥାଏ ଦୁଇଟି ମାଟିର ଦୀପ । ଗୁରୁ, ଜାନି ଓ ଝାଙ୍କର ପାଖରେ ବସି କଣ ମନ୍ତ୍ରପାଠ କରୁଥାଆନ୍ତି । ସେମାନଙ୍କ ସାଙ୍ଗରେ ବସିଥାଆନ୍ତି ସେହି ଗ୍ରାମର ମୁଖିଆ । ସେଇ ଘେର ଭିତରେ ଏକ ମଜବୁତ୍ କାଠଖୁଣ୍ଟରେ ମୋଟା ଦଉଡ଼ିରେ ବନ୍ଧା ହୋଇଥାଏ ଗୋଟାଏ ବିଶାଳକାୟ ପୋଢ଼; କଦାକାର ତ୍ରିପଣ୍ଡ କଳା ମୂର୍ତ୍ତି । ଦେଖିବାକୁ ଭୟଙ୍କର, କିନ୍ତୁ ଶାନ୍ତ ଓ ନିରୀହ । ଯମରାଜାଙ୍କ ବାହନ ବୋଲି ଏହା ଯଥାର୍ଥରେ କଥିତ ହୋଇଥାଏ । ମଣିଷ ବଦଳରେ ଏପରି ଏକ ଜନ୍ତୁକୁ ବଳି ଦେବା ପାଇଁ ଏ ଅଞ୍ଚଳର ଲୋକେ କାହିଁକି ଓ କିପରି ବାଛିଥିଲେ, ବୁଝିହୁଏ ନାହିଁ ।

ପୋଢ଼ଟିର ମୁହଁ ପାଖରେ ପାଛିଆରେ ଥୁଆ ହୋଇଥାଏ କିଛି ଭାତ । ପୋଢ଼ଟି ବାରମ୍ବାର ତାକୁ ଶୁଂଘି ମୁହଁ ଫେରାଇ ନେଉଥାଏ । ଖାଇବା ପାଇଁ ଯେପରି ତାହାର ଆଗ୍ରହ ନାହିଁ । ପୁଣି ସକାଳ ପହରୁ ତା' ଚାରିପାଖରେ ଯେପରି କାନଫଟା ଚାଙ୍ଗୁବାଜା ଓ ମହୁରୀ ବାଜୁଛି – ଲୋକେ ଯେପରି ଉଦ୍ଦଣ୍ଡ ନାଚ କରୁ କରୁ ତାହାର ଶିଙ୍ଗ, କାନ ଓ ଲାଙ୍ଗୁଡ଼କୁ ଟଣାଓଟରା କରି ତାକୁ ଅସ୍ତବ୍ୟସ୍ତ କରି ପକାଉଛନ୍ତି, ତହିଁରେ ସେ ନିଜର ଆସନ୍ନ ବିପଦ ବିଷୟ ବୋଧହୁଏ ଜାଣିପାରିଛି ।

କାଠଘେର ଚାରିପାଖରେ ଲୋକାରଣ୍ୟ । ନାରୀ ପୁରୁଷ ଦଳ ଦଳ ହୋଇ ମହୁରୀ ଓ ଚାଙ୍ଗୁ ବଜାଇ ତାଳେ ତାଳେ ଉଦ୍ଦଣ୍ଡ ନାଚ କରିବାରେ ଲାଗିଛନ୍ତି । ସେହି ନାରୀପୁରୁଷ ଦଳ ମଧ୍ୟରେ ଆଧୁନିକ ବେଶ ପୋଷାକ ପିନ୍ଧିଥିବା କେତେକ ସ୍କୁଲ-କଲେଜ ପଢୁଆ କିଶୋର କିଶୋରୀ ଥିବାରି ଲକ୍ଷ୍ୟ କଲି । ସେହି ବିସ୍ତୀର୍ଣ୍ଣ ଜନଗୋଷ୍ଠୀ ମଧ୍ୟରେ ଅନେକେ କାଲୁ (ମହୁଲ ମଦ) ପିଇ ଏକ ପ୍ରକାର ଉନ୍ମତ୍ତ ଅବସ୍ଥାରେ । କେତେଜଣ ମୁହଁ ଓ

ଦେହକୁ ବିଭିନ୍ନ ରଙ୍ଗରେ ଚିତ୍ରିତ କରି ବିଚିତ୍ର ବେଶପୋଷାକ ପିନ୍ଧି ନାଚୁଛନ୍ତି । କେତେକ ହାତରେ ଟେକି ଧରିଛନ୍ତି କାଠତିଆରି ଟାଙ୍ଗିଆ, କୁରାଢ଼ୀ ଓ ବନ୍ଧୁକ । ଆଉ କେତେକ ବଡ଼ ବଳା ଆକୃତିର ଲୁହା ତିଆରି 'ସାର' ବାଦ୍ୟ ହାତରେ ଧରି ଝମ୍‌ଝମ୍ କରି ବଜାଉଛନ୍ତି । ସମୁଦାୟ ପରିବେଶଟି ପ୍ରଚଣ୍ଡ ରୌଦ୍ର ଓ ଜନଗହଳିରେ ଯେପରି ଉତପ୍ତ, ଜନସମାଜର ମାନସିକ ଉତ୍ତେଜନା ଓ ଉନ୍ମାଦନାରେ ସେହିପରି ଅସ୍ଥିର ଓ ଚଞ୍ଚଳ ।

ସେହି ଉତ୍ତେଜନା-ଉନ୍ମାଦନା ଶୀର୍ଷ ବିନ୍ଦୁରେ ପହଞ୍ଚିଲା, ଯେତେବେଳେ ଜାନି ଓ ଝାଙ୍କର ଦୁଇଟି ଧାରୁଆ କୁରାଢ଼ୀ ହାତରେ ଧରି ପୋଢ଼ ପାଖରେ ଯମଦୂତ ପରି ଠିଆ ହୋଇଗଲେ । ଦିନ ସେତେବେଳକୁ ପ୍ରାୟ ଏଗାରଟା । ଜନସମୁଦ୍ର କାଠଘେର ଚାରିପାଖରେ ଉଦ୍‌ବେଳ ହୋଇ ଉଠିଲା । ବଳିଦାନର ସେହି ପ୍ରତୀକ୍ଷିତ ମୁହୂର୍ତ୍ତଟି ପ୍ରତି ଯେପରି ସମସ୍ତେ ସଚେତନ ! ବିଚରା ପୋଢ଼ଟିକୁ କଡ଼େଇ ଶୁଆଇ ଦିଆଗଲା । ତା'ପରେ ଜାନି ଓ ଝାଙ୍କର ଦୁହେଁ ବୀର ବିକ୍ରମରେ ତା' ମଥାରେ ମାରି ଚାଲିଲେ କୁରାଢ଼ୀଚୋଟ ଗୋଟିକ ପରେ ଗୋଟିଏ ଅବଲୀଳା କ୍ରମେ । ଯେପରି ସେମାନେ ଶାଳ କି ଆମ୍ବଗଛଟାଏ କାଟିବାରେ ଲାଗିଛନ୍ତି ।

ଜୀବନ ଥିବା ଯାଏ ପୋଢ଼ଟି ଦାରୁଣ କଷ୍ଟରେ ଛଟପଟ ହେଉଥାଏ । ମୁକୁଳି ଯିବାର ବାଟ ନାହିଁ; ଶକ୍ତ ଦଉଡ଼ିରେ ଚାରି ଗୋଡ଼ ଓ ବେକ ଯେ ବନ୍ଧା ! କୁରାଢ଼ୀ ଚୋଟରେ ତାହାର ମଥାଟି ଦୁଇ ଗଡ଼ ହେଲା ବେଳକୁ ଜାନି ଓ ଝାଙ୍କରଙ୍କ ଦେହ ରକ୍ତଛିଟାରେ ଭୟଙ୍କର ଦେଖା ଯାଉଥାଏ । ମାଟି ଉପରେ ଚାରିଆଡ଼କୁ ଛୁଟିଥାଏ ତାଜା ରକ୍ତର ଧାର । ମାଟି ଦେବତା ଏହା ଦ୍ୱାରା ତୁଷ୍ଟ ହେଲେ କି ନା, ଜାଣିପାରିଲି ନାହିଁ । ଭୟରେ ଶିହରି ଉଠିଲି । ହିଂସାର ଏଠି ହିସାବ ନାହିଁ, ନୃଶଂସତାର ନାହିଁ ନମନୀୟତା । ରକ୍ତପାତରେ ହିଁ ରକ୍ତମାଂସ-ଶରୀରଧାରୀ ମଣିଷର ପରିତୃପ୍ତି, ପାରମାର୍ଥିକ ଲକ୍ଷ୍ୟ ପୂର୍ତ୍ତି ।

ତା'ପରେ ପୋଢ଼-ମଥାର ଶିଙ୍ଗ ଥିବା ଅଂଶଟିକୁ ଆଣି ଗୁରୁ, ଜାନି ଓ ଝାଙ୍କର ମନ୍ତ୍ରପାଠ କରୁ କରୁ ପୂଜା ସ୍ଥାନରେ ଗୋଟିଏ ଗାତ ଖୋଳି ପୋତି ପକାଇଲେ । ଶିଙ୍ଗ ଦୁଇଟିର ଅଗ୍ରଭାଗ ମାଟି ଉପରକୁ ଫୁଟି ଦିଶୁଥାଏ ଆଲିଙ୍ଗନ ମୁଦ୍ରାରେ ପ୍ରସାରିତ ବାହୁ ଯୁଗଳ ପରି । ଜୀବନରେ ତଥା ମୃତ୍ୟୁରେ ପୋଢ଼ଟି ଜନସମାଜର ସେବା ପାଇଁ ପ୍ରସ୍ତୁତ — ଏହା ଯେପରି ତାହାରି ଶୁଭ ସଂକେତ । ପୂଜକଙ୍କ ମନ୍ତ୍ରର ବକ୍ତବ୍ୟ ମୋଟାମୋଟି ଏଇୟା ଥିଲା ବୋଲି ଜଣେ ପୁରୁଖା ଗ୍ରାମବାସୀଙ୍କୁ ପଚାରି ବୁଝିଲି —

ହେ ମହାପ୍ରଭୁ ! ହେ ଟାଣାପେନୁ !
ଆମର ଏ ବଳି ଗ୍ରହଣ କରି ତୁଷ୍ଟ ହୁଅ —[redacted]
ଆମ କ୍ଷେତରେ ଭଲ ଫସଲ ଫଳ[redacted]
ଆମର ରୋଗବ୍ୟାଧି ଦୂର କର[redacted]!

ଆଫ୍ରିକାର କେତେକ ଜନଗୋଷ୍ଠୀ ମଧ୍ୟରେ ଧର୍ମୀୟ ଅନୁଷ୍ଠାନର ଅଙ୍ଗ ରୂପେ ନରବଳି ଏକଦା ପ୍ରଚଳିତ ଥିବାର ଡକ୍ଟର ସୁନୀତି କୁମାର ଚାଟାର୍ଜି ଆପଣା 'ଆଫ୍ରିକାନିଜିମ୍' (୧୯୬୦) ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଏବେ ସେଠାରେ ଏଠିକା ପରି ମଣିଷ ସ୍ଥାନରେ ଅନ୍ୟ ଇତର ଜୀବଜନ୍ତୁଙ୍କୁ ବଳି ଦିଆଯାଉଥିବ । ମାନବସମାଜର ପ୍ରକୃତି, ବିଶ୍ୱାସ ଓ ସଂସ୍କାର ମଧ୍ୟରେ ଚାରିଆଡ଼େ ଏକ ପ୍ରକାର ଅଦ୍ଭୁତ ସାଦୃଶ୍ୟ ଦେଖିବାକୁ ମିଳେ । କିନ୍ତୁ ଧର୍ମୀୟ ପୂଜାବେଦୀ ବା ଭକ୍ତିପୀଠ — ମଣିଷ ରକ୍ତରେ ହେଉ, କି ପଶୁପକ୍ଷୀଙ୍କ ରକ୍ତରେ ହେଉ — ଅଭିଷିକ୍ତ ନ ହେଲେ, ଏ ଯୁଗରେ କି ଧର୍ମପାଳନ ହୋଇ ପାରିବ ନାହିଁ ?

ଫୁଲବାଣୀ କଲେଜରେ ଅବସ୍ଥାପିତ ଥିଲାବେଳେ କନ୍ଧମାଳ ଜିଲ୍ଲା ବାହାରେ ଅନ୍ୟ କେତେକ ସାହିତ୍ୟ-ସଂସ୍କୃତିର ଅନୁଷ୍ଠାନରେ ଯୋଗ ଦେବାର ସୁଯୋଗ ପାଇଥିଲି । ରାଜ୍ୟର ଏକ ଉପାନ୍ତ ଅଞ୍ଚଳ ଖଡ଼ିଆଳର ସାହିତ୍ୟ ସଭାରେ ଅଂଶଗ୍ରହଣ ମୋ ପାଇଁ ଅପାସୋରା ହୋଇ ରହିଛି । ଖଡ଼ିଆଳ ଏବେ ନୂଆପଡ଼ା ଜିଲ୍ଲା-ଅନ୍ତର୍ଗତ; ମୁଁ ସେଠାକୁ ଯାଇଥିଲାବେଳେ ତାହା କଳାହାଣ୍ଡି ଜିଲ୍ଲାରେ ଥିଲା । ଖଡ଼ିଆଳ ପଶ୍ଚିମ ଓଡ଼ିଶାର ଏକ ପ୍ରାଚୀନ ସାରସ୍ୱତ ପୀଠ । ଏଠାର ରାଜପରିବାରକୁ କେନ୍ଦ୍ର କରି ଏକ ସାଂସ୍କୃତିକ ପରିମଣ୍ଡଳ ସୃଷ୍ଟି ହୋଇଥିଲା । ଖ୍ରୀଷ୍ଟୀୟ ଉନବିଂଶ ଶତାବ୍ଦୀର ରାଜା ବ୍ରଜରାଜ ସିଂହଦେଓ ରୀତିଧାରାର କବି ଭାବରେ ଖ୍ୟାତି ଲାଭ କରିଥିଲେ । ତାଙ୍କୁ 'ଦ୍ୱିତୀୟ ଉପେନ୍ଦ୍ର ଭଞ୍ଜ' ବୋଲି ଚିହ୍ନିତ କରାଯାଇଛି । ୧୮୮୩ ମସିହାରେ ସେ 'ଖଡ଼ିଆଳ ସାହିତ୍ୟ ସମିତି' ପ୍ରତିଷ୍ଠା କରିଥିଲେ । ମଝିରେ ମଝିରେ ଏହା ନିଷ୍କ୍ରିୟ ହୋଇ ପଡୁଥିଲେ ହେଁ ଏପର୍ଯ୍ୟନ୍ତ ତିଷ୍ଠି ରହିଛି । ରାଜ୍ୟର ଏହା ପ୍ରାଚୀନତମ ସାଂସ୍କୃତିକ ପ୍ରତିଷ୍ଠାନ । କଟକର 'ଉତ୍କଳ ସାହିତ୍ୟ ସମାଜ'କୁ କେହି କେହି ପ୍ରାଚୀନତମ ଅନୁଷ୍ଠାନ ବୋଲି କହୁଥିବା ଠିକ୍ ନୁହେଁ । ବ୍ରଜରାଜଙ୍କ ପୁତ୍ର ବୀର ବିକ୍ରମ ଦେବ (୧୮୭୪-୧୯୧୧) ରାମଶଙ୍କର ରାୟଙ୍କ ସମକାଳୀନ ଜଣେ ବିଶିଷ୍ଟ ନାଟ୍ୟକାର । ସେ ରାଜପ୍ରାସାଦ ନିକଟରେ ଏକ ସ୍ଥାୟୀ ନାଟ୍ୟଶାଳା ପ୍ରତିଷ୍ଠା କରିଥିଲେ ଏବଂ ତହିଁରେ ନିଜର ପ୍ରାୟ ଦଶଖଣ୍ଡି ନାଟ୍ୟକୃତି ସହିତ ଅନ୍ୟାନ୍ୟ ନାଟକର ଅଭିନୟ କରାଇଥିଲେ । 'ବୀର ବିକ୍ରମ ଥିଏଟର୍' (୧୮୯୫) ନାମରେ ପରିଚିତ ଏହି ନାଟ୍ୟଶାଳାର ଧ୍ୱଂସାବଶେଷ ମୁଁ ସ୍ୱଚକ୍ଷୁରେ ଦେଖିଲି । ଆମର ନାଟ୍ୟ-ସମୀକ୍ଷକମାନେ ଓଡ଼ିଆ ନାଟକ ଓ ନାଟ୍ୟାଭିନୟ କ୍ଷେତ୍ରରେ ବୀର ବିକ୍ରମଙ୍କ ଦାନ ସଂପର୍କରେ କ୍ୱଚିତ୍ ଆଲୋଚନା କରିଛନ୍ତି । ଯାହାହେଉ, ବ୍ରଜରାଜ ସିଂହଦେଓଙ୍କଠାରୁ ଆରମ୍ଭ କରି ବୀର ବିକ୍ରମ ଦେବ, ଶିବନାରାୟଣ ଦେବ, ଅନୁପ ସିଂହ ଦେବଙ୍କ ମଧ୍ୟ ଦେଇ ବର୍ତ୍ତମାନ ଜିତାମିତ୍ର ପ୍ରସାଦ ସିଂହଦେବ, ନୀଲ୍‌ଲୋହିତ ସିଂହଦେବଙ୍କ ପର୍ଯ୍ୟନ୍ତ ଖଡ଼ିଆଳ ରାଜବଂଶର ସାହିତ୍ୟ-ସଂସ୍କୃତି-କର୍ମ ବିଶେଷ ଉଲ୍ଲେଖନୀୟ । ବୋଲିବା ବାହୁଲ୍ୟ ଯେ — ଏ ସମସ୍ତ କର୍ମର ଏକମାତ୍ର ଫୋରମ୍ ଥିଲା 'ଖଡ଼ିଆଳ ସାହିତ୍ୟ ସମିତି ।'

ମୋତେ 'ଖଡ଼ିଆାଳ ସାହିତ୍ୟ ସମିତି'ର ବାର୍ଷିକୋତ୍ସବକୁ ଅତିଥି ଭାବେ ନିମନ୍ତ୍ରଣ କରାଯାଇଥିଲା । ମୋ ସହିତ ଡକ୍ଟର କ୍ଷେତ୍ରବାସୀ ନାୟକ ମଧ ଅନ୍ୟତମ ଅତିଥି ଭାବରେ ନିମନ୍ତ୍ରିତ ହୋଇ ଯାଇଥିଲେ । ଦିନବେଳେ ଆଲୋଚନାଚକ୍ର, କବିତା ପାଠ, ଅଭିଭାଷଣ ଆଦି ଚାଲିଲା । ସନ୍ଧ୍ୟାରେ ରାଜପ୍ରାସାଦ ଭିତରେ ଏକ ମନୋଜ୍ଞ ସଂଗୀତ ଆସର ଅନୁଷ୍ଠିତ ହେଲା । ବିଭିନ୍ନ ଶିଳ୍ପୀ ଓଡ଼ିଶୀ, ଚଂପୂ, ଭଜନ ଆଦି ପରିବେଷଣ କଲେ । ସ୍ୱୟଂ ରାଜା ଅନୁପ ସିଂହ ଦେବ ସ୍ୱରଚିତ ଗୀତଟିଏ ଗାଇଲେ ହାରମୋନିୟମ୍ ବଜାଇ । ଆସରଟି ବେଶ୍ ଉପଭୋଗ୍ୟ ହୋଇଥିଲା ।

ଗଞ୍ଜାମ ଜିଲ୍ଲା ଭଞ୍ଜନଗରସ୍ଥ ଭଞ୍ଜ ଜୟନ୍ତୀ ସମାରୋହରେ ବକ୍ତୃତା ଦେବା ପାଇଁ ନିମନ୍ତ୍ରିତ ହୋଇ ଯାଇଥିଲି । ମୋର ବକ୍ତବ୍ୟ ଅନେକେ ପସନ୍ଦ କଲେ ନାହିଁ । ସଭା ପରେ ମୋତେ ଅସ୍ଥିର କରି ପକାଇଲେ ପ୍ରଶ୍ନବାଣରେ । କାରଣ, କବି ଉପେନ୍ଦ୍ର ଭଞ୍ଜଙ୍କ ଜୀବନୀ ଓ ସାହିତ୍ୟ-କର୍ମ ସଂପର୍କରେ ଅବମାନନାସୂଚକ ଯେଉଁ ସବୁ ତଥ୍ୟ କିମ୍ବଦନ୍ତୀ ଓ ଗାଳଗଳ୍ପ ଆକାରରେ ପ୍ରଚାରିତ ହୋଇଛି, ମୁଁ ତାହା ଖଣ୍ଡନ କରିଥିଲି । ଦେଇପାରି ନ ଥିଲି ଶ୍ରୋତାମାନଙ୍କର ଚିରାଚରିତ ମୁଖରୋଚକ ଶସ୍ତା ଭାଷଣ । କିନ୍ତୁ ଭଞ୍ଜନଗର କଲେଜ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକୋତ୍ସବରେ ଯେଉଁ ବକ୍ତୃତା ଦେଇଥିଲି ଆଧୁନିକ ସାହିତ୍ୟ ବିଷୟରେ, ତାହା ଛାତ୍ରଛାତ୍ରୀ ଓ ଶିକ୍ଷକଶିକ୍ଷିକାଙ୍କର ଗ୍ରହଣୀୟ ହୋଇଥିଲା । କଥା ହେଉଛି – ମୁଁ ପ୍ରାୟ ଏକ୍ସଟେମ୍ପୋର୍ ବା ତତ୍‌କାଳ-ପ୍ରସ୍ତୁତ ମୌଖିକ ବକ୍ତୃତା ଦେଇପାରେ ନାହିଁ । ସାଧାରଣତଃ ଲିଖିତ ଭାଷଣ ଦେଇଥାଏ, ନଚେତ୍ ମୋ ବକ୍ତବ୍ୟର ପଏଣ୍ଟଗୁଡ଼ିକ ଖଣ୍ଡିଏ କାଗଜରେ ଟିପି ନେଇଥାଏ; ମଝିରେ ମଝିରେ ତାହାକୁ ଦେଖି ଉପସ୍ଥାପନ କରିଥାଏ ମୋର ବକ୍ତବ୍ୟ । ଫଳରେ ପ୍ରସଙ୍ଗ ବାହାରକୁ ଯାଇ ଏଣୁତେଣୁ ନନ୍‌ସେନ୍ସ୍ ଗପିବାର ଅବକାଶ ନ ଥାଏ । ପୁଣି, ଯେଉଁ ଗ୍ରାହକମାନେ ଦୂରରେ ଥାଆନ୍ତି, କିମ୍ବା ମୋ ବକ୍ତୃତା ଶୁଣିବାର ସୁଯୋଗ ପାଇ ନ ଥାନ୍ତି, ସେମାନେ ପରେ ମୋର ଲିଖିତ ବକ୍ତୃତା ପାଠ କରିପାରନ୍ତି । ମୋର ଏହି ଲିଖିତ ଭାଷଣ-ପାଠ ସାଧାରଣତଃ ଅନେକଙ୍କୁ ଭଲ ଲାଗେ ନାହିଁ । ଯାହାହେଉ, ଏପର୍ଯ୍ୟନ୍ତ ମୋର ଲିଖିତ ଭାଷଣର ତିନିଟି ଗ୍ରନ୍ଥ ପ୍ରକାଶିତ ହୋଇଛି, ଯଥା – କେତୋଟି ସାହିତ୍ୟିକ ଅଭିଭାଷଣ (୨ୟ ସଂସ୍କରଣ – ୧୯୭୭), ସଂପାନ ସନ୍ଦର୍ଭ (୧୯୮୧) ଏବଂ ପ୍ରସଙ୍ଗ : ଧର୍ମ ଓ ଶିକ୍ଷା (୧୯୯୩) ।

ସେହିପରି ନୟାଗଡ଼ କଲେଜ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକୋତ୍ସବରେ ମୋର ଯୋଗଦାନ ଓ ଅଭିଭାଷଣ ପ୍ରଦାନ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ସେଠାରେ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କର ଅଭ୍ୟର୍ଥନା ଭୁଲିବାର ନୁହେଁ । ଉପନ୍ୟାସର ଧାରା ସଂପର୍କରେ ମୋର ଅଭିଭାଷଣ ବ୍ୟତୀତ ଓଡ଼ିଆ ଅନର୍ସ ଛାତ୍ରଙ୍କ ସହ ଅନ୍ତରଂଗ ଆଳାପ

ମୋତେ ବିଶେଷ ଆନନ୍ଦ ଦେଇଥିଲା । ଛାତ୍ରଛାତ୍ରୀମାନଙ୍କର ବହୁ ଜିଜ୍ଞାସା ଓ କୌତୂହଳ ମୋତେ ପୂରଣ କରିବାକୁ ପଡ଼ିଥିଲା । ଅଧ୍ୟାପକମାନଙ୍କର ବିଶେଷତଃ ବିଭାଗୀୟ ମୁଖ୍ୟ କବି ଓ ନାଟ୍ୟକାର ଅଧ୍ୟାପକ ହରିହର ମିଶ୍ରଙ୍କର ଭବ୍ୟ ବ୍ୟବହାରରେ ମୁଁ ଅଭିଭୂତ ହୋଇଥିଲି । ନୟାଗଡ଼ ନିକଟବର୍ତ୍ତୀ ଏକ ଜଣାଶୁଣା ଜାଗା ଭଞ୍ଜ-ସ୍ମୃତିପୂତ ମାଳିସାହି । କବି ଉପେନ୍ଦ୍ର ଭଞ୍ଜ ସେଠାରେ କିଛି କାଳ ରହି କାବ୍ୟସାଧନା କରିଥିବାର କଥିତ ହୁଏ । ତାହା ଦେଖିବା ପାଇଁ ମୁଁ ଆଗ୍ରହ ପ୍ରକାଶ କଲାରୁ ଅଧ୍ୟାପକ ମିଶ୍ର ମାଳିସାହି–ଯାତ୍ରାର ବ୍ୟବସ୍ଥା କରାଇ ଦେଇଥିଲେ । ଖଣ୍ଡିଏ ମୋଟର ସାଇକେଲ୍ ଯୋଗେ ଆମେ ଯାଇଥିଲୁଁ । ମାଳିସାହି ଥାନା ନିକଟରେ କବି ଭଞ୍ଜଙ୍କର ତଥାକଥିତ ସାଧନାପୀଠ । ଗୁଳ୍ମଲତା ପୂର୍ଣ୍ଣ ଏକ ପଡ଼ିଆ ମଧ୍ୟରେ ଟ୍ରାଫିକ୍ ପୋଲିସ୍‌ପୋଷ୍ଟ୍ ପରି ଗମ୍ବୁଜାକୃତି ଏକ ଗୃହ । ତାହା ବିଶେଷ ପୁରୁଣା ବା ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀର ବୋଲି ମୋର ମନେ ହେଲା ନାହିଁ । କିନ୍ତୁ ସେଇଠି ବସି ଭଞ୍ଜକବି ଧ୍ୟାନମଗ୍ନ ହେଉଥିବାର ଏବଂ କାବ୍ୟ ସୃଷ୍ଟି କରୁଥିବାର ମୋତେ ସୂଚାଇ ଦିଆଗଲା । ଯଦି ମାଳିସାହି ପ୍ରକୃତରେ ଭଞ୍ଜ କବିଙ୍କର ସାଧନାପୀଠ ହୋଇଥାଏ, ତାହା ଏପର୍ଯ୍ୟନ୍ତ ଗବେଷଣା ଦ୍ୱାରା ସ୍ଥିରୀକୃତ ହୋଇଛି କି ? କବି ଉପେନ୍ଦ୍ର ଭଞ୍ଜ ନୟାଗଡ଼ ରାଜପରିବାରରେ ବିବାହ କରିଥିଲେ ଏବଂ ମାଳିସାହିକୁ ଯୌତୁକ ରୂପେ ପାଇଥିଲେ ଇତ୍ୟାଦି ଘଟଣା ଐତିହାସିକ ପ୍ରମାଣ ଦ୍ୱାରା ସିଦ୍ଧ ହୋଇଛି କି ? ଆମର ଅଧିକାଂଶ ବ୍ୟାପାର କିମ୍ବଦନ୍ତୀର କୁହୁଡ଼ିରେ ପହଁରିବା ଭଳି ହେଉ ନାହିଁ କି ?

## ମହିଳା କଲେଜର ମଙ୍ଗଳାଷ୍ଟକ

୧୯୯୦ ମସିହା ଜୁନ୍ ମାସ ତିରିଶ ତାରିଖ ଶନିବାର । ସେହିଦିନ ମୁଁ କଟକ ରେଭେନ୍ସା କଲେଜରୁ ଅବସର ଗ୍ରହଣ କଲି । ଜୁଲାଇ ପହିଲା ରବିବାର । ରବିବାର ହୋଇ ନ ଥିଲେ, ମୁଁ ସେହି ଜୁଲାଇ ପହିଲାରେ ଯାଇ ଭଦ୍ରକ ମହିଳା କଲେଜରେ ଯୋଗ ଦେଇ ଥାଆନ୍ତି । ମହିଳା କଲେଜ ଗଭର୍ଣ୍ଣିଂ ବଡ଼ିର ତତ୍କାଳୀନ ସଭାପତି ଶ୍ରୀ ଯୁଗଳକିଶୋର ପଟ୍ଟନାୟକ କଲେଜକୁ ଅଧ୍ୟକ୍ଷ ରୂପେ ଯିବା ପାଇଁ ମୋତେ ବାରମ୍ବାର ଅନୁରୋଧ କରୁଥିଲେ । ମୋର ଆଉ ନିଃଶ୍ୱାସ ନେବା ପାଇଁ ତର ନ ଥିଲା । ସେତେବେଳେ ମହିଳା କଲେଜର ଅଧ୍ୟକ୍ଷପଦ ଦୀର୍ଘଦିନ ହେଲା ଖାଲି ପଡ଼ିଥିଲା । କଲେଜର ଜଣେ ବରିଷ୍ଠ ଅଧ୍ୟାପିକା ଅଧ୍ୟକ୍ଷ ଦାୟିତ୍ୱରେ ଥିଲେ । କଲେଜରେ ମୁଁ ଯୋଗ ଦେଲା ପରେ ସେ ଯେପରି ଆଶ୍ୱସ୍ତିର ନିଃଶ୍ୱାସଟାଏ ପକାଇଲେ । ଅଧ୍ୟକ୍ଷ କାର୍ଯ୍ୟ ସହିତ ବିଶ୍ୱବିଦ୍ୟାଳୟ ପରୀକ୍ଷା ପରିଚାଳନା ତାଙ୍କୁ କରିବା ପାଇଁ ପଡୁଥିଲା । ସେତେବେଳେକୁ ଜଣ ଗୋଟାଏ

ପରୀକ୍ଷା ଚାଲିଥିଲା (ବୋଧହୁଏ ଯୁକ୍ତ ଦୁଇ ସପ୍ଲିମେଣ୍ଟାରୀ ପରୀକ୍ଷା; ସେତେବେଳେ ମହିଳା କଲେଜଟି ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା) । ବରିଷ୍ଠ ଅଧ୍ୟାପିକା ମହୋଦୟା ମୋତେ ପରୀକ୍ଷା ପରିଚାଳନା ଦାୟିତ୍ୱ ନେବା ପାଇଁ କହିଲେ । ତହିଁରେ ମୁଁ ରାଜି ହେଲି ନାହିଁ ଏବଂ ତାଙ୍କୁ କହିଲି ଯେ – ଆପଣ ପରୀକ୍ଷା କାର୍ଯ୍ୟ ଚଳାନ୍ତୁ ! ମୁଁ ସମସ୍ତ ପ୍ରକାର ସାହାଯ୍ୟ-ସହଯୋଗ କରିବି ।

ଲକ୍ଷ୍ୟ କଲି – ଠିକ୍ ଭାବରେ ପରୀକ୍ଷା ପରିଚାଳିତ ହେଉ ନାହିଁ । ପରୀକ୍ଷା ଚାଲିଥିବା ବିଭିନ୍ନ ପ୍ରକୋଷ୍ଠକୁ ଯେ-କୌଣସି ବ୍ୟକ୍ତି ଯିବା-ଆସିବା କରିବାରେ କୌଣସି ପ୍ରତିବନ୍ଧକ ନାହିଁ । କେହି କେହି ନିରୀକ୍ଷକ ନିରୀକ୍ଷଣ-କାର୍ଯ୍ୟରେ କଡ଼ାକଡ଼ି ବ୍ୟବସ୍ଥା ଗ୍ରହଣ କରୁନାହାନ୍ତି । ପରୀକ୍ଷା ଆରମ୍ଭ ହେବା ପୂର୍ବରୁ ପ୍ରାର୍ଥିନୀମାନଙ୍କୁ କପି ଆଣିଛନ୍ତି କି ନାହିଁ – ଯାଞ୍ଚ୍ କରାଯାଉ ନାହିଁ, ଅଥଚ ଏ ସଂପର୍କରେ ବିଶ୍ୱବିଦ୍ୟାଳୟର ସ୍ପଷ୍ଟ ନିୟମ ରହିଛି । ପରେ ମୁଁ ଏ ଦିଗରେ ସତର୍କତା ଅବଲମ୍ବନ କଲି । ପ୍ରତିକାରଠାରୁ ନିବାରଣ ଉତ୍କୃଷ୍ଟତର ବୋଲି କଥାଟାଏ ରହିଛି । କଲେଜର ପରବର୍ତ୍ତୀ ପରୀକ୍ଷାମାନଙ୍କରେ ମୁଁ ସେହି ନିବାରଣ-ପ୍ରକ୍ରିୟା ସାଧମତେ ଅନୁସରଣ କଲି । ପରୀକ୍ଷା-ପ୍ରକୋଷ୍ଠକୁ ପ୍ରବେଶ ପୂର୍ବରୁ ପ୍ରତ୍ୟେକ ପ୍ରାର୍ଥିନୀକୁ ଯାଞ୍ଚ୍ କରାଗଲା, ଦୁଇପଟର ଫାଟକକୁ ପରୀକ୍ଷା ଚାଲିବା ପରେ ବନ୍ଦ କରିଦିଆଗଲା, କେହି ଜଣେ ପ୍ରାର୍ଥିନୀ ଶୌଚାଗାରକୁ ଗଲେ ତାହା ପ୍ରତି ଦୃଷ୍ଟି ଦିଆଗଲା । ଏହିପରି ସତର୍କତା ଅବଲମ୍ବନ କରିବା ଫଳରେ କପି କରିବା ବହୁ ପରିମାଣରେ ଊଣା ହୋଇଗଲା । ବିଶ୍ୱବିଦ୍ୟାଳୟର ସ୍ଥାୟୀ ସହବନ୍ଧନ ଆଣିବା ଉଦ୍ଦେଶ୍ୟରେ ମୁଁ ଥରେ ଯାଇ କୁଳସଚିବଙ୍କ ଅଫିସ୍‌ରେ ବସିଛି, ପରୀକ୍ଷା ନିୟନ୍ତ୍ରକ ପଶି ଆସି ମୋତେ ଦେଖି କହିଲେ – ଆପଣଙ୍କ କଲେଜରେ ପରୀକ୍ଷା ଠିକ୍ ଭାବରେ ଚାଲିଥିବାର ଖବର ପାଉଛି, ତେଣୁ ସେଠାକୁ ତତ୍ତ୍ୱାବଧାରକ ଦଳ ପଠାଯାଉ ନାହିଁ ।

ବିଶ୍ୱବିଦ୍ୟାଳୟର ସ୍ଥାୟୀ ସହବନ୍ଧନ ମିଳିଗଲାରୁ କଲେଜ ଗଭର୍ଣ୍ଣିଂ ବଡ଼ି ସନ୍ତୋଷ ପ୍ରକାଶ କଲେ ଏବଂ କେତେକ ନୂଆ ପାଠ୍ୟ ବିଷୟ କଲେଜରେ ପ୍ରଚଳନ କରିବା ପାଇଁ ପ୍ରଚେଷ୍ଟା ଚଳାଇଲେ । ସେହି ପାଠ୍ୟ ବିଷୟ ମଧ୍ୟରେ ବି.ଏସ୍‌ସି. ଶ୍ରେଣୀ ଫିଟିଥିବା ବଡ଼ ଆନନ୍ଦର କଥା !

ମହିଳା କଲେଜଟି ଭଦ୍ରକ କଚେରି ବଜାରର ପୂର୍ବକୁ ଅଳ୍ପ ଦୂରରେ ଅବସ୍ଥିତ । ବଜାରର କୋଳାହଳ ପ୍ରାୟ ନାହିଁ । ଶାନ୍ତ ସୁନ୍ଦର ପରିବେଶ ମଧ୍ୟରେ ଅଧ୍ୟୟନ – ଅଧ୍ୟାପନାର ଚମତ୍କାର ସୁଯୋଗ ରହିଛି । ତିନି ପଟରୁ ପକ୍କା ପାଚିରି ବେଢ଼ା, ଗୋଟିଏ ପଟରେ ସାଳନ୍ଦୀ ନଦୀ ପ୍ରବାହିତ । ବର୍ଷାଋତୁ ବ୍ୟତୀତ ଅନ୍ୟ ଦିନମାନଙ୍କରେ ନଦୀରେ ପ୍ରାୟ ପାଣି ନଥାଏ । ବର୍ଷାଋତୁରେ ବେଳେ ବେଳେ କଲେଜ ପରିସରକୁ ପାଣି ମାଡ଼ି

ଆସେ; ବାଧ ହୋଇ ଦୁଇ ତିନି ଦିନ କଲେଜକୁ ବନ୍ଦ ରଖିବାକୁ ପଡ଼େ । ଅନ୍ୟ ସମୟରେ ନଦୀ ଶୁଖିଲା ଥିବାରୁ ଗୋରୁଗାଈ କିମ୍ବା କୌଣସି ମନ୍ଦ ଉଦ୍ଦେଶ୍ୟ ଘେନି ଲୋକେ କଲେଜ ଭିତରକୁ ଅବାଧରେ ପଶି ଆସି ପାରୁଥିଲେ । ତେଣୁ ସାଳନ୍ଦୀ ନଦୀ କୂଳେ କୂଳେ ଏକ ପାଚିରି ବନ୍ଧ ତିଆରି ପାଇଁ ମୁଁ ଗଭର୍ଣ୍ଣିଂ ବଡ଼ିକୁ ଅନୁରୋଧ କରିଥିଲି । ମାତ୍ର ଅର୍ଥାଭାବ ହେତୁ ମୋର ସେହି ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରି ନଥିଲା ।

କଲେଜ ପରିସରରେ ଗୋଟିଏ ଯୋଡ଼ିଏ ମାତ୍ର ଗଛ ଥିଲା । ପରିସରକୁ ସବୁଜ ସୁନ୍ଦର କରିବା ପାଇଁ ଏବଂ ଖରାଦିନେ ଗ୍ରୀଷ୍ମ-ଉତ୍ତାପ ଊଣା କରିବା ପାଇଁ ପାଚିରି ଭିତରେ କିଛି ଗଛ ଲଗାଇବା ସକାଶେ ପଦକ୍ଷେପ ନେଇଥିଲି । ରାଜ୍ୟ ସରକାରଙ୍କ ଜଣେ ମହିଳା ମନ୍ତ୍ରୀ ବୃକ୍ଷରୋପଣ କରିଥିଲେ । ଗଛଗୁଡ଼ିକୁ ବାଉଁଶ ଖୁଣ୍ଟ ଓ ପାତିଆରେ ଘେରାଉ କରି ଦିଆଯାଇଥିଲା । ତହିଁରୁ ଅନେକ ଗଛ ଭଲ ଭାବରେ ବଢ଼ୁଥିଲା । କିନ୍ତୁ ଦୁଃଖର କଥା, ସେଗୁଡ଼ିକ ଅଳ୍ପ ଦିନ ଭିତରେ କଲେଜ ପରିସରରେ ଚରୁଥିବା ଗାଈଗୋରୁଙ୍କ ଆହାର ହୋଇଗଲା । କଲେଜ ଭିତରେ ଗାଈଗୋରୁଙ୍କ ଅବାଧ ପ୍ରବେଶ ବନ୍ଦ କରିବା ପାଇଁ ମୋର ସମସ୍ତ ଚେଷ୍ଟା ବିଫଳ ହୋଇଥିଲା ।

କଲେଜରେ ବିଶେଷତଃ ମହିଳା କଲେଜରେ ଶାନ୍ତିଶୃଙ୍ଖଳା ରକ୍ଷା ଏକ ବଡ଼ ସମସ୍ୟା । ସେଥିପାଇଁ କର୍ତ୍ତୃପକ୍ଷଙ୍କୁ ବିଶେଷ ନିଘା ଦେବାକୁ ପଡ଼ିଥାଏ । ପୂର୍ବରୁ ପ୍ରାୟ ଅଢ଼େଇ ବର୍ଷ ମୁଁ ରେଭେନ୍ସା କଲେଜ ଛାତ୍ରୀନିବାସର ପରିଚାଳକ ଥିଲି । ତାହା ଆଗରୁ ଭଦ୍ରକ କଲେଜ ବେସରକାରୀ ଥିଲାବେଳେ ସେହି କଲେଜ ଛାତ୍ରୀନିବାସର ପରିଚାଳକ ଭାବରେ ମଧ କିଛି କାଳ କାର୍ଯ୍ୟ କରିଥିଲି । ମୋର ଅଭିଜ୍ଞତାରୁ କହିବି — ନାରୀମାନଙ୍କର ଆବେଗଗତ ସମସ୍ୟା ଏବଂ ନାରୀ-ପୁରୁଷ ସଂପର୍କ ଘେନି ଉପୁଜୁଥିବା ସମସ୍ୟା ହିଁ ମହିଳା କଲେଜରେ ଗୁରୁତ୍ୱପୂର୍ଣ୍ଣ । ଏଠାରେ ଗୋଟିଏ ଘଟଣା ଉଲ୍ଲେଖ କରିବି । ରେଭେନ୍ସା କଲେଜ ଛାତ୍ରୀ ନିବାସର ଜଣେ ଛାତ୍ରୀ ଦେହରେ ନିଆଁ ଲଗାଇ ପ୍ରାୟ ପଞ୍ଚସ୍ତରୀ ଶତାଂଶ ପୋଡ଼ି ହୋଇଗଲା । କଲେଜ ଅଧକ୍ଷ ଓ ପରିଚାଳକ ଭାବରେ ମୁଁ ଦୁଇଦିନ କାଳ ସେଥି ସକାଶେ ଯେପରି ଲଣ୍ଡଭଣ୍ଡ ହୋଇ ପଡ଼ିଥିଲୁଁ, ତାହା ଭୁଲି ପାରିବି ନାହିଁ । ମେଡ଼ିକାଲ୍ କଲେଜ ହସପିଟାଲରେ ଡାକ୍ତରମାନଙ୍କ ବହୁ ଚେଷ୍ଟା ସତ୍ତ୍ୱେ ଛାତ୍ରୀଟିର ଜୀବନ ରକ୍ଷା କରାଯାଇ ପାରିଲା ନାହିଁ । ଏଠରେ ସେହି ନାରୀ-ପୁରୁଷ ସଂପର୍କ ଘେନି ସମସ୍ୟା । ବେସରକାରୀ ଭଦ୍ରକ କଲେଜ ଛାତ୍ରୀନିବାସର ଆଉ ଗୋଟିଏ ଘଟଣା କହିବି । ଥରେ ଖବର ମିଳିଲା — ଜଣେ ଛାତ୍ରୀ ମଝିରେ ମଝିରେ ଛାତ୍ରୀ ନିବାସରୁ ବାହାରକୁ ଯାଇ ରାତିରେ କୁଆଡ଼େ ରହି ଯାଉଛି । ଛାତ୍ରୀଟିର ବାପାଙ୍କୁ ମୁଁ ଡକାଇ ପଠାଇଲି । ବାପା ଏ କଥାଟାକୁ ସହଜ ଭାବରେ ଗ୍ରହଣ କଲେ; କହିଲେ — ଭିଜିଟର୍ ତାଲିକାରେ ମୁଁ ଯାହାଙ୍କର

ନାମ ଦେଇଛି, ମୋ ଝିଅ ତାହାରି ସାଙ୍ଗରେ ବାହାରକୁ ଯାଉଛି । ସେଥିରେ ଆପଣଙ୍କର ଆପତ୍ତି କରିବାର କିମ୍ବା ମୋ ଝିଅର ଚାଲିଚଳଣି ବିଷୟରେ ସନ୍ଦେହ କରିବାର କି କାରଣ ରହିଛି ? କଥାଟା ଭିନ୍ନ ମୋଡ଼ ନେଉଥିବାର ଦେଖି ଅଗତ୍ୟା ମୁଁ ଚୁପ୍ ହୋଇ ରହିଥିଲି ।

ଭଦ୍ରକ ମହିଳା କଲେଜରେ ମୁଁ ଯେଉଁ ଦୁଇବର୍ଷ ରହିଥିଲି, ସେହି ସମୟ ଭିତରେ ସେପରି କୌଣସି ଘଟଣା ବା ଦୁର୍ଘଟଣା ମୋ କାନରେ ପଡ଼ି ନାହିଁ, କିମ୍ବା ମୋ ନଜରକୁ ଆସିନାହିଁ । କଲେଜ ପରିସର ଭିତରେ ଥିବା ଅଧକ୍ଷଙ୍କ ବାସଭବନ ସେତେବେଳେ ଖାଲି ପଡ଼ିଥିଲା । ସେଠାରେ ଆସି ରହିବା ପାଇଁ ମୁଁ ସ୍ଥିର କଲି । ପରିସର ଭିତରେ ପୁଣି ଛାତ୍ରୀ ନିବାସ; ସେଠାରେ ପ୍ରାୟ ସତୁରୀ ଜଣ ଅନ୍ତେବାସିନୀ ରହୁଥାଆନ୍ତି । ତେଣୁ ଶାନ୍ତି ଶୃଙ୍ଖଳାର ସୁରକ୍ଷା ପାଇଁ ଏହି ସିଦ୍ଧାନ୍ତ ଗ୍ରହଣ କଲି । କଲେଜରେ ଯୋଗ ଦେବା ପରେ ପ୍ରଥମେ ଭଦ୍ରକ ସହରରେ ଥିବା ମୋ ଝିଅ ପାଖରେ ରହୁଥିଲି । ଯାହାହେଉ, ମୋର ଏହି ସିଦ୍ଧାନ୍ତର କିଛି ସୁଫଳ ମିଳିଲା । କଲେଜରେ ଶାନ୍ତି ଶୃଙ୍ଖଳା ରକ୍ଷା ପ୍ରତି ପ୍ରତ୍ୟକ୍ଷ ଧ୍ୟାନ ଦେଇପାରିଲି । ତାହା ବ୍ୟତୀତ ଅନ୍ତେବାସିନୀ ଓ ଅନ୍ୟାନ୍ୟ କଲେଜ ଛାତ୍ରୀଙ୍କ ସହ ଅଧିକ ମତ ଆଦାନପ୍ରଦାନ ଓ ମିଳାମିଶା କରିବାର ସୁଯୋଗ ପାଇଲି । ମୁଁ ଏକ ଆବାସିକ ଶିକ୍ଷାୟତନ – ଭାରତବର୍ଷର ବିଖ୍ୟାତ ବିଶ୍ୱବିଦ୍ୟାଳୟ ଶାନ୍ତିନିକେତନସ୍ଥ ବିଶ୍ୱଭାରତୀରେ ଶିକ୍ଷାଲାଭ କରିଥିଲି । ତେଣୁ ଶିକ୍ଷକ-ଶିକ୍ଷାର୍ଥୀଙ୍କର ସହାବସ୍ଥାନର ମହତ୍ତ୍ୱ ଉପଲବ୍ଧି କରିଥିଲି । ମହିଳା କଲେଜର ବହୁ ଛାତ୍ରୀ ବିଶେଷତଃ ଅନ୍ତେବାସିନୀଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିବା ଯୋଗୁ ସେମାନଙ୍କର ପାଠପଢ଼ା, ସ୍ୱାସ୍ଥ୍ୟ ଏପରିକି କେତେକ ବ୍ୟକ୍ତିଗତ ସମସ୍ୟା କଥା ଜାଣୁଥିଲି ଏବଂ ତାହାର ସମାଧାନ ପାଇଁ ଚେଷ୍ଟା କରୁଥିଲି । କେତେକ ଅଭିଭାବକ ନିଜ ନିଜର ଝିଅ ପାଇଁ ଭଲ ପାତ୍ରଟିଏ ଯୋଗାଡ଼ କରିଦେବା ପାଇଁ ମୋତେ ଅନୁରୋଧ କରିବାକୁ ପଛେଇ ନଥିଲେ । ସେ ଦିଗରେ ମୁଁ ଜଣେ ଦୁଇଜଣ ଅଭିଭାବକଙ୍କୁ ସାହାଯ୍ୟ କରିପାରିଥିଲି ।

ଦିନେ ସକାଳେ କଲେଜ ପରିସରରେ ବୁଲୁବୁଲୁ ଲକ୍ଷ୍ୟ କଲି – କମନ୍ ରୁମ୍‌ରେ ଜଣେ ଛାତ୍ରୀ ନିଜକୁ ସଙ୍କେଇ ଗୁଙ୍କେଇ ବହିପତ୍ର ଧରି ବସିଛି । ଦିନ ପ୍ରାୟ ସାଢ଼େ ଆଠଟା ହେବ । କ୍ଲାସ୍ ଆରମ୍ଭ ହେବା ପାଇଁ ଦେଢ଼ ଘଣ୍ଟା ବାକି । କଲେଜର ଦୋତାଲା ଘର ଗୁଡ଼ିକରେ କାଉ କୋଇଲିଟିଏ ବି ନାହାନ୍ତି । ପିଅନ୍ ଦରୱାନ ମାନେ ବାସିକାମ ଓ ଖିଆପିଆ ସାରି କଲେଜକୁ ଆସିବା ପାଇଁ ପ୍ରସ୍ତୁତ ହେଉଛନ୍ତି । ଛାତ୍ରୀଟିକୁ ଡାକି ମୁଁ ପଚାରିଲି – ଏତେ ସକାଳୁ କାହିଁକି ଆସି ଏଠି ଏକୁଟିଆ ବସିଛ ? ନଳାଙ୍ଗ କି ଗେଲଟୁଆ ଅଞ୍ଚଳର ଝିଅ ସେ । ଯାନବାହନ ଅସୁବିଧା ସଂପର୍କରେ ସେ ମୋତେ ଯେଉଁ ଉତ୍ତର

ଦେଲା, ମୁଁ ତହିଁରେ ସନ୍ତୁଷ୍ଟ ହେଲି ନାହିଁ । ତା' ଉପରେ ବିରକ୍ତ ହୋଇ ଛାତ୍ରୀ ନିବାସରେ ଯାଇ ବସି ରହିବାକୁ ଆଦେଶ ଦେଲି । ରାସ୍ତାଘାଟରେ ଏକୁଟିଆ ନ ଆସି ଦଳବଦ୍ଧ ଭାବରେ କଲେଜକୁ ଆସିବା ପାଇଁ ଛାତ୍ରୀମାନଙ୍କୁ ମୁଁ ବରାବର ପରାମର୍ଶ ଦେଉଥିଲି । ଆମ ରାଜ୍ୟ କିମ୍ବା ଦେଶରେ ରାସ୍ତାଘାଟରେ ଦିନ ଦ୍ୱିପ୍ରହରରେ ସୁଦ୍ଧା ଜଣେ ନାରୀ ଏକୁଟିଆ ନିରାପଦରେ ଯାତାୟାତ କରିବାର ସମୟ ବୋଧହୁଏ ଆସିନାହିଁ ।

ପୋଷାକ-ପରିଚ୍ଛଦରେ ସତର୍କ ରହିବାକୁ ମଧ୍ୟ ମୁଁ ଛାତ୍ରୀମାନଙ୍କୁ ବୁଝାଉଥିଲି । ଲୋକଙ୍କ ଦୃଷ୍ଟିରେ ସାଧାରଣତଃ କାମୋଦ୍ଦୀପକ ହେଉଥିବା ଆକର୍ଷଣୀୟ ଚାକଚକ୍ୟପୂର୍ଣ୍ଣ ବେଶପୋଷାକରେ କଲେଜକୁ ନ ଆସିବା ପାଇଁ ସେମାନଙ୍କୁ ପରାମର୍ଶ ଦେଉଥିଲି । କେତେକ ବାପା-ମାଆ ବା ଅଭିଭାବକ ନିଜ ନିଜର ଝିଅକୁ ଚକଚକିଆ ଆଡ଼ମ୍ବରପୂର୍ଣ୍ଣ ବେଶଭୂଷାରେ ସଜେଇ କଲେଜକୁ ପଠାଇବାରେ ଆନନ୍ଦ ଉତ୍ତେଜନା ଅନୁଭବ କରିଥାଆନ୍ତି । ଏହା ଗୋଟିଏ ମନୋବୈଜ୍ଞାନିକ ବିଭାବ । ମାତ୍ର ଏହାକୁ ନିଜ ଘର ଭିତରେ କିମ୍ବା ବରପାତ୍ରର କନ୍ୟା ଦେଖାରେ ସୀମାବଦ୍ଧ ରଖିଲେ, ଭଲ ହୁଅନ୍ତା ! ଏହି ପ୍ରସଙ୍ଗରେ ଏକ ବିଚିତ୍ର କଥା ମନକୁ ଆସେ । ଇତର ଜୀବଜନ୍ତୁଙ୍କଠାରେ ପ୍ରକୃତି ଏପରି ମତିଗତି ଖଞ୍ଜି ଦେଇଛି ଯେ, ତହିଁରୁ ଜଣାପଡ଼େ – ପୁଂ-ଜାତି ବିଭିନ୍ନ ବେଶରେ ବିଭିନ୍ନ ଅଙ୍ଗଭଙ୍ଗୀରେ ସ୍ତ୍ରୀ-ଜାତିକୁ ଆକର୍ଷଣ କରେ । ଅଣ୍ଡିରା ମୟୂରର ଚିତ୍ରିତ ଶୋଭନୀୟ ପୁଚ୍ଛ ରହିଛି, ମାଈ ମୟୂରର ନାହିଁ । ମୟୂର ସେହି ପୁଲକିତ ପୁଚ୍ଛ ଟେକି ନାଚେ ଏବଂ ମୟୂରୀକୁ ଆକୃଷ୍ଟ କରେ । ଅଣ୍ଡିରା ସିଂହ ବେକରେ କେଶର ଅଛି, ମାଈ ସିଂହର ନାହିଁ । ସିଂହର ସେହି କମନୀୟ କେଶର ହିଁ ସିଂହୀକୁ ଆକୃଷ୍ଟ କରେ । ଅଣ୍ଡିରା କୋଇଲି ବୋବାଉଥାଏ, ମାଈ କୋଇଲି ନୁହେଁ । ଅଣ୍ଡିରା କୋଇଲିର ସେହି କୁହୁ ଧ୍ୱନି ହିଁ ମାଈ କୋଇଲିକୁ ଆକୃଷ୍ଟ କରିଥାଏ । ଇତର ଜୀବଜନ୍ତୁଙ୍କର ଏହି ମତିଗତି ମଣିଷ କ୍ଷେତ୍ରରେ ବିପରୀତ ହେଉଛି; ନାରୀ ହିଁ ନାନା ବାଗରେ ପୁରୁଷକୁ ଆକୃଷ୍ଟ କରିବା ପାଇଁ ପ୍ରସ୍ତୁତ ହେଉଛି । ବ୍ୟାପାରଟା ବେଶ୍ କୌତୂହଳପ୍ରଦ !

ମୋ ପୂର୍ବରୁ ମହିଳା କଲେଜରେ ଛାତ୍ରୀ ଇଉନିୟନ୍ ନ ଥିଲା, ସେଥିପାଇଁ ନିର୍ବାଚନ ହେଉ ନଥିଲା । ଦଶବର୍ଷର ଏକ ପୁରୁଣା ଡିଗ୍ରୀ କଲେଜ; ସେଠାରେ ଛାତ୍ରୀମାନଙ୍କୁ ଗଣତାନ୍ତ୍ରିକ ପଦ୍ଧତି ସହ ପରିଚିତ କରାଇବା ଉଚିତ ମନେ କରି ମୁଁ ଛାତ୍ରୀ-ଇଉନିୟନ୍ର ନିର୍ବାଚନ ଆରମ୍ଭ କଲି । ଛାତ୍ରୀମାନେ ଖୁବ୍ ଉତ୍ସାହ-ଉଦ୍ଦୀପନା ସହ ନିର୍ବାଚନରେ ଅଂଶଗ୍ରହଣ କଲେ । ଇଉନିୟନ୍ ନିର୍ବାଚନ କରାଗଲେ, ଛାତ୍ରୀମାନେ ସାନ ବଡ଼ କାରଣରୁ ଗଣ୍ଡଗୋଳ ଭିଆଇବେ, କଲେଜରେ ଶୃଙ୍ଖଳା ନଷ୍ଟ ହେବ – ଇତ୍ୟାଦି କାରଣ ଦର୍ଶାଇ କେତେ ଜଣ ଅଧ୍ୟାପିକା ନିର୍ବାଚନ ନ କରାଇବାକୁ ମୋତେ ପରାମର୍ଶ ଦେଇଥିଲେ ।

ମାତ୍ର ମୋର ଦୁଇ ବର୍ଷର ରହଣି କାଳରେ ଯେଉଁ ଦୁଇଥର ଇଉନିୟନ୍ – ନିର୍ବାଚନ କରାଯାଇଥିଲା, ତହିଁରେ କୌଣସି ଗଣ୍ଡଗୋଳ ହୋଇ ନ ଥିଲା; ନିର୍ବାଚନ ପରେ ଇଉନିୟନ୍‌ର କର୍ମକର୍ତ୍ତ୍ରୀମାନେ କଲେଜର କର୍ତ୍ତୃପକ୍ଷଙ୍କ ପାଇଁ କୌଣସି ସମସ୍ୟା ସୃଷ୍ଟି କରି ନଥିଲେ । ଅନ୍ୟ ପକ୍ଷରେ, କଲେଜର ଆବଶ୍ୟକ ସ୍ଥଳେ ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ କର୍ତ୍ତୃପକ୍ଷଙ୍କୁ ସହାୟତା କରିଥିଲେ ।

ଏକ ସନ୍ଧିକ୍ଷଣରେ ମୁଁ ମହିଳା କଲେଜର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିଥିଲି । କଲେଜର ପ୍ରତିଷ୍ଠିତ ଗଭର୍ଣ୍ଣିଂ ବଡ଼ିକୁ ଭାଙ୍ଗି ନୂଆ ବଡ଼ିଟିଏ ଗଠନ କରାଯାଇଥିଲା । କିନ୍ତୁ ଉଚ୍ଚ ନ୍ୟାୟାଳୟର ନିର୍ଦ୍ଦେଶକ୍ରମେ ନୂଆ ବଡ଼ି ଦାୟିତ୍ୱ ଗ୍ରହଣ କରିପାରି ନଥିଲା । ପ୍ରତିଷ୍ଠିତ ଗଭର୍ଣ୍ଣିଂ ବଡ଼ିର ସଭାପତି ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ ସେତେବେଳେ ରାଜନୈତିକ କ୍ଷମତାରେ ନଥିଲେ ହେଁ କଲେଜର ସବୁ କଥା ବୁଝାଶୁଝା କରୁଥିଲେ ଏବଂ କଲେଜ ପରିଚାଳନାକୁ ସୁନିୟନ୍ତ୍ରିତ କରୁଥିଲେ । ଯେଉଁ ରାଜନୈତିକ ଦଳ କ୍ଷମତାରେ ଥିଲେ, ତାହାର ସ୍ଥାନୀୟ ନେତାମାନେ କଲେଜରେ ଅସ୍ଥିରତା ସୃଷ୍ଟି ପାଇଁ ଉଦ୍ୟମ କରିଥିଲେ । କିନ୍ତୁ ସିଧାସଳଖ କଲେଜ ଭିତରେ ଧସେଇ ପଶି କିଛି ଗୋଟାଏ ଅଘଟଣ ଘଟାଇବାକୁ କିମ୍ବା ଗଭର୍ଣ୍ଣିଂ ବଡ଼ିର ପରିବର୍ତ୍ତନ କରିବାକୁ ଭରସି ପାରି ନଥିଲେ । ତାହାର କାରଣ – ବୋଧହୁଏ ସେହି ନେତାମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ଏକଦା ମୋର ଛାତ୍ର, ନଚେତ୍ ପରିଚିତ ବନ୍ଧୁ । ପୁଣି, ବେସରକାରୀ ଥିଲାବେଳେ ଭଦ୍ରକ କଲେଜର ଗଭର୍ଣ୍ଣିଂ ବଡ଼ିକୁ ଘେନି ବିଂଶ ଶତାବ୍ଦୀର ସପ୍ତମ ଦଶକରେ ପ୍ରାୟ ଦେଢ଼ ବର୍ଷ କାଳ ଯେଉଁ ଗଣ୍ଡଗୋଳ ଲାଗିଥିଲା, ସେ ବିଷୟରେ ମୋର ପ୍ରତ୍ୟକ୍ଷ ଅଭିଜ୍ଞତା ଥିଲା । ତେଣୁ ମହିଳା କଲେଜରେ ସେତେବେଳେ ମୁଁ ଖୁବ୍ ସତର୍କତାର ସହିତ କାର୍ଯ୍ୟ କରୁଥିଲି ।

ଆନନ୍ଦର କଥା, କଲେଜ ଗଭର୍ଣ୍ଣିଂ ବଡ଼ି ମୋର ଅଧ୍ୟକ୍ଷ-କାର୍ଯ୍ୟରେ କୌଣସି ପ୍ରକାର ହସ୍ତକ୍ଷେପ କରୁ ନଥିଲେ, ସ୍ୱାଧୀନ ଭାବରେ କାର୍ଯ୍ୟ କରିବା ପାଇଁ ସୁଯୋଗ ଦେଇଥିଲେ । ତେଣୁ କଲେଜର ଉନ୍ନତି ପାଇଁ ସାଧ୍ୟମତେ କିଛି କାର୍ଯ୍ୟ କରି ପାରିଥିଲି । ଗୋଟିଏ ଯୋଡ଼ିଏ କାର୍ଯ୍ୟ ଅସଂପୂର୍ଣ୍ଣ ରଖି କଲେଜରୁ ମେଲାଣି ନେଇ ଆସିଥିଲି । ବର୍ଷକୁ ବର୍ଷ କଲେଜ ପତ୍ରିକା 'ଭଦ୍ରାପଲ୍ଲୀ' ବାହାରୁଥିଲା, ମାତ୍ର କଲେଜର କ୍ୟାଲେଣ୍ଡର୍‌ଟିଏ ବାହାର କରିବାକୁ ଚେଷ୍ଟା କରି ବିଫଳ ହୋଇଥିଲି । କ୍ୟାଲେଣ୍ଡର୍ ଛାତ୍ରୀସମାଜ, ଶିକ୍ଷିକା ଶ୍ରେଣୀ ଓ କଲେଜ କର୍ମଚାରୀମାନଙ୍କ ପକ୍ଷରେ କେତେଦୂର ଆବଶ୍ୟକ, ତାହା କାହାରିକୁ ଫେଡ଼ି କହିବା ଲୋଡ଼ା ନାହିଁ । କ୍ୟାଲେଣ୍ଡର୍ ସଂକଳନ ପାଇଁ ଯେଉଁ ଅଧ୍ୟାପିକା-ମଣ୍ଡଳୀଙ୍କୁ ଦାୟିତ୍ୱ ଦିଆଯାଇଥିଲା, ତାହା ସେମାନେ ତୁଲାଇ ପାରିଲେ ନାହିଁ । ଆଉ ଏକ ବଡ଼ କାର୍ଯ୍ୟ ଆରମ୍ଭ ମାତ୍ର କରି ଚାଲିଆସିଲି । ଗୋଟିଏ ଉଚ୍ଚ ଶିକ୍ଷାୟତନ ପକ୍ଷରେ କାର୍ଯ୍ୟାଳୟ

ବା ଅଫିସ୍ ମସ୍ତିଷ୍କ ହେଲେ, ଗ୍ରନ୍ଥାଗାର ବା ଲାଇବ୍ରେରୀ ହେଉଛି ତାହାର ହୃତ୍‌ପିଣ୍ଡ । କଲେଜରେ ଯୋଗ ଦେଲା ପରେ ମୁଁ ଦେଖିଲି – ଲାଇବ୍ରେରୀଟି ଦରିଦ୍ର ଅବସ୍ଥାରେ ରହିଛି । ଅଳ୍ପ କେତେ ଖଣ୍ଡି ସାଧାରଣ ଗଳ୍ପ-ଉପନ୍ୟାସ-ପ୍ରବନ୍ଧାଦି ଗ୍ରନ୍ଥ, ବାକି ବହୁ ସଂଖ୍ୟାରେ ରହିଛି ବିଭିନ୍ନ ବିଷୟର ପାଠ୍ୟପୁସ୍ତକ ବା ଟେକ୍ସ୍ଟ ବୁକ୍ । ପାଠ୍ୟପୁସ୍ତକରୁ ଅଧିକାଂଶ ପୁଣି ଅଧାପିକାମାନେ ଘେନି ଯାଉଛନ୍ତି, ମାସ ମାସ କାଳ ପାଖରେ ରଖୁଛନ୍ତି, ଫେରାଉ ନାହାନ୍ତି । ଛାତ୍ରୀମାନେ ଗ୍ରନ୍ଥାଗାର ଦ୍ୱାରା ଖୁବ୍ କମ୍ ଉପକୃତ ହେଉଛନ୍ତି । ଅଥଚ ଲାଇବ୍ରେରୀ ଫି ସେମାନେ ଯଥାରୀତି ଦେବାରେ ଲାଗିଛନ୍ତି । ଗଭର୍ଣ୍ଣିଂ ବଡ଼ିରେ ମୁଁ ଏକଥା ଉଠାଇଲି ଏବଂ ପ୍ରତି ବର୍ଷ ଗ୍ରନ୍ଥାଗାର ପାଇଁ କିଛି କିଛି ବହି କିଣିବା ପାଇଁ ଅନୁମତି ଆଣିଲି ।

ଏହି ପ୍ରସଙ୍ଗରେ ଏକ ଦୁଃଖଦ ଅଭିଜ୍ଞତା କଥା ଉଲ୍ଲେଖ କରିବି । କଟକ ରେଭେନ୍ସା କଲେଜରେ ଥିଲାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟର ସହବନ୍ଧନ ସକାଶେ ଉତ୍ତର ବାଲେଶ୍ୱର ଓ ଯାଜପୁର ଅଞ୍ଚଳର କେତୋଟି କଲେଜ ତଦନ୍ତ କରିବା ପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଆମ କେତେ ଜଣ ଅଧାପକଙ୍କୁ ପଠାଇଥିଲେ । କଲେଜଗୁଡ଼ିକୁ ଯାଇ ଦେଖିଲୁଁ – ଘରଦ୍ୱାର ସବୁ ଠିକ୍ ଅଛି, ମାତ୍ର ଆଖିରେ ପଡ଼ିଲା ଭଳି ଗ୍ରନ୍ଥାଗାରଟିଏ ନାହିଁ । ଗ୍ରନ୍ଥାଗାର ସକାଶେ ସ୍ୱତନ୍ତ୍ର ଗୃହ ନାହିଁ; କେଉଁଠି ଏକ କ୍ଷୁଦ୍ର ପ୍ରକୋଷ୍ଠରେ ଅଳ୍ପ କିଛି ବହି ଥୁଆ ହୋଇଛି, ଆଉ କେଉଁଠି ବା ଅଧକ୍ଷଙ୍କ ଅଫିସ୍ ପ୍ରକୋଷ୍ଠର ଗୋଟାଏ କୋଣରେ କିଛି ପୁସ୍ତକ ଗୋଟିଏ ଥାକରେ ସଜା ହୋଇ ରହିଛି । ସେହି ବହିଗୁଡ଼ିକ ଭିତରେ ଖଣ୍ଡିଏ ବୋଲି ଓଡ଼ିଆ ବା ଇଂରାଜୀ ଅଭିଧାନ ମିଳିଲା ନାହିଁ । ଆମେ ଏ ବିଷୟରେ ଆପତ୍ତି ଉଠାଇଲୁ । ସଂପୃକ୍ତ କଲେଜ କର୍ତ୍ତୃପକ୍ଷ କହିଲେ – ଆମେ ଯଥାଶୀଘ୍ର ଠିକ୍ ଭାବରେ ଲାଇବ୍ରେରୀଟିଏ ଠିଆ କରାଇ ଦେବୁଁ । ଅଗତ୍ୟା ସେହି କଲେଜଗୁଡ଼ିକୁ ସର୍ତ୍ତମୂଳକ ସହବନ୍ଧନ ଅନୁମତି ଦେବାକୁ ଆମେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ ସୁପାରିଶ୍ କଲୁଁ । ଆମ ରାଜ୍ୟରେ ଲୋକମାନଙ୍କର ପଠନ-ଅଭ୍ୟାସ ଯେ ଊଣା ହୋଇ ଯାଇଛି, ତାହାର ଗୋଟିଏ ମୂଳ କାରଣ ହେଲା କଲେଜଗୁଡ଼ିକରେ ଗ୍ରନ୍ଥାଗାର ଓ ପାଠାଗାର ବା ରିଡ଼ିଂରୁମ୍ ସେବାର ଅଭାବ ତଥା ବିପର୍ଯ୍ୟୟ ।

ପ୍ରାୟ ତେର ବର୍ଷ ହେଲା ମୁଁ ମହିଳା କଲେଜ ଛାଡ଼ି ଆସିଲିଣି । ଇତି ମଧ୍ୟରେ କଲେଜର କିଛି ଉନ୍ନତି ହୋଇଛି ବୋଲି ଭଦ୍ରକର ଜଣେ ବାସିନ୍ଦା ଭାବରେ ଦୂରରେ ଥାଇ ଲକ୍ଷ୍ୟ କରୁଛି । ନୂଆ କୋଠାବାଡ଼ି ହୋଇଛି, ନୂଆ ପାଠ୍ୟ ବିଷୟ ପ୍ରବର୍ତ୍ତିତ ହୋଇଛି, କେତେକ ବିଷୟରେ ଅନର୍ସ ଶ୍ରେଣୀ ଫିଟିଛି, କର୍ମଚାରୀ ଓ ଅଧାପିକାଙ୍କ ସଂଖ୍ୟା ବଢ଼ିଛି, ତତ୍‌ସହିତ ଛାତ୍ରୀ ସଂଖ୍ୟା ମଧ୍ୟ । ଆଉ ଗୋଟିଏ କଥା ଦେଖୁଛି –

କେବଳ ଭଦ୍ରକ ମହିଳା କଲେଜ ନୁହେଁ, ରାଜ୍ୟର ଅନ୍ୟାନ୍ୟ ସରକାରୀ ବା ବେସରକାରୀ ମହିଳା କଲେଜରେ ଅଧ୍ୟାପକଙ୍କ ସଂଖ୍ୟା ବୃଦ୍ଧି ଲାଭ କରିଛି । କେବଳ ଛାତ୍ରୀମାନଙ୍କ ସହ ଛାତ୍ରମାନେ ଏକତ୍ର ପଢ଼ାଶୁଣା କରିବାର ସୁଯୋଗ ପାଉ ନାହାନ୍ତି । ଏକବିଂଶ ଶତାବ୍ଦୀରେ ନାରୀ, ପୁରୁଷର ସମକକ୍ଷ ହେଉଥିଲାବେଳେ କାହିଁକି ଏ ପୃଥକୀକରଣ ? ଇଉରୋପର ଯେଉଁ କେତୋଟି ଦେଶ ମୁଁ ବୁଲି ଦେଖିଛି, ସେଠାରେ ମହିଳାଙ୍କ ପାଇଁ ସ୍ୱତନ୍ତ୍ର କଲେଜ ନାହିଁ । ଏଠାରେ ଆମର ସହଶିକ୍ଷାମୂଳକ କଲେଜ ଗୁଡ଼ିକ ତ ବେଶ୍ ଚାଲିଛି ! ତେଣୁ ତଥାକଥିତ ମହିଳା କଲେଜଗୁଡ଼ିକରେ ଛାତ୍ରମାନେ ପଢ଼ିପାରିଲେ, କ୍ଷତି କ'ଣ ?

# ସୁରେନ୍ଦ୍ର-ସ୍ମୃତି

ସୁରେନ୍ଦ୍ର ତ୍ରୟୀ – ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ, ଶ୍ରୀ ସୁରେନ୍ଦ୍ର ପଟ୍ଟନାୟକ ଓ ଶ୍ରୀ ସୁରେନ୍ଦ୍ର ମହାନ୍ତି ଆମ ପାଖରେ ବେଶ୍ ଜଣାଶୁଣା । ଏହି ତ୍ରୟୀଙ୍କ ସହିତ ପରିଚିତ ହେବା ମୋର ଏକ ସୌଭାଗ୍ୟ । ଭଦ୍ରକ କଲେଜରେ ଅଧ୍ୟାପନା-କାର୍ଯ୍ୟ କରୁଥିଲାବେଳେ ବିଂଶ ଶତାବ୍ଦୀର ଷଷ୍ଠ ଦଶକ ଶେଷ ଭାଗରେ କଲେଜର ସାଂସ୍କୃତିକ ଉତ୍ସବରେ ଉଦ୍‌ବୋଧନ ଦେବା ପାଇଁ ଥରେ ଶ୍ରୀ ଦ୍ୱିବେଦୀଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଶ୍ରୀ ଦ୍ୱିବେଦୀ ମୋରି ଘରେ ଅତିଥି ହୋଇଥିଲେ । ସେହିଦିନରୁ ତାଙ୍କ ସହିତ ପରିଚୟ । ପରେ ଗୋଟିଏ ଦୁଇଟି ସାଂସ୍କୃତିକ ସଭାରେ ମଧ୍ୟ ଏକାଠି ଦୁହିଁଙ୍କି ଭାଷଣ ଦେବାର ସୁଯୋଗ ମିଳିଛି । ସେହିପରି ସପ୍ତମ ଦଶକ ଶେଷ ଭାଗରେ ରାଜ୍ୟରେ ସ୍ୱତନ୍ତ୍ର-ଜନକଂଗ୍ରେସ ମନ୍ତ୍ରୀମଣ୍ଡଳ କାର୍ଯ୍ୟ କରୁଥିଲା ବେଳେ ସାହିତ୍ୟିକ-ରାଜନୀତିଜ୍ଞ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ଜରିଆରେ ଶ୍ରୀ ପଟ୍ଟନାୟକଙ୍କ ସହ ମୋର ପରିଚୟ । ଯାତ୍ରାଭିନୟ ଓ ଯାତ୍ରାଦଳର ସଂଗଠନ ସଂପର୍କରେ ତାଙ୍କ ସହିତ ଥରେ ଦୁଇଥର ଅନ୍ତରଂଗ ଆଳାପ ହୋଇଥିଲା । କିନ୍ତୁ ଶ୍ରୀ ମହାନ୍ତିଙ୍କ ସହ ମୋର ପରିଚୟ ଟିକିଏ ଭିନ୍ନ ଧରଣର – ସଂପର୍କରେ ଯେପରି ଘନିଷ୍ଠ ଓ ଅନ୍ତରଂଗ, ସାହିତ୍ୟ-କର୍ମରେ ସେହିପରି ମଧୁର ଓ ବୈଚିତ୍ର୍ୟମୟ । ଶ୍ରୀ ଦ୍ୱିବେଦୀ ଓ ଶ୍ରୀ ପଟ୍ଟନାୟକଙ୍କ ଅପେକ୍ଷା ଶ୍ରୀ ମହାନ୍ତିଙ୍କର ମୁଁ ନିକଟତର ଥିବାର ବୋଲାଯାଇପାରେ ।

ସୁରେନ୍ଦ୍ରଙ୍କ ସହ ମୋର ଏକପ୍ରକାର ଆତ୍ମୀୟତା ଗଢ଼ି ଉଠିଥିଲା । 'ଡଗର' ସଂପାଦକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କର ସେ, ଆଡ଼ଭୋକେଟ୍ ମଧୁ ମହାନ୍ତିଙ୍କ ସୂତ୍ର ଘେନି, ସଂପର୍କୀୟ ଥିଲେ । ବାରମ୍ବାର 'ଡଗର' ଅଫିସ୍‌ରେ ଏବଂ ବେଳେବେଳେ ମଧୁବାବୁଙ୍କର ତତ୍‌କାଳୀନ ନିମଚଉଡ଼ିସ୍ଥିତ ବାସଭବନରେ ଆମର ସାକ୍ଷାତ୍ ହେଉଥିଲା ।

ସେହି ସାକ୍ଷାତ୍ କେବଳ ଦେଖାଚାହାଁ, ବନ୍ଧୁସଙ୍ଖୋଳା ନ ଥିଲା, ସାହିତ୍ୟ-ସଂସ୍କୃତିର ନାନା ଦିଗ ଉପରେ ଆଲୋଚନାରେ ଥିଲା ସମୃଦ୍ଧ । ବିଶେଷକରି ତାଙ୍କ ଗଳ୍ପରେ ଜୈନ ଓ ବୌଦ୍ଧଯୁଗୀୟ କଥାବସ୍ତୁର ବିନ୍ୟାସ, ଆତ୍ମିକ ଓ ଆଙ୍ଗିକ ମଧ୍ୟରେ ସଂପର୍କ, ସାହିତ୍ୟରେ ଶ୍ଳୀଳ ।-ଅଶ୍ଳୀଳତାର ବିଭେଦ-ରେଖା ଆଦି ବିଷୟରେ କଥାବାର୍ତ୍ତା ହୋଇଥିବାର ମୋର ମନେ ପଡୁଛି । କଥାବାର୍ତ୍ତା ଜମୁଥିଲା ମୋ ସ୍ତ୍ରୀଙ୍କ ଦ୍ୱାରା ପ୍ରସ୍ତୁତ ଗରମାଗରମ ପିଆଜୀ-ପକୁଡ଼ିର ଥାଳି ଓ ଚା-କପ୍ ଉପରେ । ନିତ୍ୟାନନ୍ଦ ବାବୁ ମଧ୍ୟ ଅନେକ ସମୟରେ ଆମ କଥାବାର୍ତ୍ତାରେ ଅଂଶଗ୍ରହଣ କରୁଥିଲେ । 'ଡଗର' ଛାଡ଼ି ମୁଁ ଭଦ୍ରକ କଲେଜରେ ଯୋଗ ଦେଲା ପରେ ସୁରେନ୍ଦ୍ରଙ୍କ ସହ ମୋର ସାକ୍ଷାତ୍ ଆଳାପ-ଆଲୋଚନା ଊଣା ହୋଇଗଲା । କିନ୍ତୁ ଆମର ପତ୍ରାଳାପ ରୀତିମତ ଚାଲିଥିଲା । ବ୍ୟକ୍ତିଗତ ବ୍ୟାପାର ସହିତ ସାହିତ୍ୟିକ ସମସ୍ୟା ଓ ଘଟଣାବଳୀ ସଂପର୍କରେ ଆମ ମଧ୍ୟରେ ବହୁ ପତ୍ର ଆଦାନ-ପ୍ରଦାନ ହୋଇଛି । ତହିଁରୁ ସାହିତ୍ୟିକ ତାତ୍ପର୍ଯ୍ୟ ଥିବା ତାଙ୍କର କେତେକ ପତ୍ର ଏଠାରେ ଉଦ୍ଧାର କରୁଛି ।

ସେତେବେଳେ ସୁରେନ୍ଦ୍ର ବାବୁଙ୍କର କେତେକ ଗଳ୍ପ କଲେଜର ଓଡ଼ିଆ ସାହିତ୍ୟର ପାଠ୍ୟକ୍ରମରେ ସ୍ଥାନିତ ହୋଇଥାଏ । ସେହି ଗଳ୍ପଗୁଡ଼ିକର ଅଧ୍ୟାପନା କାଳରେ ତାଙ୍କର ଗଳ୍ପ-ରଚନାର ଇତିବୃତ୍ତ ଜାଣିବା ମୋ ପକ୍ଷରେ ଅତ୍ୟାବଶ୍ୟକ ହୋଇ ଉଠିଲା । ଏ ବିଷୟରେ ମୁଁ ତାଙ୍କୁ ଚିଠି ଲେଖି ଜଣାଇବାରୁ ଉତ୍ତରରେ ସେ ଏହି ଦୀର୍ଘ ପତ୍ରଟି ଲେଖିଥିଲେ –

Member of the Lok Sabha



କଟକ-୧
୨୯-୬-୬୦

ପ୍ରୀତିଭାଜନେଷୁ,

ଆପଣଙ୍କର ୧୦ ତାରିଖର ପତ୍ର ବହୁ ପୂର୍ବରୁ ପାଇଥିଲେ ହେଁ, ମାନସିକ ପ୍ରସ୍ତୁତି ଅଭାବରୁ ଉତ୍ତର ଦେବାରେ ଯଥେଷ୍ଟ ବିଳମ୍ବ ହୋଇଅଛି ।

ମୋର ଗଳ୍ପ ଲେଖାର ଇତିବୃତ୍ତ ମୋତେ କେବେ ଲେଖିବା ପାଇଁ ପଡ଼ିବ ବୋଲି ମୁଁ ଭାବି ନ ଥିଲି । ତାହାର ଉପାଦାନ ସଂଗ୍ରହ କରିବା ପାଇଁ, ଅବଲୁପ୍ତ ସ୍ମୃତି ଓ ବିସ୍ମୃତି ସମୁଦ୍ର ଭିତରେ ଲମ୍ଫଦେବା, ଯେ କୌଣସି ମୁକ୍ତା-ସଂଗ୍ରହକାରୀର ଉତ୍ତେଜନାକୁ ବଳି ପଡୁଅଛି ।

ମୋର ପ୍ରଥମ ଗଳ୍ପ 'ବନ୍ଦୀ' ପ୍ରକାଶିତ ହୁଏ 'ଉତ୍କଳ ସାହିତ୍ୟ'ରେ – ସମ୍ଭବତଃ ୧୯୩୭/୧୯୩୮ ସାଲରେ । ଏ ଗଳ୍ପଟି ଏବେ ମୋ ଫାଇଲ୍‌ରେ ନାହିଁ କିମ୍ବା ଏହାର

କଥାବସ୍ତୁ ମୋର ସ୍ମରଣ ନାହିଁ । 'ଉତ୍କଳ ସାହିତ୍ୟ'ରେ ତାହା ମିଳିବ । ଗ୍ରାମ୍ୟ ସମାଜରେ, ସବଳର ପୀଡ଼ନରେ ଏକ ନିର୍ଯ୍ୟାତିତ ନିଃସ୍ୱ, ସବୁ ଅବିଚାର ଓ ଅତ୍ୟାଚାରର ପ୍ରତିଶୋଧ ନେବାପାଇଁ ସମ୍ଭବତଃ ଉତ୍ପୀଡ଼କକୁ ହତ୍ୟା କରିଥିଲା । ବିଚାରରେ ଦୋଷୀ ସାବ୍ୟସ୍ତ ହୋଇ, ତାକୁ ଦଣ୍ଡିତ ଜୀବନର ବିଡ଼ମ୍ବିତ ଓ କାରାରୁଦ୍ଧ ମୁହୂର୍ତ୍ତଗୁଡ଼ିକୁ ଅତିପାତ କରିବା ପାଇଁ ପଡ଼ିଥିଲା ସ୍ମୃତିର ରୋମନ୍ଥନ କରି ।

ସେତେବେଳକୁ ମୁଁ ୯ମ ବା ୧୦ ଶ୍ରେଣୀର ଛାତ୍ର, ସାଲେପୁର ହାଇସ୍କୁଲରେ । ମୋର ତତ୍‌କାଳୀନ ଶିକ୍ଷକ ଶ୍ରୀ ମନମୋହନ ପଟ୍ଟନାୟକଙ୍କ ପ୍ରେରଣାରେ ଏ ଗଳ୍ପଟି ଲେଖିଥିଲି । ଗଳ୍ପଟି ଲେଖି ସାରିଲା ପରେ କେବେ ତାଙ୍କୁ ଦେଇଥିଲି, ତାହା ମୋର ଆଉ ସ୍ମରଣ ନ ଥିଲା ।

ଗୋଟିଏ ସୋମବାର ସକାଳ । ହଷ୍ଟେଲ୍ ସୁପରିଣ୍ଟେଣ୍ଡେଣ୍ଟ୍ ମନମୋହନ ବାବୁ, ପ୍ରତି ଶନିବାର କଟକ ଯାନ୍ତି, ପୁଣି ସୋମବାର ଦିନ ଫେରି ଆସନ୍ତି । ସେ ନଥିବାରୁ ଆରାମରେ ଓ ନିଶ୍ଚିନ୍ତରେ ମୁଁ ଛାତ୍ରାବାସର ଗୋଟିଏ କୋଠରୀରେ (ଅନ୍ୟୂନ ଦଶ ଜଣ ଅନ୍ତେବାସୀଙ୍କ ଦ୍ୱାରା ଅଧୁଷିତ), ସକାଳ ଆଠଟା ବେଳେ ସୁଦ୍ଧା ନିଘୋଡ଼ ନିଦରେ ଶୋଇଥିଲି । ହଠାତ୍ କାହାର ସପାସପ୍ ବେତମାଡ଼ରେ ନିଦ ଭାଜିଗଲା । ଆଖି ମଳି ଦେଖେ, ସ୍ୱୟଂ ମନମୋହନ ବାବୁ ଖଣ୍ଡେ ଲମ୍ବା ବେତ ହାତରେ ଧରି, ସାକ୍ଷାତ କାଳିଶୀ ପରି ଠିଆ ହୋଇଛନ୍ତି । ମନମୋହନ ବାବୁ ସବୁ ସୋମବାର ଆଉରି ବିଳମ୍ବରେ କଟକରୁ ଫେରନ୍ତି – ମାତ୍ର ଏ ସୋମବାର, କିପରି ସକାଳ ବସ୍‌ରେ ଏତେ ଶୀଘ୍ର ଫେରିଲେ, ତାହା ଅତ୍ୟନ୍ତ ଦୟନୀୟ ପରିସ୍ଥିତି ମଧ୍ୟରେ ଭାବୁ ଭାବୁ, ମନମୋହନ ବାବୁ, ମୋ ଉପରକୁ ଖଣ୍ଡେ 'ଉତ୍କଳ ସାହିତ୍ୟ' ଫିଙ୍ଗିଦେଇ କହିଲେ, ''ତୋର ଗଳ୍ପ 'ଉତ୍କଳ ସାହିତ୍ୟ'ରେ ବାହାରିଛି, ତୁ ଏଠି ଶୋଇଛୁ । ଉଠ୍ ।'' ତାପରେ ଆଉ ଏକ ପ୍ରହାର । ମୋ ପ୍ରତି ମନମୋହନ ବାବୁଙ୍କ ଶ୍ରଦ୍ଧା ଓ ଶୁଭେଚ୍ଛା, ଏହି ଉନ୍ମତ୍ତ ବେତ୍ରର ପ୍ରମତ୍ତ ମାଧ୍ୟମରେ, ଅଧିକାଂଶ ସମୟରେ ପ୍ରକାଶ ପାଉଥିଲା । ମୁଁ ଗୋଟିଏ ହାତରେ ଦେହର ଆହତ ଅଂଶଟିକୁ ଆଉଁସି, ଅନ୍ୟ ହାତରେ 'ଉତ୍କଳ ସାହିତ୍ୟ'ର ପୃଷ୍ଠା ମେଲି, ମୋର ପ୍ରକାଶିତ ଗଳ୍ପଟିର ସନ୍ଧାନ କରୁଥିଲି । ଗଳ୍ପର ଶିରୋନାମା ତଳେ, ମୋର ମୁଦ୍ରିତ ନାମ ଦେଖିଲା ପରେ, ବାହାରର ସକାଳ କିପରି ଯେ ହଠାତ୍ ଅସ୍ୱାଭାବିକ ଭାବରେ ଉଜ୍ଜ୍ୱଳ ହେଇ ଉଠିଲା, ଆକାଶ ସୁନୀଳ ହୋଇ ଉଠିଲା, ପୁଣି ସହାଧ୍ୟାୟୀମାନଙ୍କର ତୁଚ୍ଛ ପରିହାସ, ପଦ୍ମପତ୍ରରୁ ବିନ୍ଦୁ ବିନ୍ଦୁ ଜଳ ତଳକୁ ଖସି ପଡ଼ିଲା ପରି, ମୋତେ ସ୍ପର୍ଶ ନ କରି ନୀରବ ହୋଇଗଲା; ତାହା ମୋର ଆଜି ସ୍ପଷ୍ଟ ମନେ ପଡୁଅଛି ।

ତା'ପରେ ଆଉ କୌଣସି ଗଳ୍ପ ଲେଖି ନାହିଁ ।

ପ୍ରଥମେ ଗୀତାଭିନୟ ଓ ପରେ ନାଟକ ଲେଖିବା ପ୍ରତି ମୁଁ ଅଧିକ ସନ୍ତୁଷ୍ଟ ହୋଇ ପଡ଼ିଥିଲି । ଏହି ଆଦ୍ୟ ନାଟକଗୁଡ଼ିକ ମଧ୍ୟରୁ 'ପୃଥିବୀର ଆଲୋକ' ନାଟକ (ମୟୂରଭଞ୍ଜ ଜନ୍ମୋତ୍ସବ ସମିତି ଦ୍ୱାରା ୧୯୪୫ ସାଲରେ ଶ୍ରେଷ୍ଠ ନାଟକ ରୂପେ ପୁରସ୍କୃତ) ବ୍ୟତୀତ ଅନ୍ୟ କୌଣସି ନାଟକ ଏବେ ମୋ ନିକଟରେ ନାହିଁ । ସେ ଯାହାହେଉ, ମୋର କ୍ଷୁଦ୍ରଗଳ୍ପ ଗୁଡ଼ିକରେ ଯେଉଁ ସଂଳାପପ୍ରଧାନ ନାଟକୀୟତା ପରିଲକ୍ଷିତ ହୁଏ, ଏହାହିଁ ତାହାର ପୃଷ୍ଠଭୂମି ।

କ୍ଷୁଦ୍ରଗଳ୍ପ ଲେଖିବା ମୋର କଳ୍ପନାରେ ନ ଥିଲା, କିମ୍ବା ଏଥିପାଇଁ ପ୍ରସ୍ତୁତି ମଧ ନ ଥିଲା । 'ଉତ୍କଳ ସାହିତ୍ୟ'ରେ ମୋର ପ୍ରଥମ ଗଳ୍ପ ପ୍ରକାଶିତ ହେବାର ଉତ୍ତେଜନା ବହୁପୂର୍ବରୁ ପ୍ରଶମିତ ହୋଇ ସାରିଥିଲା । ରେଭେନ୍‌ସା କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀରେ (୧୯୩୯ ରେ) ଛାତ୍ର ଥିଲାବେଳେ, ମୋଟେ ଦୁଇଜଣ ଥିଲେ ସହଧାୟିନୀ ଛାତ୍ରୀ । ତେଣୁ କଲେଜ ପିରିୟଡ୍‌ରେ, ଏମାନଙ୍କ ସାମୀପ୍ୟ ଲାଭ କରିବା ଆଶାରେ, ଯେଉଁ କେତେକ ଛାତ୍ର ସକାଳ ସାଢ଼େ ନ'ଟା ବେଳୁ, କଲେଜ କ୍ଲାସ୍‌ରେ, ପ୍ରଥମ ଧାଡ଼ି ବେଞ୍ଚମାନ ଅଧିକାର କରି ବସୁଥିଲେ, ସେମାନଙ୍କ ମଧ୍ୟରେ ମୁଁ ମଧ ଜଣେ ଥିଲି ବୋଲି ସ୍ୱୀକାର କରିବା ପାଇଁ, ମୁଁ ଆଜି କୁଣ୍ଠିତ ନୁହେଁ । ଦିନେ ଏହିପରି ଅବସ୍ଥାରେ, ମୋର ଯାହାଙ୍କ ସହିତ ପରିଚୟ ହୋଇଥିଲା – ସେ ଅତି ଅଳ୍ପ କବିତା ପ୍ରକାଶ କରିଥିଲେ ସୁଦ୍ଧା, ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ନିଜପାଇଁ ଏକ ସମ୍ମାନିତ ସ୍ଥାନ ଅଧିକାର କରିପାରିଛନ୍ତି । ସେ ବୟସରେ ଶେଲୀ, ବାୟରନ୍, ରବୀନ୍ଦ୍ରନାଥ, ନଜରୁଲ୍ ଓ ମାନସିଂହଙ୍କ ଧୂପ ଆମ୍ଭମାନଙ୍କ ଚିତ୍ତଲୋକରେ ବେଦନାର ଯେଉଁ ମେଘ ଆଙ୍କିଥିଲା, ସହାଧାୟିନୀମାନଙ୍କର ସାମୀପ୍ୟ ସେଥିରେ ଆଙ୍କି ଯାଉଥିଲା ସ୍ୱପ୍ନର ଇନ୍ଦ୍ରଧନୁ । ଏହାଛଡ଼ା ବନ୍ଧୁଙ୍କ ସହିତ ମୋର ଅନ୍ୟ ଏକ ଆବେଗଗତ ସଂପର୍କ ଥିଲା – ତାହା ହେଉଛି ଧୂମପାନ । ଆମ୍ଭେମାନେ ପ୍ରତ୍ୟେକେ ନିମ୍ନ ମାଧ୍ୟମିକ ଶ୍ରେଣୀରୁ ଧୂମପାନ ଆରମ୍ଭ କରିଥିଲୁ । ତେଣୁ ଏ ବ୍ୟାପାରରେ, ଅଳ୍ପ ସମୟରେ ଆଦାନ ଓ ବହୁ ସମୟରେ ପ୍ରଦାନ ସଂପର୍କିତ ସଂପର୍କରେ ଆମ୍ଭମାନଙ୍କ ବନ୍ଧୁତ୍ୱ ନିବିଡ଼ ହୋଇଥିଲା ।

ମୁଁ ସେତେବେଳକୁ ଜଣେ ଅଖ୍ୟାତନାମା ଛାତ୍ର – ସେ କିନ୍ତୁ 'ସହକାର'ର ପୃଷ୍ଠାରେ ଜଣେ ଲବ୍ଧପ୍ରତିଷ୍ଠ କବି । ତାଙ୍କ କବିତାରେ ଏକ ଅବ୍ୟକ୍ତ ବେଦନା ଯେପରି ରସୋତ୍ତୀର୍ଣ୍ଣ ଶୈଳୀ ଓ ଆଙ୍ଗିକ ଘେନି ପ୍ରକାଶ ପାଉଥିଲା, ତାହା ବହୁ ପାଠକଙ୍କ ରସାନୁଭୂତିର ସୂକ୍ଷ୍ମାତିସୂକ୍ଷ୍ମ ତନ୍ତ୍ରୀକୁ ଆବେଦନ କରିପାରୁଥିଲା । ପ୍ରଥମ ମହାଯୁଦ୍ଧୋତ୍ତର କାଳୀନ 'ଯୁଦ୍ଧକବି' ମାନଙ୍କର କବିତା, ତାଙ୍କର କାବ୍ୟ ସୃଷ୍ଟିକୁ ଏପରି ପ୍ରଭାବିତ କରିଥିଲା ଯେ, ଦିନେ ସେ କଲମ ଛାଡ଼ି ହଠାତ୍ ବନ୍ଧୁକ ଧରି ବସିଲେ । ଯଥାର୍ଥରେ ଆଧୁନିକ ଓଡ଼ିଆ କବିତାକୁ ସେ

ଯେତିକି ସମୃଦ୍ଧ କରିଛନ୍ତି, ସେତିକି ଦୈନ୍ୟଗ୍ରସ୍ତ ମଧ୍ୟ କରିଅଛନ୍ତି । ତାଙ୍କର ପ୍ରତିଶ୍ରୁତି କେବଳ ଏକ ପ୍ରତିଶ୍ରୁତିରେ ହିଁ ରହିଗଲା ।

ଯାହା ହେଉ, ତାଙ୍କର ସାହିତ୍ୟିକ ପ୍ରତିଷ୍ଠା ଆଲୋଚିତ ପରିସ୍ଥିତିରେ ମୋର ଈର୍ଷାର କାରଣ ହୋଇଥିଲା କି ନାହିଁ – ଫ୍ରୟେଡ୍‌ପନ୍ଥୀ ମନ-ସମୀକ୍ଷକମାନେ ତାହା ବିଶ୍ଳେଷଣ କରିପାରନ୍ତି । ମାତ୍ର ତାଙ୍କୁ ପରିହାସ କରିବା ଉଦ୍ଦେଶ୍ୟରେ, ପୁଣି ୧୯୩୯ଠାରୁ ମୁଁ ଆରମ୍ଭ କରେ ଗଳ୍ପ ଲେଖା । ସେ ବେଳର ପ୍ରଥମ ଗଳ୍ପ 'ମେଘନାଦ ବଧ'...... ଗଳ୍ପର ଚରିତ୍ର କବି ମେଘନାଦଙ୍କ ଚିତ୍ରଣରେ ମୋର ବନ୍ଧୁଙ୍କ ପ୍ରତି ପରିହାସ ପ୍ରଚ୍ଛନ୍ନ ହୋଇ ରହିଥିଲା । ବନ୍ଧୁ, ଏ ଗଳ୍ପଟି ଶୁଣି ଶତ ମୁଖରେ ଏହାର ପ୍ରଶଂସା କରିବା ପରେ, ଗଳ୍ପ ଲେଖିବା ମୋର ଏକ ଦୈନନ୍ଦିନ ପ୍ରିୟକର୍ମରେ ପରିଣତ ହୋଇଯାଇଥିଲା । ସେତେବେଳେ (୧୯୩୯-୧୯୪୧) ମୁଁ ପ୍ରାୟ ଏକଶହ କ୍ଷୁଦ୍ରଗଳ୍ପ ଲେଖିଥିଲି ।

ଏଥିମଧ୍ୟରୁ 'ମଣିଷ ଓ ଅର୍ଥନୀତି' ଗଳ୍ପଟି ଛଡ଼ା ଅନ୍ୟ କୌଣସି ଗଳ୍ପ ଦିବାଲୋକ ଦେଖିବାର ସୌଭାଗ୍ୟ ପାଇ ନାହିଁ । ୧୯୪୦ ସାଲର ପୂଜା ସଂଖ୍ୟା 'ଆରତି'ରେ, ପ୍ରକାଶ ପାଇଁ ଏହି ଗଳ୍ପଟିକୁ, କବିବନ୍ଧୁ ଶ୍ରୀ ବିନୋଦଚନ୍ଦ୍ର ନାୟକ ନିର୍ବାଚିତ କରି ପଠାଇ ଥିଲେ । ଏହି ଗଳ୍ପଟି ପ୍ରକାଶିତ ହେବା ପରେ ବହୁ ପ୍ରତିଷ୍ଠିତ ଲେଖକଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା । ମାତ୍ର ଏହାର ଅବ୍ୟବହିତ ପରେ ଯେଉଁ ପରିସ୍ଥିତି ଓ ପରିବେଶ ମୋତେ ଗଳ୍ପଲେଖା ଦିଗରେ ଅନୁପ୍ରେରିତ କରିଥିଲା, ତାହା ଘଟଣାଚକ୍ରରେ ମୋଠାରୁ ବିଚ୍ଛିନ୍ନ ହୋଇ ପଡ଼ିଲା ।

ମୁଁ ପ୍ରାୟ ପ୍ରତିଦିନ ଗଳ୍ପ ଲେଖୁଥିଲି । କୌଣସି ପତ୍ରିକାରେ ପ୍ରକାଶ ପାଇଁ ସେ ଗଳ୍ପ ସବୁ ଉଦ୍ଦିଷ୍ଟ ନ ଥିଲା । ପୂର୍ବୋକ୍ତ ବନ୍ଧୁଙ୍କ ସହିତ, ପ୍ରତି ସନ୍ଧ୍ୟାରେ କୌଣସି ଚା' ଦୋକାନରେ କିମ୍ବା ସେଥିପାଇଁ ଅନୁକୂଳ ଆର୍ଥିକ ପରିସ୍ଥିତି ନ ଥିଲେ, କାଠଯୋଡ଼ୀ କୂଳର ସିମେଣ୍ଟ ବେଞ୍ଚରେ ଯେଉଁ ସାହିତ୍ୟିକ ଆସର ଜମୁଥିଲା, ସେଠାରେ ପଠିତ ହେବା, ଏ ଗଳ୍ପଗୁଡ଼ିକର ଏକମାତ୍ର ଉଦ୍ଦେଶ୍ୟ ଥିଲା । ଆଇ.ଏ. ପରୀକ୍ଷାରେ, ମାଟ୍ରିକ୍ୟୁଲେସନ୍ ପରୀକ୍ଷାର ଉଜ୍ଜ୍ୱଳ କୃତିସଂପନ୍ନ ଛାତ୍ର – ମୋର ବନ୍ଧୁ – ବୋଧହୁଏ ଉତ୍ତୀର୍ଣ୍ଣ ହୋଇପାରିଲେ ନାହିଁ । ପୁଣି ଏକ ପ୍ରେମଜନିତ ବ୍ୟାପାରରେ ତାଙ୍କର ଅଭିଭାବକବର୍ଗ ବିଚଳିତ ହୋଇ, ତାଙ୍କୁ ପାଟନା କଲେଜକୁ ନିର୍ବାସିତ କରିଦେଲେ । ସେହିଦିନୁ ତାଙ୍କ ସହିତ ମୋର ସମସ୍ତ ସଂପର୍କ ଛିନ୍ନ ହୋଇଯିବା ଫଳରେ, ଜଣେ ବିଦଗ୍ଧ ଶ୍ରୋତା ଅଭାବରୁ, ମୋର ଗଳ୍ପ ଲେଖା ବନ୍ଦ ହୋଇଗଲା ।

ଏହାପରେ ରାଜନୀତି (?) ବା ହୁଲୁଗୁର ଅଧ୍ୟାୟ ମୋ ଜୀବନରେ ଆରମ୍ଭ ହୋଇଗଲା । ବିଶୃଙ୍ଖଳ ଜୀବନ, ନାନା ପ୍ରକାର ଉତ୍ତମର୍ଣ୍ଣମାନଙ୍କର ତାଡ଼ନା, ପିତୃଦେବଙ୍କର

ତିରସ୍କାର ଓ ସୌଖୀନ 'ଛତରାମି' ଫଳରେ ପ୍ରତିମାସରେ କଲେଜରୁ ନାମ କଟିବା, ଅବଶେଷରେ ୧୯୪୨ ସାଲ ସେପ୍ଟେମ୍ବର ମାସରେ ରେଭେନ୍ସା କଲେଜରୁ ବିଦାୟ ଓ ପରିବାରରେ ଲାଞ୍ଛନାର ସମ୍ମୁଖୀନ ହେବା ଅପେକ୍ଷା, ଗୋଟିଏ ସିଲକ୍-କମ୍ପାନୀର ଭ୍ରାମ୍ୟମାଣ ଏଜେଣ୍ଟର ବିଚିତ୍ର ଜୀବନ ମଧ୍ୟରେ ଲେଖକ ହେବାର ମୋର ସମସ୍ତ ଅଭିଳାଷ ଲୁପ୍ତ ହୋଇ ପଡ଼ିଥିଲା ।

ଆଜି ଅବଶ୍ୟ ହିସାବୀ ମନର ଭୀରୁତା ଓ ଆତ୍ମରକ୍ଷାର କାର୍ପଣ୍ୟ ମଧ୍ୟରେ ମୋର ଜୀବନ-ପ୍ରଜାପତି ଭଗ୍ନପକ୍ଷ । କିନ୍ତୁ ଅତୀତର ସେହି ଲକ୍ଷ୍ମୀଛଡ଼ା ବର୍ଷଗୁଡ଼ିକ, ଜୀବନ ସହିତ ମୋର ଯେଉଁ ନିବିଡ଼ ପରିଚିତି ଦେଇଥିଲା, ପ୍ରତିଷ୍ଠିତ ଧାରଣା ଓ ଶକ୍ତି ବିରୁଦ୍ଧରେ ବିଦ୍ରୋହ କରିବାର ଯେଉଁ ଶକ୍ତି ଦେଇଥିଲା, ପୁଣି ଜୈବିକ ପୃଥିବୀର ବହୁ ଉତ୍ସବ, ସମାରୋହଠାରୁ ଦୂରରେ ରହି ଯେଉଁ ନାନା ମର୍ମାନ୍ତିକ ଉପଲବ୍ଧି ମୋର ଚେତନାକୁ ତୀକ୍ଷ୍ଣ କରିଥିଲା; ତାହା ଯଥାର୍ଥରେ ମୋର ସାହିତ୍ୟର, ବିଶେଷତଃ ଗଳ୍ପ ସାହିତ୍ୟର ଭିତ୍ତିଭୂମି । ସେଥିପାଇଁ ମୋର କ୍ଷୁଦ୍ରଗଳ୍ପଗୁଡ଼ିକ ଅତି ଏକାନ୍ତ ଭାବରେ ନିଜର ସ୍ୱକୀୟତାରେ ସ୍ୱତନ୍ତ୍ର । ମୋର ଗଳ୍ପର ଘୋର ସମାଲୋଚକମାନେ ସୁଦ୍ଧା, ତାହା ଅସ୍ୱୀକାର କରିବେ ନାହିଁ ।

x x x x x

୧୯୪୫ ସାଲ.......

ଅଧୁନାଲୁପ୍ତ 'ଜନତା' ପତ୍ରିକା ସହିତ ସେତେବେଳେ ମୁଁ ସଂପୃକ୍ତ ଥିଲି । କଟକର ଯେଉଁ କୋଠାରେ ଓଡ଼ିଶା ଜର୍ଣ୍ଣାଲସ୍ ପ୍ରେସ୍ ଥିଲା, ତାହାର ଉପର ମହଲାରେ ଗୋଟିଏ ବିଚିତ୍ର ପ୍ରକୋଷ୍ଠ ଥିଲା । ଏପରି ପ୍ରକୋଷ୍ଠ ମୁଁ ଅନ୍ୟ କୌଣସିଠାରେ ଦେଖି ନାହିଁ, କିମ୍ବା ଦେଖିବାର ଆଶା ପୋଷଣ କରୁ ନାହିଁ । ପ୍ରକୋଷ୍ଠଟି ଗୋଟିଏ ଲମ୍ବା ହଲ୍.... ଅଣ୍ଟାଏ ତଳକୁ ଓହ୍ଲାଇଲେ ଚଟାଣ । ଏହାର ଗୃହସ୍ୱାମୀ ଜଣେ ଉତ୍ତର ଭାରତୀୟ ଛୋଟିଆ ଜମିଦାର । ପୂର୍ବେ, ଏହା ମଧ୍ୟରେ ଖରାଦିନେ ପାଣି ଭର୍ତ୍ତି ହୋଇ ରହୁଥିଲା । ଗୃହସ୍ୱାମୀ ତାରି ମଧ୍ୟରେ ଖଣ୍ଡେ ଖଟ ପକାଇ ବସି, ଉପରେ ଟଣା ପଙ୍ଖା ଲଗାଇ, ଦରବାର କରୁଥିଲେ । ଖଟ ବୋଲି ଯେଉଁ ଚଉଡ଼ା ତକ୍ତପୋଷମାନ ପଡ଼ିଥିଲା, ମୁଁ ପରେ ସେ ସବୁକୁ ଏକାଠି ଜୋଡ଼ି ସେଠାରେ ଗୋଟିଏ ରଂଗମଞ୍ଚ ନିର୍ମାଣ କରିଥିଲି । 'ୟୁନିଭର୍ସାଲ୍ କ୍ଲବ୍' ପକ୍ଷରୁ ଏହି ମଞ୍ଚରେ ମୋ ଦ୍ୱାରା ଲିଖିତ ଗୋଟିଏ, ଦୁଇଟି ଏକାଙ୍କିକା ସେଠାରେ ମଧ୍ୟ ଅଭିନୀତ ହୋଇଥିଲା ।

ମୋ ଜୀବନରେ ସବୁ ଆକସ୍ମିକ......

ହଠାତ୍ ଦିନେ ଆକସ୍ମିକ ଭାବରେ ପୁଣି ଗଳ୍ପ ଲେଖା ଆରମ୍ଭ ହୋଇଗଲା । 'ଭାରତ ଆବିଷ୍କାର' ଓ 'ଅଷ୍ଟ୍ରେଲିଆ' ପ୍ରଭୃତି ('ମହାନଗରୀର ରାତ୍ରି'ରେ ପ୍ରକାଶିତ) ସେହି ଆଦିମ ଗହ୍ବର ମଧ୍ୟରେ ଲିଖିତ ହୋଇଥିଲା । ଏ ଗଳ୍ପଗୁଡ଼ିକ, ମୋର ତତ୍କାଳୀନ ଜୀବନ ପରି ଛନ୍ଦହୀନ ଓ ବିଶୃଙ୍ଖଳ ଥିଲା । ଜେମସ୍ ଜୟସ୍‌ଙ୍କର 'Stream of Consciousness' ବା ଚେତନା ପ୍ରବାହର ଅସଂଲଗ୍ନତା, ଏହି ଗଳ୍ପଗୁଡ଼ିକର ଶୈଳୀ ଓ ଆଙ୍ଗିକକୁ ଓତପ୍ରୋତ ଭାବରେ ପ୍ରଭାବିତ କରିଥିଲା । ଏ ଗଳ୍ପଗୁଡ଼ିକ ଲେଖିବାରେ ମୋର କୌଣସି ପ୍ରୟାସ ନ ଥିଲା, ଏକା ନିଃଶ୍ୱାସରେ ଏ ଗଳ୍ପଗୁଡ଼ିକର ଲେଖା ଆରମ୍ଭ ହୋଇ ଶେଷ ହେଉଥିଲା । ଚେତନାର ନେପଥ୍ୟରେ ଯେଉଁ ଅବଚେତନା ଲୁକ୍‌କାୟିତ ହୋଇ ରହିଅଛି, ଏହି ଗଳ୍ପଗୁଡ଼ିକରେ ସମ୍ଭବତଃ ତାହାହିଁ ପ୍ରକାଶର ପଥ ଖୋଜି ପାଇଥିଲା । ଅବଚେତନର ସାନ୍ଧ୍ୟଭାଷା ଓ ରୀତିରେ ଲିଖିତ ଏ ଗଳ୍ପଗୁଡ଼ିକ ପ୍ରାୟ ଅବୋଧ ନ ହେଲେ ହେଁ ଦୁର୍ବୋଧ । 'ମହାନଗରୀର ରାତ୍ରି' ରେ ପ୍ରକାଶିତ 'ଅଷ୍ଟ୍ରେଲିଆ' ଗଳ୍ପଟି ମୁଁ ଏବେ ନିଜେ ସୁଦ୍ଧା ଠିକ୍ ବୁଝିପାରେ ନାହିଁ । 'କୃଷ୍ଣଚୂଡ଼ା' ଅନେକଙ୍କୁ ମୁଗ୍ଧ କରିଛି, ମାତ୍ର ଏହାର ସାଙ୍କେତିକ ଅର୍ଥ ବା ବୁଝିଛନ୍ତି କେତେଜଣ ?

ଏହି ସମୟରେ 'ସହକାର' ଓଡ଼ିଶାର ଏକମାତ୍ର ପ୍ରତିଷ୍ଠିତ ଓ ସମ୍ମାନିତ ସାହିତ୍ୟ-ପତ୍ରିକା । ଏହାର ପୃଷ୍ଠାରେ ଏହି ସମୟର ଆଦ୍ୟ ଗଳ୍ପଗୁଡ଼ିକ ପ୍ରକାଶ ପାଇଁ ମୁଁ ଚେଷ୍ଟା କରି ବିଫଳ ହେବା ପରେ, ଗଳ୍ପ ଲେଖା ପୁଣି ଛାଡ଼ି ଦେଇଥିଲି ।

ମାତ୍ର ଜୀବନ-ଦେବତାଙ୍କ ଏକ ବିଚିତ୍ର ଆକସ୍ମିକତା ପୁଣି ସ୍ରୋତର ଗତି ବଦଳାଇ ଦେଲା ।

ସେହି ଗର୍ତ୍ତ ଗୃହରେ, ଦିନେ ଜଣେ ଅପରିଚିତ ବଂଗୀୟ ଯୁବକ, ମୋର ଜନୈକ ଆତ୍ମୀୟଙ୍କ ଦ୍ୱାରା ପ୍ରେରିତ ହୋଇ ସେଠାରେ ଆଶ୍ରୟ ଗ୍ରହଣ ପାଇଁ ଆସିଲେ । ଆଜି ତାଙ୍କ ଚେହେରା ସାମାନ୍ୟ ମନେ ପଡ଼େ, ନାମ କିନ୍ତୁ ମନେ ନାହିଁ । ମୋ ସ୍ମୃତିଲୋକରୁ ଏହି ପରମ ଶୁଭାକାଂକ୍ଷୀଙ୍କୁ କାହିଁକି ଯେ ବିଦାୟ ଦେଇଛି, ଏବେ ବହୁ ଅନୁତାପ କରେ । ପାତ୍‌ଳା ଚେହେରା, ମୁଣ୍ଡରେ ବୋଝେ ବାଳ, ...... ଶୀର୍ଣ୍ଣ ମୁହଁ ଓ ଅନୁଜ୍ଜ୍ୱଳ କପାଳରେ 'ଇଣ୍ଟଲେକ୍‌ଚୁ୍ୟଆଲିଜ୍‌ମ' ଓ ରହସ୍ୟାବୃତ ରୋମାଣ୍ଟିସିଜିମ୍‌ର ସ୍ପଷ୍ଟ ଛାପ ଉତ୍କୀର୍ଣ୍ଣ ହୋଇ ରହିଥିଲା । ସେ ମାନବେନ୍ଦ୍ର ରାୟ-ପନ୍ଥୀ ଥିଲେ ହେଁ, ରାଜନୀତିକ ଚିନ୍ତାରେ ଉଗ୍ର ହିଂସାବାଦୀ ଥିଲେ । ତାଙ୍କ ଜୀବନର କାହାଣୀ ଓ ଅତୀତ ଜାଣିବା ପାଇଁ ମୁଁ ଯେତିକି ଉଦ୍ୟମ କରିଛି, ସେ ମୋତେ ସେତିକି ସେଥିରୁ ନିରସ୍ତ କରିଛନ୍ତି । ପୁଲିସଠାରୁ ଆତ୍ମରକ୍ଷା ପାଇଁ, ସେ ଏହିପରି ଘୂରି ବୁଲୁଛନ୍ତି ଜାଣିବା ପରେ, ମୁଁ ତାଙ୍କ ସମ୍ବନ୍ଧରେ ଆଉ କୌଣସି କୌତୂହଳ ପ୍ରକାଶ କରି ନ ଥିଲି ।

ତାଙ୍କର ସାରାଦିନ କଟେ ସେହି ଗର୍ଭଗୃହର ନିରାପତ୍ତା ମଧ୍ୟରେ । ସଂଗରେ ନାନା ରାଜନୈତିକ ବହି ଆଉ ନୋଟ୍ । ରାତି ହେଲେ ବାହାରୁ ସହର ପରିକ୍ରମାରେ..... କେବେ କେବେ ସେ ଏକା ମଧ୍ୟ ଯାଆନ୍ତି । 'ଭାରତ ଆବିଷ୍କାର' ଗଳ୍ପର ନେପଥ୍ୟରେ ସେହି ଉଦ୍ଦେଶ୍ୟହୀନ ପରିକ୍ରମାର ସ୍ମୃତି ଉତ୍କୀର୍ଣ୍ଣ ହୋଇ ରହିଅଛି ।

ମୋର ଗଳ୍ପଗୁଡ଼ିକ ଶୁଣି ଶୁଣି, ଦିନେ ସମୟ କାଟିବା ପାଇଁ, ସେ କେତେକ ଗଳ୍ପର ବଙ୍ଗାନୁବାଦ କରିଥିଲେ । 'ଭାରତ ଆବିଷ୍କାର' ଗଳ୍ପଟି ତାଙ୍କୁ ଏପରି ମୁଗ୍ଧ କରିଥିଲା ଯେ, ସେ ଏହାକୁ ଅନୁବାଦ କରି, ପାଟଣାରୁ ପ୍ରକାଶ ପାଉଥିବା 'ପ୍ରଭାତୀ' ମାସିକ ପତ୍ରିକାକୁ ତାହା ପଠାଇ ଦେଲେ । 'ପ୍ରଭାତୀ', ସେତେବେଳେ ସ୍ୱର୍ଗତ ଶ୍ରୀ ମନୀନ୍ଦ୍ର ସମାଦ୍ଦାରଙ୍କ ସଂପାଦନାରେ ପ୍ରକାଶିତ ହେଉଥିଲା । ପତ୍ରିକାର ପ୍ରତିଷ୍ଠା ଓ ସୁନାମ ମଧ୍ୟ ଥିଲା ଯଥେଷ୍ଟ । ଦିନେ (୧୯୪୫ ସାଲ) ଏହି ପତ୍ରିକାର ପ୍ରଥମ ପୃଷ୍ଠାରେ 'ଭାରତ ଆବିଷ୍କାର' ଗଳ୍ପଟି ଦେଖି, ମୁଁ ଅଭିଭୂତ ହୋଇ ପଡ଼ିଲି । ଓଡ଼ିଆ ପତ୍ରିକାମାନଙ୍କରେ ବହୁ ଚେଷ୍ଟା ସତ୍ତ୍ୱେ, ଏହି ଗଳ୍ପଟି ପ୍ରକାଶିତ ହୋଇପାରି ନ ଥିଲା; ଏବେ ଏକ ବଙ୍ଗଳା ପତ୍ରିକାରେ ଏହାର ପ୍ରକାଶ ମୋର ଲୁପ୍ତ ଆତ୍ମବିଶ୍ୱାସକୁ ଯେପରି ଉଜ୍ଜୀବିତ କରିଥିଲା ତାହା ପରବର୍ତ୍ତୀ କାଳରେ ଗଳ୍ପ ଲେଖା ଦିଗରେ ମୋତେ ବହୁ ପରିମାଣରେ ଅନୁପ୍ରେରିତ କରିଥିଲା । ଏହାପରେ ଓଡ଼ିଆ ପତ୍ରିକାମାନଙ୍କରେ ଉପେକ୍ଷିତ 'ଅଷ୍ଟ୍ରେଲିଆ' ଗଳ୍ପଟି ମଧ୍ୟ ଏହି 'ପ୍ରଭାତୀ' ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଏହି ସମୟରେ ହଠାତ୍ ଦିନେ ଆକସ୍ମିକ ଭାବରେ, ମୋର ଅନୁବାଦକ ବନ୍ଧୁ କେଉଁଆଡ଼େ ନିରୁଦ୍ଦିଷ୍ଟ ହୋଇଗଲେ । ଯେପରି ଆକସ୍ମିକ ଭାବରେ ସେ ମୋର ଗର୍ଭଗୃହକୁ ଆସିଥିଲେ, ସେହିପରି ଆକସ୍ମିକ ଭାବରେ ସେ ବିଦାୟ ନେଇଗଲେ ।

ଏହା ପରଠାରୁ ଅବଶ୍ୟ ଓଡ଼ିଆରେ ଗଳ୍ପ ପ୍ରକାଶ କରିବା ପାଇଁ ମୋତେ କୌଣସି କଷ୍ଟ ସ୍ୱୀକାର କରିବା ପାଇଁ ପଡ଼ି ନାହିଁ । ମୋର ଆତ୍ମବିଶ୍ୱାସକୁ ଉଜ୍ଜୀବିତ କରିବା ପାଇଁ ସେ ଯେପରି ବିଧିପ୍ରେରିତ ହୋଇ ଆସିଥିଲେ ।

x x x x x

ଏହି ମୋର ଗଳ୍ପ ଲେଖାର ଗଳ୍ପ ।

କୌଣସି ସମସ୍ୟାର ସମାଧାନ ପାଇଁ ଅଥବା ସମାଜକୁ କୌଣସି ନୀତିଶିକ୍ଷା ଦେବା ପାଇଁ, ମୋର ଗଳ୍ପଗୁଡ଼ିକ ଉଦ୍ଦିଷ୍ଟ ନୁହେଁ । ଜୀବନର ନାନା ଅନୁଭୂତି ଓ ଉପଲବ୍ଧି, ମୁଁ ଏହି ଗଳ୍ପଗୁଡ଼ିକ ମାଧ୍ୟମରେ ପ୍ରକାଶ କରିବା ପାଇଁ ଚେଷ୍ଟା କରିଛି ମାତ୍ର । ସେଥିପାଇଁ ମୋର ଗଳ୍ପଗୁଡ଼ିକ ପ୍ରାୟ ଗଳ୍ପହୀନ ।

ପ୍ରୀତି ନମସ୍କାରାନ୍ତେ –

**ସୁରେନ୍ଦ୍ର ମହାନ୍ତି**

ପୁଃ : – ଏ ପତ୍ର ଆପଣ ଯେପରି ଇଚ୍ଛା ବ୍ୟବହାର କରି ପାରନ୍ତି, ମାତ୍ର ଏହାର Copy ମୋ ପାଖରେ ଆଉ ନାହିଁ ।''

ଭଦ୍ରକକୁ ସୁରେନ୍ଦ୍ର ବାବୁ ଯେତେବେଳେ ଆସୁଥିଲେ – କଲେଜରେ ବକ୍ତୃତା ଦେବାକୁ ହେଉ, କିମ୍ବା କୌଣସି ରାଜନୈତିକ କାର୍ଯ୍ୟ ଉପଲକ୍ଷେ ହେଉ – ସାଧାରଣତଃ ସେ ମୋର ବସାଘରେ ରହୁଥିଲେ । କଲେଜ ଇଉନିୟନ୍‌ର ସାଂସ୍କୃତିକ ଉତ୍ସବ, କଲେଜର ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକ ଅଧିବେଶନ ପ୍ରଭୃତି ଅନୁଷ୍ଠାନକୁ ସେ ବାରମ୍ବାର ନିମନ୍ତ୍ରିତ ହୋଇ ଆସିଥିଲେ । କଲେଜ କ୍ୟାଂପସ୍‌ରେ ଗେଷ୍ଟ ହାଉସ୍ ଥାଉଁ ଥାଉଁ ସେ ସେଠାରେ ନ ରହି ମୋ ପାଖରେ ରହିବାକୁ ପସନ୍ଦ କରୁଥିଲେ । ସାହିତ୍ୟ, ରାଜନୀତି ଆଦି ବିଷୟରେ ଆମ ମଧ୍ୟରେ ସେତେବେଳେ ବେଶ୍ ଅନ୍ତରଙ୍ଗ ଆଳାପ ହେଉଥିଲା । ଇଂରାଜୀ ଲିମେରିକ୍ ଶୈଳୀରେ ମୁଁ ସେହି ସମୟରେ 'ଲଘୁ ପଞ୍ଚକ' ଲେଖୁଥିଲି । ଥରେ ସୁରେନ୍ଦ୍ର ବାବୁଙ୍କୁ ରଙ୍ଗବ୍ୟଙ୍ଗର ସେହି ପାଞ୍ଚଧାଡ଼ିଆ ପଦ୍ୟଗୁଡ଼ିକୁ ଶୁଣାଇଲି ଏବଂ କହିଲି ଯେ – ପାଶ୍ଚାତ୍ୟ ଶୈଳୀର ସନେଟ୍, ଓଡ୍, ଏଲିଜି ପ୍ରଭୃତି ଓଡ଼ିଆରେ ଲେଖାଯାଇଛି, କିନ୍ତୁ ଲିମେରିକ୍ ଲେଖାଯାଇ ନାହିଁ । ସୁରେନ୍ଦ୍ର ବାବୁ ମୋର ଲଘୁପଞ୍ଚକ ଗୁଡ଼ିକ ଶୁଣି ଖୁସି ହେଲେ । ସେତେବେଳେ ସେ କଟକରୁ ପ୍ରକାଶିତ ଦୈନିକ ସମ୍ବାଦପତ୍ର 'କଳିଙ୍ଗ'ର ସଂପାଦକ ଥିଲେ । 'କଳିଙ୍ଗ'ର ରବିବାସରୀୟ ସାହିତ୍ୟପୃଷ୍ଠାରେ ମୋର ଲଘୁପଞ୍ଚକ ପ୍ରକାଶ ପାଇଁ ସେ ଆଗ୍ରହୀ ବୋଲି କହିବାରୁ ମୁଁ ପ୍ରତ୍ୟେକ ରବିବାସରୀୟ ସଂଖ୍ୟା ପାଇଁ ଚାରିଟି ଲେଖାଏଁ ଲଘୁପଞ୍ଚକ ପଠାଇଲି ଏବଂ ମୋର 'ସୃଷ୍ଟିଛଡ଼ା' ଛଦ୍ମନାମରେ ସେଗୁଡ଼ିକ ଧାରାବାହିକ ଭାବରେ 'କଳିଙ୍ଗ' ପୃଷ୍ଠାରେ ପ୍ରକାଶ ପାଇବାରେ ଲାଗିଲା ।

ଥରେ ସମକାମିତାକୁ ଘେନି ରଚିତ ହୋଇଥିବା ସାହିତ୍ୟ ଉପରେ ଆମର ଦୀର୍ଘ ଆଲୋଚନା ହୋଇଥିବାର ମନେ ପଡୁଛି । ସମକାମିତା ଯେତେବେଳେ ବିଶ୍ୱବ୍ୟାପୀ ଏବଂ ପ୍ରତ୍ୟେକ ଦେଶରେ ଏକ ପ୍ରକାର ଓପନ୍-ସିକ୍ରେଟ୍ ହୋଇ ରହିଛି, ତାହା ସାହିତ୍ୟର କୁକ୍ଷିଗତ ହେବାରେ ବାଧା କଣ ? ବିଷମକାମିତା ସାହିତ୍ୟରେ ରସୋତ୍ତୀର୍ଣ୍ଣ ହୋଇ ପ୍ରକାଶ ପାଉଥିଲା ବେଳେ ସମକାମିତା-ପ୍ରକାଶ କଳାତ୍ମକ ହୋଇପାରେ ବୋଲି ସୁରେନ୍ଦ୍ର ବାବୁଙ୍କର ମତ ଥିଲା । ଶ୍ରୀ ଚନ୍ଦ୍ରମଣି ଦାସଙ୍କର ବଡ଼ ଗଳ୍ପ 'ହାଇଫେନ୍'ର ଉଦାହରଣ ଦେଇ ମୁଁ କହିଲି ଯେ – ଆମ ଦେଶରେ ଆଇନ୍ ତଥା ସାମାଜିକତା ଦୃଷ୍ଟିରୁ ସମକାମିତା ନିଷିଦ୍ଧ ହୋଇଥିବାରୁ ସାହିତ୍ୟରେ ଏହାର ପରିପ୍ରକାଶ ନିଷିଦ୍ଧ ହେବା ସ୍ୱାଭାବିକ । କିନ୍ତୁ ସମକାମିତାର ସାହିତ୍ୟ ବିଷମକାମିତାର ସାହିତ୍ୟ ଭଳି ରସୋତ୍ତୀର୍ଣ୍ଣ ହୋଇପାରେ ।

ସୁରେନ୍ଦ୍ର ବାବୁ କିଛି ସମକାମୀ ସାହିତ୍ୟ ଲେଖିଛନ୍ତି ବୋଲି ପ୍ରକାଶ କଲେ ଏବଂ 'ନିର୍ମୂଳୀ ଲତାର ଫୁଲ' ଶୀର୍ଷକ ତାଙ୍କର ଗୋଟିଏ ଗଳ୍ପ ପଢ଼ିବା ପାଇଁ ମୋତେ କହିଲେ । ପରେ ମୁଁ ତାଙ୍କର ସେହି ସମକାମିତା ବିଷୟକ ଗଳ୍ପଟି ପଢ଼ି ଅପୂର୍ବ ପୁଲକ ଲାଭ କରିଛି ।

୧୯୬୪ ମସିହାରେ 'ଶତରୂପା' ପତ୍ରିକାରେ ପ୍ରକାଶିତ ମୋର 'ବେଦୀ' ଶୀର୍ଷକ ଏକ ଗଳ୍ପକୁ ଘେନି ଆମ ସାହିତ୍ୟାକାଶରେ ଏକ ଅଦିନ ଝଡ଼ ଉଠିଥିଲା । 'କଳିଙ୍ଗ', 'ନିଆଁଖୁଣ୍ଟା', 'ମାତୃଭୂମି', ପ୍ରଭୃତି ପତ୍ରପତ୍ରିକାରେ ଗଳ୍ପଟିର ଶ୍ଳୀଳତା-ଅଶ୍ଳୀଳତା ଘେନି ବାଦାନୁବାଦ ପ୍ରକାଶ ପାଇଥିଲା । ଏ ବିଷୟରେ ସବୁଠାରୁ ମଜାର କଥା ହେଉଛି – ଭଦ୍ରକ କଲେଜର ଜଣେ ଅଧ୍ୟାପକ ଭାବରେ ମୁଁ ଏପରି ଗଳ୍ପ କାହିଁକି ଲେଖିଲି, ସେଥିପାଇଁ କଲେଜ କର୍ତ୍ତୃପକ୍ଷ ମୋଠାରୁ କୈଫିୟତ ତଲବ କରିଥିଲେ । ସେତିକିବେଳେ 'ବେଦୀ' ଗଳ୍ପକୁ ଭିତ୍ତି କରି ସୁରେନ୍ଦ୍ର ବାବୁଙ୍କ ସହ ମୋର ପତ୍ରାଳାପ ହୋଇଥିଲା । ଗଳ୍ପଟିକୁ ସୁରେନ୍ଦ୍ରବାବୁ କି ଦୃଷ୍ଟିରେ ଦେଖିଥିଲେ, ସାହିତ୍ୟରେ ଅଶ୍ଳୀଳତା ବିଷୟରେ ତାଙ୍କର କଣ ମତ ଥିଲା ଇତ୍ୟାଦି କେତେକ ସୂତ୍ର ତାଙ୍କର ପତ୍ରଗୁଡ଼ିକରୁ ଜଣାପଡ଼େ । ଏଠାରେ ସେହି ପତ୍ରଗୁଡ଼ିକ ଅବିକଳ ଉଦ୍ଧାର କରାଯାଉଛି –

(୧)

''ଶିବାନୀ
କଟକ-୧, ଫୋନ୍ : ୪୩୬
୫।୩।୬୪

ଶ୍ରଦ୍ଧେୟ କୃଷ୍ଣବାବୁ,

ଚିଠି ଓ 'ଶତରୂପା' ପାଇଲି ।

ହଠାତ୍ 'କଳିଙ୍ଗ'ରେ ଭଦ୍ରକରୁ ପ୍ରେରିତ ଗୋଟିଏ ସମ୍ବାଦ ଛାପା ହୋଇଥିବାର ଦେଖିଲି, ତୁମର ପ୍ରକାଶିତ ଗଳ୍ପଟିକୁ ଅଶ୍ଳୀଳ ବୋଲି ଅଭିହିତ କରି । ମୁଁ ଦେଖିଥିଲେ ଅବଶ୍ୟ ତାହା ଛପାଇ ନ ଥାନ୍ତି; କାରଣ ଖବରର ସ୍ତମ୍ଭ ଏ ପ୍ରକାର ମତାମତ ପାଇଁ ଉଦ୍ଦିଷ୍ଟ ନୁହେଁ । ଯାହାହେଉ ଗଳ୍ପଟି ସମ୍ବନ୍ଧରେ ମୋର ମତାମତ ଏହା ହିଁ ଯେ, ଅଶ୍ଳୀଳତାର ଦ୍ୟୋତନା' ପାଇଁ ତାହା ଉଦ୍ଦିଷ୍ଟ ନୁହେଁ – କୋଣାର୍କରେ ଉତ୍କୀର୍ଣ୍ଣ ଯୁଗନଦ୍ଧ ନରନାରୀମାନଙ୍କ ତାହା ଏକ ଭାବମୟ ବାଣୀଚିତ୍ର । ଭିକ୍ଟୋରିଆନ୍ ଯୁଗର ଧପ୍ପାବାଜି ମୋରାଲିଟୀର ପ୍ରଭାବରେ ଆମର ରୁଚି ସାରା ଭାରତୀୟ ସାହିତ୍ୟରେ ଅଗ୍ନିମାନ୍ଦ୍ୟ ଗ୍ରସ୍ତ ହୋଇ ପଡ଼ିଅଛି । ତା' ନହେଲେ, ଭାରତୀୟ ସାହିତ୍ୟରେ ଯୌନ-ଆବେଗ ଓ ସଂପର୍କ Pornography ବା ଅଶ୍ଳୀଳତା ରୂପେ ଆଦୌ ବିବେଚିତ ହେଉ ନଥିଲା । Sex ମଧ୍ୟରେ ଯେଉଁ

ଅନିର୍ବଚନୀୟତାର ଉପଲବ୍ଧି ମିଳେ, ତାହା ଏକ ଦିଗରେ ମାଂସଳ Passion ହୋଇପାରେ (ସେ କ୍ଷେତ୍ରରେ ତାହା ଅଶ୍ଳୀଳ), ପୁଣି ଅନ୍ୟ ଦିଗରେ Spiritual Sublimationର ଉପଲବ୍ଧି ହୋଇପାରେ (ସେ କ୍ଷେତ୍ରରେ ତାହା ଆଧ୍ୟାତ୍ମିକତା ଓ କବିତା) । ମାତ୍ର ତୁମ ଗଳ୍ପଟିର ପରିବେଷଣ ଆଉରି ସୂଚନାତ୍ମକ ଓ ବିସ୍ତାରିତ ହେବା ଆବଶ୍ୟକ ଥିଲା ।

ଲିମେରିକ୍‌ଗୁଡ଼ିକ ଭଲ ହେଉଛି ।

ଅନ୍ୟାନ୍ୟ ସାକ୍ଷାତ୍‌ରେ –

ଶୁଭାକାଂକ୍ଷୀ
ସୁରେନ୍ଦ୍ର ମହାନ୍ତି''

(୨)

''ଶିବାନୀ
୧୯।୫।୭୪

ଶ୍ରଦ୍ଧେୟ କୃଷ୍ଣବାବୁ,

ତାନ୍ତ୍ରିକତାର ସବୁ ଘଟାଟୋପର ନେପଥ୍ୟରେ ମିଥୁନତତ୍ତ୍ୱ ଏକ ଜୈବିକ ବାସ୍ତବତା !

ବିଶ୍ୱବୃଦ୍ଧିର ସଙ୍କେତ ରୂପେ ଯୌନ ମିଳନ ଏକ ଶୁଭ ଅନୁଷ୍ଠାନ । ତାହା ମନ୍ତ୍ରରେ କୀର୍ତ୍ତିତ, ଆଚାରରେ ସମ୍ମାନିତ, ତତ୍ତ୍ୱରେ ପୁଣି ପ୍ରତଷ୍ଠିତ । ପୁରୁଷ ଓ ପ୍ରକୃତି, ୟବ୍ ଓ ୟିମ୍, ଦ୍ୟାବା ଓ ପୃଥିବୀ, ମଣି ଓ ପଦ୍ମ, ଶିବ ଓ ଶକ୍ତି, ରାଧା ଓ କୃଷ୍ଣ – ବହୁ ସଂକେତ, ବହୁ ଆଙ୍ଗିକରେ ଏହି ଉଲଙ୍ଗ ସତ୍ୟଟିକୁ ପ୍ରକାଶ ବା ପ୍ରଚ୍ଛନ୍ନ କରାଯାଇଅଛି । 'ଓଁ ମଣି ପଦ୍ମେ ହୁଁ' ଧାରଣୀର ଅର୍ଥ ହେଉଛି : ପଦ୍ମ (ଯୋନି)ରେ ମଣି (ବୀର୍ଯ୍ୟ)ର ପତନ – ସେଥିରୁ ସୃଷ୍ଟି ଇତ୍ୟାଦି ।

ତନ୍ତ୍ର ଯୁଗର ପ୍ରାବଲ୍ୟ ବେଳେ କୋଣାର୍କ ବା ଖଜୁରାଓରେ ଏହି ସଂକେତ ଉତ୍କୀର୍ଣ୍ଣ ହୋଇଥିଲା । ସାହିତ୍ୟରେ ମଧ୍ୟ ତାହାର ଖୁବ୍ ଚର୍ଚ୍ଚା ହୋଇଥିଲା । ସେସବୁ ଆଲୋଚିତ ଲେଖାରେ ସୂଚୀତ ହୋଇଅଛି ।

ମାତ୍ର ତୁମର thesis : ଯାହା ସମ୍ଭ୍ରମତା ଓ ବାଗାଡ଼ମ୍ବରର ମସାରୀପର୍ଦ୍ଦାର ନେପଥ୍ୟରେ **ଆବୃତ୍ତ**, ତାହା ଶିଷ୍ଟ ଜନୋଚିତ, ରସବନ୍ତ ଓ ମାର୍ଜିତ । ମାତ୍ର ଯାହା ଅନାବୃତ ତାହା **ଅଶ୍ଳୀଳ** ଓ ବିକୃତ । ଏ ସିଦ୍ଧାନ୍ତ କେତେକ କୋର୍ଟ କଚେରୀରେ ହୋଇଛି । ମାତ୍ର ଏହା ପ୍ରାକୃତିକ ସତ୍ୟର ପରିପନ୍ଥୀ ।

ବ୍ୟଭିଚାର, ପର୍ଦ୍ଦା ଉଢ଼ାଳରେ ସଦାଚାର ହେବା ଅସମ୍ଭବ । ହୋଟେଲରେ ନାରୀ ଧର୍ଷଣ ଓ ପାର୍କରେ ନାରୀ ଧର୍ଷଣ, ଏକ କଥା – ଗୋଟିକରେ ଆଇନ୍‌ର ଦୃଷ୍ଟିରେ ଧୂଳି

ଦେଇହୁଏ, ଅନ୍ୟଟିରେ ହୁଏ ନାହିଁ । ସନ୍ତ୍ରମତାର ଘଟାଟୋପ ମଧ୍ୟରେ ଗୋଟିଏ ଆଚ୍ଛାଦିତ; ଅପରଟି ଉଲଙ୍ଗ ସତ୍ୟ ପରି, ସୂର୍ଯ୍ୟୋଦୟ ପରି, ଜ୍ୟୋତ୍ସ୍ନା ପ୍ରସରଣ ପରି ଅନାବୃତ୍ତ । ସତ୍ୟାନୁସନ୍ଧିତ୍ସୁ ଦୃଷ୍ଟିରେ କେଉଁଟି ସ୍ପୃହଣୀୟ ?

ଅଶ୍ଳୀଳତାର ବିଚାର ତା'ହେଲେ କଣ ଏକ ମିଥ୍ୟା, ଏକ ଛଳନା, ଏକ ଆତ୍ମପ୍ରତାରଣା ଉପରେ ପର୍ଯ୍ୟବସିତ ? କୋର୍ଟ୍ କଚେରୀର ରାୟ ଏକ Legal ବିଚାର, ସେଥିରେ ethical ବା aesthetic ବିଚାର ନାହିଁ । ତେଣୁ ଅଶ୍ଳୀଳତାର ବିଚାରରେ ସେ ମାନଦଣ୍ଡ ଉପରେ ନିର୍ଭରଶୀଳ ହେଲେ ଏକ ଯୌକ୍ତିକ ସଂକଟର ସମ୍ମୁଖୀନ ହେବା ପାଇଁ ପଡ଼ିବ । ପୂର୍ବୋକ୍ତ ଅନୁଚ୍ଛେଦରେ ମୁଁ ତାହାର ସୂଚନା ଦେଇଅଛି । ଆଉରି ଉଦାହରଣ ଦେଉଛି; ନା, ଦେଇ ଲାଭ ନାହିଁ ।

ତେଣୁ ମୁଁ ତୁମ thesis ସହିତ ଏକମତ ନୁହେଁ – ଅଶ୍ଳୀଳତା ଶ୍ଳୀଳତାର ବିଚାର ଆଙ୍ଗିକ ନୁହେଁ ଆତ୍ମିକ ।

ଜୀବନରେ ଅନୁଭୂତ ଏକ ସତ୍ୟର interpretation ପାଇଁ ଯେଉଁଠାରେ ଯୌନାନୁଭୂତିର ବିଶ୍ଳେଷଣ ଆବଶ୍ୟକ ଓ ଅପରିହାର୍ଯ୍ୟ, ଯେଉଁଠାରେ ରତି କାମର କୋଟୀକୁ ଉଦ୍‌ଗତ, ଯେଉଁଠାରେ Sex (ଭାରତୀୟ ଭାଷାରେ ଏହାର ଅନୁବାଦ ସମ୍ଭବ ନୁହେଁ) ଶାଶ୍ୱତ ସୌନ୍ଦର୍ଯ୍ୟର ପରିଧି ଲାଭ କରିଅଛି, ଯେଉଁଠାରେ ଜୀବନ ଓ ପ୍ରକୃତିକୁ ବୁଝିବାରେ ଉପଲବ୍ଧି କରିବାରେ ତାହା ସହାୟକ ହୁଏ, ତାହା ଶ୍ଳୀଳ ଓ ଅନ୍ୟଥା ତାହା ଅଶ୍ଳୀଳ । ତେଣୁ Pornography ଓ Literature ବା art ମଧ୍ୟରେ ଏକ ସୀମାରେଖା ଅଛି । ସବୁ ନିର୍ଭର କରେ treatment ଉପରେ ।

କୋଣାର୍କ ମନ୍ଦିରକୁ କେହି କାମକଳା ଶିକ୍ଷା କରିବା ପାଇଁ ଯାଇ ନାହାନ୍ତି – ଘୋର ତନ୍ତ୍ରର ପ୍ରାବଲ୍ୟ କାଳରେ ସୁଦ୍ଧା । ମୋର ମନେ ହୁଏ 'ବେଦୀ' ଗଳ୍ପରେ ତୁମର କୋଣାର୍କ-ପୃଷ୍ଠଭୂମି ସେଇଥିପାଇଁ ଜାତିର Sub-conscious ରେ ଏକ ଆଲୋଡ଼ନ ସୃଷ୍ଟି କରିଅଛି । ବସ୍ତୁତଃ କୋଣାର୍କର ସାମୂହିକ ଅଭିବ୍ୟକ୍ତି, ସୌନ୍ଦର୍ଯ୍ୟର ଏକ ନିଖିଳ ସତ୍ତା ପୁଣି ତାହାର ସଂଯମର ଦ୍ୟୋତନା ବହନ କରି ଆଣିଅଛି । ସ୍ଥପତି ଓ ଶିଳ୍ପୀର ନିହାଣର ଭାଷା ସେଠି ଅନାବୃତ୍ତ – ସେଠି ସାନ୍ତ୍ରାନ୍ତ୍ୟ ନାହିଁ, ସେଠି ଭାଷାର ଚାତୁରୀ ନାହିଁ, ଆବରଣର ଉଦ୍ୟମ ନାହିଁ । ତଥାପି ତାହା ଯୌନ-ସଂଯମର ଦ୍ୟୋତକ, ଯୌନ-ସମ୍ଭୋଗର ନୁହେଁ ।

ତେଣୁ ରସସୃଷ୍ଟି ନାମରେ ପର୍ଦ୍ଦା ଢାଙ୍କି ଶ୍ଳୀଳ, ଅଶ୍ଳୀଳର ବିଚାର ତିଷ୍ଠୁଛି କେତେକେ ?

ମୁଁ ବୋଧହୁଏ ପୂର୍ବ ଚିଠିରେ ଲେଖିଛି, 'ବେଦୀ' ଗଳ୍ପଟି ଗୋଟିଏ Symbol । ଅତି ସଂକ୍ଷିପ୍ତ ପରିସର ମଧ୍ୟରେ ତାହା ଲେଖାଯାଇଥିବାରୁ ଏ Symbol ଯଥାର୍ଥ ଭାବରେ ପରିସ୍ଫୁଟ ହୋଇପାରି ନାହିଁ । କିନ୍ତୁ ତାହାକୁ ସେଥିପାଇଁ Pornographic କୁହାଯାଇ ପାରିବ ନାହିଁ ।

ତୁମେ ବିଚଳିତ ହୋଇପଡ଼ି ନ ଥିବାରୁ ମୁଁ ତମକୁ ସାଧୁବାଦ ଜଣାଉଛି । ଏଇ theme ଉପରେ ତମେ ଆଉରି ଗଳ୍ପ ଲେଖ – ପ୍ରମାଣ କର, ଯୌନ ସମ୍ଭୋଗ ବା ଯୌନ ମିଳନ ଦିଗ୍‌ବଳୟ ରେଖା ତଳେ ଆକାଶ ଓ ପୃଥିବୀର ମିଳନ ଚିତ୍ର ପରି ଅନାବିଳ ଓ ଶାଶ୍ୱତ ।

ଆଶା କରେଁ ଏଇ ଦୃଷ୍ଟିରୁ ଚିନ୍ତା କରି ଦେଖିବ । ଅନ୍ୟଥା ଲେଖାଟି ଭାବ ଓ ଚିନ୍ତାଗର୍ଭକ ହୋଇଅଛି । ଶ୍ରୀମତୀ ବେହେରାଙ୍କୁ ଶୁଭେଚ୍ଛା ଦେବ ।

ପ୍ରୀତି ନମସ୍କାରାନ୍ତର –

ସୁରେନ୍ଦ୍ର ମହାନ୍ତି ।

ପୁଃ : – 'ବେଦୀ' ସଂପର୍କରେ ଯେଉଁ ଅଭିଯୋଗ ହୋଇ ନାହିଁ :

କୋଣାର୍କ ପରି ଅନାହତ ସୌନ୍ଦର୍ଯ୍ୟ ଓ ଆଧ୍ୟାତ୍ମିକ ସାଧନାର ପୀଠ; ତପୁ ଓ ଲିଲିଙ୍କ ଚେତନାରେ କାମୋଦ୍ରେକ କରିବା ଏକ ଅଶ୍ଳୀଳତାର ଦ୍ୟୋତକ । ନିତାନ୍ତ ଅଶ୍ଳୀଳ ମନୋବୃତ୍ତି ନ ଥିଲେ ବା ସେ ଦୁହେଁ Sex-truants ହୋଇ ନ ଥିଲେ, କାମଦ୍ୟୋତନା ପାଇଁ କୋଣାର୍କ ଯାନ୍ତେ ନାହିଁ । – କାରଣ କୋଣାର୍କ ସେ ଦ୍ୟୋତନା ବିଶ୍ୱପ୍ରାଣରେ କଦାପି ଆଣି ନାହିଁ ।

ଉତ୍ତର : –

ଯୌନଚର୍ଯ୍ୟା ଯେଉଁଠାରେ ଏକ ପାପ ଏକ ଅସ୍ୱାସ୍ଥ୍ୟକର ଆଚରଣ ବୋଲି ପ୍ରଚାରିତ, ପୁରୁଷ ଓ ସ୍ତ୍ରୀ ମଧ୍ୟରେ କେବଳ ଏକ ଯୌନ-ସଂପର୍କ ଯେଉଁଠାରେ 'କାମ' ବା Erosର ରୋମାଞ୍ଚ ଅପହରଣ କରିଅଛି, ସେହିପରି ଏକ ସମାଜର ଦୁଇଜଣ ଚରିତ୍ର ତପୁ ଓ ଲିଲି ।

ଲିଲିକୁ ଏକ frigid କରିଥିଲେ ଭଲ ହୋଇଥାନ୍ତା ।

ଲିଲିର ବିସ୍ମୟ... ଏ କଣ ? ଏ ଅନାବୃତ୍ତ ସୁଷମା ? କଣ ଏହାର ଅର୍ଥ ଓ ସଂକେତ ! ମନ୍ଦିରରେ ଦେବତା ନାହିଁ – ଏଠି ସୌନ୍ଦର୍ଯ୍ୟ ଓ ଆନନ୍ଦ ଯେପରି ଏକମାତ୍ର ବିଗ୍ରହ ।

କିନ୍ତୁ କଣ ଏହାର ବାଣୀ ? ଏ ଆନନ୍ଦ ନୁହେଁ ଲିଲି, ଏ ଏକ ସାଧନା, ଏକ ତପସ୍ୟା, ଏକ ବ୍ରତ ! ସୃଷ୍ଟି ପାଇଁ ଏହା ଆତ୍ମୋତ୍ସର୍ଗ, ଯୌନାଲିଙ୍ଗନ ମଧ୍ୟରେ ଦ୍ୱୟର ଅଦ୍ୱୟତା, ଅହଂର ବଳିଦାନ ।

ଝାଉଁର ସାଇଁ ସାଇଁ ଆର୍ତ୍ତନାଦ... ଏକ ବୁଭୁକ୍ଷିତ ପ୍ରାଣର ଦୀର୍ଘଶ୍ୱାସ ପରି... ଦୀର୍ଘାୟିତ ଛାୟା କାହାର ବାହୁପାଶ ପରି... ଲିଲି କହିଲା, ''ତୁମ ଛାତିରେ ମୁଣ୍ଡ ଦେଇପାରିବି ! ମୁଣ୍ଡ ବିନ୍ଧୁଛି ।''

ଆଃ... ସେ ଆବରଣ କାହିଁକି ? ସେ ବ୍ରୀଡ଼ା କାହିଁକି... ସେ କୁଣ୍ଠା କାହିଁକି ?

– ତପୁର ବାହୁପାଶ ମଧ୍ୟରେ ଲିଲି ଏକ ପୁନର୍ଜନ୍ମ ନେଉଥିଲା ।

'ବେଦୀ'କୁ Rewrite କର ହେ, ଗପର ନାଁ ଦିଅ 'ବେଦୀର ପୁନଶ୍ଚ'...''

(୩)

''ଶିବାନୀ
Phone : 436, Cuttack-1
୧୭।୭।୬୪

ଶ୍ରଦ୍ଧେୟ କୃଷ୍ଣବାବୁ,

'ବେଦୀ' ଗଳ୍ପ ସଂପର୍କରେ ବାଦାନୁବାଦ ଶେଷ ହୋଇଥିବା ଓ ତୁମେ ସେଥିରୁ ଅକ୍ଷତ ଭାବରେ ଉତ୍ତୀର୍ଣ୍ଣ ହୋଇଥିବା ଜାଣି ଆନନ୍ଦିତ ହେଲି ।

ସାହିତ୍ୟିକ ରୁଚି ସର୍ବଥା ସମାଜାନୁମୋଦିତ; ତଥାପି ଜୀବନର ବିଶ୍ଳେଷଣ ଓ ମୂଲ୍ୟାୟନ ପାଇଁ କେତେକ ସମୟରେ ଯୌନମିଳନର ଚିତ୍ରଣ ଓ ବର୍ଣ୍ଣନାର ଆବଶ୍ୟକତା ପଡ଼ିଥାଏ । ମାତ୍ର ସମାଜାନୁମୋଦିତ norm ବା ଶିଷ୍ଟାଚାର ଅନେକ ସମୟରେ ଏଥିରେ ଏକ ଗୁରୁତର ପ୍ରତିବନ୍ଧକ ରୂପେ ପ୍ରକାଶିତ ହୋଇଥାଏ । ସେଥିପାଇଁ ସାହିତ୍ୟରେ ଶ୍ଳୀଳତା ଓ ଅଶ୍ଳୀଳତା ସଂପର୍କରେ ଏକ ପ୍ରାମାଣିକ ସିଦ୍ଧାନ୍ତର ଆବଶ୍ୟକତା ପଡ଼ିଲାଣି । କିନ୍ତୁ ବିଲେଇ ବେକରେ ଘଣ୍ଟି ବାନ୍ଧିବ କିଏ ?

ଏବେ ଆମେରିକାରେ ଏ ସଂପର୍କରେ ପୁଣି ପ୍ରଷ୍ଟେ ଆଇନ୍-ଯୁଦ୍ଧ ଲାଗିଗଲା । କାନସାସ୍ (Kansas) ଷ୍ଟେଟ୍‌ର Anti-obscenity Lawରେ ରାଜ୍ୟ ସରକାର Problem in Bed ଓ Game of Wife-Swapping ପ୍ରଭୃତି କେତେଖଣ୍ଡ Night-Stand book (ଶୋଇବା ବେଳେ ଯାହାକୁ ପଢ଼ିଲେ, କାମୋଦ୍ରେକ ହୁଏ... ସାହିତ୍ୟର ଏ ମଧ୍ୟ ଏକ କର୍ତ୍ତବ୍ୟ, ନାଁ କଣ କହୁଛ ?) ବହିର ସବୁ କପି ବାଜ୍ୟାପ୍ତ କରିଦେଲେ ।

ମାତ୍ର ଏହା unconstitutional ବୋଲି ସୁପ୍ରିମ୍ କୋର୍ଟ୍ ଏହାକୁ ଅସିଦ୍ଧ ଘୋଷଣା କରିଦେଲେ । ତଥାପି ଏ ପ୍ରଶ୍ନର ମୀମାଂସାରେ ସୁପ୍ରତିଷ୍ଠିତ Roth Test ଅନୁସାରେ 'Contemporary Community Standards' ଏକ ମୁଖ୍ୟ ନିୟାମକ ହୋଇ ରହିଅଛି । ଏ standard ବା ଶିଷ୍ଟାଚାର ସହିତ ସାହତ୍ୟିକ ପ୍ରକାଶର ଆବଶ୍ୟକତା କିପରି ସମନ୍ୱିତ କରିବା ପାଇଁ ପଡ଼ିବ, ତାହା ଏକ ସାହିତ୍ୟିକ ସମସ୍ୟା ।

'ଓଡ଼ିଆ ସାହିତ୍ୟର ଆଦିପର୍ବ' ସଂପର୍କରେ ତୁମର ଅଭିମତ କଣ ? 'ମଧ୍ୟପର୍ବ' ଲେଖିବା ପାଇଁ ଉତ୍ସାହ ବା ପ୍ରେରଣା ମିଳୁ ନାହିଁ । ଓଡ଼ିଆରେ ଲେଖିବା ଏକ ହସ୍ତମୈଥୁନ ପରି; ଏଥିରେ ନିଜକୁ ନିଜେ ସନ୍ତୁଷ୍ଟ କରିବା ପାଇଁ ପଡ଼େ । ପାଠକ ଶ୍ରେଣୀ କାମୋନ୍ମାଦଲୁପ୍ତା ଛଉତୀ ପରି । ସେଥିରେ ଲେଖିବା ପାଇଁ ଉନ୍ମାଦନା ଆସିବ କୁଆଡୁ ? ମୋ ମତରେ, ଏହି demand ଅଭାବରୁ ସମସାମୟିକ ସାହିତ୍ୟ, ମଧ୍ୟଯୁଗୀୟ ସାହିତ୍ୟ ତୁଳନାରେ ଦୈନ୍ୟଗ୍ରସ୍ତ ।

ଆଶା କରେଁ ସପତ୍ନୀ କୁଶଳରେ ଥିବ ।

ଶୁଭାକାଙ୍କ୍ଷୀ
ସୁରେନ୍ଦ୍ର ମହାନ୍ତି''

ସୁରେନ୍ଦ୍ରଙ୍କର ବିଖ୍ୟାତ 'ମରାଳର ମୃତ୍ୟୁ' ଗଳ୍ପଟି ଉତ୍କଳ ବିଶ୍ୱବିଦ୍ୟାଳୟର ବି.ଏ. ଶ୍ରେଣୀର ଓଡ଼ିଆ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଥାଏ । ଗଳ୍ପଟି ମୁଁ କ୍ଲାସ୍‌ରେ ପଢ଼ାଇବାକୁ ଯାଇ ଦେଖେଁ – ଏହାର ମର୍ମବାଣୀ ମୋ ନିକଟରେ ଟିକିଏ ଅସ୍ପଷ୍ଟ ରହିଯାଉଛି । ତେଣୁ ଗଳ୍ପଟିକୁ ମୁଁ ଛାତ୍ରଛାତ୍ରୀଙ୍କୁ ସ୍ପଷ୍ଟ ଭାବରେ ବୁଝାଇବି କିପରି ? ସୁରେନ୍ଦ୍ର ବାବୁଙ୍କୁ ଗଳ୍ପଟି ସଂପର୍କରେ ପତ୍ର ଲେଖିବାରୁ ଉତ୍ତରରେ ସେ ଯାହା ଲେଖିଥିଲେ, ଏଠାରେ ତାହା ଉଦ୍ଧାର କରୁଛି ।

''ଶିବାନୀ
୬।୧୧।୬୫

ଶ୍ରଦ୍ଧେୟ କୃଷ୍ଣବାବୁ,

ଆପଣଙ୍କର ୪.୧୧.୬୫ର ପତ୍ର ପାଇଅଛି । ପୂର୍ବର ପତ୍ର ମଧ୍ୟ ପାଇଥିଲି । ମାତ୍ର ନିରୁତ୍ତରତା ସ୍ୱେଚ୍ଛାକୃତ । କାରଣ ଆପଣ 'ମରାଳର ମୃତ୍ୟୁ'ର ଶେଷାଂଶ ସଂପର୍କରେ ଯେଉଁ ସ୍ପଷ୍ଟୀକରଣ ଚାହିଁଥିଲେ, ତାହା ଦେବା ମୋ ପକ୍ଷରେ ସମ୍ଭବ ହୋଇ ନାହିଁ । ସେ ଗଳ୍ପଟି ଓଡ଼ିଆରେ ବୋଧହୁଏ ପ୍ରଥମ ସିମ୍ବଲିକ୍ (Symbolic) ଗଳ୍ପ । ଏହା ବ୍ୟତୀତ ଆଉ ସେପରି ଗଳ୍ପ ମୁଁ ବୋଧହୁଏ ଗୋଟିଏ ବା ଦିଓଟି ଲେଖିଛି । ସିମ୍ବଲିକ୍ ଉଦ୍ଦେଶ୍ୟ ହେଉଛି – ବିଭିନ୍ନ ପାଠକର ଭାବଲୋକରେ ବିଭିନ୍ନ ସଂକେତ ଓ ଅର୍ଥର ତରଙ୍ଗ ସୃଷ୍ଟି କରିବା । ତାହା କରିବାରେ ଯେଉଁ ରଚନା ଯେତେ ସମର୍ଥ, ତାହା ସେତିକି ସଫଳ

ବୋଲି ବୁଝିବା ପାଇଁ ପଡ଼ିବ । ବହୁଦିନ ପୂର୍ବେ ମଞ୍ଜୁରୀ ରୋଡ୍ ହାଇସ୍କୁଲର ଜଣେ ଶିକ୍ଷକ, ଆପଣ ଯେପରି ଲେଖିଛନ୍ତି, ଠିକ୍ ସେହିପରି ଲେଖିଥିଲେ । ମୁଁ ତାଙ୍କୁ ଉତ୍ତରରେ ଲେଖିଥିଲି – ଅରଣ୍ୟ ଯଦି ତାର ମର୍ମସ୍ଥଳ ଉଦ୍‌ଘାଟନ କରିଦିଏ, ତା'ହେଲେ ତା'ର ଆକର୍ଷଣ ଆଉ ରହିଲା କେଉଁଠି ?

ମୋର ଅଭିପ୍ରାୟ – 'ମରାଳର ମୃତ୍ୟୁ'ରେ ଯିଏ ଯେଉଁ ଅର୍ଥ ଓ ସଂକେତ ଆବିଷ୍କାର କରିବେ, କରନ୍ତୁ । ସେଥିରେ ଲେଖକ ରୂପେ ମୁଁ ଗୋଟାଏ ମଲ୍ଲୀନାଥୀ ଟୀକା ଯୋଡ଼ିଦେଲେ, ସୃଷ୍ଟିର ମୂଳ ଉଦ୍ଦେଶ୍ୟ ବିଡ଼ମ୍ବିତ ହୋଇଯିବ । ସିମ୍ବଲ୍ ସୃଷ୍ଟିରେ ସଫଳତା ଆଣିବା କେବଳ ମୋର ଉଦ୍ଦେଶ୍ୟ... ଆଉ ତାହାର ମର୍ମ ପ୍ରଥମ ପ୍ରେମ ପରି ଅବ୍ୟକ୍ତ ହିଁ ରହିବ । ଅର୍ଥାତ୍ ତାହା ଉଦ୍‌ଘାଟନ କରିବା ପାଇଁ ମୁଁ କୁଣ୍ଠିତ ।

ପୁନଶ୍ଚ : ଏ ଗଳ୍ପକୁ ପାଠ୍ୟକ୍ରମ ରୂପେ ନିର୍ବାଚନ କରିବା ସଂପୂର୍ଣ୍ଣ ଅନୁଚିତ ହୋଇଅଛି । କର୍ତ୍ତୃପକ୍ଷ ଯଦି ଏ ଗଳ୍ପ ସଂପର୍କରେ ଲେଖକ ରୂପେ ମୋର ମତାମତ ଲୋଡ଼ିଥାନ୍ତେ, ତା'ହେଲେ ଏହାକୁ ନିର୍ବାଚନ ନ କରିବା ପାଇଁ ମୁଁ ପରାମର୍ଶ ଦେଇଥାନ୍ତି । ଯାହାହେଉ କେବେ ସାକ୍ଷାତ୍ ହେଲେ, ବାଚନିକ ଭାବରେ ମୁଁ ଆପଣଙ୍କ ସମସ୍ୟାର ଉତ୍ତର ଦେବି ।

ଆଶା କରେଁ ଆପଣ ସପରିବାର କୁଶଳରେ ଥିବେ ।

ଶୁଭ ଚିନ୍ତକ
ସୁରେନ୍ଦ୍ର ମହାନ୍ତି''

ଭଦ୍ରକ ଅଞ୍ଚଳରେ ପ୍ରସାରିତ 'ମୋଗଲ ତାମସା' ମୁଁ ସଂଗ୍ରହ-ସଂପାଦନା ପୂର୍ବକ ୧୯୬୬ ମସିହାରେ ପ୍ରକାଶ କରାଇଥାଏଁ । ଏହି ପାରଂପରିକ ଲୋକପ୍ରିୟ ନାଟ୍ୟକୃତି ପଢ଼ି ତାଙ୍କ ନିଜର ମନ୍ତବ୍ୟ ପ୍ରକାଶ କରିବା ସଂଗେ ସଂଗେ 'କଳିଙ୍ଗ'ରେ ରିଭିଉ କରିବା ପାଇଁ ସୁରେନ୍ଦ୍ର ବାବୁଙ୍କୁ ଅନୁରୋଧ କରିଥିଲି । ଏ ସଂପର୍କରେ ତାଙ୍କର ପତ୍ର ଉପାଦେୟ ମନେ କରି ଏଠାରେ ଉଦ୍ଧାର କରୁଛି ।

(କ)

''କଳିଙ୍ଗ ଅଫିସ୍, କଟକ-୧
୨୯.୩.୬୭

ପ୍ରୀତିଭାଜନେଷୁ,

'ମୋଗଲ ତାମସା' ପାଇ ନାହିଁ । ବୋଧହୁଏ ବାଟମାରଣା ହୋଇଗଲା । ଯଦି ଭବିଷ୍ୟତରେ ପଠାନ୍ତି, ତା'ହେଲେ ଘର ଠିକଣା – ଶିବାନୀ, ଷ୍ଟୁଆର୍ଟ ପାଟନା, ପୋ : କଟକ-୧ରେ ପଠାଇବେ । ଏ ଯୁଗ ତ ବାଟମାରଣାଙ୍କ ଯୁଗ !

ଅନେକ ଦିନ ତଳେ ଭଦ୍ରକର ଶ୍ରୀ ନବୀନ ଚନ୍ଦଙ୍କ ସୌଜନ୍ୟରୁ ମୋଗଲ ତାମସାର କେତେକାଂଶ ଦେଖିବାର ସୁଯୋଗ ମୋତେ ମିଳିଥିଲା । ଆପଣ ତାହାର ପୁନରୁଦ୍ଧାର କରି ଏକ ମହତ୍ କାର୍ଯ୍ୟ କରିଛନ୍ତି ।

ମଧ୍ୟପର୍ବ (ସାରଳା – ଦୀନକୃଷ୍ଣ) ବର୍ତ୍ତମାନ ପ୍ରାୟ ଦେଢ଼ ବର୍ଷ ହେଲା ମୁଦ୍ରାରାକ୍ଷସର କବଳରେ ନିପତିତ । ସେଥିରୁ ମୁକ୍ତିର ସମ୍ଭାବନା କେବେ, ମୁଁ ଜାଣେ ନାହିଁ ।

ମୋତେ ଲାଗୁଛି, ଆମେ ସବୁ କ୍ରମେ ଏକ ଅସାହିତ୍ୟିକ, ସୌକୁମାର୍ଯ୍ୟ-ବର୍ଜିତ, ଟେକନଲଜି-ସର୍ବସ୍ୱ ସମାଜ ଆଡ଼େ ମୁହାଁଇଛୁ । ଅବଶ୍ୟ ସୋଭିଯେଟ୍ ରୁଷିଆ ଓ ଆମେରିକାରେ ଟେକ୍‌ନଲଜୀ ଯେତେଯେତେ ଆଗେଇ ଚାଲିଛି, ସାଧାରଣ ଜନଜୀବନରେ ସାହିତ୍ୟତୃଷ୍ଣା ସେତିକି ବୃଦ୍ଧି ପାଉଛି । ମାତ୍ର ତାହା ହେଉଛି ବୋଧହୁଏ ସେମାନଙ୍କ ସମାଜରେ ଆର୍ଥିକ ସ୍ୱଚ୍ଛଳତା ଓ ନିରାପତ୍ତା ହେତୁ । କିନ୍ତୁ ଭାରତରେ ଏହି ଶେଷୋକ୍ତ ପରିସ୍ଥିତିର ଅଭାବରୁ ଆମେ ସବୁ ସାହିତ୍ୟକୁ ସମାଜରେ ଏକ ଅବାନ୍ତର ତାଲିକାରେ ପକାଇ ଦେଇଛୁଁ । ଏଥିରେ ସାହିତ୍ୟ କିପରି ଉଧାଇବ କେଜାଣି ?

ଆଶା କରେ କୁଶଳରେ ଥିବେ ।

ଶୁଭଚିନ୍ତକ
ସୁରେନ୍ଦ୍ର ମହାନ୍ତି''

(ଖ)

''କଳିଙ୍ଗ ଅଫିସ୍
୨୨.୪.୬୭

ପ୍ରୀତିଭାଜନେଷୁ,

'ମୋଗଲ ତାମସା' ଇତି ମଧ୍ୟରେ ରୋଗ ଶଯ୍ୟାରେ ଶୋଇ ଶୋଇ ଶେଷ କରିଛି । ଆପଣ ଆଉ ଖଣ୍ଡେ ବହି ବୋଧହୁଏ ପ୍ରେସ୍‌ରେ ଦେଇ ଆସିଥିଲେ, ନା, ମୁ ତାହା କବି ବଂଶୀବଲ୍ଲଭଙ୍କୁ ଆପଣ ଆବିଷ୍କାର କରିବା ପରି ଆବିଷ୍କାର କଲି, ଠିକ୍ ମନେ ପଡୁ ନାହିଁ ।

ଏ ସଂପର୍କରେ ଗୋଟିଏ ଲେଖା ଆର ସପ୍ତାହ ସାହିତ୍ୟ ସଂଖ୍ୟାରେ ମୁଁ ପ୍ରକାଶ କରିବି ।

ଏଥିରେ ଅନେକ ପ୍ରକ୍ଷେପ ଥିବା, ଆପଣ ତ ନିଜେ ସ୍ୱୀକାର କରିଛନ୍ତି । ଉଦାହରଣ ସ୍ୱରୂପ, ପୃ: ୬ରେ ଭେଣ୍ଡିର ଗୀତରେ ଯେଉଁ 'ଚଟକଳ' ଓ 'ଲାଲ ଦୀଘି'ର ଉଲ୍ଲେଖ ଅଛି, ତାହା ବିଂଶ ଶତାବ୍ଦୀର ପ୍ରଥମ ପାଦର ସୂଚନା ଦିଏ । ମୋଗଲ-ମରହଟ୍ଟା ଯୁଗରେ

କଲିକତା ଏକ ଅରଣ୍ୟ ଥିଲା ଓ ବଙ୍ଗାଳୀମାନେ ଚଟକଳ ଅପେକ୍ଷା ନଦିଆ-କୀର୍ତ୍ତନରେ ଅଧିକ ଭିଡ଼ ବାନ୍ଧୁଥିଲେ । (ମୋ ମତରେ ଏ ପ୍ରକ୍ଷେପ ସବୁ ବାଦ୍ ଦେଲେ ଭଲ ହୋଇଥାନ୍ତା ।)

କବିଙ୍କ ମୋଗଲ ତାମସାରେ ପ୍ରତ୍ନତାତ୍ତ୍ୱିକ ମୂଲ୍ୟ ଅଛି ନିଶ୍ଚୟ, ମାତ୍ର ବୈଦଗ୍ଧ୍ୟ ଅତି ମଳିନ ଏ ଘରଟିରେ... ତଥାପି ଗଉଡ଼ୁଣୀର କୁଚ ବନ୍ଦନା (ପୃ : ୪୩) ଓଡ଼ିଆ ସାହିତ୍ୟରେ ଅପୂର୍ବ । ଶ୍ରୀ ବଂଶୀବଲ୍ଲଭଙ୍କୁ ସେଥିପାଇଁ ମୁଁ କୋଟି କୋଟି ନମସ୍କାର ଜଣାଉଛି । 'ରସକଲ୍ଲୋଳ'ର ଦୀନକୃଷ୍ଣ ବହୁନମ୍ରା କୁଚକୁ ଦୁଃଖୀର ପରିବାର-କଷ୍ଟ ଚିନ୍ତା ସହିତ ତୁଳନା କରି ଖଣ୍ଡେ ହାତ ଦେଖେଇ ଥିଲେ, ମାତ୍ର ବଂଶୀବଲ୍ଲଭ ସେଥିରୁ ବଳିଗଲେ :

'ସୁଜନେ, ମୂର୍ଖେ କହନ୍ତି ଏ ଢଳିଲା<br>
ସୁରବର୍ଗ ଜିଣି, ଜିଣି ସେ ଧରଣୀ,<br>
ଏବେ ରସାତଳ ଚଳିଲା ।'

ବାସ୍ତବିକ ଆମେ ସବୁ ମୂର୍ଖ ତ !

କବି ବଂଶୀବଲ୍ଲଭ ଜିନ୍ଦାବାଦ ।

ଆପଣଙ୍କ ଉଦ୍ୟମକୁ ମଧ୍ୟ ଅଶେଷ ଅଶେଷ ଧନ୍ୟବାଦ – ବିଶେଷତଃ ଉପରୋକ୍ତ ବସ୍ତୁଟି ପ୍ରତି ଆମ ପରି ଭୂତପୂର୍ବ ବିଦଗ୍ଧମାନଙ୍କର ଦୃଷ୍ଟି ଫେରାଇ ପାରିଥିବା ହେତୁ ।

ଶୁଭେଚ୍ଛା ସହ<br>
ସୁରେନ୍ଦ୍ର ମହାନ୍ତି''

ଏ ପତ୍ରରେ ଦେଇଥିବା ପ୍ରତିଶ୍ରୁତି ଅନୁଯାୟୀ ସୁରେନ୍ଦ୍ର ବାବୁ 'ମୋଗଲ ତାମସା' ଉପରେ ଏକ ଚମତ୍କାର ରିଭିଉ 'କଳିଙ୍ଗ'ର ୭।୫।୬୭ ତାରିଖ ସଂଖ୍ୟାରେ ପ୍ରକାଶ କରିଥିଲେ । ପରବର୍ଷ ପଣାସଂକ୍ରାନ୍ତି ବେଳକୁ 'ମୋଗଲ ତାମସା'ର ଅଭିନୟ ଦେଖିବା ପାଇଁ ମୁଁ ତାଙ୍କୁ ନିମନ୍ତ୍ରଣ ଜଣାଇଥିଲି (ଭଦ୍ରକରେ ବିଷୁବ ସଂକ୍ରାନ୍ତି ସମୟରେ ଶିବ ମନ୍ଦିର ସମ୍ମୁଖରେ ତାମସା ଅଭିନୀତ ହେବାର ବିଧି ରହିଛି) । କିନ୍ତୁ ସେ କାର୍ଯ୍ୟାନ୍ତରରେ ବ୍ୟସ୍ତ ଥିବାରୁ ସେଥର ବିଷୁବ ସଂକ୍ରାନ୍ତି ବେଳକୁ ଭଦ୍ରକ ଆସି ପାରି ନ ଥିଲେ । କିନ୍ତୁ ତାଙ୍କର ଅନ୍ୟ ଏକ ଆଶା – ଭଦ୍ରକର ଆଖଣ୍ଡଳମଣି ଦର୍ଶନ – ପୂରଣ ହୋଇଥିଲା, ଯେତେବେଳେ ସେ ଭଦ୍ରକ କଲେଜ 'ଓଡ଼ିଆ ସାହିତ୍ୟ ସମାଜ'କୁ 'ଫକୀର ମୋହନ – ପରବର୍ତ୍ତୀ କଥା ସାହିତ୍ୟ' ବିଷୟରେ ଏକ ଲିଖିତ ଭାଷଣ ଦେବାପାଇଁ ଆସିଥିଲେ । ଏ ସଂପର୍କରେ ତାଙ୍କର ପତ୍ରଟି ଉଦ୍ଧାର କରୁଛି ।

''ଫୋନ୍ : ୪୩୬
କଟକ-୧
୩ ଅଗଷ୍ଟ, ୬୭

ପ୍ରୀତିଭାଜନେଷୁ,

ଚିଠି ପାଇଛି । ପ୍ରସ୍ତାବଟି ସାଧୁ । ବିଭିନ୍ନ କଲେଜରେ ଆଜିକାଲି ଯେଉଁସବୁ 'ସାଂସ୍କୃତିକ ସମାରୋହ' ହେଉଛି, ଆପଣଙ୍କ ପ୍ରସ୍ତାବ ସେଥିରେ ଏକ ସାଂସ୍କୃତିକ ବ୍ୟତିକ୍ରମ – ଏହିପରି ସେସବୁ ହେବା ଉଚିତ ବୋଲି ମୁଁ ବହୁଦିନରୁ ମତ ପୋଷଣ କରି ଆସୁଅଛି ।

ବିଷୟବସ୍ତୁଟି ବଡ଼ କଷ୍ଟସାଧ – କାରଣ ଫକୀରମୋହନଙ୍କ ପରବର୍ତ୍ତୀ କଥା ସାହିତ୍ୟର ମୂଲ୍ୟାୟନ ପାଇଁ, ପୁଣି ଲିଖିତ ପ୍ରବନ୍ଧ ଆକାରରେ, ଯେଉଁ ଗବେଷଣା, ଅଧ୍ୟବସାୟ, ଉପାଦାନ ଓ ସମୟ ଆବଶ୍ୟକ, ସେ ତ ବର୍ତ୍ତମାନ ମୋ ହାତରେ ନାହିଁ ! ଲେଖିଲେ ମଧ୍ୟ ସେହିପରି 'ହରିବୋଲିଆ' ହୋଇଯିବ । ଯଦି ଚଳିବ – ମୋର ଆପତ୍ତି ନାହିଁ ।

ଭଦ୍ରକ ଆସିବାର ମୋ ଅନ୍ୟତମ ଉଦ୍ଦେଶ୍ୟ ହେଉଛି, ଆଖଣ୍ଡଳମଣି ଦର୍ଶନକୁ ଯିବା । ଏପରି ତାରିଖ ବ୍ୟବସ୍ଥା କରିବେ, ଆପଣଙ୍କ ସାନ୍ନିଧ ଯେପରି ମିଳିବ । ପୁଣି, ଦିଅଁ ଦେଖା ମୂଆଁ ବିକା ଏକା ସାଙ୍ଗରେ ଚଳିବ । ଆଶା କରେଁ ସପରିବାର କୁଶଳରେ ଥିବେ ।

ଶୁଭଚିନ୍ତକ
ସୁରେନ୍ଦ୍ର ମହାନ୍ତି''

୧୯୭୧ ମସିହା ପ୍ରଥମ ଭାଗରେ ଭଦ୍ରକ କଲେଜ ସରକାରୀ ପ୍ରତିଷ୍ଠାନରେ ପରିଣତ ହେଲା । ସେଠାରେ ପ୍ରାୟ ପନ୍ଦର ବର୍ଷ ଅଧ୍ୟାପନା କାର୍ଯ୍ୟ କଲା ପରେ ମୋତେ ମୟୂରଭଞ୍ଜ ଜିଲ୍ଲା ବାରିପଦାସ୍ଥ ମହାରଜା ପୂର୍ଣ୍ଣଚନ୍ଦ୍ର କଲେଜକୁ ସ୍ଥାନାନ୍ତରିତ କରାଗଲା । ବାରିପଦାକୁ ମଧ୍ୟ ସୁରେନ୍ଦ୍ର ବାବୁଙ୍କୁ ନିମନ୍ତ୍ରଣ କରିଥିଲି । ସେତେବେଳେ ତାଙ୍କ ସହ ପତ୍ରାଳାପ ମଧ୍ୟ ଚାଲିଥିଲା । ତାଙ୍କର ଖଣ୍ଡିଏ ପତ୍ରର ଉଦାହରଣ ଦେଉଛି ।

''ଶିବାନୀ
ପୋ : କଟକ-।
ତା. ୨୮.୧୨.୭୨

ପ୍ରୀତିଭାନେଷୁ,

କଲେଜର ସାହିତ୍ୟ ସମାଜ ପକ୍ଷରୁ ଆପଣଙ୍କ ସଶ୍ରଦ୍ଧ ଆମନ୍ତ୍ରଣ ପାଇଁ ଧନ୍ୟବାଦ । ମାତ୍ର ଜାନୁୟାରୀ ଶେଷ ସପ୍ତାହ ବେଳକୁ କେତେକ କାର୍ଯ୍ୟୋପଲକ୍ଷରେ ମୋତେ ବମ୍ବେ

ଯିବା ପାଇଁ ପଡୁଛି । ସେଥିପାଇଁ ମଧ୍ୟ ପୂର୍ବରୁ କାର୍ଯ୍ୟକ୍ରମ ସ୍ଥିର ହୋଇ ସାରିଛି । ଏ ପରିସ୍ଥିତିରେ ବାରିପଦା ଆସିପାରିବା ସମ୍ଭବ ହୋଇପାରିବ ନାହିଁ ।

ପ୍ରାଚୀନ ଓଡ଼ିଆ ସାହିତ୍ୟର ବୈଶିଷ୍ଟ୍ୟ ମୁଁ ଆଂଶିକ ଭାବରେ 'ଓଡ଼ିଆ ସାହିତ୍ୟର ମଧ୍ୟପର୍ବ'ରେ ଆଲୋଚନା କରିଛି । ଏହା ସର୍ବଭାରତୀୟ ସାହିତ୍ୟର ଆଭିମୁଖ୍ୟଠାରୁ ଦୂରବର୍ତ୍ତୀ ନୁହେଁ । ବସ୍ତୁତଃ ଏହା Pan-Indian । ସର୍ବଭାରତୀୟ ସ୍ତରରେ ଓଡ଼ିଆ ସାହିତ୍ୟ ? ଏକ ଗ୍ଲାନିପୂର୍ଣ୍ଣ ପ୍ରଶ୍ନବାଚକ । ସର୍ବଭାରତୀୟ ସ୍ତରରେ ଓଡ଼ିଶା ଓ ଓଡ଼ିଆ ଆଜି କେଉଁଠି ? ଏ ଦୁଇଟି ପ୍ରଶ୍ନର ଉତ୍ତର ସମବର୍ତ୍ତୀ । ମୁଁ ଲେଖିଥିଲେ ଏହି ବିଷୟ ଉପରେ ଲେଖିଥାନ୍ତି ।

କଥା ସାହିତ୍ୟର ଭବିଷ୍ୟତ... ସଦ୍ୟ ପ୍ରକାଶିତ Bernard Bergonziଙ୍କ The Situation of the Novel (Macmillan) ପୁସ୍ତକର ଉପସଂହାରରେ Evelyn Waugh ଙ୍କ The Ordeal of Gilbert Pinfold ଉପନ୍ୟାସ ଏହିପରି ଭାବରେ ଆରମ୍ଭ ହୋଇଛି – "It may happen in the next hundred years that the English novelists of the present day will come to be valued as we now value the artists and craftsmen of the late nineteenth century. The originators, the exuberant men are extinct and in their place moderately flourishes a generation notable for elegance and a variety of contrivance." କଥା ସାହିତ୍ୟର ଭବିଷ୍ୟତ ସଂପର୍କରେ ଉକ୍ତ ଉପରୋକ୍ତ ଉଦ୍ଧୃତିରେ ସୁସ୍ପଷ୍ଟ ।

ଆଶା କରେଁ ଆପଣ ସପରିବାର କୁଶଳରେ ଥିବେ । ବର୍ଷାନ୍ତର ଶୁଭେଚ୍ଛା ସହ –

ସୁରେନ୍ଦ୍ର ମହାନ୍ତି"

୧୯୭୫ ମସିହା ମଧ୍ୟ ଭାଗରେ ବାରିପଦାରୁ ମୋର କଟକ ରେଭେନ୍ସା କଲେଜକୁ ବଦଳି ହେବାରୁ ସୁରେନ୍ଦ୍ର ବାବୁଙ୍କ ସହ ଆଉ ପତ୍ରାଳାପର ଆବଶ୍ୟକତା ରହିଲା ନାହିଁ; ପୁଣି ତାଙ୍କ ସହିତ ବାରମ୍ବାର ସାକ୍ଷାତ ଆଲୋଚନାର ସୁଯୋଗ ମିଳିଲା । ମୁଁ ସୁବିଧା ଓ ସମୟ ପାଇଲା ମାତ୍ରେ ତାଙ୍କର କଟକସ୍ଥ ବାସଭବନକୁ ଚାଲି ଯାଉଥିଲି; ସେ କିନ୍ତୁ ନିଜର ଶାରୀରିକ ପ୍ରତିବନ୍ଧକତା ହେତୁ ମୋ ବସାଘରକୁ ଆସୁଥିଲେ କମ୍ । ମୋର ଯିବାରେ କେବେ କେମିତି ମାସେ-ପନ୍ଦର ଦିନ ଡେରି ହୋଇଗଲେ, ଯିବା ପାଇଁ ଡକାଇ ପଠାଉଥିଲେ । ତାଙ୍କ ସହିତ ଏକାଠି ବସି ଦୀର୍ଘକାଳ ଆଳାପ-ଆଲୋଚନା କରିବାକୁ ମୋତେ ଯେପରି ସନ୍ତୋଷ ମିଳୁଥିଲା, ତାଙ୍କୁ ସେହିପରି ଆନନ୍ଦ ଦେଉଥିଲା । ଚା'

ସହିତ ପକୁଡ଼ିର ଚାଟ୍ ଏବଂ ତାଙ୍କର ଧୂମପାନ (ମୁଁ ଧୂମପାନ ଅନେକ ଦିନରୁ ଛାଡ଼ି ଦେଇଛି) ଆମର ଆଳାପ ଆଲୋଚନାକୁ ଜମ୍‌ଜମାଟ୍ କରି ରଖୁଥିଲା ।

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଦାକ୍ଷିଣାତ୍ୟ ବିଜୟନଗରର ରାଜା କୃଷ୍ଣଦେବରାୟ ଏବଂ ଓଡ଼ିଶାର ଗଜପତି ପ୍ରତାପରୁଦ୍ର ଦେବଙ୍କ କନ୍ୟାଙ୍କର ଅସଫଳ ବିବାହ ବ୍ୟାପାରାଦି ଘେନି ସୁରେନ୍ଦ୍ର ବାବୁ 'କୃଷ୍ଣାବେଣୀରେ ସନ୍ଧ୍ୟା' ଉପନ୍ୟାସ ଲେଖୁଥାଆନ୍ତି କିମ୍ବା ଲେଖିବାର ପରିକଳ୍ପନା କରିଥାଆନ୍ତି । ଦିନେ ମୋତେ ପଚାରିଲେ – ଏହି କଥାବସ୍ତୁ ଘେନି ଓଡ଼ିଆରେ କି କି ଲେଖା ରହିଛି । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କର କେତେକ ଐତିହାସିକ ଲେଖା ଏବଂ ତାରିଣୀ ଚରଣ ରଥଙ୍କର 'ଅନ୍ନପୂର୍ଣ୍ଣା' (୧୯୨୨) ଉପନ୍ୟାସ କଥା ମୁଁ ତାଙ୍କୁ କହିଲି । ଡକ୍ଟର ପାଣିଗ୍ରାହୀଙ୍କ ସଂପର୍କିତ ଲେଖା ସେ ପଢ଼ିଛନ୍ତି ବୋଲି ମୋତେ ଜଣାଇଲେ ଏବଂ 'ଅନ୍ନପୂର୍ଣ୍ଣା' ଉପନ୍ୟାସଟି ତାଙ୍କୁ ଯୋଗାଇ ଦେବା ପାଇଁ ଅନୁରୋଧ କଲେ । ମୋ ପାଖରେ ଥିବା ସେହି ଉପନ୍ୟାସଟି ଆଣି ତାଙ୍କୁ ଦେଲି ଏବଂ ସୂଚାଇ ଦେଲି ଯେ – ତାରିଣୀ ଚରଣଙ୍କ ଉପନ୍ୟାସଟି ଘଟଣାପ୍ରଧାନ; ଚରିତ୍ର ଚିତ୍ରଣର ଗୁରୁତ୍ୱ ତହିଁରେ ନାହିଁ । ଆପଣ ଚରିତ୍ର ରୂପାୟନ ପ୍ରତି ବିଶେଷ ଧ୍ୟାନ ଦେବେ । ଦୁଃଖର କଥା, 'ଅନ୍ନପୂର୍ଣ୍ଣା' ଉପନ୍ୟାସଟି ମୋତେ ଫେରସ୍ତ ଦେବାକୁ କହି ସୁରେନ୍ଦ୍ର ବାବୁ ଫେରାଇ ଦେଇ ପାରିଲେ ନାହିଁ । ପୁସ୍ତକଟି ସେତେବେଳେ ଦୁଷ୍ପ୍ରାପ୍ୟ ଥିଲା । ଏବେ ଅବଶ୍ୟ ସେହି ଉପନ୍ୟାସଟି ଅଂଗୀଭୂତ ହୋଇ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ତାରିଣୀଚରଣ ଗ୍ରନ୍ଥାବଳୀ ପ୍ରକାଶ ଲାଭ କରିଛି । ଘଟଣା-ବିନ୍ୟାସ ଓ ଚରିତ୍ର ଚିତ୍ରଣରେ 'ଅନ୍ନପୂର୍ଣ୍ଣା'ଠାରୁ 'କୃଷ୍ଣାବେଣୀରେ ସନ୍ଧ୍ୟା' ଯେ ଉନ୍ନତତର ହୋଇଛି, ଏଥିରେ ସନ୍ଦେହ ନାହିଁ ।

ସୁରେନ୍ଦ୍ର ବାବୁ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଥିବା ସମୟରେ ୧୯୮୨ ମସିହା ଡିସେମ୍ବର ମାସରେ ଭୁବନେଶ୍ୱରଠାରେ ପ୍ରାୟ ଦଶଦିନ ବ୍ୟାପୀ ଏକାଡ଼େମୀର ରଜତ ଜୟନ୍ତୀ ଉତ୍ସବ ପାଳିତ ହୋଇଥିବା ଆମର ସାଂସ୍କୃତିକ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ସେତେବେଳେ କବି ରାଧାମୋହନ ଗଡ଼ନାୟକ ଏକାଡ଼େମୀର ଉପସଭାପତି ଏବଂ ବିଜ୍ଞାନୀ-ସମୀକ୍ଷକ ଶ୍ରୀ ରାଇଚରଣ ଦାସ ସଚିବ ଭାବରେ କାର୍ଯ୍ୟ କରୁଥାଆନ୍ତି । ସେହି ଉତ୍ସବରେ 'ଓଡ଼ିଆ ସାହିତ୍ୟର ବିକାଶଧାରା' ବିଭାଗଟି ଆମର 'ଓଡ଼ିଆ ଗବେଷଣା ପରିଷଦ' (୧୯୮୦) କର୍ତ୍ତୃକ ଆୟୋଜିତ ଓ ପରିଚାଳିତ ହେଉଥାଏ । ପ୍ରଦର୍ଶନୀରେ ସାହିତ୍ୟର ବିକାଶଧାରା ମଣ୍ଡପରେ କେବଳ ନୂତନ ଧାରା ପ୍ରବର୍ତ୍ତନ କରିଥିବା (Trend-Setter) ଓଡ଼ିଆ ସାହିତ୍ୟ-ଗ୍ରନ୍ଥଗୁଡ଼ିକୁ ସଂକ୍ଷିପ୍ତ ବିବରଣୀ ସହ ପ୍ରଦର୍ଶିତ କରିବା ପାଇଁ ଏକାଡ଼େମୀ କର୍ତ୍ତୃପକ୍ଷ ଆମକୁ ନିର୍ଦ୍ଦେଶ ଦେଇଥିଲେ । ତଦନୁଯାୟୀ ଆମେ ସାହିତ୍ୟର ବିକାଶଧାରା ପ୍ରଦର୍ଶନୀ-ମଣ୍ଡପଟି ସଜାଇଥିଲୁଁ । କିନ୍ତୁ ପ୍ରଦର୍ଶନୀରେ କେତେଜଣ

କବି-ଲେଖକଙ୍କର ପୁସ୍ତକ ସ୍ଥାନ ପାଇ ନ ଥିବାରୁ ସଭାସ୍ଥଳରେ ସେମାନେ ପାଟିତୁଣ୍ଡ କରିବାରେ ଲାଗିଲେ ଏବଂ ସୁରେନ୍ଦ୍ର ବାବୁଙ୍କ ନିକଟରେ ଆମ ବିପକ୍ଷରେ ଅଭିଯୋଗ କଲେ । ସୁରେନ୍ଦ୍ର ବାବୁ ମୋତେ ଡକାଇ ଜନାନ୍ତିକେ କହିଲେ – ଏଇ କେତେଜଣଙ୍କର କିଛି ବହି ପ୍ରଦର୍ଶନୀରେ ସ୍ଥାନିତ କରି ପାରିଲେ ଭଲ ହୁଅନ୍ତା । ମୁଁ କହିଲି – ଏହା ତ ବହିମେଳା ବା ସାଧାରଣ ପୁସ୍ତକ ପ୍ରଦର୍ଶନୀ ନୁହେଁ । ଆମ ବିବେଚନାରେ ଯେଉଁଗୁଡ଼ିକ Trend Setter ଗ୍ରନ୍ଥ, ସେହିଗୁଡ଼ିକ ହିଁ ମଣ୍ଡପରେ ପ୍ରଦର୍ଶିତ ହୋଇଛି । ଆପତ୍ତି-ଅଭିଯୋଗ କରୁଥିବା ବ୍ୟକ୍ତିମାନେ ଏ କଥା ବୁଝିବା ଦରକାର । ସୁରେନ୍ଦ୍ର ବାବୁ ଉତ୍ତର ଦେଲେ – ଯାହାହେଉ, ଏହି ଅଳ୍ପ କେତେଜଣଙ୍କର ଖଣ୍ଡେ ଦୁଇ ଖଣ୍ଡ ଲେଖାଏଁ ବହି ମଣ୍ଡପ-ଥାକରେ ଖାଲି ଥୋଇ ଦିଅନ୍ତୁ ! ନୋହିଲେ, ସେମାନେ ଆମ ପାଇଁ ସମସ୍ୟା ସୃଷ୍ଟି କରିବେ । ଏହି ପ୍ରସଙ୍ଗରେ ସେଦିନ ସୁରେନ୍ଦ୍ର ବାବୁ କ୍ଷୋଭ ପ୍ରକାଶ ପୂର୍ବକ ଯେଉଁ ଇଂରାଜୀ କଥାଟି କହିଥିଲେ, ତାହା ମୋର ସ୍ପଷ୍ଟ ମନେ ଅଛି – Democracy is meant for mediocres, not for excellence ।

ପ୍ରଦର୍ଶନୀ-ମଣ୍ଡପରେ ସେହି କେତେଜଣ କବି-ଲେଖକଙ୍କ କିଛି ବହି ଥୋଇ ଦିଆଗଲା ପରେ ବି ଆମ ଉପରେ ସେମାନଙ୍କର କ୍ରୋଧ ଊଣା ହେଲା ନାହିଁ । ସେମାନେ ସମ୍ବାଦପତ୍ର ପୃଷ୍ଠାରେ ତଥା ଏକାଡ଼େମୀର ବିଭିନ୍ନ ବୈଠକରେ 'ଓଡ଼ିଆ ଗବେଷଣା ପରିଷଦ' – ବିଶେଷତଃ ରଜତ ଜୟନ୍ତୀ ଉତ୍ସବର ସଂଚାଳକମାନଙ୍କ ବିରୁଦ୍ଧରେ ନାନା ପ୍ରକାର ଅଭିଯୋଗ ଆଣିବାରେ ଲାଗିଲେ । ପ୍ରଧାନ ଅଭିଯୋଗ – ରଜତ ଜୟନ୍ତୀ ଉତ୍ସବ ପାଇଁ ଏକାଡ଼େମୀ କର୍ତ୍ତୃପକ୍ଷଙ୍କର ଅଯଥା ଓ ଅତିରିକ୍ତ ଖର୍ଚ୍ଚ, ଜନସାଧାରଣଙ୍କ ଧନର ଅପବ୍ୟବହାର । ସଭାପତି ଭାବରେ ସୁରେନ୍ଦ୍ର ବାବୁ ଏ ଅଭିଯୋଗ ସବୁ ଦୃଢ଼ ଭାବରେ ଖଣ୍ଡନ କରିଥିଲେ ଏବଂ ଚାରିଆଡ଼େ କହିଥିଲେ ଯେ – ଦଶଦିନ କାଳ ଏକାଡ଼େମୀର ରଜତ ଜୟନ୍ତୀ ଉତ୍ସବରେ ଯେଉଁସବୁ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା, ରାଜ୍ୟର ଲକ୍ଷ ଲକ୍ଷ ନରନାରୀ ତାହା ଦେଖିଛନ୍ତି ଏବଂ ଆମର ସାଂସ୍କୃତିକ ଐତିହ୍ୟ ସଂପର୍କରେ ଅବହିତ ହୋଇଛନ୍ତି; ଏଥିରେ ଜନସାଧାରଣଙ୍କ ଧନର ସଦୁପଯୋଗ କରାଯାଇଛି ।

ବ୍ୟକ୍ତିଗତ ଭାବରେ ସୁରେନ୍ଦ୍ର ଥିଲେ ମୋର ହିତୈଷୀ ଓ ଅନ୍ତରଂଗ ଦୋସର । ତାଙ୍କ କଥାସାହିତ୍ୟ-ସୃଷ୍ଟିର ମୁଁ ଜଣେ ମୁଗ୍ଧ ପାଠକ ଏବଂ ତାଙ୍କ ଦ୍ୱାରା ପ୍ରଭାବିତ ଜଣେ ଗାଳ୍ପିକ-ଗାଳ୍ପିକ । ତାଙ୍କର ଅବର୍ତ୍ତମାନରେ ବେଳେ ବେଳେ ମୁଁ ଯେପରି ନିଜକୁ ବଡ଼ ନିଃସଂଗ ମନେ କରେଁ, ସେହିପରି ତାଙ୍କର ବହୁ କଥା ଓ ପରାମର୍ଶ ସ୍ମରଣ କରି ଅଗ୍ରଗତି ପାଇଁ ପ୍ରେରଣା ପାଏଁ ।

# ଗବେଷଣାର ଗାଇଡ୍ : ପ୍ରହ୍ଲାଦ ପ୍ରଧାନ

୧୯୫୨ କିମ୍ବା ୫୩ ମସିହାର କଥା । ପୂର୍ବରୁ ତାଙ୍କର ନାମ ଶୁଣିଥିଲି; ଚୀନା ଦେଶରୁ ତାଙ୍କର ପ୍ରତ୍ୟାବର୍ତ୍ତନର ସମ୍ବାଦ ପାଇଥିଲି । ଶାନ୍ତିନିକେତନ ଆଶ୍ରମ ପରିସର ମଧ୍ୟରେ ପ୍ରଥମ ସାକ୍ଷାତ । ହୃଷ୍ଟପୁଷ୍ଟ-ଦୀର୍ଘ ଶରୀର, ଦାର୍ଶନିକ-ସୁଲଭ ବୁଦ୍ଧିଦୀପ୍ତ ଦୃଷ୍ଟି, ଉନ୍ନତ ପ୍ରଶସ୍ତ ଲଲାଟ ଏବଂ ଉପରି ଭାଗରେ କେଶହୀନ ମସ୍ତକ । ମୋର ସ୍ୱର୍ଗୀୟ ପିତାଙ୍କ ଚେହେରା ସହ ଅପୂର୍ବ ସାଦୃଶ୍ୟ । ଅବଚେତନରେ ତାହା ଯେପରି ଛାପ ପକାଇଦେଲା ! ସେତେବେଳେ ତାଙ୍କର ପରିବାର ଶାନ୍ତିନିକେତନରେ ରହୁଥାନ୍ତି – ପାଠ ଭବନ, ଶିକ୍ଷା ଭବନ ପ୍ରଭୃତିରେ ତାଙ୍କର ପିଲାମାନେ ପାଠ ପଢୁଥାନ୍ତି । ସ୍ତ୍ରୀ ସୁଗୃହିଣୀ । ପ୍ରଥମ ସାକ୍ଷାତରେ ହିଁ ମଧୁର ବ୍ୟବହାରରେ ମୋତେ ଆପଣାର କରିପକାଇଲେ । ଶାନ୍ତିନିକେତନରେ ସେତେବେଳେ ଓଡ଼ିଆ ଛାତ୍ର ଓ ଶିକ୍ଷକଙ୍କ ସଂଖ୍ୟା ଥିଲା ଅତ୍ୟନ୍ତ ଊଣା । ବିଦ୍ୟାଭବନରେ ସ୍ନାତକୋତ୍ତର ଓଡ଼ିଆ ଭାଷା-ସାହିତ୍ୟ ଶ୍ରେଣୀର ଛାତ୍ରଙ୍କ ସମେତ ଆଉ ଆଉ ଭବନର ଛାତ୍ରଛାତ୍ରୀଙ୍କୁ ଘେନି ସର୍ବମୋଟ ପଚିଶ କି ତିରିଶ । ଛାତ୍ରଛାତ୍ରୀମାନେ ଅନେକ ସମୟରେ ପ୍ରହ୍ଲାଦ ବାବୁଙ୍କ ଘରେ, ନୋହିଲେ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଘରେ ଯାଇ ଭିଡ଼ ଜମାନ୍ତି । ପ୍ରହ୍ଲାଦ ବାବୁଙ୍କ ସହ ମୋର ସଂପର୍କର ସୂତ୍ରପାତ ସେଇଠୁ । ସେହି ସଂପର୍କ କେବଳ ବିଦ୍ୟାଗତ ବା ଗବେଷଣାଗତ ସଂପର୍କ ନୁହେଁ, ଘନିଷ୍ଠ ପାରିବାରିକ ସଂପର୍କ ମଧ୍ୟ ।

ଶାନ୍ତିନିକେତନରୁ ଆସି ବର୍ଷେକାଳ 'ଡଗର' ପତ୍ରିକାର ସଂପାଦକୀୟ ବିଭାଗରେ କାର୍ଯ୍ୟ କଲି । ସେତେବେଳକୁ ପ୍ରହ୍ଲାଦ ବାବୁ କଟକ ରେଭେନ୍‌ସା କଲେଜରେ । ମଝିରେ ମଝିରେ ସାକ୍ଷାତ ହେଉଥାଏ । 'ଡଗର'ରୁ ଯାଇ ୧୯୫୬ ମସିହାରେ ଭଦ୍ରକ କଲେଜରେ ଅଧ୍ୟାପନା କାର୍ଯ୍ୟ ଆରମ୍ଭ କଲି । ତା'ପରେ ପ୍ରଥମ ସାକ୍ଷାତରେ ପ୍ରହ୍ଲାଦ ବାବୁଙ୍କର ପରାମର୍ଶ ହେଲା – ପତ୍ରପତ୍ରିକାରେ ଏଣୁ ତେଣୁ ଯାହା ଲେଖୁଛ ଲେଖ ! ମାତ୍ର ଏବେ ତମ ପକ୍ଷରେ କିଛି ଗୋଟାଏ 'ସଲିଡ୍' କାର୍ଯ୍ୟ ଆରମ୍ଭ କରିବା ଉଚିତ୍ ହେବ । ଦୁଇ ବର୍ଷ ହାଇ ମାରୁ ମାରୁ ଅତିକ୍ରାନ୍ତ ହୋଇଗଲା । 'ସଲିଡ୍' କାର୍ଯ୍ୟଟାଏ ଆରମ୍ଭ କରିବା ମୋ ପକ୍ଷରେ ସମ୍ଭବ ହୋଇପାରିଲା ନାହିଁ । ପ୍ରହ୍ଲାଦ ବାବୁଙ୍କ ପରାମର୍ଶ ମଝିରେ ମଝିରେ କଣ୍ଟକ ପରି ଛାତିକୁ ବିଦ୍ଧ କରୁଥାଏ । ଇତି ମଧ୍ୟରେ ପାରଳାଖେମୁଣ୍ଡି କଲେଜରେ ସରକାରୀ କର୍ମନିଯୁକ୍ତିକୁ ଏଡ଼ାଇ ଦେଇ ବେସରକାରୀ ଭଦ୍ରକ କଲେଜରେ ବରାବର ରହିଯିବା ଲାଗି ସ୍ଥିର କରି ସାରିଥାଏଁ । ଭଦ୍ରକରେ ସ୍ନାତକୋତ୍ତର ଶ୍ରେଣୀ ଖୋଲିବା ଏବଂ ନିକଟ ଭବିଷ୍ୟତ୍‌ରେ ସେଠାରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ଲକ୍ଷ୍ୟରେ କଲେଜ କର୍ତ୍ତୃପକ୍ଷ

ଆମକୁ ଗବେଷଣା କରିବା ପାଇଁ ଉତ୍ସାହିତ କଲେ – କିଛି କିଛି ସୁବିଧା ସୁଯୋଗ ଯୋଗାଇ ଦେଲେ ମଧ୍ୟ । ଆଉ ସ୍ଥିର ହୋଇ ରହିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ସେତେବେଳକୁ ପ୍ରହ୍ଲାଦ ବାବୁ ଉତ୍କଳ ବିଶ୍ୱବିଦ୍ୟାଳୟର ସଂସ୍କୃତ ବିଭାଗରେ ଯୋଗ ଦେଇ ସାରିଥାନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟର ଅଫିସ୍ ଓ ଶିକ୍ଷାଦାନୀ ବିଭାଗଗୁଡ଼ିକ ସେତେବେଳେ କଟକରେ ଥାଏ । କଟକ ଆସି ମୁଁ ପ୍ରହ୍ଲାଦବାବୁଙ୍କ ଠାରୁ 'ଓଡ଼ିଆ ଉପନ୍ୟାସ' ବିଷୟରେ ଗବେଷଣା କାର୍ଯ୍ୟ ପାଇଁ ଏକ ସ୍କିମ୍ କରାଇ ନେଇଗଲି ।

ଏଠାରେ ସୂଚାଇ ଦେବା ଉଚିତ୍ ହେବ ଯେ – ସେତେବେଳକୁ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ଫିଟି ନଥାଏ । ଯଦିଚ ଏହାର ଯଥେଷ୍ଟ ପୂର୍ବରୁ ଅର୍ଥାତ୍ ୧୯୪୩ ମସିହାରୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ସାରିଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ଫିଟିଲା ମୋର ଗବେଷଣା କାର୍ଯ୍ୟ ସରିବାର ଦୁଇବର୍ଷ ପରେ ଏବଂ ଶାନ୍ତିନିକେତନସ୍ଥ ବିଶ୍ୱଭାରତୀରେ ଓଡ଼ିଆ ଭାଷା-ସାହିତ୍ୟ ବିଭାଗ ଫିଟିବାର ସତର ବର୍ଷ ପରେ – ଅର୍ଥାତ୍ ୧୯୬୮ ମସିହାରେ । ତାହା ପୁଣି ଫିଟିଲା – ଭାରତର ଜଣେ ଅଣଓଡ଼ିଆ ରାଷ୍ଟ୍ରପତି ଏ ସଂପର୍କରେ ଖେଦୋକ୍ତି ପ୍ରକାଶ କରିବା ପରେ । ସେତେବେଳେ ଓଡ଼ିଆ ଭାଷା-ସାହିତ୍ୟ କ୍ଷେତ୍ରରେ ଉଚ୍ଚ ଶିକ୍ଷା ପ୍ରତି ସରକାରୀ ତଥା ବେସରକାରୀ କର୍ତ୍ତୃପକ୍ଷଙ୍କର ଉଦାସୀନତା ଜଣାପଡୁଥିଲା । ଓଡ଼ିଆ ଭାଷା-ସାହିତ୍ୟ ଅଧ୍ୟୟନ ତଥା ଅଧ୍ୟାପନାକୁ ଅନେକେ ଅତି ସହଜ ଏବଂ ଅଧମ ବା ମଧ୍ୟମ ଶ୍ରେଣୀୟ ଲୋକଙ୍କର କାର୍ଯ୍ୟ ବୋଲି ବିଚାରୁଥିଲେ । ମୋ ଜାଣିବାରେ ଏହାର ବହୁ ଦୃଷ୍ଟାନ୍ତ ଥିଲେ ହେଁ, ଏଠାରେ ପ୍ରାସଙ୍ଗିକତା ଦୃଷ୍ଟିରୁ ଗୋଟିଏ ଯୋଡ଼ିଏ ଘଟଣା ଉଲ୍ଲେଖ କରିବି ।

ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ୧୯୬୬ ମସିହାରେ ମୋର ପିଏଚ୍.ଡ଼ି. ପରୀକ୍ଷା ଫଳ ଘୋଷଣା କରିବା ପରେ ପରେ ପ୍ରଫେସର ଡକ୍ଟର ରାଧାନାଥ ରଥ ଓ ପ୍ରଫେସର ଡକ୍ଟର ଲକ୍ଷ୍ମୀର କୁମାର ମହାପାତ୍ର କ'ଣ ଗୋଟାଏ ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ ଭଦ୍ରକ କଲେଜକୁ ଯାଇଥାନ୍ତି । ସେମାନେ ରହୁଥାନ୍ତି କଲେଜ ଗେଷ୍ଟ ହାଉସ୍‌ରେ । ରାଧାନାଥ ବାବୁ ମୋର ଶିକ୍ଷକ ଥିବାରୁ ମୁଁ ତାଙ୍କୁ ଦେଖା କରିବା ପାଇଁ ଗଲି । ରାଧାନାଥ ବାବୁ ଲକ୍ଷ୍ମଣ ବାବୁଙ୍କ ସହିତ ମୋର ପରିଚୟ କରାଇ ଦେଇ ନିକଟରେ ମୁଁ ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ଡକ୍ଟରେଟ୍ ପାଇଥିବା କଥା ସୂଚାଇ ଦେଲେ । ତହୁଁ ଲକ୍ଷ୍ମଣବାବୁ ଏପରି ଏକ ଦୃଷ୍ଟିରେ ମୋତେ ଚାହିଁ ରହିଲେ ଯେ ମୁଁ ଲଜ୍ଜା ଓ ଗ୍ଲାନିରେ ଟିକିଏ ସଂକୁଚିତ ହୋଇଗଲି । ଲକ୍ଷ୍ମଣବାବୁଙ୍କର ସେ ଦୃଷ୍ଟିରେ ଥିଲା କିଛି ଅବିଶ୍ୱାସ, କିଛି ବିଦ୍ରୂପ ଓ କିଂଚିତ୍ ଅବହେଳା । ଅର୍ଥାତ୍ ଓଡ଼ିଆରେ ଡକ୍ଟରେଟ୍‌ର ମୂଲ୍ୟ କ'ଣ ? କାହିଁକି ଏ ସହଜ କାର୍ଯ୍ୟ ! ମୋର

ସଂକୁଚିତ ଭାବ ଲକ୍ଷ୍ୟ କରି ରାଧାନାଥ ବାବୁ ସେଠି ଲକ୍ଷ୍ମଣବାବୁଙ୍କ ଆଗରେ ସଫେଇ ଦେଲେ – 'ନା, ନା, କୃଷ୍ଣ ଭଲ କାମଟିଏ କରିଛି ବୋଲି ଶୁଣୁଛି । ସେ ଉପରେ ଉପରେ ଭାସିବା ଲୋକ ନୁହେଁ ।' ସେ ଦିନର ଏ ଘଟଣା ମୁଁ କେବେ ପାସୋରି ପାରିବି ନାହିଁ ।

ସେତେବେଳେ ଭଦ୍ରକ କଲେଜରେ ଦ୍ରୁତ ଗତିରେ ସଂପ୍ରସାରଣ କାର୍ଯ୍ୟ ଚାଲିଥାଏ । କୋଠାବାଡ଼ି ନିର୍ମାଣ, ଅଧ୍ୟୟନ ଅଧ୍ୟାପନା ପାଇଁ ନୂଆ ନୂଆ ବିଷୟ ଖୋଲା, ବିଭିନ୍ନ ବିଷୟରେ ଅନର୍ସ୍ ପାଠ୍ୟକ୍ରମ ପ୍ରବର୍ତ୍ତନ, ଇତ୍ୟାଦି ଇତ୍ୟାଦି । ଓଡ଼ିଆ ଭାଷା-ସାହିତ୍ୟରେ ଅନର୍ସ୍ ଖୋଲିବା ପାଇଁ ମୁଁ କଲେଜ କର୍ତ୍ତୃପକ୍ଷଙ୍କୁ ବାରମ୍ବାର ଅନୁରୋଧ କଲି । ମୋ କଥାକୁ କେହି କର୍ଣ୍ଣପାତ କଲେ ନାହିଁ । ମୋତେ କୁହାଗଲା, ମୁଖ୍ୟ ଅଧ୍ୟାପକ ଭାବରେ ତମର ଆଠ ବର୍ଷ ଶିକ୍ଷା-ଦାନର ଅଭିଜ୍ଞତା ନ ହେଲା ଯାଏଁ ବିଶ୍ୱବିଦ୍ୟାଳୟ ଓଡ଼ିଆରେ ଅନର୍ସ୍ ଖୋଲିବାକୁ ଅନୁମତି ଦେବ ନାହିଁ । ବୁଝିପାରିଲି ଏହା ଏକ ପ୍ରକାର ପିଲାଭଣ୍ଡାଣ କଥା । ମୋରି ଆଖି ଆଗରେ କେତେକ ବିଷୟରେ ଅନର୍ସ୍ ଖୋଲି ଯାଉଛି, ଯାହାର ମୁଖ୍ୟ ଅଧ୍ୟାପକଙ୍କର ଆଠ ବର୍ଷର ଅଭିଜ୍ଞତା ନାହିଁ । କିନ୍ତୁ ଓଡ଼ିଆ ଅନର୍ସ୍ କଥା ଉଠିଲା ବେଳକୁ ଏ ନିୟମ କାହିଁକି ? କ'ଣ କରିବି ? ୧୯୬୪ ମସିହାଯାଏଁ ମନ ମାରି ରହିଲି । ମୋର ଆଠ ବର୍ଷର ଅଭିଜ୍ଞତା ହେଲା, ହାତୀ ସୁନା କଳସ ଢାଳିଲା ।

ଭଦ୍ରକ କଲେଜରେ ଓଡ଼ିଆ ଅନର୍ସ୍ ପାଠ୍ୟକ୍ରମ ଫିଟିବା ସହିତ ମୋର ଗବେଷଣା କାର୍ଯ୍ୟର କିଛି ସଂପର୍କ ମଧ୍ୟ ରହିଛି । ପୂର୍ବରୁ ପ୍ରହ୍ଲାଦବାବୁଙ୍କଠାରୁ ଗବେଷଣା-ପ୍ରକଳ୍ପର ସ୍କିମ୍‌ଟିଏ କରାଇ ଆଣି ଧୀରେ ସୁସ୍ଥେ କାର୍ଯ୍ୟ କରୁଥିଲି । ମୟୂରଭଂଜ, ନୀଳଗିରି, କେନ୍ଦୁଝର, କଟକ, ଭୁବନେଶ୍ୱର ପ୍ରଭୃତି ସ୍ଥାନକୁ ଯାଇ ତଥ୍ୟ-ଉପାଦାନାଦି ସଂଗ୍ରହ କରୁଥିଲି । ବିଭିନ୍ନ ପ୍ରବୀଣ ସାହିତ୍ୟିକ ଓ ସଂସ୍କୃତିପ୍ରେମୀ ବ୍ୟକ୍ତିଙ୍କ ସହ ସାକ୍ଷାତକାର ଜରିଆରେ ଉପନ୍ୟାସ ସଂପର୍କରେ ଆଲୋଚନା କରୁଥିଲି । ଅନର୍ସ୍ ଶ୍ରେଣୀ ଫିଟିବା ପରେ ମୁଁ ଗବେଷଣା-କାର୍ଯ୍ୟରେ ବିଶେଷ ସକ୍ରିୟ ହୋଇ ପଡ଼ିଲି । କାର୍ଯ୍ୟର ଗତି ତ୍ୱରାନ୍ୱିତ କରିବା ପାଇଁ ପ୍ରଚୋଦିତ ହେଲି । କାରଣ ମୁଁ ଭାବିଲି – ଓଡ଼ିଆ ଭାଷା-ସାହିତ୍ୟର ଉଚ୍ଚତର ଅଧ୍ୟାପନା ପାଇଁ ମୋତେ ନିଜକୁ ଅଧିକ ଯୋଗ୍ୟ କରିବାକୁ ହେବ ଅବିଳମ୍ବେ ।

ଗବେଷଣା-କାର୍ଯ୍ୟର ଚାରିଟି ସ୍ତର ବିଷୟରେ ପ୍ରହ୍ଲାଦବାବୁ ମୋତେ ସୂଚାଇ ଦେଇଥିଲେ । ପ୍ରଥମ ସ୍ତର – ତଥ୍ୟଉପାଦାନାଦି ସଂଗ୍ରହ; ଦ୍ୱିତୀୟ ସ୍ତର – ଗବେଷଣା ପ୍ରବନ୍ଧର ପ୍ରଥମ ଚିଠା ରଚନା; ତୃତୀୟ ସ୍ତର – ଗାଇଡ୍ ବା ତତ୍ତ୍ୱାବଧାରକଙ୍କ ଦ୍ୱାରା ପ୍ରଥମ ଚିଠା ସଂଶୋଧିତ ହେଲା ପରେ ଶେଷ ଚିଠା ରଚନା ଏବଂ ଚତୁର୍ଥ ସ୍ତର – ତତ୍ତ୍ୱାବଧାରକଙ୍କ ଦ୍ୱାରା ଶେଷ ଚିଠା ଅନୁମୋଦିତ ହେଲା ପରେ ବିଶ୍ୱବିଦ୍ୟାଳୟରେ

ଦାଖଲ କରିବା ପାଇଁ ଗବେଷଣା-ପ୍ରବନ୍ଧର ସ୍ୱଷ୍ଟାକ୍ଷର ନକଲରେ ପାଣ୍ଡୁଲିପି ପ୍ରସ୍ତୁତି । ୧୯୬୪ ମସିହା ସୁଦ୍ଧା ମୋର ପ୍ରଥମ ସ୍ତରର କାର୍ଯ୍ୟ ପ୍ରାୟ ଶେଷ ହୋଇ ଯାଇଥିଲା । ତେଣୁ ଏବେ ଗବେଷଣା ପ୍ରବନ୍ଧର ପ୍ରଥମ ଚିଠା ରଚନା କରିବା କଥା । ପ୍ରହ୍ଲାଦ ବାବୁଙ୍କ ପରାମର୍ଶକ୍ରମେ ୧୯୬୫ ମସିହାରେ ମୁଁ ଚାରିମାସ କଲେଜରୁ ଛୁଟି ନେଇଥିଲି । ସେତେବେଳକୁ ଉତ୍କଳ ବିଶ୍ୱବିଦ୍ୟାଳୟ କଟକରୁ ଭୁବନେଶ୍ୱରସ୍ଥ ବାଣୀବିହାରକୁ ଉଠିଯାଇଥାଏ । ପ୍ରହ୍ଲାଦବାବୁ ବାଣୀବିହାର କ୍ୟାମ୍ପସ୍‌ରେ ବସାଘର ନେଇ ସପରିବାର ରହୁଥାନ୍ତି । ମୁଁ ତାଙ୍କରି ବସାରେ ରହି ଗବେଷଣାପ୍ରବନ୍ଧର ପରିଚ୍ଛେଦ ପରେ ପରିଚ୍ଛେଦ ଲେଖିବାରେ ଲାଗିଲି ଏବଂ ତାଙ୍କଠାରୁ ସଂଶୋଧନ କରାଇ ନେଲି । ସେ ମୁଖ୍ୟତଃ ମୋ ଲେଖାର ଦୁଇଟି ଦିଗ ଉପରେ ନିଘା ରଖୁଥିଲେ । ସମୀକ୍ଷାର ଧାରା ଯୁକ୍ତିଯୁକ୍ତ, ବସ୍ତୁନିଷ୍ଠ ଓ ବିଜ୍ଞାନସମ୍ମତ ହେଉଛି କି ନାହିଁ; ଏବଂ ଆଲୋଚନାର ଭାଷା ପ୍ରାଞ୍ଜଳ, ସ୍ୱଷ୍ଟ ଓ ନିର୍ଭୁଲ ହୋଇଛି କି ନାହିଁ । ତାଙ୍କର ମତ ଥିଲା – ତମର ତଥ୍ୟ ବା ମତ ସଂପର୍କରେ ମୋର କିଛି କହିବାର ନାହିଁ । ସେହି ତଥ୍ୟକୁ ଗବେଷଣା ପ୍ରବନ୍ଧରେ ତମେ ଯଥାଯଥ ଭାବରେ ଥୋଇ ପାରିଛ କି ନାହିଁ, ତାହାହିଁ ମୋର ଦେଖିବାର କଥା । ବସ୍ତୁତଃ ମୋର ଗବେଷଣାପ୍ରବନ୍ଧରେ ଯେ ଏକ ସ୍ୱଷ୍ଟ ଓ ପରିଚ୍ଛନ୍ନ ଶୈଳୀ ଅନୁସୃତ ହୋଇଛି ଏବଂ ତାହା ଫଳରେ ପ୍ରବନ୍ଧଟି ସୁବୋଧ ଓ ସୁଖପାଠ୍ୟ ହୋଇ ପାରିଛି, ତହିଁରେ ପ୍ରହ୍ଲାଦବାବୁଙ୍କ ପରାମର୍ଶ ଯଥେଷ୍ଟ କାର୍ଯ୍ୟ କରିଛି । ଓଡ଼ିଆ ବନାନ ବିଷୟରେ ମଧ୍ୟ ତାଙ୍କଠାରୁ ଅନେକ କଥା ଜାଣିଛି । ଏବେ ଭାବୁଛି, ମୋର ଲେଖାଲେଖିରେ ଯେ ବେଶି ବର୍ଣ୍ଣାଶୁଦ୍ଧି ରହେନା, ତାହା ମୂଳରେ ଅଛି ପିଲାଦିନେ ମଧୁରାଓଙ୍କର 'ବର୍ଣ୍ଣବୋଧ' ପଢ଼ା, 'ଡଗର'ରେ କାର୍ଯ୍ୟ କଲାବେଳେ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ପରାମର୍ଶ ଏବଂ ପ୍ରହ୍ଲାଦବାବୁଙ୍କ ସହ ବନାନ ବିଷୟରେ ଆଲୋଚନା । ଏହି ପ୍ରସଂଗରେ ଏଠାରେ ଏକ ମଜା କଥା ଉଲ୍ଲେଖ କରିବି । 'ପାଶ୍ଚାତ୍ତ୍ୟ' ଶବ୍ଦର ବନାନ 'ପାଶ୍ଚାତ୍ୟ' କି 'ପାଶ୍ଚାତ୍ତ୍ୟ' ହେବ, ଏ ବିଷୟରେ ମୋର ଗବେଷଣା ପ୍ରବନ୍ଧର ମୌଖିକ ପରୀକ୍ଷା ବେଳେ ପରୀକ୍ଷକଙ୍କ ମଧ୍ୟରେ ମତଭେଦ ପ୍ରକାଶ ପାଇଥିଲା । ପ୍ରହ୍ଲାଦବାବୁ 'ପାଶ୍ଚାତ୍ତ୍ୟ' ବନାନ କରୁଥିଲେ । ପ୍ରାୟ ତିନି ମିନିଟ୍ କାଳ ଏ ସଂପର୍କରେ ପରୀକ୍ଷକମାନଙ୍କ ଯୁକ୍ତିତର୍କ ମୁଁ ବସି ବସି ଉପଭୋଗ କରିଥିଲି । କିଛି ସିଦ୍ଧାନ୍ତ ହୋଇ ପାରି ନଥିଲା । ଗବେଷଣା ପ୍ରବନ୍ଧଟି ମୁଦ୍ରିତ ହେଲା ବେଳେ ମୁଁ 'ପାଶ୍ଚାତ୍ତ୍ୟ' ବନାନ କିପରି ରଖିବି ବୋଲି ପ୍ରହ୍ଲାଦବାବୁଙ୍କୁ ପଚାରିଥିଲି । ସେ ନିର୍ଦ୍ଦେଶ ଦେଇଥିଲେ – 'ପାଶ୍ଚାତ୍ତ୍ୟ' ବନାନ ହିଁ ଠିକ୍, ମୁଦ୍ରିତ ଗ୍ରନ୍ଥରେ ତାହା ହିଁ ରଖ !

ସାହିତ୍ୟ ସମାଲୋଚନା ବା ଗବେଷଣାର ପ୍ରକାଶଭଂଗୀ ସଂପର୍କରେ ପ୍ରହ୍ଲାଦବାବୁ ବରାବର କହୁଥିଲେ – ଆଲୋଚନାକୁ ଅସ୍ୱଷ୍ଟ ଓ ଦୁର୍ବୋଧ କରନା । ସାହିତ୍ୟ-ଧୃଷ୍ଟିର

ଅବବୋଧରେ ସାହାଯ୍ୟ କରିବା ସମାଲୋଚନାର କାର୍ଯ୍ୟ । ତେଣୁ ସବୁ କଥା **ସ୍ପଷ୍ଟ,** ପ୍ରାଞ୍ଜଳ ଓ ପରିଚ୍ଛନ୍ନ ଭାବରେ ପ୍ରକାଶ କର । ବାସ୍ତବିକ, ଅନୁରୂପ ପ୍ରକାଶଭଙ୍ଗୀ ଚାରିଆଡ଼େ ଏବେ ସ୍ପୃହଣୀୟ ହେଉଥିବାର ଦେଖାଯାଉଛି ।*

ଗବେଷଣା ପ୍ରବନ୍ଧର ପ୍ରଥମ ଚିଠା ରଚନା ତଥା ତାହାର ସଂଶୋଧନ କାର୍ଯ୍ୟ ଶେଷ ହେଲା ପରେ ମୁଁ ମୋର କର୍ମକ୍ଷେତ୍ର ଭଦ୍ରକ ବାହୁଡ଼ିଗଲି । କେଇ ମାସ ପରେ ପ୍ରବନ୍ଧର ଶେଷ ଚିଠା ପ୍ରସ୍ତୁତ କରି ପ୍ରହ୍ଲାଦବାବୁଙ୍କୁ ଖବର ଦେଲି । ସେ କିନ୍ତୁ ଶେଷ ଚିଠାଟି ମୂଳରୁ ଚୂଳଯାଏଁ ତନ୍ନ ତନ୍ନ କରି ଦେଖିବା ପାଇଁ ମନା କରି ପଠାଇଲେ । କି ଏକ କାର୍ଯ୍ୟ ଉପଲକ୍ଷରେ (ଯେତେଦୂର ମନେ ପଡୁଛି – ନିଜର ଜଣେ ଝିଅର ବିବାହ ପ୍ରସଂଗରେ) ସେ ସସ୍ତ୍ରୀକ ଭଦ୍ରକ ଆସି ମୋ ବସାରେ ଦୁଇ ଦିନ ଥିଲେ । ସେତିକି ବେଳେ ସେ କେବଳ ପ୍ରବନ୍ଧର ଶେଷ ଚିଠାଟି ଉପରେ ଥରେ ଆଖି ବୁଲାଇ ନେଲେ ଏବଂ ଗବେଷଣା ପ୍ରବନ୍ଧର ମୁଖବନ୍ଧ କିପରି ଲେଖାଯିବ, ସେ ସଂପର୍କରେ ପରାମର୍ଶ ଦେଇ ଆସିଲେ । ତାଙ୍କଠାରୁ ସବୁଜ ସଂକେତ ପାଇଲା ପରେ ମୁଁ ଗବେଷଣା ପ୍ରବନ୍ଧର ସ୍ପଷ୍ଟାକ୍ଷର ନକଲ ପ୍ରସ୍ତୁତ କରିବାର ବ୍ୟବସ୍ଥା କଲି ।

ପ୍ରହ୍ଲାଦବାବୁଙ୍କ ତତ୍ତ୍ୱାବଧାନରେ ଗବେଷଣା କାର୍ଯ୍ୟ କଲାବେଳେ ପ୍ରଧାନତଃ ଦୁଇଟି କଥା ମୁଁ ମର୍ମେ ମର୍ମେ ଉପଲବ୍ଧି କରିଛି; ଯାହା ଆମର ଗବେଷକମାନଙ୍କ ଅବଗତି ପାଇଁ ଏଠାରେ ଉଲ୍ଲେଖ କରିବା ଉଚିତ ମନେ କରୁଛି । ଗବେଷକ ନିଜ ଶିଙ୍ଗରେ ମାଟି ଖୋଳୁ, ଆପଣା ଗୋଡ଼ରେ ଠିଆ ହେଉ, ଏଥିପାଇଁ ପ୍ରହ୍ଲାଦବାବୁ ବରାବର ଉତ୍ସାହ ଓ ପ୍ରେରଣା ଯୋଗାଉଥିଲେ – ଗବେଷକଙ୍କ ଶକ୍ତି-ସାମର୍ଥ୍ୟର ପୂର୍ଣ୍ଣ ବିକାଶରେ ସାହାଯ୍ୟ କରୁଥିଲେ । ଗବେଷଣା କାର୍ଯ୍ୟ ଚାଲିଥିଲା ବେଳେ ସେ ଏପରି କିଛି କରିଥିଲା ଭଳି ମୋର ମନେ ପଡୁନାହିଁ, ଯେଉଁଥିରେ ମୋର ବୁଦ୍ଧି ବୃତ୍ତି କ୍ଷୁଣ୍ଣ ହୋଇଥିବ – ମୋର ଶକ୍ତି-ସାମର୍ଥ୍ୟରେ ଆଞ୍ଚ ଆସିଥିବ । ପର୍ବତାରୋହୀକୁ ନିଜ କାନ୍ଧରେ ବସାଇ ଶିଖର ଦେଶରେ ନେଇ ପହଞ୍ଚାଇ ଦେବାର ସେ ପକ୍ଷପାତୀ ନଥିଲେ, ବରଂ ପର୍ବତାରୋହୀ ନିଜର ଶକ୍ତି-ସାମର୍ଥ୍ୟ ବଳରେ ଆପଣା ପାଦରେ ପର୍ବତ ଚଢ଼ି ଶିଖର ଦେଶରେ ଯେପରି

---

* Research can become a contribution to a field of knowledge, only when it is adequately communicated. For this purose precise writing is essential. A careful choice of words will serve to convey exact meaning x x x scholarly writing is not crammed with jargon. Being scholarly is not being verbose, ambiguous, pedantic or pompous.

– Thesis and Assignment writing by J. Anderson, B.H. Durston and M. Poole, Wiley Eastern Ltd., New Delhi (1970) page 6.

ପହଞ୍ଚେ, ସେଥିପାଇଁ ଆବଶ୍ୟକ ସାହାଯ୍ୟ ସହଯୋଗ ଦେଉଥିଲେ । ଗବେଷକ – ତତ୍ତ୍ୱାବଧାରକଙ୍କ ଏପରି ସଂପର୍କ ପରବର୍ତ୍ତୀ କାଳରେ ଯେ ମୋର ମହୋପକାର ସାଧନ କରିବ, ମୁଁ ନିର୍ବୋଧ ସେତେବେଳେ ବୁଝିପାରି ନ ଥିଲି । ବରଂ ସେ ମୋତେ ଆଶାନୁରୂପ ସାହାଯ୍ୟ-ସହଯୋଗ କରୁନାହାନ୍ତି ବୋଲି ଭାବି ମନେ ମନେ ତାଙ୍କ ଉପରେ ସେତେବେଳେ ବିରକ୍ତ ହେଉଥିଲି । ଦ୍ୱିତୀୟ କଥା – ପାଣ୍ଡିତ୍ୟ, ଜ୍ଞାନ ଗାରିମାର ଏକ ଉଦ୍ଧତ ଆକ୍ରମଣକାରୀ ଦିଗ ଆମେ କେତେକ ପଣ୍ଡିତ ଅଧ୍ୟାପକଙ୍କଠାରେ ଲକ୍ଷ୍ୟ କରୁଁ । ସେଭଳି ଅଧ୍ୟାପକ ଆପଣା ଜ୍ଞାନ ଗାରିମା ବଳରେ ବୁଦ୍ଧିର ଖେଳ ଦେଖାଇ ଛାତ୍ର ବା ଗବେଷକଙ୍କୁ ଏକାବେଳକେ ଆକ୍ରାନ୍ତ କରି ପକାନ୍ତି – ଆପଣା ପାଣ୍ଡିତ୍ୟର ହଟଚମଟ ଲଗାଇ ସମସ୍ତଙ୍କୁ ହତଚକିତ ବା ପରାଜିତ କରିବାରେ ଆନନ୍ଦ ପାଆନ୍ତି । ପ୍ରହ୍ଲାଦବାବୁଙ୍କ ପାଣ୍ଡିତ୍ୟ ବା ଜ୍ଞାନ ଗାରିମାରେ ଅନୁରୂପ ଆକ୍ରମଣକାରୀ ଦିଗ ମୁଁ ଲକ୍ଷ୍ୟ କରିନାହିଁ । ତାଙ୍କ ସହିତ କୌଣସି ବିଷୟରେ ଯୁକ୍ତିତର୍କ କଲାବେଳେ ସେ ନୀରବ ହୋଇ ମୋ କଥା ଶୁଣୁଥିଲେ ଏବଂ ଧୀର, ନମ୍ର ଭାବରେ ନିଜର ମତ ବ୍ୟକ୍ତ କରୁଥିଲେ । ଆପଣା ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ବୋଝ ମୋ ଉପରେ ଲଦି ଦେଇ ମୋତେ ହୀନ ବା ତୁଚ୍ଛ ପ୍ରତିପାଦିତ କରିବାକୁ ସେ କେବେ ଚେଷ୍ଟା କରୁ ନଥିଲେ । ତେଣୁ ତାଙ୍କଭଳି ଜଣେ ବଳିଷ୍ଠ ବ୍ୟକ୍ତି-ସଂପନ୍ନ ପଣ୍ଡିତଙ୍କ ସହିତ ବିଭିନ୍ନ ବିଷୟରେ ଆଲୋଚନା କଲାବେଳେ ମୋ ଭିତରେ ଆଦୌ ସଂକୋଚ ବା ହୀନମନ୍ୟତା ଜାଗରୂକ ହେଉ ନଥିଲା । ଏହି ପ୍ରସଂଗରେ ଇଂରାଜୀ ସାହିତ୍ୟିକ ଜି.କେ. ଚେଷ୍ଟରଟନ୍ (୧୮୭୪-୧୯୩୬) ଥରେ ଯେଉଁ ସୂକ୍ତିଟି ପ୍ରକାଶ କରିଥିଲେ, ତାହା ସ୍ମରଣ ହେଉଛି – There is a great man, who makes every man feel small. But the real great man is the man, who makes every man feel great.

ଗବେଷଣା-ପ୍ରବନ୍ଧ ବିଶ୍ୱବିଦ୍ୟାଳୟରେ ଦାଖଲ କରିଦେଲା ପରେ ମୁଁ ନିଶ୍ଚିନ୍ତ ହୋଇ ରହି ପାରିଲି ନାହିଁ । ୧୯୬୭ ମସିହା ମେ ମାସରେ ପ୍ରବନ୍ଧଟି ଦାଖଲ ହେଲା । ପରୀକ୍ଷା ଫଳ ପ୍ରକାଶ ପାଇବା ବିଳମ୍ବ ହେଉଛି ଦେଖି ପ୍ରାୟ ପାଞ୍ଚ ମାସ ପରେ ପୂଜା ଛୁଟିରେ ଯାଇ ପ୍ରହ୍ଲାଦ ବାବୁଙ୍କୁ ସାକ୍ଷାତ କଲି । କହିଲି – "ସାର୍, ଯେତେ ବିଳମ୍ବ ହେଉଛି, ମନରେ ସେତେ ଆଶଙ୍କା ବଢୁଛି । ଡକ୍ଟରେଟ୍ ଡିଗ୍ରୀଟା ମିଳିବ କି ନା ଜାଣେନା । କିନ୍ତୁ ମୁଁ ବହୁ ପରିଶ୍ରମ କରିଛି । ଯଦି ନ ମିଳେ... ।" ପ୍ରହ୍ଲାଦ ବାବୁ ବାଧା ଦେଇ କହିଲେ – "ତମେ ଡକ୍ଟରେଟ୍ ପାଅ ବା ନ ପାଅ, ତାହା ଭବିଷ୍ୟଦ୍ କଥା । କିନ୍ତୁ ତମର ଗବେଷଣା ପ୍ରବନ୍ଧଟି ମୋର ମନଃପୂତ ହୋଇଛି । ଯଦି ଡିଗ୍ରୀ ମିଳେ ତ ଭଲ କଥା ! ନୋହିଲେ ଗବେଷଣା ପ୍ରବଂଧଟି ମୁଦ୍ରିତାକାରରେ ପ୍ରକାଶ କରିଦେବ ଏବଂ ଗ୍ରନ୍ଥ ଆରମ୍ଭରେ

ସୂଚାଇ ଦେବ – ବିଶ୍ୱବିଦ୍ୟାଳୟର ଡକ୍ଟରେଟ୍ ଡିଗ୍ରୀ ପାଇଁ ଏହା ଉପଯୁକ୍ତ ବିବେଚିତ ହୋଇ ନାହିଁ । ବର୍ତ୍ତମାନ ଏହା ଗ୍ରନ୍ଥାକାରରେ ପ୍ରକାଶିତ ହେଉଛି । ସୁଧୀ ସାହିତ୍ୟିକମାନେ ଏହାର ମୂଲ୍ୟ ବିଚାର କରି ଦେଖନ୍ତୁ ।''

ଏ କଥାରେ ମୋର ଟିକିଏ ସାହସ ହେଲା – ମନରେ ଦୃଢ଼ତା ଆସିଲା । ପ୍ରହ୍ଲାଦ ବାବୁଙ୍କୁ ମୁଁ କହି ଦେଇ ଆସିଲି – ତାହା ହେଲେ ମୁଁ ବର୍ତ୍ତମାନଠାରୁ ଗବେଷଣା ପ୍ରବନ୍ଧଟି ଛପାଇବାର ବ୍ୟବସ୍ଥା କରେଁ । ତାପରେ ମୁଁ କଟକରେ ଜଣେ ପ୍ରକାଶକ ସ୍ଥିର କରି ଭଦ୍ରକ ଗୋପୀନାଥ ପ୍ରେସ୍‌ରେ ପ୍ରବନ୍ଧଟିର ଛାପା ଆରମ୍ଭ କରିଦେଲି । ୧୯୬୭ ଡିସେମ୍ବର ଶେଷ ଆଡ଼କୁ ପରୀକ୍ଷା-ଫଳ ପ୍ରକାଶ ପାଇଗଲା ଏବଂ ୧୯୬୮ ମାର୍ଚ୍ଚ ମାସରେ କଟକର ପ୍ରକାଶକ ଜଗନ୍ନାଥ ରଥ ଗବେଷଣା ପ୍ରବନ୍ଧଟି ପ୍ରକାଶ କରି ପୁସ୍ତକ ବିପଣୀରେ ଉପସ୍ଥାପିତ କରିଦେଇ ପାରିଲେ । ପ୍ରାୟ ବାର ବର୍ଷ ପରେ ୧୯୮୧ ମସିହାରେ କଟକର ଫ୍ରେଣ୍ଡସ୍ ପବ୍ଲିଶର୍ସ ପ୍ରବନ୍ଧଟିର ପରିମାର୍ଜିତ ଦ୍ୱିତୀୟ ସଂସ୍କରଣ ପ୍ରକାଶ କଲେ । ତୃତୀୟ ସଂସ୍କରଣ ପ୍ରକାଶ ପାଇଲା ୧୯୯୨ ମସିହାରେ ।

ଯେଉଁ ଡିଗ୍ରୀ ଲାଭ ପାଇଁ ଲାଳସା ଥିଲା, ତାହା କିନ୍ତୁ ସେଥର ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ଉପସ୍ଥିତ ହୋଇ ମୁଁ ଆଣି ପାରିଲି ନାହିଁ । କିଛି ଦିନ ପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ସଂସ୍କୃତ ଅଧ୍ୟାପକ ବନ୍ଧୁ ଶ୍ରୀ ସଦାନନ୍ଦ ରାମାନୁଜ ଦାସଙ୍କ ସହ ଭଦ୍ରକରେ ସାକ୍ଷାତ ହେଲା । ଅଧ୍ୟାପକ ରାମାନୁଜ ଦାସ ମୋତେ କହିଲେ – ''ଆପଣ ସମାବର୍ତ୍ତନ ଉତ୍ସବକୁ ଗଲେ ନାହିଁ କାହିଁକି ? ମୁଁ ଏଥର ସମାବର୍ତ୍ତନ ମଣ୍ଡପରେ ଡିଗ୍ରୀଧାରୀଙ୍କ ବସିବା ସ୍ଥାନ ଦେଖାଶୁଣା କରିବା ଦାୟିତ୍ୱରେ ଥିଲି । ଦେଖିଲି – ଓଡ଼ିଆରେ ତିନିଜଣ ଡକ୍ଟରେଟ୍ ଡିଗ୍ରୀଧାରୀଙ୍କ ମଧ୍ୟରୁ ଡକ୍ଟର ବଂଶୀଧର ମହାନ୍ତି ଏବଂ ଡକ୍ଟର ଜାନକୀବଲ୍ଲଭ ମହାନ୍ତି ଉପସ୍ଥିତ ଅଛନ୍ତି । କିନ୍ତୁ ଆପଣଙ୍କ ଆସନ ଶୂନ୍ୟ ପଡ଼ିଛି ।''

## କେତୋଟି ଖୁଚୁରା କିନ୍ତୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ

୧୯୯୦ ମସିହା ଜୁନ୍ ୩୦ ତାରିଖରେ ସରକାରୀ କାର୍ଯ୍ୟରୁ ଅବସର ନେଲା ପରେ ଜୁଲାଇ ମାସ ୨ ତାରିଖରେ ଯାଇ ଭଦ୍ରକସ୍ଥ ବେସରକାରୀ ମହିଳା କଲେଜର ଅଧ୍ୟକ୍ଷ ଭାବରେ ଯୋଗ ଦେଲି । ଜୁଲାଇ ପହିଲା ରବିବାର ଥିବାରୁ ସେହି ଦିନକ ଛୁଟି ପାଇଲି । ମହିଳା କଲେଜ ଗଭର୍ଣ୍ଣିଂ ବଡ଼ିର ସଭାପତି ଶ୍ରୀ ଯୁଗଳ କିଶୋର ପଟ୍ଟନାୟକ ପୂର୍ବରୁ ମୋତେ ଯିବା ପାଇଁ ଲଗେଇ ଥିଲେ । ସେତେବେଳେ କଲେଜର ବିଧିବଦ୍ଧ ଅଧ୍ୟକ୍ଷ କେହି ନ ଥିଲେ । ସେଠି ମୋର ରହଣି ଦୁଇ ବର୍ଷ । ସେ ବିଷୟ ମୁଁ ଆଗରୁ

ଉଲ୍ଲେଖ କରିଛି । କଲେଜର ଜଣେ ବରିଷ୍ଠ ଅଧ୍ୟାପିକା, ଅଧ୍ୟକ୍ଷା ହେବାର ଦୁରାଶା ପୋଷଣ କରି ମୋ ବିରୋଧରେ କାର୍ଯ୍ୟ କରିବାରେ ଲାଗିଲେ । ମୋର ମଧ୍ୟ ସେତେବେଳକୁ ଷାଠିଏ ବର୍ଷ ବୟସ ହୋଇଯାଇଥିଲା । ଗଭର୍ଣ୍ଣିଂ ବଡ଼ି ଚାହୁଁଥିଲେ ମଧ୍ୟ ମୁଁ ଆଉ ସେଠାରେ କାର୍ଯ୍ୟ କରିବାକୁ ଇଚ୍ଛା କଲି ନାହିଁ । ସେହି ବରିଷ୍ଠ ଅଧ୍ୟାପିକା ଜଣକ, ଦୁଃଖର କଥା, କେତେକ କାରଣରୁ କଲେଜର ଅଧ୍ୟକ୍ଷା ହେବାର ଆଶା ପୂରଣ କରିପାରିଲେ ନାହିଁ ।

ଭଦ୍ରକ ମହିଳା କଲେଜରୁ ଆସିଲାପରେ ଅଳ୍ପ କେଇ ଦିନ ଘରେ ବସିଛି, କଟକସ୍ଥ 'ମାତୃଭବନ'ରୁ ଡାକ୍ତର ସୁଧାକର ଆଚାର୍ଯ୍ୟ ମୋତେ ଟେଲିଫୋନ୍ ଯୋଗେ ଜଣାଇଲେ ''ଆମେ ଏଠାରେ ଓଡ଼ିଆ ଭାଷା-ସାହିତ୍ୟରେ ଏମ୍.ଏ. ପଢ଼ା ପାଇଁ ଟିଉଟୋରିଆଲ୍ କ୍ଲାସ୍ ଚଳାଇବାକୁ ଚାହୁଁଛୁ; ଆପଣ ଆସି ଏହାର ଦାୟିତ୍ୱ ନେଇପାରିବେ କି ?'' ମୁଁ ହଠାତ୍ ତାଙ୍କୁ କିଛି ଉତ୍ତର ଦେଇପାରିଲି ନାହିଁ । ଦେଖିଲି – ଅଧ୍ୟାପନା ମୋ ପିଛା ଛାଡ଼ିବାକୁ ନାହିଁ । ପ୍ରାୟ ଛତିଶ ବର୍ଷ ରାଜ୍ୟର ବିଭିନ୍ନ ସରକାରୀ ଓ ବେସରକାରୀ କଲେଜରେ ଶିକ୍ଷକତା କଲି । ତଥାପି ଅଧ୍ୟାପନା କରିବାର ଲୋଭ ! ଅନ୍ୟକୁ ପଢ଼ାଇବା ମାନେ ନିଜେ କିଛି ପଢ଼ାପଢ଼ି କରିବା । ଏଇଥିରେ ହିଁ ଜୀବନରେ ସନ୍ତୋଷ ଲାଭ କରିଛି ବେଶ୍ । କିଛିଦିନ ପରେ ଡାକ୍ତର ଆଚାର୍ଯ୍ୟଙ୍କୁ ମୋର ସମ୍ମତି ଜଣାଇଦେଲି । ପିଲାଙ୍କ ନାମଲେଖା ହୋଇଗଲା । ମୁଁ ଆଉ କେତେଜଣ ସରକାରୀ କର୍ମରୁ ଅବସର ନେଇଥିବା ଅଧ୍ୟାପିକା ଏବଂ ମାତୃଭବନରେ ଶିକ୍ଷକତା କରୁଥିବା ଯୋଗ୍ୟତାସଂପନ୍ନ ବ୍ୟକ୍ତିଙ୍କୁ ସାଙ୍ଗରେ ନେଲି । ଡକ୍ଟର ଶରତ୍ କୁମାରୀ ମିଶ୍ର, ଡକ୍ଟର ଲାବଣ୍ୟ ନାୟକ, ଡକ୍ଟର ପଦ୍ମନାଭ ସାହୁ, ଶ୍ରୀମତୀ ଶାନ୍ତିଲତା ବେହେରା ଓ ସୁଶ୍ରୀ ସରଳା ସାହୁ – ଏହି ପାଞ୍ଚଜଣ ନିୟମିତ କ୍ଲାସ୍ ନେବାରେ ଲାଗିଲୁଁ । ଦୁଇଟି ବ୍ୟାଚ୍ ପ୍ରାଇଭେଟ୍ ପରୀକ୍ଷା ଦେଇ ପିଲାଏ ଯଥାରୀତି ପାଶ୍ କରିଗଲେ । କିନ୍ତୁ ତିନିବର୍ଷ ପରେ ଏ ଟିଉଟୋରିଆଲ୍ କ୍ଲାସ୍ ବନ୍ଦ ହୋଇଗଲା । କାରଣ, ପ୍ରତି ଶିକ୍ଷା-ବର୍ଷରେ ଦୁଇ ତିନିଜଣ ଲେଖାଏଁ ପିଲା ହେଉଥିଲେ । ଆମେ ପାଞ୍ଚ ଜଣ ଶିକ୍ଷକ-ଶିକ୍ଷିକା ଦୁଇ ତିନିଜଣ ପିଲାଙ୍କ ପାଇଁ । ଘୋଡ଼ା ଛଅ ଟଙ୍କାକୁ ଦାନା ନଅ ଟଙ୍କା । ତେଣୁ ମାତୃଭବନ କର୍ତ୍ତୃପକ୍ଷ ଏହା ବନ୍ଦ କରିଦେବାକୁ ଉଚିତ ମନେ କଲେ ।

ଇତିମଧ୍ୟରେ ମୋ ଜୀବନରେ ଏକ ଦୁର୍ବିପାକ ଘଟିଗଲା । ୧୯୯୪ ମସିହା ନଭେମ୍ବର ମାସରେ ହୃଦ୍‌ଘାତରେ ପୀଡ଼ିତ ହେଲି । କଟକସ୍ଥ ବଡ଼ ମେଡ଼ିକାଲ୍‌ର କାର୍ଡ଼ିଓଲୋଜି ବିଭାଗରେ ଭର୍ତ୍ତି ହୋଇ ପ୍ରାୟ ପନ୍ଦର ଦିନ କାଳ ଚିକିତ୍ସିତ ହେଲି । ଡାକ୍ତରମାନେ କୌଣସିମତେ ବଞ୍ଚାଇଦେଲେ । ହାଇଦ୍ରାବାଦର ଏପୋଲୋ ହସ୍‌ପିଟାଲ୍ ଯାଇ ପ୍ରଥମେ କରୋନାରି ଏଞ୍ଜିଓଗ୍ରାଫି କରାଇଲି । ବିସ୍ମିତ ହେଲି, ଯେତେବେଳେ

ଜାଣିଲି ମୋ ହୃଦୟର କେଉଁ ଏକ ଧମନୀରେ ଅବରୋଧ ଘଟିଛି । ମୁଁ ଧୂମପାନ କରେ ନାହିଁ । କ୍ୱଚିତ୍ କେବେ ପିଆପିଇ କରେଁ । ପଶୁମାଂସ ପ୍ରାୟ ଖାଏ ନାହିଁ, ପକ୍ଷୀମାଂସ ବ୍ୟତୀତ । ତଥାପି ଏହା ଏହା କିପରି ଘଟିଲା ? ଗୁଡ଼ାଏ ଟଙ୍କା ଖର୍ଚ୍ଚ କରି ମାସକ ପରେ ସେହି ଏପୋଲୋ ହସପିଟାଲ୍‌ରେ ଏଞ୍ଜିଓପ୍ଲାଷ୍ଟି କରାଇଲି । ତାହା କିନ୍ତୁ ସଫଳ ହେଲା ନାହିଁ । ସେହି ୧୯୯୫ ମସିହାରୁ ମୁଁ ଔଷଧପତ୍ର ଖାଇ ଏ ପର୍ଯ୍ୟନ୍ତ ପ୍ରାୟ ବାରବର୍ଷ କାଳ ବଞ୍ଚି ରହିଛି । ମୋର ବିଶ୍ୱାସ, ପ୍ରକୃତରେ ମୁଁ ହୃଦ୍‌ଘାତରେ ପୀଡ଼ିତ ନୁହେଁ । ଆଜନ୍ମ ମୁଁ ଶ୍ୱାସ ରୋଗୀ । ବେଳେବେଳେ ଶ୍ୱାସ ରୋଗ ପ୍ରବଳ ହୋଇଗଲେ, ପୀଡ଼ିତ ଓ ଶଯ୍ୟାଶାୟୀ ହୁଏ ।

୧୯୯୫ ମସିହା ଅଗଷ୍ଟ ମାସରେ ବିଲାତ ଯାଇଥିଲି ତିନିମାସ ପାଇଁ । ସେତେବେଳେ ସାନ ପୁଅ ଶୁଭକାନ୍ତ ବିଖ୍ୟାତ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ 'କମନଓ୍ୱେଲ୍‌ଥ୍ ଏଣ୍ଡ୍ ଫରେନ୍ ଅଫିସ୍ ଏଓ୍ୱାର୍ଡ଼' ପାଇ ଗବେଷଣା କରୁଥାଏ । ଅକ୍ସଫୋର୍ଡ଼ରେ ରହି ମଝିରେ ମଝିରେ ଲଣ୍ଡନ ଆସୁଥିଲି । ଲଣ୍ଡନସ୍ଥ ବ୍ରିଟିଶ୍ ମିଉଜିୟମ୍‌ର ଇଣ୍ଡିଆ ଅଫିସ୍ ଲାଇବ୍ରେରୀ ମୋ ଆକର୍ଷଣର କେନ୍ଦ୍ର ଥିଲା । ଏଭନ୍ ନଦୀ କୂଳସ୍ଥ ଷ୍ଟ୍ରାଟଫୋର୍ଡ଼ ସହରରେ କବି ସେକ୍ସପିୟରଙ୍କ ଜନ୍ମସ୍ଥଳ ଦେଖି ବିସ୍ମିତ ହେଲି – ଇଂରେଜମାନେ କେତେ ଯତ୍ନରେ ସୁସଜ୍ଜିତ କରି ତାହା ସଂରକ୍ଷିତ ରଖିଛନ୍ତି ! ଏହାର ତିନି ବର୍ଷ ପରେ ଗଲି ବୁଲଗେରିଆ । ସେତେବେଳେ ଶୁଭକାନ୍ତ ବୁଲଗେରିଆର ରାଜଧାନୀ ସୋଫିଆରେ ଭାରତୀୟ ଦୂତାବାସରେ ଅବସ୍ଥାପିତ । ସେଠାରେ ଚାରିମାସ ରହି ବହୁତ ବୁଲାବୁଲି କଲି ବିତୋସା ପର୍ବତଠାରୁ କୃଷ୍ଣସାଗର ପର୍ଯ୍ୟନ୍ତ – ପ୍ଲୋବଡ଼ିଭ୍‌ଠାରୁ ଭେଲିକୋ ଟାର୍ନୋଭ ନଗର ପର୍ଯ୍ୟନ୍ତ । ସୋଫିଆଠାରେ ୧୮୯୦ ମସିହାରେ ପ୍ରତିଷ୍ଠିତ ବହୁବିଦିତ 'ନେସ୍‌ନାଲ୍ ଅପେରା'ରେ ସୁପରିଚିତ 'ସ୍ୱାନ୍ ଲେକ୍' ଅପେରାର ମୂକାଭିନୟ ଦେଖି ମନ୍ତ୍ରମୁଗ୍ଧ ହୋଇଥିଲି । ସେଠାରେ 'ବିତୋସା' ଶୀର୍ଷକ ଏକ କବିତା ରଚନା କରିଥିଲି । ଏଠାରେ ତାହା ଉଦ୍ଧାର କରୁଛି ।

ବିତୋସା ଗୋ, ବଲକାନ୍-କନ୍ୟା !
ସଅଁପି ସକଳ ସ୍ନେହ, ମମତା ମଧୁର
ସୋଫିଆକୁ କୋଳେ ଧରି ହୋଇଅଛ ଧନ୍ୟା ।
ବିତୋସା ଗୋ, ବଲକାନ୍-କନ୍ୟା !

ପାଇନ୍ ଓ ଗୋଲାପର
ଶୋଭାମୟୀ ସବୁଜ ବନାନୀ
ତୁମ ଅଙ୍ଗ ଆଚ୍ଛାଦନ ବିସ୍ତୃତ ବର୍ଣ୍ଣିଳ

ମସ୍ତକରେ ବରଫ-ମୁକୁଟ ମଲ୍ଲିକା-ଧବଳ,
କର୍ଣ୍ଣମୂଳେ କୁଣ୍ଡଳ ସମାନ
ଦୋଳୁଥାଏ ରସପୂର୍ଣ୍ଣ ରାଶି ରାଶି ଫଳ ।
କେତେ ନଦୀ ନିର୍ଝରରେ ଅଗଣିତ ଜନେ
ଉଚ୍ଚ ନୀଚ, କି ସହରୀ ଅବା ଗ୍ରାମ୍ୟ
ଅବିରତ ଦିଅ ସ୍ତନ୍ୟପାନ
ତୁମ ଅକୃପଣ ଦାନେ ବୁଲଗେରିଆ ଧନ୍ୟ ।

ନାନା ଜାତି ଶସ୍ୟଭରା କ୍ଷେତ ଓ ଖମାର
ଶିଳ୍ପକଳା ରହିଛି ଉନ୍ନତ
କୃଷ୍ଣସାଗର କୂଳରୁ ସୋଫିଆ ସରିକି
ବେପାର ବଣିଜ ନାହିଁ ହୁଏ ସମାପତ ।
ତଥାପି ଗୋ ଉଚ୍ଚାଭିଳାଷିନୀ
ବୁଲଗେରିଆ ବଢ଼ ଦାଣ୍ଡେ ସମୃଦ୍ଧିର ପଥେ
ଆଜି କିଆଁ ଅସଙ୍ଗତି, ଅସମ କରଣି ?
ବିଶାଳ ପ୍ରାସାଦ ପାଶେ
ଖର୍ବକାୟ ନିରୀହ କୁଟୀର
ଧନୀପାଶେ ଧନହୀନ ପ୍ରସାରିତ କର ?
ବଞ୍ଚିବା ପାଇଁକି ନାରୀ ବିକ୍ରି କରେ ଦେହ
ବିକ୍ରି କରେ ଶ୍ରମ ସାନ ବାଳକ ବାଳିକା
ମୂଲ୍ୟମାନ୍ ଜୀବନର ହୁଏ ଅପଚୟ !
ବିତୋସା ଗୋ, କାହିଁ ତୁମ ବ୍ରୀଡ଼ା ?
ତୁମର ଉଦାର ଦୃଷ୍ଟି ହେଉଥିବ ଏଥିରେ ଆହତ
ପରାଣରେ ଲାଗୁଥିବ ପୀଡ଼ା ।
ପୂର୍ବପଟେ ସମଦୁଃଖୀ ତୁମ ବନ୍ଧୁ ଜଣେ
ବିକଂପିତ ବିନ୍ଧ୍ୟାଚଳ ଅସ୍ଥିର ବିକଳ ।
କାଷ୍ପିୟାନ୍ କୃଷ୍ଣସାଗରର ଢେଉ
ବହି ଆଣୁଥିବ ସେହି ପୁଣ୍ୟଭୂମି ଦୁଃଖର ବାରତା ।
ବିତୋସା ଓ ବିନ୍ଧ୍ୟାଚଳ
ଜାଣେ ଜାଣେ ଦୁହେଁଯାକ ହେଲଣି ଚଞ୍ଚଳ ।

ଦେଖେଁ ଦୁହିଙ୍କର ବକ୍ଷେ ଝଡ଼ର ସଂକେତ
ଚକ୍ଷେ ଚକ୍ଷେ କ୍ରାନ୍ତିର ଇଙ୍ଗିତ,
ଯାହା ବଳେ ସବୁ ଅସଙ୍ଗତି, ଅସମ କରଣି
ହେବ ଧୂଳିସାତ୍ ।
ପ୍ରାଚୁର୍ଯ୍ୟ ଓ ଦାରିଦ୍ର୍ୟ ମଧ୍ୟରେ ଯେତେ ବନ୍ଧବାଡ଼
ମନୁଷ୍ୟକୃତ ଯେ କେତେ ଭୀମ ଭେଦରେଖା
ଭାଙ୍ଗିଯିବ ଲିଭିଯିବ ସତ ।

ବିତୋସା ଗୋ, ବଲକାନ୍-କନ୍ୟା !
ବିନ୍ଧ୍ୟାଚଳ ପ୍ରୀତିଧନ୍ୟା
ତୁମରି ଉଲ୍ଲାସେ ମହା ପ୍ରାଣୋଲ୍ଲାସେ
ଚତୁର୍ଦ୍ଦିଗେ ପୂର୍ବେ ଓ ପଶ୍ଚିମେ
ପ୍ରବାହିତ ହେବ ଶାନ୍ତି ସମତାର ବନ୍ୟା
ବିତୋସା ଗୋ, ବଲକାନ୍-କନ୍ୟା !

ଚାରିମାସ ରହଣି ପରେ ବୁଲଗେରିଆରୁ ମସ୍କୋ ବାଟ ଦେଇ ଭାରତ ବାହୁଡ଼ି ଆସିଲି । ମସ୍କୋଠାରେ ସ୍ୱଳ୍ପ ସମୟ ରହଣି ଭିତରେ 'ରେଡ୍ ସ୍କୋୟାର୍', 'କ୍ରେମଲିନ୍ ପ୍ରାସାଦ', 'ଭିକ୍ଟୋରି ପାର୍କ', 'ମସ୍କୋ ଷ୍ଟେଟ୍ ୟୁନିଭରସିଟି' ପ୍ରଭୃତି ବୁଲି ଦେଖିଲି । ଦେଖିଲି ଆଉ ଏକ ଅପୂର୍ବ ବ୍ୟାପାର । ୧୯୨୪ ମସିହାରେ ଗତାୟୁ ହୋଇଥିବା ଭ୍ଲାଡ଼ିମିର୍ ଲେନିନ୍ ସୁପ୍ତ ଶରୀରରେ ନିଦ୍ରା ଯାଇଛନ୍ତି । ଅନେକେ ଏହା ବିଶ୍ୱାସ କରିବେ କି ? ପ୍ରକୃତରେ ତାହା କିନ୍ତୁ ଲେନିନ୍‌ଙ୍କର ସଂରକ୍ଷିତ ମୃତ ଶରୀର; ଦେଖାଯାଉଛି ଜୀବନ୍ତ ଭଳି ।

ସ୍ୱଦେଶକୁ ଲେଉଟି ଆସିଲା ପରେ ପୁଣି କାର୍ଯ୍ୟର ଭିଡ଼ ଭିତରେ ବୁଡ଼ିଗଲି । ରାଜ୍ୟର ବିଭିନ୍ନ କଲେଜ ଓ ବିଶ୍ୱବିଦ୍ୟାଳୟରେ ସାଂସ୍କୃତିକ ସଭା ଓ ସଂସ୍ଥାନମାନଙ୍କରେ ଭାଷଣ ଦେବା ପାଇଁ ଡାକରା ପାଇଲି । ଓରିଏଣ୍ଟେସନ୍ କୋର୍ସ ଓ ରିଫ୍ରେସର୍ କୋର୍ସରେ ଯୋଗ ଦେଇ ନିର୍ଦ୍ଦିଷ୍ଟ ସାହିତ୍ୟିକ ପ୍ରସଙ୍ଗ ଘେନି ଆଲୋଚନା କଲି । ଉତ୍କଳ ବିଶ୍ୱବିଦ୍ୟାଳୟର ଓଡ଼ିଆ ଭାଷା-ସାହିତ୍ୟ ବିଭାଗରେ ୨୦୦୦ ମସିହା ଏପ୍ରିଲ୍ ମାସରେ ସାତଗୋଟି ବକ୍ତୃତା ଦେଲି ଭିଜିଟିଂ ଫେଲୋ ଭାବରେ; ବିଷୟବସ୍ତୁ ଥିଲା – 'ଲୋକ ନାଟକ', 'ଲୋକପ୍ରିୟ ନାଟକ' ଏବଂ 'ରୀତି ଓ ଗୀତି' । ଏହିସବୁ ବକ୍ତୃତା ମୋର କେତେକ ଆଲୋଚନାଗ୍ରନ୍ଥରେ ଭିନ୍ନ ଭିନ୍ନ ଶିରୋନାମାରେ ପ୍ରକାଶିତ ହୋଇଛି ।

ରାଜ୍ୟର ବିଭିନ୍ନ ଅଞ୍ଚଳର କବି ଓ ଲେଖକମାନଙ୍କ ସହିତ ମୋର ସଂପର୍କ ରହିଛି । ଚାରିଆଡ଼େ ମୋର ଗଳ୍ପ ଓ ସାହିତ୍ୟାଲୋଚନାରେ କିଛି ଈର୍ଷାପରାୟଣ

ବନ୍ଧୁଙ୍କ ସହ କେତେକ ସହୃଦୟ ଅନୁରାଗୀ ପାଠକ-ପାଠିକା ଅଛନ୍ତି । ବନ୍ଧୁମାନଙ୍କର ଅଳି ଅନୁରୋଧରେ ସେମାନଙ୍କ ସାହିତ୍ୟଗ୍ରନ୍ଥରେ ଶତାଧିକ ମନ୍ତବ୍ୟ ବା ମୁଖବନ୍ଧ ଲେଖିଛି । ଏହା ଏକପ୍ରକାର ଶିକ୍ଷକ-ସୁଲଭ କାର୍ଯ୍ୟ ବୋଲି ମୁଁ ମନେ କରେଁ । ପ୍ରତ୍ୟେକ ସାହିତ୍ୟ-ସୃଷ୍ଟି ନିଜ ଗୁଣରେ ଭାସ୍ୱର । ସେମାନଙ୍କ ପୁସ୍ତକରେ ମତ-ମନ୍ତବ୍ୟ ବା ମୁଖବନ୍ଧଟିଏ ଲେଖିଦେଲେ, ରଚନାର ମୂଲ୍ୟ ବୃଦ୍ଧି ପାଇବାର କାରଣ ନାହିଁ । ତଥାପି ମୋର ସେହି ମନ୍ତବ୍ୟ ବା ମୁଖବନ୍ଧଗୁଡ଼ିକରେ କି ବୈଶିଷ୍ଟ୍ୟ ଅଛି କେଜାଣି, ସେଗୁଡ଼ିକୁ ଏକତ୍ର କରି ଗ୍ରନ୍ଥଟିଏ ପ୍ରକାଶ କରିବା ପାଇଁ ମୋ ସାହିତ୍ୟକର୍ମରେ ଜଣେ ଅବଗାହୀ ସାହିତ୍ୟିକ ଶ୍ରୀ ସୁଧୀରଚନ୍ଦ୍ର ବେହୁରା କହୁଛନ୍ତି । ତାହା କିନ୍ତୁ ଏ ପର୍ଯ୍ୟନ୍ତ ସମ୍ଭବ ହୋଇପାରି ନାହିଁ ।

ବିଭିନ୍ନ ସାହିତ୍ୟ-ସଂସ୍ଥା ଓ ସାଂସ୍କୃତିକ ପ୍ରତିଷ୍ଠାନ ସହିତ ମୁଁ ଜଡ଼ିତ ହୋଇ ପଡ଼ିଛି । ତନ୍ମଧ୍ୟରୁ କେତୋଟି ଏବେ କାର୍ଯ୍ୟକାରୀ ହେଉ ନାହିଁ; କିନ୍ତୁ ସକ୍ରିୟ ଥିବା କାଳରେ କିଛି ଉଲ୍ଲେଖନୀୟ କାର୍ଯ୍ୟ କରିପାରିଛି । ଉଦାହରଣ ସ୍ୱରୂପ – ଭଦ୍ରକର 'ଚିନ୍ତାମଣି ସାହିତ୍ୟ ପରିଷଦ' (୧୯୫୮) । କବିଶେଖର ଚିନ୍ତାମଣି ମହାନ୍ତି (୧୮୭୬-୧୯୪୩) ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ବହୁପ୍ରସୂ ସାହିତ୍ୟସ୍ରଷ୍ଟା । ମାତ୍ର ତାଙ୍କ ସୃଷ୍ଟିର ଯଥାଯଥ ମୂଲ୍ୟାୟନ ହୋଇପାରି ନାହିଁ । ପରିଷଦ ୧୯୬୪ ମସିହାରେ ବିଭିନ୍ନ ସାହିତ୍ୟିକଙ୍କ ଦ୍ୱାରା ଲେଖା କରାଇ ତାଙ୍କର ଜୀବନୀ, ସ୍ମୃତିଚିତ୍ର ଓ ସାହିତ୍ୟାଲୋଚନା-ସମ୍ବଳିତ ଗ୍ରନ୍ଥଟିଏ ପ୍ରକାଶ କରିଥିଲା । ତାହା ହିଁ ଏପର୍ଯ୍ୟନ୍ତ କବିଶେଖରଙ୍କ ଉପରେ ଏକମାତ୍ର ଉଲ୍ଲେଖନୀୟ ଗ୍ରନ୍ଥ ହୋଇ ରହିଛି ।

ଭଦ୍ରକର 'କବି ପଦ୍ମନାଭ ସ୍ମୃତି ସମିତି' (୧୯୯୧) ଏକ ନିଆରା ସାଂସ୍କୃତିକ ପ୍ରତିଷ୍ଠାନ, ଯାହା ସହିତ ମୂଳରୁ ଏ ପର୍ଯ୍ୟନ୍ତ ମୁଁ ସଂପୃକ୍ତ ହୋଇ ରହିଛି । କବି ପଦ୍ମନାଭ ବେହେରା (୧୯୫୦-୯୧) ଥିଲେ ଜଣେ ଶାରୀରିକ ପ୍ରତିବନ୍ଧୀ ବା ଭିନ୍ନକ୍ଷମ ବ୍ୟକ୍ତି । ତାଙ୍କର ମଥାଟି ଛଡ଼ା ଅନ୍ୟାନ୍ୟ ଅଙ୍ଗପ୍ରତ୍ୟଙ୍ଗ କାର୍ଯ୍ୟ କରୁ ନଥିଲା । ପଙ୍ଗୁ ହୋଇ ସେ ପର୍ବତ ଲଂଘନ କରିଥିଲେ । ବେଶ୍ ମେଧାବୀ ଥିବାରୁ ଆପଣା ଅଧ୍ୟବସାୟ ବଳରେ ବି.ଏ. ପାଶ୍ କରି ଭଦ୍ରକଠାରେ ବାଣିଜ୍ୟ-ବ୍ୟବସାୟ ଆରମ୍ଭ କରିଥିଲେ । ଚଳାଇଥିଲେ ଟ୍ରକ୍ ବ୍ୟବସାୟ, ନୀଳଲୋହିତ ବ୍ୟବସାୟ ପ୍ରତିଷ୍ଠାନ ଓ ଏକ ମାର୍କେଟ୍ କଂପ୍ଲେକ୍ସ । ବୈଷୟିକ ଉନ୍ନତି ବ୍ୟତୀତ ତାଙ୍କ ଜୀବନରେ ଥିଲା ପାରମାର୍ଥିକ ଅଭୀପ୍ସା । ସାହିତ୍ୟ ଓ ଧର୍ମଗ୍ରନ୍ଥମାନ ତ ପାଠ କରୁଥିଲେ । ଲେଖି ଚାଲିଥିଲେ ରାଶି ରାଶି କବିତା । ୧୯୮୯ ମସିହାରେ ଭଦ୍ରକଠାରେ ପ୍ରତିଷ୍ଠା କରିଥିଲେ ଏକ ସାହିତ୍ୟ ସଂସ୍ଥା 'ଉଆଁସ ମଜଲିସ୍' । ନିଜ ବିଡ଼ମ୍ବିତ ଜୀବନର ଅମା ଅନ୍ଧକାର ପତଳା କରିବା ପାଇଁ ବୋଧହୁଏ ସେ ଏହା

ଗଢ଼ିଥିଲେ । ଏହାର ମାସିକ ବୈଠକ ବସୁଥିଲା, ତହିଁରେ ଅନୁଷ୍ଠିତ ହେଉଥିଲା କବିତା ପାଠ ଏବଂ ସାହିତ୍ୟର ବିଭିନ୍ନ ବିଷୟରେ ଆଲୋଚନା ।

ସେତେବେଳେ ମୁଁ ଭଦ୍ରକ ମହିଳା କଲେଜରେ ଅଧକ୍ଷ ଥାଏଁ । ଦିନେ ପଦ୍ମନାଭଙ୍କ ରିକ୍ସା-ରଥ କଲେଜ ପାଖ ରାସ୍ତାରେ ଅଟକିଲା ଏବଂ ତାଙ୍କର ସାରଥି ରମା ଆସି ମୋତେ ଡାକିନେଲେ । ପ୍ରଶସ୍ତ ଲଲାଟ ଉଜ୍ଜ୍ୱଳ ଚକ୍ଷୁ କବି ନମସ୍କାର ଜଣାଇ କଲେଜ ପାଖ ଅପର୍ତ୍ତିବିନ୍ଧାସ୍ଥ ନିଜ ବାସଭବନକୁ ମୋତେ ନିମନ୍ତ୍ରଣ କଲେ । ସେଠାରେ ପଢ଼ି ଶୁଣାଇଲେ ଗୋଟିକ ପରେ ଗୋଟିଏ ଅନେକ କବିତା । ବିସ୍ମିତ ହେଲି, ଜଣେ ଶାରୀରିକ ପ୍ରତିବନ୍ଧୀ ବ୍ୟକ୍ତିଙ୍କ ଭିତରେ ଏପରି ମେଧା-ଶକ୍ତି ଜାଗରୂକ ହେଲା କିପରି ? ତା'ପରେ ବହୁ ସାହିତ୍ୟସନ୍ଧ୍ୟା ପଦ୍ମନାଭଙ୍କ ବାସଭବନରେ ଅନୁଷ୍ଠିତ ହୋଇଛି । ଦିବ୍ୟ ରାତ୍ରିଭୋଜନ ସହ ତାଙ୍କ କବିତାଗୁଡ଼ିକର ପରିଶୀଳନ ଓ ପରିମାର୍ଜନ କରାଯାଇଛି । ପ୍ରକାଶିତ ହେଲା ତାଙ୍କର ପ୍ରଥମ କାବ୍ୟ ସଂଚୟନ 'ଜଗନ୍ନାଥାୟଣ' । ତାହା ଭଦ୍ରକର ଶହୀଦ୍ ସ୍ମୃତିଭବନଠାରେ ତତ୍‌କାଳୀନ 'ସମାଜ' ସଂପାଦିକା ଶ୍ରୀମତୀ ମନୋରମା ମହାପାତ୍ରଙ୍କ ଦ୍ୱାରା ସମାରୋହ ସହକାରେ ଉନ୍ମୋଚିତ ହେଲା । କବି ପଦ୍ମନାଭ ଏଥିରେ ପ୍ରଚୋଦିତ ହୋଇ ସୃଷ୍ଟିମୁଖର ହୋଇ ଉଠିଲେ । କଟକରେ ଅଛି, ଦିନେ ହଠାତ୍ ଭଦ୍ରକରୁ ଖବର ଆସିଲା ପଦ୍ମନାଭ ଆଉ ନାହାନ୍ତି । ଏହା ତାଙ୍କର ଅକାଳ ମୃତ୍ୟୁ; ମାତ୍ର ଏକଚାଳିଶି ବର୍ଷ ବୟସ ହୋଇଥିଲା । 'ଉଆଁସ ମଜଲିସ୍' ପକ୍ଷରୁ ଏକ ଶୋକସଭା ମୋରି ସଭାପତିତ୍ୱରେ ଅନୁଷ୍ଠିତ ହେଲା । ସଭାରେ ସର୍ବସମ୍ମତି କ୍ରମେ 'କବି ପଦ୍ମନାଭ ସ୍ମୃତି ସମିତି' ଗଠିତ ହେଲା । ସମିତି ପ୍ରତିବର୍ଷ କବିଙ୍କର ଶ୍ରାଦ୍ଧ-ଦିବସ ପାଳନ କରିବ ଏବଂ ଶ୍ରାଦ୍ଧୋତ୍ସବରେ ରାଜ୍ୟର ଜଣେ ଦୁଇଜଣ ଲେଖାଏଁ ଶାରୀରିକ ପ୍ରତିବନ୍ଧୀ କବି ଲେଖକ ସଂଗୀତ-ଶିଳ୍ପୀଙ୍କୁ ଚୟନ କର କବି 'ପଦ୍ମନାଭ ସ୍ମୃତି ପୁରସ୍କାର' ପ୍ରଦାନ ପୂର୍ବକ ସମ୍ବର୍ଦ୍ଧିତ କରିବ । ଏହି ପ୍ରସ୍ତାବ ଏପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇ ଆସୁଛି । ପଦ୍ମନାଭଙ୍କର ସାନ ଭାଇ ଶ୍ରୀହୃଦାନନ୍ଦ ବେହେରା ସ୍ମୃତି ସମିତିର ସେକ୍ରେଟେରୀ ଭାବରେ ସମିତିର ଯାବତୀୟ କାର୍ଯ୍ୟ ସୁଚାରୁ ରୂପେ ପରିଚାଳନା କରିଆସୁଛନ୍ତି ।

ଭଦ୍ରକ ସହରରେ ପବ୍ଲିକ୍ ରିଲେସନ୍ସ ଡିପାର୍ଟମେଣ୍ଟ ଓ ମ୍ୟୁନିସିପାଲିଟି ପକ୍ଷରୁ କେତୋଟି ସାଧାରଣ ପାଠାଗାର ରହିଛି । ସେଠାରେ ସାଧାରଣତଃ କିଛି ଖବରକାଗଜ ପଢ଼ାଯାଏ; ଗ୍ରନ୍ଥାଗାର ବା ଲାଇବ୍ରେରୀ ବୋଇଲେ କିଛି ନାହିଁ । ତେଣୁ 'କବି ପଦ୍ମନାଭ ସ୍ମୃତି ସମିତି' କବିଙ୍କ ବାସଗୃହରେ ଏକ ସାଧାରଣ ଗ୍ରନ୍ଥାଗାର ଚଳାଇବା ପାଇଁ ସ୍ଥିର କଲା । ପଦ୍ମନାଭ ଆପଣା ଜୀବଦ୍ଦଶାରେ ବହୁ ଗ୍ରନ୍ଥ ସଂଗ୍ରହ କରି ଏକ ବ୍ୟକ୍ତିଗତ

ଗ୍ରନ୍ଥାଗାର ପ୍ରତିଷ୍ଠା କରିଥିଲେ । ତାହାକୁ ପୁଞ୍ଜି କରି 'ପଦ୍ମନାଭ ସ୍ମୃତି ଗ୍ରନ୍ଥାଗାର' ପ୍ରତିଷ୍ଠା କରାଗଲା ଜନସାଧାରଣଙ୍କ ବ୍ୟବହାର ପାଇଁ । ମଝିରେ ମଝିରେ ମୁଁ କିଛି କିଛି ପୁସ୍ତକ ଓ ପତ୍ରପତ୍ରିକା ଗ୍ରନ୍ଥାଗାରକୁ ଯୋଗାଇ ଦେଲି । ମାତ୍ର ଦୁଃଖର କଥା, ଗ୍ରନ୍ଥାଗାରଟିର ସଦ୍‌ବ୍ୟବହାର ଭଦ୍ରକବାସୀ କରୁନାହାନ୍ତି । କାଁ ଭାଁ କ୍ୱଚିତ୍ କେହି କଲେଜ ଛାତ୍ର ତଥା ସାଧାରଣ ପାଠକ ସେଠାକୁ ପଢ଼ାଶୁଣା କରିବା ପାଇଁ ଯାଉଛନ୍ତି ।

ସାହିତ୍ୟର ଗବେଷଣାରେ ନିର୍ଦ୍ଦେଶକ ବା ତତ୍ତ୍ୱାବଧାରକ କାର୍ଯ୍ୟ ମଧ୍ୟ ମୋତେ କରିବାକୁ ହେଉଛି । ଅଧ୍ୟାପନା କରୁଥିବା କାଳରେ ତଥା କର୍ମ-ଜୀବନରୁ ଅବସର ନେଲା ପରେ ଏହି କାର୍ଯ୍ୟ କରୁଛି । ଏଯାବତ୍ ଉଣେଇଶ ଜଣ ସ୍କଲାର୍ ମୋ ତତ୍ତ୍ୱାବଧାନରେ ପିଏଚ୍.ଡ଼ି. ତଥା ଡି.ଲିଟ୍ ଡିଗ୍ରୀ ଲାଭ କରିଛନ୍ତି । ମୋର ପ୍ରଥମ ସ୍କଲାର୍ ହେଉଛନ୍ତି ଅଧ୍ୟାପକ କ୍ଷେତ୍ରବାସୀ ନାୟକ । ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ୧୯୭୬ ମସିହାରେ ଡକ୍ଟରେଟ୍ ପାଇଲେ । କେତେକ ଏମ୍.ଫିଲ୍. ଡିସାର୍ଟେସନ୍‌ର ମଧ୍ୟ ନିର୍ଦ୍ଦେଶନା ଦେଇଛି । ଏହି ଅନୁମୋଦିତ ଗବେଷଣା-ପ୍ରବନ୍ଧଗୁଡ଼ିକ ମଧ୍ୟରୁ ଅଧିକାଂଶ ମୁଦ୍ରିତାକାରରେ ପ୍ରକାଶିତ ହୋଇଛି । ଅନେକେ ମନେ କରନ୍ତି ସାହିତ୍ୟ-ଗବେଷଣାର ନିର୍ଦ୍ଦେଶନା ଦେବା ସହଜ କାର୍ଯ୍ୟ । ମାତ୍ର କଥାଟା ଠିକ୍ ନୁହେଁ । ଗବେଷଣାର ବିଷୟବସ୍ତୁ ବାଛିବାଠାରୁ ପ୍ରବନ୍ଧର ପ୍ରତ୍ୟେକ ପରିଚ୍ଛେଦ ପଢ଼ି ଆବଶ୍ୟକ ସଂଶୋଧନ ଓ ଖଣ୍ଡନ-ମଣ୍ଡନ କରିବା ପର୍ଯ୍ୟନ୍ତ ମୁଁ ଗବେଷକଙ୍କୁ ସାହାଯ୍ୟ କରିଥାଏ । ସ୍କଲାର୍ ଗ୍ରହଣ କରିବା ପୂର୍ବରୁ ତାଙ୍କର ପ୍ରକାଶିତ ବା ଅପ୍ରକାଶିତ ଲେଖାଲେଖି ଦେଖି ଗବେଷଣା କରିବାର ଦକ୍ଷତା ବିଷୟ ବୁଝିଥାଏଁ । ମଧ୍ୟମ ଧରଣର ବା ଉତ୍ତମ ଧରଣର ମେଧାସଂପନ୍ନ ସ୍କଲାର୍ ଦେଖି ତାଙ୍କର ସାମର୍ଥ୍ୟ ଅନୁଯାୟୀ ଗବେଷଣାର ବିଷୟବସ୍ତୁ ନିର୍ବାଚନ କରି ଦେଇଥାଏଁ । ସ୍କଲାର୍‌ମାନଙ୍କ ଗବେଷଣାର ବିଷୟବସ୍ତୁକୁ ଚାହିଁ ମୁଁ ନିଜେ ମଧ୍ୟ କିଛି ପଢ଼ାପଢ଼ି କରିଥାଏ । ଆଉ ଗୋଟିଏ କଥା ଏଠାରେ ଉଲ୍ଲେଖ କରିବାରେ ମୋର ଦ୍ୱିଧା ବା ସଂକୋଚ ନାହିଁ ଯେ ମୁଁ ହୋଇଥାଏ ଜଣେ ଛାତ୍ର ସ୍କଲାର୍‌ଙ୍କ ସହିତ । ସ୍କଲାର୍‌ଙ୍କ ସହ ଆଲୋଚନାରୁ ତଥା ସେମାନଙ୍କ ଲେଖାଲେଖିରୁ ବରାବର କିଛି ଶିକ୍ଷାଲାଭ କରିଥାଏଁ ।

୨୦୦୪ ମସିହା ଜାନୁଆରୀ ମାସରେ ଏକ ଦୈନିକ ସମ୍ବାଦପତ୍ରର ସଂପାଦକ ଦାୟିତ୍ୱ ଗ୍ରହଣ କଲି । ପୂର୍ବରୁ ଶାନ୍ତିନିକେତନରେ ଅଧ୍ୟୟନ କାଳରେ 'ଅଗ୍ରଣୀ' ଓ 'କବିତା' ପତ୍ରିକା ସଂପାଦନା କରିଥିଲି । କଟକରେ 'ଡଗର' ପତ୍ରିକାର ସଂପାଦନା ସହ ମଧ୍ୟ ସଂପୃକ୍ତ ହୋଇଥିଲି । ଯଦିଚ ଏଗୁଡ଼ିକ ମାସିକ ବା ଦ୍ୱିମାସିକ ସାହିତ୍ୟପତ୍ରିକା ଥିଲା, ତଥାପି ସଂପାଦନା ସଂପର୍କରେ ମୁଁ ମୋଟାମୋଟି ଏକ ଧାରଣା କରି ନେଇଥିଲି । ଦିନେ ଅକସ୍ମାତ୍ ସମାଜସେବୀ ଓ ଭୁବନେଶ୍ୱରସ୍ଥ 'ନିଶ୍ୱାସ' ପ୍ରତିଷ୍ଠାନର ସଂଚାଳକ ଡକ୍ଟର

ରାଧାକାନ୍ତ ନାୟକ ମୋତେ ଡକାଇ ପଠାଇଲେ । ସାକ୍ଷାତରେ ଗ୍ରାମାଞ୍ଚଳ ପାଇଁ ଏକ ଦୈନିକ ଖବରକାଗଜ ସେ ପ୍ରକାଶ କରିବାକୁ ସ୍ଥିର କରିଛନ୍ତି ବୋଲି ଜଣାଇଲେ ଏବଂ ସେହି କାଗଜର ସଂପାଦକ ହେବା ପାଇଁ ମୋତେ ଅନୁରୋଧ କଲେ । ତାଙ୍କ ସହିତ ପୂର୍ବରୁ ମୋର ପ୍ରାୟ ପରିଚୟ ନ ଥିଲା । ସେ ମୋ ବିଷୟ କିପରି କାହାଠାରୁ ଜାଣିଲେ, କହିପାରିବି ନାହିଁ । ଖବରକାଗଜ ପ୍ରକାଶ ସଂପର୍କରେ ତାଙ୍କର ଆଭିମୁଖ୍ୟ ମୋତେ ଭଲ ଲାଗିଲା; କାରଣ ମୁଁ ଗ୍ରାମାଞ୍ଚଳର ବ୍ୟକ୍ତି ଏବଂ ରାଜ୍ୟର ମଫସଲୀ ଜନଜୀବନ ତଥା ବଣଜଙ୍ଗଲର ଆଦିବାସୀଙ୍କ ବିଷୟରେ ଅଳ୍ପେ ବହୁତେ କିଛି ଜାଣିଥିଲି । ଡକ୍ଟର ନାୟକଙ୍କ ପ୍ରସ୍ତାବରେ ମୁଁ ରାଜି ହେଲି ଏବଂ ବର୍ଷକ ପାଇଁ ସଂପାଦକ-କାର୍ଯ୍ୟ ତୁଲାଇବାକୁ ଚୁକ୍ତିବଦ୍ଧ ହେଲି ।

ଖାସ୍ ଗ୍ରାମାଞ୍ଚଳରେ ଜନସମାଜ ପାଇଁ ଆମର କୌଣସି ଖବରକାଗଜ ନ ଥିଲା । କିନ୍ତୁ ଗ୍ରାମବାସୀ-ବହୁଳ ରାଜ୍ୟ ପାଇଁ ଅବଶ୍ୟ ଦୈନିକ କାଗଜଟିଏ ଲୋଡ଼ା । ଗ୍ରାମୀଣ ଜୀବନର ଦୁଃଖ ଦୁର୍ଦ୍ଦଶା, ଅଭାବ ଅସୁବିଧା, ସମସ୍ୟା ସଂକଟାଦି ବିଷୟ ଜଣାଇବା ପାଇଁ ଆମର ଆଉ ଆଉ କାଗଜ ସାମୟିକ ଭାବରେ ପୃଷ୍ଠାଏ ଅଧପୃଷ୍ଠାଏ ବିନିଯୋଗ କରନ୍ତି ସତ୍ୟ, ମାତ୍ର ତାହା ସମୁଦ୍ରକୁ ଶଙ୍ଖେ ପାଣି । 'ନିଶ୍ୱାସ' ପକ୍ଷରୁ ଏକ ଟ୍ରଷ୍ଟ ଗଠନ ପୂର୍ବକ ପ୍ରକାଶ କରାଗଲା ଦୈନିକ 'ଜନବାଣୀ', ଯାହାର ଶିରୋଭୂଷଣ କଥାଟି ହେଲା — 'କଣ୍ଠରୁଦ୍ଧ ସାଧାରଣ ଜନତାର ବାଣୀ' । ସାଧାରଣ ଜନତା ଠିକ୍ ଭାବରେ ନିଜର ମନୋଭାବ ପ୍ରକାଶ କରିପାରନ୍ତି ନାହିଁ । ଠିକ୍ ସମୟରେ ଠିକଣା ଜାଗାରେ ଆପଣାର ଅଭାବ ଅସୁବିଧା, ସମସ୍ୟାବଳୀ ଉପସ୍ଥାପନ କରିପାରନ୍ତି ନାହିଁ । ସ୍ୱତନ୍ତ୍ର ଭାବେ ସହର, ଥାନା ବା ବ୍ଲକ୍‌ରେ କାଗଜର ପ୍ରତିନିଧିମାନେ ରହିଛନ୍ତି ସିନା, ଗ୍ରାମପଞ୍ଚାୟତ ଓ ପେଣ୍ଠ ଗ୍ରାମମାନଙ୍କରେ ସେଭଳି ପ୍ରତିନିଧି ପ୍ରାୟ ନ ଥାନ୍ତି, ଯେଉଁମାନେ ଗ୍ରାମବାସୀ ସାଧାରଣ ଜନତାଠାରୁ ବିଭିନ୍ନ ଖବର ସଂଗ୍ରହ କରି ଖବର କାଗଜରେ ପ୍ରକାଶ ପାଇଁ ପଠାଇବେ । 'ଜନବାଣୀ' ଗ୍ରାମାଞ୍ଚଳର ସାଧାରଣ ଜନତାଙ୍କ କଥା କହିଲା, କହିଲା ସେମାନଙ୍କ ତୁଣ୍ଡର ଭାଷାରେ । 'ନିଶ୍ୱାସ'ରେ ସାମାଜିକ ଯୋଗାଯୋଗ ବିଭାଗରେ ସ୍ନାତକ ଓ ସ୍ନାତକୋତ୍ତର ଶିକ୍ଷା ପ୍ରଦାନ କରାଯାଉଛି । ସାମ୍ବାଦିକତାର ଶିକ୍ଷା ପାଇବା ସଂଗେ ସଂଗେ ବିଭାଗୀୟ ଛାତ୍ରଛାତ୍ରୀମାନେ ଗ୍ରାମାଞ୍ଚଳରୁ ସମ୍ବାଦ ସଂଗ୍ରହ କରିଥାଆନ୍ତି । ମଝିରେ ମଝିରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ 'ଜନବାଣୀ'ର ଗ୍ରାମୀଣ ପ୍ରତିନିଧିମାନଙ୍କର ବୈଠକ ଅନୁଷ୍ଠିତ ହୋଇଥାଏ । କେଉଁ ଧରଣର ସମ୍ବାଦ କିପରି ଶୈଳୀରେ ଲେଖି 'ଜନବାଣୀ'ରେ ପ୍ରକାଶ ପାଇଁ ସେମାନେ ପଠାଇବେ, ସେହି ବୈଠକରେ ସେମାନଙ୍କୁ ପରାମର୍ଶ ଦିଆଯାଇଥାଏ ।

ଗ୍ରାମାଞ୍ଚଳର ସମ୍ବାଦ ପ୍ରକାଶ ଉପରେ ଗୁରୁତ୍ୱ ଦେବା ସଂଗେ ସଂଗେ 'ଜନବାଣୀ' ଶୋଷିତ, ଦଳିତ, ନିମ୍ନବର୍ଗ ଓ ପଛୁଆବର୍ଗର ଲୋକଙ୍କ ବିଷୟରେ ଖବରମାନ ପ୍ରକାଶ କରୁଥାଏ, ନାରୀ ସମାଜ ଓ ସଂଖ୍ୟାଲଘୁଙ୍କ ସଂପର୍କିତ ସମ୍ବାଦ ମଧ । ଦୈନିକ ଏକ ସ୍ୱତନ୍ତ୍ର ପୃଷ୍ଠାରେ ସାଧାରଣ ଲୋକଙ୍କ ବିଭିନ୍ନ ସମସ୍ୟା ଓ ଚଳନ୍ତି ଘଟଣାବଳୀ ଉପରେ ଆଲୋଚନା ପ୍ରବନ୍ଧମାନ ସ୍ଥାନିତ ହୋଇଥାଏ । ରବିବାର ସଂଖ୍ୟା ସେହି ସ୍ୱତନ୍ତ୍ର ପୃଷ୍ଠାରେ ପ୍ରକାଶ ପାଇଥାଏ 'ଜନ ସାହିତ୍ୟ' କିଛି କବିତା, ଗଳ୍ପ ଓ ଆଲୋଚନାକୁ ଘେନି । ସର୍ବୋପରି ପ୍ରଥମ ପୃଷ୍ଠାରେ ସ୍ଥାନ ପାଇଥାଏ ସଂପାଦକୀୟ । 'ଜନବାଣୀ'ର ଉଦ୍ଦେଶ୍ୟ ଓ ଆଭିମୁଖ୍ୟକୁ ଦୃଷ୍ଟିରେ ରଖି ମୁଁ ସଂପାଦକୀୟ ମାନ ଲେଖିଥାଏଁ । ଦେଢ଼ବର୍ଷରୁ ଅଧିକ କାଳ ରହଣି ଭିତରେ ମୁଁ ପ୍ରାୟ ତିନିଶହ ସଂପାଦକୀୟ ଆଲୋଚନା ଲେଖିଛି । ଏଠାରେ ତହିଁରୁ ଗୋଟିଏ ଯୋଡ଼ିଏର ଉଦାହରଣ ଦେଉଛି ।

(୧) ''ଆଦିବାସୀଙ୍କ ଜମି ଓ ଜଙ୍ଗଲ – ଆମ ରାଜ୍ୟରେ କନ୍ଧ, କୋଲ, ଗଣ୍ଡ, ଗଦବା, ପରଜା, ବିଞ୍ଝାଲ, ଭୂଇଁୟା, ବଣ୍ଡା, ସଉରା, ସାନ୍ତାଳ ଆଦି ବାଷଠି ପ୍ରକାର ଆଦିବାସୀ ଗୋଷ୍ଠୀ ବା ସଂପ୍ରଦାୟ ରହୁଛନ୍ତି । ସଂଖ୍ୟାରେ ସତୁରୀ ଲକ୍ଷରୁ ଅଧିକ । ଏମାନେ ରାଜ୍ୟର ମୋଟ ଜନସଂଖ୍ୟାର ପ୍ରାୟ ଏକ-ଚତୁର୍ଥାଂଶ, ଅର୍ଥାତ୍ ପ୍ରତି ଚାରିଜଣ ଓଡ଼ିଶାବାସୀଙ୍କ ମଧରେ ଜଣେ ଆଦିବାସୀ । ଏମାନେ ମୁଖ୍ୟତଃ ବଣପାହାଡ଼ ଅଞ୍ଚଳରେ ବସବାସ କରି ରହୁଛନ୍ତି । ଏକ ହିସାବରୁ ଜଣା ପଡ଼ିଛି ଯେ – ଶତକଡ଼ା ପ୍ରାୟ ପଚିଶ ଆଦିବାସୀ ପରିବାରର ଜମିବାଡ଼ି ବୋଇଲେ କିଛି ନାହିଁ । ପାହାଡ଼ୀ ଭୂୟାଁ, ମାଙ୍କଡ଼ିଆଙ୍କ ଭଳି କେତେକ ଆଦିବାସୀ ଗୋଷ୍ଠୀ ଯାଯାବର ଶ୍ରେଣୀର । ସେମାନେ କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବସବାସ କରି ରହନ୍ତି ନାହିଁ । ତେଣୁ ସେମାନଙ୍କର ରେକର୍ଡ଼ କରାଯାଇଥିବା ଜମି ବା ଘରଡିହର ପ୍ରଶ୍ନ ଉଠିବାର ନୁହେଁ । ଯାହାହେଉ, ଯେଉଁ ଆଦିବାସୀ ପରିବାରର ଜମି ବା ଘରବାଡ଼ି ରହିଛି, ତାହା ଏଯାଏଁ ଠିକ୍ ଭାବରେ ଜମିଜମା-ବନ୍ଦୋବସ୍ତ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ହୋଇ ନାହିଁ । ତାହାର କୁଫଳ ଏବେ ସେମାନେ ଭୋଗୁଛନ୍ତି ।

''ଆଦିବାସୀମାନେ ବଣପାହାଡ଼ ଜଙ୍ଗଲିଆ ଅଞ୍ଚଳରେ କାହିଁ କେଉଁ କାଳରୁ ଘରଦ୍ୱାର କରି ରହିଛନ୍ତି; ଜଙ୍ଗଲ ସଫା କରି ନିଜ ନିଜର ଦରକାର ଅନୁଯାୟୀ ଚାଷ ପାଇଁ ଜମି ଆବାଦୀ କରୁଛନ୍ତି । ତହିଁରେ ରହିଛି କିଛି ସରକାରୀ ସଂରକ୍ଷିତ ଜଙ୍ଗଲ ବା ଅନାବାଦୀ ଜମି । ଚାଷବାସରୁ ଏବଂ ଜଙ୍ଗଲରୁ ମିଳୁଥିବା ନାନା ପ୍ରକାର ଫଳମୂଳରୁ ସାଧାରଣତଃ ଆଦିବାସୀମାନଙ୍କର ଭରଣପୋଷଣ ହୋଇଥାଏ । ଏବେ ସେମାନଙ୍କ ଦାନାରେ ଧୂଳି ଦେବାର ଚେଷ୍ଟା ଚାଲିଛି । ଧନୀ ବ୍ୟବସାୟୀଙ୍କ ଛଞ୍ଚାଣ ଦୃଷ୍ଟି ପଡ଼ିଛି ସେମାନଙ୍କ ଭାତହାଣ୍ଡି ଉପରେ ।

''ଆମର ବଣ ପାହାଡ଼ରେ ପ୍ରଚୁର ଧାତୁଦ୍ରବ୍ୟ ରହିଛି । ତାକୁ ଅମଳ କରିବା ପାଇଁ ଖଣି ଖୋଳିବା, ଶିଳ୍ପ କଳକାରଖାନା ବସାଇବା ଦରକାର । ପୁଣି, ବେଶି ଲାଭ ମିଳୁଥିବା ଚା' ଓ କଫି ଚାଷ ପାଇଁ ପାହାଡ଼ୀ ଗଡ଼ାଣିଆ ଜମି ଦରକାର । ଏପରି ସୁବର୍ଣ୍ଣ ସୁଯୋଗ ଛାଡ଼େ କିଏ ? ଜଙ୍ଗଲ ନଷ୍ଟଭ୍ରଷ୍ଟ ହେଉ ପଛକେ ଏବଂ ସେହି ଅଞ୍ଚଳରେ ବହୁ କାଳରୁ ବସବାସ କରି ରହିଥିବା ଆଦିବାସୀଙ୍କର ଘରସଂସାର ଉଜୁଡ଼ି ଯାଉ ପଛକେ, ଆମର ନଗଦ-ନାରାୟଣ ଅର୍ଥ ଲୋଡ଼ା – ରାଜସ୍ୱ ବଢ଼ିବା ଦରକାର । ଝିଣ୍ଟିକା ମାରି ବଣି ପୋଷିବା ନ୍ୟାୟରେ ଯେଉଁ ଅଞ୍ଚଳରେ କିଛି ଶିଳ୍ପ, କଳକାରଖାନା ବସାଇବା କିମ୍ବା ଖଣି ଖୋଳିବା ଦରକାର ପଡୁଛି, ସେଠାରେ ଥିବା ନିରୀହ ଆଦିବାସୀଙ୍କୁ ଭିଟାମାଟିରୁ ଉଚ୍ଛେଦ କରାଯାଉଛି । ଉଚ୍ଛେଦ କରାଯାଉଛି ଏହି ଆଳରେ ଯେ – ଆଦିବାସୀମାନେ ସରକାରୀ ଜମି ଜବରଦଖଲ କରିଛନ୍ତି, ସେମାନେ ଦଖଲ କରିଥିବା ଜମିବାଡ଼ିର ପଟ୍ଟାପାଉତି ବା କିଛି ରେକର୍ଡ଼ ନାହିଁ । ଏ କ୍ଷେତ୍ରରେ ଥିବା ଆଦିବାସୀଙ୍କ ପାଇଁ ସ୍ୱତନ୍ତ୍ର ଆଇନ୍ କାନୁନ୍ କିମ୍ବା ମାନବିକ ଅଧିକାର ପ୍ରତି ପ୍ରାୟ ଆଖି ବନ୍ଦ କରି ଦିଆଯାଉଛି । ଏହା ଏକ ଭୟଙ୍କର ଅବସ୍ଥା ।'' ଇତ୍ୟାଦି । (ଜନବାଣୀ, ୬.୨.୨୦୦୪ ତାରିଖ)

(୨) ''ଗାଆଁର ପରିବେଶ – ସକାଳୁ ସକାଳୁ ଝିଅବହୂମାନେ ଉଠି ମିଳିମିଶି ଗାଆଁଦାଣ୍ଡ ପହଁରା ମାରି ପରିଷ୍କାର କରନ୍ତି । ଅଳିଆ ଆବର୍ଜନାତକ ଠୁଳ କରି ଗୋଟାଏ ନିର୍ଦ୍ଦିଷ୍ଟ ଜାଗାରେ ପକାନ୍ତି । ତା'ପରେ ଝାଡୁ ପହଁରା ଧୁଆଧୋଇ କରି ସେମାନେ ଗାଧୁଆ-ପାଧୁଆ ସାରି ବାଲୁକା ପୂଜା କରି ଘରକୁ ବାହୁଡ଼ନ୍ତି । ଏହାହିଁ ଥିଲା ସେ କାଳର 'ଦାଣ୍ଡପହଁରା ଓଷା' । ଆଜିକାଲି ଗାଆଁଗଣ୍ଡାରେ ଝିଅବହୂମାନେ ସେହି ଓଷା ପ୍ରାୟ ପାଳୁ ନାହାନ୍ତି । ଦାଣ୍ଡ ଦୁଆରେ ଅଳିଆ ଆବର୍ଜନା ଜମା ହୋଇ ରହୁଛି, ନିୟମିତ ସଫାସୁତୁରା ହୋଇପାରୁ ନାହିଁ । x x ଗାଆଁ ବାହାରେ ପଡ଼ିଆ ଜମି, ଗୋଚର ଭୂଇଁ ଆଉ ବେଶି ନାହିଁ । ଲୋକେ ସେଠାରେ ଘରବାଡ଼ି ବା ଚାଷଜମି କରିଦେଲେଣି । ଗାଆଁର ଗାଈଗୋରୁ ଚରିବା ପାଇଁ ଆଉ ଜାଗା ନାହିଁ । ପଡ଼ିଆରେ ଗୋବରଗଡ଼ା କରି ସ୍ତ୍ରୀ ଲୋକମାନେ ଯେଉଁ ଘଷି ପାରୁଥିଲେ, ତହିଁରେ ବଡ଼ ଅସୁବିଧା ହେଲାଣି । ପୋଖରୀ ହୁଡ଼ାରେ ଗାଡ଼ କରି ସେମାନେ ଗୋବର ଜମା କରି ରଖୁଛନ୍ତି । ବର୍ଷା ହେଲେ, ଗୋବର ପାଣି ଓ ପୋଖରୀ ପାଣି ମିଶି ଏକାକାର ହେଉଛି । ପୁଣି, ଗାଆଁର ଅଧିକାଂଶ ଲୋକଙ୍କର ତିଆରି ପାଇଖାନା ନ ଥିବାରୁ ସେମାନେ ସେହି ପୋଖରୀ ହୁଡ଼ାକୁ ଶୌଚ ସ୍ଥାନ ଭାବରେ ବ୍ୟବହାର କରନ୍ତି । ହୁଡ଼ା ତଳକୁ ଚାଷଜମିରେ ପାଣି କାଦୁଅ, ସେଠି ମଳତ୍ୟାଗ ପାଇଁ ବସିବା ଅସୁବିଧା । ପୋଖରୀ ହୁଡ଼ାରେ ଗୋବର ଓ ମଣିଷ ମଳ ଭିତରେ ତଫାତ୍ ରହୁ ନାହିଁ । ତାହା ସବୁ ପୋଖରୀ ଜଳ ସହିତ ମିଶି କଦର୍ଯ୍ୟ ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି

କରୁଛି । ଗ୍ରାମପଞ୍ଚାୟତର ୱାର୍ଡ଼-ମେମ୍ବରମାନେ ଏଥିପାଇଁ ଦୃଷ୍ଟି ଦେବାର କଥା । କିନ୍ତୁ ସବୁ ଗାଆଁରେ ତାହା ସମ୍ଭବ ହୋଇପାରୁ ନାହିଁ । ଲୋକେ କିନ୍ତୁ ବୁଝିବାକୁ ଆରମ୍ଭ କଲେଣି ଯେ – ଗାଆଁର ପରିମଳ ବ୍ୟବସ୍ଥା ଠିକ୍ ରହୁ ନାହିଁ; ପାଣିପବନ ପ୍ରଦୂଷିତ ହେଉଛି ।'' ଇତ୍ୟାଦି । (ଜନବାଣୀ, ୧୭.୫.୨୦୦୪ ତାରିଖ)

# 'ଓଡ଼ିଆ ଗବେଷଣା ପରିଷଦ'

ଅଧ୍ୟାପକ କ୍ଷେତ୍ରବାସୀ ନାୟକ 'ଓଡ଼ିଆ ଗବେଷଣା ପରିଷଦ'ର ପ୍ରାଣ-ପ୍ରତିଷ୍ଠାତା । ୧୯୭୬ ମସିହା ଅକ୍ଟୋବର ମାସରେ ତାଙ୍କ ପିଏଚ୍.ଡ଼ି. ପରୀକ୍ଷାର ମୌଖିକ ପର୍ବ କଲିକତାଠାରେ ପ୍ରଫେସର ସୁକୁମାର ସେନ୍‌ଙ୍କ ବାସଗୃହରେ ଅନୁଷ୍ଠିତ ହେଲା । ତାହା ଶେଷ କରି ଆମେ ପୁରୀ ଏକ୍ସପ୍ରେସ୍ ଟ୍ରେନ୍ ଯୋଗେ କଟକ ବାହୁଡ଼ୁଥିଲୁ । ବାଟରେ ଭାଷା-ସାହିତ୍ୟର ଆଲୋଚନା-ଚର୍ଚ୍ଚା ଓ ଗବେଷଣା ପାଇଁ କିଛି ଆନୁଷ୍ଠାନିକ ଉଦ୍ୟମର ଆବଶ୍ୟକତା ସଂପର୍କରେ ଆମ ଭିତରେ କଥାବାର୍ତ୍ତା ହେଲା । ବହୁ ଦିନ ତଳେ ଗତ ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ବିଚ୍ଛନ୍ଦଚରଣ ପଟ୍ଟନାୟକ ପ୍ରମୁଖ ଏଗାରଜଣ ସଂସ୍କୃତିପ୍ରେମୀ ବିଶିଷ୍ଟ ବ୍ୟକ୍ତିଙ୍କୁ ଘେନି 'ପ୍ରାଚୀ ସମିତି' ପ୍ରତିଷ୍ଠିତ ହୋଇଥିଲା । 'ପ୍ରାଚୀ' ନାମକ ଏକ ପତ୍ରିକା ପ୍ରକାଶ ସହିତ ଏହା ପ୍ରକାଶିତ କରିଥିଲା ତେପନ ଖଣ୍ଡି ପ୍ରାଚୀନ ସାହିତ୍ୟ-ସଂସ୍କୃତିର ଗ୍ରନ୍ଥ । ମାତ୍ର ପ୍ରତିଷ୍ଠାନଟି ଅଳ୍ପ କେତୋଟି ବର୍ଷ କାର୍ଯ୍ୟ କଲା ପରେ ବନ୍ଦ ହୋଇ ଯାଇଥିଲା । ସେହିପରି ସାହିତ୍ୟ-ସଂସ୍କୃତିର ଚର୍ଚ୍ଚା ଓ ଗବେଷଣା ଉଦ୍ଦେଶ୍ୟରେ ଏକ ପ୍ରତିଷ୍ଠାନ ସ୍ଥାପନ ପାଇଁ ଆମ ଭିତରେ କଥାବାର୍ତ୍ତା ହେଲା । ପୁରୀ ଏକ୍ସପ୍ରେସ୍‌ର ଗତି ସହିତ ଏ ବିଷୟରେ ଆମ ମନର ଉତ୍ସାହ ବଢ଼ି ଚାଲିଥାଏ । ବାସ୍ତବିକ, ସୃଜନଶୀଳ ସାହିତ୍ୟ ପାଇଁ ସଂଘ ବା ସଂଗଠନ ଲୋଡ଼ା ନ ହୋଇପାରେ, ମାତ୍ର ସମାଲୋଚନା ଗବେଷଣା ସକାଶେ ଆନୁଷ୍ଠାନିକ ବା ସଂଘୀୟ ଉଦ୍ୟମ ଆବଶ୍ୟକ । ଶେଷରେ ମୁଁ କ୍ଷେତ୍ରବାସୀଙ୍କୁ କହିଲି – ''ତମେ ବ୍ରହ୍ମପୁର ବାହୁଡ଼ି ଯାଇ (ସେତେବେଳେ କ୍ଷେତ୍ରବାସୀ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ଅବସ୍ଥାପିତ ଥିଲେ) ତମର ସାଧୁ ପ୍ରସ୍ତାବଟି ସହ ଗବେଷଣା ପ୍ରତିଷ୍ଠାନର ଏକ ଚିଠା ସମ୍ବିଧାନ ପ୍ରସ୍ତୁତ କରି ମୋ ପାଖକୁ ପଠାଇ ଦିଅ ।''

କ୍ଷେତ୍ରବାସୀ ତାହା ହିଁ କଲେ । ତାଙ୍କର ଧର୍ମପତ୍ନୀ ଲାବଣ୍ୟ କହନ୍ତି ଯେ – ପୂର୍ବରୁ କ୍ଷେତ୍ରବାସୀ ବଲାଙ୍ଗୀର ଓ ବ୍ରହ୍ମପୁର ଖଲିକୋଟ କଲେଜରେ ଥିଲାବେଳେ ଅନୁରୂପ

ଉଦ୍ୟମ କରିଥିଲେ; ମାତ୍ର ତାହା ବିଶେଷ ଫଳପ୍ରଦ ହୋଇପାରି ନ ଥିଲା । ସେହି ପ୍ରଚେଷ୍ଟାର ଅଭିଜ୍ଞତା ଘେନି କ୍ଷେତ୍ରବାସୀ ଅଳ୍ପ ଦିନ ମଧ୍ୟରେ ଗବେଷଣା ପ୍ରତିଷ୍ଠାନ ସଂପର୍କରେ ଏକ ଚିଠା ସମ୍ବିଧାନ ପ୍ରସ୍ତୁତ କିର ପଠାଇଦେଲେ । ତେଣୁ କହିବାକୁ ହେବ ଯେ — ଗୋଟାଏ ପଶୁଶାଳା ଯେପରି ଯୀଶୁଙ୍କ ଜନ୍ମସ୍ଥଳ ଥିଲା, କିମ୍ବା 'ନନ୍‌ସେନ୍ସ କ୍ଲବ୍'ରୁ ଯେପରି 'ସବୁଜ ସାହିତ୍ୟ ସମିତି' ଜନ୍ମ ନେଇଥିଲା, ସେହିପରି 'ଓଡ଼ିଆ ଗବେଷଣା ପରିଷଦ'ର ସୂତିକା-ସ୍ଥାନ ଥିଲା ଏକ ଚଳନ୍ତା ରେଲ୍‌ଗାଡ଼ି ।

ତା'ପରେ ମୁଁ ଚିଠା ସମ୍ବିଧାନଟି ଦେଖାଇ କେତେକ ସାହିତ୍ୟିକ ବନ୍ଧୁଙ୍କ ସହ ଗବେଷଣା ପ୍ରତିଷ୍ଠାନ ପ୍ରସଙ୍ଗରେ ଆଲୋଚନା କଲି । ଶାନ୍ତିନିକେତନସ୍ଥ ବିଶ୍ୱଭାରତୀର ପ୍ରଫେସର ନରେନ୍ଦ୍ରନାଥ ମିଶ୍ର, ସମ୍ବଲପୁର ବିଶ୍ୱବିଦ୍ୟାଳୟର ଡକ୍ଟର ଆଦିକନ୍ଦ ସାହୁ ଓ ଗବେଷକ ଶ୍ରୀ ମନୀନ୍ଦ୍ର ମହାନ୍ତି, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ବଂଶୀଧର ମହାନ୍ତି ପ୍ରଫେସର୍ କୃଷ୍ଣ ଚରଣ ସାହୁ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରଫେସର୍ ଗଗନେନ୍ଦ୍ରନାଥ ଦାଶ, ରେଭେନ୍ସା କଲେଜ ଓଡ଼ିଆ ବିଭାଗର ପ୍ରଫେସର୍ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ତଥା ସାହିତ୍ୟିକ ଚିତ୍ତରଂଜନ ଦାସ ପ୍ରମୁଖ ସମସ୍ତେ ଭାଷା-ସାହିତ୍ୟର ଆନୁଷ୍ଠାନିକ ଆଲୋଚନା-ଚର୍ଚ୍ଚା ଓ ଗବେଷଣା ସକାଶେ ଏହା କାର୍ଯ୍ୟକାରୀ ହେଉ ବୋଲି ମତ ପ୍ରକାଶ କଲେ । ଇତି ମଧ୍ୟରେ କ୍ଷେତ୍ରବାସୀ ବହ୍ମପୁରରୁ କଟକ ବଦଳି ହୋଇ ଆସିଲେ । ଫଳରେ ପ୍ରସ୍ତାବିତ ଗବେଷଣା ପ୍ରତିଷ୍ଠାନର ରୂପାୟନ କାର୍ଯ୍ୟ ତ୍ୱରାନ୍ୱିତ ହେଲା । ପ୍ରତିଷ୍ଠାନର ନାମକରଣ ଘେନି ଆମ ଭିତରେ ମତାନ୍ତର ଉପୁଜିଲା । କ୍ଷେତ୍ରବାସୀ କହିଲେ — ନାମଟି ହେଉ 'ଓଡ଼ିଆ ଗବେଷଣା ପରିଷଦ' । ମୁଁ କହିଲି — କେବଳ 'ଗବେଷଣା ପରିଷଦ' ନାମ ରହିଲେ ଭଲ ହେବ । କାରଣ, ଏହି ପ୍ରସ୍ତାବିତ ପ୍ରତିଷ୍ଠାନରେ କେବଳ ଓଡ଼ିଆ ଭାଷା-ସାହିତ୍ୟର ଆଲୋଚନା-ଚର୍ଚ୍ଚା ହେବ ନାହିଁ, ଦେଶୀ ବିଦେଶୀ ଆଉ ଆଉ ଭାଷା-ସାହିତ୍ୟର ଚର୍ଚ୍ଚା ମଧ୍ୟ ହେବ । ତେଣୁ ପ୍ରତିଷ୍ଠାନଟିର ନାମ ଆଗରେ 'ଓଡ଼ିଆ' କଥାଟା ଯୋଡ଼ିଲେ, ଏହାର ପରିସର ସଂକୁଚିତ ହେବ ନାହିଁ କି ? କ୍ଷେତ୍ରବାସୀ ମୋ କଥାରେ ସମ୍ମତ ହେଲେ ନାହିଁ । ଶେଷରେ 'ଓଡ଼ିଆ ଗବେଷଣା ପରିଷଦ' ନାମ ଧାରଣ କରି ୧୯୮୦ ମସିହା ଅକ୍ଟୋବର ମାସରେ ପ୍ରତିଷ୍ଠାନଟି ଭୂମିଷ୍ଠ ହେଲା ଅର୍ଦ୍ଧଶତାଧିକ ସଦସ୍ୟ-ସଦସ୍ୟାଙ୍କ ଓଡ଼ିଆ ।

ପରିଷଦର ଉଦ୍‌ଘାଟନ ଉତ୍ସବରେ ସାହିତ୍ୟିକ ପ୍ରଫେସର କୁଞ୍ଜବିହାରୀ ଦାଶ ମୁଖ୍ୟ ଅତିଥି ଭାବରେ ଯୋଗଦାନ କରିଥିଲେ । ସଭାପତି ଭାବରେ ମୋର ବକ୍ତବ୍ୟ ଥିଲା — ''ବନ୍ଧୁଗଣ, ଦୀର୍ଘଦିନର ପ୍ରସ୍ତାବ ଓ ପରିକଳ୍ପନାର ଗର୍ଭବାସ ପରେ ଆଜି

ଆମର ଏ ଅନୁଷ୍ଠାନଟି ବିଧିବଦ୍ଧ ଭାବରେ ଭୂମିଷ୍ଠ ହୋଇଛି । ଗର୍ଭଧାରଣ ଓ ପ୍ରସବର ପର୍ବ ସରଳ ପ୍ରୀତିପଦ ନ ହେଲେ ହେଁ, ନବଜାତକର ଆବିର୍ଭାବରେ କିଏ ସୁଖୀ ନ ହୁଏ ? ଆମମାନଙ୍କର ଏକତ୍ର ମେଳନରେ ସେହି ସୁଖ ପୁଣି ବହୁଗୁଣିତ ହୋଇଛି । ଆସନ୍ତୁ, ସମସ୍ତେ ଏକ ମନ ଏକ ପ୍ରାଣରେ ଏହି ନବଜାତକଟିର ପରିପାଳନ କରିବା ଏବଂ ଏହାର ଅଭିବୃଦ୍ଧି ଓ ସୁପ୍ରତିଷ୍ଠାରେ ଉଦ୍‌ଯୋଗୀ ହେବା । 'କୃତଂ ମେ ଦକ୍ଷିଣ ହସ୍ତେ, ଜୟୋ ମେ ସବ୍ୟ ଆହିତଃ' – ଅଥର୍ବ ବେଦର ଏହି ସୁପରିଚିତ ଶ୍ଳୋକ ଅନୁଯାୟୀ – ଆମର ଦକ୍ଷିଣ ହସ୍ତରେ ରହିଛି କର୍ମ ଏବଂ ସଫଳତା ରହିଛି ବାମ ହସ୍ତରେ । ଅର୍ଥାତ୍ ଅନୁଷ୍ଠାନଟି ସଂପର୍କରେ ଆମ ପ୍ରତ୍ୟେକଙ୍କର କର୍ତ୍ତବ୍ୟ-କର୍ମ ହିଁ ସାମୂହିକ ଭାବରେ ଆମମାନଙ୍କର ଏକମାତ୍ର ସମ୍ବଳ, ଏକମାତ୍ର ଆଶା-ଭରସାର ସ୍ଥଳ । ପରିଷଦ ସମ୍ବିଧାନରେ ସେହି କର୍ତ୍ତବ୍ୟ-କର୍ମ ସବୁ ସୂଚିତ ହୋଇଛି; ସେ ବିଷୟରେ ଅଧିକ କହିବା ନିଷ୍ପ୍ରୟୋଜନ ।

''ଖ୍ରୀଷ୍ଟପୂର୍ବ ଯୁଗର ଗ୍ରୀକ୍ ଏକାଡ଼େମୀ କିମ୍ବା ଆଧୁନିକ କାଳର ୟୁରୋପୀୟ ଏକାଡ଼େମୀ ସମୂହ ମାନବୀୟ ମେଧା ଓ ମନୀଷା ବିକାଶରେ ତଥା ସାଂସ୍କୃତିକ ଅଗ୍ରଗତିରେ କିପରି ସହାୟତା କରିଛି, ତାହା ଆପଣମାନଙ୍କୁ ଅବିଦିତ ନ ଥିବ । ସେହି ସବୁ ଏକାଡ଼େମୀର ଆଦର୍ଶ ସମକ୍ଷରେ ଥୋଇ ଆମର ଏ ପରିଷଦ କାର୍ଯ୍ୟ କରିପାରେ । କାର୍ଯ୍ୟଟି କିନ୍ତୁ ଆଦୌ ସହଜ ନୁହେଁ । ସେଥିଲାଗି ଆମକୁ ତ୍ୟାଗ କରିବାକୁ ହେବ ବହୁତ ଦାନ କରିବାକୁ ହେବ ଅଧିକ । ସୁଖର ବିଷୟ, ଆମେମାନେ ସେହି ତ୍ୟାଗମୂଳକ ମନୋଭାବ ଘେନି ଏ କ୍ଷେତ୍ରରେ ଅଗ୍ରସର ହୋଇଛୁଁ । ସେଥିପାଇଁ ପଥ ଯେତେ ଦୁରୂହ ଓ ଦୁସ୍ତର ହେଲେ ବି, ଆମର ବିଶେଷ ଭୟ ନାହିଁ – ଆଶଙ୍କା ନାହିଁ । ଲକ୍ଷ୍ୟ କରିବାର କଥା – ୟୁରୋପୀୟ ଏକାଡ଼େମୀଗୁଡ଼ିକର ସଦସ୍ୟ-ପଦ ସର୍ବଦା ସୀମାବଦ୍ଧ; ସେହି ସବୁ ଜ୍ଞାନ-ବିଜ୍ଞାନର ମନ୍ଦିରରେ 'ସାହାଣ ମେଲା' ହୁଏ ନାହିଁ । କେବଳ ସମଧର୍ମା ଏବଂ କେତେକ ନିର୍ଦ୍ଦିଷ୍ଟ ସାଧୁ ଉଦ୍ଦେଶ୍ୟ ପ୍ରତି ଅଙ୍ଗୀକାରବଦ୍ଧ ସୁଧୀଜନଙ୍କୁ ହିଁ ତହିଁର ସଭ୍ୟପଦ ମିଳିଥାଏ । ଏହାର ଅର୍ଥ ନୁହେଁ ଯେ – ଗଣଦେବତା ବା ଜନତା-ଜନାର୍ଦ୍ଦନ ପ୍ରତି ଏକାଡ଼େମୀର ଅନୀହା ବା ଅମର୍ଷ ଥାଏ । ଏକାଡ଼େମୀର ସକଳ କାର୍ଯ୍ୟକଳାପର ଫଳଶ୍ରୁତି ତ ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ – ସେ ଗଣଦେବତା ହୁଅନ୍ତୁ ବା ଜଣ-ବିଶେଷ ହୁଅନ୍ତୁ । ଆମମାନଙ୍କର ସଂଖ୍ୟା ଯଦିଚ ସେହିପରି ସୀମାବଦ୍ଧ, ଉଦ୍ଦେଶ୍ୟ ଓ ଦୃଷ୍ଟିକୋଣ କିନ୍ତୁ ମୁକ୍ତ ଏବଂ ପ୍ରସାରିତ – ଆମମାନଙ୍କର କାର୍ଯ୍ୟକଳାପ ସମଗ୍ର ଜାତି ପ୍ରତି ଅଭିପ୍ରେତ । ମୁଷ୍ଟିମେୟ ହେଲେ ବି, ଆମେ ପରିଷଦର ପରିସର ମଧ୍ୟରେ ଜ୍ଞାନ-ବିଜ୍ଞାନର ଚର୍ଚ୍ଚା ଦ୍ୱାରା ଜାତୀୟ ଜୀବନରେ ମୁଦ୍ରାଙ୍କ ଥୋଇ ଯିବାକୁ ଯତ୍ନବାନ୍ ହେବା ।''
(୨୫.୧୦.୧୯୮୦)

ଉଦ୍‌ଘାଟନ ଉତ୍ସବର ମୁଖ୍ୟ ଅତିଥି ଭାବରେ ଡକ୍ଟର କୁଞ୍ଜବିହାରୀ ଦାଶ ଆପଣା ଅଭିଭାଷଣରେ କହିଥିଲେ – ''କଣ୍ଟାଟିଏ ପରି ଏ ଏଷକର ବୁକୁ ଭେଦି ରହିଥିଲା କେଡ଼େ ଏକ କ୍ଷୋଭ; ନିଶ୍ୱାସେ ନିଶ୍ୱାସେ ଭୋଗୁଥିଲି ତା'ର ଯନ୍ତ୍ରଣା – ଗବେଷଣା-ମନ୍ଦିରଟିଏ ହେଲା ନାହିଁ, ଗବେଷଣା ପତ୍ରିକାଟିଏ ପ୍ରକାଶ ପାଇଲା ନାହିଁ । ମୋ ପରି ସବୁ ବିଦଗ୍ଧଙ୍କର ସାଧାରଣ ବେଦନା ଏ । 'ଓଡ଼ିଆ ଗବେଷଣା ପରିଷଦ'ର ମୁଖପତ୍ର 'ଏଷଣା' ଦେଖି ମନ ଭିତରେ ସେ କଣ୍ଟାଟି କେତେବେଳେ ଆପେ ଆପେ ହୁଗୁଳି ଖସି ପଡ଼ିଲା, ଜାଣିପାରିଲି ନାହିଁ । କେଡ଼େ ଉଶ୍ୱାସ ଲାଗୁଛି ଆଜି !

''ମନରେ ଗୁଞ୍ଜରି ଉଠୁଚି ବାଣୀ – ଓଡ଼ିଆ ଧନରେ ଗରିବ ହୋଇପାରେ,ମନରେ ନୁହେଁ । ସ୍ନେହାନନ୍ଦରେ ହାତ ଟେକି ହୋଇଗଲା ଆଶୀର୍ବାଦ ଲାଗି ଉଦ୍ୟୋକ୍ତା ତରୁଣଙ୍କ ଶିର-କମଳ ଉପରକୁ; ଏଇ ତରୁଣ ଯାହାକୁ ଅନ୍ତରେ ଅନ୍ତରେ ମୁଁ ପୂଜା କରେ – ଯାହାର ଅସାଧ କିଛି ନାହିଁ, ଅଛି ପ୍ରାଣରେ ଉତ୍ସାହ, ମନରେ ସାହସ ସଂକଳ୍ପ, ସତ୍ କାର୍ଯ୍ୟରେ ନିଜକୁ ଗୋଟି ପଣେ ସମର୍ପି ଦେବାର ମନୋଭାବ ।

''ଏ ଚେଷ୍ଟା ନୂଆ, ପୁଣି ଅର୍ଘ ନୂଆ; ନୂଆକୁ ବନ୍ଦାଣଦ୍ୱୀପ ଟେକିଦେବା ଲାଗି ହାତ ଉଠେ । ଯାହା ବିଶ୍ୱବିଦ୍ୟାଳୟ, ସାହିତ୍ୟ ଏକାଡ଼େମୀ, ସାଂସ୍କୃତିକ ବ୍ୟାପାର ବିଭାଗ ବା କୌଣସି ସାହିତ୍ୟ-ଅନୁଷ୍ଠାନ କରି ନ ପାରିଲା, ତାହା ଅତି ସୀମୀତ ସମ୍ବଳ ଓ ସୁଯୋଗ ମଧ୍ୟରେ ବ୍ୟକ୍ତି କଲା । କେତେ ବଡ଼ ଦିଲ୍ ଯା ତଳେ ଅଛି ଭାବି ହୁଏ ନାହିଁ । ସେମିତି ପୌରୁଷ ବା ଭୀଷ୍ମପଣ ନ ଥିଲେ, ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଅଣ୍ଟା ଭିଡ଼ି ପଦାକୁ ବାହାରିପାରେ କିଏ ? x x x

''ବିଦ୍ୱାନ୍‌ମାନଙ୍କ ତୃପ୍ତି ବିଧାନ ଲକ୍ଷ୍ୟ । ମାତ୍ର ତଳକୁ ଖସିଲେ ଏହା ସମ୍ଭବ ନୁହେଁ । ଆଗେ ଗବେଷଣାମୂଳକ ଲେଖା ସାପ୍ତାହିକ, ପାକ୍ଷିକ, ମାସିକ ଓ ଦୈନିକ ପତ୍ରପତ୍ରିକାରେ ବାହାରୁଥିଲା, ଏବେବି ବାହାରୁଛି । ଓଡ଼ିଶାର ସ୍ୱତନ୍ତ୍ର ଭାଷା ଓ ସାହିତ୍ୟ ଗବେଷଣା ପତ୍ରିକା ନ ଥିଲା, ଏବେ ଏଇ ହେଲା । ମୋର ମନେ ହୁଏ – ଏ ପତ୍ରିକାର ମୁଖ୍ୟତଃ ଦୁଇଟି ଉଦ୍ଦେଶ୍ୟ – ଗବେଷଣାର ଉଦ୍ଦୀପନା, ସମାଲୋଚନାର ବିକାଶ ।''
(୨୫.୧୦.୧୯୮୦)

ପରିଷଦ ପକ୍ଷରୁ ରାଜ୍ୟର ଦୁଇ ତିନିଟି ସ୍ଥାନରେ ପ୍ରବନ୍ଧ ପାଠଚକ୍ର ଅନୁଷ୍ଠିତ ହେବା ପରେ ଏବଂ 'ଏଷଣା'ର ଯୋଡ଼ିଏ ସଂଖ୍ୟା ପ୍ରକାଶ ପାଇବା ପରେ ଆମେ ମନେ କଲୁଁ ପରିଷଦ ଠିଆ ହୋଇଯିବ । ସ୍ୱଳ୍ପସଂଖ୍ୟକ ହେଲେ ମଧ୍ୟ ସଦସ୍ୟ-ସଦସ୍ୟାମାନଙ୍କଠାରୁ ସାହାଯ୍ୟ-ସହଯୋଗ ମିଳିଲା । ତଥାପି ଗୋଟିଏ ନୂଆ ଧରଣର

କାର୍ଯ୍ୟ କରିବାକୁ ଗଲେ, ଲୋକେ ଯେପରି ହଠାତ୍ ତାହା ଭଲ ମନରେ ଗ୍ରହଣ କରିପାରନ୍ତି ନାହିଁ, ଭ୍ରୂ-କୁଂଚନ କରନ୍ତି, ଗବେଷଣା ପରିଷଦ ପକ୍ଷରେ ତାହାହିଁ ଘଟିଲା । କେତେକ ଅଧ୍ୟାପକ ବନ୍ଧୁ କହିଲେ — ଆମେ କୁଆଡ଼େ ଏକ ଡକ୍ଟରେଟ୍ ଉତ୍ପାଦନ-କେନ୍ଦ୍ର ଫିଟାଇଛୁଁ । ଅଥଚ ଏହି ଅଠେଇଶ ବର୍ଷ ଭିତରେ ପରିଷଦ ପକ୍ଷରୁ କୌଣସି ଗବେଷଣା-ପ୍ରକଳ୍ପ ପରିଚାଳିତ ହୋଇ ନାହିଁ, କି ଜଣେ ହେଲେ ସ୍କଲାର୍ ବାହାରି ନାହାନ୍ତି; ବ୍ୟକ୍ତିଗତ ଭାବରେ କାର୍ଯ୍ୟ କରି ଅବଶ୍ୟ କେତେକ ସଦସ୍ୟ-ସଦସ୍ୟା ଡକ୍ଟରେଟ୍ ଡିଗ୍ରୀ ଲାଭ କରିଛନ୍ତି । ଆଉ କେତେକ ପ୍ରଚାର କଲେ — ପରିଷଦ କୁଆଡ଼େ ଓଡ଼ିଆ ଅଧ୍ୟାପକମାନଙ୍କର ଏକ ସମ୍ମେଳନ । କିନ୍ତୁ ପରିଷଦର ସଦସ୍ୟ-ସଦସ୍ୟା ଭାବରେ ବେଶି ସଂଖ୍ୟକ ଓଡ଼ିଆ ଅଧ୍ୟାପକ ଥିଲେ ମଧ୍ୟ କିଛି ହିନ୍ଦୀ ଓ ଇଂରେଜୀ ବିଭାଗର ଅଧ୍ୟାପକ-ଅଧ୍ୟାପିକା ରହିଛନ୍ତି, ରହିଛନ୍ତି ମଧ୍ୟ ସାହିତ୍ୟ-କର୍ମ କରୁଥିବା କେତେକ ଡାକ୍ତର, ଇଞ୍ଜିନିୟର୍, ସାମ୍ବାଦିକ, ପ୍ରଶାସକ, ସରକାରୀ ଓ ବେସରକାରୀ କର୍ମଚାରୀ, ସମାଜସେବୀ ଓ ରାଜନୀତିଜ୍ଞ । ପୁଣି, କେତେକ ସାହିତ୍ୟିକ କହି ବୁଲିଲେ ଯେ — ଆମେ କୁଆଡ଼େ ଦଳଟାଏ ଗଢ଼ିଛୁଁ । ପ୍ରକୃତରେ ଆମେ ଦଳ ଗଢ଼ିଛୁ, କିନ୍ତୁ ତାହା ଚୋର-ଡକାୟତ ଦଳ ନୁହେଁ, କିମ୍ବା ନିର୍ବାଚନ ଲଢ଼ିବା ପାଇଁ ରାଜନୈତିକ ଦଳ ବି ନୁହେଁ । ପରିଷଦ ଏକ ସ୍ୱେଚ୍ଛାସେବୀ ସାହିତ୍ୟିକ ଦଳ, ଯେପରି ଆମ ସାହିତ୍ୟର 'ସବୁଜ ଦଳ' ବା 'ସତ୍ୟବାଦୀ ଗୋଷ୍ଠୀ' । ଆମେ ଅଠେଇଶ ବର୍ଷ ହେଲା ନିରବଚ୍ଛିନ୍ନ ଭାବରେ ସାଂସ୍କୃତିକ କାର୍ଯ୍ୟ କରୁଛୁଁ , ତିନିବର୍ଷ ତଳେ ପରିଷଦର ରଜତ ଜୟନ୍ତୀ ଉତ୍ସବ ସମାରୋହ ସହକାରେ ପାଳନ କରିଛୁଁ, ତଥାପି ଏପରି ଅପବାଦ ମଝିରେ ମଝିରେ ଆସି କାନରେ ପଡୁଛି ।

ରାଜ୍ୟର କେତେକ ବିଶ୍ୱବିଦ୍ୟାଳୟ ଓ ବଡ଼ ବଡ଼ କଲେଜର ମୁଖ୍ୟ ଅଧ୍ୟାପକଙ୍କ ମତାମତ ପାଇଁ ଆମେ 'ଏଷଣା'ର କଂପ୍ଲିମେଣ୍ଟାରି କପି ପଠାଇଲୁଁ । 'ଏଷଣା'ରେ ପ୍ରକାଶ ପାଇଁ ଗବେଷଣାତ୍ମକ ଲେଖା ମାଗିଲୁଁ । କିନ୍ତୁ ସେମାନଙ୍କଠାରୁ କୌଣସି ସହଯୋଗ ମିଳିଲା ନାହିଁ; ବିସ୍ମୟକର ଭାବରେ ସେମାନେ ପରିଷଦର କାର୍ଯ୍ୟାବଳୀ ବିଷୟରେ ନୀରବ ରହିଲେ । ବରଂ ଅଧ୍ୟାପକ ନ ଥିବା ବିଭିନ୍ନ ଜଣାଶୁଣା ସାହିତ୍ୟିକ, ଯଥା ସୁରେନ୍ଦ୍ର ମହାନ୍ତି, ଡକ୍ଟର ହରେକୃଷ୍ଣ ମହତାବ ପ୍ରମୁଖ, ସେମାନଙ୍କ ମତ ଓ ମନ୍ତବ୍ୟ ଲେଖି ଜଣାଇଲେ । ପରିଷଦର କାର୍ଯ୍ୟକାରୀ ସମିତିରେ ଏ ବିଷୟ ଆଲୋଚିତ ହେଲା । ସ୍ଥିର ହେଲା -- ପରିଷଦ ପ୍ରତି ଆନୀହା ପ୍ରକାଶ କରୁଥିବା ମୁଖ୍ୟ ଅଧ୍ୟାପକମାନଙ୍କଠାକୁ 'ଏଷଣା' କଂପ୍ଲିମେଣ୍ଟାରି କପି ଆଉ ପଠାଯିବ ନାହିଁ । ଅଦ୍ୟାବଧି ବିଭିନ୍ନ ବିଶ୍ୱବିଦ୍ୟାଳୟ ଓ ବଡ଼ ବଡ଼ କଲେଜର ଅଧ୍ୟାପକମାନଙ୍କଠାରୁ ଭାଷା-ସାହିତ୍ୟର ବିଚାର ବିମର୍ଶ ପାଇଁ ଆମେ

ଯେପରି ସାହାଯ୍ୟ ସହଯୋଗ ପାଇବାର କଥା, ତାହା ପାଇପାରି ନାହୁଁ । କଣ ହୋଇପାରେ ଏହାର କାରଣ ? ମୁଁ ଯେତେ ଦୂର ଚିନ୍ତା କରୁଛି, ଏହା ମୂଳରେ ଅଛି ଈର୍ଷା, ପରଶ୍ରୀକାତରତା, ସଂକୀର୍ଣ୍ଣ ଜୁନିୟର୍-ସିନିୟର୍ ଭାବ, ଏପରିକି ତୁଚ୍ଛ ଜାତିଆଣ ମନୋବୃତ୍ତି । ଗବେଷଣା ପରିଷଦ ଯେପରି କାର୍ଯ୍ୟ କରୁଛି, ଆମେ ସେପରି କରିପାରିଲୁ ନାହିଁ – ଏହା ହିଁ ହେଉଛି ଈର୍ଷା । ଆମେ ସବୁ ବଡ଼ ବଡ଼ 'ପ୍ରଫେସର୍', ପରିଷଦର କର୍ମକର୍ତ୍ତାମାନେ ସାମାନ୍ୟ ଜଣେ ଜଣେ ଅଧାପକ, ଏମାନେ ଗୋଟାଏ କି ଗବେଷଣା କାର୍ଯ୍ୟ କରିବେ ? ଏହା ହିଁ ହେଉଛି ସିନିୟର୍-ଜୁନିୟର୍ ମନୋଭାବ । ପୁଣି, ଆମେ ହେଉଛୁଁ ଉଚ୍ଚବର୍ଣ୍ଣର ଲୋକ, କର୍ମକର୍ତ୍ତାମାନେ ନିମ୍ନବର୍ଗର । ଏମାନଙ୍କର ବିଦ୍ୟାବୁଦ୍ଧି କେତେ ? ଏହା ହିଁ ହେଉଛି ଜାତିଆଣ ମନୋବୃତ୍ତି । ଓଡ଼ିଶାରେ ଶିକ୍ଷା-ସଂସ୍କୃତି କ୍ଷେତ୍ରରେ ଜାତିଆଣ ମନୋବୃତ୍ତି କିପରି ପ୍ରଚ୍ଛନ୍ନ ଭାବରେ କାର୍ଯ୍ୟ କରୁଛି, ଅନେକେ ତାହା ଜାଣନ୍ତି ନାହିଁ । ବୋଲିବା ବାହୁଲ୍ୟ ଯେ – କ୍ଷେତ୍ରବାସୀ ଓ ଏହି ଲେଖକ ବାପୁଡ଼ା ଆମେ ଉଭୟ ନିମ୍ନବର୍ଗର ଲୋକ ।

ପ୍ରସଙ୍ଗକ୍ରମେ ଆମର ଏହି କଦର୍ଯ୍ୟ ମନୋଭାବର ଯୋଡ଼ିଏ ମାତ୍ର ଉଦାହରଣ ଏଠାରେ ଦେବି । ଥରେ ବାଣୀବିହାରଠାରେ ପ୍ରଫେସର ପ୍ରହ୍ଲାଦ ପ୍ରଧାନ କହିଲେ – ବୁଝିଲ କୃଷ୍ଣ, ସଦାଶିବ ମିଶ୍ର – ଶ୍ରୀ ରାମଚନ୍ଦ୍ର ଦାଶ କହୁଛନ୍ତି ଅବ୍ରାହ୍ମଣମାନେ କି ସଂସ୍କୃତ ପାଠ ପଢ଼ାଇବେ ! (ସେତେବେଳେ ପ୍ରଫେସର ପ୍ରଧାନ, ଡକ୍ଟର ଅନାମ ଚରଣ ସ୍ୱାଇଁ ବାଣୀବିହାର ସଂସ୍କୃତ ବିଭାଗର ଶିକ୍ଷକ ଥିଲେ) ମୁଁ ଏ କଥାର ଆଉ କି ଉତ୍ତର ଦେବି ? ନିଜେ ତ ବାରମ୍ବାର ଜାତିଆଣ ଭେଦଭାବର ଶିକାର ହୋଇଛି । ଅପର ଉଦାହରଣଟି ହେଉଛି ବିଶିଷ୍ଟ ସ୍ୱାଧୀନତା-ସଂଗ୍ରାମୀ ବିନୋଦ କାନୁନଗୋ ଉଲ୍ଲେଖରୁ । ପୁଣ୍ୟାତ୍ମା ଗୋପବନ୍ଧୁ ଚୌଧୁରୀଙ୍କ ସଂପର୍କରେ କାନୁନଗୋ ଲେଖିଛନ୍ତି – "ତାଙ୍କର ଯେଉଁ ଦିନ ମୃତ୍ୟୁ ହେଲା, ତାହାର ପୂର୍ବ ଦିନ ସନ୍ଧ୍ୟାରେ ସେ ଥୋରିଆ ସାହି ଆଶ୍ରମ ହତା ଭିତରେ ବୁଲୁଥାନ୍ତି । ସ୍ୱର୍ଗୀୟ ଡାକ୍ତର ରବି ଘୋଷ, ଫକୀର ମିଶ୍ର ଓ ମୁଁ ତାଙ୍କ ସାଙ୍ଗରେ ଥାଉଁ । ରବି ଦା' ଗୋଟାଏ କଣ ପ୍ରଶ୍ନ ଉଠାଇ ଉତ୍ସାହିତ ହେଲା ଭଳି କହିଲେ । ଗୋପବାବୁ ଜୋର୍‌ରେ ପାଟି କରି ଉଠିଲେ – ଆରେ ରବି ତୁ ପାଗଳ ହେଲୁ ? ଆମେ କରଣ, ବ୍ରାହ୍ମଣ, ଖଣ୍ଡାୟତ କଣ ଅନ୍ୟମାନଙ୍କୁ କେଉଁଠି ପୂରାଇ ଦେବୁଁ ? ସବୁ ସ୍ଥାନ ପରା ମାଡ଼ି ବସିଛୁଁ । ସର୍ବୋଦୟରେ ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ପଣ୍ଡିତ ହୋତା – କଂଗ୍ରେସରେ ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ବିଜୁ ପଟ୍ଟନାୟକ – ସୋସିଆଲିଷ୍ଟ ଦଳରେ ସୁରେନ୍ଦ୍ର ଦ୍ୱିବେଦୀ, ବାଙ୍କବିହାରୀ ଦାସ – କମ୍ୟୁନିଷ୍ଟ ପାର୍ଟିରେ ରାମକୃଷ୍ଣ ପତି, ଗୁରୁଚରଣ

ପଟ୍ଟନାୟକ । ଆମ ଖବରକାଗଜଗୁଡ଼ିକ କାହା ହାତରେ ? ଆମେ ସବୁ ବହୁତ ବଡ଼ ବଡ଼ କଥା କହୁଁ, ଅସଲ ବେଳକୁ କାହାକୁ ପୂରାଇ ଦେବୁ ନାହିଁ । ଏଥିରେ ଆଉ ବିପ୍ଳବ ଫିପ୍ଳବ କଥା ଉଠାଉଛୁ କାହିଁକି ?'' (ଆଗାମୀ ଶତାବ୍ଦୀ, ଶାରଦୀୟ ସଂଖ୍ୟା, ଅକ୍ଟୋବର ୧୯୯୯)

ସାହିତ୍ୟ କ୍ଷେତ୍ରରେ ମଧ ଦୃଷ୍ଟାନ୍ତର ଅଭାବ ନାହିଁ । ଯାହା ଆଖିରେ ପଡୁଛି, ଜଣେ କରଣ ଜାତିର ଆଲୋଚକ ସେହି କରଣ କବି ଲେଖକଙ୍କର ପ୍ରଶଂସା କରିବ, କିମ୍ବା ସେମାନଙ୍କ ସାହିତ୍ୟ ସୃଷ୍ଟିର ଆଲୋଚନା କରିବ । ଜଣେ ବ୍ରାହ୍ମଣ ଜାତିର ସମୀକ୍ଷକ ସେହି ବ୍ରାହ୍ମଣ କବି ଲେଖକଙ୍କର ଯଶୋଗାନ କରିବ, କିମ୍ବା ସେମାନଙ୍କ ସାହିତ୍ୟ ସୃଷ୍ଟିର ସମାଲୋଚନା ଲେଖିବ । ପୁଣି, ସମ୍ମାନ, ସମ୍ବର୍ଦ୍ଧନା, ପୁରସ୍କାର ଆଦି ପ୍ରଦାନ ବେଳେ ମଧ ସେହି ଜାତିଆଣ ଭାବ ! କେନ୍ଦ୍ର ଓ ରାଜ୍ୟ ସାହିତ୍ୟ ଏକାଡ଼େମୀର ପୁରସ୍କାର ପ୍ରାପକମାନଙ୍କ ତାଲିକା ଦେଖିଲେ, ଯେକୌଣସି ବ୍ୟକ୍ତି ଲକ୍ଷ୍ୟ କରି ପାରିବ ଯେ ପ୍ରାୟ ସମସ୍ତ ପ୍ରାପକ ତଥାକଥିତ ଉଚ୍ଚବର୍ଗର କବି-ଲେଖକ; କ୍ୱଚିତ୍ କେହି ଜଣେ ଅଧେ ନିମ୍ନବର୍ଗର । ଯେପରି କି ଓଡ଼ିଶାରେ ପୁରସ୍କାରାଦି ପାଇଲା ଭଳି ନିମ୍ନବର୍ଗର କବି-ଲେଖକ-ସାହିତ୍ୟିକ କେହି ନାହାନ୍ତି ! ଅନ୍ୟାନ୍ୟ ସାଂସ୍କୃତିକ ସଂସ୍ଥା କଥା କଣ କହିବି, ଆମର 'ଗବେଷଣା ପରିଷଦ' କ୍ଷେତ୍ରରେ ମଧ ସେହି ଅବସ୍ଥା । ବାଇଶି ବର୍ଷ ହେଲା ଆମେ ବାଇଶ ଜଣ ସମୀକ୍ଷକ-ଗବେଷକଙ୍କୁ 'କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର' ପ୍ରଦାନ କଲୁଣି; ତନ୍ମଧ୍ୟରୁ ଜଣେ ମାତ୍ର ହେଉଛନ୍ତି ନିମ୍ନବର୍ଗର । ଏପରି କାହିଁକି ହେଉଛି ? ସାହିତ୍ୟସ୍ରଷ୍ଟାଙ୍କ ଚୟନ-ପ୍ରକ୍ରିୟାରେ ଦୋଷ ହେତୁ ଏହା ଘଟୁଛି ବୋଲି ମୋର ମନେ ହୁଏ । ଯେଉଁମାନେ ପୁରସ୍କାରାଦି ଲାଗି ନାମ ସୁପାରିଶ୍ କରୁଛନ୍ତି, ସେମାନେ ପ୍ରାୟ ସମସ୍ତେ ଉଚ୍ଚ ବର୍ଗର । ନିମ୍ନବର୍ଗର ସାହିତ୍ୟସ୍ରଷ୍ଟାଙ୍କ ପ୍ରତି ସେମାନେ ବୋଧହୁଏ ଦୃଷ୍ଟି ଦେଉ ନାହାନ୍ତି । ତେଣୁ ଚୟନ-ପ୍ରକ୍ରିୟା ନ ବଦଳାଇଲେ, ଏହି ଦୁଃସ୍ଥିତିର ପରିବର୍ତ୍ତନ ହେବ ନାହିଁ ।

'ଗବେଷଣା ପରିଷଦ' ଏହି ଅଠେଇଶ ବର୍ଷର କାର୍ଯ୍ୟକାଳ ମଧ୍ୟରେ ନିୟମିତ ଭାବରେ ବର୍ଷକୁ ଦୁଇ ଖଣ୍ଡ ମୁଖପତ୍ର 'ଏଷଣା' ପ୍ରକାଶ କରୁଛି । ଏଥିରେ ଅନାଲୋଚିତ ବା ସ୍ୱଳ୍ପାଲୋଚିତ ବିଷୟରେ ପ୍ରବନ୍ଧମାନ ପ୍ରକାଶ ପାଉଛି । ପ୍ରକାଶ ପାଉଛି ବହୁ ପୃଷ୍ଠାର ପୁସ୍ତକ ସମୀକ୍ଷା, ଯାହା ସ୍ୱରୂପ-ପ୍ରକୃତିରେ ସ୍ୱତନ୍ତ୍ର । ପ୍ରାଚୀନ ଓ ଆଧୁନିକ ପ୍ରସଙ୍ଗ ଘେନି କୋଡ଼ିଏ ଖଣ୍ଡ ଗ୍ରନ୍ଥ ପ୍ରକାଶିତ ହୋଇଛି; ଏହା ମଧ୍ୟରେ ରହିଛି ପ୍ରାଚୀନ ସାହିତ୍ୟର 'ଶ୍ରୀରୋଢ଼ା', 'ହାରାବତୀ', 'ରସମଞ୍ଜରୀ' ପ୍ରଭୃତି । ଆଧୁନିକ ବା ସାଂପ୍ରତିକ ପ୍ରସଙ୍ଗ ଘେନି ପ୍ରକାଶ ପାଇଛି 'ସର୍ଜନାତ୍ମକ ସାହିତ୍ୟ-ସମୀକ୍ଷା', 'ଆଧୁନିକ ଅବବୋଧ',

'ତୁଳନାତ୍ମକ ସାହିତ୍ୟ', 'ଶୈଳୀ ବିଜ୍ଞାନ', 'ନନ୍ଦନତତ୍ତ୍ୱ', 'ଦଳିତ ଆନ୍ଦୋଳନ ଓ ଦଳିତ ସାହିତ୍ୟ' ଇତ୍ୟାଦି । ଏହିସବୁ ପ୍ରସଙ୍ଗ ଘେନି ପୂର୍ବରୁ ଓଡ଼ିଆରେ କୌଣସି ବହିପତ୍ର ନ ଥିଲା । କ୍ଷେତ୍ରବାସୀଙ୍କର ଅକାଳ ମୃତ୍ୟୁ (୧୯୮୬) ପରେ ଆମେ ଭାଙ୍ଗି ପଡ଼ି ନାହୁଁ; ବାଇଶ ବର୍ଷ ହେଲା ସାଧମତେ ପରିଷଦର ସମସ୍ତ କାର୍ଯ୍ୟ ଚଳାଇଛୁ ।

ପରିଷଦର ଆର୍ଥିକ ସ୍ଥିତି ଦୃଢ଼ ନୁହେଁ । ଏବେ ଆମର ସଦସ୍ୟ-ସଦସ୍ୟାଙ୍କ ସଂଖ୍ୟା ଦେଢ଼ଶହରୁ ଅଧିକ । ମୁଖ୍ୟତଃ ସେମାନଙ୍କ ସାହାଯ୍ୟ ସହଯୋଗରେ ହିଁ ପ୍ରତିଷ୍ଠାନଟି ଚାଲିଛି । ସରକାରୀ ସାହାଯ୍ୟ ସାମାନ୍ୟ; ତାହା ପୁଣି ପ୍ରତିବର୍ଷ ମିଳେ ନାହିଁ । ସବୁଠାରୁ ଶୋଚନୀୟ ବ୍ୟାପାର ହେଉଛି – ଅଠେଇଶ ବର୍ଷର ଏହି ସ୍ୱେଚ୍ଛାସେବୀ ସାଂସ୍କୃତିକ ପ୍ରତିଷ୍ଠାନଟି ବର୍ତ୍ତମାନ ସୁଦ୍ଧା ଅନିକେତ । ଏହାର ଅଫିସ୍ କାର୍ଯ୍ୟତଃ ମୋ ବାସଗୃହରେ ଚାଲିଛି । ଏହାର ପବ୍ଲିକେଶନ୍ – ହଜାର ହଜାର ସଂଖ୍ୟାରେ ବହିପତ୍ର ସହରର ଏଠି ସେଠି ପଡ଼ି ରହିଛି । ୨୦୦୫ ମସିହାରେ ପରିଷଦ ମାନ୍ୟବର ରାଜ୍ୟପାଳଙ୍କ ଆତିଥ୍ୟରେ ନିଜର ରଜତ ଜୟନ୍ତୀ ଉତ୍ସବ ପାଳନ କରିଛି । ତଥାପି ଏହାର ଦୁରବସ୍ଥା ଘୁଞ୍ଚିପାରି ନାହିଁ । ଏ ରାଜ୍ୟରେ ତଥାକଥିତ ଧର୍ମକାର୍ଯ୍ୟ ପାଇଁ, ଧର୍ମଗୁରୁ ବାବା-ମାଆଙ୍କ ବିହାର ପାଇଁ ବଡ଼ ବଡ଼ ସୁଦୃଶ୍ୟ ମଠ-ମନ୍ଦିର ନିର୍ମାଣ ଉଦ୍ଦେଶ୍ୟରେ ଅର୍ଥ-ସାହାଯ୍ୟର ସ୍ରୋତ ଛୁଟିଛି । କିନ୍ତୁ ସାଂସ୍କୃତିକ ପ୍ରତିଷ୍ଠାନ ପାଇଁ ଅର୍ଥ ସାହାଯ୍ୟର ଅଭାବ ପଡୁଛି । କେତେ ବର୍ଷ ତଳେ ସରକାରୀ ସାହାଯ୍ୟରେ କଟକ ସହରରେ ପରିଷଦ ପାଇଁ ବକଟେ ଜମି ମିଳିଥିଲା ଏବଂ ସେହି ସ୍ଥାନରେ ପକ୍କା ଘରଟିଏ ନିର୍ମାଣ କରାଯାଇଥିଲା । ମାତ୍ର ତାହା ଆମର ହସ୍ତଗତ ହେବା ପୂର୍ବରୁ କେତେକ ଖଳ ପ୍ରକୃତିର ଲୋକ ଘରଟିକୁ ଜବର ଦଖଲ କରି ବସିଲେ । ବହୁ ଉଦ୍ୟମ ସତ୍ତ୍ୱେ ଆମେ ଜାଗା ଓ ଘର ଉଦ୍ଧାର କରପାରିଲୁ ନାହିଁ । ସେଠାରେ ବର୍ତ୍ତମାନ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଚାଲିଛି ।

ଏବେ ପରିଷଦର କାର୍ଯ୍ୟାବଳୀ କୌଣସି ମତେ ଚାଲିଛି । ସେଥିପାଇଁ ଏ ପରିଣତ ବୟସରେ ମୋତେ କମ୍ ପରିଶ୍ରମ କରିବାକୁ ପଡୁନାହିଁ । ପରିଷଦର କାର୍ଯ୍ୟକାରୀ ସମିତିର ସଭ୍ୟ, ଏପରି କି ଅଫିସ୍-ବିଅରର୍ଙ୍କଠାରୁ ଆଶାନୁରୂପ ସାହାଯ୍ୟ-ସହଯୋଗ ମିଳୁନାହିଁ । କେବେଠୁଁ ଯୁବ ସଭ୍ୟଙ୍କ ମଧ୍ୟରୁ କେତେକଙ୍କୁ ପରିଷଦର ଦାୟିତ୍ୱ ଦେବା ପାଇଁ ଚାହୁଁଛି । ମାତ୍ର କେହି ଜଣେ ହେଲେ ଆଗଭର ହୋଇ ବାହାରୁ ନାହାନ୍ତି । ତେଣୁ ପରିଷଦର ଭବିଷ୍ୟତ୍ ବିଷୟରେ ଆଶାବାଦୀ ହୋଇପାରୁ ନାହିଁ । ଆମର ଯୁବ ପିଢ଼ି ମଧ୍ୟରେ ପରିଷଦର କାର୍ଯ୍ୟ ନିର୍ବାହ ପାଇଁ କଣ କେହି ସାହସୀ, ସଂକଳ୍ପବଦ୍ଧ ଓ ସମର୍ପିତ-ପ୍ରାଣ ବ୍ୟକ୍ତି ନାହାନ୍ତି ?

# ଜାୟା ଓ ଜନନୀ : ଜୟନ୍ତୀ

ବାଉନ ବର୍ଷ ତଳେ ୧୯୫୫ ମସିହାରେ ସେ ଆସିଥିଲେ ମୋ ଜୀବନରେ ଆଷାଢ଼ର ବାଦଲଭରା ଆକାଶରେ ଚାନ୍ଦଟିଏ ପରି ଅଧା ଲୁଚା ଅଧା ଖୋଲା । ମୁଁ ଶାନ୍ତିନିକେତନରେ ଥିବାବେଳେ ଗ୍ରାମରୁ ମୋର ଦାଦା ମାୟାଧର ବେହେରା ତାଙ୍କର ଫଟୋ ଖଣ୍ଡିଏ ପଠାଇଥିଲେ । ତା' ସହିତ ତାଙ୍କର ରୂପ ଗୁଣ ବର୍ଣ୍ଣନା କରି ବିବାହ ପ୍ରସ୍ତାବ । ମୁଁ ଟିକିଏ ଅଡୁଆରେ ପଡ଼ିଗଲି । ସେତେବେଳକୁ ଶାନ୍ତିନିକେତନରେ ପଢୁଥିବା ଜଲପାଇଗୁଡ଼ିର ଜଣେ ବଙ୍ଗାଳୀ ଝିଅ ସହିତ ମୋର ମନ ମିଳିଥିଲା । ଏମ୍.ଏ. ପରୀକ୍ଷା ଶେଷ ହେଲା ପରେ ମାନସିକ ଦ୍ୱନ୍ଦ୍ୱ ଘେନି ମୁଁ ଗାଆଁକୁ ଆସିଲି । ଗାଆଁରେ ମୋ ପାଇଁ ରୀତିମତ ଏକ ଫାନ୍ଦ ପତା ଯାଇଥିଲା । ତାଙ୍କର ବଡ଼ ଭାଇ ଭଦ୍ରକରେ ସରକାରୀ ପ୍ରୋଜେକ୍ଟ ଅଫିସର୍ । ସେ ବାରମ୍ବାର ଆମ ଗାଆଁକୁ ଯାଇ ବିବାହ ଲାଗି ମୋ ଉପରେ ପ୍ରଭାବ ପକାଇବାରେ ଲାଗିଲେ । ମୋତେ ଆଣି ତାଙ୍କ ସହିତ ସାକ୍ଷାତ କରାଇ ଦେଲେ । ମୋ ପକ୍ଷରେ ସେହି ଫାନ୍ଦରୁ ମୁକୁଳିବା କଷ୍ଟକର ହେଲା ।

ତାଙ୍କର ନାମ ଥିଲା 'ଜରଦା' । ପାନ ଜରଦା ପରି ହୁଏତ ଟିକିଏ କଡ଼ା । ନାମଟି ମୋର ପସନ୍ଦ ନ ହେବାରୁ ବଦଳାଇ ରଖିଲି 'ଜୟନ୍ତୀ' । ବିବାହ ପରେ ଦେଖିଲି ସେ ପ୍ରକୃତରେ ଜୟକାରିଣୀ ଶକ୍ତି; ପରିସ୍ଥିତି ଅନୁଯାୟୀ କେତେବେଳେ କୋମଳ ତ, କେତେବେଳେ କଠିନ । କେତେବେଳେ ଭଦ୍ରକର ପାଳୁଅ ଲଡୁ ତ, କେତେବେଳେ ମୟୂରଭଂଜର ମୁଗୁନି ପଥର । ମୋ ଜୀବନ-ଯାତ୍ରାପଥରେ ସେ ବୈଜୟନ୍ତୀ ଉଡ଼ାଇବାରେ ଲାଗିଲେ । ତାଙ୍କୁ ସାଙ୍ଗରେ ଘେନି ମୁଁ ଅଗ୍ରଗତି କରିବାରେ ଲାଗିଲି । ସେହି ଅଗ୍ରଗତି ବେଳେବେଳେ ବ୍ୟାହତ ହେଉଥିଲା । ସେ ମାଟିର ନୀଡ଼ରେ ମୋତେ ଆବଦ୍ଧ କରିବାକୁ ଚାହୁଁଥିଲେ, ଆଉ ମୁଁ ଚାହୁଁଥିଲି ଆକାଶରେ ଉଡ଼ିବାକୁ । ଆମ କୋଳକୁ ଗୋଟିଏ କନ୍ୟା ଓ ଯୋଡ଼ିଏ ପୁତ୍ର ସନ୍ତାନ ଆସିଗଲା ପରେ ସେ ଅଧିକ ମାଟିମଗ୍ନ ହୋଇ ପଡ଼ିଲେ । ମୋର ସ୍ୱଳ୍ପ ରୋଜଗାର । ତହିଁରେ ଜଣେ ପରିଚାରକକୁ ଲଗାଇ ଛଅ ପ୍ରାଣୀର କୁଟୁମ୍ବ ପ୍ରତିପୋଷଣ କଷ୍ଟକର ହେଉଥିଲା । ତଥାପି ଧନ୍ୟ କହିବି ତାଙ୍କୁ, ସନ୍ତାନମାନେ ରୋଜଗାରକ୍ଷମ ହେବା ପର୍ଯ୍ୟନ୍ତ ପ୍ରାୟ ତିରିଶ ବର୍ଷକାଳ ସେ ସୁରୁଖୁରୁରେ ସଂସାର ଚଳେଇ ନେଇଥିଲେ ।

ମୋର ଲେଖାଲେଖି ସାହିତ୍ୟ-କର୍ମକୁ ସେ ସୁଦୃଷ୍ଟିରେ ଦେଖୁ ନ ଥିଲେ । ଏହାର ବୋଧହୁଏ ଦୁଇଟି କାରଣ ଥିଲା । ସାହିତ୍ୟ କର୍ମ ଅର୍ଥକରୀ ନ ଥିଲା ଏବଂ ମୋର ସାହିତ୍ୟ-କର୍ମ ଘେନି ବେଳେ ବେଳେ ଘଟୁଥିବା ବିବାଦ ଓ ବଦ୍‌ନାମ । ହୁଏତ ସେ

ବୁଝିପାରୁ ନ ଥିଲେ ମୋର ଅଧ୍ୟାପନା-ବୃତ୍ତି ସହ ସାହିତ୍ୟ-କର୍ମର କେତେ ସଂପର୍କ ରହିଛି ! ମୋର ପ୍ରଚୁର ବହିପତ୍ର କିଣାକୁ ସେ ପସନ୍ଦ କରୁ ନ ଥିଲେ । ଏକେ ତ ଆମ ଘରେ ଏତେ ବହିପତ୍ର ରଖିବା ପାଇ ସ୍ଥାନାଭାବ, ଦୁଜେ ଅନର୍ଥକ ପଇସା ଖର୍ଚ୍ଚ । 'ଗବେଷଣା ପରିଷଦ'ର ସେକ୍ରେଟେରୀ ଲାବଣ୍ୟ ଦେବୀଙ୍କ କୃପାରୁ ପରିଷଦର ନଥିପତ୍ର ଓ ପୁସ୍ତକାବଳୀ ଆସି ଆମ ଘରେ ଯେତେବେଳେ ଥୁଆ ହେଲା, ତାଙ୍କର ବିରକ୍ତି ବହୁ ଗୁଣରେ ବଢ଼ିଗଲା । ବେଳେବେଳେ ସେ କହି ପକାଉଥିଲେ – ଏ ବହିପତ୍ର ସବୁ ମୁଁ ପୋଡ଼ି ପକାଇବି । ଏ ଘରେ ବହିପତ୍ର ରହିବ, ନା, ମଣିଷ ରହିବେ ? ମୁଁ କହୁଥିଲି – ତମେ ତ ଦରପାଠୋଇ, ମେଟ୍ରିକ୍ୟୁଲେସନ୍ ଦୁଆରବନ୍ଧ ଡେଇଁ ପାରିଲନି । ବହିପତ୍ରର ମୂଲ୍ୟ ତମେ କଣ ବୁଝିବ ? କିନ୍ତୁ ସେ ଥିଲେ ଓଡ଼ିଆ ଓ ବଙ୍ଗଳା ଉପନ୍ୟାସର ଜଣେ ଭଲ ପାଠିକା । ବଙ୍କିମଚନ୍ଦ୍ର ଓ ଶରତ୍‌ଚନ୍ଦ୍ରଙ୍କର ପ୍ରାୟ ସମସ୍ତ ଉପନ୍ୟାସ ସେ ପଢ଼ି ପକାଇଥିଲେ; ପଢ଼ିଥିଲେ କାହ୍ନୁ ଚରଣ, ନିତ୍ୟାନନ୍ଦ ମହାପାତ୍ର, ଲକ୍ଷ୍ମୀଧର ନାୟକ ପ୍ରମୁଖଙ୍କର ଉପନ୍ୟାସ । ମୁଁ ଯେଉଁ ସବୁ ଗଳ୍ପ ଲେଖୁଥିଲି, ପ୍ରଥମେ ତାଙ୍କୁ ପଢ଼ି ଶୁଣାଉଥିଲି । ଗଳ୍ପଗୁଡ଼ିକ ଉପରେ ସାଧମତେ ସେ ଆପଣା ମନ୍ତବ୍ୟ ପ୍ରକାଶ କରୁଥିଲେ । ଭଦ୍ରକ କଲେଜରେ ମୋର 'ବେଦୀ' ଗଳ୍ପକୁ ଘେନି ଗଣ୍ଡଗୋଳଟାଏ ହେବାରୁ ସେ ଏକବାର ବିଗିଡ଼ି ଗଲେ । 'ଭାରି ଗୋଟେ ଲେଖକ' କହି ମୋତେ ବରାବର ପରିହାସ କରିବାରେ ଲାଗିଲେ ।

କାବ୍ୟନାୟିକା ପରି ସେ ଥିଲେ ବେଶ୍ ରୂପବତୀ । ସାନ୍ତାଳ-କୋହ୍ଲ-ଅଧ୍ୟୁଷିତ ବହଳଦା ରାଇରଙ୍ଗପୁର ମାଟିରୁ ଏପରି ଗୌରାଙ୍ଗୀ ଲାବଣ୍ୟମୟୀ ପ୍ରତିମା କିପରି ସମ୍ଭବ ହେଲା, ବେଳେବେଳେ ଭାବି ବିସ୍ମିତ ହୁଏ । ଆମର ଯୌନ ଜୀବନ ମୋଟାମୋଟି ସଫଳ ହୋଇଥିଲା । ପିଲାମାନେ ବଡ଼ ହେବା ପର୍ଯ୍ୟନ୍ତ ମୁଁ ସକାଳେ ଘରୁ କଲେଜକୁ ଯିବାବେଳେ ତାଙ୍କର ସୁଠାମ ମୁଖମଣ୍ଡଳକୁ ଚୁମ୍ବନ-ଚର୍ଚ୍ଚିତ କରି ବାହାରୁଥିଲି । କଲେଜରୁ ଘରକୁ ବାହୁଡ଼ିବା ପରେ ସେ ମୋର କଣ୍ଠଲଗ୍ନା ହୋଇ ବାର ବାର ଚୁମା ଖାଉଥିଲେ । ବେଳେବେଳେ ଆମେ ପରସ୍ପରକୁ ଧର୍ଷଣ କରୁଥିଲୁଁ । ଅର୍ଥାତ୍ ତାଙ୍କର ଇଚ୍ଛା ଓ ଆଗ୍ରହ ନ ଥିଲାବେଳେ ମୁଁ ତାଙ୍କ ସହିତ ରତିକ୍ରୀଡ଼ା କରୁଥିଲି ଏବଂ ମୋର ଇଚ୍ଛା ଓ ଆଗ୍ରହ ନ ଥିଲାବେଳେ ସେ ମୋ ସାଙ୍ଗରେ ସହବାସ କରୁଥିଲେ । ଏହାକୁ ଧର୍ଷଣ ନ କହି ଆଉ କି ଭାଷାରେ ବ୍ୟକ୍ତ କରାଯିବ ? ଆମ ମଧ୍ୟରେ ରହିଥିଲା ଗଭୀର ଅନ୍ତରଙ୍ଗ ପ୍ରେମ । ପ୍ରେମ ସହିତ ଯୌନତାର ସଂପର୍କ ଘେନି ମତ ମତାନ୍ତର ରହିଛି । ମୋ ମତରେ – ଏ ଦୁଇଟି ମଧ୍ୟରେ ଟିକିଏ ପାର୍ଥକ୍ୟ ଥିଲେ ବି ରହିଛି ଘନିଷ୍ଠ ସଂପର୍କ । ଗୋଟିଏ ହେଉଛି ହୃଦୟ-ମନର ଶକ୍ତି, ଅନ୍ୟଟି ଶରୀରର ଆନନ୍ଦମୟ ଲୀଳା । ଶରୀରକୁ ଛାଡ଼ି ହୃଦୟ-ମନର ସ୍ଥିତି କେଉଁଠି ? କେହି କେହି ପ୍ରେମକୁ ଯୌନତାର ଊର୍ଦ୍ଧ୍ୱରେ ସ୍ଥାନ ଦେଇଥାଆନ୍ତି ।

ସେମାନଙ୍କ ଦୃଷ୍ଟିରେ ପ୍ରେମ କୁଆଡ଼େ ମହତ୍ ଓ ଦିବ୍ୟ; ଯୌନତା ସ୍ଥୂଳ ଓ ଜାନ୍ତବ; ଏପରିକି ଅପବିତ୍ର । ମହାନ୍ ଭାରତୀୟ ପରଂପରାରେ ଏପରି ଧାରଣା କିପରି ପ୍ରସାରିତ ହେଲା, ବୁଝିପାରୁ ନାହିଁ । ଯେତେବେଳେ ଆମେ ଦୁହେଁ ସହବାସରେ ଥାଉଁ, ଜୀବନର ସବୁଠାରୁ ମଧୁର ଓ ପବିତ୍ର କାର୍ଯ୍ୟ କରୁଛୁଁ ବୋଲି ମୁଁ ମନେ କରିଥାଏଁ । ଆଉ ସେ ପରମ ତୃପ୍ତିରେ ମୋ ଦେହରେ ଲତେଇ ଯାଇଥାଆନ୍ତି ।

ଯୌନତା ଅଶାଳୀନ ବା ନିନ୍ଦନୀୟ ନୁହେଁ, ବରଂ ପ୍ରେମ ପରି ସୁନ୍ଦର ଓ ମହନୀୟ । ଶ୍ରଦ୍ଧା, ହର୍ଷ, ବିଷାଦ, ଈର୍ଷା, ଭୟ ଇତ୍ୟାଦି ମଣିଷ-ଜୀବନର ଆଉ ଆଉ ପାଞ୍ଚଟା ଭାବ ସଦୃଶ ଯୌନତା ଏକ ପ୍ରଭାବଶାଳୀ ବିଭାବ । ତେଣୁ ଭାରତୀୟ ପରଂପରାରେ କେଉଁଠି ଏହା ନିଷିଦ୍ଧ ହୋଇନାହିଁ; ଖାଲି ଏହାର ସଂଯତ ଓ ନିୟମାନୁଗ ଆଚରଣ କଥା ବୋଲାଯାଇଛି । ପ୍ରାଚୀନ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ଏହାର ଭୂରି ଭୂରି ଦୃଷ୍ଟାନ୍ତ ମିଳିବ । ମାତ୍ର ଏବେ ଆମ ସାହିତ୍ୟ କ୍ଷେତ୍ରରେ ଯୌନତା ନିଷିଦ୍ଧପ୍ରାୟ ହୋଇ ରହିଛି କାହିଁକି, ତାହାର ଯୁକ୍ତିଯୁକ୍ତ କାରଣ କିଛି ମୁଁ ଖୋଜିପାଏ ନାହିଁ । ନିଜର କେତେକ କବିତା, ଓ ଗଳ୍ପରେ ମୁଁ ସେହି ଯୌନତାର ଜୟଗାନ କରିଛି । ମୋର 'ବେଦୀ', 'ଦେହ ଓ ଦେହୀ', 'ମୋର ସେହି ଅବ୍ୟର୍ଥ ଅଙ୍ଗ' ପ୍ରଭୃତି କେତେକ ଗଳ୍ପରେ ଏହାର ଉଦାହରଣ ମିଳିବ । କେତୋଟି କବିତାରେ ମଧ୍ୟ ଯୌନତାକୁ ମାନ୍ୟତା ଦେଇଛି । ଏଠାରେ ତାହାର ଯୋଡ଼ିଏ ଦୃଷ୍ଟାନ୍ତ ଉପସ୍ଥାପନ କରୁଛି ।

"ଅଭିମାନେ ଆଜି ଏଇ ଗୋ ବସିଲି ଥିଇରି
ଥୁକୁଲ୍, କଥା ମୁଁ କହିବିନି ସାଥେ ତୋହରି ।
ଚାହିଁବିନି ତୋତେ ମୁହଁ ଟେକି ଥରେ କଦାପି
ଯେତେ ଭଲେଇଲେ, ସାକୁଲେଇ ହେଲେ ତଥାପି ।
ମୁହଁ ମୋର ନାଲି, ରୁଷିଗଲି ଜାଣ ଭାଆରି
ଭାଙ୍ଗିବ ମୋ ମାନ ଶକତି ଅଛି କି କାହାରି !

ଯେବେ ଧୀର ପାଦେ ଆସି ମୋ ପଛରୁ ସହିରେ
ଭିଡ଼ିବୁ ମୋ ଦେହ କଅଁଳ ତୋହର ବାହୁରେ,
'ମୋହ ରାଣ' ବୋଲି ପଦେ କଥା କାନ ପାଖରେ
କହି ରାଣୀ ଯେବେ ଛୁଇଁବୁ ଅଧର ଅଧରେ,
ଅଭିମାନ ମୋର ରହିବ କି ଆଉ ଟିକିଏ
ଦୁହେଁ ସେତେବେଳେ ମିଶି ହୋଇଯିବା ଜଣିଏ ।"

— ଅଭିମାନୀ (ପିପାସାର ପ୍ରାର୍ଥନା, ୧୯୬୮)

''ତମରି ଏ ଦେହ –
ଅତି ନିଜର କରିବା ଭଳି ପରିଚିତ ଦେହ
ତା' ଉପରେ କରିଚି ମୁଁ ବହୁ ଅତ୍ୟାଚାର ଅବହେଳେ,
ତମେ କାହିଁ କରିନ ଆପତ୍ତି କେବେ ହେଲେ !

ଜାଣେ ପ୍ରିୟେ,
ଦର୍ଶକ ସହିଲା ପରି ସରସ ହୃଦୟେ
ବିଷାଦ ଓ କାରୁଣ୍ୟର ଭାର
ଟ୍ରାଜେଡ଼ିର,
ସହି ପାର ତମେ ମୋର
ଯେତେ ମଧୁ ନିପୀଡ଼ନ ଯେତେ ଅତ୍ୟାଚାର !
ଭଲ ପାଅ – ଜାଣେ ଭଲ ପାଅ
ହେଲେ ବି ନିଠୁର
ମୋ ପୁରୁଷକାର ।''

– ନିପୀଡ଼ିତାସୁ (ପିପାସାର ପ୍ରାର୍ଥନା, ୧୯୬୮)

ଏହି ସବୁ କବିତା ଓ ଗଳ୍ପ ରଚନାର ନେପଥ୍ୟରେ ସେ ଯେପରି ରତିଦେବୀଙ୍କ ପରି ଉଭା ହୋଇଛନ୍ତି ! ମୁଁ ସେହି ରତି-ପ୍ରତିମାଙ୍କ ପାଦତଳେ ନମସ୍କାର କରିଛି କେତେଥର, କେତେଥର ପୁଣି ପ୍ରଣାମ କରିଛି ପ୍ରତିମପ୍ରସୂ ସେହି ଜନନୀଙ୍କ ଚରଣ ତଳେ ।

ଜଣେ ପରିଚାରକ ବା ପରିଚାରିକା ସହାୟତାରେ ପକ୍କା ଗୃହିଣୀ ଭାବରେ ସେ ଘରର ଯାବତୀୟ କାଯ କରୁଥିଲେ – ଗୃହସଜ୍ଜା, ସଫାସୁତୁରାଠାରୁ ଆରମ୍ଭ କରି ରନ୍ଧାବଢ଼ା, ଅତିଥି ଚର୍ଚ୍ଚା ପର୍ଯ୍ୟନ୍ତ । ତିନୋଟି ପିଲାଙ୍କର ଲାଳନ ପାଳନର ଦାୟିତ୍ୱ ମଧ ତୁଲାଉଥିଲେ । ପିଲାମାନଙ୍କ ପ୍ରତି ସେ କେତେବେଳେ ଥିଲେ ଲହୁଣୀ ପରି କୋମଳ, ଆଉ କେତେବେଳେ ନାରିକେଳ ପରି ଶକ୍ତ । ବିଶେଷତଃ କନ୍ୟା ସନ୍ତାନଟି ପ୍ରତି ତାଙ୍କର ବରାବର ସତର୍କ ଦୃଷ୍ଟି ରହିଥିଲା । ଘର ସଂସାରର ନାନା କାର୍ଯ୍ୟରେ ଆମ ଭିତରେ ମତ ପାର୍ଥକ୍ୟ, କଳି ତକରାଳ ଯେ ଆଦୌ ହେଉ ନ ଥିଲା, ତାହା ନୁହେଁ । ପିଲାମାନେ କି ବେଶ ପୋଷାକ ପିନ୍ଧିବେ, ଘରଦୁଆରେ ବା ଝରକାରେ କିଭଳି ପରଦା ଲାଗିବ, କେଉଁ କାନ୍ଥରେ କାହାର ଫଟୋଚିତ୍ର ଟଙ୍ଗାଯିବ, କେଉଁ କେଉଁ ବାରରେ ଆମିଷ ଖାଦ୍ୟ ଖିଆହେବ ନାହିଁ, ଇତ୍ୟାଦି ତୁଚ୍ଛ ଓ ସାମାନ୍ୟ ବ୍ୟାପାରରେ ଆମର ମତାନ୍ତର ହେଉଥିଲା । ମତାନ୍ତରରୁ କଳି । ସେହି କଳି 'ଅଢ଼ା ଯୁଦ୍ଧ'ରେ ଶେଷ ହେଉଥିଲା । ସେ ବିଭିନ୍ନ ଦିଅଁ ଦେବତା ପୂଜା

କରିବାକୁ ମଠ ମନ୍ଦିର ଯାଉଥିଲେ, ପାଳୁଥିଲେ ବହୁ ଓଷାବ୍ରତ । ତାଙ୍କର ଏହି ଲୋକଦେଖାଣିଆ ଧର୍ମପାଳନକୁ ମୁଁ ସହ୍ୟ କରିପାରୁ ନ ଥିଲି । ସେଥିପାଇଁ ଆମ ଭିତରେ କନ୍ଦଳ ସୃଷ୍ଟି ହେଉଥିଲା, ସପ୍ତାହ ସପ୍ତାହ ବ୍ୟପୀ କଥାବାର୍ତ୍ତା ବନ୍ଦ ହୋଇ ଯାଉଥିଲା । ତାଙ୍କର ଯୁକ୍ତି ଥିଲା – 'ମୋ ନିଜ ପାଇଁ ମୁଁ ଏପରି ଧର୍ମପାଳନ କରୁ ନାହିଁ, ତମର ଓ ତମ ପିଲାମାନଙ୍କର ମଙ୍ଗଳ ପାଇଁ କରୁଛି ।' ଏଥିପାଇଁ ତାଙ୍କୁ ମୋର କିଛି ଉତ୍ତର ନଥିଲା । ଆଉ ଏକ ବ୍ୟାପାରରେ ସେ ଥିଲେ 'ସାଉଥ୍ ପୋଲ୍', ଆଉ ମୁଁ 'ନର୍ଥ୍ ପୋଲ୍' । ସେ ବରାବର ଧାଉଁଥିଲେ ସ୍ୱର୍ଣ୍ଣମୃଗ ପଛରେ । ଖବରକାଗଜ ପଢୁଥିଲେ ମୁଖ୍ୟତଃ ସୁନାରୂପା ଦର ଜାଣିବା ପାଇଁ, ସାଙ୍ଗସାଥୀଙ୍କ ସହ ଅଧିକ ଗପୁଥିଲେ ଶାଢ଼ୀ ଚୁଡ଼ି ବିଷୟରେ । ଆଉ ମୋର ଗତି ଭିନ୍ନ ଦିଗରେ, ମୁଁ ଧାଉଁଛି ବାଗ୍‌ଦେବୀଙ୍କ ପଛରେ । ସେ କଣ ପାଇଲେ, ମୁଁ କଣ ପାଇଲି, ବର୍ତ୍ତମାନ କହିପାରିବି ନାହିଁ ।

ଡାଇବେଟିସ୍ ଥିଲା ତାଙ୍କର ବଂଶଗତ ରୋଗ । ପରେ ଉଚ୍ଚ ରକ୍ତଚାପରେ ଭୋଗିଲେ । ଆମେ ସେତେବେଳେ ତାଙ୍କର ଉପଯୁକ୍ତ ଯତ୍ନ ନେଇପାରିଲୁ ନାହିଁ । ତାହାରି କୁଫଳ ଯୋଗୁ ତାଙ୍କର ବାମଗୋଡ଼ ଆଣ୍ଠୁ ତଳକୁ କାଟି ଦିଆଗଲା । ତା'ପରେ ପ୍ରାୟ ପାଞ୍ଚବର୍ଷ ସେ ବଞ୍ଚିଲେ । ଗତ ୨୬.୧.୨୦୦୮ ତାରିଖରେ ଅକସ୍ମାତ୍ ଚାଲିଗଲେ । ପୂର୍ବରୁ ଆମେ କେତେଥର କଥାବାର୍ତ୍ତା କରିଥିଲୁଁ – ଦୁହେଁ ଏକା ସାଙ୍ଗରେ ଯିବା ! କିନ୍ତୁ ତାହା ହୋଇ ପାରିଲା ନାହିଁ । ମୋତେ ଏକା ଛାଡ଼ି ସେ ବାଟ କାଟିଲେ । ଶେଷ ନିଶ୍ୱାସ ଯିବା ପୂର୍ବରୁ ଅଚେତ ଥିବାରୁ କାହାରିକୁ କିଛି କହିଯାଇ ପାରିଲେ ନାହିଁ । ମୋତେ ପୁଣି ଥରେ ତାଙ୍କ ଉନ୍ନତ ଶିରରେ ସିନ୍ଦୂର ପିନ୍ଧାଇବାକୁ ପଡ଼ିଲା ।





ତରୁଣ ବୟସରେ ଲେଖକ
୧୯୪୮



ଭଦ୍ରକ ଜିଲ୍ଲା ତିହିଡି ଥାନା ଅର୍ଜ୍ଜୁନବିନ୍ଧା ଗ୍ରାମରେ ଲେଖକଙ୍କ ପୈତୃକ ଗୃହ



ପୂର୍ଣ୍ଣାଙ୍ଗ ପରିବାର(୪.୬.୨୦୦୪)

(ବାମରୁ ଡାହାଣ) ଠିଆ ହୋଇଛନ୍ତି ଜ୍ୟେଷ୍ଠପୁତ୍ର ପୁଣ୍ୟଶ୍ଳୋକ ଓ ପୁତ୍ରବଧୂ ମୀନାକ୍ଷି, ଜାମାତା ଦାମୋଦର ଓ କନ୍ୟା ମଧୁଶ୍ରୀ, କନିଷ୍ଠ ପୁତ୍ର ଶୁଭକାନ୍ତ ଓ ପୁତ୍ରବଧୂ ରାଜଶ୍ରୀ । ଲେଖକ ଦମ୍ପତିଙ୍କ ସହ ବସିଛନ୍ତି ବଡ ନାତୁଣୀ ଅନନ୍ୟାଶ୍ରୀ, ସାନ ନାତୁଣୀ ଅମୃତାଶ୍ରୀ ଏବଂ ନାତି ଅନନ୍ୟତେଜ ।



ଶାନ୍ତିନିକେତନ(ପଶ୍ଚିମବଂଗ), ୧୯୫୨

*ଚୀନା ଭବନ ସମ୍ମୁଖରେ ନରେନ୍ଦ୍ରନାଥ ମିଶ୍ର, ଅଧ୍ୟାପକ ଚିନ୍ତାମଣି ବେହେରା, ଦୁର୍ଗାଚରଣ ପରିଡ଼ା, ନରେନ୍ଦ୍ରମୋହନ ବେହେରା ପ୍ରମୁଖଙ୍କ ସହ ଲେଖକ (ତଳଧାଡ଼ି ଡାହାଣ ପଟ ଶେଷରେ)*



୧.୧୨.୧୯୬୭- ଭଦ୍ରକ କଲେଜ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକୋତ୍ସବରେ ବିଭାଗୀୟ ମୁଖ୍ୟ ଡକ୍ଟର ବେହେରାଙ୍କ ସହ ମୁଖ୍ୟ ଅତିଥି ସାହିତ୍ୟିକ ଶ୍ରୀ ସୁରେନ୍ଦ୍ର ମହାନ୍ତି, ଓଡ଼ିଆ ବିଭାଗର ଅଧ୍ୟାପକ-ଅଧ୍ୟାପିକାବୃନ୍ଦ ଓ ଛାତ୍ରଛାତ୍ରୀଗଣ ।



ମୟୂରଭଞ୍ଜସ୍ଥ 'ବାରିପଦା ସାହିତ୍ୟ ସମାଜ' ପକ୍ଷରୁ ସମ୍ବର୍ଦ୍ଧନା ସଭା : ଜୁଲାଇ ୧୯୭୫ । ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରୁ ବଦଳି କାଳରେ ଶ୍ରୀ ଗୋକୁଳଚନ୍ଦ୍ର ଶତପଥୀଙ୍କ ବାସଭବନରେ ଅଧ୍ୟାପକ ଓ ସାହିତ୍ୟିକମାନଙ୍କ ଗହଣରେ ବସିଛନ୍ତି ଲେଖକ (ବାମରୁ ତୃତୀୟ)



କଟକ ରେଭେନ୍ସା କଲେଜ ଛାତ୍ରୀନିବାସର ବାର୍ଷିକୋତ୍ସବରେ(୧୯୮୬-୮୭) ଅନ୍ତେବାସିନୀଙ୍କ ଗହଣରେ(ବାମପଟରୁ) ଛାତ୍ରୀନିବାସର ପରିଚାଳକ ଭାବରେ ଲେଖକ, କଲେଜ ଅଧ୍ୟକ୍ଷ ପ୍ରଫେସର୍ ଉମାକାନ୍ତ ମହାପାତ୍ର ଓ ସହକାରୀ ପରିଚାଳିକା ଅଧ୍ୟାପିକା ଶ୍ରୀମତୀ ତ୍ରିପାଠୀ



କଟକସ୍ଥ ଶ୍ରୀରାମଚନ୍ଦ୍ର ଭବନ, 'ଓଡ଼ିଆ ଗବେଷଣା ପରିଷଦ'ର ବାର୍ଷିକୋତ୍ସବରେ
ଲେଖକଙ୍କର ସଭାପତିତ୍ୱ- ୨୮.୧୨.୧୯୮୨

*ମଞ୍ଚାସୀନ(ବାମ ପଟରୁ) ପରିଷଦର ସେକ୍ରେଟାରୀ ଡ. କ୍ଷେତ୍ରବାସୀ ନାୟକ, ଉତ୍ସବର ମୁଖ୍ୟ ଅତିଥି ଶିକ୍ଷାମନ୍ତ୍ରୀ ଶ୍ରୀ ମହାପାତ୍ର, ସମ୍ମାନିତ ଅତିଥି ସଂସ୍କୃତି ମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଏବଂ ମୁଖ୍ୟବକ୍ତା ପ୍ରଫେସର୍ କୁଞ୍ଜବିହାରୀ ତ୍ରିପାଠୀ*



*ଲେଖକଙ୍କ ସଭାପତିତ୍ୱରେ ଅନୁଷ୍ଠିତ 'ଓଡ଼ିଆ ଗବେଷଣା ପରିଷଦ'ର ବାର୍ଷିକୋତ୍ସବରେ ମୁଖ୍ୟ ଅତିଥି ମାନ୍ୟବର ରାଜ୍ୟପାଳ ବିଶ୍ୱମ୍ଭରନାଥ ପାଣ୍ଡେ ବିଶିଷ୍ଟ ସମୀକ୍ଷକ ଡ. ନଟବର ସାମନ୍ତରାୟଙ୍କୁ 'କ୍ଷେତ୍ରବାସୀ ସାହିତ୍ୟବିଦ୍ୟା ପୁରସ୍କାର' ପ୍ରଦାନ କରୁଛନ୍ତି ।*
*କଟକ ଶ୍ରୀରାମଚନ୍ଦ୍ର ଭବନ, ୮.୪.୧୯୮୭*



'ଓଡ଼ିଆ ଯୁବ ଲେଖକ ସମ୍ମେଳନ'ର ବାରିପଦାଠାରେ ଅନୁଷ୍ଠିତ ୮ମ
ବାର୍ଷିକ(୧୯୭୨) ଅଧିବେଶନରେ ଲେଖକଙ୍କର ସଭାପତିତ୍ୱ ।
ତତ୍‌କାଳୀନ ମନ୍ତ୍ରୀ ଯଦୁନାଥ ଦାଶମହାପାତ୍ର ଭାଷଣରତ ଏବଂ ତାଙ୍କ ପାଖରେ
ଆସୀନ ଅଭ୍ୟର୍ଥନା ସମିତିର ଚେୟାରମେନ୍ କଲେକ୍ଟର୍ ସୀତାକାନ୍ତ ମହାପାତ୍ର



କନ୍ଧମାଳର ଶ୍ରୀପଲ୍ଲୀ ଗ୍ରାମାଞ୍ଚଳରେ-୧୧.୨.୧୯୮୨
ଫୁଲବାଣୀର ସବ୍‌କଲେକ୍ଟର ଶ୍ରୀ ହୋତା ଓ ଫୁଲବାଣୀ ସରକାରୀ କଲେଜର କେତେକ
ଅଧ୍ୟାପକଙ୍କ ସହ ଲେଖକ ଉପରଧାଡ଼ିରେ ଠିଆ ହୋଇଛନ୍ତି(ବାମରୁ ଦ୍ୱିତୀୟ)



ଯାଜପୁରସ୍ଥ ନରସିଂହ ଚୌଧୁରୀ କଲେଜର 'ବିରଜା ବକ୍ତୃତାମାଳା'ରେ ଲେଖକଙ୍କର
ଭାଷଣ ପ୍ରଦାନ- ୩୦.୧.୧୯୭୯
ପାର୍ଶ୍ୱରେ ସଭାପତି ଅଧ୍ୟକ୍ଷ ଶଚୀନ୍ଦ୍ରଚନ୍ଦ୍ର ଦାସ ଓ ଅଧ୍ୟାପକ ପୀତାମ୍ବର ପ୍ରଧାନ



ଭୁବନେଶ୍ୱରସ୍ଥ ଜୟଦେବ ଭବନ(ସୂଚନା ଭବନ)ଠାରେ ୨୩.୭.୨୦୦୧ତାରିଖରେ
ମାନ୍ୟବର ରାଜ୍ୟପାଳ ଶ୍ରୀ ଏମ୍.ଏମ୍. ରାଜେନ୍ଦ୍ରନ୍ ଲେଖକଙ୍କୁ ସମାଲୋଚନା ପ୍ରବନ୍ଧ ପାଇଁ
ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରଦାନ କରୁଛନ୍ତି । ପାଖରେ ଅଛନ୍ତି ଏକାଡେମୀର
ସଭାପତି ଅଧ୍ୟାପକ ପଠାଣି ପଟ୍ଟନାୟକ ଏବଂ ସେକ୍ରେଟାରୀ ଶ୍ରୀ ଅଶ୍ୱିନୀକୁମାର ମିଶ୍ର




ଲଣ୍ଡନ ନଗରୀସ୍ଥ ବିଖ୍ୟାତ ଓ୍ୱାକ୍ସ ମ୍ୟୁଜିୟମ୍‌ରେ ମହମ ନିର୍ମିତ ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କ ପ୍ରତିକୃତି ପାଖରେ ଲେଖକ-୨୪.୮.୧୯୯୫



ବିଲାତର ଏଭନ୍ ନଦୀ କୂଳସ୍ଥ ଷ୍ଟାର୍ଟଫୋର୍ଡ୍ ସହରରେ କବି ସେକ୍ସପିୟର୍‌ଙ୍କ ଜନ୍ମସ୍ଥାନରେ ଲେଖକ - ୩୧.୮.୧୯୯୫



ବୁଲଗେରିଆସ୍ଥ ସୋଫିଆରେ ନାତି, ନାତୁଣୀ, କନିଷ୍ଠ ପୁତ୍ର ଓ ପୁତ୍ରବଧୂଙ୍କ ସହ

ଅଟ [illegible]



ରୁଷିଆର ମସ୍କୋ ମହାନଗରୀସ୍ଥ 'ରେଡ୍ ସ୍କୋୟାର୍'ରେ ଶ୍ରୀମତୀ ନମିତା ମହାନ୍ତିଙ୍କ ସହିତ ଲେଖକ । ପଶ୍ଚାଦ୍ ଭାଗରେ ବିଖ୍ୟାତ୍ କ୍ରେମଲିନ୍ ପ୍ରାସାଦ । ଫଟୋ-୨୪.୧୧.୧୯୯୮



ମହାରାଷ୍ଟ୍ରର କଲ୍ୟାଣଠାରେ ୩୧.୧୨.୧୯୭୭ ତାରିଖରେ ଅନୁଷ୍ଠିତ ନିଖିଳ ଭାରତ ସାହିତ୍ୟ ସମ୍ମେଳନରେ ଉତ୍କଳ ସାହିତ୍ୟ ସମାଜର ପ୍ରତିନିଧି ଭାବରେ ଲେଖକଙ୍କର ଭାଷଣ ପ୍ରଦାନ । ବାମ ପଟରୁ ଦ୍ୱିତୀୟ ସ୍ଥାନରେ ବିଖ୍ୟାତ ସାହିତ୍ୟିକ ଶ୍ରୀ ଉମାଶଙ୍କର ଯୋଷୀ ମଞ୍ଚାସୀନ ।




ଅବିଭକ୍ତ କଳାହାଣ୍ଡି ଜିଲ୍ଲାର 'ଖଡିଆଳ ସାହିତ୍ୟ ସମିତି' ପକ୍ଷରୁ
୨୬.୧୨.୧୯୯୬ ତାରିଖରେ ଲେଖକଙ୍କୁ ସମ୍ବର୍ଦ୍ଧନା ।
ମଞ୍ଚାସୀନ ଅଛନ୍ତି ସଭାପତି ରାଜା ଶ୍ରୀ ଅନୁପ ସିଂହଦେଓ



ଭଦ୍ରକଠାରେ ୧୯୯୯ ଉତ୍କଳ ଦିବସରେ ଲେଖକଙ୍କର ଭାଷଣ ପ୍ରଦାନ ।
(ବାମ ପଟରୁ) ସଭାପତି ଏଡ୍‌ଭୋକେଟ୍ ରାଖାଲଚନ୍ଦ୍ର ଦାସ ଏବଂ ବରେଣ୍ୟ ଅତିଥି
ପ୍ରଫେସର୍ ଶ୍ରୀଧରପ୍ରସାଦ ମହାନ୍ତି




୫.୧.୨୦୦୧ ତାରିଖରେ ଚାନ୍ଦବାଲି କଲେଜରେ ଲେଖକଙ୍କୁ ସମ୍ବର୍ଦ୍ଧନା
ପାର୍ଶ୍ୱରେ ଅଛନ୍ତି କଲେଜ ଅଧ୍ୟକ୍ଷ ଏବଂ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ




କଟକ ଶତାବ୍ଦୀଭବନରେ ୨୫.୧୦.୨୦୦୫ ତାରିଖରେ ଅନୁଷ୍ଠିତ 'ଓଡ଼ିଆ ଗବେଷଣା ପରିଷଦ'ର ରଜତ ଜୟନ୍ତୀ ଉତ୍ସବରେ ଲେଖକଙ୍କର ସଭାପତିତ୍ୱ । ସଂପାଦିକା ଓ ସହଯୋଗୀ ସଂପାଦକଙ୍କ ସହ (ବାମ ପଟରୁ) ଉତ୍ସବର ଆବାହକ ଡ. ବିଜୟାନନ୍ଦ ସିଂହ, ଅଭ୍ୟର୍ଥନା ସମିତିର ଅନ୍ୟତମ ସଭ୍ୟ ଇଂ. ରାଜେନ୍ଦ୍ରନାରାୟଣ ଦାସ ଏବଂ ମୁଖ୍ୟ ଅତିଥି ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ରାମେଶ୍ୱର ଠାକୁର




୭୫ ବର୍ଷ ବୟସ ପୂର୍ତ୍ତି ଉପଲକ୍ଷେ କଟକ ଶତାବ୍ଦୀ ଭବନଠାରେ ଲେଖକଙ୍କୁ ସମ୍ବର୍ଦ୍ଧନା(୧୭.୧୦.୨୦୦୬)
ଲେଖକଙ୍କ ସହ(ବାମ ପଟରୁ) ଅଭିନନ୍ଦନ ସମିତିର ସଂପାଦକ ଡ. ବିଜୟାନନ୍ଦ ସିଂହ, ଉତ୍ସବର ମୁଖ୍ୟ ବକ୍ତା ପ୍ରଫେସର ପଞ୍ଚାନନ ମହାନ୍ତି, ବରେଣ୍ୟ ଅତିଥି ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ, ସଭାପତି ରବିନାରାୟଣ ସେନାପତି, ଆଇ.ଏ.ଏସ୍., ମୁଖ୍ୟ ଅତିଥି ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର୍ ଲକ୍ଷ୍ମୀନାରାୟଣ ମିଶ୍ର, ଅଭିନନ୍ଦନ ସମିତିର ଉପସଭାପତି ଡ. ଅଜୟକୁମାର ପଟ୍ଟନାୟକ ଓ ଆବାହକ ଶ୍ରୀ ଚିତ୍ତରଂଜନ ବେହେରା

# ।। ପରିପତ୍ର ।।

ଅଧ୍ୟାପକ ଡକ୍ଟର କୃଷ୍ଣଚରଣ ବେହେରାଙ୍କ ଆତ୍ମଜୀବନୀର ପରିଶିଷ୍ଟରେ ତାଙ୍କ ପାଖକୁ ଆସିଥିବା ସହସ୍ରାଧିକ ପତ୍ରାବଳୀ ମଧ୍ୟରୁ ୧୮୫ଗୋଟି ପତ୍ର(୧୯୪୭-୧୯୮୩)ର ଏକ ନିର୍ବାଚିତ ସଂକଳନ ସନ୍ନିବିଷ୍ଟ । ଏଗୁଡ଼ିକର ପ୍ରେରକ ସମାଜର ବିଭିନ୍ନ ବର୍ଗର; ରାଜ୍ୟ ଭିତର-ବାହାର, ଏପରିକି ଦେଶ ବାହାରର । ପରିବାର ପରିଜନ ପତ୍ରକୁ ଜ୍ଞାତସାରରେ ଏଥିରୁ ବାଦ୍ ଦିଆଯାଇଛି । କେବଳ ସମଗୋତ୍ରୀୟ ବୃତ୍ତିଜୀବୀ ଅଧ୍ୟାପକ ଅଥବା ବ୍ରତସେବୀ ସାହିତ୍ୟିକ ନୁହଁନ୍ତି; ସାଧାରଣ ଛାତ୍ର, ଶୁଭେଚ୍ଛୁ ସହୃଦୟ ପାଠକ, ପ୍ରଶାସକ, ରାଷ୍ଟ୍ରନୀତିଜ୍ଞ, ଗବେଷକ, ସଂପାଦକ, ସର୍ବୋପରି ଅସଂଖ୍ୟ ଅଜ୍ଞାତ ବ୍ୟକ୍ତିଙ୍କର ଅନାହୂତ ଆତ୍ମବ୍ୟାଖ୍ୟାନ ଏହିସବୁ ଚର୍ଚ୍ଚିତ ଚିଟାଉର ବକ୍ତବ୍ୟ ।

ଆତ୍ମଜୀବନୀକାର ଆପଣାର ଆଖିର ଦେଖା ପ୍ରାଣର କଥା ଯେତେ କହିଲେ ବି ତହିଁରେ ତାଙ୍କ ବ୍ୟକ୍ତିତ୍ୱର ପୂର୍ଣ୍ଣ ପରିପ୍ରକାଶ ପ୍ରାୟତଃ ଘଟେ ନାହିଁ । ଲେଖକ ଯଦି ଶିଷ୍ଟାଚାର ରକ୍ଷାକରି ଆପଣା ପୁରୁଷାର୍ଥ ଆପେ କହିବାକୁ କୁଣ୍ଠାବୋଧ କରନ୍ତି, ଆପଣା ଢୋଲ ପିଟାକୁ ଅପରାଧ ଆଖ୍ୟା ଦିଅନ୍ତି, ତେବେ କଥା ସରିଲା । ବେଳେ ବେଳେ ବି ଏହାର ବିପରୀତ ରୀତି ପ୍ରକାଶ ପାଇବାର ସମ୍ଭାବନା ଥାଏ । ଏଇଠି ଲୋଡ଼ା ହୁଏ ତାଙ୍କର ପତନ-ଅଭ୍ୟୁଦୟଭରା ବନ୍ଧୁର ଜୀବନ ଯାତ୍ରାପଥର ସହଯାତ୍ରୀ ଅୟୁତ ଅନ୍ୟ ଆଖିର ଦେଖା ଓ ପ୍ରାଣର କଥାର ନିକଷରେ ପରଖି ଜୀବନୀକାରଙ୍କ ବକ୍ତବ୍ୟର ବିଚାର । ଯେଉଁମାନେ ଡକ୍ଟର ବେହେରାଙ୍କ ପୂର୍ଣ୍ଣଗର୍ଭା ଜୀବନସ୍ରୋତରେ ଶାଖା ନଦୀ ବା ଉପନଦୀ ଭାବରେ ସଂଯୁକ୍ତ ହୋଇଛନ୍ତି, ସେହିମାନଙ୍କର ଜୀବନ-ରସ ଏହି ପତ୍ରାବଳୀର ସାରସତ୍ତ୍ୱ । ମୋଟ ଉପରେ, ପୂର୍ଣ୍ଣାଙ୍ଗ ଜୀବନୀ ପାଇଁ ଉପାଦାନ-ଆକର ପ୍ରସ୍ତୁତି ଏହାର ଲକ୍ଷ୍ୟ । ଏଥିପାଇଁ ଡକ୍ଟର ବେହେରା, ଅନୁକୂଳ ପରିମଣ୍ଡଳୀ ପ୍ରଦାନ କରିଥିବାରୁ ଆମେ ତାଙ୍କ ପାଖରେ କୃତଜ୍ଞ ।

ସମକାଳୀନ ଓଡ଼ିଆଙ୍କ ମଧ୍ୟରେ ଡକ୍ଟର କୃଷ୍ଣଚରଣ ଶିକ୍ଷକ, ସାହିତ୍ୟିକ, ସଂଗଠନ-ସମର୍ଥ, ସମାଜସେବୀ ଭାବରେ ପ୍ରତିଷ୍ଠିତ । ସମାଜବାଦୀ ଦୃଷ୍ଟିକୋଣ, ଇତରଙ୍କଠାରେ

ଐତରେୟ ଅଭୀପ୍‌ସା ଜାଗରଣ କରାଇବାର ଅସାମାନ୍ୟ ସାମର୍ଥ୍ୟ ତାଙ୍କ ବ୍ୟକ୍ତିତ୍ୱର ବଡ଼ ବିଭବ । ତଥ୍ୟର ଗହନ ଅରଣ୍ୟରେ ପ୍ରବେଶ କରାଇବା ପାଇଁ ସମକାଳରେ ବହୁ ଶିକ୍ଷକ ଅଛନ୍ତି । ସତ୍ୟ ସାଉଣ୍ଟିବାକୁ ପ୍ରେରଣା ଯୋଗାନ୍ତି କେତେଜଣ ? ଆଗ୍ରହୀ ଛାତ୍ରପାଇଁ ସେ ପାଲଟି ଯାଆନ୍ତି ଶିକ୍ଷାଗୁରୁରୁ ଦୀକ୍ଷାଗୁରୁ । ବହୁ ଛାତ୍ର ଜୀବନର ମାନେ ଖୋଜନ୍ତି ତାଙ୍କ ସାନ୍ନିଧ୍ୟରୁ । ଏଇ ଯେମିତି ବନମାଳୀ ମିଶ୍ର ୧୨.୮.୧୯୭୦ ତାରିଖରେ ସ୍ୱୀକାର କରନ୍ତି, 'ଆପଣଙ୍କ ଚିଠି ପାଇଲା ପରଠାରୁ ଏପର୍ଯ୍ୟନ୍ତ ଏକପ୍ରକାର ଭାବ ଜଗତର ଅନ୍ଧକାର ମଧ୍ୟରେ ଆଲୋକପାଇଁ ଆର୍ତ୍ତଚିତ୍କାର କରୁଛି ।'(ପତ୍ରସଂଖ୍ୟା-୭୯)

ସାହିତ୍ୟସାଧନା କୃଷ୍ଣଚରଣଙ୍କର ଜୀବନର ବ୍ରତ । ଆପଣାର, ଅପରର ଅୟୁତ ଲେଖନୀ ନିରାଜନାରେ ସେ ସମଗ୍ର ଜୀବନ ବ୍ୟୟିତ କରିଛନ୍ତି । ସେଥିପାଇଁ କେତେବେଳେ ତାଳି ତ କେତେବେଳେ ଗାଳି ପାଇଛନ୍ତି । ହୁଏତ ତାଳିକୁ ଗଳାର ମାଳି କରିନାହାନ୍ତି, କିନ୍ତୁ ଗାଳିକୁ ଦେହର ମଳି କରିଛନ୍ତି ଅନେକତ୍ର । ସାଧନା ଅବ୍ୟାହତ ରହିଛି । 'ବେଦୀ' ଗଳ୍ପ ଲେଖି କଣ୍ଟକର ମାଳା ପିନ୍ଧିଥିବା ୩୨ ବର୍ଷର ଯୁବକ ଜଣକ ସାହସ କରି ଆଜିପର୍ଯ୍ୟନ୍ତ ୭୮ ବର୍ଷ ବୟସରେ ବି ଗଳ୍ପ ରଚନାରେ ନିମଗ୍ନ, ଏକଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ସେହି ସଂଘର୍ଷମୟ 'ବେଦୀ' ପର୍ଯ୍ୟାୟର ପର୍ଯ୍ୟାପ୍ତ ସୂଚନା ସୁରେନ୍ଦ୍ର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଫତୁରାନନ୍ଦ ପ୍ରମୁଖଙ୍କ ପତ୍ରରୁ ମିଳେ । 'ମୋଗଲ ତାମସା' ସଂପାଦନା ପାଇଁ ହରେକୃଷ୍ଣ ମହତାବ, ପରମାନନ୍ଦ ଆଚାର୍ଯ୍ୟ, ପ୍ରହ୍ଲାଦ ପ୍ରଧାନ, କୁଞ୍ଜବିହାରୀ ଦାଶ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ପ୍ରମୁଖଙ୍କ ଆଶୀର୍ବାଣୀ ଏବଂ ଅନନ୍ତ ପ୍ରସାଦ ପଣ୍ଡା, ଲକ୍ଷ୍ମୀଧର ନାୟକ ପ୍ରମୁଖଙ୍କ ସାହିତ୍ୟିକ ଜୀବନ ଚିତ୍ରାଦିରେ ସଂପୃକ୍ତ ପତ୍ରାବଳୀ ସମୃଦ୍ଧ । ସାହିତ୍ୟ ସାଧନାର ଆଦ୍ୟ ପର୍ଯ୍ୟାୟରେ ପଣ୍ଡିତ ନୀଳକଣ୍ଠ ଦାସ, କୃପାସିନ୍ଧୁ ହୋତା, ଲକ୍ଷ୍ମୀନାରାୟଣ ସାହୁ, ଗଗନବିହାରୀ ମହାନ୍ତି ପ୍ରମୁଖଙ୍କ ପ୍ରେରଣା ପ୍ରଣିଧାନଯୋଗ୍ୟ ।

ସାହିତ୍ୟ ରଚନାର ସମତାଳରେ ସାହିତ୍ୟ ସଂପାଦନା କୃଷ୍ଣଚରଣଙ୍କ ସାଧନା ଧାରାରେ ଅଙ୍ଗୀଭୂତ । ଭଦ୍ରକ କଲେଜର 'ଅର୍ଘ୍ୟ' ଓ ଚିନ୍ତାମଣି ମହାନ୍ତିଙ୍କ ଜୀବନ-ସାହିତ୍ୟ ଘେନି ସଂପାଦିତ ଗ୍ରନ୍ଥ ଏହାର ଦୃଷ୍ଟାନ୍ତ । ସେହି ଅଭିଜ୍ଞତାର ଆଲୋକରେ ଆଲୋକିତ ହେବାକୁ ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା ସ୍ମରଣିକା ସଂପାଦନା କାଳରେ ଅଧ୍ୟାପକ ଅଜାମ୍ବର ମଲ୍ଲଙ୍କ ଆକାଂକ୍ଷା ଡକ୍ଟର ବେହେରାଙ୍କ ସାଧସାଧନାର ସାମାଜିକ ଉପଯୋଗିତା ସଂପର୍କରେ ସୂଚନା ଦିଏ । ଅନ୍ୟ ଦିଗରୁ ଦେଖିଲେ 'ଅଗ୍ରଣୀ'ର ସଂପାଦକ ହୃଦାନନ୍ଦ ମଲ୍ଲିକଙ୍କ ପତ୍ର କୃଷ୍ଣଚରଣଙ୍କୁ ପ୍ରେରଣା ଦେଇଛି । ୧୯୫୩ ମସିହାରେ 'ଅଗ୍ରଣୀ'ର ୫ମ ଓ ୬ଷ୍ଠ ମିଳିତ ସଂଖ୍ୟା ପ୍ରକାଶ କରି ଶ୍ରୀଯୁକ୍ତ ମଲ୍ଲିକ ସେତେବେଳେ ତାଙ୍କ ସହଯୋଗୀ, ପରାମର୍ଶଦାତା କୃଷ୍ଣଚରଣଙ୍କୁ ପତ୍ରଟିଏ ଲେଖି, ପତ୍ରିକା ପ୍ରକାଶନରେ ଅନିୟମିତତା

ପାଇଁ କ୍ଷୋଭ ପ୍ରକାଶ କରିଥିଲେ । ପାଠକଗୋଷ୍ଠୀଙ୍କ ପ୍ରିୟଭାଜନ ହେବାପାଇଁ ପତ୍ରିକାର ନିୟମିତତା ଅପରିହାର୍ଯ୍ୟ ବୋଲି ଅଭିମତ ପୋଷଣ କରିଥିଲେ । ଅନ୍ୟ ଅନୁଭୂତିରୁ ଅର୍ଜି ଥିବା ଶିକ୍ଷା ଉତ୍ତର ଜୀବନରେ ଅକ୍ଷରେ ଅକ୍ଷରେ ପାଳିଛନ୍ତି କୃଷ୍ଣଚରଣ । ସେଥିପାଇଁ ସ୍ୱସଂପାଦିତ 'ଓଡ଼ିଆ ଗବେଷଣା ପରିଷଦ'ର ମୁଖପତ୍ର 'ଏଷଣା' ର ୨୮ବର୍ଷ କାଳାବଧି ମଧ୍ୟରେ ଥରେ ମାତ୍ର ଅନିୟମିତ ପ୍ରକାଶ ହେବାକୁ ସେ ଦେଇନାହାନ୍ତି ।

ସାହିତ୍ୟ-ସର୍ଜନ ସାମର୍ଥ୍ୟ ତାଙ୍କ ଲେଖକୀୟ ଜୀବନରେ ସିଦ୍ଧି ଆଣିଛି । ଶିଷ୍ଟ ସହୃଦୟଙ୍କୁ କେବଳ ନୁହେଁ, ତୀକ୍ଷ୍ଣ ଧୀସଂପନ୍ନ ବିଶିଷ୍ଟମାନଙ୍କୁ କୃଷ୍ଣଚରଣ ଚମତ୍କୃତ କରିପାରନ୍ତି । ଏହାର ବହୁ ଦୃଷ୍ଟାନ୍ତ ମଧ୍ୟରୁ ନିମ୍ନ ଦୃଷ୍ଟାନ୍ତଟି ବିଚାର୍ଯ୍ୟ । 'ମିଷ୍ଟର ଉଡ୍‌ହାଉସ୍‌ଙ୍କ ଓଡ଼ିଶା ଆବିଷ୍କାର' ରମ୍ୟ ପ୍ରବନ୍ଧର କାଳ୍ପନିକତା ଡକ୍ଟର ମାୟାଧର ମାନସିଂହଙ୍କୁ ସତ୍ୟ ଘଟଣାର ପ୍ରତ୍ୟୟ ଦେଇଛି । ମିଷ୍ଟର ଉଡ୍‌ହାଉସ୍‌ଙ୍କ କଳ୍ପିତ ପତ୍ରକୁ ଐତିହାସିକ ଦଲିଲ ଭାବରେ ବ୍ୟବହାର କରିବାକୁ ସେ ଡକ୍ଟର ବେହେରାଙ୍କ ପାଖରେ ପ୍ରସ୍ତାବ ବାଢ଼ିଛନ୍ତି । (ପତ୍ର ସଂଖ୍ୟା - ୪୪ ) ଏହା ଡକ୍ଟର ବେହେରାଙ୍କ କାଉଁରୀ କଲମର କରାମତି । ଫିକ୍ସନ୍‌କୁ ଫ୍ୟାକ୍ଟ୍ କୋଟୀ ପ୍ରଦାନ କରିବା କମ୍ କଥା ନୁହେଁ !

ସାହିତ୍ୟ ଯେ ସଂପ୍ରୀତିର ନିର୍ଝର ବୁହାଇ ପାରେ, ସେହି ଦୃଷ୍ଟାନ୍ତ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ(ପତ୍ର ସଂଖ୍ୟା - ୧୨୪) ଆତିଥେୟତାର ଦୃଷ୍ଟାନ୍ତମୂଳକ ପତ୍ର ଅତିଥି କୃଷ୍ଣଚରଣଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ବନ୍ଦନାରେ ମୁଖରିତ ।

'ସାଧନାର ହୋମଶିଖା ତଳୁ ତମେ ଫୁଟି
ସମଗ୍ର ଏ ଉତ୍କଳରେ ଉଠିବ ଚହଟି ।'

ଏହି ପତ୍ରାବଳୀ ଅନୁଶୀଳନ କଲେ ଯେଉଁ ବିଶେଷ ଦିଗ ପ୍ରତି ଦୃଷ୍ଟି ଚାଲିଯାଏ ତାହା ହେଲା, ସାଧାରଣ ପାଠକଙ୍କ ସମାଲୋଚକ ଭାବରେ ପ୍ରତିଷ୍ଠା । ଅନୁବନ୍ଧିତ ହୋଇ ଅନୁକୂଳ ମତ ପ୍ରଦାନ ଯେଉଁ ଯୁଗର ଆଭିମୁଖ୍ୟ, ପରସ୍ପର ଟେକାଟେକି କରି କହିବା ଯେଉଁଠି ସାହିତ୍ୟ ସମାଲୋଚନା, ସେଠି ଅପରିଚିତ ବା ଅଳ୍ପ-ପରିଚିତ ପାଠକର ବକ୍ତବ୍ୟ ସାହିତ୍ୟ-ସମ୍ଭୋଗୀ ସହୃଦୟର ସୁସ୍ଥ ସମାଲୋଚନା । ତହିଁରେ ନଥାଏ ମତଲବ, ନଥାଏ ଅସୂୟା ; ଥାଏ ଅକୁତୋଭୟ ନିରାଭରଣଯୁକ୍ତ ନିରୁତା ଅନୁଭବସିକ୍ତ ଅଭିମତ । ସେହିଭଳି ଅନେକ ପତ୍ର ଏଥିରେ ସଂଯୁକ୍ତ ।

ଦୁଇଟି ପତ୍ର ସଂପର୍କରେ ଉଲ୍ଲେଖ ନକଲେ ଆଲୋଚନା ଅପୂର୍ଣ୍ଣ ରହିଯିବ । ପ୍ରଥମପତ୍ର, ଜଣେ ଅଜ୍ଞାତ ଛାତ୍ରର । ସମକାଳୀନ ସିଲାବସ୍ ଓ ଶିକ୍ଷକଶିକ୍ଷିକାଙ୍କ ଦୁରବସ୍ଥା ତାହାର ଭାବବସ୍ତୁ । ସେ ଛାତ୍ରଙ୍କ ବକ୍ତବ୍ୟ- 'ସାର୍, ମୋ ନାମ ପ୍ରକାଶ କରିବେ ନି, ସେପରି କଲେ ଏଠା ସାର୍‌ମାନେ ମୋତେ ସ୍ମାସ୍ କରିଦେବେ' ଧର୍ମୀ । ଅପରିଚିତ ଛାତ୍ରର ଡକ୍ଟର ବେହେରାଙ୍କ ପ୍ରତି ଆସ୍ଥା ଏଠାରେ ପ୍ରଣିଧାନଯୋଗ୍ୟ । ଦ୍ୱିତୀୟ ପତ୍ର, ବହୁ ଛାତ୍ର

ଆପଣାର ପାରିବାରିକ ସମସ୍ୟାର ସମାଧାନ ପାଇଁ ଡକ୍ଟର ବେହେରାଙ୍କଠାରୁ ବ୍ୟବସ୍ଥାପତ୍ର ଲୋଡନ୍ତି । ଆପଣାର ପୁତ୍ର ପରିଜନ ପରି ସେମାନଙ୍କୁ ଆଶ୍ୱାସନା ଓ ବରାଭୟମୁଦ୍ରାଯୁକ୍ତ ସହାୟତା ମିଳିଥାଏ ବୋଲିବା ବାହୁଲ୍ୟ ମାତ୍ର । ଏହିଭଳି ପତ୍ରରୁ ଡକ୍ଟର ବେହେରାଙ୍କ ବିସ୍ତୃତ ଦୃଷ୍ଟିକୋଣ, ଲୋକସଂପର୍କ ବ୍ୟାପକତାର ପ୍ରମାଣ ମିଳେ ।

ସମାଜର ବିପୁଳତା ସମକ୍ଷରେ ବ୍ୟକ୍ତିଟିର ସ୍ଥିତି ସାମାନ୍ୟ ଧୂଳିକଣାଟିଏ ଭଳି । ଅସଂଖ୍ୟ ସମଧର୍ମା ସାମାଜିକ ସମବାୟରେ ଯେଉଁ ଧୂଳିପଟଳ ସୃଷ୍ଟି ହୁଏ, ତାହା ହୁଏ ଜଳଦବାହୀ, ସମକାଳୀନ ସମୟ-ସୂର୍ଯ୍ୟର ଆଲୋକ ରଶ୍ମି ପ୍ରତିସରିତ ହୋଇ ତହିଁରେ ଇନ୍ଦ୍ରଧନୁର ବର୍ଣ୍ଣବିଭା ଉକୁଟେ । ଜାତୀୟ ଜୀବନର ଚକ୍ରବାଳ ସପ୍ତରଙ୍ଗୀ ବର୍ଣ୍ଣବିଭାରେ ବିମଣ୍ଡିତ ହୁଏ । ଧୂଳି ଧ୍ରୁପଦୀ ଗାଏ, ବ୍ୟକ୍ତି ଅପବର୍ଗ ପାଏ ।

ଏଠାରେ ଉପସ୍ଥାପିତ ପତ୍ରାବଳୀ, ସେହିଭଳି ଜଳଦବାହୀ ଧୂଳିପଟଳ ସୃଷ୍ଟିକରିବାକୁ ସମର୍ଥ । ତେଣୁ ସମକାଳୀନ ସମାଜର ସାଂସ୍କୃତିକ ପଟ୍ଟଚିତ୍ର ଓ ଚରିତକାରଙ୍କ ମନର ମାନଚିତ୍ରର ଅଧ୍ୟୟନର ଅଭୀପ୍ସା ପୂର୍ଣ୍ଣ କରିବ ବୋଲି ଆଶା ।

**ସୁଧୀରଚନ୍ଦ୍ର ବେହୁରା**
ପତ୍ରାବଳୀ-ସଂପାଦକ



॥ ୧ ॥

କଲିକତା
ତା ୨୯/୯/୪୭

ସ୍ନେହର କୃଷ୍ଣ,

ତୁମର ଓ ରମାକାନ୍ତର ଚିଠି ପାଇଛି । ରମାକାନ୍ତକୁ ମୋର ସ୍ନେହ ଜଣାଇବ ଓ କହିବ ସେ ନିଜର ଉଦ୍ୟମ କରିଯାଉ, ଫଳ ଭଗବାନଙ୍କ ହାତରେ । ତା'ର ଶିକ୍ଷା ସମ୍ବନ୍ଧରେ ଏପରି ନୈରାଶ୍ୟ ଆସିଯାଇଛି କାହିଁକି ? ପରାଧୀନ ଦେଶରେ ଶିକ୍ଷାର ଯେତିକି ଆବଶ୍ୟକତା ଥିଲା, ସ୍ୱାଧୀନ ଦେଶରେ ତାହାର ଆବଶ୍ୟକତା ବଢିଯାଇଛି । ସମାଜର ସବୁବେଳେ ଯୋଗ୍ୟ ବ୍ୟକ୍ତିଙ୍କର ଆବଶ୍ୟକତା ରହିଛି । ଯୋଗ୍ୟତା, ଯେକୌଣସି ଦିଗରେ ହେଉନା କାହିଁକି ହାସଲ କର । ଏହାହିଁ ତୁମମାନଙ୍କର ଏକମାତ୍ର ଚିନ୍ତା ହବା ଆବଶ୍ୟକ ।

ତୁମର ଲେଖା ଆଲୁଅରେ ପ୍ରକାଶିତ ହୋଇପାରେ ଓ ନହୋଇ ପାରେ । ଏଣୁ ତୁମେ ପ୍ରକାଶ ପାଇଁ ଅପେକ୍ଷା ନକରି ଲେଖାରେ ଲାଗ । ମାତ୍ର ଲେଖାପାଇଁ ପଢ଼ା ଆବଶ୍ୟକ । ତୁମେ ଯେଉଁ ବିଷୟ ଆଲୋଚନା କରିବାକୁ ଚାହୁଁଛ, ମୁଁ ଘରକୁ ଗଲେ ଆସିବ ଓ ମୋତେ ଦେଖା କରିବ । ମୋର ଯିବା ଡେରିଅଛି । ଇତି ।

ତୁମର
କରୁଣାକର ଦାସ
(ବାଲେଶ୍ୱରର ଆଇନ୍‌ଜୀବୀ)

॥ ୨ ॥

ଗୋପବନ୍ଧୁ ସେବାସଦନ
୧୫.୨.୪୯

ଜୟ ଅହିଂସା

ଶ୍ରଦ୍ଧେୟ କୃଷ୍ଣଚରଣ,

ତମେ ପରିଚିତ କି ଅପରିଚିତ ତମ ଲେଖା ମତେ ସେ ଅବସ୍ଥାରୁ ମୁକ୍ତ କରିଛି । ମୋର ପଢ଼ିବା ଅଭ୍ୟାସ ବହୁତ କମ୍ । ତଥା ଚ ବେଳେବେଳେ କିଛି ଦେଖୁ ଦେଖୁ ସେଥିରେ ସଂତୋଷ ଆସିଯାଏ । ତମର 'ଉତ୍କଳ କେଶରୀ'ର ସର୍ବୋଦୟ ସଂଖ୍ୟାରେ ଗାନ୍ଧୀଜୀଙ୍କର ପ୍ରସଙ୍ଗର ଲେଖାଟି ଦେଖିଲି । ସେ ଲେଖା ମୋ ଉପରେ ଏଭଳି ପ୍ରଭାବ ପକାଇଲା ଯେ ତମ ସଂଗେ ଶୀଘ୍ର ଦେଖା ଓ ଆଳାପର ବାସନା ମନକୁ ଆସିଗଲା । ଆନ୍ତରିକ ସ୍ନେହ ଜାଣିବ ଏବଂ ତମର ବନ୍ଧୁମାନଙ୍କୁ ମଧ୍ୟ ସ୍ନେହ ଜଣାଇବ ।

ତମର
କୃପାସିନ୍ଧୁ ହୋତା

॥୩ ॥

ରହଣି, ଭୁବନେଶ୍ୱର
୬.୪.୫୩।

ଜଗନ୍ନାଥ

ଆୟୁଷ୍ମତସ୍ତୁ,

ଆପଣଙ୍କ ଚିଠି ପାଇଲି । ଖୁସି ଲାଗିଲା । ସମସ୍ତ ରାଜନୀତି ଭିତରେ ମଧ ପାରୁ ପର୍ଯ୍ୟନ୍ତ ଲେଖୁଛି । ଗଲା ଫେବ୍ରୁଆରୀ ୨୦ଠାରୁ ମୋ 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ-୨ୟ ଭାଗ' ବାହାରି ସାରିଲାଣି । ବୋଧହୁଏ ବିଜ୍ଞାପନ ପ୍ରଭୃତି କେହି ଦେଇ ନାହାନ୍ତି । କିଏ ବା ଦବ ? ମୋ ପୁସ୍ତକର ପ୍ରକାଶକ ଆଉ କେହି ମିଳିଲେ ନାଇ । 'ନବ ଭାରତ ଗ୍ରନ୍ଥାଳୟ' ନବଭାରତ ପ୍ରେସ୍, କଟକ-୨ରେ ମିଳିବ । ପୁସ୍ତକଟି ବଡ ହୋଇ ଯାଇଛି, ୫୦୦ ପୃଷ୍ଠା । ଆଶା କରେ ଆପଣ 'ପ୍ରେସ୍'ରୁ ଆଉସବୁ ଖବର ନେବେ ।

ଶୁଭାକାଂକ୍ଷୀ
ନୀଳକଣ୍ଠ ଦାସ

॥ ୪॥

AGRANI
An Illustrated Oriya Monthly,
4a, Croach Lane, Calcutta

11.8.53

ପ୍ରିୟ କୃଷ୍ଣ ବାବୁ,

ବହୁଦିନ ପରେ ଚିଠି ପାଇ ବିସ୍ମିତ ହେବେ । ଏହା ମଧରେ ସବୁ ଝଡ ବହିଯାଇଛି । ଭଗ୍ନ ହୃଦୟରେ ଦିନାତିପାତ, କର୍ତ୍ତବ୍ୟକୁ ସମ୍ମୁଖରେ ରଖି କେତେଦିନ ଚଳିଯାଉ । ଖୁବ୍ ବିଳମ୍ବରେ ଗତ ମଇ ୨୮ ତାରିଖରେ ଆସି ଅଗ୍ରଣୀର ଯାହା ଯେମିତି ବ୍ୟବସ୍ଥା କଲି । ଏ ମାସ 'ଅଗ୍ରଣୀ' ବିଧିବଦ୍ଧ ଭାବରେ ପ୍ରକାଶ ପାଇବ । ଆପଣ ଯେପରି ଭାବରେ କରୁଛନ୍ତି ସମୟ ଦେଉଛନ୍ତି, ମୁଁ ତାର ପ୍ରତିବାଦ କ'ଣ ଦେବି? ଋଣୀ । ଭବିଷ୍ୟତ କଣ ମୁଁ ଜାଣେନା । ଯାହା ହେବାର ଥିବ ତାହାହିଁ ହେବ । ଏ ମାସ ପାଇଁ ଲେଖା (ସୃଷ୍ଟିଛଡା) ପଠାଇ ଦେବେ । ଆଲୋଚନା ବିଷୟରେ ବ୍ୟବସ୍ଥା କରିବେ । ରବି ବାବୁଙ୍କୁ କହି Wood Cutର ବ୍ୟବସ୍ଥା କରିବେ । ଚିତ୍ର ପ୍ରଭୃତି ପଠାଇବାର ବ୍ୟବସ୍ଥା କରିବେ । ଏ ସଂଖ୍ୟା ପାଇଁ ଉପଯୁକ୍ତ ନିର୍ଦ୍ଦେଶ ପଠାଇବେ । କୁଂଜବାବୁଙ୍କ ବହି ଛପାଇବା କଥା ଲେଖିଥିଲେ-ଆସନ୍ତା ସେପ୍ଟେମ୍ବର ମାସରେ

ଏହା ଛପାଇ ଦିଆଯାଇ ପାରିବ-କାରଣ ଏ ମାସ ଟାଇପ୍ ଆସିଯିବ । ବହୁକଷ୍ଟରେ ନାନା ବାଧାବିଘ୍ନକୁ ଏଡି 'ଅଗ୍ରଣୀ'କୁ ଗଡି କରେଇବାକୁ ପଡୁଛି । ଚିଠି ଦେବେ । ଇତି ।

ସ୍ନେହର

ହୃଦାନନ୍ଦ ମଲ୍ଲିକ

॥୫ ॥

**AGRANI PRESS**

VARIETY PRINTER & PUBLISHERS

SPECIALIST IN ORIYA PRINTING

4A, CROUCH LANE,CALCUTTA-12

Date: 20.11.53

ପ୍ରିୟ କୃଷ୍ଣବାବୁ,

ନମସ୍କାର ନେବେ । ଚିଠି ପାଇଥିଲି- 'ଅଗ୍ରଣୀ'ର ଷଷ୍ଠ ସଂଖ୍ୟା ପ୍ରକାଶର ସୁବନ୍ଦୋବସ୍ତ କରି ପାରିଲି ନାହିଁ । ଏକା ସଙ୍ଗରେ ପ୍ରକାଶ ପାଇବ । ସେଥିପାଇଁ ଗଭୀର ମନୋବେଦନାରେ ଦିନ କଟାଇବାକୁ ପଡ଼ିଲା । ପରିସ୍ଥିତି ଚାପରେ କେବଳ ମାତ୍ର ଭଗବାନଙ୍କୁ ଭରସା କରି ଗଡିକରିବା ଛଡା ଆଉ କିଛି ନାହିଁ । ଆଶା କରାଯାଉଛି ଏହା ପରଠାରୁ ଆଉ ଏପରି ଦୁରବସ୍ଥାର ସମ୍ମୁଖୀନ ହେବାକୁ ନାହିଁ । ଭଗବାନ ଜାଣନ୍ତି ମୋର ଉଦ୍ୟମ କେତେଦୂର ଆଗୋଉଛି ।

କଳାହାଣ୍ଡିରୁ କବିତା ପାଇଁ order ଆସିଥିଲା । ପତ୍ରିକା ନଥିବାରୁ ପଠାଇ ପାରିଲି ନାହିଁ । ଆପଣଙ୍କ ନିକଟକୁ କବିତା ସଂପର୍କରେ ମତାମତ ଆସିଥିବ । ସମ୍ବାଦ ପ୍ରଜାତନ୍ତ୍ରରେ ବାହାରିଛି । ବିଜ୍ଞାପନ ଦେବାର ବ୍ୟବସ୍ଥା କରିଛି । ଏହି ରବିବାର ପ୍ରକାଶ ପାଇବ । ଆଶା ନରେନ୍ଦ୍ର ବାବୁ ଓ ଦୁର୍ଗାଚରଣ ବାବୁ କୁଶଳରେ ଅଛନ୍ତି । ଚିଠିଦେବେ । ପରବର୍ତ୍ତୀ 'କବିତା'ର ସଂକଳନ ପାଇ ବ୍ୟବସ୍ଥା କରିବେ । ଉପର ନାମ ଉପରେ(କବିତା) china ଅକ୍ଷର ପାଇଁ ଅନେକେ ସମାଲୋଚନା କରୁଛନ୍ତି । ଓଡ଼ିଆ ଅକ୍ଷରର originality ରଖି artistic କଲେ ଭଲ ହେବ । ଉପର ହେଡ଼ିଂଟା ପରବର୍ତ୍ତୀ ସଂକଳନକୁ ବଦଳେଇବା ଆବଶ୍ୟକ ନାହିଁ । ଆପଣମାନେ ଗଭୀର ଭାବରେ ବିଚାର କରିବେ । ଇତି।

ସ୍ନେହୀ

ହୃଦାନନ୍ଦ ମଲ୍ଲିକ

॥ ୬ ॥

ବ୍ରହ୍ମପୁର
୩୧.୭.୫୪

ପ୍ରିୟ କୃଷ୍ଣଚରଣ ବାବୁ,

ଆପଣଙ୍କ ଚିଠି ପାଇଚି । କିନ୍ତୁ ଘରକାମର ବ୍ୟସ୍ତତା ଓ ଅସୁସ୍ଥତା ଭିତରେ ଉତ୍ତର ଦେଇ ପାରିନି । ପ୍ର.ଲେ.ସମିତିର 'ପ୍ରଭାତୀ' ମୁଖପତ୍ର ରୂପେ ପ୍ରକାଶ ପାଉଚି ବୋଲି ଭୁଲରେ ଘୋଷିତ ହେଇଚି । ଲେଖକମାନଙ୍କର ଅଧିବେଶନ ନିଶ୍ଚୟ ହେବ । ଦଶହରା ଅବକାଶରେ । ମନମୋହନ ଆପଣଙ୍କୁ କହିଥିବେ । ଜୁନ୍‌ରେ ହେଇପାରିଲାନି । ଏଠି ନାନା ରକମର ମେଳା, ରାଜନୈତିକ ସମ୍ମିଳନୀ ପ୍ରାୟ ମାସକ ଯାକ ଲାଗି ରହିଲା ବୋଲି । ଯେଉଁ କେତୋଟି ଆମେ ଏଠି Activly ଲାଗିପଡ଼ି ଥିଲୁ ସେଥିରୁ କେତେଜଣ ବର୍ତ୍ତମାନ, ନିଜର ବ୍ୟକ୍ତିଗତ କାମରେ ବିଶେଷ ବ୍ୟସ୍ତ ରହିଛନ୍ତି । ସେହେତୁ ଟିକିଏ ଅସୁବିଧା ହେଉଛି । ତଥାପି ଅଗଷ୍ଟ ଦ୍ୱିତୀୟ ସପ୍ତାହ ଭିତରେ ଆମେ ରିସେପସନ୍ କମିଟି ଗଢୁଛୁ । 'ଭାରତର ଛୋଟ ଗଳ୍ପ' ଆପଣ ଅଗ୍ରଣୀ ପାଇଁ ପାଇବେ ନାରାୟଣ ପାଟଣାରୁ । ଦାମ ଦେବା ଦରକାର ନାହିଁ । ଆପଣଙ୍କର ବକ୍ତୃତା ପାଇଚି । ଆଗରୁ ମ୍ୟାଟ୍ରର ରହିଯିବାରୁ ଯାଇପାରିନି । ପ୍ରଗତିଶୀଳ ସାହିତ୍ୟ ସମ୍ବନ୍ଧେ ଆଲୋଚନା କରିବା ପାଇଁ ମୁଁ ଅଷ୍ଟମ ଓ ନବମ ସଂଖ୍ୟା 'ପ୍ରଭାତୀ'ରେ ଅନୁରୋଧ ଜଣେଇଚି । ଆପଣମାନେ କିଏ ନଲେଖିଲେ କ'ଣ କରିବି ? ବ୍ୟକ୍ତିଗତ ଭାବରେ କେତେ ଜଣଙ୍କୁ ଇମିତି ଅନୁରୋଧ କରିବି ? ଆପଣ ଆଉ ନରେନ୍ଦ୍ରବାବୁ ଆରମ୍ଭ କଲେ ହୁଅନ୍ତାନି ? ଏକାହାତିଆ କେତେ କରିବି ? ଏବେ ପ୍ରକାଶନରେ କ୍ଷତି ସହୁଚୁ । ତାଉପରେ ଅନୁବାଦଠାରୁ ଆରମ୍ଭକରି ପ୍ରଶ୍ନୋତ୍ତରୀ ପର୍ଯ୍ୟନ୍ତ ନିଜେ କରିବାକୁ ପଡୁଛି । କେବଳ 'ପ୍ରଭାତୀ' ବେଉସା ହୋଇଥିଲେ ସେ ଅଲଗା କଥା ହୋଇଥାନ୍ତା, ମୋର ବ୍ୟବସାୟ ପାଇଁ ଫେରେ ସମୟ ଦେବାକୁ ପଡୁଛି । ମନମୋହନକୁ ବହୁତ କହିଚି ଲେଖିବାପାଇଁ । ନରେନ୍ଦ୍ରବାବୁଙ୍କୁ କହିବେ ତାଙ୍କର କୃତିତ୍ୱରେ ମୁଁ ଗୌରବାନ୍ୱିତ ହେଇଚି । ରକ୍ଷଣଶୀଳ ସ୍କୁଲ୍‌ର 'ଝଙ୍କାର' ଥିଲା । ବର୍ତ୍ତମାନ second front ହେଲାଣି 'ଉତ୍କଳ ସାହିତ୍ୟ' । ସେମାନେ ଆସ୍ତେ ଆସ୍ତେ ଲଢ଼ି କରି ହଟହଟା ହେବେ । ଆମେ ସଂଘବଦ୍ଧ ହେବା ବର୍ତ୍ତମାନ ନିତାନ୍ତ ପ୍ରୟୋଜନ । ଚିଠି ଓ ସାହିତ୍ୟ ଆଲୋଚନା ପଠାଇବେ ।

ଆପଣଙ୍କର ବ୍ରହ୍ମାନନ୍ଦ ପଣ୍ଡା

॥ ୭ ॥

ସୁନହଟ, ବାଲେଶ୍ୱର
୧.୬.୫୬

ଶାନ୍ତି ଦୀର୍ଘଜୀବୀ ହେଉ !

ପ୍ରିୟ କୃଷ୍ଣବାବୁ,

ନମସ୍କାର । ଆଜି ଆପଣଙ୍କ ଉତ୍ତର ପାଇ ସମସ୍ତ ଅବଗତ ହେଲି । ଆମର ଏହି ଉଦ୍ୟମକୁ ଆପଣ ସମର୍ଥନ ଜଣାଇଥିବାରୁ ଆନ୍ତରିକ ଧନ୍ୟବାଦ । ଆର୍ଥିକ ଦୁରବସ୍ଥା ଯେ ଆପଣଙ୍କୁ ଆମ ସହିତ ସହଯୋଗ କରିବାରୁ ବିଚ୍ୟୁତ କରିବ, ଏହା ହୋଇ ନପାରେ । ଆପଣ ଆମ ସହିତ ସହଯୋଗ ନ କରିବେ ତ ଆଉ କରିବ କିଏ ? ଲେଖକହିଁ ଲେଖକ ପ୍ରତି ସଂବେଦନଶୀଳ ହେବା ସ୍ୱାଭାବିକ, ଆଉ କଣ ଟାଟା ବିରଳାର ବଂଶଧର ଆସି ଆମକୁ ସହାନୁଭୂତି ଦେଖାଇବେ ନା ସାହାଯ୍ୟ କରିବେ ! ଆପଣଙ୍କ ଭଳି ଆଜି ଅନ୍ୟାନ୍ୟ ବହୁ ଲେଖକଙ୍କର ଅବସ୍ଥା ମଧ୍ୟ ସେହିପରି । ଏକଥାକୁ ବିଚାର କରି ଆମେ ୧୫ଟଙ୍କା ରଖିଛୁଁ । କେବଳ ଏତିକି ଟଙ୍କାରେ ସମସ୍ତ କାର୍ଯ୍ୟ ହୋଇ ପାରିବ ନାହିଁ । ବହୁତ ବେଶୀ ଲାଗିବ ଯାହାକୁ କି ଆମେ ଅନ୍ୟ ଉପାୟରେ ପୂରଣ କରିବୁଁ । ସେ ଯାହା ହେଉ ଆପଣ ଏକାଥରେ ଟଙ୍କା ଦେଇ ନପାରିଲେ ଜୁନ୍, ଜୁଲାଇ ଦୁଇମାସ ମଧ୍ୟରେ ୨/୩ଟି ପର୍ଯ୍ୟାୟରେ ଦେବାକୁ ଚେଷ୍ଟା କରିବେ । ଯେପରି ହେଉ ଆମ ସହିତ ଆପଣ ସହଯୋଗ କରନ୍ତୁ । ଶୀଘ୍ର ୪ଟି କବିତା ସହ ଆତ୍ମପରିଚିତି ପଠାଇବେ । କିଛିଦିନ ତଳେ 'ସମାବେଶ'ରେ 'ଏଇ ଝିଅଟି କି ଜାଣିଚ କି ?' ଶୀର୍ଷକ ଯେଉଁ କବିତାଟି ପ୍ରକାଶ ପାଇଥିଲା ତାହା ଆପଣଙ୍କର ଏକ ସାର୍ଥକ ସୃଷ୍ଟି ବୋଲି ଆମର ମତ । ଏହି ସଙ୍କଳନରେ ତାହା ରଖାଗଲେ ଆପଣଙ୍କର କିଛି ଆପତ୍ତି ଅଛି କି ? ଗୋଟିଏ କଥା, ଆପଣ ନିଶ୍ଚୟ ଦୁର୍ଗାଚରଣ ପରିଡା, ବିଦ୍ୟୁତ୍‌ପ୍ରଭା ଦେବୀ ଓ ଶିବରାମ କୁମାର ମହାନ୍ତିଙ୍କ ଠିକଣା ଜାଣିଥିବେ । ଯଦି ଅନୁଗ୍ରହ କରି ଜଣାଇ ପାରନ୍ତି ତାହାହେଲେ ବିଶେଷ ଉପକୃତ ହେବୁଁ । 'ସୀମାନ୍ତ' ପାଇ ସାରିଥିବେ । ପରେ ଅନ୍ୟାନ୍ୟ । କୁଶଳ ସ୍ୱାସ୍ଥ୍ୟର କାମନା କରି ପତ୍ରର ପ୍ରତୀକ୍ଷାରେ ରହିଲୁଁ ।

ଆପଣଙ୍କର
ଶ୍ରୀ ବ୍ରଜନାଥ ରଥ

॥ ୮ ॥

କଉଁଝରଗଡ
୨୫.୪.୫୮

ସ୍ନେହର କୃଷ୍ଣବାବୁ,

ମୋର ଶ୍ରଦ୍ଧା ଓ ଶୁଭେଚ୍ଛା ନେବେ । ସମସ୍ତେ ଯେଉଁ ନିଶ୍ଚିତ ପଦ ଓ ସ୍ଥାନ ପାଇଁ ଏକାନ୍ତ ଲାଳାୟିତ, ଆପଣ ତାହା ହାତମୁଠାରେ ପାଇ, ଏଡି ଦେଲେ । ପ୍ରକୃତରେ

ଆପଣ ଆପଣଙ୍କ ଗୁରୁ ଗଗନବାବୁଙ୍କ ପରି ଏକ ଆଦର୍ଶ ଦେଖାଇଲେ। ଭଦ୍ରକରେ ଅନର୍ସ ଶ୍ରେଣୀ ଖୋଲିବା ଦ୍ୱାରା, ଆପଣଙ୍କୁ ବି ଆହୁରି ଏକ ସୁଯୋଗ ମିଳିବ। ଉଚ୍ଚ ଆଲୋଚନା ସମାଲୋଚନା ଓ ଅନୁକୂଳ ବିଦଗ୍ଧ ବାତାବରଣରେ ମିଳି ଯିବ। ଏଠି କଲେଜର ଅବସ୍ଥା ବେଶ୍ ଭଲ। ମୋତେ ଅତଡେ ଅଖଣ୍ଡ ଅବସର ମିଳୁଛି ଓ ପରିଚାଳନାରେ କୌଣସି ବ୍ୟକ୍ତିବିଶେଷର ଖିଆଲ୍ ଆଦୌ ନାହିଁ। ପ୍ରାଥମିକ ଅବସ୍ଥାରେ ସଂପୂର୍ଣ୍ଣ ଯୋଜନା ଅନୁସାରେ କଲେଜକୁ ପୂର୍ଣ୍ଣାଙ୍ଗ କରିବାକୁ ଚେଷ୍ଟା ହେଉଛି। କଲେଜ ପାଖରେ ଆମପାଇଁ ସୁନ୍ଦର ଘର ତିଆରି ହେଉଛି।

ଏଇ ଅବସର ଯୋଗୁଁ ମୋ ଥେସିସ୍ କିଛି ଆଗେଇଛି। ଅବଶ୍ୟ କେତେକ ପରିମାଣରେ ବାତାବରଣ ଅଭାବରୁ ଯେମିତି ହେବାର କଥା ହୋଇ ପାରୁନାହିଁ। ମୁଁ ଆର ମାସ ଅଧା ବେଳକୁ ସେଥିଲାଗି ଶାନ୍ତିନିକେତନ ଯାଉଛି। ଆପଣ କ'ଣ ସବୁବେଳେ ଭଦ୍ରକରେ ରହୁଛନ୍ତି। ଏଠାରୁ ଫେରିବା ବାଟରେ ଦେଖା ହୋଇପାରେ। କାହିଁ ଆପଣଙ୍କ କବିତାର ଆୟୋଜନ ତ ଧିମେଇ ଗଲା। ଥେସିସ କେମିତି ହେଉଛି ? ଚିଠି ଲେଖିବାର ଅବଶ୍ୟ କାରଣ ନଥିଲା- ଆପଣଙ୍କ ମାନସିକ ସାହଚର୍ଯ୍ୟ ଲାଗି ଲେଖିଲି। କାରଣ ଏଠି ମୋର ଏଇ ଆତ୍ମକେନ୍ଦ୍ରିକ ଜୀବନରେ ଏମିତି ଆଳାପ ଟିକେ ପ୍ରୟୋଜନ ବୋଲି।

ଆପଣଙ୍କର ନରେନ୍ଦ୍ରନାଥ ମିଶ୍ର

॥ ୯ ॥

ଥୋରିଆ ସାହି, କଟକ

୨.୧.୫୯

ପ୍ରିୟ ବେହେରାଜୀ,

ତମର ୨୯.୧୨.୫୮ର ପତ୍ର ପାଇଁ ଅଶେଷ ଧନ୍ୟବାଦ। ଶିକ୍ଷା ବା ସାହିତ୍ୟ ସଂପର୍କରେ 'ମୂଲ୍ୟବାନ୍' କଥା ଶୁଣେଇବା ପାଇଁ ଓଡ଼ିଶାରେ ଲୋକର ଆଦୌ ଅଭାବ ନାହିଁ। ଯେପରି ଭାବରେ ନିନ୍ଦିତ ଓ କଷାଘାତପୀଡିତ ହୋଇ ଆସିଛି ଏଯାକେ, ମୋର ମନେ ହେଉଛି, ସାହିତ୍ୟିକ ବା ଶିକ୍ଷାବିତ୍ ଭାବରେ ମୁଁ ଏକ ଜୀବନ୍ତ ବୋକାମି ଓ ବ୍ୟର୍ଥତା, ବୋଧହୁଏ। ତେଣୁ ମତେ ଆଉ ଟାଣନି, କୃପା କରି। ଆଶା କରେ ତମର ସଂସ୍କୃତି ସପ୍ତାହ ଖୁବ୍ ସଫଳ ହେବ। ଇତି।

ଶୁଭାନୁଧାୟୀ ମାୟାଧର ମାନସିଂହ

॥ ୧୦॥

ଏଡ଼ତାଳ

୧୭.୧.୫୯

ପ୍ରିୟ କୃଷ୍ଣବାବୁ,

ଉଭୟଙ୍କୁ ନମସ୍କାର। ଗତ ଶନିବାର ଭଦ୍ରକ ଯାଇଥିଲି ଏକ ଜରୁରୀ କାର୍ଯ୍ୟରେ। ଇଚ୍ଛା ଥିଲେ ବି ସମୟାଭାବରୁ ସାକ୍ଷାତ କରିପାରିଲି ନାହିଁ। ପୁଣି କେବେ ଗଲେ ସବୁ କଥା ଆଲୋଚନା କରିବା।

ବୁଲୁବାବୁ ଯା ଭିତରେ ମୋ ପାଖକୁ ମୋର ଚାକିରି ଛାଡିବା କଥା ନେଇ ଏକ ପତ୍ର ଲେଖିଥିଲେ । ମାତ୍ର ସର୍ବୋଦୟ ପାତ୍ର ଉପରେ ଭରସା ରଖି ବାହାରିବାକୁ ପ୍ରବଳ ଆଗ୍ରହ ଥିଲେ ବି ସାହସ ହେଉ ନାହିଁ । ଏକଥା ତାଙ୍କୁ ଜଣାଇ ଦେଇଛି । ଏଥିରେ ମୋ ପ୍ରତି ତାଙ୍କର ଧାରଣ କ'ଣ ହୋଇଥିବ କେଜାଣି ! ଯାହାହେଉ, ଗଲେ ସବୁକଥା ପଢ଼ିବ । ସତେ କୃଷ୍ଣବାବୁ, ଆପଣଙ୍କ କଥା ଭାବିଲେ ମୁଁ ବେଶ୍ ଆଶାନ୍ୱିତ ହୁଏ । ଏ ବ୍ୟକ୍ତିଗତ ଧାଁଦଉଡ ଭିତରେ ଆପଣ ଯେ ସର୍ବୋଦୟ ବିଚାର ପ୍ରତି ଏତେ ଆକୃଷ୍ଟ ଏବଂ କିଛି କରିବା ପାଇଁ ମନ ବଳାଉଛନ୍ତି ଏହା ଖୁବ୍ ଆନନ୍ଦର କଥା । ମୋର ବନ୍ଧୁ ଭାବରେ ଆପଣଙ୍କୁ ଏକ ଅନୁରୋଧ ଆପଣ ଗ୍ରାମସେବକକୁ ପ୍ରତି ମାସ କିଛି ଲେଖା ପଠାନ୍ତୁ । ଏବଂ ଛାତ୍ର ମହଲରେ ଗ୍ରା.ପ୍ର.ର ପ୍ରଚାର ପାଇଁ ଚେଷ୍ଟା କରନ୍ତୁ । ମୋର ବିଶ୍ବାସ ଏହା ଫଳରେ ପିଲା ପ୍ରଭାବିତ ହେବେ । ମୋର ଏ ନମ୍ର ନିବେଦନ ବିଚାର କରନ୍ତୁ । ଇତି

ସ୍ନେହର ଗଗନବିହାରୀ ମହାପାତ୍ର

॥ ୧୧ ॥

ସମ୍ବଲପୁର

୨୮.୦୭.୫୯

ପ୍ରିୟ କୃଷ୍ଣବାବୁ, ନମସ୍ତେ !

ଆପଣଙ୍କର ଚିଠିଟି ପାଇଛି । କାର୍ଯ୍ୟବ୍ୟସ୍ତ ଥିବା ଫଳରୁ ଉତ୍ତର ଦେବାରେ ଟିକିଏ ବିଳମ୍ବ ହୋଇଗଲା । ମେହେର ପ୍ରଦୀପର କବିତା ବିଶେଷାଙ୍କଟି ଯେ ଆପଣଙ୍କର ପସନ୍ଦ ହୋଇଛି ଜାଣି ବିଶେଷ ଖୁସି ହେଲି । ଖୁବ୍ ଅଳ୍ପ ସମୟ ମଧ୍ୟରେ କାର୍ଯ୍ୟଟି ହୋଇଥିବାରୁ ଅନେକ ତ୍ରୁଟି ରହିଯାଇଥିବ । ବିନୋଦ ନାୟକଙ୍କ କବିତାଟିଏ ପସନ୍ଦ ହୋଇଥିଲା । କିନ୍ତୁ ବିଚାରକ ମଣ୍ଡଳୀ ସେଥିରେ ଏକମତ ନହେବା ଫଳରେ ସମ୍ପାଦକ ତାକୁ ରଖି ନାହାନ୍ତି । ସମୟ ଥିଲେ ସେ କବିତାର ପୁନର୍ବିଚାର କରାଯାଇ ପାରିଥାନ୍ତା । କିନ୍ତୁ ଦୁଃଖର ବିଷୟ ତାହା ହୋଇ ପାରିଲା ନାହିଁ ସମୟ ଅଭାବରୁ । ଆପଣଙ୍କ ଚିଠି ଖଣ୍ଡି ମୋତେ ଯଥେଷ୍ଟ ପ୍ରେରଣା ଦେଇଛି ଏବଂ ତା ସଂଗେ ସଂଗେ ମୋ ଉପରେ ବିଶ୍ୱାସ ଜନ୍ମାଇଛି । ସେଥିପାଇଁ ଆପଣଙ୍କୁ ମୋର ଅଶେଷ ଧନ୍ୟବାଦ । ଚିନ୍ତାମଣିବାବୁ ଏଠାରୁ ଯାଇ ସାରିଲେଣି- ମେହେର ପ୍ରଦୀପର ଆସନ୍ତା ସଂଖ୍ୟା ପାଇଁ ଖଣ୍ଡିଏ ଲେଖା ପଠାଇବାକୁ ଅନୁରୋଧ । ମେହେର କବିତା ଉପରେ ସମାଲୋଚନାମୂଳକ ପ୍ରବନ୍ଧଟିଏ ହେଲେ ଭଲ ହୁଅନ୍ତା । ତେବେ ଯାହା ହେଉ ଖଣ୍ଡିଏ ଲେଖା ପଠାଇବେ ।

ମୋର ସବୁ ମଙ୍ଗଳ । ଆଶା କରେ ଆପଣ କୁଶଳରେ ଥିବେ ।

ସ୍ନେହର ହଳଧର ପଣ୍ଡା

॥ ୧୨ ॥

ଥୋରିଆ ସାହି, କଟକ-୧
୨୩.୧୧.୫୯

ଶ୍ରଦ୍ଧାସ୍ପଦେଷୁ,

ଆପଣଙ୍କର ସ୍ନେହପୂର୍ଣ୍ଣ ପତ୍ର ଖଣ୍ଡି ଯଥା ସମୟରେ ନହେଲେ ମଧ୍ୟ ଏହି ମାସ ୯ ତାରିଖରେ ପାଇଥିଲି । ତା ପରେ ସମ୍ପ୍ରତି କାର୍ଡଖଣ୍ଡ ମଧ୍ୟ ପାଇଅଛି । ଆଜି ପର୍ଯ୍ୟନ୍ତ ଉତ୍ତର ଦେଇ ପାରି ନଥିବାରୁ ମୁଁ ଅତ୍ୟନ୍ତ ଲଜ୍ଜିତ । ମୁଁ ଗଲା ତିନିବର୍ଷ ହେଲା ଯେଉଁ ଯାଯାବର ବୃତ୍ତି ଗ୍ରହଣ କରିଛ, ସେଥିରେ ମୋ ପକ୍ଷରେ ମାମୁଲି ସାମାଜିକତା ରକ୍ଷା କରିବା କେତେ କଷ୍ଟକର ହୋଇଛି ତାହା ଅନ୍ୟକୁ ବୁଝାଇବା କଠିନ ।

ଏ ମାସର ୧ରୁ ୯ ତାରିଖ ପର୍ଯ୍ୟନ୍ତ ମୁଁ ଢେଙ୍କାନାଳ ଜିଲ୍ଲାର ଗୋଟିଏ ଅଞ୍ଚଳରେ ବୁଲୁଥିଲି । ସେଠାରୁ ଆସି ମୋତେ ପୁଣି ଆଚାର୍ଯ୍ୟ ହରିହର ଦାସଙ୍କୁ ଭେଟିବା ପାଇଁ ସମ୍ବଲପୁର ଜିଲ୍ଲାକୁ ଯବାକୁ ପଡିଲା । ତାପରେ କଟକ-ଭୁବନେଶ୍ୱରରେ ୩/୪ ଦିନ ହେଲା ଅଛି । ଆସନ୍ତା ମାସ ପ୍ରଥମ ସପ୍ତାହ ଓ ଦ୍ୱିତୀୟ ସପ୍ତାହ ମୋତେ ଓଡ଼ିଶା ବାହାରେ କଟାଇବାକୁ ପଡିବ । ତେଣୁ ଭଦ୍ରକ ଯାଇ ଆପଣମାନଙ୍କୁ ଭେଟିବାର ସୁଯୋଗ ଆପଣ ଦେଇଥିଲେ ମଧ୍ୟ ମୁଁ ତାହା ଗ୍ରହଣ କରିପାରୁ ନାହିଁ । ଏଥିପାଇଁ ମୁଁ ଖୁବ୍ ଦୁଃଖିତ । ଆପଣଙ୍କ କଲେଜର ପରୀକ୍ଷା ଆଦି ଶେଷ ହେଲେ ଆସନ୍ତା ବର୍ଷ ଆପଣଙ୍କ ସୁବିଧା ଦେଖି ମୁଁ ଯାଇପାରେ । ଇତି ।

ବିନୀତ
ନବକୃଷ୍ଣ ଚୌଧୁରୀ

॥ ୧୩ ॥

କଟକ
୩୧.୧.୬୦

କଲ୍ୟାଣୀୟେଷୁ,

ମୋର ଟିପାଖାତା, ରାଧାନାଥ ସ୍ମରଣିକା, ଆଉ କଣ ମନେ ପଡୁନାହିଁ, ତୁମେ ଦେବେନ୍ଦ୍ରବାବୁଙ୍କଠାରୁ ଆଣି ନିଜ ପାଖରେ ରଖିଅଛ ବୋଲି ଜାଣିଥିଲି । ତାହା ପାଇବା ପାଇଁ ପ୍ରାୟ ଦୁଇମାସ ତଳେ ଖଣ୍ଡିଏ କାର୍ଡ ତମ ପାଖକୁ ଲେଖିଥିଲି । ତାର ଉତ୍ତର ପାଇଲି ନାହିଁ-ଭାବୁଛି ଚିଠି ତୁମର ହସ୍ତଗତ ହୋଇ ନାହିଁ-ନୋହିଲେ ତୁମେ ନୀରବ ହୋଇ ରହି ନଥାନ୍ତ ।

ମୋର ସେଇ ଟିପାଖାତା ଖଣ୍ଡିକରେ ରାଧାନାଥଙ୍କ କାବ୍ୟ କବିତା ଉପରେ କେତେକ ଉପାଦାନ ସଂଗୃହୀତ ହୋଇଚି-ବର୍ତ୍ତମାନ ତାରି ଦରକାର । ଟିକିଏ କଷ୍ଟ ସ୍ୱୀକାର କରି

ଉପର ଲିଖିତ ଠିକଣାରେ ଡାକରେ ପଠାଇ ଦେଲେ ଉପକୃତ ହେବି । V.P. କରି ଦେଲେ ଖର୍ଚ୍ଚଟା ମୁଁ ଦେଇ ରଖିବି । ଅନ୍ୟଥା ଭାବିବ ନାହିଁ । ଶୀଘ୍ର ପଠାଇ ଦେଲେ ମୋର ଗୋଟାଏ ବଡ ଉପକାର କରି ପାରିବ । ଆଶା, ସପରିବାର ଭଲରେ ଥିବ । ମୁଁ ଭଲ ଅଛି ।

ଶୁଭାନୁଧ୍ୟାୟୀ

ରାଧାମୋହନ ଗଡନାୟକ

॥ ୧୪ ॥

ନୂଆ ରାଜଧାନୀ

୧୯.୦୩.୬୦

ସ୍ନେହର କୃଷ୍ଣବାବୁ,

ମୁଁ ଆପଣଙ୍କ ପତ୍ର ପାଇଛି । କାମ କାର୍ଯ୍ୟର ଭିଡ଼, ଫେରୁ ଫେରୁ ରାତି ୭ କି ୮ ହୁଏ । ମାର୍ଚ୍ଚ ମାସ, ବର୍ଷଯାକର ଅଟକଳ ମଟକଳ ସାରି ଆସନ୍ତା ବର୍ଷ ପାଇଁ ଅଣ୍ଟାଭିଡିବାକୁ ପଡେ । ତେଣୁ ଏମାସରେ କୁଆଡେ ଯାଇହୁଏ ନାହିଁ । କାମ ଚାପରେ ପଡି ଚିଠିପତ୍ର ଉତ୍ତର ଦେବାକୁ ବି ଡେରି ହୋଇଯାଏ । ମାର୍ଚ୍ଚ ଶେଷ ସପ୍ତାହରେ ବି ଭଦ୍ରକ ଯାଇ ପାରିବି ନାହିଁ, କ୍ଷମା କରିବେ ।

ମୋର ନମସ୍କାର ଜାଣିବେ । ମାନ୍ଦ୍ରାଜରେ ଆପଣଙ୍କ ସଙ୍ଗେ ସେଦିନର ବୁଲା ଓ ପୁଣି ମାନ୍ଦ୍ରାଜରୁ ଲେଉଟାଣି ଏକାଠି ରେଲ ବାହୁଡା ମୋର ଭାରି ମନେ ପଡେ । ମାନ୍ଦ୍ରାଜର ସମ୍ମିଳନୀ କାଲି ପରି ଲାଗୁଛି । କେତେ ପଛରେ ରହିଗଲାଣି । ବେଳେ ବେଳେ ଆପଣଙ୍କଠୁଁ ଚିଠି ପାଇଲେ ଖୁସି ହେବି । ସମସ୍ତିଙ୍କୁ ଯଥାବିଧି ।

ଆପଣଙ୍କର ସ୍ନେହାଧୀନ

ଗୋପୀନାଥ ମହାନ୍ତି

॥ ୧୫ ॥

ମାଞ୍ଚେଷ୍ଟର

୨୧.୫.୬୦

ପ୍ରିୟ କୃଷ୍ଣବାବୁ,

ତୁମ ଚିଠି ପାଇଲି । ଓଡ଼ିଶାର ରାଜନୈତିକ ପରିସ୍ଥିତି ଓ ଅନ୍ୟାନ୍ୟ ଖବର ମଝିରେ ମଝିରେ ଜାଣିବାକୁ ଇଚ୍ଛା ହୁଏ । ଆଶା କରେ ଏଣିକି ପ୍ରତି ୩ ବା ୪ ସପ୍ତାହରେ ଥରେ ଚିଠିଟାଏ ଲେଖି ତୁମ ପିଲାମାନଙ୍କ ଖବର, ତୁମର ସାହିତ୍ୟ ଚର୍ଚ୍ଚା ଓ ପ୍ରାଦେଶିକ ରାଜନୈତିକ ଖବର ଜଣେଇବାରେ ତୁମେ କୁଣ୍ଠିତ ହେବନି । ତୁମର defeatist ମନୋବୃତ୍ତି ଦେଖି ମୁଁ ଦୁଃଖିତ ହେଲି । ××× ପ୍ରତ୍ୟେକ ମଣିଷକୁ ସଂଗ୍ରାମ କରିବାକୁ

ପଡିବ । ବିଦେଶ ଆସିବା ଆଶା ଛାଡିଦେଲେ ସୁନ୍ଦର ହବନି । ତୁମେ ଧୈର୍ଯ୍ୟ ରଖି ଚେଷ୍ଟା କରିଲେ ନିଶ୍ଚୟ କୃତକାର୍ଯ୍ୟ ହେବ । ଚାକିରିଟାଏ ପ୍ରଥମେ ଯୋଗାଡ଼ କରିବାକୁ ହେବ । Journalist ହିସାବରେ କୌଣସି ପତ୍ରିକା ବା Organisationରେ ଚାକିରିଟା ଦେଖିବାକୁ ପଡିବ । ତା' ପରେ ୧୫୦୦ଟଙ୍କା ଯୋଗାଡ କରି ଚାଲିଆସିବ । ଅବଶ୍ୟ ତୁମ ଅନୁପସ୍ଥିତିରେ ତୁମ ପିଲାଙ୍କ ଚଳିବା ବ୍ୟବସ୍ଥା କିଏ କରିବ ତା ଭାବି ଦେଖିବ ।

ବର୍ତ୍ତମାନ ମୋତେ ମୋ ବାପାମାଙ୍କ ଚଳିବା ଖର୍ଚ୍ଚର ବ୍ୟବସ୍ଥା କରିବାକୁ ପଡୁଛି । ଜୀବନବୀମା ପ୍ରିମିୟମ୍ ଦେବାକୁ ପଡୁଛି । ତେଣୁ ମୋ କଥା ଯେ ପୂରାପୂରି ଅଲଗା ବା ସରଳ ତା ଭାବିବନି । ମୁଁ ପ୍ରାୟ ଆଉ ଦେଢ ବର୍ଷ ରହିବି । କବିତା କେବେ କେମିତି ଲେଖୁଛି । ମୋ ପୁଅ ଓ ସ୍ତ୍ରୀ(କବିତା) ବର୍ତ୍ତମାନ ତାଙ୍କ ପିତ୍ରାଳୟରେ ଅଛନ୍ତି, ମାନେ ପୁରୀରେ । ସେମାନେ ଭଲ ଅଛନ୍ତି । ଆଶା କରେ ତୁମେ ସବୁ ଭଲ ଥିବ । ପିଲାମାନଙ୍କୁ ମୋର ଶୁଭେଚ୍ଛା କହିବ, ତୁମେ ଓ ଜୟନ୍ତୀ ମୋର ଶୁଭେଚ୍ଛା ନବ । ନିତ୍ୟାନନ୍ଦ ବାବୁ ଓ ତାଙ୍କ ସ୍ତ୍ରୀଙ୍କୁ ମୋର ନମସ୍କାର କହିବ । ରହିଲି ।

ତୁମର ଶୁଭାକାଙ୍କ୍ଷୀ ଡାକ୍ତର ଗଗନଚନ୍ଦ୍ର ମିଶ୍ର

॥ ୧୬ ॥

ଶାନ୍ତିନିବାସ ବାଣୀମନ୍ଦିର, ପୁରୀଘାଟ ରୋଡ, ପୋଷ୍ଟ-କଟକ-୧

ଆମ ନମ୍ବର-୮୭୮/୬୦, ତା୨୯.୬.୬୦

ପ୍ରିୟ କୃଷ୍ଣଚରଣ ବାବୁ,

ଆପଣଙ୍କର ପତ୍ର ପାଇ ଉତ୍ତର ଦେବାରେ ବିଳମ୍ବ ହୋଇଛି । କ୍ଷମା ଦେବେ ।

(୧) ପ୍ରଥମ ଓ ଶେଷ ପ୍ରକାଶିତ ବହି ଓ ପ୍ରକାଶ ସମୟ ପାଇଁ ଆପଣ ଅମଡାବାଟ(ଉପନ୍ୟାସ) ଓ 'ସିନ୍ଦୂରଗାର' ବହିର ଇନର୍ ଦୟାକରି ଦେଖନ୍ତୁ ।

(୨) କେବଳ ମୁଁ 'ଓଡ଼ିଆ ସାହିତ୍ୟ ପରିଷଦ' ସହିତ ସଂପୃକ୍ତ ଥିଲି ସେକ୍ରେଟାରୀ ଭାବରେ । ଏହାର ସଭାପତି ନଥିଲେ(୧୯୪୪-୪୬) । ସହକାର ଓ ମହତାବବାବୁ ବମ୍ବେଇରେ ଥିଲା ବେଳେ ଝଙ୍କାରର ପ୍ରକାଶିତ ସଂପାଦକୀୟ ଦ୍ରଷ୍ଟବ୍ୟ ।

(୩) ଲେଖକ ଜୀବନର(ମୋର) ବିଶିଷ୍ଟ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ସାହିତ୍ୟ, ସାହିତ୍ୟିକ ଓ ସାହିତ୍ୟ ଅନୁଷ୍ଠାନ ପ୍ରତି ମୋର ଶ୍ରଦ୍ଧା, ଆସ୍ଥା ବା ଆକର୍ଷଣ ନାହିଁ ।

(୪) ଆପଣଙ୍କର ସଂପାଦନା ବେଳର 'ଡଗର'ରେ ମଧ୍ୟ ଲେଖକ ପରିଚୟ ପାଇବେ । ବସନ୍ତଦେବୀଙ୍କ ପାପୁଲି ପନ୍ଦରଦିନ ହେଲାଣି ବ୍ୟାଣ୍ଡେଜ୍ ଓ ଔଷଧରେ ବନ୍ଧା ହୋଇଛି । ଈଶ୍ୱରଙ୍କୁ ପ୍ରାର୍ଥନା ଯେ ଆପଣଙ୍କର 'କଥାସାହିତ୍ୟ' ଯଶସ୍ୱୀ ହେଉ । ଆପଣ ସସ୍ତ୍ରୀକ ପ୍ରଣାମ ଗ୍ରହଣ କରିବେ ।

ରାଜକିଶୋର ପଟ୍ଟନାୟକ

॥ ୧୭ ॥

ପୁରୀ
୧୨.୮.୬୦

ଶ୍ରୀମାନ୍ କୃଷ୍ଣଚରଣ,

ନାନା କାର୍ଯ୍ୟରେ ବ୍ୟସ୍ତ ଥାଇ ତମର ଚିଠିର ଉତ୍ତର ଦେଇପାରି ନଥିଲି । ମୋ ବହିଗୁଡ଼ିକର ପ୍ରକାଶ କାଳ ତଳେ ଦେଲି । ନୀଳଲହରୀ-୧୯୪୫(କୃଷ୍ଣଭଣ୍ଡାର ପରେ ଷ୍ଟୁଡେଣ୍ଟସ ଷ୍ଟୋର), ବିକଚ ଶତଦଳ-୧୯୪୭(ଉତ୍କଳ ବୁକ୍ ଏଜେନ୍ସି), ଅଶୋକଚକ୍ର(୧୯୪୯)- ଭାରତୀ ବିହାର, ବନଜ୍ୟୋତ୍ସ୍ନା-୧୯୪୯- ଭାରତୀ ବିହାର, ଜୟ ଶଙ୍ଖ-୧୯୫୦, କଟକ ପବ୍ଲିଶିଂ, ମନରମୃଣାଳ-୧୯୫୨-କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର, ପ୍ରସିଦ୍ଧ ଦେବାୟତନ-୧୯୫୪, ଓଡ଼ିଆ ପବ୍ଲିସରର୍ସ, ଶୋଣିତ କାବ୍ୟ-୧୯୫୪, ଚକ୍ରବିନ୍ଦୁ ପୁସ୍ତକାଳୟ, ସାହିତ୍ୟ ଓ ସାହିତ୍ୟତତ୍ତ୍ୱ, ବାପୁ ସ୍ମରଣେ, ଆଦିପୁରୁଷ-୧୯୬୦, ଦାସ ବ୍ରଦର୍ସ ।

ତୁମର ଶୁଭାନୁଧ୍ୟାୟୀ
ରାଜକିଶୋର ରାୟ

॥ ୧୮ ॥

ଅନଗୋଳ
୧୭.୮.୬୦

ପ୍ରିୟ କୃଷ୍ଣବାବୁ,

ପ୍ରଣାମ । ଚିଠି ପାଇଚି । ମୋ ନିକଟରେ ଥିବା 'ବାରୁଣୀ' ଘରେ ଅଛି । ଏଠାରେ ନାହିଁ । ଏଣୁ ଘରକୁ ମୁଁ ଯିବା ପର୍ଯ୍ୟନ୍ତ ତାହା ମିଳି ପାରୁନି । ହୁଏତ ପୂଜାଛୁଟିରେ ପାଇ ପାରିବ । ତମ ପାଖରେ ଥିବା ପୁରୁଣା ପତ୍ରିକାରୁ କେବଳ ମୋର ବି.ବର୍ମାଙ୍କ ଲେଖା ଆବଶ୍ୟକ । ତାହା ଯଦି କେଉଁଠି ଥାଏ ଉତାରି ପଠାଇ ଦେଲେ ଯଥେଷ୍ଟ ହେବ । Parcel ଖର୍ଚ୍ଚ ପଠାଇବାର ଆବଶ୍ୟକ ନାହିଁ ।

ମୁଁ ଏକାଡେମୀର ବୈଠକରୁ ଫେରି ଦେଖେ ଯେ ଏଠାରେ ମୋର ଜନିଷପତ୍ର ଚୋରି ହୋଇଯାଇଛି । ଥାନାରେ କୁହାଯାଇଛି । କିନ୍ତୁ ଏଯାଏ କିଛି ହୋଇନି । ବର୍ତ୍ତମାନ ବିଡ ଅସୁବିଧାରେ ଅଛି । ଯନ୍ତ୍ରପାତି ଚୋରୀ ଯାଇଥିବାରୁ ଡଗରର ବ୍ଲକ୍ ମଧ ଯୋଗାଇ ପାରୁନି । ସେ କଥା ଲେଖି ଆଜି ଫତୁରାନନ୍ଦଙ୍କୁ ଚିଠି ଦେଉଛି ।
ବାବାଜିକୁ ନମସ୍କାର ।

ତମର ବିନୋଦ
(ବିନୋଦ ରାଉତରାୟ)

॥୧୯॥

VI VA BHARATI
No. Date

ସ୍ନେହର କୃଷ୍ଣ,

ମୋର ଆନ୍ତରିକ ଶ୍ରଦ୍ଧା ଓ ଶୁଭେଚ୍ଛା ଗ୍ରହଣ କରିବ । ତୁମେ ପଠାଇଥିବା ପୁସ୍ତକ ପାଠ କରି ଗୋଟାଏ ମନ୍ତବ୍ୟ ପଠାଇଥିଲି । ତୁମେ ତାହା ପାଇ ନାହଁ ବୋଲି କମଳାକାନ୍ତଙ୍କଠାରୁ ଶୁଣି ଆଶ୍ଚର୍ଯ୍ୟ ହେଲି । ମୋଟରେ ତୁମ ବହିଟି ମୋତେ ଭଲ ଲାଗିଛି । ଏଭଳି ରଚନା ଛାତ୍ରମାନଙ୍କ ଲାଗି ବିଶେଷ ଉପାଦେୟ । ନିରଳସ ଭାବରେ ସାହିତ୍ୟ ସାଧନାରେ ଲାଗିଛି, ଆଶା ଆଶ୍ୱାସନାର କଥା । ଭଗବାନ ତୁମ ସ୍ୱାସ୍ଥ୍ୟର ଉନ୍ନତି କରନ୍ତୁ । ଏହା ହିଁ ମୋର ପ୍ରାର୍ଥନା ।

ମାର୍ଚ୍ଚ ପହିଲାରୁ ଶା.ନି. ଛାଡି ଯାଉଛି । ବାରବର୍ଷର ବନ୍ଧନ କଟାଇବାକୁ ପଡିଛି । ବଡ ବ୍ୟସ୍ତ ଅଛି । ଇତି ।

ଶୁଭାନୁଧ୍ୟାୟୀ
କୁଞ୍ଜବିହାରୀ ଦାଶ

॥ ୨୦ ॥

ଶାନ୍ତିନିକେତନ
୧୪.୬.୬୧

ପ୍ରିୟ କୃଷ୍ଣବାବୁ,

ମୋର ସ୍ନେହ ଓ ଶୁଭେଚ୍ଛା ନେବେ । ଗାଆଁରେ ଆପଣଙ୍କ ଚିଠିଟି ପାଇଥିଲି । ଭାବିଥିଲି ଅଚାନକ ଆପଣଙ୍କ ଘରେ ଦିନେ ପହଞ୍ଚି ଯାଇ ତାର ଉତ୍ତର ଦେବି । କିନ୍ତୁ ଶେଷବେଳକୁ ମୋର ଦେହ ଟିକିଏ ଖରାପ ହେବାରୁ ତାହା ସମ୍ଭବ ହେଲା ନାହିଁ । ଆପଣ ଯେଉଁ 'ବିଚିତ୍ରା' ବହି କଥା ଲେଖିଥିଲେ, ତାର ପ୍ରଥମ ସଂସ୍କରଣ ଏଠାରେ ଅନେକ ମିଳୁଛି । ଚାହିଁଲେ ମୁଁ ମୋ ନାମରେ କିଣି ପଠାଇ ପାରିବି । ବିଶ୍ୱଭାରତୀ କର୍ମୀଙ୍କୁ ଟଙ୍କାରେ ଅଣେ ଲେଖାଏଁ ଛାଡ ମିଳୁଛି । ତେଣୁ ୮୭୍ୟ/ ଦାମ୍ ପଡ଼ିବ ।

ଭଦ୍ରକରୁ ଆପଣଙ୍କ ପ୍ରେରଣାରେ ଆସିଥିବା କମଳାକାନ୍ତ ଏଥର କୃତିତ୍ୱ ଘେନି ଯାଉଛନ୍ତି । ତାଙ୍କ ସ୍ଥାନ ପୂରଣ କରିବାକୁ ଆଉ କାହାକୁ ଠିକ୍ କରି ରଖିଛନ୍ତି ତ ?

ଜୁଲାଇକୁ ଦେବୀବାବୁ ଫେରୁଛନ୍ତି । ଓଡ଼ିଶା ସରକାରଙ୍କ ପକ୍ଷରୁ ଜଣେ ସିନିଅର୍ ଅଧ୍ୟାପକ ଆସିବେ । ଅନର୍ସ ପ୍ରଥମ ବାର୍ଷିକ ଶ୍ରେଣୀର ଓ ଏମ୍.ଏ.ରେ ପିଲା ହେଲେ, ୪ର୍ଥ ଅଧ୍ୟାପକ ପଦ (ଯାହା ପ୍ରସ୍ତାବିତ ହୋଇ ରହିଛି) ଏବର୍ଷ ପୂର୍ଣ୍ଣ କରାଯାଇପାରେ ।

ସୁବିଧା ଅନୁସାରେ ଆପଣଙ୍କ କୁଶଳବାର୍ତ୍ତା ଜଣାଇ ଚିଠି ଦେବେ । ଇତି ।

ଆପଣଙ୍କର ଏକାନ୍ତ

ନରେନ୍ଦ୍ରନାଥ ମିଶ୍ର

॥ ୨୧ ॥

ଶ୍ରୀ ରବିନାରାୟଣ ନାୟକ

ନରେନ୍ଦ୍ରପୁର, ପୋ.ଅ.: ତିହିଡି,

୧୫.୧୦.୬୧

ପ୍ରିୟ ଭାଇ କୃଷ୍ଣବାବୁ

ନମସ୍କାର ନେବେ । ଆଶାକରେ ସପରିବାର କୁଶଳରେ ଥିବେ । ଅନେକଦିନ ପରେ ଚିଠି ଖଣ୍ଡେ ଦେଉଛି । ରାଗିବେନି । ଆପଣଙ୍କର ଫେରନ୍ତା ପତ୍ରକୁ ଅନାଇଛି । ପୂଜାସଂଖ୍ୟା 'ଆସନ୍ତାକାଲି'ରେ ଆପଣଙ୍କର 'ଗୋଦରୀ ଲୋ, ଗୋଡ଼କୁ ଅନା' ପ୍ରବନ୍ଧଟି ପାଠକରି ବିଶେଷ ଖୁସି ହେଲି । ଲେଖାଟି ବର୍ତ୍ତମାନ ସମୟକୁ ଠିକ୍ ଖାପିଛି । ଆପଣଙ୍କ ଲେଖା ଉପରେ ସୁପାରିଶ କରି ଲେଖିବାର ସାହିତ୍ୟିକ ଜ୍ଞାନ ମୋର ନାହିଁ । ଏଣୁ କ୍ଷମା ଦେବେ । କିନ୍ତୁ ଆପଣଙ୍କ ଲେଖାରୁ ମୋ ଆଖି ନିମ୍ନଲିଖିତ ପ୍ରଶ୍ନର ଉତ୍ତର ପାଇ ନପାରିବାରୁ ଆଜି ଅପାଣଙ୍କୁ ବ୍ୟସ୍ତ କରୁଛି । ରାଗିବେନି । କ୍ଷମା ଦେବେ ଓ ମୋର ପ୍ରଶ୍ନର ଉତ୍ତର ଦେବେ ।

(୧) ବ୍ଲକ୍ ଅଫିସ୍ Headclerk, B.D.O. ଙ୍କ ପ୍ରତି ବିନୟ, ନମ୍ରତା ବା ଆନୁଗତ୍ୟ ପ୍ରକାଶ କରି ନଥିବାଟା ଅବଶ୍ୟ ଅସୁନ୍ଦର । ତା ମୁଁ ମାନୁଛି । ତେବେ ସେହି Headclerk ଙ୍କର ବିନୟ ନମ୍ରତା ବା ଆନୁଗତ୍ୟ କି ଉପାୟରେ ପୁଣି B.D.O.ଙ୍କ ପ୍ରତି ଆସିବ ? ଏଥିପ୍ରତି B.D.O.ଙ୍କର H. C. ଙ୍କ ପ୍ରତି କିଛି କିଛି କର୍ତ୍ତବ୍ୟ ଅଛି କି ?

(୨) ଆଜିକାଲି Subordinate Officerମାନଙ୍କର ବ୍ୟବହାର immediate superiorଙ୍କ ପ୍ରତି ଯେ ଏପରି ହେଉଛି, ଏଥିପାଇଁ ଦୁଇଜଣଯାକ ଦାୟୀ, ନା ଜଣେ କେହି ?

(୩) ଅବିନୟ, ଅବାଧ ଓ ବିଦ୍ରୋହୀ ଭାବ ଅବଶ୍ୟ ଅସ୍ପୃହଣୀୟ । ତେବେ ଛାତ୍ର, ଛାତ୍ରୀ ଓ Subordinate Officer ଓ clerkମାନଙ୍କ ମନରେ ଏଭାବର ଉଦ୍ରେକ ହେବାର ମୂଳ କାରଣ କଅଣ ହୋଇପାରେ ?

ଆପଣ ଗୋଟାଏ ଜାଗାରେ ଟିକିଏ ପରୋକ୍ଷରେ ଅବଶ୍ୟ ବଡ ବଡିଆଙ୍କର ଦୋଷ ଦେଖାଇଛନ୍ତି । ତେବେ ଛାତ୍ର, କିରାଣୀ, ସେକ୍ରେଟାରୀ ଇତ୍ୟାଦିଙ୍କୁ ଯେପରି ସିଧାଭାବରେ ଲେଖିପାରିଲେ immediate authorities ମାନଙ୍କୁ ସେପରି ଅବଶ୍ୟ ଲେଖିନାହାନ୍ତି । ଏପ୍ରକାର ବିନୟ ଭାବ ଅବଶ୍ୟ ଆପଣଙ୍କର ପ୍ରଶଂସାର ଯୋଗ୍ୟ । ତେବେ ମୋତେ ଦୟାକରି ସିଧା ଜଣାଇବେ ଯେ ଉପରିସ୍ଥ କର୍ମଚାରୀମାନେ କଅଣ ହୋଇଥିଲେ ତଳ କର୍ମଚାରୀମାନେ ବିନୟ, ନମ୍ର ଓ ଅନୁଗତ ହୋଇ ରହନ୍ତେ ? ଏତକ ଅନୁରୋଧ । ୨ଜଣ ଓଡ଼ିଆଙ୍କ ମଧ୍ୟରେ ଏ ଚିଠିକୁ କଳିରୂପେ ନେବେନାହିଁ । ଏହାର ଉଦ୍ଦେଶ୍ୟ ଅତି ମହତ । ଆଶା ଭଲରେ ଥିବେ । ସନାତନକୁ ନମସ୍କାର ଜଣାଇବେ ।

ରବି

॥ ୨୨ ॥

କଟକ
୬.୧୨.୬୧

ପ୍ରିୟ ଅଧ୍ୟାପକ ବେହେରା,

ତମର ନିମନ୍ତ୍ରଣ ପାଇଁ ଧନ୍ୟବାଦ । କିନ୍ତୁ ଏଇ ଏନସାଇକ୍ଲୋପିଡିଆ କାମ ଯୋଗୁଁ କଟକ ଛାଡିଯିବା ମୋ ପକ୍ଷରେ ସମ୍ଭବ ହେଉ ନାହିଁ । ତାପରେ ବକ୍ତୃତା ଦେବା, ସଭାସମିତିରେ ତର୍କ କରିବା ଇତ୍ୟାଦି ମୋର ସ୍ୱଭାବ ବିରୁଦ୍ଧ । ଯେଉଁମାନେ ଏସବୁ କାମ୍ରେ କୃତବିଦ୍ୟ ତାଙ୍କୁ ଡାକ । ଅନିଚ୍ଛୁକ ଘୋଡାକୁ ପାଣିକି ଟାଣୁଛ କାହିକି ? କ୍ଷମା କରିବ । ଇତି ।

ଶୁଭାନୁଧ୍ୟାୟୀ
ମାୟାଧର ମାନସିଂହ

॥ ୨୩ ॥

କଟକ-୧
୧.୧୧.୧୯୬୨

ସ୍ନେହାସ୍ପଦେଷୁ,

କାର୍ଡଖଣ୍ଡି ପାଇଁ ଖୁସି ହେଲି । 'ସୌମ୍ୟା' ଲେଖିଥିଲି କଟକରେ ଥିବା ସମୟରେ । ଯେତେଦୂର ମନେ ପଡେ ପ୍ରଥମେ ତାହା ୰ ବାଳକୃଷ୍ଣ କରଙ୍କ ସମ୍ପାଦିତ 'ସହକାର' ପତ୍ରିକାରେ ପ୍ରଥମେ ପ୍ରକାଶିତ ହୋଇ ବହୁ ପ୍ରଶଂସା ଲାଭ କରେ । ପରେ 'ସବୁଜ ସମିତି' ଦ୍ୱାରା ତାହାର ପୁସ୍ତିକା ଆକାରରେ ପ୍ରକାଶ । ନାମଗୁଡ଼ିକୁ ବୌଦ୍ଧଯୁଗର ନାମ ଭଳି କରିବାକୁ ଉଦ୍ୟମ କରିଥିଲି । କିନ୍ତୁ ବିଷୟବସ୍ତୁ ଆଣିଥିଲି ଓଡ଼ିଶାର ଲୋକଗାଥା

'ବୋଲେ ହୁଁଟି'ରୁ । କେତେକ ବର୍ଷ ପରେ ପୂରାପୂରି ଏଇ ଗଳ୍ପଟିକି ଶ୍ରୀଜ୍ଞାନୀନ୍ଦ୍ର ବର୍ମା ଏକ ନୃତ୍ୟନାଟିକା ଆକାରରେ ଲେଖିଲେ । ମୁଁ କିନ୍ତୁ କେବଳ ଗଳ୍ପଟିର ଛାୟା ଅନୁସରଣ କରିଛି । ବାକିସବୁ କାଳ୍ପନିକ । ତେଣୁ ଆପଣଙ୍କ ଅନୁମାନ ଠିକ୍ । 'ପଦ୍ମିନୀ' ଲେଖିଥିଲି ଲେଡି ଫ୍ରେଜର୍ ଗାର୍ଲସ୍ ସ୍କୁଲର ଛାତ୍ରୀ ଶ୍ରୀମତୀ କଲ୍ୟାଣୀ ଦେବୀଙ୍କ ଅନୁରୋଧରେ । ସେ ୰ ଶଚୀନ୍ଦ୍ରନାଥ ଦାସଙ୍କର ପ୍ରଥମା କନ୍ୟା । ସେତେବେଳେ ମୁଁ ବାରିପଦାରେ ଥାଏଁ ଓ ଶଚୀବାବୁଙ୍କ ପରିବାର ସଙ୍ଗେ ଆମର ଘନିଷ୍ଠତା ହୋଇଥାଏ ।

ଶୁଭାନୁଧାୟୀ
କାଳିନ୍ଦୀଚରଣ ପାଣିଗ୍ରାହୀ

॥ ୨୪ ॥

Sri Ananta Prasad Panda
Principal, Block level co-operative Officers Training centre
Gopalpur-on-Sea, Dist. Ganjam, Orissa
2.1.1962

ଶ୍ରଦ୍ଧେୟ କୃଷ୍ଣଚରଣ ବାବୁ,

ଆପଣଙ୍କର ତା୨୯.୧୨.୬୧ର ପତ୍ରଟି ପାଇଲି । ଆପଣ ଓଡ଼ିଆ ଉପନ୍ୟାସ ସମ୍ବନ୍ଧରେ ଗବେଷଣା କରୁଛନ୍ତି ଜାଣି ଖୁସି ହେଲି । ଆପଣ ଯେଉଁ ବିଷୟଗୁଡ଼ିକ ଜାଣିବାକୁ ଚାହୁଁଛନ୍ତି ନିମ୍ନରେ ସେଗୁଡ଼ିକ ଜଣାଉଛି ।

ମୋର ଜନ୍ମ ହେଉଛି ୧୯୦୬ ଜୁଲାଇ ୧୮ ତାରିଖ ବାଲେଶ୍ୱର ଜିଲ୍ଲା ସୋରୋ ଅନ୍ତର୍ଗତ 'କଲ୍ୟାଣୀ' ଗ୍ରାମରେ । ପିଲାଟି ଦିନୁ ଲେଖାଲେଖି କରିବା ପାଇଁ ମୋର ଇଚ୍ଛା ହେଉଥାଏ । ବାଲେଶ୍ୱର ଜିଲ୍ଲା ସ୍କୁଲରେ ପଢୁଥିବା ବେଳେ ଆମେ 'ପାରିଜାତ' ନାମକ ଏକ ହସ୍ତଲେଖା ପତ୍ରିକା ପ୍ରକାଶ କଲୁ ଓ ସେଥିରେ ପ୍ରଥମ ଲେଖାଟି ହେଲା ସେଇଟି । ସେତେବେଳେ ଓଡ଼ିଆ ଗଳ୍ପ ଉପନ୍ୟାସର ଜନକ ବୃଦ୍ଧ ଫକୀରମୋହନ ସେନାପତି ବାଲେଶ୍ୱର ଜିଲ୍ଲାସ୍କୁଲର ଅନତିଦୂରରେ ରହୁଥାନ୍ତି ଓ ଶାନ୍ତିକାନନ ନାମକ ତାଙ୍କର ଏକ ମନୋରମ ଉଦ୍ୟାନରେ ସାହିତ୍ୟ ସଂସ୍କୃତି ଚର୍ଚ୍ଚାରତ ଥାନ୍ତି । ଆମେ ସ୍କୁଲ ପିଲା କେତେକ ଅନେକ ସମୟରେ ତାଙ୍କ ଘରକୁ ଯାଉ । କହିବା ବାହୁଲ୍ୟ ଯେ ଫକୀରମୋହନ ସେନାପତିଙ୍କର ଗଳ୍ପ ଓ ଉପନ୍ୟାସଗୁଡ଼ିକ ମୋର ସାହିତ୍ୟ ସାଧନା ପ୍ରବୃତ୍ତିକୁ ଅନୁପ୍ରାଣିତ ଓ ଉତ୍ସାହିତ କରିଥିଲା । ବାଲେଶ୍ୱର ଜିଲ୍ଲାସ୍କୁଲରୁ ପ୍ରଥମ ଶ୍ରେଣୀରେ ପାସ୍ କରି ସ୍କଲାରସିପ୍ ପାଇ ଯେତେବେଳେ କଟକ ରେଭେନ୍ସା କଲେଜରେ ନାମ ଲେଖାଇଲି ସେତେବେଳେ ପ୍ରଥମେ ଗଳ୍ପ ଲେଖା ଆରମ୍ଭ କରି ଦେଇଥିଲି । ତତ୍ ସଂଗେ ସଂଗେ କବିତା ଓ ନାଟକ ମଧ୍ୟ ଲେଖୁଥିଲି । ମୋର ପ୍ରଥମ ଗଳ୍ପ 'ଅମୃତ ବାସନା' ଅପ୍ରତ୍ୟାଶିତ ଭାବରେ ତତ୍କାଳୀନ

ଲବ୍ଧପ୍ରତିଷ୍ଠ ସାହିତ୍ୟ ପତ୍ର 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଗଲା ଓ ତାର ସଂପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ତାକୁ ଖୁବ୍ ପସନ୍ଦ କରି କେବଳ ଗଳ୍ପ ସାହିତ୍ୟ ଲେଖିବା ପାଇଁ ଉତ୍ସାହିତ କରିଥିଲେ । ରେଭେନ୍ସା କଲେଜରୁ ଇଂରାଜୀ ସାହିତ୍ୟରେ ଅନର୍ସ ସହିତ ପାସ୍ କରି ମୁଁ ପ୍ରଥମେ ସବ୍‌ଡେପୁଟି କଲେକ୍ଟର ଭାବରେ ବାଲେଶ୍ୱରରେ ଯୋଗ ଦିଏଁ ଓ ଅତି ଅଳ୍ପ ସମୟ ପରେ ଭଦ୍ରକ ସବ୍‌ଡିଭିଜନର ଚାନ୍ଦବାଲି ଓ ବାସୁଦେବପୁରରେ ରିଲିଫ୍ ଅଫିସର ଭାବେ କାମ କରିବାକୁ ଯାଏଁ । ବାସୁଦେବପୁର ଥାନାର ମନ୍ତେଇ ନଈ କୂଳରୁ ଚାରିବାଟିଆ ଡାକବଙ୍ଗଳାରେ ବସି ଉକ୍ତ ନଈର ଜୁଆର ଭଟ୍ଟା ମୁଁ ଲକ୍ଷ୍ୟ କରୁଥାଏଁ । ତାହା ୧୯୨୮ ମସିହାର କଥା । ସେତିକି ବେଳେ ମୋର ପ୍ରଥମ ବଡ ଉପନ୍ୟାସ 'ଭାଗ୍ୟଚକ୍ର' ଲେଖିଥିଲି । ତାହା ଏକ ସାମାଜିକ ଉପନ୍ୟାସ । ଠିକ୍ ଫକୀରମୋହନଙ୍କ ଉପନ୍ୟାସର ଶୈଳୀ ଘେନି ତାହା ରଚିତ । କହିବା ବାହୁଲ୍ୟ ଯେ ଯେତେବେଳେ ଓଡ଼ିଆରେ ଉପନ୍ୟାସର ସଂଖ୍ୟା ଥିଲା ବହୁତ କମ୍ । ସେଥିପାଇଁ କିଛି ବର୍ଷ ପରେ ପ୍ରାୟ ୧୯୩୪/୩୫ ମସିହାରେ ସେତେବେଳେ ମୋର 'ଭାଗ୍ୟଚକ୍ର' ଉପନ୍ୟାସଟି ପ୍ରଥମେ ପ୍ରକାଶ ପାଇଥିଲା ତାହା ଖୁବ୍ ଆଦର ଲାଭ କରିଥିଲା । xxx ୧୯୨୭/୨୮ଠାରୁ ନିରବଚ୍ଛିନ୍ନ ଭାବରେ ମୋର ସାହିତ୍ୟ ସାଧନା ଚାଲିଛି । ଉତ୍କଳ ସାହିତ୍ୟ ଓ ସହକାର ମାସିକ ସାହିତ୍ୟ ପତ୍ରିକାରେ ମୋର ବହୁ ଗଳ୍ପ ପ୍ରକାଶ ପାଇଛି । ବର୍ତ୍ତମାନସୁଦ୍ଧା ମୋର ପ୍ରକାଶିତ ପ୍ରାୟ କୋଡ଼ିଏ ଖଣ୍ଡି ବହି ମଧ୍ୟରୁ ଗଳ୍ପ ସଂଚୟନ ଓ ଉପନ୍ୟାସ ସଂଖ୍ୟା ହେଉଛି ୧୦ଖଣ୍ଡି । ସେଗୁଡ଼ିକ ହେଲା ୧.ତୃଣଗୁଚ୍ଛ (ଗଳ୍ପ) ୧୯୩୨ରେ ପ୍ରକାଶିତ ହୋଇଥିଲା । ତାପର ୨. ଭାଗ୍ୟଚକ୍ର(ଉପନ୍ୟାସ), ତିନୋଟି ସଂସ୍କରଣ ପ୍ରକାଶ ପାଇଥିଲା । ୩. ସଭ୍ୟତାର ତଳେ (ଗଳ୍ପ ସଂଚୟନ), ୪. ମନର ଭୂତ(ଗଳ୍ପସଂଚୟନ), ୫. ବାରମଜା(ଗଳ୍ପସଂଚୟନ), ୬. ପ୍ରକୃତି (ଶିଶୁମାନଙ୍କ ପାଇଁ ଗଳ୍ପ ସଂଚୟନ), ୭. କୁଲି(ଉପନ୍ୟାସ), ୮. ମୁକ୍ତ ଆକାଶର ବିହଙ୍ଗ(ଉପନ୍ୟାସ), ୯. ନୂଆ ଦୁନିଆ(ଉପନ୍ୟାସ), ୧୦. ନୈଶସୁନ୍ଦରୀ(ଗଳ୍ପସଂଚୟନ) । xxx ଉକ୍ତ ଲେଖାଗୁଡ଼ିକ ସାଧାରଣତଃ ୩ଭାଗରେ ବିଭକ୍ତ ଯଥା ସାମାଜିକ, ଅର୍ଥନୈତିକ ଓ ମନସ୍ତାତ୍ତ୍ୱିକ । ସେହିପରି ମୋର ବଡ ଗଳ୍ପ ବା ଉପନ୍ୟାସ ଗୁଡ଼ିକ ମଧ୍ୟରେ 'ଭାଗ୍ୟଚକ୍ର' ମୋର ପ୍ରଥମ ସାମାଜିକ ଉପନ୍ୟାସ । 'କୁଲି' ଓ 'ନୂଆଦୁନିଆ' ଅର୍ଥନୈତିକ, କାରଣ ମୁଁ ଯେତେବେଳେ ତାହା ଲେଖିଲି ସେତେବେଳକୁ ମୁଁ ସମବାୟ ବିଭାଗରେ କାର୍ଯ୍ୟ କରୁଥାଏ । ସୁତରାଂ ସମବାୟ ନୀତିର ପ୍ରଭାବ ମୋର ଉକ୍ତ ଲେଖା ଦୁଇଟି ଉପରେ ପ୍ରତିଫଳିତ ହୋଇଛି ।

xxx xxx xxx

ମୋଟାମୋଟି ଭାବରେ କହିବାକୁ ଗଲେ ମୋର ଅଧିକାଂଶ ରଚନାଗୁଡ଼ିକର ଲକ୍ଷ୍ୟ ହେଉଛି ସାମାଜିକ ତଥା ଆର୍ଥିକ ସମସ୍ୟାର ବିଶ୍ଳେଷଣ ଓ ଉକ୍ତ ସମସ୍ୟାର ସମାଧାନର ସୂଚନା । ମୋର ଅଧିକାଂଶ ଗଳ୍ପ ଉପନ୍ୟାସରେ ବିଶେଷତଃ 'କୁଲି', 'ନୂଆଦୁନିଆ' ଓ

'ସଭ୍ୟତାର ତଳେ' ପ୍ରଭୃତି ପୁସ୍ତକରେ ଦୁଃସ୍ଥ, ପ୍ରପୀଡିତ ଓ ନିଷ୍ପେଷିତ ଜନତାର ଦୁଃଖ ଦୁର୍ଦ୍ଦଶାର ଚିତ୍ର ଦେବା ସଂଗେ ସଂଗେ ସହଯୋଗ ଓ ସଂଗଠନ ଦ୍ୱାରା କିପରି ସେମାନଙ୍କର ସେଇ ଦୁଃଖ ଦୁର୍ଦ୍ଦଶାର ବିମୋଚନ କରାଯାଇପାରେ, ତାହା ସୂଚନା ଦିଆଯାଇଛି । ଏହାହିଁ ମୋର ଅଧିକାଂଶ ଗଳ୍ପ ଉପନ୍ୟାସ ଗୁଡ଼ିକର ଆଦର୍ଶ ବା ଆଭିମୁଖ୍ୟ ।

ସମସାମୟିକ ଓଡ଼ିଆ ଉପନ୍ୟାସ ସମ୍ବନ୍ଧରେ କହିବାକୁ ଗଲେ, ମୋର ମତ ହେଉଛି ଯେ ଶ୍ରୀଯୁକ୍ତ କାହ୍ନୁଚରଣ ମହାନ୍ତିଙ୍କର 'ଝଂଜା', 'ବଜ୍ରବାହୁ' ପ୍ରଭୃତି ଉପନ୍ୟାସଗୁଡ଼ିକ ମୋତେ ଖୁବ୍ ଭଲ ଲାଗେ । କାରଣ ଉକ୍ତ ଉପନ୍ୟାସଗୁଡ଼ିକର ଆଦର୍ଶ ସଂଗଠନମୂଳକ ଓ ମୋର ଆଦର୍ଶ ସେଇ ଆଦର୍ଶ ସହିତ କେତେକାଂଶରେ ମେଳ ଖାଏ ।

କେବଳ ଖିଆଲ ବା ଆନନ୍ଦ ପାଇଁ ସାହିତ୍ୟର ସୃଷ୍ଟି, ଏ ମତବାଦ ସହିତ ମୁଁ ଏକମତ ନୁହେଁ । ସାହିତ୍ୟ ଅବଶ୍ୟ ପାଠ୍ୟପୁସ୍ତକ ନହୋଇପାରେ, କିନ୍ତୁ ତାର ଚରମ ଲକ୍ଷ୍ୟ ବା ଉଦ୍ଦେଶ୍ୟ ବିକାଶୋନ୍ମୁଖୀ ହେବା ବାଞ୍ଛନୀୟ ବୋଲି ମୋର ମନେହୁଏ ।

ପୁନଶ୍ଚ ମୁଁ ବର୍ତ୍ତମାନ ଓଡ଼ିଶା ସମବାୟ ବିଭାଗରେ ଜଏଣ୍ଟ ରେଜିଷ୍ଟ୍ରାର ପଦରୁ ଅବସର ଗ୍ରହଣ କରି ଏଠାରେ ସମବାୟ ଅଫିସର୍ ଟ୍ରେନିଂ କେନ୍ଦ୍ରରେ ପ୍ରିନ୍ସପାଲ୍ ଭାବରେ କାର୍ଯ୍ୟ କରୁଛି । ଆଉ ଯଦି କିଛି ଜାଣିବାକୁ ଚାହାନ୍ତି, ଏଠାକୁ ପତ୍ର ଦେବେ । ମୋର ନବବର୍ଷର ଶୁଭେଚ୍ଛା ଗ୍ରହଣ କରିବେ ।

ଓଡ଼ିଆ ଉପନ୍ୟାସ ଉପରେ ଆପଣଙ୍କର ଗବେଷଣା ପ୍ରଚେଷ୍ଟା ସଫଳ ହେଉ, ଏହାହିଁ କାମନା । ଆପଣଙ୍କର ଗବେଷଣା ପୁସ୍ତକ ପ୍ରକାଶ ପାଇଲେ ଯଦି ଖଣ୍ଡିଏ ଅନୁଗ୍ରହ କରି ପଠାଇ ପାରିବେ, ତେବେ ବିଶେଷ ଉପକୃତ ହେବି ।     ଆଜି ଏତିକି ।

ଆପଣଙ୍କର ଗୁଣମୁଗ୍ଧ ଶୁଭାକାଂକ୍ଷୀ
ଅନନ୍ତପ୍ରସାଦ ପଣ୍ଡା

॥ ୨୫ ॥

ଟ୍ରେନ୍‌ରେ
୧୪.୩.୬୨

ପ୍ରିୟ କୃଷ୍ଣବାବୁ,

ଅଭିନନ୍ଦନ ପକାଶେ କୃତଜ୍ଞ । ଆପଣଙ୍କ ପରି ବହୁ ବନ୍ଧୁଙ୍କର ସଦିଚ୍ଛାର ହିଁ ଜୟ ହୋଇଛି । ମୁଁ ଏପରି ବିଜୟରେ ବିଶେଷ ଆନନ୍ଦିତ ନୁହେଁ । ଯାହା ଅଭିଜ୍ଞତା ଓ ଶିକ୍ଷା ମିଳିଛି, ସେଗୁଡ଼ିକ ଦେଶରେ ଗଣତାନ୍ତ୍ରିକ ବିକାଶ ଦିଗରୁ ଅତ୍ୟନ୍ତ ଚିନ୍ତାର ବିଷୟ । ଆପଣଙ୍କ ସ୍ତ୍ରୀ ଓ ପିଲାଙ୍କୁ ମୋର ଶୁଭେଚ୍ଛା ଦେବେ ।

ସୁରେନ୍ଦ୍ରନାଥ ଦ୍ୱିବେଦୀ

॥ ୨୬ ॥

ହିନ୍ଦୁସ୍ଥାନ ପ୍ରିଣ୍ଟର୍ସ
ଆର୍ଟିଷ୍ଟିକ୍ ଜବ୍ ପ୍ରିଣ୍ଟର୍ସ ବୁକ୍ ବାଇଣ୍ଡରସ୍ ଏଣ୍ଡ ରବର ଷ୍ଟାମ୍ପ ମେକର୍
ପୋ. ରାଉରକେଲା, ଡି. ସୁନ୍ଦରଗଡ(ଓଡ଼ିଶା)
ତା ୨୭.୩.୧୯୬୨

ପ୍ରିୟ କୃଷ୍ଣବାବୁ,

ଆପଣଙ୍କ ପ୍ରଶ୍ନର ଉତ୍ତର ଠିକ୍ ସମୟରେ ଦେଇ ପାରିଲି ନାହିଁ । ସେଥିପାଇଁ ବଡ ଲଜ୍ଜିତ । ଏ ଭିତରେ ମୁଁ କିଛିଦିନ ପାଇଁ ଘରକୁ ଚାଲିଯାଇଥିଲି । ସେଠୁ ଫେରି ଜରୁରୀ କାମରେ କଲିକତା । କିଛିଦିନ ପାଇଁ ଦେହ ବି ଭଲ ନଥିଲା । ଫଳରେ ଡେରି ହୋଇଛି । ଯା ହେଉ, ସବୁ କଥା ସଂକ୍ଷେପରେ ଲେଖୁଛି ।

**କେବେଠୁ ଲେଖାଲେଖି କଲି ଓ କିପରି ଅନୁପ୍ରାଣିତ ହେଲି**

୧୯୩୪ ମସିହାରେ ମୋର ୧ମ ଉପନ୍ୟାସ 'ଉଦ୍‌ଭ୍ରାନ୍ତ' ବାଳକୃଷ୍ଣବାବୁଙ୍କ ସଂପାଦିତ ଭାରତୀରେ ପ୍ରକାଶ ପାଇଲା । ତା ଆଗରୁ ଜାମସେଦପୁରରୁ ପ୍ରକାଶ ପାଉଥିବା 'ଆଲୋକ'ରେ ମୁଦ୍ରିତ ହେବା ପାଇଁ କେତେଗୁଡ଼ିଏ ଲେଖା ସାରସ୍ୱତ ପ୍ରେସ୍‌କୁ ପଠାଯାଇଥିଲା ଏବଂ ସେଥିରୁ କେତେଗୁଡ଼ିଏ ଲେଖା ପ୍ରକାଶ ପାଇବା ପରେ ବାକି କେତେଗୁଡ଼ିଏ 'ଆଲୋକ'ର ପରବର୍ତ୍ତୀ ସଂଖ୍ୟା ପାଇଁ ରହିଯାଇଥିଲା । 'ଆଲୋକ' ଗୋଟିଏ ସଂଖ୍ୟା ବାହାରି ବନ୍ଦ ହୋଇଗଲା । ଅପ୍ରକାଶିତ ଲେଖା ଭିତରୁ ଗୋଟିଏ ଗଳ୍ପ 'ପ୍ରତିଦାନ' କେତେମାସ ପରେ 'ସହକାର'ରେ ପ୍ରକାଶ ପାଇଲା । ସେ ଗଳ୍ପର ଲେଖକ ହିସାବରେ ମୋର ନା ମୁଁ ଦେଇ ନଥିବାରୁ ସହକାରରେ 'ପ୍ରତିଦାନ'ର ଲେଖକ କେବଳ 'ଶ୍ରୀ' ରୂପେ ପ୍ରକାଶ ପାଇଥିଲା । ଆଲୋକ ପାଇଁ ଉଦ୍ଦିଷ୍ଟ ଏହି ଗଳ୍ପଟି ସହକାରରେ କିପରି ପ୍ରକାଶ ପାଇଲା ବୋଲି ଲେଖିବାରୁ ବାଳକୃଷ୍ଣବାବୁ ଉତ୍ତର ଦେଇ ଲେଖିଲେ ଯେ 'ଆଲୋକ' ପାଇଁ ଆସିଥିବା ଲେଖା ସହକାର ଫାଇଲ ଭିତରେ କିପରି ମିଶି ଯାଇଛି ଓ 'ପ୍ରତିଦାନ' ଗଳ୍ପଟି ପ୍ରକାଶଯୋଗ୍ୟ ବିବେଚିତ ହେବାରୁ ସହକାରରେ ପ୍ରକାଶ ପାଇଛି । ଆପଣ ସେ ଗଳ୍ପର ଲେଖକ ହୋଇଥିଲେ ଧାରାବାହିକ ଲେଖା ପଠାନ୍ତୁ । ମୋର ସାହିତ୍ୟିକ ଜୀବନରେ ଆରମ୍ଭ ହୁଏ ଏଇଠୁ ।

'ଉଦଭ୍ରାନ୍ତ'ର ପାଣ୍ଡୁଲିପି ପଢ଼ି ବାଳକୃଷ୍ଣବାବୁ ପ୍ରଶଂସାପୂର୍ଣ୍ଣ ଚିଠିଟିଏ ଦେଲେ ଓ ଭାରତୀ ପାଇଁ ଅନେକଗୁଡ଼ିଏ ଉପନ୍ୟାସର ପାଣ୍ଡୁଲିପି ତାଙ୍କ ହାତରେ ଗଚ୍ଛିତ ଥିବା ସତ୍ତ୍ୱେ ସେ 'ଉଦ୍‌ଭ୍ରାନ୍ତ'କୁ ସର୍ବପ୍ରଥମ ସ୍ଥାନ ଦେଇଛନ୍ତି ବୋଲି ଲେଖି ମୋତେ ଖୁବ୍ ଉତ୍ସାହ ଦେଇଥିଲେ । ସେଇଟି ପ୍ରକାଶ ପାଇବା ସଂଗେ ସଂଗେ ପାଠକ ମହଲରେ

ବୋଧେ ଖୁବ୍ ଆଦୃତ ହେବାରୁ ବାଳକୃଷ୍ଣବାବୁ ପର ପର ୨ଟି ଚିଠି ଲେଖି 'ଭାରତୀ' ପାଇଁ ଆଉ ଏକ ଉପନ୍ୟାସ ଦେବାପାଇଁ ଅନୁରୋଧ କଲେ । 'ଭୁଲିଲ ସତେ ସଖି' ମୋର ୨ୟ ଉପନ୍ୟାସ । ପ୍ରକାଶ ପାଇଲା ୧ମ ଉପନ୍ୟାସର ୪ମାସ ପରେ ।

ଏହି ବର୍ଷ ନିଖିଳ ଉତ୍କଳ କବି ସମ୍ମିଳନୀ ଅନୁଷ୍ଠିତ ହୁଏ ଗଞ୍ଜାମରେ । କବିତାର ବିଷୟବସ୍ତୁ ଥିଲା ବିରହିଣୀ । ମୋ କବିତାଟି ଶ୍ରେଷ୍ଠ ବିବେଚିତ ହେଲା ଓ ମୁଁ ସ୍ୱର୍ଣ୍ଣପଦକ ପାଇଲି । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ କବି ସମ୍ମିଳନୀର ଜଣେ ଉଦ୍ୟୋକ୍ତା ଥିଲେ । ତାଙ୍କର ଉତ୍ସାହ ଓ ପରାମର୍ଶ କ୍ରମେ ମୁଁ ନିଜକୁ ଲେଖାଲେଖି ସଂଗେ ଆହୁରି ନିବିଡ କରି ରଖିଲି । ତାପରେ ଗଢ଼ା ହେଲା ସିଂହଭୂମ୍ ସାହିତ୍ୟ ସମାଜ । ଦୀର୍ଘ ୪୦ର ବର୍ଷକାଳ ମୁଁ ଜାମସେଦପୁରରେ ଥିବା ପର୍ଯ୍ୟନ୍ତ ସିଂହଭୂମ୍ ସାହିତ୍ୟ ସମାଜର ପ୍ରାୟ ପ୍ରତିବର୍ଷ ସମ୍ମିଳନୀ ହୋଇ ଆସିଛି । ସେଇ ଜାମ୍ସେଦପୁରରେ ହିଁ ବିଚ୍ଛିନ୍ନା ନାମକ ଏକ ପାକ୍ଷିକ ପତ୍ର ପ୍ରକାଶ କଲି । ୧୯୩୮ରେ ମାସିକ ଉପନ୍ୟାସ ସିରିଜ୍ 'ସାଥୀ' ସେଇଠାରୁ ହିଁ ପ୍ରକାଶ ପାଇଲା । ଏହିପରି ଭାବରେ ଗଲା କେତେବର୍ଷ ଭିତରେ ମୋର ଅନ୍ୟୁନ ୨୪/୨୫ ଖଣ୍ଡ ଉପନ୍ୟାସ, ୩ ଖଣ୍ଡ ନାଟକ(ସବୁଗୁଡ଼ିକ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍ ଦ୍ୱାରା ଅଭିନୀତ), ୨ ଖଣ୍ଡ ଗଳ୍ପ ବହି ଓ ଖଣ୍ଡିଏ କବିତା ବହି ପ୍ରକାଶ ପାଇଛି । ଆପଣ ଲେଖିଛନ୍ତି ମୋର ୪ଖଣ୍ଡ ଉପନ୍ୟାସ ପାଇଛନ୍ତି । କେଉଁ କେଉଁ ଉପନ୍ୟାସ ପାଇଛନ୍ତି- ତା ଜାଣି ପାରିଲି ନାହିଁ ।

### ସେତେବେଳେ ଓଡ଼ିଆ ଉପନ୍ୟାସର ଅବସ୍ଥା

ସେତେବେଳେ ଓଡ଼ିଆ ଉପନ୍ୟାସ ବୋଇଲେ ମାତ୍ର କେତେ ଖଣ୍ଡ । ଫକୀରମୋହନଙ୍କ ଯୁଗପରେ ଆଧୁନିକ ଉପନ୍ୟାସ ପ୍ରାୟ ଆରମ୍ଭ ହୋଇନାହିଁ । 'ମାଟିର ମଣିଷ', 'ପତିତାର ଆତ୍ମକଥା', 'ରକ୍ତପାତ', ଓ 'ପଳାତକ' ଉପନ୍ୟାସର ଲେଖକ ଯଥାକ୍ରମେ ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ଶ୍ରୀ ଗୋବିନ୍ଦଚନ୍ଦ୍ର ତ୍ରିପାଠୀ, ଶ୍ରୀ ଗୋଦାବରୀଶ ମହାପାତ୍ର ଓ ଶ୍ରୀ କାହ୍ନୁଚରଣ ପ୍ରଭୃତି ଔପନ୍ୟାସିକ ରୂପେ ସେପର୍ଯ୍ୟନ୍ତ ପ୍ରତିଷ୍ଠା ପାଇ ନାହାନ୍ତି । ଯା ପୂର୍ବରୁ 'ବାସନ୍ତୀ' ଉପନ୍ୟାସର ଯେଉଁ କେତେଜଣ ପାଠକଙ୍କର ମନରେ ରେଖାପାତ କରିଥିଲେ, 'ମନେମନେ' ଉପନ୍ୟାସର ପ୍ରଣେତା ଶ୍ରୀ ବୈଷ୍ଣବଚରଣ ଦାସ ସେମାନଙ୍କ ଭିତରୁ ଜଣେ । ଅବଶ୍ୟ କୁନ୍ତଳାକୁମାରୀ ସାବତଙ୍କ କେତେକ ଉପନ୍ୟାସ ସେତେବେଳକୁ ପ୍ରକାଶ ପାଇସାରିଥିଲା । ତାଙ୍କର 'ରଘୁଅରକ୍ଷିତ' ବେଶ୍ କିଛି ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । କାହ୍ନୁବାବୁଙ୍କ ଉପନ୍ୟାସ 'ବାଲିରାଜା' ଠିକ୍ କେଉଁ ସମୟରେ ପ୍ରକାଶ ପାଇଥିଲା ମୋର ମନେ ନାହିଁ, ତେବେ ବି 'ବାଲିରାଜା'ର ଲେଖକ ହିସାବରେ କାହ୍ନୁବାବୁ ବେଶ୍ ଉତ୍ତେଜନା ସୃଷ୍ଟି କରିଥିଲେ । ତା ଆଗରୁ 'ପ୍ରତିହିଂସା'ର ଲେଖକ ଶ୍ରୀ ରାମପ୍ରସାଦ ସିଂହ ଓଜସ୍ୱିନୀ ଭାଷା ଯୋଗୁଁ ଖୁବ୍ ଆଦୃତ ହୋଇଥିଲେ । ଖଣ୍ଡିଏ ବହି 'ମଲାଜହ୍ନ'

ଲେଖି ଶ୍ରୀ ଉପେନ୍ଦ୍ର କିଶୋର ଦାସ ବି ପ୍ରତିଷ୍ଠା ଲାଭ କରିଥିଲେ । ଏଇମାନଙ୍କୁ ନେଇ ସେତିକି ବେଳର ଓଡ଼ିଆ ଉପନ୍ୟାସର ଅବସ୍ଥା ହେଲା ସୃଜନମୁଖୀ । ସେସବୁ ଉପନ୍ୟାସଗୁଡ଼ିକୁ ପଢ଼ିଲେ ବେଶ୍ ବୁଝାପଡ଼ିବ ଚରିତ୍ର ଚିତ୍ରଣ କରିବାକୁ ଯାଇ ଆଦର୍ଶକୁ ହିଁ ସମସ୍ତେ କଥାବସ୍ତୁର କେନ୍ଦ୍ର କରି ବସୁଥିଲେ । ଚରିତ୍ରଚିତ୍ରଣର ବୈପ୍ଳବିକ ଦିଗଟା ଆଦୌ ନଥିଲା । ଏଣୁ ଚରିତ୍ରର ସହଜ ବାସ୍ତବ ପ୍ରକାଶ ମଧ୍ୟ ଉପନ୍ୟାସ ଭିତରେ ନଥିଲା । ଚରିତ୍ରଗୁଡ଼ିକ ଯେପରି ଥିଲେ କଥାଶିଳ୍ପୀର ହାତଗଢ଼ା କ୍ରୀଡା ପୁତ୍ତଳିକା । ସେ ଯିମିତିଟି ଚାହୁଁଥିଲା ଠିକ୍ ସେମିତି ଗଢୁଥିଲା ନାୟକ ନାୟିକାର ଚରିତ୍ରକୁ । ଏଇ ଔପନ୍ୟାସିକମାନେ କେହି ବାସ୍ତବବାଦୀ ନଥିଲେ ସେପର୍ଯ୍ୟନ୍ତ । 'ମାଟିର ମଣିଷ'ରେ କାଳିନ୍ଦୀବାବୁ ନାୟକର ଚରିତ୍ରକୁ ଯେପରି ଦେଖାଇଛନ୍ତି, ମୋ ମତରେ ବାସ୍ତବ ଅପେକ୍ଷା ତା ଭିତରେ ଆଦର୍ଶ ହିଁ ବେଶି । 'ରଘୁଅରକ୍ଷିତ' ସେଇ ପର୍ଯ୍ୟାୟର । ବରଂ କାହ୍ନୁବାବୁଙ୍କର 'ପଳାତକ' ଓ ରାମ ପ୍ରସାଦ ସିଂହଙ୍କର 'ପ୍ରତିହିଂସା' ଏଇ ଗତାନୁଗତିକତାର ବ୍ୟତିକ୍ରମ । କାହ୍ନୁବାବୁଙ୍କର ପରବର୍ତ୍ତୀ ଉପନ୍ୟାସଗୁଡ଼ିକରେ ନାୟକ ଚରିତ୍ରର ସ୍ୱାତନ୍ତ୍ର୍ୟ ବିଷୟରେ ଅନେକ ସମାଲୋଚକଙ୍କ ସହିତ ମୁଁ ଏକମତ ନୁହେଁ । ସେଇ ହିସାବରେ ପ୍ରଗତିଶୀଳ କହିବି 'ଚିତ୍ରଗ୍ରୀବ' ଉପନ୍ୟାସର ଲେଖକ ଶ୍ରୀ ସଚ୍ଚି ରାଉତରାୟଙ୍କୁ । 'ବାସନ୍ତୀ'ରେ କଥାବସ୍ତୁ ଥିଲା-କିନ୍ତୁ ମୂଲ୍ୟବାନ କଥା ଥିଲା ଅନେକ କମ୍ । ପତିତାର ଆତ୍ମକଥାରେ ଶ୍ରୀ ଗୋବିନ୍ଦ ତ୍ରିପାଠୀ ବେଶ୍ ମନନଶୀଳ । ବୈଷ୍ଣବବାବୁ ମନେମନେ ଉପନ୍ୟାସରେ ବେଶ୍ କିଛି ମନସ୍ତତ୍ତ୍ୱବିଦ୍ ।

ମୁଁ କିନ୍ତୁ ଏମାନଙ୍କ ଶ୍ରେଣୀର ନୁହେଁ । କଥାବସ୍ତୁ ଦିଗରୁ ନହେଲେ ବି ବୈପ୍ଳବିକ ଦୃଷ୍ଟିକୋଣରୁ ମନ ଓ ପ୍ରେମ ଭିତରେ ମୁଁ ଏକ ଆର୍ଟ୍‌ର କଳାତାତ୍ତ୍ୱିକ ପ୍ରଭାବକୁ ବେଶି ପର୍ଯ୍ୟାଲୋଚନା କରି ଦେଖାଇଛି ।

## ଓଡ଼ିଆ ଉପନ୍ୟାସର ଅତୀତ ଓ ବର୍ତ୍ତମାନ

ଓଡ଼ିଆ ଉପନ୍ୟାସର ଅତୀତ ଓ ବର୍ତ୍ତମାନ ନେଇ ଲେଖିବାକୁ ବସିଲେ ଅନେକ କିଛି ଲେଖିବାକୁ ପଡ଼ିବ । କିନ୍ତୁ ସମୟ ଓ ସୁବିଧା କରି ସେ ଉପରେ ଏକ ବିଶଦ ଆଲୋଚନା କରିବା ଇଚ୍ଛା ଥିଲେ ମଧ୍ୟ ବର୍ତ୍ତମାନ ସମ୍ଭବ ହେଉନାହିଁ । ମୋ ମତରେ ଓଡ଼ିଆ ଉପନ୍ୟାସର ଅତୀତ ଯାହା ଥିଲା ବର୍ତ୍ତମାନ ତା ନାହିଁ । କେତେବର୍ଷ ତଳେ ଉପନ୍ୟାସ ଜଗତରେ ଯେଉଁ କେତେଜଣ ଔପନ୍ୟାସିକ ଦେଖାଦେଇଥିଲେ ସେମାନଙ୍କ ଭିତରୁ ଅନେକ ବର୍ତ୍ତମାନ ନୀରବ । ନୂଆ ଅନେକ ବାହାରିଛନ୍ତି । ସେମାନଙ୍କ ସହିତ ମୋର ଯୋଗସୂତ୍ର ଠିକ୍ ନାହିଁ । ଅତୀତରେ ଯେଉଁମାନେ ଖୁବ୍ ନାମ କରିଥିଲେ ସେମାନଙ୍କର ଧାରାବାହିକ ପ୍ରକାଶ ମଧ୍ୟ କିଛି ଦେଖୁନାହିଁ । ଓଡ଼ିଶାରେ ଏପର୍ଯ୍ୟନ୍ତ ବି ପ୍ରକାଶକ ତରଫରୁ ଫରମାସଦିଆ ଉପନ୍ୟାସ ଲେଖାଚାଲିଛି । ଅଧିକାଂଶ ବହି ଏଇ

ସ୍ତରର । ଶହେ ପୃଷ୍ଠା ଭିତରେ ବହି, ଦାମ ଟଙ୍କାଏ । ଟିକିଏ ଏପାଖ ଟିକିଏ ସେପାଖ । ଏହିପରି ଉପନ୍ୟାସ ଓ ଔପନ୍ୟାସିକଙ୍କ ସମ୍ବନ୍ଧରେ କଣ ମତାମତ ଦିଆଯାଇପାରେ ! କେବଳ କାହ୍ନୁବାବୁ ଓ ମନମୋହନ ପୁସ୍ତକାଳୟ ଏଇ ଗତାନୁଗତିକତାର ବ୍ୟତିକ୍ରମ । ସ୍ପଷ୍ଟ କିଛି କହିହେବ ନାହିଁ । ଯଦି କହିବି-ଆଜିର ଓଡ଼ିଆ ଉପନ୍ୟାସରେ ଯେଉଁମାନେ ନୂତନ ସେମାନେ ସମସ୍ତେ ପ୍ରାୟ ଉପାର୍ଜନଲୋଭୀ ଅର୍ଥାତ୍ ବଜାରରେ ନିଜକୁ ଶୀଘ୍ର ବିକ୍ରିକରି କିଛି ପାଇବାର ଅଭିଳିପ୍ସା । (ବଜାରରେ କିନ୍ତୁ ବୁଦ୍ଧିଜୀବୀ ପାଠକଙ୍କ ନିକଟରେ ସେମାନଙ୍କର ଯଥାର୍ଥ ବିକ୍ରି ନାହିଁ) ସ୍ୱାଧୀନ ଚିନ୍ତାର ପ୍ରକାଶ କାହିଁ ? ମୋର ତ ମନେହୁଏ ଓଡ଼ିଆ ଉପନ୍ୟାସର ଅତୀତ ବର୍ତ୍ତମାନ ତୁଳନାରେ ବହୁତ ଉପରେ ଥିଲା । ସେ ଲେଖା ନାହିଁ କି ସେ ଲେଖକ ନାହିଁ, ପୁରୁଣା ଯେଉଁ କେତେକ କେବେ ଲେଖୁଛନ୍ତି ସେମାନେ ମଧ୍ୟ ସେଇ ଗତାନୁଗତିକତାର ଭିତରେ ହିଁ ଚାଲିଛନ୍ତି । ନୂତନତ୍ୱ କିଛି ନାହିଁ ।

ତରବରରେ ଯାହା ପାରିଲି ଲେଖି ପଠାଇଲି । ଏହିବର୍ଷଠାରୁ ଲିଲି ପ୍ରକାଶନୀ ନାମରେ Publication ଆରମ୍ଭ କରୁଛି । ମୋ ବହିଛଡ଼ା ଅନ୍ୟାନ୍ୟ ଲେଖକମାନଙ୍କର ପ୍ରକାଶ ଉପଯୋଗୀ ବହି ମଧ୍ୟ ପ୍ରକାଶ କରିବି । ଏଦିଗରେ ଆପଣଙ୍କ ମତାମତ ଜଣାଇବେ । କବିତା ବହି ଆପଣଙ୍କର ଅଛି ? ସାହିତ୍ୟ ଉପରେ ସମାଲୋଚନାତ୍ମକ ଲେଖା ଯଦି କିଛି ଥାଏ ମୋତେ ଜଣାଇବେ ।

ସେକ୍ଟରରେ ଥିବା ବହି ଦୋକାନକୁ ମୁଁ ଯାଇ ପାରି ନାହିଁ । ଯା ଭିତରେ କେବେଯାଇ ଦେଖିବି । ରାଉରକେଲାକୁ ମଝିରେ ମଝିରେ ଆସନ୍ତି ବୋଲି ଲେଖିଛନ୍ତି । ଏଣିକି ଆସିଲେ ମୋ ସଙ୍ଗେ ଦେଖା କରିବେ ।

ଆଶା କରେ ଭଲରେ ଥିବେ । ପତ୍ର ପାଇ ପତ୍ର ଦେବେ । ଇତି ।

ଆପଣଙ୍କର ଲକ୍ଷ୍ମୀଧର ନାୟକ

॥ ୨୭ ॥

ବାଣୀବିହାର

ଭୁବନେଶ୍ୱର

୧୧.୯.୬୨

ମାନନୀୟ ଗୁରୁଦେବ,

ଦୀର୍ଘ ଚାରି ବର୍ଷ ପରେ ଆପଣଙ୍କ ପାଖକୁ ଚିଠିଟିଏ ଲେଖି ନିଜେ ମୁଁ ଲଜ୍ଜିତ ହେଉଛି । ହୁଏତ ଆପଣ ମତେ ଭାବୁଥିବେ ଗୋଟାଏ ନିମକହାରାମ, ଦ୍ୱାଚୋର, ବଞ୍ଚକ ।

ଆପଣଙ୍କର ଲୁଣ ଖାଇ ଆଜି ମୁଁ ବଞ୍ଚକ ପାଲଟିଛି । ନୁହେଁତ ଆଉ କ'ଣ ? ଆପଣଙ୍କର ପ୍ରେରଣା, ଉତ୍ସାହ, ପରିଶେଷରେ ସାହସ ଲାଭ କରି ଆଜି ମୁଁ ଗର୍ବ କରିବି ଯେ କିଛି ମୁଁ ଲେଖୁଛି । ମୁଁ ଜାଣେନା ମୋ ସୃଷ୍ଟିରେ ମୁଁ ସଚେତନ କି ଅଚେତନ ।

ତାର ସମୀକ୍ଷକ ଆପଣ । ହଁ ସାର, ଏକାନ୍ତରେ ଆପଣ ।

ଆପଣଙ୍କ କର ଯାହାଠରେ ଲାଗିଛି ସେ ଶିଳା କାଞ୍ଚନ ପାଲଟିଛି । କାହିଁକି ଆପଣ ମୋ'ଭଳି ଯେ ବିଶ୍ୱାସଘାତକ ଦ୍ୱାଚୋରକୁ ସାହିତ୍ୟ କ୍ଷେତ୍ରକୁ ଟାଣି ନେଲେ ! କି ଆଶାରେ ? କେଉଁ ଉଦ୍ଦେଶ୍ୟରେ ? ଦେଖିଲେ ତ ତାର ଫଳ ! xxx xxx ମତେ କ୍ଷମା ଦେବେ ସାର୍ । ଯେଉଁ ଭୁଲ ମୁଁ ଆପଣଙ୍କ ପାଖରେ କରିଛି ସେଥିପାଇଁ ଚିଠିରେ କ୍ଷମା ମାଗି ନେଉଛି । ଏପରି ଭୁଲ ମୁଁ କେବେ କରିବି ନାହିଁ ।

ଆପଣଙ୍କ ସହିତ ସଂପର୍କ ବରାବର ରଖିବାକୁ ଚେଷ୍ଟା କରିବି । ଯାହା କିଛି କରିଥାଏ, କେବଳ ସାର୍ ଅବହେଳା । ଏହି ଅବହେଳା ହିଁ ମୋର ଜୀବନର କଣ୍ଟକ । ମତେ ତଳକୁ ଟାଣିନେବ ଦିନେ ।

'କଫିହାଉସ୍' ଗପଟି ଗତ ସୋମବାର ପ୍ରଜାତନ୍ତ୍ରରେ ପ୍ରକାଶ ପାଇଥିଲା ପ୍ରାୟ ପଢିଥିବେ । ମୁଁ କଣ ଲେଖେ କହି ପାରିବି ନାହିଁ । ଥରେ କହିଛି ମୋର ଶିକ୍ଷକ ହିଁ ତାର ସମୀକ୍ଷକ । 'ଆସନ୍ତାକାଲି' ମାସିକ ପତ୍ରିକାରେ 'ଅପୂର୍ଣ୍ଣାର ଆତ୍ମଗୀତି' କ୍ଷେତ୍ରବାସୀର ପଢ଼ିଥିବେ । କ୍ଷେତ୍ରବାସୀ ଲେଖା ମତେ ଖୁବ୍ ଭଲ ଲାଗେ । କିନ୍ତୁ ସେଭଳି ଲେଖା ମୋ ଦ୍ୱାରା ହୋଇ ପାରିବନି । କାରଣ ମୁଁ କ୍ଷେତ୍ରବାସୀ ନୁହେଁ । ତାର ଯୋଗ୍ୟତା ମୋ ଠାରେ ଅଭାବ । ଶେଷରେ ପୁଣି ନମସ୍କାର କରି ବିଦାୟ ନେଲି ।

ଏଇ ଇଂଗିତ (sketch)ପଠାଇଲି । ହେଇଛି କି ନାହିଁ ଦେଖିବେ । sketch ଲେଖିବା ଏଇ ମୋର ପ୍ରଥମ । ଭୁଲ୍ ଥିଲେ ଠିକ୍ କରିଦେବେ । ଇତି ।

ଆପଣଙ୍କର ସ୍ନେହାଧୀନ
ମନୋରଂଜନ ଷଡ଼ଙ୍ଗୀ

॥ ୨୮ ॥

କଟକ-୧
୧୩.୩.୬୩

ସ୍ନେହର କୃଷ୍ଣଚରଣ ବାବୁ,

ଆପଣଙ୍କ ଚିଠି ପାଇଲି । କଟକରେ ୧୫ ଦିନ ହେବ ନ ଥିଲି । 'ଆସନ୍ତାକାଲି'ରେ ପ୍ରକାଶିତ ଆପଣଙ୍କ ଏକାଙ୍କିକାଟି ବେଶ୍ ଉପାଦେୟ ହୋଇଛି । ନନ୍ଦିନୀ କହୁଥିଲେ ତାହାକୁ ଏକ 'ନାରୀ ସମିତି' ଦ୍ୱାରା ଅଭିନୟ କରାଇବା ପାଇଁ । 'ଗୋପନପତ୍ର' ବି ମୁଁ ଘରେ ନଥିବା ସମୟରେ ଶିଶିର ପାଇଥିଲା । ଏପର୍ଯ୍ୟନ୍ତ ତାହା ପଢ଼ିବାକୁ ମୁଁ ଫୁରସତ୍ ପାଇନି । ଆଶା, ସପରିବାର କୁଶଳରେ ଥିବେ । ବିଷୁବ ମିଳନକୁ ତ କଟକ ଆସିବେ !

ଆପଣଙ୍କର କାଳିନ୍ଦୀଚରଣ ପାଣିଗ୍ରାହୀ

॥ ୨୯ ॥

ଦେଉଳସାହି, କଟକ
୧୬.୯.୬୪

ପ୍ରିୟ କୃଷ୍ଣବାବୁ,

ଆପଣଙ୍କ ଚିଠି ପାଇଲି । ନାନା କାର୍ଯ୍ୟରେ ବ୍ୟସ୍ତ ଥିବାରୁ ଚିଠି ଦେବାରେ ବିଳମ୍ବ ହେଲା । ପାଲି 'ଧମ୍ମପଦ' ବହି ବଜାରରେ ମିଳୁ ନାହିଁ । ଡ. ତ୍ରିପାଠୀଙ୍କ ପାଖରେ ମଧ୍ୟ ନାହିଁ । ଖଣ୍ଡିଏ ବହିରୁ ପିଲାଙ୍କୁ ନୋଟ୍ ଡାକି କାମ ଚଳାଉଛି । Chowkhamba Series, Varanasi-1 ରୁ ମଗାଇଲେ 'ଧମ୍ମପଦ' ବହି ମିଳିପାରିବ । ରେଭେନ୍ସା କଲେଜ ଲାଇବ୍ରେରୀରେ 'ଧମ୍ମପଦ' ବହି ଅଛି । ସିଦ୍ଧେଶ୍ୱର ବାବୁଙ୍କ ବହି ମୁଁ ଦେଖିନାହିଁ ।

ଷଷ୍ଠପତ୍ରରେ ଓଡ଼ିଆ ସାହିତ୍ୟର ଇତିହାସ-ବିନାୟକ ମିଶ୍ର କୃତ ଥିବାରୁ 'ଓଡ଼ିଆ ସାହିତ୍ୟ ଇତିହାସର ସମାଲୋଚନା'-କରୁଣାକର କର କୃତ ଦିଆଯାଇଛି । ଉଦ୍ଦେଶ୍ୟ ହେଉଛି-ବିନାୟକମିଶ୍ରଙ୍କ(ପୁରୁଣା) ଓଡ଼ିଆ ସାହିତ୍ୟର ଇତିହାସ ବହିରେ କେତେକ ବିଷୟ ଦିଆଯାଇଛି ଯହିଁରେ ଡ. ଆର୍ତ୍ତବଲ୍ଲଭ ମହାନ୍ତି ଓ କରୁଣାକର କର ଏକମତ ନୁହନ୍ତି । ଯଥା- ଦୀନକୃଷ୍ଣ ଦାସ ଦୁଇଜଣ-ଜଣେ ରସକଲ୍ଲୋଳ ଲେଖିଥିଲେ, ଆଉ ଜଣେ ରସବିନୋଦ ଲେଖିଥିଲେ । ରହସ୍ୟମଂଜରୀର ଲେଖକଙ୍କ ନାମ ଦେବଦୁର୍ଲଭ ଦାସ ନୁହେଁ ଇତ୍ୟାଦି । ଡ. କରଙ୍କ 'ଓ: ଇ: ସମାଲୋଚନା'ରେ ସେସବୁ ମତ ଖଣ୍ଡନ କରାଯାଇଛି । ଏହି ସମାଲୋଚନା ବହିଟି ଛୋଟ, ପ୍ରାୟ ୪୦/୫୦ ପୃଷ୍ଠା । ଏ ବହି କେବେ ବିକ୍ରି ହେଉଥିବାର ଜାଣେ ନାହିଁ । ଆର୍ତ୍ତ ବାବୁଙ୍କ ଘରେ ୧୦/୨୦ ଖଣ୍ଡ ଥିବାର ଦେଖିଥିଲି । ବର୍ତ୍ତମାନ ବିନାୟକ ମିଶ୍ରଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ' ପୁରୁଣା ବହି ମିଳୁ ନାହିଁ । ସେ ତାକୁ revise କରି ଲେଖିଛନ୍ତି । ନୂତନ ସଂସ୍କରଣର ପ୍ରକାଶକ ହେଉଛନ୍ତି 'ରାଷ୍ଟ୍ରଭାଷା ପ୍ରେସ୍', ମୂଲ୍ୟ ଟ୪/ ବା ଟା ୪.୫୦ । ସାହିତ୍ୟର ଇତିହାସ ପାଇଁ ବିନାୟକ ମିଶ୍ରଙ୍କ ଓ.ସା. ଇତିହାସ ଓ ସୂର୍ଯ୍ୟନାରାୟଣ ଦାସଙ୍କ ଓ.ସା.ଇତିହାସ ଦୁଇଟିକୁ ମିଳାଇ ପିଲାଙ୍କୁ ନୋଟ୍ ଡାକି ଦେଲେ କାମ ଚଳିବ । ଓଡ଼ିଆ ଭାଷାର ଇତିହାସ ପାଇଁ କେବଳ ଅଛି ବିନାୟକ ମିଶ୍ରଙ୍କର ଖଣ୍ଡିଏ ବହି । ସେ ବହି ଆଦୌ ମିଳୁ ନାହିଁ । କୌଣସିଠାରୁ ଖଣ୍ଡିଏ ପୁରୁଣା ବହି ସଂଗ୍ରହ କରି ପଢ଼ାଇବାକୁ ହେବ ।

ପଢ଼ାଇବା ବିଷୟରେ ଆମ କଲେଜରେ ସେପରି କିଛି ବିଭାଗ କରାଯାଇନାହିଁ । ମୁଁ ବରାବର ସା.ଇତିହାସ ପଢ଼ାଇ ଆସୁଅଛି । Text ବହି ସାରିବାକୁ ପ୍ରାୟ ସମୟ ହୁଏ ନାହିଁ । ସାହିତ୍ୟର ଇତିହାସ ପାଇଁ ଖୁବ୍ କମ୍ ସମୟ ଦେଇଥାଉଁ । ସେଠାରେ ଓଡ଼ିଆ ବିଭାଗରେ ମୋଟ୍‌ରେ କେତେ ଜଣ ଶିକ୍ଷକ ଅଛନ୍ତି ? ପ. ବିନାୟକ ମିଶ୍ର ଏବେ ଏବେ ଆମ ଘରକୁ ଆସିଥିଲେ । ସେ ଓଡ଼ିଆ ଭାଷାର ଇତିହାସ ଖଣ୍ଡିଏ ଲେଖି

ଛପାଇବା ପାଇଁ ଦେଇ ଯାଇଛନ୍ତି ବୋଲି କହିଲେ । ବାହାରିଲେ ଲେଖିବି । ତାଙ୍କ ସାହିତ୍ୟ ଇତିହାସରେ ଆଧୁନିକ ଯୁଗ ନାହିଁ । ତାକୁ ଲେଖିବେ ବୋଲି ଚେଷ୍ଟା କରୁଛନ୍ତି । ଆଜି ତାଙ୍କଠାରୁ ପାଇଥିବା ଏକ ଚିଠିରୁ ଜାଣିଲି । ଆଧୁନିକ ଯୁଗର ଇତିହାସ ପାଇଁ ଉପାଦାନର ଅଭାବ ନାହିଁ । ନିଜେ ନୋଟ୍ କରି ପିଲାଙ୍କୁ ଡାକିବା ଛଡା ଉପାୟ ନାହିଁ ।

ମୋଟ୍ ଉପରେ ବିନାୟକ ମିଶ୍ରଙ୍କ(ପୁରୁଣା) ଓଡ଼ିଆ ସାହିତ୍ୟର ଇତିହାସ ଓ ତାସଙ୍ଗେ ଡା. କରଙ୍କର ସମାଲୋଚନା ଏଦୁଇଟି ଯାକ ଦୁଷ୍ପ୍ରାପ୍ୟ । ବିନାୟକ ମିଶ୍ରଙ୍କର ସଂଶୋଧିତ ସଂସ୍କରଣ ଓ:ସା:ଇତିହାସ ଓ ସୂର୍ଯ୍ୟନାରାୟଣ ଦାସଙ୍କ ଓଡ଼ିଆ ସାହିତ୍ୟ ପରିଚୟ (ପ୍ରକାଶକ-ଗ୍ରନ୍ଥମନ୍ଦିର, କଟକ) ଏବହି ଦୁଇଖଣ୍ଡି ସାହାଯ୍ୟରେ ପଢ଼ାଇଲେ ଯଥେଷ୍ଟ ।

ପ୍ରଗତି ପବ୍ଲିଶର୍ସ, କଟକଙ୍କର ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣି ପଢ଼ାଉଅଛନ୍ତି । ପ୍ରାଚୀ ବହି ମିଳୁ ନାହିଁ । ଲାବଣ୍ୟବତୀ(ପ୍ରାଚୀ) ମଧ ମିଳିବା କଠିନ । ଅଳଙ୍କାର ପାଇଁ ମୋର ଖଣ୍ଡିଏ ବହି ଅଛି(ଅଳଙ୍କାର ମଞ୍ଜରୀ-ଗ୍ରନ୍ଥମନ୍ଦିର, କଟକ) । ରସକଲ୍ଲୋଳ ଓ ବିଦଗ୍ଧ(ପ୍ରଗତି ପବ୍ଲିସର୍ସ) ମଧ ମୋର ଲେଖା । ଏହିସବୁ ବହିର ବିକ୍ରି ବେଶୀ ନଥିବାରୁ ପ୍ରକାଶକମାନେ ଛପାଇବାକୁ କୁଣ୍ଠିତ । ପାଲି ଧମ୍ମପଦ ଛପାଇବାକୁ ଭାବିଛି । ତେବେ ସେ ଏବର୍ଷର କାମ ନୁହେଁ । ଆବଶ୍ୟକ ହେଲେ ଚିଠି ଦେଉଥିବେ । ଆଶାକରେଁ ସେଠାରେ ସବୁ ମଙ୍ଗଳ ।

ଆପଣଙ୍କର ଶ୍ରୀଧର ଦାସ

॥ ୩୦ ॥

**THE NABA-PATRA**
UDITNAGAR, ROURKELA-1

୧୪.୭.୬୫

ପ୍ରିୟ କୃଷ୍ଣବାବୁ,

ଆଜି ଡାକରେ 'ନବପତ୍ର'ର ନୂତନ ସଂଖ୍ୟା ପଠାଇଲି । ଏହାର ସଂପାଦକୀୟ ସଂପର୍କରେ ଆପଣଙ୍କଠାରୁ ବିଶେଷ ମତାମତ ଚାହୁଁଛି । ଏ ସଂଖ୍ୟା ନିମନ୍ତେ ଲେଖାପାଇଁ ଅନୁରୋଧ କରି ଚିଠି ଦେଇଥିଲି । ଆପଣ ସେ ଚିଠି ପାଇଲେ କି ନାହିଁ, ମୁଁ ଜାଣି ପାରଲି ନାହିଁ । ତେବେ ସେ ଯାହାହେଉ, ପୂଜା ବିଶେଷାଙ୍କ ନିମନ୍ତେ ଆପଣଙ୍କ ବଳିଷ୍ଠ ଲେଖନୀରୁ ଗୋଟିଏ ଗଳ୍ପ କିମ୍ବା ଆଲୋଚନା ଦରକାର । ପୂଜା ବିଶେଷାଙ୍କର ଲେଖାଗୁଡ଼ିକ ଅଗଷ୍ଟ ୭ ତାରିଖ ବେଳକୁ ଛାପାଖାନାକୁ ପଠାଇ ଦିଆଯିବ । ତେଣୁ ଆପଣଙ୍କ ଲେଖାଟି ଯଥାସମ୍ଭବ ଅଗଷ୍ଟ ପହିଲା ପୂର୍ବରୁ ଆମର ହସ୍ତଗତ ହେବା ଦରକାର । ଆପଣଙ୍କ ସହଯୋଗ, ସହାୟତା ଏବଂ ସୁଚିନ୍ତିତ ଉପଦେଶକୁ ନବପତ୍ର ସବୁବେଳେ ଅପେକ୍ଷା କରି ରହିଛି । ଆଶା କରେ ଆପଣ ନିରାଶ କରିବେ ନାହିଁ । ଇତି ।

ଆପଣଙ୍କର ସ୍ନେହାଧୀନ ରଜନୀକାନ୍ତ ଦାସ

।। ୩୧ ।।

Bibhudatta Mishra, M.A.
Orissa Educational Service

ଯାଜପୁର କଲେଜ
ତା ୬.୮.୬୫

ମାନନୀୟ କୃଷ୍ଣବାବୁ,

ନମସ୍କାର ନେବେ । ସୁଧାଂଶୁବାବୁ, କମଳାକାନ୍ତ ବାବୁ, ଅକ୍ଷୟବାବୁ, ମନମୋହନ ବାବୁ ଓ ଅନ୍ୟାନ୍ୟ ବଂଧୁମାନଙ୍କୁ ମୋର ସଶ୍ରଦ୍ଧ ନମସ୍କାର ଜଣାଇଦେବେ । ଆପଣଙ୍କର ସଦୟ ପତ୍ର ପାଇ ବିଶେଷ ଆନନ୍ଦିତ ହେଲି ।

କିନ୍ତୁ ଆପଣଙ୍କର ଅନୁରୋଧ ! ସେ ଯେ ଏକ ବିଷମ ସମସ୍ୟା ! ଏ ବର୍ଷ ଏହି କଲେଜର ଦ୍ୱିତୀୟ ବର୍ଷ ଉପାଧି ଶ୍ରେଣୀରେ ମାତ୍ର ୨୧ଟି ଛାତ୍ର, ଏବଂ ଅତିରିକ୍ତ ଓଡ଼ିଆରେ ଜମା ୩ ଗୋଟି । ବହୁ ଚେଷ୍ଟା ପରେ ଓଡ଼ିଆ ବିଭାଗକୁ ଆଉ ୪ ଟି ଛାତ୍ରଙ୍କୁ ଆଣିବାକୁ ସକ୍ଷମ ହେବାକୁ ଯାଉଛି । ଏଠାର ଅବସ୍ଥା ଏଇମିତି । xxx ଆଉ ଏଠାରେ ଓଡ଼ିଆ ଅନର୍ସ ! ଲଙ୍କାରେ ହରିଣଣ୍ଡ ଯାହା ସେୟା, ଶିକ୍ଷାବିଭାଗ ଉଚ୍ଚ- କର୍ତ୍ତୃପକ୍ଷଙ୍କ ମନୋଭାବ ଆପଣ ଜାଣନ୍ତି । ପୁରୀ, ସମ୍ବଲପୁର, ଭୁବନେଶ୍ୱର ପ୍ରଭୃତି କଲେଜରେ ବି.ଏ. ଶ୍ରେଣୀର ଓଡ଼ିଆ ଅତିରିକ୍ତ ଛାତ୍ର ସଂଖ୍ୟା ଯଥେଷ୍ଟ ବେଶୀ ଥିଲେ ସୁଦ୍ଧା ସେଠାରେ ଅନର୍ସ ଖୋଲିବାକୁ ସେମାନେ ପରାଙ୍ମୁଖ । ଆଉ ୭ଟି ପିଲାଙ୍କୁ ନେଇ କେଉଁ ସାହସରେ ମୁଁ ଅନର୍ସ ପାଇଁ ଆନ୍ଦୋଳନ କରିବି ? କରନ୍ତି, ଯଦି ଆମ ବିଭାଗର ଉପରମୁଣ୍ଡ ଟାଣ ଥାଆନ୍ତା ।

ଗୋଟିଏ କଥା ଲେଖୁଛି । ଏ ବର୍ଷ ଓଡ଼ିଆ ଏମ୍.ଏ. ପାଇଁ ୧୦୨ ଜଣ ଛାତ୍ର ଆବେଦନ କରିଛନ୍ତି । କିନ୍ତୁ ସ୍ଥାନ ଜମା ୨୪ଟି । ଅନ୍ୟ ସବୁ ବିଭାଗ ବହୁ ପଛରେ ହୋଇ, ତହିଁରେ ପ୍ରତିବର୍ଷ ସ୍ଥାନ ବୃଦ୍ଧି ପାଉଥିଲେ ହେଁ ବିଶ୍ୱବିଦ୍ୟାଳୟ ଆରମ୍ଭରୁ ପ୍ରତିଷ୍ଠିତ ଓଡ଼ିଆ ଏମ୍.ଏ.ରେ ସ୍ଥାନସଂଖ୍ୟା ଯଥା ପୂର୍ବଂ ତଥା ପରଂ । ଏଇ ସଂପର୍କରେ ୪/୫ଦିନ ତଳେ ରେଭେନ୍ସା କଲେଜର ଓଡ଼ିଆ ବିଭାଗୀୟ ମୁଖ୍ୟଙ୍କ ପ୍ରକୋଷ୍ଠରେ ଆଲୋଚନା ବେଳେ ମୁଁ ଉପସ୍ଥିତ ଥିଲି । ବିଭାଗୀୟ ମୁଖ୍ୟ ଯେପ୍ରକାର ନିଷ୍କ୍ରିୟତା, ଉଦାସୀନତା ଓ ଉଦାରତା ଦେଖାଇଲେ, ତାହା ଦେଖି ମନେ ହେଲା, ଏ ବିଭାଗର ଭାଗ୍ୟବିଧାତା କେତେ ହତଭାଗ୍ୟ ସତେ ?

ସେଇଠି ଅନର୍ସର ପ୍ରଶ୍ନ ଉଠିଥିଲା । ମୁଖ୍ୟ କହିଲେ, "ଅନର୍ସ ଖୋଲିଲେ କେତେ ନ ଖୋଲିଲେ କେତେ ? ମୁଁ ତ ପ୍ରଫେସର ହେଲିଣି, ଆଉ କିଛିଦିନ ପରେ ଅବସର ନେବି । ଆପଣମାନେ ଚେଷ୍ଟା କରନ୍ତୁ, ପ୍ରଥମଶ୍ରେଣୀ ଅଫିସର ହେବେ ।" ହାୟ ! ପ୍ରଥମ ଶ୍ରେଣୀ ଅଫିସର୍ ହେବା ଲାଳସାରେ ଆମେ ଓଡ଼ିଆ ଅନର୍ସ ଖୋଲିବାକୁ ଚାହୁଁଛୁ ! ଉପରଲୋକ ଏଇୟା ବୁଝୁଛନ୍ତି !

କାହାକୁ କହିବା, କହି ହେଉନି, କି ରହି ହେଉନି । ତଥାପି ଏଠାରେ ଓଡ଼ିଆରେ ଅନର୍ସ ଖୋଲିବାକୁ ମୁଁ ଗଲାବର୍ଷ ପ୍ରସ୍ତାବ ଦେଇଥିଲି । ଏବର୍ଷ ବି ଦେଉଛି, ଦେଖାଯାଉ ।

କିନ୍ତୁ ଆପଣଙ୍କ କଲେଜର ଅନର୍ସ ବିଭାଗରେ ଛାତ୍ରବୃତ୍ତି ପାଇଁ ମୋର ଉଦ୍ୟମ ଅବ୍ୟାହତ ରହିବ । ଆପଣଙ୍କୁ ଗୋଟିଏ ଖବର ପଚାରିବି । ବିନୀତ ଅନୁରୋଧ ଶୀଘ୍ର ଉତ୍ତର ଦେବେ ।

ମୋର ଗୋଟିଏ ଭଉଣୀ ଓଡ଼ିଆରେ ଏମ୍.ଏ. ପଢ଼ିବାକୁ ଚାହେଁ । ଯାହା ପରିସ୍ଥିତି ଦେଖୁଛି ସେ ରେଭେନ୍ସାରେ ସ୍ଥାନ ପାଇବ ନାହିଁ । ଭାବୁଛି ତାକୁ ଶାନ୍ତିନିକେତନ ପଠାଇବି । ମୁଁ ୨ ଥର ଶାନ୍ତିନିକେତନ ଯାଇଥିଲେ ହେଁ ସେଠା ସଂପର୍କରେ ମୋର ବିଶେଷ ଅନୁଭୂତି ନଥିବାରୁ ଆପଣଙ୍କୁ ଲେଖୁଛି । କାରଣ ଆପଣ ସେଠାର ଛାତ୍ର ଓ ଭଦ୍ରକରେ ବେଳା ଦେବୀ ଓ କମଳାକାନ୍ତ ବାବୁ ପ୍ରଭୃତି ମଧ ଅଛନ୍ତି । ଟିକିଏ ଦୟାକରି ଉତ୍ତର ଦେବେ ।

ଶାନ୍ତିନିକେତନରେ ନାମ ଲେଖାଇବାର ଦିନ ଚାଲିଲାଣି ନା ଅଛି ? ଯଦି ଅଛି ତା ହେଲେ କେତେ ପର୍ଯ୍ୟନ୍ତ ? ସେଠାରେ ସ୍ଥାନଟିଏ ମିଳିବ କି ? ଜଣେ ଛାତ୍ରୀର ମାସିକ ଖର୍ଚ୍ଚ ସେଠାରେ କେତେ ପଡ଼ିବ? ଆଉ ଯଦି କିଛି ବିଶେଷ ଖବର ଆପଣ ଜାଣିଥାନ୍ତି ବା ଜଣାଇବା ଉଚିତ୍ ବୋଲି ଭାବନ୍ତି, ଲେଖିବେ ।

ଆପଣ କୁଶଳରେ ଥିବେ । ଆମ କଲେଜର ମୁଖପତ୍ର ଦେଖିଲେଣି କି? ତାହା ଆପଣଙ୍କ କଲେଜକୁ ପଠାହୋଇଛି । ସଂପାଦକୀୟ ସଂପର୍କରେ ଆପଣଙ୍କର ମତାମତ ଜାଣିଲେ ଖୁସି ହେବି ।

ଆପଣଙ୍କର ସ୍ନେହଧୀନ ବିଭୁଦତ୍ତ
(ବିଭୁଦତ୍ତ ମିଶ୍ର)

## ।। ୩୨ ।।

**The NABA-PATRA**

UDITNAGAR, ROURAKELA-1

୨୨.୮.୬୫

ପ୍ରିୟ କୃଷ୍ଣବାବୁ,

ଲେଖା ପାଇଲି । ଏହି ଲେଖା ଆଗରୁ ଆସିଥିଲେ ମୁଁ ତାକୁ ପ୍ରଥମେ ସ୍ଥାନ ଦେଇ ଆଲୋଚନା ଆହ୍ୱାନ କରିଥାନ୍ତି । ସେ ଯାହାହେଉ ବର୍ତ୍ତମାନ ଯେଉଁଠି ଜାଗାଅଛି ସେଇଠାରେ ଦେଖି ଆଲୋଚନା ଆହ୍ୱାନ କରୁଛି । ଓଡ଼ିଆ ଭାଷାରେ ସାମୂହିକ ଉନ୍ନତି ସଂପର୍କରେ ପ୍ରବଳ ଆଲୋଚନା ଦରକାର ।

ଆପଣଙ୍କ ଛାତ୍ରୀର ଲେଖାଟି ମଧ୍ୟ ଛପାଇ ଦିଆଯିବ । ସୂର୍ଯ୍ୟକାନ୍ତ ବର୍ତ୍ତମାନ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟରେ ଅଛି । ତାର ବାଣୀବିହାର ଠିକଣା ଆପଣ ଜାଣିଥିବେ । ପୂଜାସଂଖ୍ୟାର ଛପାଛପି କାର୍ଯ୍ୟ ଚାଲିଛି । ଏଥର ୧୫୦ ପୃଷ୍ଠାର ବହି ବାହାରିବ । ନବପତ୍ରକୁ ବଳିଷ୍ଠ କରିବା ଲାଗି ଆପଣ ସବୁବେଳେ ଆମକୁ ସହାଯ୍ୟ କରନ୍ତୁ । ଆଶା କୁଶଳରେ ଥିବେ ।

ଆପଣଙ୍କର ରଜନୀକାନ୍ତ ଦାସ

॥ ୩୩ ॥

୨୬.୧୧.୬୫





QUARTERLY ORIYA MAGAZINE OF LITERATURE ART AND CULTURE
THE NABA-PATRA
UDITNAGAR
ROURKELA-1

ପ୍ରିୟ କୃଷ୍ଣବାବୁ,

ଲେଖା ଓ ଚିଠି ନିମନ୍ତେ ଧନ୍ୟବାଦ । ଗଳ୍ପ ପଢ଼ିଲି । ଶେଷଟା abrupt ହୋଇଗଲା ଭଳିଆ ଲାଗୁଛି । ଦୁର୍ଘଟଣା ପୂର୍ବରୁ ଡାଏରୀ ଲେଖି ଶୋଇବା ଓ ପରେ ଦୁର୍ଘଟଣା ଘଟିଥିବା ଯାରି ଭିତରେ ଆଉରି କିଛି ଘଟଣା ଭର୍ତ୍ତି କରିବା ଉଚିତ ଥିଲା । ଅବଶ୍ୟ ଆପଣ କ'ଣ ଭାବିଛନ୍ତି, ମୁଁ ଜାଣି ପାରୁନାହିଁ । ଶେଷ ଆଡକୁ ଟିକିଏ ତରବରିଆ କରିଦେଲେ । ଆଉ ଗୋଟିଏ ଦୁଇଟି ବାକ୍ୟ ଯୋଡିବାକୁ ଚେଷ୍ଟା କରି ଦେଖିବି । ନଚେତ୍ ଗଳ୍ପଟିକୁ ସେହିପରି ଛପାଇ ଦେବି । ଯଦି ଆପଣ ଆଉ କିଛି ଚିନ୍ତା କରିପାରିବେ ମୋତେ ଜଣାଇଲେ ମୁଁ ସେତକ ଯୋଡି ଦେବି । ଡିସେମ୍ବର ୫ ତାରିଖ ପୂର୍ବରୁ ଆପଣ ଆଉ କିଛି ଚିନ୍ତା କରି ମୋତେ ଜଣାଇ ପାରନ୍ତି । ମୁଁ ଯଦିକିଛି ଯୋଗାଯୋଗ୍ କରି ପାରିବି ଆପଣଙ୍କୁ ମଧ୍ୟ ଜଣାଇଦେବି ଗଳ୍ପକୁ ଛାପାଖାନାକୁ ପଠାଇବା ପୂର୍ବରୁ ।

ଆପଣଙ୍କ ନାମ ପୂର୍ବରେ ଅଧ୍ୟାପକ ବା ଡକ୍ଟର ଯୋଡିବାରେ ଆମର ପତ୍ରିକାର ପ୍ରଚାର ଛଡା ଆଉ କିଛି ବୋଧହୁଏ ଆବଶ୍ୟକତା ନଥିଲା । ଓଡ଼ିଶାରେ ପତ୍ରପତ୍ରିକାମାନେ ସେଇପରି କରିଥାନ୍ତି । କାରଣ ଏଠି ପାଠକ ଲେଖା ଅପେକ୍ଷା ଲେଖକର ନାମକୁ ବଡ କରି ଧରନ୍ତି । ଏଥର କେତେକ ଲେଖା ସେହିପରି ଛପାଇ ଦିଆଯାଇ ଥିବାରୁ ଏସଂପର୍କରେ ଗୋଟାଏ ନୂଆ ସିଦ୍ଧାନ୍ତ କରିବାର ସୁବିଧା ନାହିଁ । ଅନ୍ୟ ସଂଖ୍ୟାକୁ ସମସ୍ତଙ୍କ ନାମ ମୂଳରୁ ଉପାଧି ବାଢ଼ି ଦେବାକୁ ଚେଷ୍ଟା କରିବି । କିନ୍ତୁ ଆପଣ ସିନା ଏପରି କହୁଛନ୍ତି, ଆଉରି କେହି କେହି ଥିବେ ଯେଉଁମାନେ ଉପାଧି ଛପାଇବା ସପକ୍ଷରେ ।

ତଥାପି ଅନ୍ୟ ଥରକୁ ଆପଣଙ୍କର ପ୍ରସ୍ତାବ କାର୍ଯ୍ୟକାରୀ କରାଯିବ । ଆଶା ଇତି ମଧ୍ୟରେ ସୁସ୍ଥ ହୋଇଯିବେଣି । ଇତି ।

ଆପଣଙ୍କର ରଜନୀକାନ୍ତ ଦାସ

॥ ୩୪ ॥

୭.୫.୬୬

ଭୁବନେଶ୍ୱର

ସ୍ନେହର କୃଷ୍ଣ

ତମ ଚିଠି ପାଇଲି । ସଂପାଦକୀୟରେ ଭୁଲ୍ ରହିଯାଇଛି, ମୁଦ୍ରାଗତ । ମୁଁ ନିରୁପାୟ । Proof ନ ପଠାଇବାକୁ ରାମବାବୁ ଯେପରି ବଦ୍ଧପରିକର । ତଗର ପାଇଁ ମୁଁ ବଡ ଚିନ୍ତିତ ।

ଖରାରେ ମୁଣ୍ଡ ବିନ୍ଧୁଛି । ଭଦ୍ରକ ଗଲେ ତମ ଘରେ ରହିବା ଛଡା ଅନ୍ୟତ୍ର ରହିହେବ ନାହିଁ-ଖରାଦିନେ ।

ଶରୀର ମୋତେ ଅକର୍ମଣ୍ୟ କରିଦେଉଛି । ତମେ ସଂପାଦକୀୟ ସଂକଳନ କରଓ Publisher ଠିକ୍ କରିଦିଅ । ମୁଁ ଖୁସି ହେବି ।

ମୋ ଲେଖା ସଂଗ୍ରହର ଦାୟିତ୍ୱ ତମେ ନନେଲେ - ମୁ ନିରୁପାୟ । 'ଭୁଲ' ତମ ସେଠି ନାହିଁ ବୋଲି ଶୁଣିଲି । ନବଭାରତରୁ ସଂଗୃହୀତ ହୋଇପାରେ । ସେଠି ନବଭାରତ ଅଛି କି ?

ବର୍ଷାଗମ ନହେଲେ ମୁଁ ଭଦ୍ରକ ଯାଉ ନାହିଁ-

ନିତେଇ ଭାଇ (ନିତ୍ୟାନନ୍ଦ ମହାପାତ୍ର)

॥ ୩୫ ॥

ଭୁବନେଶ୍ୱର

୧୨.୫.୬୬

କଲ୍ୟାଣୀୟ କୃଷ୍ଣ,

ତମ ଚିଠି ପାଇଲି । ଭଦ୍ରକ କଲେଜରେ ଛିନ୍ନପତ୍ର 'ଭୁଲ' ଅଛି ବୋଲି ତମଠୁ ଜାଣିଥିଲି । ତମେ ଏଠାରେ ଥିଲାବେଳେ ସେ ପୁସ୍ତକ ଆଣିବାକୁ ଉଦ୍ୟମ କଲି । ଶ୍ରୀଯୁକ୍ତ କମଳାକାନ୍ତ ଲେଙ୍କା ବୋଲି ଜଣେ ଅଧ୍ୟାପକ ତମ କଲେଜରେ ଅଛନ୍ତି ଜାଣିଥିବ । ପୁସ୍ତକଟି ସେ ଦେଇପାରିବେ ନାହିଁ ବୋଲି ଜଣାଇଲେ । ମୁଁ ସମୁଦାୟ ପୁସ୍ତକଟି ଦରକାର କରେ ନାହିଁ-ମାତ୍ର ୮ଟି ପୃଷ୍ଠା ଦରକାର କରେ ବୋଲି କହିବାରୁ ସେ ତାଙ୍କର ସ୍ୱଭାବଗତ ଭକ୍ତି ବିନମ୍ର ସ୍ୱରରେ ଆଠୋଟି ପୃଷ୍ଠା ଉତାରି ଦେବାର ଦାୟିତ୍ୱ ନେଇ ପ୍ରତିଶ୍ରୁତି ଦେଲେ । ମୁଁ ଖଣ୍ଡିଏ 'ଭୁଲ୍' ବହି ପାଇ ପ୍ରକାଶକଙ୍କୁ ଦେଇଛି । ସେଥିରେ ଗୋଟାଏ ଫର୍ମା ବା ଆଠପୃଷ୍ଠା ନାହିଁ । ପ୍ରକାଶକଙ୍କୁ କହିବାରୁ ସେ କମଳାକାନ୍ତ ବାବୁଙ୍କୁ ଅଭାବ

ଥିବା ୮ପୃଷ୍ଠା ବିଷୟ ଜଣାଇଦେଲେ । ପରିଶେଷରେ କମଳାକାନ୍ତ ବାବୁ ଜଣାଇଲେ ଯେ ସେ ପୁସ୍ତକ କୀଟଦ୍ରଷ୍ଟ ନଷ୍ଟଭ୍ରଷ୍ଟ ଚ ମଥିତ ।

ମୁଁ ପୁଣି ଥରେ ପ୍ରକାଶକଙ୍କୁ ଲେଖୁଛି ତମ ପାଖକୁ ଚିଠି ଦେବେ । ତମର ଛୁଟି ଆଉ କେତେ ଦିନ ? ଗରମରେ ମୁମୂର୍ଷୁ ପ୍ରାୟ-

ତମର ନିତେଇ ଭାଇ (ନିତ୍ୟାନନ୍ଦ ମହାପାତ୍ର)

॥ ୩୬ ॥

ରାଜେନ୍ଦ୍ର କଲେଜ

୧୬.୭.୬୬

ପୂଜନୀୟେଷୁ,

ପ୍ରଣାମ ଜାଣିବେ । ଆପଣଙ୍କ ଚିଠି ଆଜି ଡାକରୁ ମିଳିଲା । ଆପଣଙ୍କ ବହିଟିର ବିଜ୍ଞାପନ ପଢ଼ିଥିଲି । ମୁଁ ଯେତେବେଳେ କଟକ ଛାଡିଲି-ସେତେବେଳେ ସେଇ ବହିଟି ପ୍ରକାଶ ପାଇ ନଥିଲା । ତେଣୁ ସାଥିରେ ଆଣି ପାରିଲି ନାହିଁ । ଏଠାରେ ପହଁଚି ସ୍ଥାନୀୟ ପୁସ୍ତକ ବିକ୍ରେତାଙ୍କୁ କହିଛି- ସେମାନେ ଆଣିବେ । ସମାଜ ବିଶେଷାଂକରୁ 'ଲେଖକଙ୍କ ଲାଗି ଲାଇସେନ୍ସ' ପ୍ରବନ୍ଧଟି ପଢ଼ିଲି । ଏକ ଲଘୁ ବାତାବରଣ ଭିତରେ ପ୍ରବନ୍ଧଟି ଶିଳ୍ପୀ ସଂପ୍ରଦାୟର ବ୍ୟକ୍ତିଗତ ଇତିହାସ ଯୋଗାଇ ପାରିଛି-ବିଶ୍ୱ ତଥା ଦେଶୀୟ ସାହିତ୍ୟିକମାନଙ୍କର ସାଧନା କ୍ଷେତ୍ରରେ ବ୍ୟକ୍ତିଗତ ବାଧାବନ୍ଧନ ତଥା ରାଷ୍ଟ୍ରର ଭୂମିକା ସଂପର୍କରେ ଏକ ଧାରଣା ପାଠକ ପ୍ରବନ୍ଧଟିରୁ ପାଇପାରିବ । ପ୍ରବନ୍ଧଟିକୁ ରମ୍ୟରଚନା ନ କହି ରିପୋର୍ତାଜ୍ ଆଖ୍ୟା ଦିଆଯାଇପାରେ ।

ଆପଣଙ୍କର 'ମୋଗଲ ତାମସା' ବହିଟି ପ୍ରକାଶ ପାଇସାରିଥିବ-ଦୟାକରି ପଠାଇବେ । 'ମୋଗଲ ତାମସା' ସଂପର୍କରେ ଭାଷଣ ବେତାରରୁ ଶୁଣିଥିଲି । ଖୁବ୍ ସଂକ୍ଷିପ୍ତ ହେଲା, ବହିଟି ପଢ଼ିବା ପାଇଁ ପ୍ରବଳ ଇଚ୍ଛା - ପଠାଇବେ । ଏ ବର୍ଷର ପାଠ୍ୟକ୍ରମରେ ପରିବର୍ତ୍ତନ ହେଉଛି- ଏମ. ଆଇ.ଏଲ. ବହି ଆପଣମାନେ ପାଇଲେଣି କି? ଆଶା କରେ ସପରିବାରେ କୁଶଳରେ ଥିବେ । ଆପଣଙ୍କ ଖବର ଆଶାରେ । ॥ ଇତି ॥

ସ୍ନେହାଧୀନ କ୍ଷେତ୍ରବାସୀ ନାୟକ

॥ ୩୭ ॥

ବଲାଙ୍ଗିର

୧୪.୮.୬୬

ପୂଜନୀୟେଷୁ,

ପ୍ରଣତି । ଆପଣଙ୍କ ଚିଠି ପାଇଛି । 'ଅଶ୍ଳୀଳତା ବିପକ୍ଷରେ' ବହି ଖଣ୍ଡିକ ମିଳିଲା । କଟକରୁ ଗୋଟିଏ ସ୍ଥାନୀୟ ପୁସ୍ତକ ଦୋକାନ ମାଧ୍ୟମରେ କେତେ ଖଣ୍ଡ ବହି ମଗାଇ

ଆଣିଛି । ଏବର୍ଷର ନୂଆବହି ଭିତରୁ, ଆଉ ଦୁଇଖଣ୍ଡ 'କାବ୍ୟ ଓ କଳାକାର'- ଚିନ୍ତାମଣି ବେହେରା ଓ 'ନୂତନ ସମୀକ୍ଷା' ତାରିଣୀ ଦାସ- ଏଗୁଡ଼ିକ ମଧ ଖୁବ୍ ଭଲ ହୋଇଛି । ପାଇ ନଥିଲେ, ଦେଖିବେ । 'ନୂତନ ସମୀକ୍ଷା' ସେମିତି କିଛି ନୁହେଁ । ଆପଣଙ୍କ ବହିର ଅନେକ ପ୍ରବନ୍ଧ ମୁଁ ଆଗରୁ ପଢ଼ିଥିଲି । ଶେଷ ପ୍ରବନ୍ଧଟି ମଧ- 'ଅଶ୍ଳୀଳତା' ସଂପର୍କରେ ଲିଖିତ ପ୍ରବନ୍ଧ ଖୁବ୍ ଭଲ ହୋଇଛି । ଆଲୋଚନା ଓ ସଜ୍ଞାକରଣରେ ଅନେକ କିଛି ନୂତନତାର ସୂଚନା ଦିଏ । ଯାହ ହେଉ, 'ଶତରୂପା' ପାଇଁ ହୁଏତ ଏଇ ବହିଟିର ସୃଷ୍ଟି । ଧନ୍ୟ ଶତରୂପା ! ଧନ୍ୟ ସେ 'ବେଦୀ' !

ଅନ୍ୟାନ୍ୟ ପ୍ରବନ୍ଧ ସଂପର୍କରେ ମୁଁ ବା ଆଉ କଣ ମନ୍ତବ୍ୟ ଦେବି ! ତେବେ କୀଚକ ବଧ ସଂପର୍କରେ ଆଲୋଚନା ଖୁବ୍ ସଂକୀର୍ଣ୍ଣ ହୋଇଗଲା । କାନ୍ତକବି ଉପରେ ଲିଖିତ ପ୍ରବନ୍ଧ ବେଶ୍ ତୁଳନାତ୍ମକ । ତେବେ ସାର୍ 'ପ୍ରଗତି ସାହିତ୍ୟ'ର ଗୌରବ ଏଇ ନୂତନ ପ୍ରକାଶିତ ବହିଟିରୁ ମିଳିବ କି ନା ସନ୍ଦେହ । ଆପଣଙ୍କ ମତାମତ ଜଣାଇବେ । ମୁଁ ଯଥା ସୁଖେ ଅଛି । ଲେଖାଲେଖି ଚାଲିଛି- କିଛି ହେଇଗଲା ପରେ ପ୍ରକାଶନ ପ୍ରତି ଦୃଷ୍ଟି ଦେବା- 'ମୋଗଲ ତାମସା' ପଠାଇବେ । ଅପୂର୍ବ ରାୟଙ୍କୁ କହି ମୋ ପାଇଁ ସେମାନଙ୍କ ପ୍ରକାଶିତ ବହିଟି ପଠାଇ ପାରିଲେ ଭଲ ହୁଅନ୍ତା । ଆଶା ଭଲରେ ଥିବେ । ଇତି ।

କ୍ଷେତ୍ରବାସୀ ନାୟକ

॥ ୩୮ ॥

ସାଗରିକା, କଟକ-୧

୯.୯.୬୬

ମହାଶୟ !

ଆପଣଙ୍କର ଲେଖାଟି ଯଥା ସମୟରେ ପାଇଲି । ଅନୁଷ୍ଠାନ ତରଫରୁ ଆପଣଙ୍କୁ ପ୍ରଥମେ କୃତଜ୍ଞତା ଜ୍ଞାପନ କରୁଛି । ଗତବର୍ଷ ଦୁଇଦିନ(୧୦/୧୧ ଅକ୍ଟୋବର ୧୯୬୫) ବହୁ ଆଡମ୍ବର ସହକାରେ ପାଣିଙ୍କର ଜୟନ୍ତୀ ଉତ୍ସବ କୋଠପଦାଠାରେ ପାଳିତ ହୋଇଥିଲା । କାଳିବାବୁ, ସୁରେନ୍ଦ୍ର ମହାନ୍ତି, ଶିକ୍ଷାମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତି ଏହି ଉତ୍ସବକୁ ଯାଇଥିଲେ । ବୈଷ୍ଣବ ପାଣିଙ୍କର କେତୋଟି ଗୀତିନାଟ୍ୟ ମଞ୍ଚସ୍ଥ କରାଯାଇଥିଲା । ସର୍ବମୋଟ ସେ ଉତ୍ସବରେ ୧୨ଶହ ଟଙ୍କା ଖର୍ଚ୍ଚ ହୋଇଥିଲା ବୋଲି ଶୁଣାଯାଏ । ପାଣି ଜୟନ୍ତୀ ଉତ୍ସବରେ ମୁଁ ଜଣେ ଉଦ୍ୟୋକ୍ତା ତଥା କମିଟିର ସଭ୍ୟ ହୋଇ ମଧ୍ୟ ଖର୍ଚ୍ଚର ହିସାବ ଜାଣି ପାରିଲି ନାହିଁ । ଏଥରକ ଜୟନ୍ତୀ ଉତ୍ସବ ନିକଟ ହୋଇ ଆସିଲାଣି- କିପ୍ରକାର ପାଳିତ ହେବ-କି ନାହିଁ-ଭଗବାନ ଜାଣନ୍ତି । ଗତ ବର୍ଷ ଏତେ କଥା ହେଲା, ସ୍ମରଣିକା ବାହାରିଲା ନାହିଁ । ମୁଁ ଯେତେ କହିଲି- ହବ, ହବ କହି ରଖିଦେଲେ- ତେଣୁ ଏବର୍ଷ ମୋର ଏହି ଅନୁଷ୍ଠାନ ତରଫରୁ ସ୍ମରଣିକା ବାହାର କରୁଛି । xxx xxx

ସାର୍, ଆପଣଙ୍କର ଥିସିସ୍ କେବେ ପ୍ରକାଶ ପାଉଛି ? ଆମ ପରୀକ୍ଷା (ମେ ଶେଷ ସପ୍ତାହ ୧୯୬୭) ପୂର୍ବରୁ ବାହାରିବ ନାହିଁ ? ଆମର ବହୁତ ଦରକାରରେ ଆସନ୍ତା ।

ପଢ଼ାପଢ଼ି ପାଇଁ ଚିନ୍ତା-ପୁଣି ଭୟ ବେଶି ଲାଗୁଛି-ଆମ ଏଠିକାର ଓଡ଼ିଆ ବିଭାଗର ପରିସ୍ଥିତି ଲକ୍ଷ୍ୟ କରି । ମୋର ଆରମ୍ଭରୁ ଓଡ଼ିଆ ବିଷୟ ନଥିଲା । Economicsରେ ନାମ ଲେଖାଇ-ହଠାତ୍ ଗୋଟେ ଖିଆଲ କହିଲେ ଠିକ୍ ହେବ ନାହିଁ- ମୋହରେ ଓଡ଼ିଆକୁ ଆସିଲି-କିନ୍ତୁ ବର୍ତ୍ତମାନ ହତାଶ ଲାଗୁଛି, ପାଠ ପଢ଼ିବି-ନା ମୋର ପୂଜ୍ୟ ଅଧ୍ୟାପକମାନଙ୍କୁ ଅନୁଶୀଳନ କରିବି !

ଛାଡନ୍ତୁ-ଅଯଥା କଥାଗୁଡ଼ିକ ଲେଖିବସିଲି, କ୍ଷମା ଦେବେ ।

xxx xxx xxx

ମୋର ବିନମ୍ର ପ୍ରଣାମ ଗ୍ରହଣ କରିବେ । ଇତି ।

ଆପଣଙ୍କର ସ୍ନେହାଧୀନ
ମତଲୁବ
(ସେକ୍ ମତଲୁବ୍ ଅଲି)

## ॥ ୩୯ ॥

ନରଣପୁର
୨୮.୯.୬୬

ପ୍ରିୟ ମହାଶୟ,

ମୋର ହୃଦୟଭରା ନମସ୍କାର ନେବେ । ଆମର ଏସ୍‌ପିଙ୍କ ଭାଷାରେ 'ଆପଣ ମୋତେ ଜାଣନ୍ତିନି, କିନ୍ତୁ ମୁଁ ଆପଣଙ୍କୁ ଜାଣେ ।' ମାନେ କେଉଁଝରରେ ଆପଣଙ୍କ ଭାଷଣ ତଥା କବିତା ଶୁଣିବାକୁ ସୁଯୋଗ ପାଇଥିଲି । ୨ୟ ଦିବସରେ ଆପଣଙ୍କର ସେହି ୫ ଧାଡିଆ କବିତା ବେଶ୍ ଚିତ୍ତାକର୍ଷକ ହୋଇଥିଲା ।

ତେଣୁ ମୋର ସନମ୍ର ଅନୁରୋଧ ଆପଣ ଯେଉଁ କବିତାଗୁଡ଼ିକ ଆବୃତ୍ତି କରିଥିଲେ ସେଗୁଡ଼ିକୁ ଫେରନ୍ତା ଡାକରେ ପଠାଇବେ । ଏବଂ ଏଗୁଡ଼ିକୁ ଓଡ଼ିଆରେ କି ପ୍ରକାର ଗୀତ କହନ୍ତି, ଟିକିଏ ଲେଖିଦେବେ । କାରଣ ଭାଷଣରୁ ଉକ୍ତ ବିଷୟଟି ମନେ ରଖି ପାରିଲିନି ।

ଓଡ଼ିଆ ଭାଷାର ସମୃଦ୍ଧି ପାଇଁ ଆପଣଙ୍କ ଲେଖନୀ ମୁନରୁ ସର୍ବଦା ଶାଶ୍ୱତ ଭାବଧାରା ନିସୃତ ହେଉ ଏହାହିଁ ମୋର ଚିର କାମନା । ଆପଣଙ୍କ ଚିଠିର ପ୍ରତୀକ୍ଷାରେ । ଇତି ।

ଆପଣଙ୍କର ଅଜଣା
ଶ୍ରୀ ନୀଳମଣି ପଟ୍ଟନାୟକ

॥ ୪୦ ॥

୨୬.୧୦.୬୬

ପ୍ରିୟ ଶ୍ରୀ ବେହେରା, ପ୍ରଣତି ।

ଭାଇନା, ଏତେବଡ ମିଥ୍ୟା କଥାଟିଏ ଶୁଣି ପାରିଲ । ସମ୍ବଲପୁରୀ ଭାଷାରେ କହିବା ପାଇଁ ବାଧ କରିବା ପାଇଁ କାହା ଜିଭ ଲେଉଟିବ । ଏତେ ଛୋଟିଏ ରାଇଜ ଓଡ଼ିଶା, ଏହା ଭିତରେ ସମ୍ବଲପୁରୀ, କଟକୀ, ବାଲେଶ୍ୱରୀ (ଆଜି ସବୁ କେ.ବି ହେଲାଣି) ଏ ପରା ଭେଦ କିଆଁ, ନାଇଁ ମ ମିଛ ଶୁଛିଛ । ତମେ କେଉଁ 'ବେଦୀ'ରୁ ଏହା ଶୁଣିଲ ହେ ନାଗର ? ବ୍ୟଥିତ ହେବ ନାହିଁ, ଦିଲ୍ ଖୋଲା କରିବ । ତିଳେ ବି ସତ ଥାଆନ୍ତା ତମର ଅଭିଯୋଗରେ । ଆଉ ମୁଁ ଥାଉଁ ଥାଉଁ ଏକଥା ଜରାଇ ଦେବି ନା ? ଯାହାହେଉ, ପତ୍ରାଘାତ ତ ହୋଇଗଲା, ଏତକ ରହିଥାଉ । ବେଳେ ବେଳେ ଭାବେଁ ତମର 'ମୋଗଲ ତାମସା'କୁ ରାତ୍ ଭର୍ ଦେଖନ୍ତି । 'ଛୋକରୀବକରୀ' ଅଣାନ୍ତି । ଭଲ ଥାଅ ହେ । ଆଜି ଏତିକି ଥାଉ । ସମ୍ବଲପୁରୀ ଭାଷାରେ ବାଧ କରା ହୋଇ ନାହିଁ କି ହେବ ନାହିଁ, ଏ କଥା ତିନିବାର ସତିଅ କଲି । ମନ ଦୁଃଖ କରିବ ନାହିଁ । ରହିଲି

ଆପଣଙ୍କର ଅତି ସ୍ନେହର

ସୁନୀଲ ମିଶ୍ର

ସମ୍ବଲପୁର

॥ ୪୧ ॥

କଟକ

୧୯.୯.୬୬

ମହାଶୟ,

ଆପଣଙ୍କର ୨୪ ତାରିଖ ଚିଠିରୁ ସବୁକିଛି ଅବଗତ ହେଲି । ପ୍ରାୟ ସେହି ଅନୁସାରେ ସ୍ମରଣିକାର କଳେବର କଳ୍ପନା କରି ଯାଇଛି ଏବଂ ଆପ୍ରାଣ ଚେଷ୍ଟା କରୁଛି ତାର ପରିପ୍ରକାଶ ପାଇଁ.... । ଭଗବାନଙ୍କ ଇଛା ।

ହେଲେ ଗୋଟିଏ କଥା, ମୁଁ ଯେତେଦୂର ଜାଣିଛି-ଭିପି ବର (ବର ପାର୍ସଲ) ଉପନ୍ୟାସ ମିଳୁଛି, ହେଲେ କବି ଯେଉଁ ବଙ୍ଗଳା ବହିରୁ ଏହାର କଥାବସ୍ତୁ ଗ୍ରହଣ କରିଛନ୍ତି-ସେଇଟା ପ୍ରାୟତଃ ଏଠି ନାହିଁ ଏବଂ ପାଇବା ମୋ ଶକ୍ତିର ବାହାରେ । ଯଦି ଏହି ଦୁଇଟି ବହିର ଏକ ତୁଳନାତ୍ମକ ପ୍ରବନ୍ଧ ଆପଣ ଦିଅନ୍ତେ ତାହାହେଲେ ଏହି ଶୁଭ ଅବସରରେ ଆପଣ କବିଙ୍କ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ ତ କରନ୍ତେ, ଆଉ ଏହି ଶିଶୁ ଅନୁଷ୍ଠାନ ତଥା ମୁଁ ନିଜେ ଆପଣଙ୍କଠାରେ ଚିର କୃତଜ୍ଞ ରୁହନ୍ତୁ । କାରଣ ବିଶେଷ

ଭଲ ଧରଣର ପ୍ରବନ୍ଧ ମିଳୁ ନାହିଁ । ଯଦି ଆପଣଙ୍କର ବିଶେଷ ଅସୁବିଧା ହୁଏ-ତାହା ହେଲେ ଆପଣଙ୍କୁ ମୋର ଆଉ ଗୋଟିଏ ବିନୀତ ଅନୁରୋଧ, ବଙ୍ଗଳା ବହିଟି ପଠାଇଲେ ଏଠାରେ ମୁଁ ବା ଆଉ କାହାରି ଦ୍ୱାରା ଲେଖାଇବାକୁ ଚେଷ୍ଟା କରନ୍ତି-କିନ୍ତୁ ଆପଣ ଦେଲେ ଖୁବ୍ ଭଲହୁଅନ୍ତା । କିନ୍ତୁ ସାର୍ ଆପଣଙ୍କୁ ମୁଁ ଅଧିକା କ'ଣ କହିବି? ସୁବିଧା ଦେଖି ଆପଣ ବିଚାର କରିବେ । ପ୍ରେସ୍ ଷ୍ଟ୍ରାଇକ୍ ହେତୁ ବଡ ଅସୁବିଧା । ଆମର ସ୍ମରଣିକା କାମ ଆରମ୍ଭ ହେଲାଣି-ତଥାପି ଆପଣ ତା ୨୩.୧୦.୬୬ସୁଦ୍ଧା ପଠାଇଲେ ମଧ ଚଳିବ । ଗ୍ରନ୍ଥ ମନ୍ଦିର ପାଣି ଗ୍ରନ୍ଥାବଳି ଛପେଇ ସାରିଲାଣି-ବୀରକିଶୋର ଦାସ ସଂପାଦନା କରିଛନ୍ତି । ହୁଏତ ସପ୍ତାହକ ଭିତରେ ବାହାରିବ ।

ସାର୍, ଆପଣଙ୍କ ଚିଠିର ଅପେକ୍ଷାରେ ରହିଲି ନିରାଶ କରିବେ ନାହିଁ-ମୋର ପ୍ରଣାମ ଗ୍ରହଣ କରିବେ ।

ଆପଣଙ୍କର ସ୍ନେହାଧୀନ

ମତଲୁବ୍

(ସେକ୍ ମତଲୁବ୍ ଅଲି)

॥ ୪୨॥

କଟକ

୬.୧.୬୭

ପୂଜନୀୟେଷୁ,

ପ୍ରଣାମ ନେବେ ।

ଆପଣ ଅଧ୍ୟାପକ ଜୀବନର ସର୍ବୋଚ୍ଚ ସମ୍ମାନ ପାଇବାର ଅବ୍ୟବହିତ ପୂର୍ବରୁ ହୃଦୟର ଉଚ୍ଛ୍ୱସିତ ଅଭିନନ୍ଦନ ଜଣାଉଛି ।

ଏଇ ଅବସରରେ ଆପଣ ଓଡ଼ିଆ ଅଧ୍ୟାପକମାନଙ୍କ ସଂପର୍କରେ ଡ. ମାନସିଂହଙ୍କ ନିକଟକୁ ଲେଖିଥିବା ପତ୍ର ସଂପର୍କରେ ସ୍ମରଣ କରାଇ ଦେଉଛି । ଜଣେ ଛାତ୍ର ଭାବରେ ଓଡ଼ିଆ ଅଧ୍ୟାପକମାନଙ୍କର ଅଧ୍ୟାପନାରେ ମୋର ଯେଉଁ ତିକ୍ତ ଧାରଣା ସୃଷ୍ଟି ହୋଇଛି, ତାହା ନ କହିବା ହିଁ ଭଲ । ମୋ ଅପେକ୍ଷା ଆପଣଙ୍କର ଅଭିଜ୍ଞତା ବେଶୀ ।
ଆପଣଙ୍କ ଉପରେ ମୁଁ ପୂର୍ଣ୍ଣ ଭରସା ରଖିଛି, ଆପଣ ପତ୍ରପତ୍ରିକା ଜରିଆରେ ତିରସ୍କାର କରି ଓଡ଼ିଆ ଅଧ୍ୟାପକମାନଙ୍କର ଅଧ୍ୟାପନା ଏବଂ ଉପାଧିଉର ଓଡ଼ିଆ ଶ୍ରେଣୀରେ ପ୍ରବର୍ତ୍ତିତ **courses of studies**ର ପରିବର୍ତ୍ତନ ଆଣି ପାରିବେ ବୋଲି ।

ଏ ଚିଠି ଆପଣଙ୍କ ନିକଟକୁ ଲେଖିଲା ବେଳେ ମୋର ଓଡ଼ିଆ ଅଧ୍ୟାପକମାନଙ୍କୁ ଭୀଷଣ ଭୟ ହେଉଛି, ସେମାନେ ମୋର ସର୍ବନାଶ କରି ପାରନ୍ତି । ମୁଁ ଜଣେ ଆଜ୍ଞାଧୀନ

ଉପାଧ୍ୟାୟର ଛାତ୍ର ମାତ୍ର । ମୋ ନାମ ବାହାରେ ଅପ୍ରକାଶିତ ରଖିବାକୁ ଅନୁରୋଧ । ତଥାପି ସାହସ ହେଉନି । ବଡ ଭୀରୁ ମୁଁ । ମୋ ଭଳି ଅନ୍ୟମାନଙ୍କ ଅବସ୍ଥା ।

-ଜଣେ ଛାତ୍ର ।

॥ ୪୩ ॥

କଟକ

୨୦.୨.୬୭

ଶ୍ରଦ୍ଧେୟ କୃଷ୍ଣବାବୁ,

ବାରିପଦାରୁ ଫେରି ଆପଣଙ୍କ ଚିଠି ପାଇଲି । ଆପଣ ଯେଉଁ ତଥ୍ୟ ଚାହିଁଛନ୍ତି ତାହା ସଂଗ୍ରହ କରିବାକୁ ଟିକିଏ ସମୟ ଲାଗିବ । ତେବେ ତାହା ସଂଗ୍ରହ କରି ଦେବାପାଇଁ ସାଧ୍ୟାନୁସାରେ ମୁଁ ଚେଷ୍ଟା କରିବି ଏବଂ ଯେତେ କମ୍ ସମୟ ମଧ୍ୟରେ ସଂଗ୍ରହ କରି ଦେଇପାରିବି, ସେଥିପାଇଁ ଚେଷ୍ଟା କରିବି ।

ରମାଦେବୀର ନମସ୍କାର

॥ ୪୪ ॥

କଟକ

୧୪.୩.୬୭

ପ୍ରିୟ ବେହେରା,

'ଝଙ୍କାର'ର ଶେଷ ସଂଖ୍ୟାରେ ତମେ ଜଣେ ଇଂରେଜର ଓଡ଼ିଶା ଆବିଷ୍କାର ଯାହା ବର୍ଣ୍ଣନା କରିଛ, ତାହା ପଢ଼ି ମୁଁ ତୁମକୁ ଅନ୍ତରର ନିବିଡ ସାଧୁବାଦ ପଠାଉଛି । ଶ୍ରୀମତୀ ହେମଲତା ହିଁ ଏପରି ଏକ ପ୍ରବନ୍ଧର କଥା ମତେ କହିଲେ ଓ ପଢ଼ିବାକୁ ଅନୁରୋଧ କଲେ । ଯାହା ହେଉ, ନାନା ପୁସ୍ତକ ପ୍ରବନ୍ଧରେ ମୁଁ ଯେଉଁ ଓଡ଼ିଆ ଜାତୀୟତା ପାଇଁ ଚିତ୍କାର କରି ଆସୁଥିଲି ଏତେବର୍ଷ, ତାହା ଯେ ଏହି ଇଂରେଜ ବୁଦ୍ଧିଜୀବୀର ସିଦ୍ଧାନ୍ତରେ ସମର୍ଥନ ପାଇଲା, ତାହା ହିଁ ସନ୍ତୋଷ । ମୋର ଅନୁରୋଧ ଇଂରେଜି ଚିଠିଟିର ଏକ କପି ଦୟା କରି ମୋତେ ପଠାଇ ଦେବ - ନିଶ୍ଚୟ । ତାକୁ କୌଣସି-ନା-କୌଣସି ଭାବରେ ବ୍ୟବହାର କରିବି । ଏ ଲେଖାଟା ଓଡ଼ିଆଙ୍କ ପାଇଁ ଏକ ଶାଶ୍ୱତ ଚେତାବନୀ ଓ ଚରିତ୍ର-ବିଶ୍ଳେଷଣ ହୋଇ ରହିଗଲା । ॥ ଇତି ॥

ଶୁଭାନୁଧ୍ୟାୟୀ

ମାୟାଧର ମାନସିଂହ

॥ ୪୫ ॥

କେଉଁଝରଗଡ
୭.୪.୬୭

ପୂଜନୀୟ ସାର୍,

ଆପଣଙ୍କ ଚିଠି କିଛି ଦିନ ତଳେ ପାଇଥିଲି । ମୋର ଚିଠି ଦେବାରେ ହେଳା ହେତୁ କ୍ଷମା ଦେବେ । ଆଶା ଆପଣ ଥିସିସ୍ କାମ ୟା ଭିତରେ ଶେଷ କରିଦେଇଥିବେ । ଏବେ ଶୈଳେନ୍ଦ୍ର ବାବୁଙ୍କଠାରୁ ଚିଠି ପାଇଥିଲି । ଆପଣଙ୍କ 'ଅଶ୍ଳୀଳତା ବିପକ୍ଷରେ' ବହିର ସମୀକ୍ଷା ଡଗରରେ ପଢ଼ିଲି । ଲାଇବ୍ରେରୀ ପାଇଁ ଏପର୍ଯ୍ୟନ୍ତ ବହିଟି ମଗା ହୋଇ ପାରିନାହିଁ । ଏବେ ଯେଉଁ sanction ଆସିବ ସେଥିରେ କିଣିବୁଁ । ମୁଁ ଏବେ ଧରଣୀଧର ଭୂୟାଁ ଉପରେ ଗୋଟିଏ ନଭେଲ ଲେଖିବି ବୋଲି ଚେଷ୍ଟା କରୁଛି । କିଛି କାମ ଆରମ୍ଭ କଲିଣି । ଏହା ଭିତରେ ଅନେକଗୁଡ଼ିଏ କବିତା ଲେଖିଲିଣି । ପତ୍ରପତ୍ରିକାକୁ ହେଳାରେ ପଠାଇ ପାରୁ ନାହିଁ । ନଭେଲଟି ଲେଖି ସାରିଲେ ଆପଣଙ୍କୁ ଦେଖାଇବି । ଆପଣଙ୍କ ପାଖକୁ ଆଗରୁ ଚିଠି ଦେଇଥିଲି ସେ ବହି ଦୁଇଟି ପଠାଇବାକୁ । ଟିକିଏ ଶୀଘ୍ର ପଠାଇଦେବେ । ସେ ଶିକ୍ଷକ ଜଣକ ବଡ ବ୍ୟସ୍ତ କରୁଛନ୍ତି ଏବଂ ଥରେ ଦ୍ୱି'ଥର ମୋତେ ବି କହିଲେଣି । ତେଣୁ ଦୟା କରି ପଠାଇଦେବେ । ଆଉ ଡେରି କରିବେ ନାହିଁ । କମଳାକାନ୍ତ ବାବୁଙ୍କୁ ମୋର ନମସ୍କାର ଜଣାଇ ଦେବେ । ତାଙ୍କର ଅନେକ ଲେଖା ଏବେ ମୁଁ ପଢ଼ିଲି, ବେଶ୍ ଉନ୍ନତି କରୁଛନ୍ତି । ଆଉ ଭଦ୍ରକ ହାଲ୍ କ'ଣ ? ମୁଁ ଏ ଛୁଟିରେ ଯିବାକୁ ଭାବିଛି । ଶୀଘ୍ର ଚିଠି ଦେବେ ଏବଂ ବହି ଦୁଇଟି ପଠାଇବେ । ଇତି ।

ଆପଣଙ୍କର ସ୍ନେହାବନତ ରାମଚନ୍ଦ୍ର ରାଉତ

॥ ୪୬ ॥

୭ ତାରିଖ ଅପ୍ରେଲ୍ ସକାଳ ୧୯୬୭
ଶାନ୍ତିନିକେତନରୁ

ଶ୍ରୀଚରଣେଷୁ ସାର୍,

ଭୂମିଷ୍ଠ ପ୍ରଣାମ ଗ୍ରହଣ କରିବେ । ଆପଣଙ୍କ ଚିଠି ପାଇଲି । 'ପ୍ରିୟ' ସମ୍ବୋଧନ ଟିକିଏ କାହିଁକି ଅଡୁଆ ଲାଗିଲା । ଆପଣଙ୍କର ସ୍ନେହ ଓ କଲ୍ୟାଣ ପାଇବାର ଅଯୋଗ୍ୟ ମୁଁ ଯେ କାହିଁକି ମାତ୍ର ଏଇ ୮/୯ଟି ମାସ ମଧ୍ୟରେ ବିବେଚିତ ହେଲି ବୁଝିପାରୁନାହିଁ । ××× 'ଝଙ୍କାର' ଜାନୁଆରୀ ସଂଖ୍ୟାରେ ଆପଣଙ୍କର 'ମି:ଉଡ୍‌ହାଉସ୍‌ଙ୍କ ଓଡ଼ିଶା ଆବିଷ୍କାର' ଶୀର୍ଷକ ରଚନାଟି ପଢ଼ିଲି, ଭାରି ଭଲ ଲାଗିଲା । ଆଳସ୍ୟ ଓ ଜଡ଼ ଜାତୀୟ ଜୀବନ ପ୍ରତି ବାସ୍ତବରେ ଏହା ଏକ ଉଲ୍ଲେଖଯୋଗ୍ୟ ଚେତାବନି । ଓଡ଼ିଶାର ବୁଦ୍ଧିଜୀବୀ ପାଠକ

ଗୋଷ୍ଠିକୁ ଏଇଟି କ୍ଷେତ୍ ଭଲକରି ପୁଳାଏ ଚିମୁଟି ଦେଇଥିବ । ଆପଣ ଥରେ 'ଅର୍ଘ୍ୟ' ପାଇଁ ପ୍ରବନ୍ଧ ପଠାଇବାକୁ ଲେଖିଥିଲେ । ପତ୍ରିକା କେବେ ପ୍ରକାଶ ପାଉଛି ଜାଣି ନଥିବାରୁ ପଠାଇ ପାରିନଥିଲି । ପ୍ରବନ୍ଧଟିଏ ପଠାଇବି ଯଦି ସମୟ ଥାଏ ଲେଖିବେ । ଭଦ୍ରକରେ ପୋଷ୍ଟ-ଗ୍ରାଜୁଏଟ୍ କ୍ଲାସ୍ ଖୋଲାଯିବା ପାଇଁ କୋଠା ତିଆରି ଆରମ୍ଭ ହୋଇଗଲାଣି ବୋଲି ଶୁଣି ଖୁବ୍ ଆନନ୍ଦ ଅନୁଭବ କରିଥିଲି । ଓଡ଼ିଆରେ M.A.କ୍ଲାସ୍ ଖୋଲୁଛି କି ନାହିଁ ଜଣାଇବେ ।

କମଳାକାନ୍ତ ଭଲ ଅଛି । ଜୁଲାଇରେ ପରୀକ୍ଷା । ମଛର ଗତିରେ ପଢ଼ାପଢ଼ି ଚାଲିଛି । ମୁଁ ବର୍ତ୍ତମାନ ଭଲ ଅଛି । ଚିଠି ଦେବେ ।ଇତି ।

ସ୍ନେହର ବନମାଳୀ ମିଶ୍ର

॥ ୪୭ ॥

୧.୫.୬୭

ପ୍ଲଟ୍ ନଂ ୨୦୦, ୟୁନିଟ୍ -୩, ଭୁବନେଶ୍ୱର

ଶ୍ରଦ୍ଧେୟ କୃଷ୍ଣବାବୁ,

ନମସ୍କାର।

ଭୀମା ଭୂୟାଁ ଉପନ୍ୟାସ ସମ୍ବନ୍ଧରେ ଆପଣ ପୂଜ୍ୟା ରମାଦେବୀଙ୍କ ପାଖକୁ ଯେଉଁ ଚିଠି ଲେଖିଥିଲେ ସେ ତାର ନକଲ ମୋ ପାଖକୁ ପଠାଇଛନ୍ତି ଓ ମୁଁ ଯାହା ତଥ୍ୟ ଜାଣେ ଆପଣଙ୍କୁ ଲେଖିବାକୁ କହିଛନ୍ତି । ମୁଁ ଦେଖୁଛି ଯେ ଆପଣ ଯେଉଁ ୫ଟି ବିଷୟରେ ତଥ୍ୟ ଖୋଜୁଛନ୍ତି ସେ ତଥ୍ୟ ମୋଠି ନାହିଁ । ଗୋପାଳବଲ୍ଲଭଙ୍କ ଚାକିରି ବିଷୟ ସମ୍ବଲପୁର ପଲିଟିକାଲ୍ ଏଜେଣ୍ଟ୍ ଅଫିସ୍ କାଗଜ ପତ୍ରରୁ ମିଳିଥାନ୍ତା, ସେ ତ ଆଉ ନାହିଁ । କଟକ କମିସନର ଅଫିସ୍ କାଗଜ ମିଉଜିୟମର୍ ସୁଶିଳ ଦେ ଦେଖୁଥିଲେ, ତାଙ୍କୁ ପଚାରନ୍ତୁ, କାଳେ କହିପାରିବେ । ଭୂୟାଁଙ୍କ ବିଷୟରେ ଗୋପାଳବଲ୍ଲଭ କି କି ବହି ପଢ଼ିବାର ସୁବିଧା ପାଇଥିଲେ ତାହା ବି କହିହେବ ନାହିଁ ।

ମୁଁ ତ ଭାବୁଛି ତାଙ୍କ ଉପନ୍ୟାସରେ ଭୂୟାଁ ଆଦିବାସୀ ଜାତିର ରୀତିନୀତି ଚଳଣି ଆଦି କଥା ସେମିତି କିଛି ନାହିଁ, ସେଥିରେ anthropological matter କ'ଣ ଅଛି ? ଭକ୍ତି ରତ୍ନାବଳୀ ଓ କବିତା ମଞ୍ଜରୀ କଣ ମ୍ୟୁଜିଅମ୍‌ରେ ମିଳିପାରିବ, କେଜାଣି ? କେଦାରବାବୁଙ୍କୁ ଚିଠି ଲେଖିଥିଲେ କି ? ରମାଦେବୀଙ୍କଠି କୌଣସି ତଥ୍ୟ ନାହିଁ ବୋଲି ସେ ମତେ ଲେଖିଛନ୍ତି, କିନ୍ତୁ ମୋଠି ବି କିଛି ତଥ୍ୟ ନାହିଁ ।

ଆପଣଙ୍କର ସ୍ନେହାଧୀନ

ଗୋପୀନାଥ ମହାନ୍ତି

॥ ୪୮ ॥

ସିଦ୍ଧେଶ୍ୱର ସାହି, କଟକ
୧୭.୯.୬୭

ପ୍ରିୟ କୃଷ୍ଣବାବୁ,

ନମସ୍ତେ । 'ଓଡ଼ିଆ ସାହିତ୍ୟ ସମାଜ'ର 'ଅର୍ଘ୍ୟ' ପାଇଲି । ଆନ୍ତରିକ ଅଭିନନ୍ଦନ ଓ ଧନ୍ୟବାଦ ଗ୍ରହଣ କରିବେ । ପରିକଳ୍ପନା ଚମତ୍କାର ହୋଇଛି । ଅତୀତରେ ଆପଣ- ମାନେହିଁ 'ଦଶହରା' ପ୍ରକାଶ କରିଥିଲେ । ଆପଣଙ୍କ ନେତୃତ୍ୱରେ ଓଡ଼ିଆ ବିଭାଗ ଗୁଣାତ୍ମକ କାର୍ଯ୍ୟ କରି ଅଗ୍ରସର ହେଉଥିବାରୁ ଅନ୍ୟତ୍ର ଅନ୍ୟମାନେ ପ୍ରେରଣା ପାଇବେ ବୋଲି ଆଶା କରୁଛି । ଆମର ଟଙ୍କା ନାହିଁ । ମୋର ଇଚ୍ଛା ହେଉଛି, ଆପଣମାନଙ୍କ ପରି କିଛି ପ୍ରକାଶ କରିପାରନ୍ତୁ କି ? ଆପଣଙ୍କର ସେମିନାର୍‌ର ପାଠାଗାର ସଂପର୍କରେ ପଢ଼ି ଅତ୍ୟନ୍ତ ଆଗ୍ରହୀ ହୋଇପଡ଼ନ୍ତି । ଏଥିପାଇଁ ଆପଣ କି ଉପାୟରେ ଅର୍ଥ ଓ ପୁସ୍ତକ ସଂଗ୍ରହ କଲେ ? କଲେଜ ଫଣ୍ଡରୁ ଆପଣ ଏଦିଗରେ କି ସାହାଯ୍ୟ ପାଆନ୍ତି ? କିଛି ପରାମର୍ଶ ଦେଲେ ସୁଖୀ ହୁଅନ୍ତି । ଆପଣଙ୍କ ପ୍ରେରିତ ଛାତ୍ର ପରମାନନ୍ଦ ଏଠାରେ ନାଁ ଲେଖାଇ ସାରି ଅଳ୍ପଦିନ ପରେ ପୀଡ଼ିତ ହୋଇ ଗାଁକୁ ଗଲେ । ଆଉ ଫେରି ନାହାନ୍ତି । ସପରିବାରେ ଆଶାକରେ ମଙ୍ଗଳରେ ଅଛନ୍ତି । ଆପଣଙ୍କ ଥେସିସ୍‌ଟିର ପାଠ ଏବେ ଶେଷ କଲି ।

ସ୍ନେହାଧୀନ ପଠାଣି ପଟ୍ଟନାୟକ

॥ ୪୯ ॥

୨୨.୯.୬୭

ପ୍ରିୟ କୃଷ୍ଣବାବୁ,

ପ୍ରତ୍ୟେକ ସଂଖ୍ୟା ପରେ ଆପଣଙ୍କଠାରୁ ସାମ୍ମୁଖ୍ୟ ବିଷୟରେ ଗୋଟିଏ ଗୋଟିଏ ବିଶେଷଣାତ୍ମକ ଚିଠି ପାଇଲେ ଖୁବ୍ ଖୁସି ଲାଗେ । ଅନେକ ସମୟରେ ଯାହା କଲେ ବି ଏଦେଶରେ କୌଣସି Appreciation କରିବା ବଂଧୁଙ୍କର ସଂଖ୍ୟା ବିରଳ । ଆପଣ ଯଦି ଧାରାବାହିକ ରୂପେ ସାମ୍ମୁଖ୍ୟର ବିଶ୍ଳେଷଣ ଦେଇପାରନ୍ତେ ତା ହେଲେ ସାମ୍ମୁଖ୍ୟରେ ତାହା ପ୍ରକାଶ କାରାଯାଇପାରନ୍ତା । ବହୁତ ଉପାଦେୟ ହୁଅନ୍ତା । ଦୁଇପୃଷ୍ଠା ହେଲେ ଚଳିବ । ସାମ୍ମୁଖ୍ୟର ଆର୍ଥିକ ପରିସ୍ଥିତି ବଡ ଖରାପ । ତେଣୁ କିଛି ସଭ୍ୟ କରାଇବାକୁ ଚେଷ୍ଟା କରିବେ । ଭଦ୍ରକର Agent Nurul Hoda ଉପରେ ସାମ୍ମୁଖ୍ୟରେ ୬୮ ଟଙ୍କା ରହିଲା । କିନ୍ତୁ ସେ କୌଣସି ଜବାବ ଦେଉନାହିଁ । ବର୍ତ୍ତମାନ ଆଉ ସାମ୍ମୁଖ୍ୟ ସେ ନେଉନାହିଁ । ତେଣୁ ଏତକ ଟଙ୍କା ଆଦାୟ କରାଇଦେଲେ ଉପକୃତ ହୁଅନ୍ତି । ଆଉ ଜଣେ ଏଜେଣ୍ଟ ମଧ୍ୟ ଦରକାର ।

ଆପଣଙ୍କର ରାଧାନାଥ ରଥ

॥ ୫୦ ॥

ଆଗରପଡା
୭.୧୨.୬୭

ସମ୍ମାନାସ୍ପଦ ମହାଶୟ,

ନମସ୍କାର ଗ୍ରହଣ କରିବେ । ସଂସାର ଓ ଶାରୀରିକ ଅସୁସ୍ଥତା ଯୋଗୁଁ ଅନେକଦିନୁ ଆପଣଙ୍କୁ ଲେଖି ପାରୁନି । କ୍ଷମା କରିବେ । ଭଦ୍ରକ ଯାଇଥିଲେ ଅବଶ୍ୟ ଦେଖା କରି ଥାଆନ୍ତି । ମାତ୍ର ଏପର୍ଯ୍ୟନ୍ତ ଯିବାର ସୁବିଧା କରି ପାରିନାହିଁ ।

ଆପଣଙ୍କ 'ସାହେବଙ୍କ ଓଡ଼ିଶା ଆବିଷ୍କାର' ପଢ଼ିଥିଲି । ଏବେ ସମାଜରୁ 'ବେକାର ସମସ୍ୟାର ବିକାର' ପଢ଼ିଲି । ବାସ୍ତବିକ ଓଡ଼ିଶାରେ ଏଭଳି ଚେତନାର ଚିଆଁ ଯୁବ ପ୍ରାଣରେ ନ ଦେଲେ ନିସ୍ତାର ନାହିଁ । ଓଡ଼ିଶାରେ ଉନ୍ମାଦନା ସୃଷ୍ଟି କଲା ଭଳି, ଏଇଭଳି ଭାଷା ଓ କଥାର ପ୍ରୟୋଜନ ହେଉଛି ଆଜି । ଆମ ରାଜ୍ୟର ଶିକ୍ଷିତ(ତଥାକଥିତ)ଙ୍କର ବାବୁଗିରି ସେବା ଆମକୁ ଛଡାଇବାକୁ ହିଁ ହେବ ।

ଆଖି ଅଧିକ ଖରାପ ହେଉଛି । ପେଟର ରୋଗ ତ ଛାଡ଼ି ନାହିଁ । ବେଢ଼ି ଉପରେ କୋରଡ଼ା ପରି ସଂସାର ଦାଉ । ଏସବୁ ମିଶି ମୋତେ ବଡ ବ୍ୟତିବ୍ୟସ୍ତ କରୁଛି । ସେଇଥିରେ ହିଁ ସଂଗ୍ରାମ ମୋର ଚାଲିଛି । ସାରସ୍ୱତ ସାଧନା ଏ ପରିସ୍ଥିତିରେ କିପରି ହେଉଥିବ- ବୁଝୁଥିବେ । ଆଶା ଈଶ୍ୱରଙ୍କ ଆଶୀର୍ବାଦରୁ ଆପଣ ଓ ସଂସାର ଭଲ ଥିବେ । ଇତି ।

ସ୍ନେହର ବାଞ୍ଛାନିଧି ପଣ୍ଡା

॥୫୧ ॥

**Sri B.N.Kar**, M.A.
Jt.Editor, Matrubhumi

Cuttack
Dated- ୧୯/୧୨/୬୭

ପ୍ରିୟ କୃଷ୍ଣବାବୁ,

ଆପଣଙ୍କର ପିଏଚ୍.ଡି. ଉପାଧି ପ୍ରାପ୍ତି ତଥା ଆପଣଙ୍କର ସାଧନା ଓ ସିଦ୍ଧି ପାଇଁ ଅଭିନନ୍ଦନ ଜଣାଉଛି । ଆପଣ ଯେ ଲୁକ୍କାୟିତ ଭାବରେ ଏପରି ଏକ ବିରାଟ ଓ ମହତ୍ ପ୍ରଚେଷ୍ଟା ଚଳାଇଥିଲେ, ମୁଁ ଓ ମୋର ଅନେକ ବନ୍ଧୁ ଜାଣିନଥିଲୁ । ଉତ୍କଳ ବିଶ୍ୱବିଦ୍ୟାଳୟର ଆଗାମୀ ସମାବର୍ତ୍ତନ ଉତ୍ସବରେ ବୋଧହୁଏ ଆପଣଙ୍କୁ ଏହି ଉପାଧିରେ ସମ୍ମାନିତ କରାଯିବ । ଆପଣ ନିଜର ଗୋଟିଏ ଫଟୋ ଓ ସଂକ୍ଷିପ୍ତ ପରିଚୟ ଦୟାକରି ପଠାଇବେ କି ? ଅପାଣଙ୍କ ଗବେଷଣାତ୍ମକ ପ୍ରବନ୍ଧ 'ଓଡ଼ିଆ ଉପନ୍ୟାସ'ର କିଛି ଅଂଶ 'ମାତୃଭୂମି'ରେ ପ୍ରକାଶ

ପାଇଁ ପଠାଇଲେ ଭଲ ହୁଅନ୍ତା । ସମାବର୍ତ୍ତନ ଉତ୍ସବ ପାଇଁ ଲେଖା ପଠାଇବା ଲାଗି ଚିଠି ପାଇଥିବେ ନିଶ୍ଚୟ । ପଠାଇବେ ।

ଆପଣଙ୍କର
ବିଚିତ୍ରାନନ୍ଦ କର

॥ ୫୨ ॥

ଶୁକ୍ଳେଶ୍ୱର
୨୦.୧୨.୬୭

ମହାଶୟ !

ତା ୧୯ ସମାଜରେ ପ୍ରକାଶିତ ଆପଣଙ୍କର ପିଏଚ୍.ଡି ସମ୍ବାଦଟି ଦେଖି ମୁଁ ଅତ୍ୟନ୍ତ ଖୁସି ହୋଇଗଲି । ଏତେଦିନ ପରେ ଆପଣ ଆପଣଙ୍କର ଦୀର୍ଘ ଅନବରତ କଠୋର ଅଧ୍ୟବସାୟର ସମ୍ମାନ ପାଇ ପାରିଛନ୍ତି ।

ବହୁଦୂରରେ ଥାଇ ଖୁବ୍ ପରିଚିତ, ଶୁଭାକାଂକ୍ଷୀ । ଆପଣଙ୍କ ଲୋକମାନଙ୍କର ଏହି ସମୃଦ୍ଧିର, ସୁଖର ଖବର ପାଇଲେ ମନ ଯେ କିପରି ଆନନ୍ଦରେ ପୂରିଉଠେ-ଭାବ ବିଭୋର ହୋଇଯାଏ-ଅନୁଭବୀ ହିଁ କେବଳ ତାହା ବୁଝେ । ବର୍ଣ୍ଣନା ତ ସମ୍ଭବ ନୁହେଁ, ଲେଖିବା ବି ଅସମୀଚୀନ ।

ଆଜି ସ୍ୱତଃ ମୋର ମନେ ପଡେ ୧୯୫୯ ମସିହା କଥା । ସେତେବେଳେ ଆପଣଙ୍କ କଲେଜରେ ମୁଁ ଜଣେ ଅନାମଧେୟ P.U.Sc.ର ଛାତ୍ର । ମୋର ଗୋଟିଏ କ୍ଷୁଦ୍ର ଗଳ୍ପ ପଢ଼ିଲେ-ତାକୁ କପରି ଲେଖିଲେ ଭଲ ହୋଇଥାନ୍ତା- ସେ ବିଷୟରେ ମୋ ସହିତ ଆଲୋଚନା କଲେ । ଆଜି ସେ ଗଳ୍ପଟି ପଢ଼ିଲେ ମତେ ଖୁବ୍ ହସ ଲାଗୁଛି । ସେତେବେଳେ ମୁଁ କ'ଣ ଲେଖୁଥିଲି ? ପୁଣି ଅର୍ଘ୍ୟରେ ମୋର ଗୋଟିଏ କବିତା ଛାପିଲେ-ସେଇଟି ମୋର ପ୍ରଥମ ପ୍ରକାଶିତ ଲେଖା । ତା ପରେ ପରେ କଲେଜର ସାଂସ୍କୃତିକ ଉତ୍ସବ ପାଇଁ ଆପଣ ବାଛିଲେ 'ସଳିତା' ନାଟକ । ସେଥିରେ ପ୍ରତିଯୋଗିତାରେ ନାୟକ ଭୂମିକାରେ ଅଭିନୟ ନିମନ୍ତେ ମୁଁ ନିର୍ବାଚିତ ହେଲି । ୧୯୬୦ ଜାନୁଆରୀ ୧୨ ତାରିଖରେ ମଞ୍ଚସ୍ଥ ହେଲା । ମୁଁ ମଧ୍ୟ Best actor ହେଲି-ଏସବୁ ଆପଣଙ୍କର ଆଶୀର୍ବାଦ । ଆଉ କିଛି ନୁହେଁ । ଏସବୁ କଥା ମନେ ପଡି ମୋ ସ୍ମୃତିକୁ ଆଜି ଗଭୀର ଭାବରେ ସଜାଗ-ସରସ କରି ଦେଉଛି । ଶେଷରେ ପୁଣି ଥରେ ମୋର ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି ।

ଆଶୀର୍ବାଦ ଭିକ୍ଷା କରି ରହୁଛି । ପ୍ରଣତି ନେବେ । ଇତି ।

ଆପଣଙ୍କର ବିନୀତ
ସେକ୍ ମତଲୁବ୍ ଅଲି

॥୫୩॥

କୁଆଁସ, ଭଦ୍ରଖ
୨୨/୧୨/୬୭

ଶ୍ରଦ୍ଧାସ୍ପଦ କୃଷ୍ଣବାବୁ,

ଆପଣଙ୍କ ଡକ୍ଟରେଟ୍ ପ୍ରାପ୍ତି ଖବର କଟକରେ ପାଇଥିଲି । ବହୁ ବନ୍ଧୁ ଏକସଂଗରେ ବସି ମୁଢ଼ି କଦଳୀ ଖାଉଥିଲୁଁ । ମୁଁ ପ୍ରସ୍ତାବ କଲି, କୃଷ୍ଣବାବୁଙ୍କ ଡକ୍ଟରେଟ୍ ପାଇଁ ଏ ମୁଢ଼ି-କଦଳୀ ଦାମ ଦେଉଛି । ମୁଁ ପ୍ରାୟ ୮୦୨/ଖରଚ କରି ବହୁ(ଏକରୁ ଅଧିକ) ବନ୍ଧୁଙ୍କୁ ଆପ୍ୟାୟିତ କଲି । ମୋର ସାଦର ସମ୍ବର୍ଦ୍ଧନା ଗ୍ରହଣ କରନ୍ତୁ ।

ଆପଣଙ୍କର
ଗୋକୁଳାନନ୍ଦ ମହାନ୍ତି

॥ ୫୪ ॥

କଟକ, ୨୨/୧୨/୬୭

ପ୍ରିୟବରେଷୁ,

ପ୍ରଣାମ । ଆପଣଙ୍କର ଗବେଷଣାଗତ ସଫଳତା ଓ ନୂତନ ଉପାଧି ଲାଭର ସମ୍ବାଦ ସେଦିନ କାଗଜରୁ ଦେଖିଲି । ଅନେକ ଅଭିନନ୍ଦନ ଜଣାଉଛି । Ph.D. ଠାରୁ ପ୍ରକୃତ ଅଧ୍ୟୟନ ଆରମ୍ଭ ହେବା ଉଚିତ । ଆମର ଏଠି ସାଧାରଣତଃ ଯାହା ହୋଇଥାଏ, ଏଇଠୁ ଅଧ୍ୟୟନ ଓ ତଦ୍‌ଗତ ସମସ୍ତ ଅଧ୍ୟବସାୟ ଶେଷ ହୋଇଯିବା ଉଚିତ ନୁହେଁ । ଆପଣଙ୍କର ମାଟି ଶାନ୍ତିନିକେତନରୁ ଦୋରସା ହୋଇ ଆସିଛି । ତେଣୁ ଆପଣ ପ୍ରଥମ ନିୟମଟିକୁ ମାନିବେ ବୋଲି ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଅଛି । ସପରିବାର କୁଶଳରେ ଥିବେ । ଇତି

ଆପଣଙ୍କର
ଚିତ୍ତରଂଜନ ଦାସ

॥ ୫୫ ॥

ସ୍ଥାନ : କଟକ
ତାରିଖ: ୨୩/୧୨/୬୭

ପ୍ରିୟ କୃଷ୍ଣବାବୁ,

ନମସ୍କାର ନେବେ । ଆପଣଙ୍କ ବିପୁଳ କୃତିତ୍ୱ ପାଇଁ ସମମର୍ମୀ ସାହିତ୍ୟସେବୀ ହିସାବରେ ମୁଁ ଅଭିନନ୍ଦନ ଜଣାଉଛି । 'କଥା ସାହିତ୍ୟ' ଉପରେ ଆପଣଙ୍କ ଅଧ୍ୟୟନର ପ୍ରକୃଷ୍ଟ ନିର୍ଦ୍ଦେଶନ ଆମେ ଛାତ୍ର ଅବସ୍ଥାରେ ପାଇଥିଲୁ । ସେତେବେଳେ ଆପଣଙ୍କ ସମାଲୋଚନା ପୁସ୍ତକଟି ପ୍ରକାଶିତ ହୋଇଥାଏ ମାତ୍ର । ଆପଣଙ୍କ ଭାଷା, ଚିନ୍ତାଧାରା,

ଶୈଳୀ ଓ ବିଦ୍‌ବତ୍ତାର ଓଜନ ସେତେବେଳେ ଉପଲବ୍ଧି କରିଥିଲି । ଏବେ ସେହି ସାଧନାର ପୁଷ୍ପିତ ରୂପ ଦେଖି ଆମେ ପରିଚିତ ଓ ଅପରିଚିତମାନେ ବିଶେଷ ମୁଗ୍ଧ ଖୁବ୍ ଆନନ୍ଦିତ, ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ସାହିତ୍ୟ ଦରବାରରେ ଆପଣଙ୍କ ବାର୍ତ୍ତା ଚିର ଅଭିନନ୍ଦିତ ହୋଇରହିବ । ସତ୍ୟର ସୁରାକ ନେଇ ପ୍ରସାରିତ ହେଉ । ଏହା ହିଁ ମୋର ହୃଦୟର କାମନା । କମଳାକାନ୍ତ ଓ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ମୋର ସଦିଚ୍ଛା ଜଣାଇବେ। ××× । ଇତି ।

ଆପଣଙ୍କର ଶ୍ରୀ ନିତ୍ୟାନନ୍ଦ ଶତପଥୀ

ରେଭେନ୍ସା ରାତି କଲେଜ୍

॥ ୫୬ ॥

ତିହିଡି

୨୪.୧୨.୬୭

ପରମକଲ୍ୟାଣୀୟ ଶ୍ରଦ୍ଧେୟ ଶ୍ରୀମାନ କୃଷ୍ଣବାବୁ,

ତମେ ଡକ୍‌ଟରେଟ୍ ଉପାଧିରେ ଭୂଷିତ ହେବା ଯୋଗୁଁ ଆଜି ଓଡ଼ିଆ ସାହିତ୍ୟ ଇତିହାସରେ ତମ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ତମ ଜନ୍ମଭୂମି ତିହିଡିର ଜନତା ଖାସ୍ କରି ଶିକ୍ଷିତ ସମାଜ ଗର୍ବରେ ଉତ୍‌ଫୁଲ୍ଲିତ ।

ଆଜି ସନ୍ଧ୍ୟାରେ ଯେଉଁ ଅଭିନନ୍ଦନର ଆୟୋଜନ କରାଯାଉଛି, ତାହା ତମର ବ୍ୟକ୍ତିତ୍ୱକୁ ସମ୍ମାନ ଦେବାପାଇଁ ନୁହେଁ, ତାହା ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ତମେ ଯେଉଁ ଦୃଢ଼ ଓ ନିର୍ଦ୍ଦିଷ୍ଟ ପଦକ୍ଷେପ ନେଇଛ, ସେଥିରେ ନୂତନ ଉତ୍ସାହ ଉଦ୍ଦୀପନା ସୃଷ୍ଟି କରିବା ପାଇଁ । ଏଇ ଶୁଭମୁହୂର୍ତ୍ତରେ ତୁମେ ମୋର ଶୁଭେଚ୍ଛା ଓ ଆଶୀର୍ବାଦ ଗ୍ରହଣ କରିବ । ଭଗବାନଙ୍କଠାରେ ମୋର ଆନ୍ତରର ପ୍ରାର୍ଥନା ସେ ତୁମକୁ ଶକ୍ତି ଓ ସୁଯୋଗ ଦିଅନ୍ତୁ ଯହିଁରେ ଓଡ଼ିଆ ସାହିତ୍ୟର କ୍ରମବିକାଶରେ ତୁମେ ସେହି ଭଗବତ ଶକ୍ତିର ନିମିତ୍ତ ହୋଇ ଆଗେଇ ଚାଲ ।

ତୁମର ଶୁଭାକାଙ୍କ୍ଷୀ ଶ୍ରୀ ଭାଗବତ ସାହୁ

॥ ୫୭ ॥

ଢେଙ୍କାନାଳ

୨୬.୧୨.୬୭

ଶ୍ରୀମାନ୍ କୃଷ୍ଣବାବୁ,

ମୁଁ ଟୁର୍‌ରେ ଥିବା ସମୟରେ ତମର ଡ଼କ୍ଟର ଉପାଧି ଲାଭ କରିଥିବାର ସମ୍ବାଦ ପାଇଥିଲି । ମୁଁ ଅତି ଆନନ୍ଦରେ ତମକୁ ଅଭିନନ୍ଦନ ଜଣାଉଛି । ମୁଁ ଜାଣିଥିଲି ତମର

ଅପ୍ରତିହତ ସାଧନା ଦିନେ ତୁମକୁ ଏହା ଦେବ ।

ତମକୁ ଶୁଭେଚ୍ଛା ଜଣାଇବାରେ ମୋର ବିଳମ୍ବ ହୋଇଯାଇଛି । ଜଣେ ଦରଦୀ ଶୁଭେଚ୍ଛୁଠାରୁ ଅଭିନନ୍ଦନ ପାଇବାରେ ବିଳମ୍ବ ବା ଶୀଘ୍ରର ବିଚାର ନଥାଏ ।

ଶୁଭେଚ୍ଛା ସହ

ରାଜକିଶୋର ରାୟ

॥ ୫୮ ॥

ଶାନ୍ତିନିକେତନ

୨୬.୧୨.୬୭

ଶ୍ରଦ୍ଧେୟ କୃଷ୍ଣଚରଣ ବାବୁ,

ମୋର ସମ୍ମାନ ନେବେ । ପ୍ରଥମରେ ଆପଣଙ୍କୁ ଆପଣଙ୍କର କୃତିତ୍ୱ ନିମନ୍ତେ ମୋର ବ୍ୟକ୍ତିଗତ ଅଭିନନ୍ଦନ ଜଣାଉଛି । ସମ୍ବାଦପତ୍ରରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ଆପଣ ପିଏଚ୍.ଡି. ଉପାଧିରେ ସମ୍ମାନିତ ହେବା ଜାଣି ଏଠାରେ ଆମେ ସମସ୍ତେ ଆନନ୍ଦିତ । ଆପଣ ଏକଦା ଏଠାକାର ଓଡ଼ିଆ ବିଭାଗର ଛାତ୍ର ଥିଲେ । ଓଡ଼ିଆ ବିଭାଗ ପ୍ରତି ସର୍ବଦା ଆପଣଙ୍କ ଆନ୍ତରିକତା ରହିଛି । ଆପଣଙ୍କ କୃତିତ୍ୱ ଅନ୍ୟ ଏକ ଦିଗରୁ ଏଠା ଓଡ଼ିଆ ବିଭାଗର ଗୌରବ । ଆଶା, ନିବନ୍ଧଟିରେ ଓଡ଼ିଆ ଉପନ୍ୟାସ ସାହିତ୍ୟ ଉପରେ ଆଲୋଚନାର ନୂତନ ଆଲୋକ ଆପଣ ପକାଇଥିବେ । ଏଥର ନିବନ୍ଧଟିର ପ୍ରକାଶରେ ଯତ୍ନଶୀଳ ହୁଅନ୍ତୁ ।

ଆପଣଙ୍କ ପୂର୍ବ ଚିଠିଗୁଡ଼ିକର ଉତ୍ତର ଦେଇ ନପାରି ମୁଁ ବଡ ଦୁଃଖିତ । ଆପଣ ମୋଗଲ ତାମସା ଉପରେ ମନ୍ତବ୍ୟ ଚାହିଁଥିଲେ । ଏକେ ଏ ଧରଣର ସଦୁଦ୍ୟମକୁ ସାଧୁବାଦ ଜଣାଇବା ଛଡା ମନ୍ତବ୍ୟ ଦେବା ଓ ତା'ର ପ୍ରକାଶରେ ମୋର ଗୌରବ ଦେବା ଭଳି ସ୍ପର୍ଦ୍ଧା ମୋର ନାହିଁ । ଯା ହେଉ ଟିକିଏ ପରେ ପଠାଇଦେବି । ବର୍ତ୍ତମାନ ଥେସିସ୍ କାର୍ଯ୍ୟରେ ବ୍ୟସ୍ତ ଥିବାରୁ ଅନ୍ୟ କିଛି କରିପାରୁ ନାହିଁ । ଏକେ ନାନା ପାରିବାରିକ ଅସୁବିଧା ହେତୁ କାର୍ଯ୍ୟଟି ଏ ପର୍ଯ୍ୟନ୍ତ ନ ସାରି ଥିବାରୁ ମନରେ ଅବସାଦ । xxx

ଆଶା କରେ ଭଲରେ ଥିବେ । ସମାବର୍ତ୍ତନ ହେତୁ ବ୍ୟସ୍ତତା ଭିତରେ ଚିଠି ଦେବା ଟିକେ ବିଳମ୍ବ ହେଲା । ନବବର୍ଷରେ ମୋର ଶୁଭେଚ୍ଛା ନେବେ । ଆପଣଙ୍କ ଉତ୍ତରୋତ୍ତର ଉନ୍ନତି ଓ ପ୍ରତିଷ୍ଠା କାମନା କରି ରହୁଛି । ଇତି ।

ଆପଣଙ୍କର ସ୍ନେହାନୁବଦ୍ଧ

ଶ୍ରୀନିବାସ ମିଶ୍ର

ନରେନ୍ଦ୍ରବାବୁ, ଖଗେଶ୍ୱରବାବୁ ଭଲରେ ଅଛନ୍ତି । ସାହିତ୍ୟ ସମାଜରେ ଭାଷଣ ବିଷୟ ଲେଖିଥିଲେ । କେବେ ସୁବିଧା ହେଲେ ମୁଁ ଜଣାଇବି । ଏହା ମୋର ଆନନ୍ଦର ବିଷୟ ହୁଅନ୍ତା ।

॥ ୫୯॥

ତାରିଖ ୨୨.୧୨.୬୭
ମେହେର କଲେଜ୍

ପ୍ରିୟ ମହାଶୟ,

ଅଭିନନ୍ଦନ ନେବେ । ଆଜି 'ପ୍ରଜାତନ୍ତ୍ର'ରେ ପରିବେଷିତ ସମ୍ବାଦରୁ ଜାଣିଲି ଯେ ଆପଣ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଉପନ୍ୟାସ ଧାରା ଉପରେ ସନ୍ଦର୍ଭ ଲେଖିଥିବାରୁ ଡକ୍ଟରେଟ୍ ପାଇଛନ୍ତି । ଏହି ସମ୍ବାଦରେ ମୁଁ ବଡ଼ ଆନନ୍ଦ ଅନୁଭବ କଲି । ଆପଣଙ୍କର ସାଧନାର ଯଥାର୍ଥ ସମ୍ମାନ ପାଇଥିବାରୁ- ମୁଁ ମୋ ପକ୍ଷରୁ ଓ କୋଶଳ ସାହିତ୍ୟ ସମାଜ ପକ୍ଷରୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି । ଆପଣଙ୍କର କୃତି ଓ କୃତିତ୍ୱ ଜାତିର ସାହିତ୍ୟକୁ ସମୃଦ୍ଧ କରିବାରେ ସାହାଯ୍ୟ କରୁ, ଏତିକି ଭଗବାନଙ୍କ ପାଖରେ ଆମର ଏକାନ୍ତ କାମନା ।

ସତତଃ ଆପଣଙ୍କର ସହଯୋଗ ଆମର ଏକାନ୍ତ କାମ୍ୟ । ନମସ୍କାରାନ୍ତେ

ଆପଣଙ୍କର ହାଡ଼ିବନ୍ଧୁ ମିର୍ଦ୍ଧା ।

ବି.ଦ୍ର. -ଆପଣ ଶୁଣି ଖୁସି ହେବେ ଗଙ୍ଗାଧରଙ୍କ ତପସ୍ୱିନୀର ଇଂରାଜୀ ଅନୁବାଦ ଓଡ଼ିଶା ସାହିତ୍ୟ ଏକାଡେମୀ ଛାପିବା ପାଇଁ ସମ୍ମତି ପ୍ରଦାନ କରିଛନ୍ତି । ଇଂରାଜୀ ଅନୁବାଦକଙ୍କ ସହ ପତ୍ରାଳାପ କରି ପାଣ୍ଡୁଲିପି ସଂଗ୍ରହରେ ଲାଗିଛି । ହା. ମିର୍ଦ୍ଧା

॥୬୦ ॥

Date : 29.12.67

Surendra Mohanty, Editor : Kalinga

ପ୍ରୀତିଭାଜନେଷୁ,

ଓଡ଼ିଆରେ ଡକ୍ଟରେଟ୍ ପାଇଲ ଜାଣି ଅତ୍ୟନ୍ତ ଆନନ୍ଦିତ ହେଲି । ତୁମ ପରି କୃତୀ ବ୍ୟକ୍ତି ଓ ଅଧ୍ୟାପକମାନେ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଏହିପରି ଗବେଷଣା ଆଲୋଚନା ଚଲାଇଲେ, ଓଡ଼ିଆ ସାହିତ୍ୟର ଭବିଷ୍ୟତ ଯେ ଅତ୍ୟନ୍ତ ଉଜ୍ଜ୍ୱଳ ହେବ, ସେଥିରେ ମୋର ଅଣୁମାତ୍ର ସନ୍ଦେହ ନାହିଁ । ମୋର ଅଭିନନ୍ଦନ ଗ୍ରହଣ କରିବ । ଶ୍ରୀମତୀ ଜୟନ୍ତୀ ଓ ପିଲାମାନଙ୍କୁ ମୋର ଶୁଭାଶିଷ ।

ଶୁଭେଚ୍ଛା ସହିତ ସୁରେନ୍ଦ୍ର ମହାନ୍ତି

॥ ୬୧ ॥

ମୁ: ଶୀର୍ଷା
ତା ୨୧.୧୨.୬୭

ପୂଜାସ୍ପଦ ଗୁରୁଦେବ,

ପ୍ରଣିପାତ ଗ୍ରହଣ କରିବେ । ଆପଣଙ୍କର ଉଲ୍ଲେଖନୀୟ କୃତକାର୍ଯ୍ୟତାରେ ଅନ୍ତଃକରଣର ଅଭିବାଦନ ଜଣାଉଛି । ପ୍ରଫୁଲ୍ଲତାର ଆତିଶଯ୍ୟକୁ ହୃଦୟମଧ୍ୟରେ ପୂର୍ଣ୍ଣତଃ ଆବଦ୍ଧ କରିବା

ସମ୍ଭବପର ନ ହେବାରୁ ତାହା ପତ୍ରାକାରରେ ପ୍ରକାଶ କରିବାକୁ ଚେଷ୍ଟା କଲି ।

ଆପଣଙ୍କ ଡକ୍ଟରେଟ୍ ଉପାଧି ଲାଭ ସମ୍ବାଦ 'ସମାଜ'ରୁ ପାଇ ମୁଁ ଯାହା ଅନୁଭବ କଲି, ପ୍ରକୃତରେ ତାହା ଭାଷା ମାଧ୍ୟମରେ ପ୍ରକାଶ କରିବା ସମ୍ଭବପର ନୁହେଁ । ଭଦ୍ରକ ସହର ବା ତନ୍ନିକଟବର୍ତ୍ତୀ କୌଣସି ସ୍ଥାନରେ ଥିଲେ, ଆପଣଙ୍କୁ ସାକ୍ଷାତ୍ କରି ସମକ୍ଷରେ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରିଥାନ୍ତି । ମୋ ମୁଖମଣ୍ଡଳରୁ ଆପଣ ମୋ ମାନସିକ ଆନନ୍ଦ ବିଷୟରେ ସମ୍ୟକ୍ ଜାଣିଥାନ୍ତେ । ମାତ୍ର ଦୂରରେ ଥିବାରୁ ହଠାତ୍ ମୋର ସେ ସୁଯୋଗ ନାହିଁ ।

ସୌଭାଗ୍ୟକୁ ଆପଣଙ୍କୁ କେବଳ ହାଇସ୍କୁଲରେ ଶିକ୍ଷକ ଭାବରେ ନୁହେଁ, ମାତ୍ର କଲେଜରେ ମଧ୍ୟ ଅଧ୍ୟାପକ ଭାବରେ ପାଇଛି । ସାହିତ୍ୟ ପ୍ରତି ଆଗ୍ରହ ଥିବା ସତ୍ତ୍ୱେ ସେ ସଂକ୍ରାନ୍ତ ଆଲୋଚନା ପାଇଁ ଏଠାକାର ସୁବିଧା ସୀମାବଦ୍ଧ । ଯଦି କେବେ ସେ ଅଞ୍ଚଳକୁ ବଦଳି ଯିବାର ସୁଯୋଗ ଆସେ, ତାହେଲେ ଆପଣଙ୍କ ସାନ୍ନିଧ୍ୟ ଲାଭ କରିବି ଓ ବହୁବାର ଆପଣଙ୍କର ଜ୍ଞାନଭଣ୍ଡାର ସାହାଯ୍ୟ ପ୍ରାର୍ଥୀ ହେବି ବୋଲି ଆଶା ରଖିଲି । ଆପଣଙ୍କୁ ସାହିତ୍ୟ-ଗୁରୁ ଭାବରେ ପାଇ ××× ××× ପ୍ରୋକ୍ତ ଗୁରୁଶିଷ୍ୟ ସମ୍ପର୍କ ବର୍ଦ୍ଧିଷ୍ଣୁ ହେଉ । ଏହା ହିଁ କାମ୍ୟ ।

ଘରେ ଗୁରୁଜନମାନଙ୍କୁ ଯଥାମାନ୍ୟ ଓ ସାନମାନଙ୍କୁ ଆଶିଷ ଜଣାଇବେ । ମୁଁ ଏକ ପ୍ରକାର ଅଛି ।

ପରାତ୍ପରଙ୍କ କରୁଣାରୁ ସୁସ୍ଥ ଶରୀର ଓ ଦୀର୍ଘ ଜୀବନରେ ଆପଣ ସାହିତ୍ୟ ସେବାରେ ଅଧିକରୁ ଅଧିକତର ବ୍ରତୀ ହୁଅନ୍ତୁ ଓ ଉତ୍କଳ ବାଣୀଭଣ୍ଡାରର ଉତ୍ତରୋତ୍ତର ଉନ୍ନତି କରନ୍ତୁ , ଏତିକି ସେହି ମଙ୍ଗଳମୟଙ୍କଠାରେ ମିନତି ।ଇତି।

ଭବଦୀୟ ଆଜ୍ଞାଧୀନ
ପ୍ରଣତ ଚକ୍ରଧର
(ଚକ୍ରଧର ବାରିକ)

॥ ୬୨ ॥

ଫକୀରମୋହନ କଲେଜ

୧.୧.୬୮

ମାନନୀୟେଷୁ,

ମୋର ପ୍ରଣାମ ଗ୍ରହଣ କରିବେ । ନୂଆବର୍ଷର ପ୍ରଥମ ଦିନରେ, ଆପଣଙ୍କୁ ଅର୍ପିତ ହେଉଥିବା ନୂତନ ଗୌରବରେ ମୁଁ ଆନନ୍ଦିତ ହେଇ ମୋ ହୃଦୟର ଭକ୍ତିଅର୍ଘ୍ୟ ନିବେଦନ କରୁଚି । ବିଶ୍ୱବିଦ୍ୟାଳୟଙ୍କର ଉପାଧିଦାନ ନିର୍ବାଚନ ଅଭ୍ରାନ୍ତ ଓ ଉପଯୁକ୍ତ ବ୍ୟକ୍ତିଙ୍କଠାରେ ଅର୍ପିତ ହେଇଛି । ମୁଁ ବହୁଦିନରୁ ଏହାର ସୂଚନା ପାଇଥିଲି ଓ ଆପଣ ଯେ ଏଥିପାଇଁ

ସବୁମନ୍ତେ ଯୋଗ୍ୟ ତାହା ମୋର ବିଶ୍ୱାସରେ ଆସିଥିଲା । ଓଡ଼ିଆ ଉପନ୍ୟାସ ଓ ଗଳ୍ପ କ୍ଷେତ୍ରରେ ଆପଣ ପ୍ରଥମେ ପ୍ରବେଶ କରିଛନ୍ତି । ଆପଣଙ୍କ ପ୍ରଦର୍ଶିତ ମାର୍ଗରେ ଗତି କରି ଆପଣଙ୍କର ଅନୁଗାମୀମାନେ ସାହିତ୍ୟର ଏଇ ବିଭାଗଟିକୁ ପୁଷ୍ଟ କରିବେ ।

ପୁସ୍ତକାକାରରେ ପ୍ରକାଶ କରିବା ପାଇଁ କି ବ୍ୟବସ୍ଥା କରୁଛନ୍ତି-ତାହା ଜାଣିବାକୁ ମୁଁ ଏକାନ୍ତ ଆଗ୍ରହୀ । ଓଡ଼ିଆ ସାହିତ୍ୟର ପାଠକମାନେ ଏହାର ଆଶୁ ପ୍ରକାଶ ପାଇଁ ନିଶ୍ଚୟ ଆକୁଳ ହେଉଥିବେ ।

ଚିନ୍ତାମଣିବାବୁଙ୍କର ବଦଳି ପରେ ଏଠା ଓଡ଼ିଆ ବିଭାଗ କ୍ରିୟାହୀନ ହେଇ ପଡ଼ିଲା ଭଳି ମୋତେ କାହିଁକି ଲାଗୁଚି । ×××

ଆପଣଙ୍କର ଆଶୀର୍ବାଦ ଭିକ୍ଷା କରି ରହିଲି । ଇତି ।

ଆପଣଙ୍କର ବିନୟାବନତ
ବୈରାଗୀଚରଣ
(ବୈରାଗୀଚରଣ ଜେନା)

॥୬୩ ॥

ସୁବାସଚନ୍ଦ୍ର ମିଶ୍ର
ଇନଷ୍ଟିଚ୍ୟୁଟ୍ ଅଫ୍ ଲୋକାଲ୍ ଗଭର୍ଣ୍ଣମେଣ୍ଟ ଷ୍ଟଡିଜ୍,
ୟୁନିଭରସିଟି ଅଫ୍ ବର୍ମିଂହାମ୍, ୟୁ.କେ.

ବର୍ମିଂହାମ୍ ବିଶ୍ୱବିଦ୍ୟାଳୟ
୧୦.୧.୬୮

ମାନନୀୟେଷୁ,

ଆପଣଙ୍କୁ ମୋର ନବବର୍ଷର ଶୁଭେଚ୍ଛା ଜଣାଇବା ସଂଗେ ସଂଗେ ଆପଣଙ୍କର ଶିକ୍ଷାକ୍ଷେତ୍ରରେ ଅପୂର୍ବ ସଫଳତା ପାଇଁ ମୋର ଆନ୍ତରିକ ଅଭିନନ୍ଦନ ଆଜି ବର୍ମିଂହାମ୍‌ଠାରୁ ଜଣାଉଛି ।

ଗତକାଲି ଦାସଗୁପ୍ତା ବାବୁଙ୍କର ଏକ ଚିଠିରୁ ଶୁଣି ମୁଁ ପରମ ଆନନ୍ଦିତ ଯେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଆପଣ ନିକଟରେ ପିଏଚ୍.ଡି. ଉପାଧି ଲାଭ କରିଛନ୍ତି । ଭଦ୍ରକ କଲେଜରେ ମୋର ମାତ୍ର ଦେଢ଼ବର୍ଷର ରହଣୀ ମଧ୍ୟରେ ଆପଣଙ୍କର ନିକଟ ସଂପର୍କରେ ଆସିବାର ସୁଯୋଗ ପାଇଥିଲି । ତା ପୂର୍ବରୁ ଆପଣଙ୍କର ବହୁ ଲେଖା ମଧ୍ୟ ପଢ଼ି ଆପଣଙ୍କର ବିଶେଷ ପ୍ରତିଭାର ପରିଚୟ ପାଇଥିଲି । ତେଣୁ ଆଜି ଦାସଗୁପ୍ତା ବାବୁଙ୍କ ଚିଠିରୁ ଆପଣଙ୍କ କୃତିତ୍ୱର ଖବର ପାଇ ମୁଁ ଅଭିନନ୍ଦନ ନଜଣାଇ ରହିପାରୁ ନାହିଁ ।

××× ××× ×××

ଆଶା କରେ କଲେଜ ଖବର ସବୁ ଭଲ । ବଳରାମବାବୁ, ନନ୍ଦିବାବୁ, ସନାତନବାବୁ ଓ ଆପଣଙ୍କ ବିଭାଗର ସମସ୍ତେ ଓ ଅନ୍ୟମାନେ ଆଶା କରେ ଭଲରେ ଥିବେ । ଆପଣମାନଙ୍କ ସହିତ ଭଦ୍ରକ କଲେଜରେ ଜଣେ ସହକର୍ମୀ ଭାବରେ କାର୍ଯ୍ୟ କରିଥିବା ଦିନଗୁଡ଼ିକ ମନେ ପଡିଯାଉଛି । ବିଶେଷତଃ ଆପଣଙ୍କ ଘରେ ଦିନେ ଦିନେ ବସି ଆପଣଙ୍କ ଲେଖାସବୁ ଦେଖିଥିବାର ଯେଉଁ ଆନନ୍ଦ ପାଉଥିଲି ତାହାସବୁ ମନେ ପଡିଯାଉଛି । ଭଦ୍ରକ କଲେଜରେ ଯେଉଁ କେତେଜଣଙ୍କର ଜ୍ଞାନ ଓ ପ୍ରତିଭା ତଥା ବ୍ୟକ୍ତିତ୍ୱ ମତେ ମୁଗ୍ଧ କରିଥିଲା, ସେମାନଙ୍କ ମଧ୍ୟରୁ ଆପଣ ଥିଲେ ମୋର ଅନ୍ୟତମ । ଆଜି ଭଦ୍ରକ କଲେଜର ଆପଣ ହିଁ ହେଲେ ପ୍ରକୃତ 'ଗୌରବ' । ସେ କଲେଜରୁ କେହି ଏଯାଏଁ ପିଏଚ୍.ଡି ଲାଭ କରିନଥିଲେ । ମୋର ଆଶା ଆପଣ ହିଁ ଅନ୍ୟମାନଙ୍କର ଆଦର୍ଶ ହୋଇ ସେଠି ରହିବେ । ଆପଣଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛି । ପାରିବେ ଯଦି ଚିଠି ଖଣ୍ଡେ ଦେବେ ବୋଲି ଆଶା କରି ରହିଲି । ତଳେ ମୋର ଠିକଣା ଦେଲି । ଇତି

ଆପଣଙ୍କର
ସୁବାସଚନ୍ଦ୍ର ମିଶ୍ର

॥ ୬୪ ॥

ଖଲ୍ଲିକୋଟ୍
୧୫.୧.୬୮

ପ୍ରିୟ କୃଷ୍ଣବାବୁ,

ପ୍ରଣାମ ! ଜୟନ୍ତୀଦେବୀ ଓ ପିଲାମାନଙ୍କୁ ମୋର ଶୁଭେଚ୍ଛା କହିବେ । କ'ଣ କରିବି ଅନଗୋଳରେ ୧୦ ବର୍ଷ ହୋଇଗଲା । ପୁଣି ସରକାର ଏଠାକୁ ପଠାଇଲେ । ପାହାଡିଆ ସ୍ଥାନ ବ୍ୟତୀତ ସମତଳ କ୍ଷେତ୍ରରେ ବୋଧହୁଏ ଚାକିରି ଜୁଟିବ ନାହିଁ ।

ଆପଣଙ୍କ ଚିଠି ପାଇଛି । ଯାହା ଯେମିତି ଲେଖୁଛି ତାହା ଗୋଟିଗୋଟି ପତ୍ରିକାରେ ପ୍ରକାଶିତ ହୋଇ ଯାଉଛି । ଆଉ ଅଧିକ କଣ ଲେଖିବି । ତେବେ ନିକଟରେ ୨/୩ଟି ବହି ହୁଏତ ପ୍ରକାଶିତ ହୋଇପାରେ । ନବଜୀବନ ପ୍ରେସ୍ କେତେକ ବ୍ୟକ୍ତିଗତ ପ୍ରବନ୍ଧକୁ 'ବାଙ୍ମୟ' ନାମରେ ଛାପୁଛନ୍ତି । ପିଲାଙ୍କ ପାଇଁ କଳା ଓ କାହାଣୀ ବହିଟିଏ ବିଦ୍ୟାପୁରୀ ଛାପିବାର ଆୟୋଜନ କରୁଛନ୍ତି । ଅର୍ଥାତ୍ ତାର ଛବିଗୁଡ଼ିକ ବ୍ଲକ୍ କରି ସାରିଲେଣି । ଲଳିତକଳା ଏକାଡେମୀ ମାର୍ଫତରେ Graphic Art album ଓ କାଠ ଖୋଦେଇ ବହି ଦୁଇଟି ଛାପା ହୋଇ ପ୍ରକାଶିତ ହେବାର ଅଛି । କଣ ହେଉଛି ସବୁକଥା ସରସ୍ୱତୀଙ୍କୁ ମଧ୍ୟ ଅଜଣା । ମୁଁ କ'ଣ ଲେଖିବି !

ବାବାଜୀ ମହାପ୍ରଭୁ ଓ ଅନ୍ୟମାନଙ୍କୁ ମୋର ପ୍ରଣାମ କହିବେ । ଏଠାରେ Principal ସମେତ ଆମେ ୭ଜଣ Artist ଅଛୁ । ସେଥିରୁ ୫ ଜଣ ଶାନ୍ତିନିକେତନର ଛାତ୍ର । ଏହା ସତ୍ତ୍ୱେ ଶାନ୍ତିନିକେତନର ସରସତା ଜମି ପାରୁନି ।

ପ୍ରଣତ ବିନୋଦ ରାଉତରାୟ

॥ ୬୫ ॥

ପ୍ରସନ୍ନ କୁମାର ଦାସ
ବୁର୍ଲା, ସମ୍ବଲପୁର
ତା. ୨୬ ଅପ୍ରେଲ୍ ୬୮

ମାନନୀୟ ସାର୍,

ମୋର ସମ୍ମାନ ଗ୍ରହଣ କରିବେ । ଓଡ଼ିଆ ଗବେଷଣା ପତ୍ରରେ କୃତକାର୍ଯ୍ୟ ହୋଇଥିବା ଯୋଗୁଁ ପ୍ରଥମେ ଆପଣ ମୋର ଅଭିନନ୍ଦନ ଗ୍ରହଣ କରିବେ । ମୁଁ ଯେଉଁଦିନ ସମ୍ବାଦ ପତ୍ରରୁ ଏ ସମ୍ବାଦ ପାଇଲି ସେଦିନ ଯଥେଷ୍ଟ ଗର୍ବ ଏବଂ ଗୌରବ ଅନୁଭବ କରିଥିଲି- ଆପଣଙ୍କର ଜଣେ ଛାତ୍ର ହିସାବରେ । ଆପଣଙ୍କର ତା ୨୦ ଅପ୍ରେଲ୍‌ର ଚିଠିରୁ 'ତ୍ରିଶଙ୍କୁ' ଗଳ୍ପ ଅର୍ଘ୍ୟରେ ସ୍ଥାନ ପାଇଛି ଜାଣି ଭାରି ଖୁସି ହେଲି ।

ଆପଣଙ୍କ ଭଳି ଜଣେ କର୍ମବ୍ୟସ୍ତ ଅଧ୍ୟାପକ ନିଜର ସମୟ ସଞ୍ଚୟ କରି ମୋ ପାଖକୁ ସ୍ନେହ, ଉପଦେଶ ତଥା ଆଶୀର୍ବାଦ ସମ୍ବଳିତ ପତ୍ର ଦେଇ ପାରିଛନ୍ତି ତାହାହିଁ ମୋ ଲାଗି ସବୁଠାରୁ ଗୌରବର ବିଷୟ । ଆପଣଙ୍କ ଏହି ଆଶୀର୍ବାଦ, ସହାନୁଭୂତି ମୋର ଭବିଷ୍ୟତ ଜୀବନର ପାଥେୟ ହେବ । ଆପଣଙ୍କର ଉପଦେଶ ମୁଁ ମୋ ଭବିଷ୍ୟତ ଜୀବନର ଚଲାପଥର ପାଦେ ପାଦେ ପୁଣି ଏହିଭଳି ପାଉଥିବି ବୋଲି ଆଶା ରଖୁଛି ।

ପରିଶେଷରେ ଏ ପତ୍ର ଆପଣଙ୍କୁ କୁଶଳ ମାନସିକ ଶାରୀରିକ ପରିବେଶରେ ଭେଟିବ ବୋଲି ବିଶ୍ୱାସ । ଆଜି ରହୁଛି ।

ଆପଣଙ୍କର ଆଜ୍ଞାଧୀନ
ପ୍ରସନ୍ନ

॥ ୬୬ ॥

ଅନ୍ଧାର ଅପସରି ଯାଉ !

ବହଳଦାରୁ
ଅଠଷଠୀ ମାର୍ଚ୍ଚ ଷୋହଳ ଉପରଓଳି ।

ସାର୍,

'ସମାଜ'ରୁ ଆପଣଙ୍କ ନୂତନ ସମ୍ମାନ ଲାଭର ସଂବାଦ ପାଇଲି । ଖୁସି ହେଲି । କେତେ କଥା ହେଲି ବଂଧୁ ଶିକ୍ଷକ, ପ୍ରଧାନଶିକ୍ଷକଙ୍କ ମେଳରେ ଆପଣଙ୍କୁ ନେଇ ।

ଛପନ ମଝାମଝିରେ ଆପଣଙ୍କ ସହିତ ପ୍ରଥମ ମିଶିଲି । ସେତେବେଳକୁ ଆପଣ ଶାନ୍ତିନିକେତନରୁ ଫେରି, ବୋଧହୁଏ ଭଦ୍ରକରେ, ମାସ କେତୋଟି ଡଗରର ସଂପାଦନା ସାରି ଭଦ୍ରକ କଲେଜରେ ନୂଆ ଜଏନ୍ କରିଥାନ୍ତି ।

ଗୋପୀନାଥ ପ୍ରେସ୍ ପାଖରେ ସେଇ ଯେ ଆପଣଙ୍କ ବସା ଥିଲା, ମୋତେ ଓ ମୋର ବଂଧୁମାନଙ୍କୁ ଧରି 'ରାଜଜେମା' ପଢ଼ନ୍ତି, ଫ୍ରି ଭର୍ସ୍, ବ୍ଲାଙ୍କ ଭର୍ସ୍ କଥା ବୁଝାନ୍ତି, ନୀଳକଣ୍ଠଙ୍କ(ଆଉ ନାହାନ୍ତି) ରାଜନୀତିରେ ଯୋଗଦେବା କଥାକୁ ଅପସନ୍ଦ କରନ୍ତି । ନିଜ ଲେଖା ପତ୍ରିକାକୁ ଦେବା ଆଗରୁ କେତେ ପଢ଼ି ଶୁଣାନ୍ତି । ଏଇ କାଲିପରି ତ ଲାଗୁଛି !

ନାଁ, କାଲି ନୁହେଁ । ଯା ଭିତରେ ଯୁଗଟିଏ ବିତି ଯାଉଛି । ଯା ଭିତରେ ଆପଣ ଖାଲି 'ଚା କପ୍‌ରେ ଝଡ' ସୃଷ୍ଟି କରି ନାହାନ୍ତି, 'ସୃଷ୍ଟିର ସ୍ୱପ୍ନ'ରେ ଆନମନା ହୋଇ ନାହାନ୍ତି, 'ଗୋପନପତ୍ର'ରେ ମନଗହନର ଗୋପନ ଅଭିଲେଖ ବାଢ଼ିନାହାନ୍ତି, 'ଭାନୁବାଈ ଲେନ୍'ର ନଗ୍ନ ନିର୍ଲଜତାକୁ ଆକ୍ଷେପ କରିନାହାନ୍ତି, 'ଅଶ୍ଳୀଳତା ବିପକ୍ଷରେ' ଆପଣଙ୍କ ପ୍ରତିକ୍ରିୟାକୁ ଆଙ୍କି ନାହାନ୍ତି-ଏସବୁତ କରିଛନ୍ତି, ଯା ସାଙ୍ଗକୁ ପୁଣି ଅଗଣିତ ଛାତ୍ରମନର ମାଟିରେ ଉପ୍ତ କରିଛନ୍ତି ସର୍ଜନଶୀଳ ଅଭିରୁଚିର ଚାରା, ତରୁଣମନର ମାଳୀ ହୋଇ, ଜଗୁଆଳ ହୋଇ 'କଥା ସାହିତ୍ୟ'ର ଗାଳି ହାଂକିଛନ୍ତି, ଗଢ଼ିଛନ୍ତି, ଉତାରିଛନ୍ତି ଫୁଲବତୀ, ଫଳବତୀ ଲତା, ପାଦପ ।

ମାଟିରେ ତ ଖାଲି ବିଶାଳ ବନସ୍ପତି ଉଭାରି ନାହାନ୍ତି ଆପଣ, ମୋ ଭଳି ଦୁବଘାସରେ ବି ସ୍ପର୍ଶ ଦେଇ ବଢ଼ାଇଛନ୍ତି । ରାଜଦ୍ୱାରରେ ଆଜି ମାଳୀର ପାଗପଗଡି ଲାଭରେ ଦୁବଘାସ ି ମଥା ନୋଇଁ ତା'ର ଖୁସି ଆନନ୍ଦ ଜଣାଉଛି । ହେଉ ପଛେ ସେ ବହଳଦାର ପ୍ରସ୍ତରପିହିତ ମାଟି ଉପରର । ରହୁଛି ସାବ୍ ।

ସ୍ନେହଭିକ୍ଷୁ
ଗୋପାଳ ଚରଣ ସାହୁ

॥ ୬୭ ॥

ଜଗନ୍ନାଥ ଅପେରା
ନଳାଙ୍ଗ, ଭଦ୍ରକ, ବାଲେଶ୍ବର
ପରିଚାଳକ ପଲ୍ଲୀକବି ଶ୍ରୀ କୃଷ୍ଣପ୍ରସାଦ ବେହେରା
୧.୦୮.୬୮

ମାନନୀୟ କୃଷ୍ଣବାବୁ

ପ୍ରଣତି । ଆମେ ପରସ୍ପରକୁ ଜାଣୁ । ମାତ୍ର ଚାକ୍ଷୁସ ପରିଚୟ ନଥିଲା । ସେଦିନ ନୂଆ ବଜାରରେ ପ୍ରଥମ ସାକ୍ଷାତ । ଇତିମଧ୍ୟରେ ଆପଣଙ୍କ ନିକଟକୁ ଯିବାର କଥା ।

ବର୍ତ୍ତମାନ ମୁଁ ଜଗନ୍ନାଥ ପାଣିଙ୍କ ଛାନ୍ଦ-ନାଟକାବଳୀର ପାଣ୍ଡୁଲିପି ଉଦ୍ଧାର କରୁଛି । ତାଙ୍କ ରଚନାବଳୀକୁ ଗ୍ରନ୍ଥାକାରରେ ପ୍ରକାଶ କରିବାକୁ ଉଦ୍ୟମ ହେଉଛି ।

ଅନ୍ୟ ଗୋଟିଏ ବ୍ୟକ୍ତିଗତ କାରଣ ପାଇଁ ମଧ୍ୟ ସାକ୍ଷାତ କରିବାର ବିଶେଷ ପ୍ରୟୋଜନ ଥିଲା । ସେହି ସାକ୍ଷାତ ପାଇଁ ଆପଣଙ୍କର ଜଣେ ବନ୍ଧୁ(ଶ୍ରୀ ଲକ୍ଷ୍ମୀଧର ପାଣି) ମାଧ୍ୟମ ହୋଇ ଯିବାର କଥା । ଦୁର୍ଭାଗ୍ୟର କଥା ଯେ ଉଭୟଙ୍କ ସମୟ ସୁବିଧା ଏକ ସଙ୍ଗରେ ସମ୍ଭବିଲା ନାହିଁ । ତେଣୁ ଏ ଚିଠି ଲେଖିଲି ।

ଏ ଚିଠିଟି ଆପଣଙ୍କୁ ହୁଏତ ଆନନ୍ଦ ଦେବନାହିଁ । କାରଣ ଏହା ଏକାନ୍ତ ବ୍ୟକ୍ତିଗତ । ଏ ଧୃଷ୍ଟତା ଓ ନିର୍ଲ୍ଲଜତା ମୋ ଲେଖନୀକୁ ଅଚଳ କରିଦେଉଛି-ତଥାପି ମୋତେ ଲେଖିବାକୁ ହେଉଛି । ଚିଠି ନଲେଖି ସାକ୍ଷାତ କରିବାର କଥା, କିନ୍ତୁ ମୋର ବକ୍ତବ୍ୟ ମୌଖିକ ପ୍ରକାଶ କରିବା ଅସମ୍ଭବ ମନେକରି ଏଚିଠି ଲେଖିଲି ।

ବର୍ତ୍ତମାନ ମୋର ବୟସ ୫୫ବର୍ଷ । ମୁଁ ମୋର ନ'ବର୍ଷ ବୟସରୁ ୪୬ ବର୍ଷ ହେଲା ଏହି ମୁକ୍ତମଂଚ ମଣ୍ଡଳୀରେ ନିଜକୁ ସାମିଲ କରି ଦେଇଛି । ମୋର ଶିକ୍ଷା ପ୍ରାଥମିକ ଦ୍ୱିତୀୟ ଶ୍ରେଣୀ । ୧୬ ବର୍ଷ ବୟସରୁ ମା, ୧୯ ବର୍ଷ ବୟସରୁ ବାପା ଇହଲୋକରୁ ବିଦାୟ ନେଇ ମୋ ପାଇଁ ରଖିଯାଇଛନ୍ତି ଏହି ଦେହଟାକୁ ଓ ତାଙ୍କର ଅତୁଳ ଆଶିଷ । ମୁଁ ଭୂମିହୀନ ଓ ଗୃହହୀନ । ଏହି ଦୀର୍ଘକାଳ ମୁଁ ଦରିଦ୍ର ଯାଯାବର ଜୀବନ ଯାପନ କରିଛି । ବର୍ତ୍ତମାନ ଶ୍ୱାସ ରୋଗ ମୋତେ ଅକର୍ମଣ୍ୟ କରିଦେଇଛି ।

ଏହି ଦୀର୍ଘକାଳ ହେଲା ମୁଁ ନିଜର ସଂଭ୍ରମ ରକ୍ଷା କରି ଯଥାତଥା ଜୀବନଯାତ୍ରା ନିର୍ବାହ କରୁଥିଲି । ଚଳିତ ବର୍ଷର ପ୍ରାକୃତିକ ବିପର୍ଯ୍ୟୟ ହେତୁ ଏ ଜିଲ୍ଲାର ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ(ବିଶେଷଭାବେ ନାଟ୍ୟମଣ୍ଡଳୀ) ବିଶେଷଭାବେ ବାଧାପ୍ରାପ୍ତ ହୋଇଛି । ମୁଁ ସତ୍ୟ ଲେଖୁଛି ।

ବର୍ତ୍ତମାନ ଅନ୍ନସଂସ୍ଥାନ କରିବା ମୋ ପକ୍ଷରେ ଦୁରୂହ । ମୋର ପୁତ୍ର ଶ୍ରୀମାନ ବସନ୍ତ କୁମାର ବେହେରା ଭଦ୍ରକ କଲେଜର ୩ୟ ବାର୍ଷିକ କଳାର ଛାତ୍ର । ଏହି ଦୁଃସ୍ଥିତି ହେତୁ ତାହାର କଲେଜ ଦରମା ଛାଡ ପାଇଁ ମୁଁ ଏ ଚିଠି ଲେଖୁଛି । ଆପଣଙ୍କ ପକ୍ଷରୁ ଏ ବିଷୟରେ ସହାୟତା ମିଳିବା ଆଶାରେ ମୁଁ ଚିଠି ଲେଖିଲି । ମୁଁ ପ୍ରାୟ ଅର୍ଦ୍ଧ ଶତାବ୍ଦୀ ହେଲା ନାଚି ନାଚି ଥକି ଗଲିଣି ।

ଆପଣମାନଙ୍କ ସହାୟତା ପ୍ରତି ଆଶା ଓ ଭରସା ରଖି ପତ୍ର ସାଙ୍ଗ କଲି ।

ବିନୟାବନତ

କୃଷ୍ଣ ବେହେରା

॥୬୮॥

## Lead Kindly Light

Mangalucharan Biswal, M.A. B.Ed,
At : Barodumuri
P.O.:Parmanpur, Dist: Sambalpur
12.8.68

ମାନନୀୟ ମହାଶୟ,

'ପ୍ରଜାତନ୍ତ୍ର'ରେ ପ୍ରକାଶିତ 'ଓଡ଼ିଆ ସାହିତ୍ୟ କି କେବଳ କଟକ-ଭୁବନେଶ୍ୱରର ସାହିତ୍ୟ' ଶୀର୍ଷକ ଆଲୋଚନା ପଢ଼ି ବିଶେଷ ଖୁସି ହେଲି । ଆପଣଙ୍କ ନିସଂକୋଚ, ନିର୍ଭୀକ ଓ ସମୟୋପଯୋଗୀ ଆଲୋଚନା ବହୁ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ହୃଦୟକୁ ସ୍ପର୍ଶ କରିବ ନିଶ୍ଚୟ । ଆଶା ସୁଖୀ ଥିବେ । ବାକିସବୁ ପରେ ।

ଆପଣଙ୍କ ଗୁଣମୁଗ୍ଧ
ମଙ୍ଗଳୁଚରଣ ବିଶ୍ୱାଳ

॥ ୬୯ ॥

Pudapali
"Kalpana Bhawan"
23.08.1968

Ram Kumar Agrawala
P.o: Bhaler, Dist. Balangir

ମାନନୀୟ ପ୍ରିୟ ମହାଶୟ,

ମୋର ବିନୀତ ପ୍ରଣାମ ନେବେ । ବହୁ ଦିନ ତଳେ ଆପଣଙ୍କର ଚିଠିଟିଏ ପାଇଥିଲି । ଏବେ ଶ୍ରୀ ପ୍ରଫୁଲ୍ଲକୁମାର ତ୍ରିପାଠୀ ଲେଖିଥିଲେ ଆପଣଙ୍କର କୌଣସି ଏକ କ୍ଷୁଦ୍ରଗଳ୍ପ ହିନ୍ଦୀଭାଷାରେ ଅନୂଦିତ ହୋଇ ପ୍ରକାଶିତ ହୋଇଛି । ଆପଣ ବୋଧହୁଏ ଏ ବିଷୟରେ ଜାଣିଥିବେ । ଆଜିକୁ ୫ ମାସ ତଳେ 'ଡଗର'କୁ 'ଜଣାମାମୁ' କବିତାଟି ପଠାଇଥିଲି । ଏଇ ଦୀର୍ଘ ୫ ମାସ ମଧ୍ୟରେ ଅନେକଗୁଡ଼ିଏ ଚିଠି ଦେଇଛି । ମାତ୍ର ଦୁଃଖର କଥା ତାଙ୍କ ପାଖରୁ ଉତ୍ତର ଖଣ୍ଡିଏ ପାଇ ନାହିଁ, ସେମାନେ ଉକ୍ତ କବିତାଟିକୁ ଫେରାଇ ନାହାନ୍ତି କି ପ୍ରକାଶିତ କରୁ ନାହାନ୍ତି । ଏପରି ସ୍ଥିତିରେ ମୁଁ କଣ କରିବି ବୁଝିପାରୁନାହିଁ । ଏବେ ଶୁଣିଲି ଭଦ୍ରକରୁ 'ତ୍ରୟୀ' ଶୀର୍ଷକ ମାସିକ ସାହିତ୍ୟ ପତ୍ରିକାଟିଏ ପ୍ରକାଶିତ ହେବାକୁ ଯାଉଛି । ସତୀଶ ବାନାର୍ଜୀ ନାମକ କେହି ଜଣେ ଲେଖା ପଠାଇବା ପାଇଁ ସାନ୍ କ୍ଷୀରୋଦ୍ଧବାଧା ବାବୁଙ୍କ ପାଖକୁ ଚିଠି ଦେଇଥିଲେ । ଆପଣ ମୋର କବିତାଟି 'ଜଣାମାମୁ' ଦୟାକରି

ତାଙ୍କୁ ଦେଇ ଦେବେ, ଯଦି ଉକ୍ତ ପତ୍ରିକାରେ ତାହା ପ୍ରକାଶ ଉପଯୋଗୀ ବୋଲି ଗୃହୀତ ହୁଏ । ପରେ ଚିଠି ଲେଖି ଜଣାଇ ଦେଲେ ଖୁସି ହୁଅନ୍ତି । ଆପଣଙ୍କର 'ବେଦୀ' ଗଳ୍ପର ଅନୁବାଦ ଏ ମଧ୍ୟରେ ସରିଯିବ । ପରେ ପଠାଇବି ।

ଆପଣଙ୍କର ଗୋଟିଏ ଚମତ୍କାର ପ୍ରବନ୍ଧ ଏଇ ଅଳ୍ପଦିନ ତଳେ ଯାହା ରବିବାରର ପ୍ରଜାତନ୍ତ୍ରରେ ପ୍ରକାଶିତ ହୋଇଥିଲା, ତାହା ପଢ଼ି ମୁଁ ଆନନ୍ଦିତ ଓ ଅତ୍ୟନ୍ତ ପ୍ରୀତ ହେଲି । ସେଥିପାଇଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି । ଉକ୍ତ ପ୍ରବନ୍ଧଟି ବଲାଙ୍ଗୀରରେ ପ୍ରେରଣାର ଉତ୍ସ ବୁହାଇ ଦେଲା । ଆଶା ଓ ଅନୁରୋଧ ଆପଣ ଏପରି କେତୋଟି ପ୍ରବନ୍ଧ ମଝିରେ ମଝିରେ ଲେଖି କଟକର ସାହିତ୍ୟମଠକୁ ତଥା ମଠର ମହାରାଜାମାନଙ୍କୁ ଚେତାବନୀ ଦେଉଥିବେ । ଆମେ ଭାବୁଛୁ ଉକ୍ତ ପ୍ରବନ୍ଧଟ ଯଦି ଆପଣ ନଲେଖି ଅନ୍ୟ କେହି ଜଣେ ଲେଖିଥାନ୍ତା, ବୋଧହୁଏ ପ୍ରଜାତନ୍ତ୍ରରେ ତାହା ପ୍ରକାଶିତ ହୋଇ ପାରି ନଥାନ୍ତା । ଆପଣଙ୍କର ନୂତନ ତଥା ଦୃଢ଼ ପଦକ୍ଷେପ ଯେ ଆମକୁ କେତେ ସାହସ ଓ ଆଗେଇ ଯିବାର ପ୍ରେରଣା ଦେଉଛି, ତାହା ମୁଁ ଏ ନିର୍ଜୀବ କାଳି ଓ କଲମରେ କଣ ଲେଖିବି ! ସେ ଦିନି ଉକ୍ତ ପ୍ରବନ୍ଧଟି ଦେଖି ପ୍ରଥମେ ମୁଁ ଆନନ୍ଦରେ ନାଚି ଉଠିଥିଲି । ମନେ ହେଲା ଆପଣ ବହୁଦୂରରେ ଥିଲେ ମଧ୍ୟ ଆମର ଖୁବ୍ ନିକଟରେ ଅଛନ୍ତି । ଏମଧ୍ୟରେ ଶ୍ରୀ ରାମପ୍ରସାଦ ପୁରୋହିତ ବଲାଙ୍ଗୀର ଆସିଥିଲେ । ସେ ଆପଣଙ୍କର ବିଷୟରେ ବହୁତ କଥା କହି ଆପଣଙ୍କୁ ପ୍ରଶଂସା କରୁଥିଲେ । ଆଶା ସପରିବାରେ କୁଶଳରେ ଅଛନ୍ତି । ସାର୍, କମଳାକାନ୍ତ ବାବୁଙ୍କୁ ମୋର ନମସ୍କାର । ସେ କାହିଁକି ଏବେ ଲେଖାଲେଖି କରୁନାହାନ୍ତି । ମୋର ଅଭିଯୋଗ ତାଙ୍କୁ ଜଣାଇବେ । ଏବେ ଆମର 'ବିଫଳତା ସପକ୍ଷରେ' ଶୀର୍ଷକ କବିତା ପୁସ୍ତକଟିଏ ପ୍ରକାଶିତ ହୋଇଛି । ପଠାଉଛୁଁ । ଆପଣଙ୍କର ମତାମତ ଜଣାଇ ଖୁସି କରାଇବେ । ପତ୍ର ଦେବାକୁ ବିନୀତ ଅନୁରୋଧ । ଇତି ।

ନମସ୍କାରାନ୍ତେ
ଆପଣଙ୍କ ଗୁଣମୁଗ୍ଧ
ରାମକୁମାର ଅଗ୍ରୱାଲ

॥ ୭୦ ॥

ଭୁବନେଶ୍ୱର
୧.୧.୬୯

ପ୍ରିୟ ମହାଶୟ,

ଆପଣଙ୍କର ସଂକଳିତ ଓ ସଂପାଦିତ 'ମୋଗଲ ତାମସା' ପୁସ୍ତକ ପାଇ କୃତଜ୍ଞତା ଜଣାଉଛି । ଏଦିଗରେ ଆପଣଙ୍କର ପଦକ୍ଷେପ ସଂପୂର୍ଣ୍ଣ ନୂତନ ଏବଂ ଅତି ପ୍ରଶଂସନୀୟ,

ଏହା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି । ଆଶା କରେ ଆପଣ ସାହିତ୍ୟ ସାଧନା ଦିଗରେ ପ୍ରୟାସ ଅକ୍ଷୁଣ୍ଣ ରଖିବେ ।

ଆପଣଙ୍କର ଶ୍ରୀ ଅନିରୁଦ୍ଧ ଦାଶ

॥ ୭୧ ॥

କଟକ

ତା ୧.୪.୬୯ ରିଖ ।

ପୂଜାସ୍ପଦ ସାର୍!

ମୋର ପ୍ରଣାମ ନେବେ । ବହୁ ଦିନରୁ ଆପଣଙ୍କ ପାଖକୁ ଚିଠି ଦେଇ ନ ଥିବାରୁ ମୁଁ ଦୁଃଖିତ । କୌଣସି ମତେ ପଢ଼ାପଢ଼ି ଚାଲିଛି । ମୁଁ ବର୍ତ୍ତମାନ P.G Hostel ରେ ରହୁନାହିଁ । ଛତ୍ରବଜାର ପୋଲ ପାଖ ସତ୍ୟନାରାୟଣ ମନ୍ଦିରରେ ରହୁଛି । ଆମ Class ରେ ୯ ଜଣ ଅନର୍ସ ପିଲା ଅଛନ୍ତି । ମୋଟ ପିଲା ୪୦ ଜଣ । April ୧୫ରେ Class ବନ୍ଦ ହେବ । ମୁଁ ଭଦ୍ରକରେ ୪/୫ ଦିନ ରହିବି ଏପ୍ରିଲ୍ ମାସ ଭିତରେ । ଆପଣଙ୍କ ପାଖରୁ କେତେକ ବିଷୟ ବୁଝିବି । କୁଞ୍ଜବାବୁ ଭଲରେ ଅଛନ୍ତି । ଆପଣଙ୍କ କଥା ସେ ବେଳେବେଳେ ପଚାରନ୍ତି । ଆପଣଙ୍କର ଫେବୃୟାରୀ ମାସ 'ଝଙ୍କାର'ରେ ବାହାରିଥିବା 'ଆଧୁନିକ କ୍ଷୁଦ୍ରଗଳ୍ପରେ ସଂଶୟ ଓ ସ୍ଥିତିବାଦ' ଆମ କ୍ଲାସର ପିଲାଙ୍କ ମନକୁ ବେଶ୍ ପାଇଛି । କ୍ଷୁଦ୍ର ଗଳ୍ପକୁ ଆପଣ ବାମନ ସହିତ (ବାମନ ଅବତାର ସହିତ) ତୁଳନା କରିଛନ୍ତି । ଏହା ଖୁବ୍ ଆକର୍ଷଣୀୟ ହୋଇଛି । ସମାଲୋଚନାଟି ମୁଁ ପଢ଼ିଛି । ଗୋଟିଏ କଥାରେ, ସମାଲୋଚନାର ସବୁଗୁଣକୁ ବହନ କରି ଏ ଲେଖାଟି ମୋତେ ଗୋଟିଏ କ୍ଷୁଦ୍ରଗଳ୍ପ ପରି ଲାଗିଲା । ଉପସଂହାର ଖୁବ୍ ସୁନ୍ଦର ହୋଇଛି । ଚିଠି ଖଣ୍ଡେ ଦେବେ । ମୁଁ ଭଦ୍ରକ ଗଲେ ନିଶ୍ଚୟ ଆପଣଙ୍କ ପାଖକୁ ଯିବି । ॥ ଇତି ॥

ଆପଣଙ୍କର ସ୍ନେହର,

ସନାତନ ନାୟକ

॥ ୭୨ ॥

ଶାନ୍ତିନିକେତନ

୧୭.୪.୬୯

ପୂଜନୀୟେଷୁ,

ମୋର ପ୍ରଣାମ ନେବେ । ଆପଣଙ୍କ ଚିଠି ଓ ଟଙ୍କା ଅନେକ ଦିନରୁ ପାଇଲିଣି । କିନ୍ତୁ ଉତ୍ତର ଦେଇ ପାରିନାହିଁ । ଏ ଭିତରେ ମୋ ଦେହ ପ୍ରାୟ ଭଲ ରହୁନଥିବାରୁ ମୁଁ କେତେକ ପରିମାଣରେ ଅସୁବିଧା ଭୋଗୁଥିଲି । ଏହାଛଡା କଲେଜ ବନ୍ଦ ହୋଇଯାଉଛି,

ତେଣୁ ଟିଉଟୋରିଆଲ ସାରିବା ପାଇଁ ମଧ ବ୍ୟସ୍ତ ହେବାକୁ ପଡୁଥିଲା । ଆଶା କରେ ମୋର ଡେରି ନିମନ୍ତେ କ୍ଷମା କରିଦେବେ ।

ସ୍ମରଣିକା ପାଇଁ ମୁଁ ସତରେ ଭାରି ଲଜ୍ଜାବୋଧ କରୁଛି । ସମସ୍ତଙ୍କୁ ଘନଘନ ଚିଠି ଲେଖି ଲେଖା ମଗାଇ ସାରି ଏପରି ହେଳା କରିବା ଅତ୍ୟନ୍ତ ଗର୍ହିତ କଥା ।, କିନ୍ତୁ ପ୍ରକାଶ ପାଇଁ ଏକକାଳୀନ ଏତେ ଟଙ୍କା ମୁଁ ଯୋଗାଡ କରିପାରୁନାହିଁ । ଏଥିପାଇଁ ସତ କହିବାକୁ ଗଲେ ଉଦ୍‌ଯୋଗ ପର୍ବ ବେଳେ ଯେତେ ଉତ୍ସାହ ଓ ସାହାଯ୍ୟ ମିଳୁଥିଲା, ବର୍ତ୍ତମାନ ତାହା ନାହିଁ । ଏଭଳି ଲେଖୁଥିବାରୁ ମୁଁ ଦୁଃଖିତ । କିନ୍ତୁ ଆପଣଙ୍କୁ ଏକଥା କହିବାରେ ଗ୍ଲାନି ନାହିଁ । ପ୍ରଜାତନ୍ତ୍ରକୁ ଚିଠି ଦେଇଥିଲି- ଆଜି ବ୍ୟକ୍ତିଗତ ଭାବରେ ସଂପାଦକ 'ବୁଝିବେ' ବୋଲି ଲେଖିଛନ୍ତି । ମୁଁ ଭାବୁଛି-ଭଲ ଲେଖାଗୁଡ଼ିକ ସଂଗୃହୀତ ହୋଇଛି । ଏବେ ଯଦି କୌଣସି ସୂତ୍ରରୁ ଧାରକରଜ କରି ପ୍ରକାଶ କରାଯାଏ, ବିକ୍ରି କରି ପରିଶୋଧ କରିହେବ । କାଲି ଏ ବିଷୟରେ ଆଲୋଚନା କରିବା ଆମ ବିଭାଗରେ ବସି ।

ଆପଣଙ୍କ ପାଖରେ ପଢ଼ିଛି ବୋଲି ଏବଂ Oriya Dept. ଏକ ଘରଭଳି ଥିବାରୁ ସବୁ ଖୋଲାଖୋଲି କହିପାରୁଛି । କିନ୍ତୁ ଅନ୍ୟ ଯେଉଁମାନଙ୍କଠାରୁ ଲେଖା ଆଣିଛି, ବା ଯେଉଁମାନେ ଏଠାରେ ପଢ଼ିଛନ୍ତି ସେମାନଙ୍କ ସହିତ ମୋର ପ୍ରାୟ ଏଇ ଲେଖା ମାଗିବା ସଂକ୍ରାନ୍ତୀୟ ଚିଠିରେ କିଂଚିତ ପରିଚୟ ହୋଇଛି । ତେଣୁ ସମସ୍ତଙ୍କୁ ତ ଆଉ ଅସୁବିଧା କଥା କହିପାରିବି ନାହିଁ । ତେବେ ମୁଁ ଆଶା ଛାଡି ନାହିଁ । ସ୍ମରଣିକା ପ୍ରକାଶ ହେବ ହିଁ ହେବ । ପ୍ରକାଶ କରିବା ବଡ କଥା ନୁହେଁ, ମୁଁ ପାରୁନାହିଁ ବୋଲି ମୋତେ ବଡ ମନେ ହେଉଛି ।

ଆମ କଲେଜ ଛୁଟି ହେଲାଣି କି ନାହିଁ ? ଆପଣ କଣ ଛୁଟିରେ ରହିବେ ? କହୁଥିଲେ ଥରେ ଶାନ୍ତିନିକେତନ ଆସିବେ-କିନ୍ତୁ ଆସିଲେ ନାହିଁ ତ ? ଏବେ ଅବଶ୍ୟ ଏଠାରେ ଗରମ ପଡୁଛି । ଆମ ଭିତରେ ସେଦିନ କେତେଜଣ ବ୍ୟକ୍ତିଗତ ଭାବରେ ବସି 'ବେଦୀ' ଗଳ୍ପ ଓ ରାଧାନାଥଙ୍କ ପାବର୍ତୀ କାବ୍ୟ, ନନ୍ଦିକେଶ୍ୱରୀ, ସମରେଶ ବାବୁଙ୍କର ବିବର, ପାଥର, ପ୍ରଜାପତି ଇତ୍ୟାଦି ଆଲୋଚନା କରୁଥିଲୁ । ଆମେ 'ବେଦୀ' ଦେହରେ ଗର୍ହିତ କିଛି ଖୋଜି ପାଇଲୁଁ ନାହିଁ । ବରଂ ପାର୍ବତୀରେ ଜାତୀୟତା କ୍ଷୁଣ୍ଣ ହୋଇଛି । ଏକଥା ସତ ଯେ ଦଳେ ଥାନ୍ତି, ନୂତନତା ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । କାମ ନଥାଇ ହୋ ହୋ ହେବା ତାଙ୍କ ସ୍ୱଭାବ । ଏଠି ସବୁ ଭଲ । ଅଧ୍ୟାପକମାନେ ଖରାରେ ଘରକୁ ଯାଉଛନ୍ତି । ବୋଧହୁଏ ଶ୍ରୀ ଖଗେଶ୍ୱର ବାବୁ ଓ ନରେନ୍ଦ୍ରବାବୁ ରହିବେ । ଆମେ ତ ରହୁଛୁ । ଆଶା ସପରିବାରେ କୁଶଳରେ ଅଛନ୍ତି । ଆପଣମାନେ ମୋର ପ୍ରଣାମ ନେବେ ଓ ଚୁନି, ଟୁଟୁ ଓ ବାପୁଙ୍କୁ ସ୍ନେହ ଦେବେ । ଚିଠି ଦେବେ ନିଶ୍ଚୟ ।

ବି.ଦ୍ର. ଆପଣ ଡି. ଲିଟ୍. କରୁଛନ୍ତି କି ?

ସ୍ନେହର ଗିରିବାଳା ମହାନ୍ତି

॥ ୭୩ ॥

ରାଇରଂଗପୁର,
ତା ୨୧/୦୮/୧୯୬୯

ମାନନୀୟେଷୁ,

ପ୍ରଣତି ଘେନିବେ । ଦୁଇଦିନ ତଳେ ଘରକୁ ଯାଇଥିଲି । କାଲି ଫେରିଲି । ଆପଣଙ୍କୁ ଦେଖାକରିବି ବୋଲି ଆଶା କରିଥିଲି । ଅସୁବିଧା ହେଲା । ଯାଇ ପାରିଲି ନାହିଁ ।

ଗଲା ୭ ତାରିଖ ପ୍ରଜାତନ୍ତ୍ରରୁ ଓ ପରେ ସମାଜରୁ ବିଷୟ ଅବଗତ ହେଲି । ମନ ଦୁଃଖ ଓ ଲଜ୍ଜାରେ ଭାରାକ୍ରାନ୍ତ ହୋଇ ପଡ଼ିଲା । ଆପଣଙ୍କୁ ଦେଖା କରିବି ବୋଲି ଆଶା କରିଥିଲି । ମାତ୍ର ଅସୁବିଧାରୁ ଆପଣଙ୍କ ସାକ୍ଷାତ ଲାଭର ସୁଯୋଗ ନେଲି ନାହିଁ । ଆମର ନୈତିକ ଓ ଧାର୍ମିକ ଚେତନାର ପୁରୋଧାମାନେ କେବଳ କ୍ରୁଶବିଦ୍ଧ ହୋଇ ନାହାନ୍ତି ବା ହାମଲକ୍ ପିଇ ନାହାନ୍ତି ବା ନିଆଁରେ ସନ୍ତୁଳି ହୋଇ ନାହାନ୍ତି, ମଧ ସେମାନେ ଆମମାନଙ୍କ ପାଇଁ ସେମାନଙ୍କ ଭବିଷ୍ୟତଙ୍କ ପାଇଁ ସହନଶୀଳତାର ଏକ ପରମ୍ପରା- ଦୀର୍ଘ ଓ ଅନବଚ୍ଛିନ୍ନ-ରଖିଯାଇ ଅଛନ୍ତି । ଜୀବନର ଶେଷ ମୁହୂର୍ତ୍ତରେ ସେହି ପୁରୋଧାମାନଙ୍କ ପରି କ୍ଷମା ରଖିଯାନ୍ତୁ ଓ କହି ଯାଆନ୍ତୁ ଯେ, ସେମାନେ କ'ଣ କରୁଛନ୍ତି, ଜାଣନ୍ତି ନାଇଁ ।

ଆପଣ ଆମମାନଙ୍କ ହୃଦୟରେ, ଆପଣଙ୍କର ଯୋଗ୍ୟ ଛାତ୍ରମାନଙ୍କ ହୃଦୟରେ ଯେଉଁ ଶ୍ରଦ୍ଧା ଓ ସମ୍ମାନନୀୟ ଆସନରେ ସ୍ୱତଃ ପ୍ରତିଷ୍ଠା ଲଭିଛନ୍ତି, କେତେକ ବିପଥଗାମୀ ଛାତ୍ରଙ୍କ ଦୌରାତ୍ମ୍ୟ, ତାହାକୁ କ୍ଷୁଣ୍ଣ କରିନାଇଁ । ଏପରିକି ଆପଣଙ୍କ ଉଜ୍ଜ୍ୱଳ ପଦବୀର ଥିବାନଥିବା ତହିଁରେ ମଳିନତା ବା ଉଜ୍ଜ୍ୱଳତା ଆଣି ଦେବ ନାଇଁ । କାରଣ ଆପଣଙ୍କ ଛାତ୍ରପ୍ରୀତି, ସାରସ୍ୱତ ପ୍ରତିଷ୍ଠା ଓ ଜଗୁଆଳି, ବିନୟ ଓ ମାନବିକତାବୋଧ ଆପଣଙ୍କୁ ଅନେକ ଆଗରୁ ଆମ ପ୍ରାଂତରେ ଉଚ୍ଚ ଆସନରେ ଅଧିଷ୍ଠିତ କରିଯାଇଛି । ଶିକ୍ଷାକ୍ଷେତ୍ରରେ ଯେଉଁ ଦୁଷ୍ଟ ଚାଳକମାନେ ଅନୁପ୍ରବେଶ କରି ଆପାତଃ ପ୍ରତିଷ୍ଠା ଲଭିଛନ୍ତି, ସେମାନଙ୍କ ପତନ ଘଟିବଇ ଘଟିବ, ସନ୍ଦେହ ନାଇଁ ।

ଆପଣଙ୍କର ସ୍ନେହଭିକ୍ଷୁ
ଗୋପାଳ ଚରଣ ସାହୁ

॥ ୭୪ ॥

ଭୁବନେଶ୍ୱର
୧୦.୧୦.୬୯

ପରମସୁହୃଦ୍ କୃଷ୍ଣବାବୁ,

ମୋର ସଶ୍ରଦ୍ଧ ନମସ୍କାର ଗ୍ରହଣ କରିବେ । ଗତମାସକ ତଳେ ଆପଣଙ୍କ ଘର ଉପରେ କେତେକ ଦୁର୍ବୃତ୍ତମାନଙ୍କର ଚଢ଼ାଉ ଖବର ମୁଁ ଖବରକାଗଜରୁ ଦେଖି ଅତ୍ୟନ୍ତ ବିଷଣ୍ଣ ଓ

ଦୁଃଖିତ ହୋଇଥିଲି । ଆପଣ ତତ୍‌ପୂର୍ବରୁ ଡକ୍ଟରେଟ୍ ପାଇବା ଖବରରେ ଆନନ୍ଦିତ ହୋଇଥିଲି । ତତ୍‌ପୂର୍ବରୁ ଏବଂ ନିକଟରେ ଅଶ୍ଳୀଳତା ସଂପର୍କରେ ଲେଖାସବୁ ମନଦେଇ ପଢ଼ିଥିଲି । କିନ୍ତୁ ସେତେବେଳେ କେଜାଣି କାହିଁକି ମୁଁ କିଛି ଲେଖିବାକୁ ଏତେ ଉତ୍କଣ୍ଠିତ ହୋଇନଥିଲି ।

କିନ୍ତୁ ନିକଟରେ ଆପଣଙ୍କର ଏକ ଲେଖା 'ଝଙ୍କାର' (୧୯୬୭ ଜାନୁଆରୀ)ରୁ ପଢ଼ିବାକୁ ପାଇଲି । ମୋତେ ବାବାଜୀ ଫକୀର ଦାସ ଆଣି ଦେଖାଇଲେ । ଯହିଁରେ କି ଆପଣ ଓଡ଼ିଆଙ୍କର ବୈଶିଷ୍ଟ୍ୟ ବୋଲି କିଛି ନାହିଁ ବୋଲି କ୍ଷୋଭ ପ୍ରକାଶ କରି ଲଣ୍ଡନର ସାହେବ ବନ୍ଧୁ ଉଡ୍‌ହାଉସ୍‌ଙ୍କ ଚିଠି ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ପୁନଶ୍ଚ ପାନ ଦୋକାନ, ବସ୍ କଣ୍ଡକ୍ଟର ସହିତ ବଚସାରୁ କିପରି ଆନ୍ଦୋଳନ ସବୁ ହେଉଛି, ସେ ସଂପର୍କରେ ଆପଣଙ୍କ ଅନୁଶୀଳନ ଓ ଦୃଷ୍ଟିଭଙ୍ଗୀ ମଧ ମୋତେ ଭାରି ଆନନ୍ଦ ଦେଲା । ସାହିତ୍ୟିକ, ଅଧ୍ୟାପକ ଜୀବନରେ ବି ଆପଣଙ୍କର ସେହି ନୀତି ଓ ଅଭିରୁଚି ସଚେତନା ଆଜିର ବିପଥଗାମୀମାନଙ୍କୁ ଏକ ଆହ୍ୱାନ । ୧୯୬୪ ମସିହା ଛାତ୍ର ଆନ୍ଦୋଳନ ବେଳେ ମୋର ଜଣେ ଅତିପ୍ରିୟ ବନ୍ଧୁଙ୍କର ବଡ଼ପୁଅର ପୁଲିସ ଗୁଳିରେ ଜଗତସିଂହପୁରଠାରେ ମୃତ୍ୟୁ ମୋତେ ଏତେ ବ୍ୟଥିତ କରିଥିଲା ଯେ ସେହି ସମୟଠୁଁ ଆମ ସାଂପ୍ରତିକ ସମାଜ ଓ ତା'ର ଗତି ମୋତେ ଘୋର କଷ୍ଟ ଦେଇଥିଲା । ତେଣୁ ବିଦ୍ୟାର୍ଥୀ ପରିଷଦର ସଂଗଠନ ପାଇଁ ମୁଁ ସେହି ସମୟଠୁଁ ହିଁ ମନ ବଳାଇଲି । ଲେଖାଲେଖି ଓ ଗବେଷଣା କାମ ଅତି ଗୁରୁତ୍ୱପୂର୍ଣ୍ଣ ହେଲେ ହେଁ, ଏ କାମ ମୋତେ କେମିତି ଅଧିକ ଗୁରୁତ୍ୱପୂର୍ଣ୍ଣ ମନେ ହେଲା ।

ଆଜି ମୋର ଓ ମୋ ସଂଗଠନର ଦୃଷ୍ଟିଭଙ୍ଗୀ ସହିତ ଆପଣଙ୍କ ଚିନ୍ତାଧାରା ଓ ଆଦର୍ଶର ବହୁ ସାମଞ୍ଜସ୍ୟ ମୋତେ ଆପଣଙ୍କଠାକୁ ଏତେ ନିକଟକୁ ଟାଣି ନେଉଛି । ମୋର ଆଶା ଆପଣଙ୍କର ସେହି କଠୋର ସାହସ ଓ ଧୈର୍ଯ୍ୟ ଏଯୁଗର ଅସଂଖ୍ୟ ଛାତ୍ରଙ୍କୁ ମଣିଷ କରିବ ଏବଂ ସ୍ୱର ଆପଣଙ୍କର ଯେତେ କ୍ଷୀଣ ହେଲେ ହେଁ ତାହା ଚିରସ୍ଥାୟୀ ହୋଇ ଶକ୍ତିଶାଳୀ ହେବ, ଏବଂ ଧ୍ୱଂସପଥରୁ ରକ୍ଷା ପାଇଁ ସମାଜକୁ ଯେତିକି ବଳ ହେବାର କଥା ଅନ୍ତତଃ ତାହାହିଁ ହେବ । ମୋର ଆଶା ଆପଣ ସମସ୍ତ ପ୍ରତିକୂଳ ପରିସ୍ଥିତିରୁ ରକ୍ଷା ପାଇବେ ଏବଂ ଭବିଷ୍ୟତ ହେବ ଶୁଭଙ୍କର । ଇତି ।

ସ୍ନେହାଧୀନ

ନଗେନ୍ଦ୍ରନାଥ ପ୍ରଧାନ

**॥ ୭୫ ॥**

୧୧.୧୧.୬୯

ପ୍ରିୟ ବଂଧୁ,

'ଛୁଟିରେ ଆସିବେ' ଆଶା କରିଥିଲି । ଆପଣଙ୍କ ଘର କେଉଁଠି? ପଣ୍ଡିତ ନନ୍ଦଙ୍କୁ ଜାଣିଲେ କିପରି ? ତାଙ୍କର କି ଲେଖା ରଖିଛନ୍ତି ? 'ଗ୍ରନ୍ଥାବଳୀ'ଟି ୩୨୫ପୃଷ୍ଠା ଛପା ହେଇଛି । ପରେ

ପ୍ରଦୀପର ବିଷୟ ଗୁଡିକ ଅଧ୍ୟାପକ ଆଚାର୍ଯ୍ୟଙ୍କଠୁ ପାଇଲି । ପ୍ରାୟ ୧୫୦ ପୃଷ୍ଠା ହେବ । ପୁରୁଣା ମୁକୁର ସତ୍ୟବାଦୀ ଓ ଉତ୍କଳ ସାହିତ୍ୟରେ ଆଉ କିଛି ଅଛି କି ? ମୁଁ ସଂଗ୍ରହ କରିଥିବା କବିତା, ନାଟକ ଓ ଜୀବନୀ । ଉତ୍ତର ଦେବେ ।

ଡାକ୍ତର ପଣ୍ଡା(ରାଧାଚରଣ)
ବାଲୁଗାଁ, ପୁରୀ ।

॥ ୭୬ ॥

ଶାନ୍ତିନିକେତନ
୧୩.୨.୭୦

ପ୍ରିୟ କୃଷ୍ଣଚରଣ ବାବୁ
ନମସ୍କାର,

ଆପଣଙ୍କର ଜାନୁଆରୀ ତେଇଶ ତାରିଖର ପତ୍ର ପାଇଛି । ଆପଣ ଫେବୃଆରୀ କୋଡ଼ିଏ ତାରିଖ ଶୁକ୍ରବାର ଆସିବା ଜାଣି ଆନନ୍ଦିତ ହେଲି । ସେଦିନ ସନ୍ଧ୍ୟା ଜନତା ଏକ୍ସପ୍ରେସରେ ଆପଣ ଆସିଲେ ହାଓଡ଼ାରୁ ବାରାଉଣି ଦ୍ରୁତଗାମୀ ପାରେଞ୍ଜର ଗାଡ଼ି ସକାଳ ସାତଟା ପନ୍ଦର ମିନିଟରେ ପାଇବେ । ଉକ୍ତ ଗାଡ଼ି ବୋଲପୁର ଷ୍ଟେସନରେ ଦଶଟା ଚାଳିଶ ନିକଟରେ ପହଞ୍ଚିବ । ସେଦିନ କରୁଚି ।

ଆପଣଙ୍କ ନିର୍ବାଚିତ ବିଷୟ 'ଉପନ୍ୟାସ ଜିଜ୍ଞାସା' ହିଁ ଭାଷଣର ବିଷୟ ରହିଲା । ଆଶା ଭଲରେ ଅଛନ୍ତି । ଏଠାକାର ସମସ୍ତ କୁଶଳ । ମୁଁ ଆଜି ଜାମସେଦପୁର ଯାଉଛି, ସେଠା କଲେଜ ଓ.ସା. ପରିଷଦର ବାର୍ଷିକ ଉତ୍ସବରେ ଯୋଗ ଦେଇ ରବିବାର ଦିନ ଫେରିବି ।

॥ ଇତି ॥
ଆପଣଙ୍କର ଶ୍ରୀନିବାସ ମିଶ୍ର

॥ ୭୭ ॥

ସଂବାଦ ବାହିକା ଅଫିସ୍
ବାଲେଶ୍ୱର
୨୩.୦୨.୭୦

ପ୍ରିୟ କୃଷ୍ଣ ବାବୁ,

ନମସ୍କାର ନେବେ ।

ଆପଣଙ୍କୁ ଖାଲି ବାରମ୍ବାର ବିରକ୍ତ କରୁଛି । ସେଥିପାଇଁ କ୍ଷମା ଦେବେ । ଚତୁର୍ଥ ସଂଖ୍ୟା ସଂବାଦ ବାହିକା କାନ୍ତକବିଙ୍କର ଶ୍ରାଦ୍ଧସଂଖ୍ୟା ହୋଇ ପ୍ରକାଶିତ ହେବ । ୩, ୪ ଦିନ ପରେ

ପ୍ରକାଶିତ ହେବ । ଲେଖାଟିଏ ପାଇଁ ଲେଖିଥିଲି । ପାଇନାହିଁ । ପଞ୍ଚମ ସଂଖ୍ୟାଟି କବିଶେଖର ଚିନ୍ତାମଣି ଜୟନ୍ତୀ ସଂଖ୍ୟା ହେବ । ଭଦ୍ରକରେ ଉପେନ୍ଦ୍ର ବାବୁଙ୍କ ସହିତ ଦେଖାକରି କଥାବାର୍ତ୍ତା ହୋଇଛି । ସେ ଆପଣଙ୍କୁ ବୁଝି ସବୁ କରିବା ପାଇଁ କହିଲେ । ଏପରି ପରିସ୍ଥିତିରେ କଣ କରିବି, ଆପଣ ଜଣାଇବେ । ଆସନ୍ତା ପହିଲାଦିନ ୪ର୍ଥ ସଂଖ୍ୟା ନେଇ ଭଦ୍ରକ ଯିବି । କିଛି ଗ୍ରାହକ ୫ମ ସଂଖ୍ୟା ପାଇଁ ଓ କିଛି କିଛି ବିଜ୍ଞାପନ ବ୍ୟବସ୍ଥା କରିଦେବେ । ନହେଲେ ଆମର ଅବସ୍ଥା ଗୁରୁତର । ୫ମ ସଂଖ୍ୟା ପାଇଁ ଲେଖାଟିଏ ଅବଶ୍ୟ ଦେବେ । ସେଥିରେ ମୋତେ ଭୁଲେଇଲେ ହେବ ନାହିଁ । ପତ୍ରିକା ସଂପର୍କରେ ମତାମତ ତ କିଛି ଜାଣିପାରିଲି ନାହିଁ । ପତ୍ରିକା ଠିକ୍ ଭାବରେ ପାଉଛନ୍ତି ତ? କାହା କାହା ପାଖକୁ ଲେଖା ପାଇଁ ଲେଖିବି ଜଣାଇବେ । ଆପଣମାନଙ୍କୁ ବିରକ୍ତ ନକରି ଆଉ ବିରକ୍ତ କରିବି କାହାକୁ ? ଅତି ନିଜର ନହେଲେ କଣ ଆଉ କାହା ପାଖରେ ଅଳି କରିପରିବି ? ରହିଲି, ନମସ୍କାର ନେବେ । ଇତି ।

ମିହିର କୁମାର ଆଚାର୍ଯ୍ୟ ।

॥ ୭୮ ॥

ଓଷଲା

ତା ୮.୩.୭୦

ପୂଜ୍ୟ ବଡ଼ଭାଇ !

ମୋର ପ୍ରଣାମ ନେବେ । ବହୁଦିନ ପରେ ଅଚାନକ ଚିଠିଟି ପଢ଼ି ନିଶ୍ଚୟ ଆଶ୍ଚର୍ଯ୍ୟ ହେବେ । ତଥାପି ଆପଣଙ୍କ ସ୍ନେହ ଶ୍ରଦ୍ଧା ମୁଁ ଭୁଲି ନାହିଁ, ସବୁବେଳେ ମନେଅଛି ଓ ସଭିଙ୍କି କହୁଛି । ସେ ଦିନ ମୁଁ ଆପଣଙ୍କୁ କହିଥିଲି ଭଲମନ୍ଦ ଓ ସୁବିଧା ଅସୁବିଧା ବେଳେ ଆପଣଙ୍କ ପରାମର୍ଶ ଓ ଉପଦେଶ ଦେବାକୁ ଆପଣ କୁଣ୍ଠାବୋଧ କରିବେ ନାହିଁ । ଆପଣଙ୍କୁ ଏ ଖବର ମଧ ପଠାଇଥିଲି ଯେ 'ପଞ୍ଚହରା' ବହିର ବଣ ବର୍ଣ୍ଣନା ଆରମ୍ଭର ୪ ପାଦ, ୧୯୬୭ରେ ଛାପା ଯାଇଥିବା 'ଜାତିସ୍ମୃତି' ନାମକ କାବ୍ୟରେ ଅବିକଳ ଧାଡ଼ିଗୁଡ଼ିକ ଦେଖିଲି । ଏହା ମୂଳାପାଳ ଗଦାଧର ସାହୁଙ୍କ ଲେଖା । ତେଣୁ ମୁଁ ବଡ଼ ବିବ୍ରତ । ବହୁ ବଂଧୁ ମୋତେ ନାନା ମତ ଦେଇ ନାନା କଥା କହୁଛନ୍ତି । ମତାମତ ଜଣାଇଲେ ମୁଁ ନିଶ୍ଚିନ୍ତ ହେବି । କାରଣ ଉକ୍ତ ଖଣ୍ଡକାବ୍ୟଟି କେବଳ ଆପଣଙ୍କ ମତାମତଟି ଧରି ଆମ୍ଭ ପ୍ରକାଶ କରିଛି ଓ ତାହା ବହୁଆଡ଼େ ଆଦୃତ ହୋଇଛି, ତାହା ୧୯୬୩ର କଥା । ''ଚନ୍ଦ୍ରମୁକ୍ତି'' ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ । ଆପଣଙ୍କ ନିର୍ଦ୍ଦେଶ ମତେ ୩ଜଣ ପାଲାକାରଙ୍କୁ ଏହା ଦିଆଯାଇ ସାରିଛି । ତେଣୁ ଅପ୍ରକାଶିତ ପାଣ୍ଡୁଲିପିର ଅବସ୍ଥା କ'ଣ ହେବ ନିଶ୍ଚୟ ଚିନ୍ତା କରିବେ । ଆପଣଙ୍କର ଚିଠି ପାଇଲେ କେବେ ଯିବି ଓ ଆପଣଙ୍କର ସୁବିଧା ଥିବ ଲେଖିଲେ ଯିବି । ସାକ୍ଷାତରେ ଆଉ କେତେ କଥା ଅଛି । 'ତୋଷଳ'

'କୋଶଳ' 'ସମ୍ବଲପୁର' ଲେଖିଥିଲେ କିଣିପଢ଼ିଲେ ଇତିହାସ ବିଷୟବସ୍ତୁ ପାଇବି, ବହୁତ ଚେଷ୍ଟା କରି କଟକରୁ ମୁଁ ଏ ବହି ବି କାଲି ପାଇ ପାରିଲି ନାହିଁ, କଣ କରିବି କେମିତି ପଢ଼ିବି ? ନଇଲେ ଆପଣ ହେଲେ କୁହନ୍ତୁ ତା ଭତରୁ କେଉଁ ବିଷୟଟି ଭଲ ଓ ସେ ବିଷୟରେ ମୁଁ ଲେଖା ଆରମ୍ଭ କରିବି । ୫୦ଟି ଗୀତ ପଠାଇବାକୁ ବେତାର କେନ୍ଦ୍ରକୁ ମନସ୍ଥ କରିଛି ଲେଖା ସରିନାହିଁ । ଗଲେ ଆପଣଙ୍କୁ ଦେଖାଇବି । ସାକ୍ଷାତର ଦିନ ଜଣାଇଲେ ଖୁସି ହେବି ।

ସ୍ନେହର ଚୈତନ୍ୟ ଜେନା
ଗ୍ରାମ ଓଷଳା ପୋ. ଦୁଲାଖା ପାଟଣା, ଜି. କଟକ ।

॥ ୭୯ ॥

ସମ୍ବଲପୁର
୧୨.୦୮.୧୯୭୦

ଶ୍ରୀଚରଣେଷୁ ସାର୍ !

ମୋର ଭୂମିଷ୍ଠ ପ୍ରଣାମ ଗ୍ରହଣ କରିବେ । ଆପଣଙ୍କ ଚିଠି ପାଇଛି । ମୁଁ ଭଞ୍ଜନଗରରୁ ଆସିବା ପୂର୍ବରୁ ପ୍ରିନ୍ସପାଲଙ୍କୁ ରମେଶ ବିଷୟରେ କହିଥିଲି । ସେ କହିଲେ ଏବର୍ଷଠାରୁ DPI Candidate ବାଛିବେ । ତଥାପି ତାଙ୍କଦ୍ୱାରା ଯାହା ହୋଇପାରେ ସେ କରିବେ କହିଥିଲେ । ରମେଶ Applay ନିଶ୍ଚୟ କରିଥିବ । ଥରେ ଯାଇ ପ୍ରିନ୍ସପାଲଙ୍କୁ ତାର ସାକ୍ଷାତ କରିବା ଉଚିତ ।

ସମାଜ ବିଶେଷାଙ୍କ ଓ ସାହିତ୍ୟିକ ଅଭିଭାଷଣ ଏପର୍ଯ୍ୟନ୍ତ ମୋର ଦୃଷ୍ଟିରେ ପଡିନାହିଁ । ଏଠିକାର ଲାଇବ୍ରେରୀ ନୂଆ ବହି କିମ୍ବା ପତ୍ରିକା ମଗାଇବାରେ କେବେ ତତ୍ପର ହୁଏନାଁ, ବଜାରରୁ ଖୋଜି କିଣିବା ଛଡା ନୂଆବହି ପଢ଼ିବାର ଅନ୍ୟ ଉପାୟ ଏଠି ନାହିଁ । ପରେ ମୋର ନଗଣ୍ୟ ମନ୍ତବ୍ୟ ନିଶ୍ଚୟ ଜଣାଇବି ।

ସାର୍, ମୁଁ ଲେଖାଲେଖି କିମ୍ବା ପଢ଼ାପଢ଼ି କରି ପାରୁନଥିବାରୁ ସବୁବେଳେ ମର୍ମାହତ ଓ ବଡ ଲଜ୍ଜାର ସହିତ ଏ ଚିଠି ଆପଣଙ୍କୁ ଲେଖୁଛି । ମୋର ଧାରଣା କ୍ରମେ କ୍ରମେ ଦୃଢ଼ ହେଉଛି ଯେ ପ୍ରତିଭା ବୋଲି ମୋର କିଛି ନାହିଁ- ହୁଏତ ସେଇଥିପାଇଁ ମୁଁ କିଛି ସୃଷ୍ଟି କରିପାରୁ ନାହିଁ ।

ଦୁର୍ଗାପୂଜା ଛୁଟିରେ ଆପଣଙ୍କୁ ସାକ୍ଷାତ କରିବି । ହୁଏତ ସେଇଦିନଠାରୁ ମୋ ଜୀବନର ଗତିପଥ ସଂପୂର୍ଣ୍ଣ ପରିବର୍ତ୍ତନ କରିବାକୁ ପ୍ରତିଜ୍ଞା କରିବି । ବର୍ତ୍ତମାନ ମୁଁ ଏକପ୍ରକାର ଜୀବନ୍ମୃତ ଅବସ୍ଥାରେ ଅଛି । ଆପଣଙ୍କ ଚିଠି ପାଇଲା ପରଠାରୁ ଏପର୍ଯ୍ୟନ୍ତ ମୁଁ ଏକପ୍ରକାର ଭାବ ଜଗତର ଅନ୍ଧକାର ମଧ୍ୟରେ ଆଲୋକ ପାଇଁ ଆର୍ତ୍ତ ଚିତ୍କାର କରୁଛି ।

ମନର ଦ୍ୱନ୍ଦ୍ୱ ତଥାପି ଲାଗି ରହିଛି । ଭଗବାନଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ଆପଣଙ୍କର ଶ୍ୱାସର ପ୍ରକୋପ ଭଗବାନଙ୍କ କୃପାରୁ ଉଣା ହୋଇଯାଇଥିବ ବୋଲି ଭାବୁଛି । ଆଶା କରେଁ ବର୍ତ୍ତମାନ ଆପଣ ସପରିବାର କୁଶଳରେ ଥିବେ ।

ମୁଁ ବଡ ହତଭାଗ୍ୟ ସାର୍ । ଜୀବନଟା ମୋର ବୃଥାରେ ନଷ୍ଟ ହୋଇଯାଇଛି । ମୁଁ ଦୃଢ଼ ହୋଇ ପାରୁନାହିଁ । ଆଜିର ପ୍ରତିଜ୍ଞା କାଲି ପୁଣି ଭୁଲି ଯାଉଛି । ମୁଁ ଏକ ଲିଭା ଦିପାଳୀ-ସେଇଥିପାଇଁ ହୁଏତ ପୋଡ଼ା ଧୂଆଁର ଗନ୍ଧରେ ଏ ମନ, ହୃଦୟ ସବୁ ସଙ୍କୁଚିତ ହୋଇଯାଇଛି । ସ୍ୱର ମୂର୍ଚ୍ଛନା ସୃଷ୍ଟି କରିବାର ଅଭିଳାଷ ଉଙ୍କି ମାରୁଥିଲେ ବି ମୁଁ ଏକ ଭଙ୍ଗାବଂଶୀ ହୋଇଥିବାରୁ ଉଦ୍ୟମ ବ୍ୟର୍ଥ ବିଡ଼ମ୍ବିତ ହୋଇଯାଉଛି । ଆପଣଙ୍କର ଆଶୀର୍ବାଦ ଭିକ୍ଷାକରି ରହିଲି । ମୁଁ କ'ଣ କରିବି କିଛି ଠିକ୍ କରି ପାରୁନାହିଁ । ଆପଣଙ୍କ ପରାମର୍ଶ ପ୍ରତୀକ୍ଷାରେ । ଆଉ ଥରେ ମୋର ନମ୍ର ନମସ୍କାର ଜଣାଇ ରହିଲି । ଇତି ।

ସ୍ନେହାନୁଗତ ବନମାଳୀ ମିଶ୍ର

॥ ୮୦ ॥

ବଲାଙ୍ଗିର
୦୧/୦୯/୧୯୭୦

ମାନନୀୟ କୃଷ୍ଣବାବୁ,

ନମସ୍କାର । ଅଭିନନ୍ଦନ ପତ୍ରଟି ପାଇଁ ଧନ୍ୟବାଦ ଦେବା ଏକ ଇଉରୋପୀୟ କଳା । ଅବଶ୍ୟ, ତାହା ଏବେ ଭାରତରେ ଚଳୁଛି । ଯା ହେଉ-ଆପଣ ଯେ ମୋ ସଂପର୍କରେ ଆଶାନ୍ୱିତ-ଏହା ଜାଣି ମୁଁ ବହୁତ ଆନନ୍ଦିତ । ଆପଣଙ୍କ ଆଶା ମୁଁ ପୂରଣ କରିପାରିବି,- ଏହା ଜିଦ୍ ମୋର ଅଛି, କାରଣ, ମୋର ବ୍ୟକ୍ତିଗତ ଜୀବନକୁ ମୁଁ କେତେକ ଜିଦ୍‌ର ସମାହାର ବୋଲି ଜାଣିଛି । ମୁଁ ନିର୍ଦ୍ଧନ, ପୁଣି 'ବ୍ୟାକିଂହୀନ', ଜିଦ୍ ହିଁ ମୋର ଏକମାତ୍ର ପୁଞ୍ଜି । ତାରି ବଳରେ ମୁଁ ଓଡ଼ିଶାର ଉନ୍ନତି କରିବାକୁ ଚାହିଁଛି, ଜୀବନ-ନାଟକର ଶେଷ-ଦୃଶ୍ୟ କଣ୍ ହେବ ମୁଁ ଜାଣେନା, କିନ୍ତୁ ଏବେ ମୁଁ ବିପଥଗାମୀ ହୋଇନାହିଁ । ଆପଣଙ୍କର ଶୁଭେଚ୍ଛା ପୁଣି ପ୍ରାଣର ଫୁଲଗଛ ପକ୍ଷରେ 'ମଳୟ ପବନ' ପରି । ମୁଁ କାମ ନ କରି ବସି ପାରିବି କେମିତି ? ମୋତେ ପୁଷ୍ପିତ ହେବାକୁ ହିଁ ପଡ଼ିବ । ଥେସିସ୍‌ଟି ବିଶ୍ୱଭାରତୀ ତରଫରୁ ପକାଶ ପାଇବ । ବନ୍ଦୋବସ୍ତ ନିଶ୍ଚୟ କରିବି ।

କମଳାକାନ୍ତ ବାବୁଙ୍କୁ ଓ ବେଲା ଦିଂକୁ ମୋର ନମସ୍କାର ଦେବେ । ଆଶା କରେ ସେମାନେ ମୋତେ ଭୁଲି ନ ଥିବେ ।

ଆପଣଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରି ରହିଲି । ଇତି ।

ଆପଣଙ୍କର ସ୍ନେହାସ୍ପଦ
ପ୍ରସନ୍ନ କୁମାର ମିଶ୍ର

॥ ୮୧ ॥

ଶାନ୍ତି ନିବାସ,
ପୁରୀଘାଟ ରୋଡ, କଟକ-୧

ତା.୧୭/୧୧/୧୯୭୦

ମାନନୀୟ ମହାଶୟ,

ପ୍ରଣାମ ଜାଣିବେ । ଚିଠି ପାଇଲି । ମତେ ଆଜି ତେପନବର୍ଷ ୨୨୪ ଦିନ ହେଲା । ତେଣୁ ବାଧ୍ୟରେ ଖଣ୍ଡେ ସାପ୍ତାହିକ ସାହିତ୍ୟ ପତ୍ର କଲି । ନିଜର ଦୈନ୍ୟ ଦରିଦ୍ରତାରେ ଏହାର ମାସିକ ଖର୍ଚ୍ଚ ଦେଢ଼ଶହ ତୁଲାଇବାକୁ ଅକ୍ଷମ । ଏବେ ଶୁକ୍ରବାର ଦିନ ବାହାରୁଛି । ବଡ ହେଲେ ମରିଯିବ ବୋଲି ଛୋଟ ସାଇଜ୍ ରଖିଛି । କୁନିଟିଏ ହେଲେ ବି ସାପ୍ତାହିକ ।

କ'ଣ ବଳିଛି ଦେଖି ଏହି ଦିନେ ଦି'ଦିନରେ ପଠାଇଦେବି। ଏହା ପଠାଇବାକୁ ଲାଜ ମାଡୁଛି । ଦୁଇଟି ଦଶଟଙ୍କିଆ ଗ୍ରାହକ ପାଇଛି (୧) କାହ୍ନୁ ଚରଣ ବାବୁ (ଉପନ୍ୟାସ), (୨) ଡା: ପୂର୍ଣ୍ଣଚନ୍ଦ୍ର ମହାନ୍ତି । ବାକିସବୁ ଏମିତି ଏଣେତେଣେ ପଠାଇ ଦିଏ । ୧୯୩୬-୫୨ ଓ ୧୯୬୪-୬୬ ଇଂରାଜି ସାପ୍ତାହିକ ଓ ଓଡ଼ିଆ ସାପ୍ତାହିକ ଓ ଓଡିଆ ଦୈନିକରେ ଧାରାବାହିକ କାମ କରି ଅନେକ ସମୟ ଓ ଟଙ୍କା ନଷ୍ଟ କରିଛି । ଆଜି ସେଥିପାଇଁ ଶୋଚନା ।

ଆପଣଙ୍କର ମତାମତ ଦେଖିଲି । ପରେ ବୋଧହୁଏ ଦେଖିବେ ଯେ ନିଜ ବିଷୟରେ ମଣିଷ ବୋଲଇ ନାହିଁ ସେ କ'ଣ ପରେ ହୁଏ ? ମହତାବ ବାବୁଙ୍କର ଦାନ-ଦୁଇଜଣ ଗଣକବି ଓ ବ୍ୟାସକବି । ଆଉ କ'ଣ ମହତାବ ବାବୁଙ୍କ ପରି ଲୋକ ୨୦୦୦ ଭିତରେ ଦେଖା ଦେବେ ? ଦୋକାନ ସେମିତି ଘୁଷୁରୁଛି ।

ରାଜକିଶୋର ପଟ୍ଟନାୟକ

॥ ୮୨ ॥

ଧନୁପାଲି : ତା ୧୬/୦୫/୭୧

ପୂଜ୍ୟ ମହାଶୟ,

ଆପଣଂକ ଚଠି ଗତ ୯/୫ ରେ ପାଇଛି । ଧନ୍ୟବାଦ । ଚଠି ଦେବାରେ ଏ ଯେଉଁ ସପ୍ତାହେ ବିଳଂବ ହେଲା, ସେଥିପାଇଁ ବିନୀତ କ୍ଷମାର୍ଥୀ ।

ଭଦ୍ରକ ଓ କଟକରେ ଉପବିଷ୍ଟ ଯୁ.ଲେ.ସ. ସଭାର ଅଧିବେଶନରେ ଯୋଗ ଦେଇନଥିବାରୁ ଦୁଃଖିତ । ଅତ୍ୟଂତ ଇଚ୍ଛା ସତ୍ତ୍ୱେ ବି ଯାଇହେଲା ନାହିଁ । ଭଦ୍ରକ ବେଳକୁ 'ଦୂରତ୍ୱ' ଏବଂ ସେତିକି ବେଳର ''ପକେଟ୍‌ର ଶୂନ୍ୟତା'' ମୁଖ୍ୟତଃ ଦାୟୀ । କଟକ ବେଳକୁ ଆମର ପାଠ୍ୟକ୍ରମ ତୀବ୍ର ବେଗରେ ଚାଲୁଥିଲା । ଦୁଇଟିଯାକ ଅଧିବେଶନ ପାଇଁ ପ୍ରସନ୍ନ ମୋତେ

ବ୍ୟକ୍ତିଗତ/ଅଫିସିଆଲ୍ ପତ୍ର ଦେଉଛି । ତାକୁ ଉତ୍ତର ମଧ ଦେଉଛି । ହୁସେନ୍ ତ ବାଘୁରା ପରି ବୁଲୁଛି । କେବେ କଟକ ତ କେବେ କଲିକତା, କେବେ ଭବାନୀପାଟଣା ତ କେବେ ଦିଲ୍ଲୀ । ଏ ମଧରେ ତାକୁ ଦେଖିଛି ଲ' ପରୀକ୍ଷା (ଜୁନ୍ ୧୩) ପାଇଁ ପ୍ରସ୍ତୁତ ହେଉଛି । ଅଶ୍ୱିନୀର ପରୀକ୍ଷା ସରିଛି । ସେ ପରଦିନ ଗାଁକୁ ଗଲା । ବାରିପଦା କେବକୁ ଯିବାକୁ ଇଚ୍ଛା ଅଛି ।

ବରଗଡ ବିଷୟରେ ଫନୀବାବୁ ମୋତେ ସାକ୍ଷାତ କରି କହିଥିବା ଛଡା ପତ୍ରାଳାପ ହେବା ସମ୍ଭବ ହୋଇ ପାରିନି । କାଲି ଶ୍ରୀ ମଧୁସୂଦନ ପତି, ସଂ: କୋଶଳ ସାହିତ୍ୟ ସମାଜ (ମୋର ଅଧାପକ) କହୁଥିଲେ, ଆପଣଂକୁ ପତ୍ର ଦିଆଯାଇଛି ବୋଲି । କୋଶଳର ୨୭/୨୮ ବେଳକୁ ହେବ । ୨୩ ରୁ ୨୭ ଭିତରେ ଆମର ବୈଠକ କରିଦେଲେ ମୋ ମତରେ, ଭଲ ହୁଅଂତା । ଆପଣଂକ ମତାମତ ଜଣାଇବେ । ଶ୍ରୀ ଦାନୀ, ଶ୍ରୀ ସୌରୀନ୍ଦ୍ର ବାରିକ, ଶ୍ରୀ ଘନଶ୍ୟାମ ରଥ, ଶ୍ରୀ ପ୍ରଫୁଲ୍ଲ ତ୍ରିପାଠୀ, ଶ୍ରୀ ଉମାଶଂକର ପଂଡା, ଶ୍ରୀ ହରିଶଂକର ବଡପଂଡା, ଶ୍ରୀ ଅଭୟ କୁ. ପାଢ଼ୀ ଇତ୍ୟାଦି ବର୍ତ୍ତମାନ ଅଛୁ । ୧୮ ତା: ବେଳକୁ ପତ୍ର-୪ ଓ ଅଂତଃସ୍ୱର-୬ର ପ୍ରକାଶନ ହେଇଯିବ । ସେତିକିବେଳକୁ 'ପଂଚମୁଖୀ', 'କଟୁସତ୍ୟ'ର ବିଶେଷ ସଂଖ୍ୟା ବି ବାହାରିବାର ଚେଷ୍ଟା ଚାଲିଛି । ଏମଧରେ ଭଂଜଜୟନ୍ତୀ 'କୋଶଳ' ଦ୍ୱାରା ହେଇଥିଲା । ସୁଂଦରଗଡରେ ସୁଂଦରଗଡ ସାହିତ୍ୟ ସଂସଦ ଓ ସଂବ. ଆଧୁନିକ ଲେଖକ ପରିଷଦର ମିଳିତ ଉଦ୍ୟମରେ ୯/୫ ରେ ଏକ ସାହିତ୍ୟ ସମ୍ମେଳନ ହୋଇଥିଲା । ୨୪/୨୫ ଦୁଇଦିନ କୁଚିଂଡ଼ାଠାରେ କୁଚିଂଡା ସାଂସ୍କୃତିକ ପରିଷଦ- ଆଧୁନିକ ଲେଖକ ପରିଷଦ (ସଂ: ଶ୍ରୀ ମିର୍ଦ୍ଧା), ଏକାଡେମୀ ଏକ ସାହିତ୍ୟ ସମାରୋହର ଆୟୋଜନ କରୁଛଂତି । ଏଠି ବର୍ତ୍ତମାନ ଶ୍ରୀ ପ୍ରସନ୍ନ କୁମାର ମିଶ୍ର, କ୍ଷେତ୍ରବାସୀ ନାୟକ, ଶ୍ରୀ ଚିଂତାମଣି ବେହେରା, ଶ୍ରୀ କୁମର ମଣି ଚୌଧୁରୀ ମଧ ଆସିଛନ୍ତି, ଶ୍ରୀ ଉପେନ୍ଦ୍ର ମହାଂତି ମଧ ।

'ନବରାଗ'ର ଆଗାମୀ ସଂଖ୍ୟା କେବେ ମୁକ୍ତିଲାଭ କରୁଛି ? ଅଚ୍ୟୁତବାବୁଂକ ଠାରୁ ମୁଁ କୌଣସି ଉତ୍ତର ପାଇନି । ତାଂକୁ ଦୟାକରି ଚିଠି ଦେବା ପାଇଁ ପ୍ରବର୍ତ୍ତାଇବେ । ଏ ମଧରେ କବିତା 'ଶାମୁକା ଓ ଆମ କେଇଜଣଂକ ପାଇଁ (ନବରାଗ)' ତା ପରର ଦୃଶ୍ୟ (ଉତ୍କଳ), ଦେହ ବିଦେହ (କୋଶଳିକା), ଗଳ୍ପ ପ୍ରଥମ ପୁରୁଷ, ଦ୍ୱିତୀୟ ପୁରୁଷ, ତୃତୀୟ ପୁରୁଷ (ପତ୍ର-୩), ପଥ (ଅଣୁଲେଖା), ଶୂନ୍ୟତାର ଇତିବୃତ୍ତ (ସୌରଭ) ଏକ ଅନୁବାଦ ଗଳ୍ପ 'ନୀରବ ସମୁଦ୍ର' ଜନ ସାହିତ୍ୟରେ (ମୂଳରଚନା : ଶ୍ରୀ କିଶଳୟ ଗଙ୍ଗୋପାଧାୟ) ପ୍ରକାଶିତ ହୋଇଛି । 'ଜୀବନ ରଂଗ' କବିତା ବିଶେଷାଂକକୁ ପ୍ରେରିତ ଏକ କବିତା ଅମନୋନୀତ ହୋଇଛି । ନବରବି, ମରୁତୀର୍ଥ ଇତ୍ୟାଦି ୧୦ଟି ପତ୍ରିକାରେ ପ୍ରକାଶୋନ୍ମୁଖ ଲେଖାମାନଂକ ପାଇଁ ଦୀର୍ଘଦିନରୁ ପ୍ରତିଶ୍ରୁତ ! 'ଝଂକାର'କୁ ନଭେମ୍ବରରେ ସେ କବିତା 'ପ୍ରସବ ବେଦନା' ଓ ଗଳ୍ପ 'ଛକ' ପଠାଇ ନିରାଶ ହୋଇଛି । ବାରମ୍ବାର ଚିଠି ଦେଇଛି, ଟିକଟ ପଠାଉଛି, କାର୍ଡ଼ ପଠାଇଛି, ତଥାପି ସଂବାଦ ପାଇନି ! ଏପରି ଚାଲିଛି । ତଥାପି 'ଝଂକାର' ପାଇଁ ଚେଷ୍ଟା କରୁଛି ।

ବର୍ତ୍ତମାନ ପ୍ରାୟ ଭଲ ଅଛି କହିଲେ ଚଳେ । ଆଶା, ଆପଣ ଭଲରେ ଥିବେ । ଚିଠି ଦେବାକୁ ଅନୁରୋଧ କରି ରହୁଛି । ନମସ୍କାରାଂତେ । ଇତି ।

ଆପଣଂକ ସ୍ନେହର

ଶୁଭେଂଦୁ ମୁଣ୍ଡ

॥ ୮୩ ॥

ବାଣୀ ବିହାର

ତା. ୧୬/୦୬/୭୧

ପରମ ପୂଜ୍ୟାସ୍ପଦ ସାର୍,

ମୋର ବିନମ୍ର ପ୍ରଣାମ ଗ୍ରହଣ କରିବେ ।

ଆପଣଙ୍କ ସ୍ନେହଭରା ଚିଠି ପାଇଛି । ଆପଣ ମୋର ପ୍ରବନ୍ଧଟି ପାଠ କରି ତହିଁରେ ଏକ ବିରାଟ ଅଭାବ ଦର୍ଶାଇ ଥିବାରୁ ମୁଁ ଆପଣଙ୍କ ନିକଟରେ ଚିର କୃତଜ୍ଞ। ଆଜିକି ଦେଢ଼ବର୍ଷ ତଳେ ଏ ପ୍ରବନ୍ଧଟି ଲେଖିଥିଲି । ଏତେକାଳ ପଡିପଡି ପାଠଚକ୍ର ପ୍ରବନ୍ଧାବଳୀ ପ୍ରକାଶିତ ହେଲା । ମୋ ପ୍ରବନ୍ଧଟି ପ୍ରଥମ ପର୍ଯ୍ୟାୟରେ ଛପା ଯାଇଥିବାରୁ ପରବର୍ତ୍ତୀ କାଳରେ ମୁଁ କେତେକ ପରିବର୍ତ୍ତନ ଓ ପରିବର୍ଦ୍ଧନ ଇଚ୍ଛା କରିଥିଲେ ମଧ ସମ୍ଭବ ହୋଇପାରି ନଥିଲା । ସାର୍‌ଙ୍କର(ଡକ୍ଟର କୁଞ୍ଜବିହାରୀ ଦାଶଙ୍କର) ଓଡ଼ିଆ ଲୋକଗୀତ ଓ କାହାଣୀ ପଢ଼ିବା ପରେ ଆପଣଙ୍କ ନିର୍ଦ୍ଦେଶିତ ଏହି ଅଭାବ ମଧ ମୁଁ ମୋ ପ୍ରବନ୍ଧରେ ଅନୁଭବ କରିଛି । ସାର୍‌ଙ୍କର ବହିଟିରେ ମୋଗଲ ତାମସାର ତାତ୍ତ୍ୱିକ ଆଲୋଚନା ହୋଇଥିଲେ ମଧ ମୋଗଲ ତାମସାମାନଙ୍କର ମୂଳ ଲେଖା ତହିଁରେ ନାହିଁ, ନରହିବା ସ୍ୱାଭାବିକ । ସାର୍ ଲେଖିଛନ୍ତି, ଆଗେ ୩୦ ଗୋଟି ତାମ୍‌ସା ପ୍ରଚଳିତ ଥିଲା । ଏବେ ଅଧିକାଂଶ ଲୋପ ହୋଇଗଲାଣି । ଏବେ ଛ'ଗୋଟି ମାତ୍ର ତାମସା ପ୍ରଚଳିତ ଅଛି । ଆପଣ ଏସଂପର୍କରେ ଏକ ପ୍ରବନ୍ଧ କୌଣସି ପତ୍ର ବା ପତ୍ରିକାରେ ଲେଖିଥିବାର ମୋର ମନେ ହେଉଛି । ଦୟାକରି ମୋଗଲ ତାମସା ସଂପର୍କରେ ବିଶେଷ ବିବରଣୀ ଯୋଗାଇ ଦେଲେ ମୁଁ ଚିର କୃତଜ୍ଞ ରହିବି । ମୁଁ ନିଜେ ଆପଣଙ୍କ ପାଖକୁ ଯିବି । ଆପଣଙ୍କର କେବେ ସୁବିଧା ହେବ । ଏକ ଦିନ ନିର୍ଦ୍ଦିଷ୍ଟ କରି ଲେଖିବେ । ମୋଗଲ ତାମସା ପ୍ରକାଶିତ ହୋଇଛି କି ? ମୁଁ ଏ ସଂପର୍କରେ ଅଜ୍ଞାନ । ଆପଣଙ୍କର ଛାତ୍ର ହିସାବରେ ମୁଁ ଆପଣଙ୍କଠାରୁ ଏ ସଂପର୍କରେ ସଦୟ ସାହାଯ୍ୟ କାମନା କରୁଛି ।

ବିଭାଗ ତରଫରୁ ଗୋଟିଏ ଉଚ୍ଚ କୋଟୀର ତ୍ରୈମାସିକ ପତ୍ରିକା ପ୍ରକାଶ ପାଇବା ଉଚିତ ବୋଲି ଲେଖିଛନ୍ତି । ମୁଁ ମଧ ଏହିପରି ଅଭାବ ଅନୁଭବ କରିଛି । ବିଶ୍ୱବିଦ୍ୟାଳୟ ଅନ୍ତର୍ଗତ ସମସ୍ତ କଲେଜରୁ ପ୍ରବନ୍ଧ ମଗାଯାଇ ବର୍ଷରେ ଦୁଇ ତିନୋଟି ପତ୍ରିକା ବାହାର କରିବା ପାଇଁ

ମୁଁ ସାର୍‌ଙ୍କୁ(ଡକ୍ଟର ମହାନ୍ତିଙ୍କୁ) କହୁଥିଲି । ଏଥିପାଇଁ ବିଶ୍ୱବିଦ୍ୟାଳୟର ଅନୁମତି ଓ ଅନୁଦାନ ଆବଶ୍ୟକ ବୋଲି ସେ କହୁଥିଲେ । ଅନ୍ୟ ଅନୁଦାନରେ ବିଶ୍ୱବିଦ୍ୟାଳୟ ପତ୍ରିକା ପ୍ରକାଶ ପାଇଁ ଅନୁମତି ମିଳିବ ନାହିଁ, ଏହିପରି ଅସୁବିଧା ସେ ଦର୍ଶାଇଥିଲେ । ତେବେ ଏ ସଂପର୍କରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହେବା ପାଇଁ ମୁଁ ସାର୍‌ଙ୍କୁ ପ୍ରବର୍ତ୍ତାଇବି । ଆପଣଙ୍କର ପ୍ରଗତିଶୀଳ ପ୍ରସ୍ତାବ ପାଇଁ ମଧ୍ୟ ମୁଁ କୃତଜ୍ଞତା ଜଣାଉଛି । ଦୟାକରି ଆପଣଙ୍କ ବାସଭବନ ଠିକଣା ଜଣାଇବେ ଓ କେବେ ବିଶ୍ୱବିଦ୍ୟାଳୟ ଆଡେ ଆସୁଛନ୍ତି ଲେଖିବେ । ଇତି ।

ଆପଣଙ୍କର ଚିର ବିନୟାବନତ ଛାତ୍ର

ବାସୁଦେବ ସାହୁ

॥ ୮୪ ॥

Diganta (Diganta Museum & Diganta Journal),Cuttack
Founder-Director , S.RoutRoy

Date 2.7.71

ପ୍ରିୟ ଡକ୍ଟର ବେହେରା,

ଆଶା, ଭଲ ଅଛନ୍ତି । ଯୁବ ଲେଖକ ସମ୍ମିଳନୀ କଲିକତାରେ ଅକ୍ଟୋବର ମାସରେ ପୂର୍ବାଞ୍ଚଳ ଲେଖକ ସମ୍ମିଳନୀର ଆୟୋଜନ କରୁଛି ବୋଲି କାଗଜରେ ଦେଖିଲି । ଏ ସଂପର୍କରେ ଆପଣମାନଙ୍କ ସଂଗେ ବିଶେଷ ଆଲୋଚନା କରିବାକୁ ଚାହେଁ । ଆପଣ କେବେ କଟକ ଆସୁଛନ୍ତି ଜଣାଇବେ । ଯଦି ସୁବିଧା ହୁଏ ଆମ ଘରଆଡେ ଟିକିଏ ଆସିବାକୁ ଅନୁରୋଧ । ବାରିପଦାରେ ତ ଡିସେମ୍ବର ମାସରେ ଯୁବଲେଖକ ସମ୍ମିଳନର ବାର୍ଷିକ ଅଧିବେଶନ ହେବ । ତା ଆଗରୁ କଲିକତାରେ ଏପରି ଏକ ଲେଖକ ସମ୍ମିଳନୀ ଡାକିବା ସଂଭବ ହେବ କି ? ବାରିପଦା ଅଧିବେଶନ ପାଇଁ ବାହାରୁ କାହାକୁ ଡାକୁଛନ୍ତି ? ଶାନ୍ତି ମହାପାତ୍ରଙ୍କ ବହି ପାଇଲି ନାଇ । କିଏ ପ୍ରକାଶକ ଦୟାକରି ଜଣାଇବେ କି ? ସେ ମୋ ଚିଠି ପାଇଲେ କି ନାଇ ଜାଣ ନାଇ । ଆଶା, ସପରିବାରେ କୁଶଳ । ପତ୍ର ଦେବେ । ଇତି । ନମସ୍କାରାନ୍ତେ ।

ଆପଣଙ୍କର

ସଚ୍ଚି ରାଉତରାୟ

॥ ୮୫ ॥

କଟକ

୧୨.୭.୭୧

ପୂଜ୍ୟପାଦେଷୁ ଗୁରୁଜୀ,

ଅଧୀନର ପ୍ରଣାମ ଗ୍ରହଣ କରିବେ । ଆପଣଙ୍କ ଲିଖିତ ‘ଓଡ଼ିଆ ଏକ ଓଟର ନାମ’ ଶୀର୍ଷକ ଗଳ୍ପଟି ପାଠ କରିବାର ସୁଯୋଗ ପାଇଥିଲି । ଲେଖାଟି ଏତେ ମର୍ମସ୍ପର୍ଶୀ ତଥା

ଭାବଦ୍ୟୋତକ ତାହା ଭାଷାରେ କହିହେବନି । ବସ୍ତୁବିକ ଗୁରୁଜୀ, ଆମର ଏ ଓଡ଼ିଆ ଜାତିଟା ଆଜି ଶବ ପରି ପଡିରହିଛି । ଓଡ଼ିଆ ପ୍ରାଣରେ ଦେଖାଯାଉନି ନବ ପ୍ରେରଣାର ଉସ୍ସ । ଏ ଜାତିଟା କ'ଣ ଏହିପରି ବଞ୍ଚି ରହିବ, ସାର୍ ? ଏ ଜାତିକୁ ତୋଳିଗଢ଼ିବାରେ ଆପଣମାନେ ଆଗଭର ହୁଅନ୍ତୁ । ମଧୁବାବୁ ଗୋପବଂଧୁଙ୍କ ସମ ତ୍ୟାଗର ମଶାଲ ଜାଳି କରି ଏ ଜାତିକୁ ଆଗକୁ ଆଗକୁ ବାଟ କଢ଼ାଇ ନିଅନ୍ତୁ । ଓଟପରି ଆଜି ଓଡ଼ିଆ ଯୁବକ ବଞ୍ଚି ରହିଛି । ଭୁଲ ଥିଲେ କ୍ଷମା କରିବେ । ଏ ଜାତିକୁ ଆପଣ ଅନ୍ଧାରରୁ ଟାଣିଆଣି ଆଲୁଅ ପଥରେ ଆଗେଇ ନେବାର ପ୍ରୟାସ କରିଥିବାରୁ ଶେଷରେ ଭକ୍ତିର ମହାର୍ଘ୍ୟ ବାଢୁଛି ଆପଣଙ୍କ ପଦତଳେ । ଶିଷ୍ୟ ହିସାବରେ ଭୁଲ କରିଥିଲେ କ୍ଷମା କରିବେ । ଏଯାଏ ମଧ ଆପଣଙ୍କୁ ମୁଁ ଦେଖିନାହିଁ । ଇତି ।

ଆପଣଙ୍କର ସ୍ନେହର

ବାସୁଦେବ ସାମଲ

॥ ୮୬ ॥

୧.୯.୭୧

ପୂଜ୍ୟ 'ସାର'

ପ୍ରଣାମ ନେବେ । ଆଶା ଆପଣ ଭଲରେ ଥିବେ । ଚିଠିଟି ପାଇ ହଠାତ୍ ଆଶ୍ଚର୍ଯ୍ୟ ହୋଇ ଯାଇ ପାରନ୍ତି ।

ମୁଁ ୧୯୫୭-୫୯ ଭଦ୍ରକ କଲେଜର ଛାତ୍ର ଥିଲି । ତାର ଦଶବର୍ଷ ପରେ ୧୯୬୮-୬୯ରେ ଭଦ୍ରକରେ ଉଠାଜଳସେଚନ ସବ୍‌ଡ଼ିଭିଜନର ଆସିଷ୍ଟାଣ୍ଟ ଇଂଜିନିୟର ଥିଲା ବେଳେ ମଧ ଆପଣଙ୍କ ସାଂଗେ ସାକ୍ଷାତ ହୋଇଥିଲା । ଆଶା ଆପଣ ବର୍ତ୍ତମାନ କ୍ଷୀଣ ମନେ ପକାଇ ପାରିବେ ।

ଓଡ଼ିଆ ସାହିତ୍ୟରେ "Quotation' (ଉଦ୍ଧୃତିମାଳା) ବହିର ଅଭାବ କେତେ ବେଶୀ, ଆପଣ ନିଶ୍ଚୟ ଜାଣିଥିବେ । ମୁଁ ଏହି କେତେମାସ ମଧରେ ଅନେକ ଗୁଡ଼ିଏ ଓଡ଼ିଆ "Quotation' ସଂଗ୍ରହ କରିଛି ଓ ତାକୁ ଏକ ପୁସ୍ତକ ଆକାରରେ ପ୍ରକାଶ କରିବାକୁ ସ୍ଥିର କରିଛି । ସେଥିପାଇଁ ଆପଣଙ୍କର ସାହାଯ୍ୟ ଓ ଉପଦେଶ ଏକାନ୍ତ ପ୍ରୟୋଜନ । ଆଶା ଆପଣ ଏଥିରେ କୁଣ୍ଠିତ ହେବେ ନାହିଁ ।

ଦଶହରା ଛୁଟିରେ ଆପଣ କଲେଜରେ ରହିବେ କି ? କିମ୍ବା କେଉଁଠି ରହିବେ ଜାଣିଲେ ସୁବିଧା ଦେଖି ଆପଣଙ୍କ ପାଖକୁ ଯାଆନ୍ତି । ଆପଣଙ୍କର ଅନ୍ୟ କିଛି ଅସୁବିଧା ନ ଥିଲେ ମୋତେ ଦୟାକରି ଶୀଘ୍ର ଜଣାଇବେ । ॥ ଇତି ॥

**ଆପଣଙ୍କର**

ଗୋବିନ୍ଦଚନ୍ଦ୍ର ସାହୁ ।

॥ ୮୭ ॥

Satakadi Hota, IRTS
Principal, Zonal Training School, S.E. Railway
Po- Sini, Dist- Singhbhum, Bihar
15.10.71

ପ୍ରିୟ କୃଷ୍ଣ ବାବୁ,

ନମସ୍କାର ଗ୍ରହଣ କରିବେ । ପୂଜା ଛୁଟିରେ ଆପଣଙ୍କ ସହିତ ସାକ୍ଷାତ କରିବା ପାଇଁ ଇଚ୍ଛା ଥିଲେ ବି, ମୁଁ ଛୁଟିରେ ଦିଲ୍ଲୀ ଚାଲିଯିବାରୁ ଏହା ସମ୍ଭବ ହେଲା ନାହିଁ । ଆପଣଙ୍କ ସହିତ କେତେକ ବିଷୟରେ ପରାମର୍ଶ କରିବାର ଥିଲା ।

ମୁଁ ନଭେମ୍ବର ମାସ ୨ୟ ସପ୍ତାହରେ ତିନିଚାରି ଦିନ ପାଇଁ ଯିବି । ସେହି ଅବସରରେ ଆପଣ ଓ ଆପଣଙ୍କର ଯୁବ ସାହିତି୍ୟକ ବଂଧୁମାନଙ୍କ ସହିତ ମିଳିତ ହୋଇ ପାରିଲେ ଭଲ ହୁଅନ୍ତା । ରେଳବାଇ ଷ୍ଟେସନ ସ୍ଥିତ ରେଷ୍ଟ ହାଉସରେ ଏକ ବଂଧୁମିଳନର ଆୟୋଜନ କରିବାର ଇଚ୍ଛା ଏଥିପାଇଁ । ଯଦି ଆପଣ ଓ ଅନ୍ୟମାନଙ୍କର ସୁବିଧା ହୁଏ ତାହେଲେ ଜଣାଇଲେ ଉପକୃତ ହେବି । ଆପାତତଃ ତା ୧୪/୧୧(ରବିବାର) ଦିନ ୩ଟା ସ୍ଥିର କରୁଛି । ଏହା ସୁବିଧା ଅସୁବିଧା ନେଇ ପରିବର୍ତ୍ତନ କରାଯାଇପାରେ । ସୀତାକାନ୍ତ ବାବୁ ସାହିତ୍ୟ ଆକାଡେମୀ ପୁରସ୍କାର ପାଇଛନ୍ତି, ତାଙ୍କୁ ଏହି ମିଳନକୁ ଆଣିବା ମଧ୍ୟ ଉଦ୍ଦେଶ୍ୟ ।

ବାରିପଦାରେ ସାହିତ୍ୟର ସମୃଦ୍ଧି ପାଇଁ ଆପଣ ଅନେକ କାମ କରୁଥିବାର ସମ୍ବାଦ ପାଉଛି । ଏହା ଆନନ୍ଦ ଏବଂ ଗର୍ବର କଥା । ଭଗବାନ ଆପଣଙ୍କୁ ଅଧିକ ଦିନ ଏଠାରେ ରଖନ୍ତୁ ।

ଆଶା ସସ୍ତ୍ରୀକ ପିଲାମାନଙ୍କ ସହିତ ଭଲ ଥିବେ । ମୋ ସ୍ତ୍ରୀ ଓ ପିଲାମାନେ ବାରିପଦାରେ । ଗଲେ ଆପଣମାନଙ୍କ ସହିତ ସାକ୍ଷାତ ହେବ । ଇତି

ଆପଣଙ୍କର
ସାତକଡି ହୋତା

॥ ୮୮ ॥

୦୩/୦୧/୭୧

ଡ଼ଃ କୃଷ୍ଣ ଚରଣ ବେହେରାଙ୍କୁ ଅନାମର ଅଭିବାଦନ ।

ଆସନ୍ତା ୩୧/୦୧/୭୧ 'ବସନ୍ତ ପଞ୍ଚମୀ' ଦିନ ଅନାମଙ୍କ ମେଳଣ–ଏବର୍ଷ କିନ୍ତୁ କଟକରେ । ଯେତେଦୂର ସମ୍ଭବ ନାରୀସେବା ସଦନରେ । ଆମେ ତିନୋଟି ସେମିନାର୍ କରିବୁ ।

୧. ଆଧୁନିକ ଓଡ଼ିଆ ସାହିତ୍ୟର ସାଂସ୍କୃତିକ ପରମ୍ପରା
୨. ଆଜିର କବିତାରେ ଗୋଷ୍ଠୀ ଚେତନା
୩. ଓଡ଼ିଶାର ନୃତ୍ୟ ସଂସ୍କୃତି ଓ ମାହାରୀ-ନୃତ୍ୟ Demonstration dance- Pankaj Ch. Das.

୧ମ/୨ୟ ଆଲୋଚନା ଚକ୍ରରେ ଆପଣଙ୍କୁ ଆଲୋଚନାର ସଂଯୋଜକ ହିସାବରେ ଏବଂ expert commetator ଭାବେ ଆମେ ଆମନ୍ତ୍ରଣ କରୁଛୁ ।

ସଂପୂର୍ଣ୍ଣ କାର୍ଯ୍ୟକ୍ରମ ଏବଂ ଯଥାବିଧି ନିମନ୍ତ୍ରଣ ଆପଣଙ୍କ ସମ୍ମତି ପାଇଲେ । ଯଥାଶୀଘ୍ର ଲେଖିଲେ ନିମନ୍ତ୍ରଣ ଛାପିବା । ଆଶା-ଆପଣ ଆମ ସହ ଗୋଟେ ଦିନ କାଟି ଆଳାପ ଆଲୋଚନା ଏବଂ ଆନନ୍ଦ ଦେବେ-

ଆପଣଙ୍କର
କୁମାର ମହାନ୍ତି

ପୁନଶ୍ଚ-

ଅନ୍ୟାନ୍ୟ ନିମନ୍ତ୍ରଣ ପାଉଥିବା ବ୍ୟକ୍ତିତ୍ୱ (ଆଲୋଚନା ପାଇଁ)

ୠମ ଆଲୋଚନା ପାଇଁ

୧.ଅଧ୍ୟାପକ ଗୁରୁପ୍ରସାଦ ମହାନ୍ତି (କାଳପୁରୁଷ), ୨. ସୁରେନ୍ଦ୍ର ମହାନ୍ତି, ୩. ମଧୁମହାନ୍ତି, ୪. ରମାକାନ୍ତ ରଥ, ୫. ସୀତାକାନ୍ତ ମହାପାତ୍ର, ୬. ସୌଭାଗ୍ୟ ମିଶ୍ର, ୭. ଡ଼ଃ କୃଷ୍ଣ ପ୍ରସାଦ ମିଶ୍ର, ୮. ନିମାଇଁ ପଟ୍ଟନାୟକ ୯. ଗୋକୁଳ ବିହାରୀ ମହାନ୍ତି ।

୨ୟ ଆଲୋଚନା ପାଇଁ

୧. ସଚ୍ଚି ରାଉତରାୟ, ୨. ଅନନ୍ତ ପଟ୍ଟନାୟକ, ୩. କୈଳାଶ ଲେଙ୍କା,
୪. କମଳାକାନ୍ତ ଲେଙ୍କା, ୫. ପ୍ରଫୁଲ୍ଲ କୁମାର ତ୍ରିପାଠୀ, ୬. ଦୀପକ ମିଶ୍ର,
୭. ମାୟାଧର ମାନସିଂ, ୮. ହରିହର ମିଶ୍ର, ୯. ଚିତ୍ତରଞ୍ଜନ ମିଶ୍ର

୩ୟ ଆଲୋଚନା ପାଇଁ

୧. ଡ଼ଃ ମିନତି ମିଶ୍ର, ୨. ହରିପ୍ରିୟା ଦେବଦାସୀ (ଡୁକୋଇ ମାହାରୀ), ୩. ଧୀରେନ୍ ପଟ୍ଟନାୟକ, ୪. ଗୁରୁ ପଙ୍କଜ ଚରଣ ଦାସ, ୫. କାଳୀ ଚରଣ ପଟ୍ଟନାୟକ, ୬. କୁମାର ମହାନ୍ତି ।

N:B . କିଏ ଆସିବାକୁ ରାଜି ହେବେ ନ ହେବେ ତା'ରି ଅନୁସାରେ ନିମନ୍ତ୍ରଣ ଛପାଯିବ । ଏହାଛଡ଼ା ଏକ ସାମୟିକ ପତ୍ରିକା ପ୍ରଦର୍ଶନୀର ମଧ୍ୟ ଆୟୋଜନ କରାଯାଉଛି । କିନ୍ତୁ ଆପଣ ଆମର ଆବଶ୍ୟକତା-ଆଡେଇ ଯିବେନି ।

ଦୁଃଖ ହେବ । We regard you as one of the best literary co-ordinators Orissa has ever produced. -କୁମାର

॥ ୮୯ ॥

ଭୁବନେଶ୍ୱର

କ୍ୱାର୍ଟର ନଂ–ଡି/୪, ୟୁନିଟ୍–୩, ୧୪.୧୨.୭୧

କଲ୍ୟାଣୀୟ କୃଷ୍ଣ,

'ଭ' ମୋତେ ଛାଡୁ ନାହିଁ । ଭଦ୍ରକରୁ ଭୁବନେଶ୍ୱର । ଆଉ ଗୋଟିଏ 'ଭ' ଚାଲିଗଲା । ସେଟା ଭୌମନଗର । ଭଦ୍ରକରେ ଥିଲା ଭାଗବତ ଭବନ ।

ତମ ନିମନ୍ତ୍ରଣ ରକ୍ଷା କଲି । ମାତ୍ର ଲେଖିବା କଷ୍ଟ । ବକିବା ସୁବିଧା । ତଥାପି ଚେଷ୍ଟା କରିବି । ମାନସିକ ରସିକତାର ଅଭାବ ହିଁ ଏହାର କାରଣ । କାତରେ କବିତା କୁତଃ– ଜୟନ୍ତୀ ଓ ପିଲାମାନଙ୍କୁ ଯଥାବିଧି । ସମସ୍ତେ ମୋର ସ୍ନେହ ନେବ ।

ପୁତ୍ରମଣି, ଏକଇର ବଳା ବିଶିକେଶନ ମାତୁଳାଳୟରେ । ମାତା ଏହି ମୁହୂର୍ତ୍ତରେ ମହିଳା ମହାବିଦ୍ୟାଳୟରେ 'ମ୍ୟାଡ୍ୟାମ୍' ଶବ୍ଦ ଶ୍ରବଣରେ ଶାନ୍ତ ଥିବେ । ଆଶା କରେ ତୁମେ ସବୁ ଭଲ ଥିବ ।

ତମର ନିତେଇ ଭାଇ

(ନିତ୍ୟାନନ୍ଦ ମହାପାତ୍ର)

ପୁଃ ଶ୍ରୀପୂର୍ଣଚନ୍ଦ୍ର ବିନ୍ଧାଣୀ କଣ ଡାକିଥିଲେ ୧୭କୁ ଏଇମାସ । କଲେକ୍ଟର କହିଲେ ଗଡିଗଲା ତାରିଖ ବାତ୍ୟାଯୋଗୁଁ । ତେଣୁ ପତର ଦେଇ ନାହିଁ । ଯଦି ଦେଖା ହୁଏ କହିବ ।

॥ ୯୦ ॥

EASTERN ZONE WRITERS' CONFERENCE
Convened by
ORIYA YOUNG WRITERS' CONFERENCE
21B, Mohanal Street, Calcutta-4, West Bengal

କଲିକତା

20.1.72

ସମ୍ମାନନୀୟ କୃଷ୍ଣବାବୁ,

ନମସ୍କାର ନେବେ ।

ଗତକାଲି ଖିଦିରିପୁରଠାରେ ଅଭ୍ୟର୍ଥନା ସମିତିର ବୈଠକ ବସି ଆଗାମୀ ଫେବ୍ରୁଆରୀ ୨୬/୨୭ରେ ପୂର୍ବାଞ୍ଚଳ ଲେଖକ ସମ୍ମେଳନ କରାଯିବା ପାଇଁ ସ୍ଥିର କରାଗଲା । 'ଶ୍ରୀଶିକ୍ଷାୟତନ ହଲ'ରେ ସମ୍ମେଳନ କରାଯିବ । ଦୁଇଦିନ ପାଇଁ ଏଠାରେ ଭଡ଼ା ୧୬୦୦ ଟଙ୍କା । ଆମେ ଆଗରୁ Calcutta Information Centre ନେଇଥିଲୁ । କିନ୍ତୁ ୨୦/ ୨୧ରେ ସେତେବେଳେ କରିବାର ଥିଲା । ପୁଣି ଆମେ ସଂବାଦ ପାଇଲୁ ଯେ ବଂଗଳାରୁ

ପ୍ରାୟ ୫୦ ଜଣ ବିଶିଷ୍ଟ ଲେଖକ 'ବାଂଲାଦେଶ' ସେ ସମୟରେ ଯାଉଛନ୍ତି । ଏଣୁ ଆମ ସମ୍ମେଳନକୁ ୨୬/୨୭କୁ ଘୁଞ୍ଚାଇ ଦେଲୁ । ଆଗରୁ ଆଉ କୌଣସି ହଲ୍ ଖାଲି ପାଇଲୁ ନାହିଁ ।

ସଚ୍ଚିବାବୁ ଗତ ଶନିବାରଠାରୁ ଆସି ଏଠାରେ ଆମକୁ ସାହାଯ୍ୟ କରୁଛନ୍ତି । ସେ ଏଠାରେ ବଂଗଳା ଓ ହିନ୍ଦୀ ଲେଖକମାନଙ୍କ ସହ ଆଲୋଚନା କରିଛନ୍ତି । ସେମାନେ ସବୁ ଆମକୁ ଆର୍ଥିକ ସାହାଯ୍ୟ ଦେବା ସଂଗେ ସଂଗେ ସମ୍ମେଳନ ପାଇଁ ସହଯୋଗ କରିବେ ବୋଲି ଆମକୁ ସାକ୍ଷାତରେ କହିଛନ୍ତି ।

ଏଥର ଖର୍ଚ୍ଚ ହେବ ପ୍ରାୟ ୧୧ହଜାର ଟଙ୍କା । ଆମ ଏଠାରୁ ଓଡ଼ିଆମାନଙ୍କ ଉଦ୍ୟମରେ ପ୍ରାୟ ୨/୩ ହଜାର ଟଙ୍କା ଆଦାୟ ହୋଇପାରିବ । ଆଉ ଓ. ଯୁ. ଲେ. ସ.କୁ ପୂର୍ବାଞ୍ଚଳ ପାଇଁ ମିଳୁଥିବା ୧ ହଜାର ଟଙ୍କା । ଏପରି ପ୍ରାୟ ୪ ହଜାର ଟଙ୍କା ହେବ । ଆଉ ଟଙ୍କା ବଂଗଳା, ହିନ୍ଦୀ ଓ ଅସମୀୟା ଲେଖକ ଓ ବଦାନ୍ୟ ବ୍ୟକ୍ତିଙ୍କଠାରୁ ଚାନ୍ଦା ଆଣିବାକୁ ପଡିବ । ତେବେ ଆମର ଉଦ୍ୟମ ଚାଲିଛି । ଆଶା ଓ ବିଶ୍ବାସ ଏଥର କୌଣସି ଅସୁବିଧା ହେବ ନାହିଁ ।

ଆମର କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ତଥା ବିଭିନ୍ନ ଭାଷାର ସାହିତ୍ୟିକମାନଙ୍କଠାରୁ ସହଯୋଗ ପାଇବା ପାଇଁ ଓଡ଼ିଆ, ବଂଗଳା, ବିହାର ଓ ଆସାମର ବିଶିଷ୍ଟ ଲେଖକମାନଙ୍କୁ ନେଇ ଏକ Advisory Council ଗଠନ କରଯାଇଛି । ପୁଣି ବଂଗଳାର ଆଶିଷ ସାନ୍ୟାଲ ଓ ସଦାଶିବ ଦାଶଙ୍କୁ Joint Secretaries ରୂପେ ନିଆଯାଇଛି ।

ଏଥର ଆପଣ ସମସ୍ତଙ୍କୁ ଜଣାଇଦେବେ ଯେ କେହିହେଲେ ସମ୍ମେଳନ ସଂପର୍କରେ କୌଣସି ଟେଲିଗ୍ରାମକୁ ବିଶ୍ବାସ କରିବେ ନାହିଁ । ବିଶେଷତଃ ସ୍ଥଗିତ କିମ୍ବା ଘୁଞ୍ଚିଯିବା ସଂପର୍କରେ କେବଳ ଅଧ୍ୟାପିକା ବୀଣାପାଣି ମହାନ୍ତିଙ୍କର ନିଜ ଦସ୍ତଖତ ଓ ପୂର୍ବାଞ୍ଚଳ ଲେଖକ ସମ୍ମେଳନ ପ୍ୟାଡ୍‌ରେ ଦିଆଯାଇଥିବା ପତ୍ରକୁ ଠିକ୍ ବୋଲି ମନେ କରିବେ । ଆମେ ଏଠାରୁ ମଧ୍ୟ ସମସ୍ତ ସଂବାଦପତ୍ରକୁ ଏଭଳି ନିର୍ଦ୍ଦେଶ ଦେଇଛୁ ।

ଏବେ ଆମେ P.T. I. ଏବଂ ଅନ୍ୟ ସମ୍ବାଦପତ୍ରକୁ ସମ୍ମେଳନ ସଂପର୍କରେ ସଂବାଦ ଦେଇଛୁ । ଏଥର ଆପଣ ସୀତାକାନ୍ତ ମହାପାତ୍ରଙ୍କୁ ଆମର 'କବିତା ପାଠୋତ୍ସବ' ଆସରରେ ମୁଖ୍ୟବକ୍ତା ରୂପେ ଯୋଗଦେବା ପାଇଁ ଅନୁରୋଧ କରିବେ । ଆମେ ଦୁଇଦିନ ଭିତରେ ତାଙ୍କ ପାଖକୁ ପତ୍ର ଲେଖୁଚୁ । ସଦାଶିବ ବାବୁ ଆସି ମଧ୍ୟ କାମରେ ଲାଗିଛନ୍ତି । ଆପଣ ବାରିପଦା ସମ୍ମେଳନ ପାଇଁ ସହଯୋଗ କରନ୍ତୁ । ଆମ ପାଇଁ କେବଳ ଓଡ଼ିଶା ସରକାରଙ୍କଠାରୁ ମିଳୁଥିବା ୧ ହଜାର ଟଙ୍କା ଚଂଚଳ ପାଇବା ପାଇଁ ଚେଷ୍ଟା କରନ୍ତୁ । ଆଉ ଲେଖକମାନଙ୍କ ସହ ପୁଣି ଯୋଗାଯୋଗ କରୁଛୁ । ଆପଣ ମଧ୍ୟ ଯାହାଙ୍କୁ ଲେଖୁଛନ୍ତି ଏ ସଂପର୍କରେ ଲେଖିବେ । ପତ୍ର ଦେବେ ।

ଆପଣଙ୍କର

ଦେବେନ୍ଦ୍ର ମାନସିଂହ

॥ ୯୧ ॥

ଶାନ୍ତିନିକେତନ
୨.୨.୭୨

ଶ୍ରଦ୍ଧେୟ କୃଷ୍ଣବାବୁ,

ଆପଣଙ୍କ ଚିଠି ପାଇ ବିଶେଷ ଆନନ୍ଦିତ ହେଲି । କଲିକତା ସମାବେଶରେ ଯୋଗଦେବାପାଇଁ ନିମନ୍ତ୍ରଣ ପାଇଛି ଓ ମୋର ସମ୍ମତିସୂଚକ ଚିଠିଟି ଏବେ ଆପଣଙ୍କ ଚିଠି ପାଇବା ପରେ ପଠାଇ ଦେଉଛି । ୫ ମିନିଟ୍ ମଧ୍ୟରେ ଆଧୁନିକ କବିତା ଉପରେ ନିବନ୍ଧ ପଢ଼ିବା ପାଇଁ ସୂଚନା ଦିଆହୋଇଛି । ବଡବଡଙ୍କ କାରବାର ମଧ୍ୟରେ ହନ୍ତସନ୍ତ ହେବା ଭୟରେ ମୁଁ କଲିକତା ସମ୍ମିଳନୀରେ ଯୋଗଦେବାକୁ କିଂଚିତ୍ କୁଣ୍ଠାବୋଧ କରୁଥିଲି । ଯାହାହେଉ ସେଠାରେ ଆପଣମାନଙ୍କ ସାନ୍ନିଧ୍ୟ ଓ ସାହଚର୍ଯ୍ୟ ପାଇବା ସମ୍ଭବ ହେବ ବୋଲି ଏବେ ଯିବା ପାଇଁ ଇଚ୍ଛା କରୁଛି ।

ଶ୍ରୀମାନ ସୁରେଶ ତ ଅନର୍ସ୍ ପାଇଛନ୍ତି । ତାଙ୍କ ଫଳ ଏବେ କାଗଜରୁ ଦେଖିଲି । ଆମର ଏବେ ଏଠି ଫେବ୍ରୁଆରୀ ୨ୟ ସପ୍ତାହରୁ ଆଡମିସନ୍ ଆରମ୍ଭ ହେବ । ସୁରେଶ ଏଠାକୁ ଏବେ କାଗଜପତ୍ର ପ୍ରଭିଜନାଲ୍ ସାର୍ଟିଫିକେଟ୍, ମାର୍କସିଟ୍ ଆଦି ଧରି ଆସିଲେ ଏଡ୍‌ମିସନ୍ ନେଇ ପାରିବେ ।

ବିଶ୍ୱଭାରତୀ ପାଠ ସମିତିରେ ଜଣେ ସହଯୋଗୀ ସଭ୍ୟ ରୂପରେ ଆପଣଙ୍କୁ ପାଇବା ମୋର ଏକାନ୍ତ ଇଚ୍ଛା । ମୋର ବିଶ୍ୱାସ ବର୍ଷକୁ ଥରେ ଅଧେ ଆପଣଙ୍କ ପକ୍ଷରେ ବିଶ୍ୱଭାରତୀ ଆସିବା ହୁଏତ ଅସୁବିଧା ହେବ ନାହିଁ । ଏ ସଂକ୍ରାନ୍ତରେ ପରେ ଚିଠି ଦେବି । ଆଉ ସବୁ ଏକପ୍ରକାର କୁଶଳ ।

ଶୁଭେଚ୍ଛା ଓ ପ୍ରଣାମ ସହ
ନରେନ୍ଦ୍ରନାଥ ମିଶ୍ର

॥ ୯୨ ॥

ତଗର
୫.୨.୭୩

ପ୍ରିୟ କୃଷ୍ଣବାବୁ,

ବହିପତ୍ର ପାଇଲା ବେଳକୁ ସେ ବିଭାଗ ଛପାସରି ତାପର ବିଭାଗ ମଧ୍ୟ ସରିଥିଲା । ତେଣୁ ଏସଂଖ୍ୟାରେ ଦେଇ ପାରିଲି ନାହିଁ । ପୁଣି ବହିପତ୍ର ବିଭାଗ କରି ଆଉ ଥରେ ଦେଲେ ଅସୁନ୍ଦର ହୋଇଥାନ୍ତା । ତେଣୁ ଆର ସଂଖ୍ୟା ପାଇଁ ବାଧ ହୋଇ ରଖିଲି । ଗୋକୁଳି ବାବୁଙ୍କୁ କହିବେ ସେ ଲେଖା ପଠାଇବେ । ତାଙ୍କ କବିତାକୁ ଅନେକ ପସନ୍ଦ କରିଛନ୍ତି ।

ଜଣେ ଇଂରାଜି ଅଧ୍ୟାପକଙ୍କୁ କୁହ ଇଂରାଜି ହାସ୍ୟରସାତ୍ମକ ଗଳ୍ପ ଅନୁବାଦ କରି ପଠାଇବେ । ଶିକାର ଗଳ୍ପ ଓ ଡିଟେକ୍ଟିଭ୍ ଗଳ୍ପ ମଧ୍ୟ ଧାରାବାହିକ ଭାବରେ ଇଂରାଜୀରୁ ଅନୁବାଦ କରି ପଠାଇଲେ ପ୍ରତି ସଂଖ୍ୟାରେ ଦିଅନ୍ତେ । ତୁମେ ବି.ଏ.,ଏମ.ଏ. ଛାତ୍ରଙ୍କ ଉପଯୋଗୀ ପ୍ରବନ୍ଧ ଲେଖି ପ୍ରତି ସଂଖ୍ୟାରେ ଦିଅ । ଡଗର ପ୍ରତି ସମସ୍ତେ ନଜର ନଦେଲେ ସେ ଟଳି ପଡିବ । ଢ଼ିରାଦେଇ କେତେଦିନ ଚଳିବ । ଡଗରର ଚାପାରେ ମୁଁ ବୃଦ୍ଧତ୍ୱ ଅନୁଭବ କଲିଣି । ସର୍ବଦା ଆଶଙ୍କାଗ୍ରସ୍ତ ହୋଇ ରହିବା ଫଳରେ ମୋର ଅବସାଦ ଆସିଗଲାଣି । ମୁଁ ବର୍ତ୍ତମାନ ଦେଖିଲିଣି ବଞ୍ଚିଥିବା ଯାଏ ଡଗରକୁ ଛାଡି ହେଉନି । ଏଣେ ତାକୁ ଆଦରି ରହିବା ବଡ କଷ୍ଟକର ଆର୍ଥିକ ବ୍ୟାପାର । ଦିନେ କେଉଁଦିନ ଶୁଣିବ ଫତୁ ଠୋଃ । ତେଣିକି ତୁମେ ନିତ୍ୟାନନ୍ଦ ବାବୁ ବାଧ ହୋଇ ଡଗର କଥା ବୁଝିବ ।

-ଫତୁ(ଫତୁରାନନ୍ଦ)

॥ ୯୩ ॥

ବାଣୀବିହାର
୧୦.୩.୭୩

ପ୍ରିୟ କୃଷ୍ଣବାବୁ,

ନମସ୍କାର । ପ୍ରଥମେ ଏଇମାସ 'ଝଙ୍କାର'ରେ ପ୍ରକାଶିତ ଅତି ଚିନ୍ତାପ୍ରସୂତ ଯୁଗୋପଯୋଗୀ ଆପଣଙ୍କ 'ତେଲପସରା ଓ ବେଲପସରା' ଲେଖାଟି ପାଇଁ ଅଭିନନ୍ଦନ ଜଣାଉଛି । ପ୍ରକୃତରେ ଏପରି ଲେଖା ଆଜିକାଲି କ୍ୱଚିତ୍ ଲେଖା ହେଉଛି । ଆମ ସମାଜରେ ଲୋକେ ଏତେ 'ପିଟାଘଣ୍ଟ' ହୋଇ ଗଲେଣି ଯେ ତାଙ୍କ କାନରେ ଯେତେ ଘଣ୍ଟ ବାଡେଇଲେ ବି ଏବଂ ମୁଣ୍ଡରେ ଯେତେ ଚିନ୍ତାର ହାତୁଡି ପିଟିଲେ ବି ସେମାନେ ଉଠିବାକୁ ପ୍ରସ୍ତୁତ ନୁହନ୍ତି । ତଥାପି ଭାବୁଛନ୍ତି ଲୋକମାନେ ତାଙ୍କ କାମ ଅବ୍ୟାହତ ରଖିବା ଉଚିତ-ତାହାହିଁ ଆମ ପାଇଁ ଆଶ୍ୱାସନା ।

ପୂଜାସଂଖ୍ୟା 'କାବ୍ୟ'ରେ ମୋର ଗୋଟିଏ ଲେଖା 'ଅବକ୍ଷୟୀ ପ୍ରତିଭାର ସୃଷ୍ଟି' ପଢ଼ିଥିବେ । ସେ ଲେଖାଟି କବିତା-୧୯୭୧ର ଗୋଟିଏ practical criticism. ସେଥିରେ ସଚ୍ଚିବାବୁ ଏତେ ଉତ୍‌କ୍ଷିପ୍ତ ହୋଇ ପଡିଛନ୍ତି ଯେ ଆପଣଙ୍କ ନାମରେ ଗୋଟିଏ ଭିନ୍ନନାମୀ ଚିଠି ମୋ ପାଖକୁ ଦେଇ ମୋତେ ମାଡମାରିବାକୁ ଧମକ ଦେଇଛନ୍ତି । ଚିଠିଟି ପୁଣି ସୁନହଟ ବାଲେଶ୍ୱରରୁ ଲେଖାଯାଇଛି । ତଳେ ଲେଖାହୋଇଛି ଇତି ତୁମର ଅଧ୍ୟାପକ କୃଷ୍ଣଚରଣ । ପୁନଶ୍ଚ ବେହେରା କୃଷ୍ଣଚରଣ ଇତ୍ୟାଦି । ଦୁଇ ପ୍ରକାର ଲେଖା ରହିଛି । ପୋଷ୍ଟ ହୋଇଛି କଟକ ଷ୍ଟେସନ ଆରଏମ୍ଏସରେ । ସଚ୍ଚିରାଉତରା-ଅକ୍ଷର ସହିତ ପରିଚିତ ସମସ୍ତ ବଂଧୁ କହୁଛନ୍ତି ଅକ୍ଷର ହେଉଛି ସଚ୍ଚି ରାଉତରା କବିଙ୍କର । ତେବେ ଆପଣଙ୍କ ନାମରେ କାହିଁକି ଦେଲେ ସେ ରହସ୍ୟ ବୁଝିବା କଷ୍ଟକର ହେଉଛି । ଜ'ଣ ଚାଣକ୍ୟ ଦର୍ଶନ

'କଣ୍ଟକେ ନୈବ କଣ୍ଟକମ୍' ନୀତି ପ୍ରୟୋଗ କଲେ କି ! ଆପଣ ଚାହିଁଲେ ଆପଣଙ୍କ ପାଖୁ ଚିଠିର ଏକ୍ସଟ୍ରା ପଠାଇବି । ତେବେ ଏଇ ମାର୍ଚ୍ଚ ସଂଖ୍ୟା 'ଝଙ୍କାର'ରେ ଜିତୁ ପଟ୍ଟନାୟକଙ୍କ ମତ ମୋଠାରୁ ଆହୁରି ତୀବ୍ର । ମୋ ମତ ସହିତ ୮୦ ପ୍ରତିଶତ ମିଳିଯାଉଛି । ଦେଖାଯାଉ ରାଉତରା କବି କେତେ ସତ୍ୟକୁ ଅସ୍ୱୀକାର କରି ଚାଲିଛନ୍ତି । ପ୍ରକୃତରେ ଏଠି ନିରପେକ୍ଷ ସମାଲୋଚନା ଏକ ଗର୍ହିତ ବ୍ୟାପାର । ପୁଣି କବିଙ୍କର ଯଦି ସଂଯମର ଏତେ ଅଭାବ ହୁଏ, ତେବେ ସୃଷ୍ଟିର କେଉଁ ନୂତନ ସ୍ୱପ୍ନରେ ସେ ପାଠକଙ୍କୁ ଉଦ୍‌ବୁଦ୍ଧ କରିପାରିବେ ? ରହିଲି ।

ନିତ୍ୟାନନ୍ଦ ଶତପଥୀ

॥ ୯୪ ॥

ରାଇରଙ୍ଗପୁର
୧୨/୦୩/୭୩

ପ୍ରିୟ କୃଷ୍ଣଚରଣ ବାବୁ,

ନମସ୍କାର । ଗତକାଲି କଟକରୁ ଫେରିଲି । ବାଟରେ ବାଲେଶ୍ୱରରେ ରହଣି ହେଲା, ବାରିପଦାରେ ରହିଲି ନାହିଁ, କାରଣ ଆମ ସାଙ୍ଗରେ ଆପଣ ଅମତ ହେବେ ନାହିଁ ପରନ୍ତୁ ଆପଣ ହିଁ ହେବେ ଉଦ୍ୟୋକ୍ତା । ଆପଣ ଅନୁମାନ କରିଥିବେ ଯେ ବ୍ରହ୍ମପୁର ପ୍ରକାଶକମାନେ କଟକରୁ ସବୁବେଳେ ଅଲଗା ଅଛନ୍ତି । ଖାଲି ସେତିକି ନୁହେଁ, ଗୁଡ଼ାଏ ବହି ଛପାଇ କଟକ ପ୍ରକାଶକମାନଙ୍କୁ ମୁକାବିଲା କରିବାକୁ ପ୍ରତିଜ୍ଞାବଦ୍ଧ । ତେଣେ ସମ୍ବଲପୁରର କେତେକ ବନ୍ଧୁଙ୍କୁ କଟକରେ ଦେଖି ଭିତରେ ପଶି ବୁଝିଲି ଯେ ସେମାନେ ୧୫ଜଣ ଏକାଠି ବସି ଏକ ପ୍ରକାଶକ ସଂସ୍ଥା କରି ସେ ଅଂଚଳରେ ଆଉ କଟକୀମାନଙ୍କୁ ପଶିବାକୁ ଦେବେ ନାହିଁ । ସେଠାରେ ଅଧ୍ୟାପକ ପ୍ରକାଶକ ପ୍ରଭୃତି ଅଛନ୍ତି । ତାଙ୍କର ଲକ୍ଷ୍ୟ ହେଲା ସିଗ୍‌ନେଟ୍ ପ୍ରେସ୍-କମ୍ ଦାମ, ଭଲ ବହି । ସେମାନେ ଭଲ Payment କରିବେ ।

କଟକ ମାର୍କେଟର ଅବସ୍ଥା ବଡ଼ ଶୋଚନୀୟ । କେତେକ ଲେଖକମାନଙ୍କୁ ମାରି ଏଥର ସର୍ବସ୍ୱ ଖତମ୍ କରି ଶେଷ ଅବସ୍ଥାରେ ପହଂଚିଯାଇ ସାରିଲେଣି । ୪/୫ ମାସଭିତରେ ଅନେକ ଗୁଡ଼ିଏ ଦୋକାନ ବନ୍ଦ ହୋଇ ଯିବାର ସମ୍ଭାବନା । ପୁଣି କେତେକ ମାନେବହି ବ୍ୟବସାୟୀ ମାନଙ୍କର ଉତ୍ଥାନ ଦେଖିବାକୁ ମିଳୁଛି । × × ×

ଏ କଥା ଚିନ୍ତା କଲାବେଳେ କୋଡ଼ିଏ ବର୍ଷ ରିକ୍ସାଟାଣି ଥକି ପଡିଥିବା ଭଗବାନ ନାଏକ (ମାତୃଭୂମି) ଦେଖାହେଲା । ଆଉ କେତେକ ବଂଧୁ ଦେଖା ହେଲେ । କଥା ହେଲା ଲେଖକ ବଂଚିବ କିପରି ? ବଂଚିବାର ଉପାୟ କଣ ? ବିଶେଷତଃ ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର ଲୋକଙ୍କର ଉପାୟ କଣ ? ବହୁ ଆଲୋଚନା ପରେ ଠିକ୍ ହେଲା ଯେ ଏକ ଲେଖକ ସହଯୋଗ ସମିତି କରାଯିବ । ଏହାର କେନ୍ଦ୍ରସ୍ଥଳ ରହିବ ବାଲେଶ୍ୱର । ପୁସ୍ତକ ପ୍ରକାଶନ-

ବିକିବା କାମ ଏବଂ ଦୁଃସ୍ଥ ଲେଖକଙ୍କୁ ସାହାଯ୍ୟ ହେଲା ଅସଲ ଉଦ୍ଦେଶ୍ୟ । ତା'ପରେ ମୋତେ କହିଲେ ବ୍ରଜ ରଥ ପାଖକୁ ଯିବାକୁ । ମୁଁ ବ୍ରଜ ବାବୁ ପାଖକୁ ଯାଇ ଦେଖେଁ ତାଙ୍କର ଗୋଟିଏ ଚକ୍ର ବସିଛି । ସେଠାରେ ସେହି ବଂଚିବାର ସ୍ୱପ୍ନ-ବାସ୍ତବତା । ବ୍ରଜବାବୁ ହାତରେ କଥାବାର୍ତ୍ତା ଓ ସବୁ ଭାର ଅର୍ପଣ କରାଗଲା । ପ୍ରେସ୍ ସଂପର୍କରେ ତାଙ୍କର ଧାରଣା ଥିଲା । ଏହାପରେ ଇନ୍ଦୁଭୂଷଣ କରଙ୍କ ସହିତ ଦେଖାହେଲା । ଖୁବ୍ ଉତ୍ସାହୀ ଲୋକ । ଅସଲ କଥା ହେଲା ସମସ୍ତଙ୍କ ଭିତରେ ଆଗ୍ରହ ଅଛି । ଦକ୍ଷତା ଅଛି । ଏଗୁଡିକୁ ସମଷ୍ଟିକୃତ କରିବା ଉଦ୍ଦେଶ୍ୟ । ଆପଣଙ୍କ ଉପରେ ଉଦ୍ରକର ତଥା ବାଲେଶ୍ୱରର ଭାର ରହିଛି ।

ଆପଣ ଆଗୁଆ ହୋଇ ନବାହାରିଲେ ଚଳିବ ନାହିଁ । ପେଟ ପାଟଣା ପାଇଁ ସରକାର ଅଛନ୍ତି ତେଣୁ ଆପଣଙ୍କର ବିନିଯୋଗଟି ବେଶି । ଆପଣମାନେ ଯେତେଟା ପୂରାଦମ୍‌ରେ ଆଗେଇ ପାରିବେ ଆମ ପକ୍ଷରେ ସମ୍ଭବ ହେଉନି, କାରଣ ଜାଣନ୍ତି । ନିବେଦନ ରହିଲା ବ୍ରଜବାବୁ, ଭଗବାନବାବୁଙ୍କୁ ଚିଠି ଲେଖିବେ । ଏମିତିରେ ଦେଖା ହେବ । ଇତି ।

ଯୋଗୀନ୍ଦ୍ର ପଟ୍ଟନାୟକ

॥୯୫॥

Grantha Mandir
Publisher & Book seller
Ref No. 133

Binodbihari, Cuttack-2
Date 14.4.73

ପ୍ରିୟ କୃଷ୍ଣବାବୁ,

ଆପଣଙ୍କ ପତ୍ର ପାଇ ଅତ୍ୟନ୍ତ ଆନନ୍ଦିତ ହେଲି ।

ଆପଣ ବହିଟି ପଢ଼ି ଯେପରି ଆଗ୍ରହ ସହକାରେ ମତାମତ ଦେଇଛନ୍ତି, ତାହାକୁ ଅସାଧାରଣ ଉଦାରତା କହିବି । ସମସ୍ତ ଉଲ୍ଲେଖଯୋଗ୍ୟ ପ୍ରକାଶନ ସମ୍ବନ୍ଧେ ଏପରି ମତମତ ମିଳନ୍ତା କି !

ବାପପୁଅଙ୍କ ବିଷୟରେ ମାଲିମକଦ୍ଦମାର ବିଶେଷ ବିବରଣୀ ଆପଣ ଲେଖକଙ୍କଠାରୁ ଆଶା କରିଛନ୍ତି । ମାତ୍ର ନୂତନ ତଥ୍ୟ ସଂଗ୍ରହ କରିବା ପାଇଁ ଯେ ତାଙ୍କର ସୁଯୋଗ ନାହିଁ ଲେଖକ ପରୋକ୍ଷରେ ଏକଥା ସ୍ୱୀକାର କରିଛନ୍ତି ଓ ସେଦିଗରେ କାମ କରିବା ପାଇଁ ଯୁବକ ସମାଲୋଚକମାନଙ୍କୁ ଅନୁରୋଧ କରିଛନ୍ତି । ଆପଣ କହିଲାଭଳି 'ଅନିନ୍ଦ୍ୟସୁନ୍ଦର ଶକ୍ତିଶାଳୀ ରୀତି' ହିଁ ଏ ବହିର ବିଶେଷତ୍ୱ ହୋଇ ରହିବ । ପୁନରାବୃତ୍ତି ଠାଏ ଠାଏ ହୋଇଛି । ମାନସିଂହଙ୍କ ଗଦ୍ୟ ଶୈଳୀ ମତେ ଏଭଳି ମୁଗ୍ଧ କରିଦେଲା ଯେ ପ୍ରୁଫ୍ ସଂଶୋଧନ ବେଳେ

ତାହା ମୁଁ ବିସ୍ମୃତ ହୋଇଗଲି । ପର ସଂସ୍କାରଣରେ ତାହା ଉପରେ ନଜର ଦେବି । ଫକୀରମୋହନଙ୍କର କିଛି ଫଟୋ ଦେବାକୁ ଭାବିଥିଲୁ । ମାତ୍ର ଯେଉଁ ଆଡେ ଆଖି ପକାଇଲୁ ସେହି ବହୁ ଦୃଷ୍ଟ ଓ ସୁପରିଚିତ ଚିତ୍ରଟି ହିଁ ଆଖିରେ ପଡିଲା । ତେଣୁ ଦେଇଥିଲେ ବିଧିରକ୍ଷା ନାମରେ ଦେଇଥାନ୍ତୁ ସିନା-ନହେଲେ ବିଶେଷତ୍ୱ କାହିଁ ? ନମସ୍କାର ନେବେ ।

ଆପଣଙ୍କର

ଅଭିରାମ ମହାପାତ

॥ ୯୬ ॥

ସମ୍ବଲପୁର

୧୮.୪.୭୩

ଶ୍ରଦ୍ଧେୟ ଡକ୍ଟର ବେହେରା,

ତୁମର ପ୍ରେରିତ 'ଭାରତିକା' ଦୁଇଖଣ୍ଡି ପାଇଲି । ଗୋଟିଏ କପି ଆମ ସେମିନାର୍ ପିଲାଙ୍କୁ ଦେଲି । 'ଭାରତିକା' ଲେଖା ପରିପାଟୀ ଦୃଷ୍ଟିରୁ ତରୁଣ ପ୍ରତିଭାର ବାହକ ହୋଇ ପାରିଛି । ଲେଖାଗୁଡିକ ପଢ଼ିଲି । ଭଲ ହୋଇଛି ଏବଂ ଏହା କେବଳ ତୁମର ପ୍ରଗାଢ଼ ଯତ୍ନର ପରିଣତି ମାତ୍ର । କାରଣ ପିଲାମାନଙ୍କଠାରେ ନିହିତ ପ୍ରତିଭାର ଯଥାର୍ଥ ଆବିଷ୍କାରକ ହୋଇଥାନ୍ତି ଅଧ୍ୟାପକ । ପିଲାମାନଙ୍କୁ ମୋର ଶୁଭେଚ୍ଛା ଜଣାଇ ଦେବ ।

ତୁମେ ସମ୍ମେଳନକୁ ଆସିଲ ନାହିଁ । ତୁମ ସମସ୍ତଙ୍କର ଖଣ୍ଡିଏ ଲେଖାଏଁ ସୋଭେନିର୍ ପଠାଇ ଦେଉଛି । ମୋର ଶୁଭେଚ୍ଛା ଗ୍ରହଣ କରିବ । ପତ୍ର ଦେବ । ଇତି ।

ତୁମର

ଗୋପାଳଚନ୍ଦ୍ର ମିଶ୍ର

॥ ୯୭ ॥

ଭୁବନେଶ୍ୱର-୯

ତା.୨୩/୦୪/୧୯୭୩

ପ୍ରିୟ କୃଷ୍ଣବାବୁ,

ପ୍ରଣତି । 'ସପ୍ତର୍ଷି'ରେ ପ୍ରକାଶିତ 'ଓଡ଼ିଆ ଉପନ୍ୟାସ' ଶୀର୍ଷକ ପ୍ରବନ୍ଧ ପ୍ରତି ମୋର ଦୃଷ୍ଟି କେତେକ ବନ୍ଧୁ ଆକର୍ଷଣ କରାଇଛନ୍ତି । ସେ ପ୍ରବନ୍ଧରେ ଆପଣ ମୋ ସଂପର୍କରେ ଏପରି କେତେକ ମନ୍ତବ୍ୟ ଦେଇଛନ୍ତି, ଯାହା ପଢ଼ି ମୋ ମୁଣ୍ଡ ତଳକୁ ହୋଇଗଲା । ଏ ପ୍ରବନ୍ଧ ପୁଣି ହିନ୍ଦିରେ ଛପା ଯାଇଛି ?

ମୋର ଧାରଣା ଆପଣ ମୋର ସବୁ ଉପନ୍ୟାସ ପଢ଼ି ନାହାନ୍ତି । କିଶୋର ବୟସରେ ମୁଁ ଯେଉଁ ଉପନ୍ୟାସ ବହୁଦିନ ତଳେ ଲେଖିଥିଲି ସେ ଉପନ୍ୟାସ ଗୁଡ଼ିକ ସଂପର୍କରେ ଶୁଣାକଥା ଉପରେ ନିର୍ଭର କରି ଏ ଗବେଷଣାତ୍ମକ ପ୍ରବନ୍ଧ ଲେଖିଛନ୍ତି । ତିରିଶି ବର୍ଷ ବୟସରୁ କମ୍

ବୟସ ଲୋକ ଉପନ୍ୟାସ ଲେଖାରେ ହାତଦେବା ଉଚିତ୍ ନୁହେଁ ବୋଲି ଆପଣ କାହିଁକି ଅକାରଣରେ ବିନୀତ ମତ ପୋଷଣ କରି ଆସିଛନ୍ତି ? ବଙ୍ଗଳାର ଶଙ୍କର କମ୍ୱା ଫ୍ରାନ୍ସର ସାଗାଁଙ୍କୁ ଏଭଳି ପରାମର୍ଶ ଦେଲେ ବଙ୍ଗାଳି, ଫରାସୀ ପାଠକମାନେ ଆପଣଙ୍କୁ ସହ୍ୟ କରିବେ ତ ? କଅଣ ପାଇଁ ଆଧୁନିକ ଓଡ଼ିଆ ସାହିତ୍ୟର ମୂଲ୍ୟାଙ୍କନ ପାଇଁ ଓଡ଼ିଆ ଅଧ୍ୟାପକଙ୍କୁ ଦାୟିତ୍ୱ ନଦେଇ ଇଂରେଜ ଅଧ୍ୟାପକଙ୍କ ଉପରେ ତାହା ନ୍ୟସ୍ତ କରାଯାଇଛି, ଆପଣଙ୍କ ପ୍ରବନ୍ଧ ପଢ଼ି ବେଶ୍ ବୁଝି ପାରୁଛି । ଆଧୁନିକ ଓଡ଼ିଆ ଉପନ୍ୟାସ ବର୍ତ୍ତମାନ ସୁଦ୍ଧା ଦୁଃଖିନୀ ଅବସ୍ଥାରେ ଅଛି । ଯଦି ସୃଷ୍ଟିରେ କ୍ଷମତା ଆପଣଙ୍କର ନାହିଁ, ଆପଣ ତାର ଅଗ୍ରଗତି ପଥରେ ଅନ୍ତରାୟ ସୃଷ୍ଟି କରନ୍ତୁ ନାହିଁ, ଏତିକି ପ୍ରାର୍ଥନା ।

ଆପଣଙ୍କର

ବିଭୂତି ପଟ୍ଟନାୟକ

॥ ୯୮ ॥

୭ ଆଇନ କଲେଜ ଛାତ୍ରାବାସ

କଟକ–୩

୨୧.୯.୭୩

ସମ୍ମାନାସ୍ପଦେଷୁ କୃଷ୍ଣବାବୁ,

ପଣାମ ନେବେ । ଆପଣଙ୍କ ପତ୍ର ଏବେ ମୁଁ ପାଇଲି । ଏଠାରେ ନ ଥିଲି । ତେଣୁ ଉତ୍ତର ଦେବାରେ ସାମାନ୍ୟ ବିଳମ୍ବ ହେଲା । ଆପଣଙ୍କ ମତାମତକୁ ସ୍ୱାଗତ କରୁଛି । ଘନବାବୁ ୨୬ ତାରିଖକୁ କଟକ ଆସୁଛନ୍ତି । ଏଣେ ୩୦ ତାରିଖକୁ ଗୁରୁବାବୁ ଭୁବନେଶ୍ୱରଠାରେ ଓ.ଯୁ.ଲେ.ସ.ର ଏକ ସାଧାରଣ ଅଧିବେଶନ ଡାକିଛନ୍ତି । ଅବସ୍ଥା କ୍ରମଶଃ ସୁଧୁରିବ କ'ଣ ? ଯୁ.ଲେ.ସ.ର ଭବିଷ୍ୟତ ନେଇ ମୁଁ ସନ୍ଦୀହାନ । ଯାହାହେଉ ଏହା ଭିତରେ ଯାହା କିଛି ସମାଧାନ ହୋଇଯିବ ବୋଲି ଗତକାଲି ମୋଠାରୁ ଆପଣଙ୍କ ପତ୍ର ପାଇଲାପରେ ଗୁରୁବାବୁ ମତବ୍ୟକ୍ତ କରିଥିଲେ । ଗୁରୁବାବୁ ସେମାନଙ୍କୁ ଅଡୁଆରେ ପକାଇବା ଚାହାନ୍ତି ନାହିଁ, ବରଂଚ ସେମାନଙ୍କୁ ଆହୁରି ସକ୍ରିୟ କରିବା ପାଇଁ ସାଧାରଣ ଅଧିବେଶନ ଡାକିଛନ୍ତି । ଘନବାବୁ ଏବଂ ଶୁଭେନ୍ଦୁ ଭିତରେ କୌଣସି ଯୋଗାଯୋଗ ନ ରହିବା ଫଳରେ ଏ ଅବସ୍ଥା । ଆପଣ ଆଗାମୀ ୩୦କୁ ଭୁବନେଶ୍ୱର ଆସିଲେ ଖୁବ୍ ଭଲ ହୁଅନ୍ତା । ଗୋପବନ୍ଧୁ ଦାସଙ୍କ ଶ୍ରାଦ୍ଧସଂଖ୍ୟା 'ସମାଜ'ରେ ପ୍ରକାଶିତ ଆପଣଙ୍କର ପ୍ରବନ୍ଧ 'ସାହିତ୍ୟର ଦୁଇଟି ଶକ୍ତି' ଆମ ପାଇଁ ବଡ ଉପାଦେୟ ହୋଇଛି । ଥରେ ନୁହେଁ, ବହୁଥର ପଢ଼ିଲି । ଅନୁରୂପ ପ୍ରବନ୍ଧ ଆପଣଙ୍କ କଲମରୁ ଆହୁରି କିଛି ଆଶା କରୁଛି । ପତ୍ର ଦେବେ । ଏଠାରେ ୩୦ ତାରିଖ ଯାଏ ଅଛି । ଇତି ।

ଆପଣଙ୍କର ବିନୀତ

ପ୍ରସନ୍ନ କୁମାର ପାଟଶାଣୀ

॥ ୯୯ ॥

ଭଦ୍ରକ
୯.୧୦.୭୩

ପ୍ରିୟ କୃଷ୍ଣବାବୁ,

ମୋର ବିଜୟା ଶୁଭେଚ୍ଛା ଓ ପ୍ରୀତି ଅର୍ପଣ କଲି । ଗ୍ରହଣ କରି ସୁଖୀ କରାଇବେ । ଆନନ୍ଦର କଥା ଆଜି ସାହିତ୍ୟ ପରିଷଦର ଅଧିବେଶନ ଭଦ୍ରକ ହାଇସ୍କୁଲରେ ଅପରାହ୍ନରେ ବସିଥିଲା । ମୋଟ ଉପସ୍ଥାନ ୧୭ । ଯୋଗଦେଇଥିଲେ Principal, English lecturer Nabi, Benarjee (ବାଲେଶ୍ୱର କଲେଜ), ସୁଧାଂଶୁ ବାବୁ, ଗଙ୍ଗାଧରବାବୁ ପ୍ରଭୃତି । ଆଶାତୀତ ଭାବରେ ସାଫଲ୍ୟ ମଣ୍ଡିତ ହୋଇଛି । ଆସନ୍ତା ଅଧିବେଶନ ହେବ ୨୧ ତାରିଖ ରବିବାର ଅପରାହ୍ନରେ । ତ୍ରିଲୋଚନ ବାବୁ W.H.Auden ଉପରେ ଆଲୋଚନା କରିଥିଲେ । ମୁକୁନ୍ଦବାବୁ ଆଗ୍ରହୀ ହୋଇଛନ୍ତି । ଏଥର କବିତା ପାଠ ଆଦୌ ହୋଇନାହିଁ । ଆସନ୍ତା ଅଧିବେଶନରେ କବିତା ପାଠ ସଙ୍ଗେ Pablo Neruda ଙ୍କ ଲେଖା ଉପରେ ମଧ କିଛି ସମୟ ଆଲୋଚନା କରାଯିବ । ସମସ୍ତେ ଆଶ୍ୱାନ୍ୱିତ ଯେ ଭଦ୍ରକ ସାହିତ୍ୟ ପରିଷଦ ଦୀର୍ଘଜୀବୀ ହେବ ।

ରୋଟାରୀ କ୍ଲବ୍‌ର ଅବସ୍ଥା ବର୍ତ୍ତମାନ ଖୁବ୍ ଖରାପ । ୧୨.୧୦ରେ ରୋଟାରି ଗଭର୍ଣ୍ଣରଙ୍କର ଆସିବା କଥା । ସେ ଆସିଲା ପରେ ଯାହା ହେବ । ମୁଁ କିମ୍ବା ତ୍ରିଲୋଚନବାବୁ ରୋଟାରୀ କ୍ଲବରେ ଏପର୍ଯ୍ୟନ୍ତ ଯୋଗ ଦେଇନାହୁଁ । ଆଭ୍ୟନ୍ତରୀଣ ଅବସ୍ଥା ସନ୍ତୋଷଜନକ ନୁହେଁ ବୋଲି । ତେବେ ମୋର ବିଶ୍ୱାସ ଅଳ୍ପ ଦିନ ମଧ୍ୟରେ ସୁଧୁରିବ । ୨୧ ତାରିଖକୁ ଆପଣ ଆସି ପାରୁଛନ୍ତି କି ନା ଜଣାଇବେ । ଯଦି ସୁବିଧା ହୁଏ, ତେବେ ତ୍ରିଲୋଚନ ବାବୁଙ୍କୁ ଏକ ପତ୍ର ଲେଖି, ଧନ୍ୟବାଦ ଦେଇ ସାହିତ୍ୟ ପରିଷଦକୁ ଜୀବନ୍ତ ଓ ଆକର୍ଷଣୀୟ କରିବାକୁ ଅନୁରୋଧ କରିବେ । ଗତ ୩ ତାରିଖରେ ମୋ ଘରେ ତ୍ରିଲୋଚନବାବୁ, ଗୌରବାବୁ, ଗଙ୍ଗାଧରବାବୁ ପ୍ରଭୃତିଙ୍କୁ ଡାକିଥିଲି ସାନ୍ଧ୍ୟ ବନ୍ଧୁମିଳନ ପାଇଁ ।

××× ××× ×××

ଦୁର୍ଭାଗ୍ୟ, ବ୍ୟାନର୍ ଖଣ୍ଡିକ ମିଳିଲା ନାହିଁ । ଅଡେନ୍ ଥିଲେ ଆଶାବଦୀ । ତାଙ୍କରି ଆଶା ଜ୍ଞାପକ କବିତାପାଠ ଓ ଆଲୋଚନା କରି ପରିଷଦର ଭବିଷ୍ୟତ ସମ୍ବନ୍ଧରେ ଉଚ୍ଚାଶା ରଖିଲୁ । ଆଜି ଅନେକ ଲେଖିଛି । ପ୍ରାର୍ଥନା କରନ୍ତୁ, ରୋଟାରୀ ବଞ୍ଚିରହୁ ।

ନମସ୍କାର ।

ଆପଣଙ୍କର ସ୍ନେହାଧୀନ
ରାଖାଲ ଚନ୍ଦ୍ର ଦାସ

**॥ ୧୦୦ ॥**

ଜଗନ୍ନାଥ ବଲ୍ଲଭ
କଟକ-୧
୨୨.୧୦.୭୩

ପରମସ୍ନେହାସ୍ପଦେଷୁ,

ଆଜି, ଅନେକ-ଅନେକ କାଳ ପରେ ଆପଣଙ୍କର ଚିଠି ଖଣ୍ଡିକ ପାଇ ଭାରି ଆନନ୍ଦ ଲାଗିଲା ସତ, ମାତ୍ର ଦୁଃଖିତ ହେଲି ଆପଣଙ୍କ ଶ୍ୱାସପୀଡା କଥାରେ ।

ଅଗସ୍ତିଗଛରେ ଏଇ ସମୟରେ ଫୁଲ ଧରେ । ଅଗସ୍ତିଫୁଲ ଗୋଟିଏଦିଓଟି ସିଝାଇ, ତା ପରି କରି ଟିକିଏ ମିଶ୍ରି ମିଶାଇ, ଦିନକୁ ୨/୩ଥର ଖାଆନ୍ତୁ । କିଛି ଫୁଲ ମଧ ଶୁଖାଇ ଥାଆନ୍ତୁ । ସବୁଦିନେ ତ ଏ ଫୁଲ ମିଳିବ ନାହିଁ । ଏ ଗୋଟିଏ ଶ୍ୱାସ ରୋଗର ବେଶ୍ ପରୀକ୍ଷିତ ଔଷଧ ।

ଆପଣ ଗଜଲ୍ କଥା ଲେଖିଛନ୍ତି । କଟକକୁ ୧୯୧୧-୧୨-୧୩ ବେଳକୁ ସାଙ୍ଗଲି ଥିଏଟର ଆସିଥିଲା । ପାର୍ଶୀରିପନ୍ ଥିଏଟର ମଧ ଆସିଥିଲା । ଲୋକେ ତାଙ୍କ ଗୀତରେ ମୁଗ୍ଧ ହୋଇଥିଲେ । ଅନେକ ଦିନ ପରେ, ପ୍ରାୟ ୧୯୧୭ ବେଳକୁ ମୋର ପ୍ରିୟ ବନ୍ଧୁ ସ୍ୱର୍ଗତ ଗୋବିନ୍ଦଚନ୍ଦ୍ର ସୂରଦେଓଙ୍କର ଦୁଇ ତିନୋଟି ଗଜଲ ସ୍ୱରର ଓଡ଼ିଆ ଗୀତ ବଡ ଲୋକପ୍ରିୟ ହେଲା । ସ୍ୱର୍ଗତ କବି କୃଷ୍ଣମୋହନ ପଟ୍ଟନାୟକ ମଧ ଗଜଲ ସ୍ୱରରେ ଅଳ୍ପ କେତୋଟି ଗୀତ ଲେଖିଥିଲେ । ତା'ପରେ ୧୯୨୨/୨୩ ବେଳକୁ ମୋର ରାସ ଦଳ ପାଇଁ ନାଟକ ଲେଖା ।

ଏଥିଭିତରେ ଗୁଡ଼ିଏ ଗଜଲ ସ୍ୱରର ଗୀତ ମୁଁ ରଚନା କରି ପିଲାଙ୍କୁ ଗୁଆଇଲି । ଲୋକେ ବି ପସନ୍ଦ କଲେ । ଏକାଗାଡି ଓ ଘୋଡା ଗାଡିବାଲାଏ ଆଲୁଅ ଓ ଅନ୍ଧାର ପକ୍ଷ ରାତିରେ ଏସବୁ ଗୀତ ଗାଇ ଗାଇ ମନ ମଉଜରେ ଗାଡି ହକାଁରୁ ଥିଲେ । ତା ପରେ ଆଉ ବେଶି କେହି ଗଜଲ ସ୍ୱରରେ ଓଡ଼ିଆ ଗୀତ ଲେଖିବା ମୁଁ ଜାଣି ନାହିଁ । ୰ ଲକ୍ଷ୍ମୀଭାଇ ଗୋଟିଏ କେତେ ଗୀତ ଭଦ୍ରଖରେ ଲେଖିଥିଲେ । ସେ ମଧ ଏଇ ବେଳର କଥା । ଆପଣ ଠିକ୍ କଅଣ ଖୋଜୁଛନ୍ତି, ଲେଖିବେ । ମୋ ଦ୍ୱାରା ଯାହା ହେବ ସାହାଯ୍ୟ କରିବି ।

ମୋ ଝିଅ ଓ ପିଲାଏ କିପରି ଅଛନ୍ତି ? ମୁଁ ସୁସ୍ଥ ନଥିଲି, ଦି'ଦିନ ହେଲା ଭଲ ଅଛି । ରହିଲି ।

ସୁଖୀ ହୁଅନ୍ତୁ ।

ଶୁଭାର୍ଥୀ
କାଳୀଚରଣ ପଟ୍ଟନାୟକ

॥ ୧୦୧ ॥

ଜଗନ୍ନାଥବଲ୍ଲଭ
୧୬.୧୧.୭୩

ସ୍ନେହର କୃଷ୍ଣବାବୁ,

ପାଶୋରି ପକାଇଥିଲି ଗଜଲ୍ ସ୍ୱରର ଓଡ଼ିଆ ଗୀତ ପଠାଇବାକୁ । ବୁଢ଼ା ହେଲେ ଏଇମିତି ହୁତ ହୁଏ । ରାଗିବେ ନାହିଁ । ୧୯୨୫ରେ ଏ ଗୀତଟି ଲେଖା ହୋଇଥିଲା । କୌତୁକ ଚିନ୍ତାମଣି ନାଟକରେ ଯୋଗ ହୋଇଛି ।

ମୋ ମାକୁ ମୋର ସ୍ନେହାଶୀର୍ବାଦ ଦେବେ । ପତ୍ର ପାଇ ଆପଣମାନଙ୍କର ସମ୍ବାଦ ଦେବେ । ରହିଲି । ସୁଖୀ ହୁଅନ୍ତୁ ।

ଆପଣଙ୍କର ଗୁଣମୁଗ୍ଧ
କାଳୀଚରଣ ପଟ୍ଟନାୟକ

ପୁନଶ୍ଚ:-

ଗଜଲ ସ୍ୱରରେ ରଚିତ ମୋର କେତେଗୁଡ଼ିଏ ଗୀତ ଅଛି । ଆପଣଙ୍କ କହିବା ମତେ ଗୋଟିଏ ପଠାଇଲି ।

**(ଗଜଲ ସ୍ୱରରେ ରଚିତ)**

କା’ ନିକୁଞ୍ଜେ ପୁହାଇ ରାତି,
ଆସିଲ ରଂଗେ ନାଗର ଗୋ ?
ଡାକି ଦେଲା କି କଜ୍ଜଳପାତୀ
ଫୁଲ ଶେଯ ଭୁଲ ରସସାଗର ।(୦)
ହା ! ହୁତାଶେ ବିରହତାପ ଗରିଷମେ ସହୀ ସହିବ !
ବୁକୁଟି ଫାଟେ, ମନ ଉଚାଟେ
ପାତିଛି ଆଶା-ଅଂଚଳ ଗୋ ।(୧)
ଘନ ବରଷା ଗହଳ ଧାରା ଅନ୍ଧକାର ଚନ୍ଦ୍ରିକା
ବିଜୁଳି ଠାରେ ବିରହ ଆକ୍ଷି
ନେ’ କୋଳେ ନେ’ ପାଗଳ ଗୋ ।(୨)
ଶରତ ଚାନ୍ଦେ ରଜନୀଗନ୍ଧା ମେଲିଛି ଛାତି ମାନିନୀ
ଖୋଲିଛି ଦ୍ୱାର ଦେ’ ଆଙ୍କି ଦେ’
ଗଣ୍ଡେ ଚୁମ୍ବ ଆଦର ଗୋ । (୩)

• • •

॥ ୧୦୨ ॥

ରେଜିଓନାଲ କଲେଜ
ଭୁବନେଶ୍ୱର
ତା ୧୦.୧୨.୭୩

ପ୍ରିୟ ସୁହୃଦ କୃଷ୍ଣବାବୁ,

ମୋର ଗଭୀର ଭକ୍ତି ସହ ପ୍ରଣାମ ଗ୍ରହଣ କରିବେ, ଆପଣଙ୍କୁ ମୁଁ ପ୍ରଥମେ ପତ୍ରଲେଖିବା ପୂର୍ବରୁ ଆପଣଙ୍କର ଅଭିନନ୍ଦନ ପାଇ ମୁଁ ନିଜକୁ ସଂକୁଚିତ ଓ ଲଜ୍ଜିତ ମନେ କରେ । ଆପଣଙ୍କର ମନେ ଥିବ, ଆପଣଙ୍କ ଭଦ୍ରକ କଲେଜ ବସାରେ ଅଧ୍ୟୟନ କାମରେ ସେଦିନ ବିଦ୍ୟାର୍ଥୀ ପରିଷଦ କାମରେ ଯାଇ ଦିନେ ଅତିଥି ହେବାର ସୁଯୋଗ ଉଠାଇଥିଲି, ସେଦିନ ଆପଣ ମୋର ଗବେଷଣା କାମ ତ୍ୱରାନ୍ୱିତ କରିଦେବା ପାଇଁ ଦେଇଥିଲେ ଆନ୍ତରିକ ପରାମର୍ଶ । ଆପଣଙ୍କର ଶୁଭେଚ୍ଛା ଓ ଆଶୀର୍ବାଦରୁ ମୋର ନିବନ୍ଧଟି ଡି.ଲିଟ୍. ପାଇଁ ଅନୁମୋଦିତ ହେଲା, ବିଷୟବସ୍ତୁ ହେଉଛି ଓଡ଼ିଆ ସାହିତ୍ୟରେ ନିର୍ଗୁଣ ଧାରା । ସମ୍ପୂର୍ଣ୍ଣ ସ୍ୱାଧୀନ ଭାବରେ ମୁଁ ଏହା କରିଛି ବୋଲି କହି ନପାରେ, କାରଣ ବହୁ ବିଦ୍ୱାନଙ୍କଠାରୁ ପ୍ରତ୍ୟକ୍ଷ ଓ ପରୋକ୍ଷ ନିର୍ଦ୍ଦେଶ ବଳରେ ମୁଁ ତାହା ସମାପ୍ତ କରିଦେଲି, ଏହା ଏକ ପ୍ରକାର ଆତ୍ମସମୀକ୍ଷଣ ମାତ୍ର । ଆପଣ ଜାଣନ୍ତି ଏ ଦେଶରେ ଗବେଷଣା କାମ ସାହିତ୍ୟରେ ଚଳାଇବା କିପରି ଏକ ବିଡମ୍ବନା, କାରଣ ସବୁ ଅଭାବର ଉତ୍କଟତା ଆମକୁ ପଙ୍ଗୁ କରିଦିଏ, ତାହା ଛଡା ଉତ୍ସାହିତ କରିବା ପାଇଁ ଆପଣଙ୍କ ପରି ନିଷ୍କପଟ ବନ୍ଧୁ ଅବା କେତେଜଣ ଏ ଦେଶରେ ମିଳନ୍ତି ? ଭବିଷ୍ୟତ ତ ଜାଣି ନୈରାଶ୍ୟଜନକ, ତଥାପି ମୋର ଆଶା ଆପଣଙ୍କ ପରି ପୁରୋଗାମୀ ସାହିତ୍ୟ ସାଧକମାନଙ୍କ ଶୁଭେଚ୍ଛା କଦାପି ବ୍ୟର୍ଥ ଯାଇ ନପାରେ । ଆଶା, ସପରିବାର କୁଶଳରେ ଥିବେ । ଇତି ।

ସ୍ନେହାଧୀନ
ନଗେନ୍ଦ୍ରନାଥ ପ୍ରଧାନ

॥ ୧୦୩ ॥

ପଲ୍ଲୀନିବାସ , ପୋ-ରରୁଆଁ
ମୟୂରଭଂଜ-୭୫୭୦୩୫
ତା.୧୨/୦୨/୭୪

ଶ୍ରଦ୍ଧାସ୍ପଦେଷୁ-କୃଷ୍ଣବାବୁ,

ସେଦିନ ସଂଧ୍ୟାଟି ଅଳ୍ପ ସମୟ ପାଇଁ ହେଉ ପଛକେ, ଆପଣଙ୍କ ସାନ୍ନିଧ୍ୟରେ ବଡ଼ ଆନନ୍ଦରେ କଟିଲା । ଦୀର୍ଘକାଳ ପରେ ଆପଣଙ୍କ ନିକଟ ସଂପର୍କରେ ଆସିବାର ସୁଯୋଗ

ପାଇଲି । "ଅଧ୍ୟାପକର ବେଦନା" ପଢୁଛି ଏବଂ ବେଦନାର ଗଭୀରତା ମଧ୍ୟ ସ୍ପର୍ଶ କରୁଛି । ଆପଣ ଯେ ବ୍ୟଥାକୁ ଚାପି ନରଖି ଉଦଗାର କରି ପାରିଛନ୍ତି ସ୍ୱକୀୟ ଭଙ୍ଗିରେ-ସେଥିପାଇଁ ବଧାଇ ଓ ସମବେଦନା ଜଣାଉଛି ।

ଆପଣଙ୍କର ଅନ୍ୟାନ୍ୟ ଗ୍ରନ୍ଥାବଳୀ ଦେଖିବାର ଆଶା ରଖୁଛି । ଋତୁଆଁ ଆସିବେ ତ? ଦେଖା ହେବ ତ? ସୁଜାତା ସଶ୍ରଦ୍ଧ ନମସ୍କାର ଜଣାଉଛି । ଆପଣ ବିହେଁ ମୋର ପ୍ରୀତି-ଶୁଭେଚ୍ଛା ନେବେ । ଇତି ।

ବିନୀତ

ଉମେଶ ଚନ୍ଦ୍ର ପାଣିଗ୍ରାହୀ

॥ ୧୦୪ ॥

ସାଗରିକା

ଝାଞ୍ଜିରିମଙ୍ଗଳା, କଟକ-୯

୨୭.୩.୭୪

ପ୍ରିୟ କୃଷ୍ଣବାବୁ,

ଆପଣଙ୍କର ୫.୧.୭୪ ତାରିଖର ଚିଠି ପାଇଥିଲି । ସମୟର ଚାପ ହେତୁ ଉତ୍ତର ଦେଇ ପାରିନି । କ୍ଷମା ଦେବେ ।

ଆପଣଙ୍କର ପଠିତ ବକ୍ତବ୍ୟକୁ 'ପ୍ରଗତିବାଦୀ'ର କଳ୍ପିତ ଏକ ସାହିତ୍ୟ ବିଶେଷାଙ୍କରେ ପ୍ରକାଶିତ କରିବାକୁ ରଖିଛି । ଆସନ୍ତା ମାସ ଶେଷବେଳକୁ କିମ୍ବା ମେ ମାସର ମଧ୍ୟ ଭାଗରେ ଏହି ସଂଖ୍ୟା ପ୍ରକାଶିତ ହେବ ବୋଲି ଆଶା ରଖିଛୁ ।

କାଗଜ ଦୁଷ୍ପ୍ରାପ୍ୟ ଏବଂ ଦୁର୍ମୂଲ୍ୟ ହୋଇଥିବାରୁ ଏବଂ ଆମର ଆର୍ଥିକ ଅବସ୍ଥା ସବୁବେଳେ ଖରାପ ରହୁଥିବାରୁ ବହୁ ସ୍ୱପ୍ନ ସଫଳ ହେଉନାହିଁ ।

'ପ୍ରଗତିବାଦୀ'ର ମୁଖ୍ୟ ସଂପାଦକ ମୁଁ ରହିଛି । ଶାନ୍ତିରଂଜନ ବେହେରା ମୟୂରଭଂଜ ଜିଲ୍ଲାର କୁଳିଆନାର ଜଣେ ଯୁବକ । ଏମ୍.ଏ. ଏଲ୍.ଏଲ୍.ବି. ପାସ୍ କରିଛନ୍ତି । 'ପ୍ରଗତିବାଦୀ' ନିଜ ନାମରେ ପ୍ରତିଷ୍ଠିତ ହେଉ, ଏତିକି ମାତ୍ର ଆମମାନଙ୍କର ଇଚ୍ଛା । ଆପଣ ନିୟମିତ ପତ୍ରିକା ପାଉଥିବେ । କଟକ ଆସିଲେ ଆମ ଆଡେ ଆସିବେ । ଚିଠି ଦେବେ ।

ନମସ୍କାର ସହ,

ଆପଣଙ୍କର

ପ୍ରଦ୍ୟୁମ୍ନ ବଳ

॥ ୧୦୫ ॥

୨୪୭, ଟାଗୋର ପାର୍କ
ଦିଲ୍ଲୀ–୯
୨୫/୦୪/୭୪

ପ୍ରିୟ କୃଷ୍ଣବାବୁ, ନମସ୍କାର

ଝଂକାରରେ ଆପଣଙ୍କ ପ୍ରବନ୍ଧର ଉପସଂହାର ପଢ଼ିଲା ପରେ ଲେଖୁଛି । ଆମ ସାହିତ୍ୟରେ ଏକ ନୂଆ ବିଭାବ ନେଇ ଲେଖିଲେ, ଭଲ ହେଲା । ମାତ୍ର ଆମର ଛାନ୍ଦ କାବ୍ୟ ଓ ବୈଷ୍ଣବ କବିତା ଉପରେ ସୁଫୀ ପ୍ରଭାବ ଅବଧାରଣା କରିବା ମୋ ପକ୍ଷରେ ସମ୍ଭବ ହୋଇ ପାରୁନାହିଁ । ଆମ କାବ୍ୟର ପ୍ରକୃତି ଓ ପରମ୍ପରା ଅବଶ୍ୟ ସଂସ୍କୃତଭିତ୍ତିକ ଏବଂ ଏହା ସହିତ କେବଳ ତେଲୁଗୁ କାବ୍ୟଧାରାର ସଂପର୍କ ଅନୁମେୟ । ସୁଫୀ ଧର୍ମ, ଦର୍ଶନ, ତତ୍ତ୍ୱ ବହୁ ପରିମାଣରେ ସଂସ୍କୃତ ଭିତ୍ତିକ, କାବ୍ୟ ପରମ୍ପରା ଏକଦମ ଭାରତୀୟ । ନଗେନ୍ଦ୍ର ହିନ୍ଦୀ ରୀତିବାକ୍ୟ ସମ୍ବନ୍ଧରେ ଯାହା ତତ୍ତ୍ୱ ଦିଅନ୍ତି ତାହା ଆମ ସାହିତ୍ୟରେ ସଂପୂର୍ଣ୍ଣ ସତ୍ୟ ନୁହେଁ । ଓଡ଼ିଆ ସାହିତ୍ୟର ଏକ ନିରାଟ ବୈଶିଷ୍ଟ୍ୟ ହେଉଛି ଏହା ଏକମାତ୍ର ଦେଶ ଯେଉଁଠି ମୁସଲମାନ ପ୍ରଭାବ ସ୍ୱଳ୍ପ ଓ ନଗଣ୍ୟ ଓ secondary. ଏକମାସ ହେଲା ଆମ ବିଭାଗରେ Religion and Poetry in medieval period ବିଷୟରେ ଏକ ଆଲୋଚନାଚକ୍ର ଆମେ ଚଳାଇ ଥିଲୁ । ଏସବୁ କଥା ସର୍ବଭାରତୀୟ ସ୍ତରରେ ଆଲୋଚନା ହୋଇଥିଲା । ମୋର ବ୍ୟକ୍ତିଗତ ଉପଲବ୍ଧି ଓ ଏହି ଆଲୋଚନା ପ୍ରସଙ୍ଗରେ ଶିକ୍ଷା ହେତୁ ଆପଣଙ୍କ ସିଦ୍ଧାନ୍ତ ସଂପର୍କରେ ମୋର ସନ୍ଦେହ ଉପୁଜିଛି । କେବେ ଯଦି ସବିସ୍ତାର ଆଲୋଚନା କରି ଏହା ଆପଣ ପ୍ରମାଣ କରନ୍ତି, ଭଲ ହେବ ଏବଂ ଭ୍ରାନ୍ତି ଦୂର ହେବ । ପ୍ରସଙ୍ଗତଃ ଆଉ ଗୋଟେ କଥା ମନେ ପଡିଲା । 'ପ୍ରଣୟ ପୁଷ୍ପ ମଂଜରୀ' ନାମକ ଖଣ୍ଡିଏ କାବ୍ୟ(ପ୍ରେମାଖ୍ୟାନ, ଲାବଣ୍ୟବତୀ ଜାତୀୟ କାବ୍ୟ, ମୁସଲମାନୀ ନାୟକନାୟିକା) କଥା ଆପଣ ଏ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି କି ? ମୁଁ ଅନେକ ଦିନ ଆଗେ ଏ ବହିଖଣ୍ଡିକ ପଢ଼ିଥିଲି । ଏହା ହିଁ ଖାଣ୍ଟି ଇସ୍‌ଲାମୀ ପ୍ରଭାବର ନମୁନା ।

'ଅଧ୍ୟାପକର ବେଦନା' ସଂପୂର୍ଣ ପଢ଼ିଲି । ହୀରକ ମାର୍ଫତ ଚିଠି ଦେଇଥିଲି । ପାଇଥିଲେ ତ ? ଲେଖନ୍ତୁ– ଆପଣ ତ ନୂଆ ନୂଆ ପ୍ରସଙ୍ଗ ଉତ୍ଥାପନ କରୁଛନ୍ତି । ଆଉସବୁ ଗଡ୍ଡାଳିକା ମଧ୍ୟରେ, ନହେଲେ ବଙ୍ଗଳାରୁ ଟିପୁଛନ୍ତି । ଖରାଛୁଟିରେ ଯଦି ହଠାତ୍ କେଉଁଠି ଆମର ଦେଖା ହୋଇପାରେ !

ଆଶା ଭଲରେ ଥିବେ, ହୀରକକୁ ମୋର ଶୁଭେଚ୍ଛା ଜଣାଇ ଦେବେ ।

ଆପଣଙ୍କର
ଖଗେଶ୍ୱର ମହାପାତ୍ର

॥ ୧୦୬ ॥

ଭଦ୍ରକ
୧୩.୮.୭୪

ଶ୍ରୀଚରଣେଷୁ ସାର୍,

ମୋର ନମ୍ର ନମସ୍କାର ଗ୍ରହଣ କରିବେ । ଏବେ ଭଦ୍ରକରେ ଆସି ଯୋଗଦେଲି । ସମ୍ବଲପୁରରେ ଥିଲାବେଳେ 'ଭାରତିକା' ପାଇଥିଲି । ମୋ ପ୍ରତି ଆପଣଙ୍କର ଶ୍ରଦ୍ଧା ପୂର୍ବପରି ରହିଛି–ଅଥଚ ମୁଁ ଜଣେ ଯୋଗ୍ୟ ଛାତ୍ର ହୋଇ ପାରିନାହିଁ–ଆପଣଙ୍କ ପ୍ରେରଣା ପାଇ ମଧ ଜୀବନକୁ ସାଧନାମୟ କରି ପାରିନାହିଁ । ସେଇ ଦୁଃଖ ଓ ଲାଜରେ ପତ୍ରାଳାପ କରିବାକୁ ସଂକୋଚ ଲାଗେ । ଏବେ ନିୟମିତ ଲେଖାପଢ଼ା କରିବା ଲାଗି ମୁଁ ସଂକଳ୍ପବଦ୍ଧ–କିନ୍ତୁ ଅନ୍ଧାର ଭିତରେ କେବଳ ବାଡି ବୁଲାଉଛି । ମୋତ ମାର୍ଗ ନିର୍ଦ୍ଦେଶ କରିବାକୁ ଏଠାରେ କେହି ନାହାନ୍ତି ।

ଗଙ୍ଗାଧରବାବୁ ଯୋଗ୍ୟ ଲୋକ, କିନ୍ତୁ ବ୍ୟକ୍ତିଗତ ଚିନ୍ତା ତାଙ୍କର ଏତେ ଅଧିକ ଯେ ଅନ୍ୟ କାହାରି ସହିତ ଆଳାପ ଆଲୋଚନା କରିବାକୁ ସେ ପ୍ରାୟ କୁଣ୍ଠିତ । ନିକଟରେ ଆପଣଙ୍କ ସହିତ କେଉଁଠି ସାକ୍ଷାତ ହେଲେ ଭଲ ହୁଅନ୍ତା । ଯଦି ଭଦ୍ରକ କେବେ ଆସନ୍ତି ଲେଖିବେ, ନଚେତ୍ ପୂଜାଛୁଟିରେ ମୁଁ ବାରିପଦା ଯିବି । ଝଙ୍କାରରେ ନିୟମିତ ପ୍ରକାଶିତ ଆପଣଙ୍କ ପ୍ରବନ୍ଧ ସବୁ ପଢିଛି । ସାହିତ୍ୟର ଏକ ଅନାବିଷ୍କୃତ ଦିଗନ୍ତ ଉନ୍ମୋଚିତ ହେଲା । ମତେ ଭଲ ଲାଗିଛି । ଆଶା କରେ ସପରିବାର କୁଶଳରେ ଅଛନ୍ତି । ବୈଷ୍ଣବ ବାବୁଙ୍କୁ ମୋର ପ୍ରଣାମ ଓ ରାଧାମୋହନଙ୍କୁ ଶ୍ରଦ୍ଧା ଓ ଶୁଭେଚ୍ଛା କହିବେ ।

ଭଦ୍ରକ କଲେଜ ଅନର୍ସ ସେମିନାରର ଯେଉଁ ମାଙ୍ଗଳିକ ମୂର୍ଚ୍ଛନା ଆମ ଛାତ୍ରାବସ୍ଥାରୁ ସୃଷ୍ଟି ହୋଇଥିଲା, ଆଜି ସେ ସୁଦିନର ଶଙ୍ଖଧ୍ୱନି ଆଉ ଶୁଣିବାକୁ ମିଳୁନାହିଁ । ପୁରାତନ ବନ୍ଧେଇ ପତ୍ରିକାମାନଙ୍କରୁ ଏବେ ଆସି ମୁଁ ଉଇ ଝାଡୁଛି । ଏଠି ମନୋରମା ଓ ହେମମୟୀ ଦେବୀ ଆପଣଙ୍କୁ ଅନେକ ସମୟରେ ସ୍ମରଣ କରୁଛନ୍ତି । ପୀତାମ୍ବରବାବୁ ମଧ୍ୟ ମନେ ପକାଉଛନ୍ତି ।

ସଚ୍ଚିଦାନନ୍ଦ ମିଶ୍ର (ଇତିହାସ) ଙ୍କୁ ମୋର ନମସ୍କାର କହିବେ । ଶ୍ରଦ୍ଧା ଓ ଭକ୍ତିର ସହିତ ଆପଣଙ୍କୁ ସ୍ମରଣ କରୁଛି । ଇତି ।

ମମତାବଦ୍ଧ ଆଶୀର୍ବାଦଭିକ୍ଷୁ

ବନମାଳୀ ମିଶ୍ର

॥ ୧୦୭ ॥

From Nimain ch. Mohanty
471, Timarpur
Delhi-7

Sept.7th, 74

ସାର୍, ପ୍ରଣତି ।

ବହୁଦିନରୁ ଚିଠି ଦେବି ଭାବି ଅସୁବିଧା ହେତୁ ଚିଠି ଦେଇ ପାରିନଥିଲି । ସେଥିପାଇଁ କ୍ଷମା ଦେବେ । ଏଠାକୁ ଆସି ବ୍ୟକ୍ତିଗତ ଅସୁବିଧା ହେତୁ ବ୍ୟସ୍ତ ଥିଲି । ଆପଣଙ୍କର ନୂତନ ପ୍ରକାଶିତ 'ଅଧାପକର ବେଦନା' ସଂପର୍କରେ ବାରିପଦାରେ ଆଲୋଚନା କରିଥିଲୁ । ଅନ୍ୟ ଗୋଟିଏ ନୂତନ ସମାଲୋଚନା ଗ୍ରନ୍ଥ ପ୍ରକାଶ ଅପେକ୍ଷାରେ ଥିଲା ବୋଲି କହୁଥିଲେ । ଯନ୍ତ୍ର ରାକ୍ଷସ ପେଟରୁ ବାହାରିଲାଣି କି ନାହିଁ ଜଣାଇବେ । ମୋର ଏବର୍ଷ ପାଠ୍ୟକ୍ରମରେ କେବଳ Ancient India ଉପରେ Specialisaton ଅଛି । ଆଠଟି Paper ସମୁଦାୟ Ancient India ଉପରେ ପଢ଼ିବାକୁ ହେବ । ପଢ଼ା ଏତେ ବ୍ୟାପକ ଏବଂ ଗଭୀର ଯେ ଏକପ୍ରକାର ଗବେଷଣା କହିଲେ ଚଳେ । ମନ୍ଦିର, କଳା ଓ Architect ଉପରେ ଯଦି କିଛି କାମ କରି ହୁଅନ୍ତା, ନୋହିଲେ ଅନ୍ୟାନ୍ୟ ମନ୍ଦିରମାନଙ୍କ ଉପରେ, ଆପଣ ଏସଂପର୍କରେ କିଛି ଦିଗଦର୍ଶନ ଦେବେ ବୋଲି ଆଶା ।

ଏଠାରେ ଲେଖାଲେଖି ବିଶେଷ କରିପାରୁ ନାହିଁ । ଗୋପୀନାଥ ମହାନ୍ତିଙ୍କ 'ମାଟି ମଟାଳ' ଏବେ ଜ୍ଞାନପୀଠ ସଂସ୍ଥା ଦ୍ୱାରା ଅନୂଦିତ ହେଉଛି । ଏହାର ନାଟ୍ୟରୂପ କରାଯାଇ ଏକ ନାଟକ ଅଭିନୀତ ହେବାର ଯୋଗାଡ ଦିଲ୍ଲୀ ଦରବାରରେ ଚାଲିଛି । ଓଡ଼ିଶାରେ ସାହିତ୍ୟିକ କ୍ରିୟାକଳାପ ସଂପର୍କରେ ଏଠାରେ କିଛି ଜଣାପଡୁ ନାହିଁ । ସେ ସଂପର୍କରେ ଲେଖିବେ । ଏ ଚିଠି ସହିତ University ର ଗୋଟିଏ ସ୍ମରଣିକା ପଠାଉଛି । ମୋର Article ଟି ପଢ଼ିବେ । ଏମିତି ଏକ General topic ଉପରେ ଲେଖିଛି । ବାରିପଦାରେ ସାହିତ୍ୟ ବୈଠକୀ ବୋଧହୁଏ ଜୋରସୋରରେ ଚାଲିଥିବ । ଆପଣ ଲେଖାଲେଖିରେ ପୁଣି କ'ଣ ନୂଆ Adventure କରୁଛନ୍ତି ଜଣାଇବେ । ଅନେକ ସମୟରେ ଉତ୍ସାହ କମିଗଲେ ମଧ୍ୟ ଆପଣଙ୍କର ନିରବଚ୍ଛିନ୍ନ ସାଧନା ଦେଖିଲେ ପୁଣି କମର କଷିବାକୁ ଇଚ୍ଛା ହୁଏ । ଚନ୍ଦ୍ରଶେଖର ରଥଙ୍କର ଯନ୍ତ୍ରାରୂଢ଼ ପରେ ସେହି ଢ଼ଙ୍ଗରେ ଅନ୍ୟ ଏକ ନୂତନ ପୁସ୍ତକ ଅସୂର୍ଯ୍ୟ ଉପନିବେଶ ପାଇଛି । ପଢ଼ିନାହିଁ ।

ଈଶ୍ୱରଙ୍କ ଆଦେଶରୁ ଆପଣ କୁଶଳରେ ଥିବେ । ପତ୍ର ଅପେକ୍ଷାରେ ରହିଲି । ଇତି ।

ଆପଣଙ୍କର ସ୍ନେହାଧୀନ

ନିମାଇଁ

॥ ୧୦୮ ॥

ଖୋର୍ଦ୍ଧା
୪.୧୧.୭୪

ପ୍ରିୟ କୃଷ୍ଣଚରଣ ବାବୁ,
ନମସ୍ତେ ।

ଇସ୍‌କସ ସମ୍ମିଳନୀ କାର୍ଯ୍ୟ ଓ ଓଡ଼ିଶା ପ୍ରଗତିଶୀଳ ଲେଖକ ସଂଘ ଗଠନ ପାଇଁ ବୈଠକ ଯୋଗୁଁ ଆପଣଙ୍କ ଘରକୁ ଯାଇ ପାରିଲୁ ନାହିଁ । କାଳିନ୍ଦୀ ବାବୁଙ୍କ ସଭାପତିତ୍ୱରେ ସେଠାରେ ଥିବା ଲେଖକମାନଙ୍କର ବୈଠକ ହେଲା । ସଂଘ ଗଠିତ ହେଲା । ଏଥିରେ ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ ସଭାପତି, ଶ୍ରୀଯୁକ୍ତ ଅନନ୍ତ ପଟ୍ଟନାୟକ–କାର୍ଯ୍ୟନିର୍ବାହୀ ସଭାପତି, ଡକ୍ଟର କୃଷ୍ଣଚରଣ ବେହେରା, ଶ୍ରୀଯୁକ୍ତ ବେଣୁଧର ରାଉତ, ଶ୍ରୀଯୁକ୍ତ ଗୋବିନ୍ଦ ଚନ୍ଦ୍ର ମହାନ୍ତି, କୃଷ୍ଣପ୍ରସାଦ ପଟ୍ଟନାୟକ–ଉପସଭାପତି, ଶ୍ରୀ ଅବଳୀକୁମାର ବରାଳ ଓ ଲକ୍ଷ୍ମୀନାରାୟଣ ରାୟସିଂହ ଯୁଗ୍ମ ସଂପାଦକ ହେଲେ । ଡିସେମ୍ବର ମାସରେ କଟକ ବା ଭୁବନେଶ୍ୱରଠାରେ ଏକ କନଭେନସନ୍ ଡକାଯିବାର ସ୍ଥିର ହେଲା । କାଳିନ୍ଦୀବାବୁ, ଅନନ୍ତବାବୁ ଓ ବେଣୁଧର ବାବୁଙ୍କୁ ନେଇ ସଂବିଧାନ କମିଟି ଗଠିତ ହେଲା । ପ୍ରସ୍ତାବ ଓ ଉପସ୍ଥିତ ସମସ୍ତଙ୍କ ନାମ ଓ ବିବରଣୀ ସାଇକ୍ଲୋଷ୍ଟାଇଲ୍ ହୋଇ ସମସ୍ତଙ୍କୁ ପଠାଯିବ । ପୁଣି କନଭେନସନ ପାଇଁ ଅନ୍ୟମାନଙ୍କୁ ପଠାଯିବ ।

ପୂରା ରାତି ଅନିଦ୍ରା ହୋଇ ବାଲେଶ୍ୱରଠାରେ ଉତ୍କଳ ଏକ୍ସପ୍ରେସରେ ଆସି ପହଞ୍ଚିଛି । କଲେଜରୁ ଲେଖୁଛି । ଆପଣଙ୍କ ଘରଠାକୁ ନ ଯାଇପାରି ଦୁଃଖିତ । ସେଇଥିପାଇଁ ଏସବୁ କଥା ସଂଗେ ସଂଗେ ଜଣାଇ ଦେଉଛି । ଆଶା, ଆପଣ ଔଷଧ ଖାଇ ଶ୍ୱାସରୁ ସାମାନ୍ୟ ଭଲ ଥିବେ । ଅନ୍ୟାନ୍ୟ ପରେ । ଇତି ।

ଆପଣଙ୍କର ଲକ୍ଷ୍ମୀନାରାୟଣ ରାୟସିଂହ

॥ ୧୦୯ ॥

କଟକ–୨ : ଓଡ଼ିଶା
ତା.୦୭/୧୨/୭୪

**ମାନସ**

ସଂପାଦକ : ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ପ୍ରିୟ କୃଷ୍ଣ ବାବୁ,

ବହୁତ ଦିନ ପରେ ପୁଣି ଚିଠି ଲେଖୁଛି । ଏକାଡେମୀ ଆୱାର୍ଡ କଥା ଶୁଣି ସାରିବେଣି । ଗୋଟିଏ ପରିବାରର ଲୋକ ସବୁଦିନ ଆୱାର୍ଡ ପାଇବେ, ଅନ୍ୟମାନେ ବିନା

ପ୍ରତିବାଦରେ ବସିଥିବେ-ଏହାହିଁ ଏ ଦେଶର କଥା, ଜାତିର ପ୍ରାଣ ଶକ୍ତି ! ଛାଡନ୍ତୁ !

ମାନସରେ ଓଡ଼ିଶାର ବିଭିନ୍ନ ସହରର ଭୁଗୋଳ, ଇତିହାସ ସଂସ୍କୃତି, ସଭ୍ୟତା ନେଇ ଗୋଟିଏ ସିରିଜ୍ ବାହାର କରିବାକୁ ମୁଁ ଚେଷ୍ଟା କରୁଛି । ବାରିପଦା ଉପରେ ଆପଣ ଲେଖିଲେ ଭଲ ହୁଅନ୍ତା । ଲେଖାଟି ଖୁବ୍ ବେଶୀ ଫର୍ଦ୍ଦ ହେବା ଦରକାର ନାହିଁ । ବାରିପଦାର ମହତ୍ତ୍ୱପୂର୍ଣ୍ଣ ଲୋକଙ୍କ ସମ୍ବନ୍ଧେ କିଛି ସୂଚନା ବି ରହିବା ଉଚିତ୍ ।

ମାନସକୁ ଓଡ଼ିଶାରେ କିପରି ଆହୁରି ବ୍ୟାପକ କରାଇବା, ସେଥିପ୍ରତି ଆପଣ କିଛି ଉପଦେଶ ଓ ସାହାଯ୍ୟ ଦିଅନ୍ତୁ । ମୋର କାନାଡ଼ା ଡାଏରୀ ବାହାରି ଯାଇଛି । ମୋର ଭୃଗୁସଂହିତା ଆପଣ ପଢ଼ିଥିବେ ନିଶ୍ଚୟ । ରହୁଛି । ଇତି

ଆପଣଙ୍କର କୃଷ୍ଣପ୍ରସାଦ ମିଶ୍ର

॥ ୧୧୦ ॥

**Prof. B. Behera**
Vice-Chancellor



D.O. No 413 AC

Jyoti Vihar, P.O. Burla
Dist: Sambalpur
4.1.1975

Dear Dr. Behera,

I was present during the seminar on the Role of Critics in Literature held at Keonjhar on the 29th December afternoon. You presented a paper and there were discussions on the same. I liked your paper very much. We will be happy to publish the same as an article in our monthly magazine 'Saptarshi'. I was told by Mr. Mirdha that you had agreed for the publication of that article in Saptarshi after slight modification. I hope you will send the same to us soon so that it can be published in our February issue. I am also requesting Shri C. S. Rath, Shri Baishnab Charan Samal and Shri Bauribandhu Kar for sending their discussions in the form of articles so that all these put together will form a valuable piece of literature on criticism.

I have enquired regarding the Ph.D. thesis submitted by Shri K.B.Nayak under your guidance. The matter is being expedited. I do feel that much of the delay could have been avoided.

With my best wishes to you for a Happy New Year.

Yours sincerely,
B. Behera

॥ ୧୧୧ ॥

ହାତୀବନ୍ଧସାହି,
ବ୍ରହ୍ମପୁର
୨୫.୧୦.୭୫

ପୂଜନୀୟ ସାର୍, ପ୍ରଣତି ।

ଆପଣଙ୍କ ଚିଠି ପାଇଛି । ନନ୍ଦକିଶୋରଙ୍କୁ ଆଲୋଚନା କରିବି, ଯେମିତି ଆପଣ ଚାହୁଁଛନ୍ତି । ମନ ଭିତରେ ଯେତେ ସାରସ୍ୱତ-ସ୍ୱପ୍ନ ଉଙ୍କି ମାରୁଛି ସବୁ ଯଦି ସଫଳ ହୁଅନ୍ତା, ଆମ ସାହିତ୍ୟରେ କିଛି ହେଲାବୋଲି ଜାଣନ୍ତୁ । ବ୍ୟକ୍ତିଗତ ଶକ୍ତି ତ ସୀମିତ, ଏଥି ଭିତରେ ଧୀରେ ଧୀରେ କାମ କରିବା ଛଡା ଉପାୟ ନାହିଁ । ସ୍ୱପ୍ନ ଦେଖୁଛି ସତ, ନନ୍ଦକିଶୋରଙ୍କ ଉପରେ ଏକ ଚରିତାତ୍ମକ ସମାଲୋଚନା ଗ୍ରନ୍ଥ ଲେଖିବି, ଆପଣଙ୍କର କଲ୍ୟାଣ ଓ ଜଗନ୍ନାଥଙ୍କର କୃପା କଣିକା ପାଇଲେ ତାହା ସଫଳ ହେବ । ଦେଖାଯାଉ-ଲାଗିଛି ତ ?

ମଝିରେ ମଝିରେ ଅସୁବିଧା ଆସି ଉପୁଜୁଛି-ଏଣୁତେଣୁ ଝମେଲା ପଶିଯାଉଛି । ଏକାଥରେ ଅଣନିଶ୍ୱାସୀ ହେଇ ଲାଗି ହେଉ ନାହିଁ । ଆପଣଙ୍କର ସ୍ମାରକୀ ଗ୍ରନ୍ଥ ପାଇଁ ପ୍ରବନ୍ଧଟିଏ ଯିବ । ସରିଗଲାକ୍ଷଣି ପଠାଇ ଦେବି, ହେଳା କରିବି ନାହିଁ ।

ଥିସିସ୍ କାର୍ଯ୍ୟ ଆଗେଇ ଚାଲିଛି । ବର୍ତ୍ତମାନ ଯେଉଁ ରୀତିରେ ଚାଲିଛି, ସେମିତି ଯଦି ଆଗେଇ ଯାଏ ତେବେ ଆଉ ଦଶଦିନ ଭିତରେ କାମ ଶେଷ ହୋଇଯିବ । ବର୍ତ୍ତମାନ ସୁଦ୍ଧା ୨୬୪ ପୃଷ୍ଠା ଛପାହୋଇ ଗଲାଣି-ଆଉ ଛାପାରେ ପ୍ରାୟ ୮୦ ପୃଷ୍ଠା ହେବ । ଦେଖାଯାଉ କଣ ହେଉଛି- ମୁଁ ପ୍ରାୟ ନଭେମ୍ବର ମାସରେ ଫଟୋ ଇତ୍ୟାଦି ସାଥିରେ ଘେନି ୨/୩ଦିନ ପାଇଁ କଟକ ଯିବି, ସେଠି ବ୍ଲକ୍ କରେଇ ତାକୁ ଛାପି ଘେନି ଆସିବି ବୋଲି ଭାବୁଛି । ଯଦି କଭର୍ ପୃଷ୍ଠାର ଛବି ଠିକଣା ହୋଇଯାଏ, ତେବେ ତାକୁ ବି ନେଇଯିବି । ଥିସିସ୍‌ର ଇଣ୍ଡେକ୍ସ ତିଆରି ଚାଲିଛି । ଛପା ସରୁ ସରୁ ତାକୁ ମଧ ଯୋଗାଇ ଦିଆଯାଇ ପାରିବ । ଏପର୍ଯ୍ୟନ୍ତ କୌଣସି ସୂତ୍ରରୁ ବାମଣ୍ଡା ରାଜକବିମାନଙ୍କର ଫଟୋ ପାଇଲି ନାହିଁ- ଶେଷରେ ଭାବୁଛି, ଭାଷାକୋଷରୁ ଫଟୋ ଉଠାଇବାର ଉପାୟ କରିବି । ଅନ୍ୟ ଉପାୟ ଆଉ କଣ ଅଛି କି ? ଏଇ ଥିସିସ୍‌କାର୍ଯ୍ୟ ସରିବାକ୍ଷଣି-ଅନ୍ୟ ବହିଗୁଡ଼ିକ ଛପାଯିବ ବୋଲି ପ୍ରକାଶକଙ୍କର ଯୋଜନା । ଚିତ୍ତଭାଇଙ୍କର ବହି ଲାଗିଯିବ, ଏବଂ ଅନ୍ୟାନ୍ୟ ଛୋଟ ବହି ମଧ ବାହାରିବ ବୋଲି ଯୋଜନା

ଚାଲିଛି । ବର୍ତ୍ତମାନ ଏପରି ଅଚାନକ ଝଂଝାଳ ଆସି ମୋତେ ବିବ୍ରତ କରୁଛି ଯେ ମୁଁ ଖୁବ୍ ଶଂକିତ ହୋଇ ଯାଉଛି– ପରିସ୍ଥିତି ତ ସବୁ ଦୁର୍ଯୋଗର ସ୍ତମ୍ଭ ଆଉ କଣ କରାଯାଇପାରେ । କେବେ ଭାଗ୍ୟକୁ ନିନ୍ଦିବା ଛଡା ଉପାୟ ନାହିଁ । ଅବଶ୍ୟ ଏସବୁ ସାହିତ୍ୟ ଘେନି ନୁହେଁ– ଅନ୍ୟ ବିଷୟ, ପରେ ସାକ୍ଷାତରେ କହିବି । ଏପରି କେତେକ ଅଚାନକ ଘଟଣା ଯୋଗୁଁ ମୁଁ ବେଳେ ବେଳେ ମାନସିକ ଅସ୍ଥିରତା ଅନୁଭବ କରୁଛି ।

ଆପଣ ପରା କହନ୍ତି, ସବୁ ଦୁଃସ୍ଥିତି ଓ ଦୁର୍ଯୋଗକୁ ଭୁଲିବାର ଏକମାତ୍ର ମାଧ୍ୟମ ହେଉଛି ସାହିତ୍ୟ–ସେଇ ସାହିତ୍ୟ ଓ ଜଗନ୍ନାଥ ସେବା ଦୁଇଟି ଭିତରେ ଏସବୁକୁ ଭୁଲିବାକୁ ଚେଷ୍ଟା କରୁଛି । ତଥାପି ମଣିଷର ମନ ତ, ବେଳେ ବେଳେ ପୁଣି ଦୃଢ଼ତା ହରେଇ ଦେଉଛି । ଦେଖାଯାଉ ଜଗନ୍ନାଥଙ୍କର ପରୀକ୍ଷା କେତେବାଟ ଯାଉଛି । xxx ସାଥିମହଲ ମୋ ବହି ବିଷୟରେ ନୀରବ ରହି ଗଲା କି ? କିଛି ଖବର ଶୁଣିଲି ନାହିଁ–ଦେଖା ହେଉଥିଲେ ଟିକିଏ ତତ୍ତ୍ୱ ନେବେ କି ? ମାମୀଙ୍କୁ ପ୍ରଣାମ କହିବେ–ପିଲାମାନଙ୍କୁ ସ୍ନେହ । ଆଶା କୁଶଳରେ ଥିବେ । ଇତି ।

ସ୍ନେହର କ୍ଷେତ୍ରବାସୀ ନାୟକ

॥ ୧୧୨ ॥

ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା ପରିକ୍ରମା କମିଟି
ଉନ୍ମେଷ ସାହିତ୍ୟଗୋଷ୍ଠୀ, ଭଦ୍ରକ ଆନୁକୂଲ୍ୟରେ

ଭଦ୍ରକ
୩୦.୧୨.୭୫

ପୂଜ୍ୟ ସାର୍,

ମୋର ପ୍ରଣାମ ନେବେ । ଆପଣଙ୍କର 'ଅଧ୍ୟାପକର ବେଦନା' ଗତ ଶନିବାର ଦିନ ପଢୁଥିଲି । ଚିଠି ସେହିଦିନ ପାଇଛି । ଆପଣଙ୍କର ମୂଲ୍ୟବାନ୍ ମତାମତ ଏବଂ ପରାମର୍ଶ ସବୁବେଳେ ଆଖିଆଗରେ ରଖିଛି । ହୃଷୀକେଶ ଏବଂ ହୃଦାନନ୍ଦ ମଧ୍ୟ ମୋତେ ସେଇକଥା କହୁଥିଲେ । ଶ୍ରୀ ପଣ୍ଡାଙ୍କ ସଂପର୍କରେ ଆମେ ଏଇ ସଂକଳନଟି ପ୍ରକାଶ କଲାବେଳେ ଆଞ୍ଚଳିକତାଠୁଁ ଅନେକ ଦୂରରେ ରହିବାକୁ ସବୁରକମର ଉଦ୍ୟମ କରିବୁ । ଏପରିକି ଭଦ୍ରକରୁ ମାତ୍ର ୫/୬ଟି ଲେଖା ଗ୍ରହଣ କରିବୁ । କେବଳ ଶ୍ରୀ ପଣ୍ଡାଙ୍କ ବ୍ୟକ୍ତିଗତ ସଂପର୍କ ନେଇ କିଛି ଲେଖା ଏଇଠାରୁ ସଂଗ୍ରହ କରି ଅନ୍ୟ ସମସ୍ତ ଲେଖା ଭଦ୍ରକ ବାହାରୁ ଆଣିବୁ । ଆପଣଙ୍କୁ ଚିଠି ଲେଖିବା ଦିନ ଅନ୍ୟମାନଙ୍କୁ ଚିଠି ଲେଖିଥିଲି । ଗତକାଲି ନୀଳାଦ୍ରିବାବୁ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ଉତ୍ତର ଫେରାଇଛନ୍ତି । ସେ ଶ୍ରୀ ପଣ୍ଡାଙ୍କର ଐତିହାସିକ ନାଟକ ସଂପର୍କରେ ଲେଖିବାକୁ ସ୍ୱୀକୃତି ପ୍ରଦାନ କରିଛନ୍ତି ଏବଂ ତାଙ୍କର ଥେସିସ୍ ସରି ଆସିଥିବାରୁ ସେ ଏଥିପାଇଁ ଲେଖିବା ସହଜ ହେବ ବୋଲି ଜଣାଇଛନ୍ତି । ଅଧ୍ୟାପକ କୃଷ୍ଣଚନ୍ଦ୍ର ଭୂୟାଁଙ୍କୁ ଚିଠି ଲେଖିଛୁ । ତାଙ୍କ କଥା ମୁଁ ମନେ ରଖିଛି । ଅଧିକନ୍ତୁ ଏଠି ଏକ ବ୍ୟକ୍ତିଗତ

ସାକ୍ଷାତ ଭିତରେ ଶ୍ରୀ ପଣ୍ଡା ତାଙ୍କ କଥା ଏବଂ ବଂଗଳା ସାହିତ୍ୟର ଶ୍ରୀଯୁକ୍ତ ଗୋସ୍ୱାମୀଙ୍କ କଥା କହୁଥିଲେ । ଶ୍ରୀ ଗୋସ୍ୱାମୀଙ୍କୁ ଏଇ ଭିତରେ ଚିଠି ଦେବି । ଏହା ଭିନ୍ନ ଆମେ ଚିତ୍ତବାବୁ, ଅଧାପକ ନିତ୍ୟାନନ୍ଦ ଶତପଥୀ, ଅଧାପକ ବାଳକୃଷ୍ଣ ଶତପଥୀ(ସମ୍ବଲପୁର ବିଶ୍ୱିବିଦ୍ୟାଳୟ), ଅଧାପକ ଚିନ୍ତାମଣି ବେହେରା ଓ ନାରାୟଣ ଶତପଥୀ(ପୁରୀ କଲେଜ), ଅଧାପକ କ୍ଷେତ୍ରବାସୀ ନାୟକ, ବ୍ୟୋମକେଶ ତ୍ରିପାଠୀ, ପ୍ରାଣବଂଧୁ କର, ଅଧାପକ ରତ୍ନାକର ଚଇନି, ନିତ୍ୟାନନ୍ଦ ମହାପାତ୍ର, ବିଭୂତି ପଟ୍ଟନାୟକ ଓ ମହାପାତ୍ର ନୀଳମଣି ସାହୁଙ୍କୁ ଚିଠି ଲେଖିଛୁ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ମୁଖବଂଧ ଲେଖିବାକୁ ସଦୟ ସ୍ୱୀକୃତି ପ୍ରଦାନ କରିଛନ୍ତି । ××× ରେଭେନ୍ସାରୁ ନବବାବୁଙ୍କୁ ଏଇ ଭିତରେ ବ୍ୟକ୍ତିଗତ ଭାବେ ଚିଠି ଲେଖିବି । ସେ ମୋତେ ଦି'ବର୍ଷ ପଢ଼ାଇଛନ୍ତି । ଆପଣଙ୍କ ଅଭିଜ୍ଞତା(ଚିନ୍ତାମଣି ମହାନ୍ତିଙ୍କ ସ୍ମରଣିକା ନେଇ) ମନେ ରଖିନି କେବଳ, ବାଟଚଲା ଆରମ୍ଭ କଲାବେଳେ ନିଜେ କାହିଁକି ଅନୁଭବ କରୁଛି । ଏସବୁକୁ ସହିନେବା ଏବଂ ନିଜର ଉଦ୍ୟମ ଅବ୍ୟାହତ ରଖିବାକୁ ଆମେ ଆଶା ବାନ୍ଧିଛୁ । ଅଧିକନ୍ତୁ ଆପଣମାନେ ତ ଅଛନ୍ତି । ସେତୁବଂଧ ପଥରେ ଗୁଣ୍ଡୁଚିମୂଷାର ଧୂଳି କଣା ଦାନ ସେଇ ଦୃଷ୍ଟିରୁ ରାମଚନ୍ଦ୍ରଙ୍କ ଆଶିଷ ପାଇବ ବୋଲି ମୋର ବିଶ୍ୱାସ । ଭଦ୍ରକ ପାଇଁ ସ୍ଥାୟୀ ଯୋଗାଯୋଗ ଲାଗି ସୁଧାଂଶୁବାବୁଙ୍କୁ ରଖିଛୁ ।

ସମୟ କଥା ଆପଣ ଯାହା ସୂଚନା ଦେଇଛନ୍ତି, ସେ ତ ବଡ କଥା । ମାସେଠୁ ଅଧିକ ସମୟ ସେମାନେ ନେବେ । ଆମେ ପୁଣି ବାରମ୍ବାର ତାଙ୍କୁ ଲେଖିବୁ । ତଥାପି ଟିକିଏ ସମୟ ପାଇଁ ନିର୍ଦ୍ଦିଷ୍ଟ ସୀମା ସୂଚାଇ ଦେଇଛୁ ।

ଭଦ୍ରକ କଲେଜ ୨ରେ ଖୋଲୁଛି । ଏଠି ଆଉସବୁ ଭଲ । ଆଶା ଭଲରେ ଥିବେ । ଆପଣଙ୍କୁ ମୋର ଆଉ ଗୋଟିଏ ବିନୀତ ଅନୁରୋଧ, ମୁଁ ଆପଣଙ୍କର ଛାତ୍ର ଭଳି । ମୋତେ ନପଢ଼ାଇ ଥିଲେ ହେଁ ମୋର ବଂଧୁମାନେ ଆପଣଙ୍କ ପାଖରେ ପଢ଼ିଛନ୍ତି । ମୋତେ ଆପଣ 'ଆପଣ' ବୋଲି ଲେଖିଲେ ଭଲ ଲାଗୁନି । ମୁଁ ଆପଣଙ୍କୁ ଶୁଭେଚ୍ଛା ଦାବିକରି ନେବା କଥା । ଆର ଥରକୁ ଦୟାକରି ସଂବୋଧନ ବଦଳାଇଲେ, ଭାରି ଖୁସି ହୁଅନ୍ତି । ଚିଠି ଲେଖିବେ । ଇତି

ସ୍ନେହାନୁଗତ ଅଜାମ୍ବର ମଲ୍ଲ

॥ ୧୧୩ ॥

ଗାଁ (ଭଦ୍ରକ)
୧୦/୦୧/୭୬

ସାର୍,

ପ୍ରଣତି । ଆପଣଂକ ଚିଠି ପାଇ ପ୍ରୀତ ହେଲି । କିଂତୁ ଆପଣଂକ ଅଭିଯୋଗ ସହ ମୁଁ ଏକମତ ନୁହେଁ । ତାର କାରଣ, ୧ମ-ଆପଣ ଦିନେଇ ଆଧୁନିକ କବିତାର ପ୍ରବକ୍ତା ଓ

ଉଦ୍‌ଗାତା ଥିଲେ । ୨ୟ-ଆଶଂକା କରିବାର କାରଣ ହେଉଛି ଆପଣ କୌଣସି ଚଳନ୍ତିକାକୁ ଭାଂଗିବାକୁ ଚାହୁଁ ନାହାଂତି । ଏହା ନିଖୁଣ ଓ ନିଷ୍ଠାପର ସାଧକ ପକ୍ଷରେ ଆହୁଁ ଶୋଭନୀୟ ନୁହେଁ-ଯେମିତି 'ବେଦୀ'ରେ ଆପଣ ବ୍ୟତିକ୍ରମତାର ସୂତ୍ରୀ ଭାବେ ନିଜକୁ ବହୁ ପ୍ରତିକୂଳତା ଭିତରେ ହଁ ଆପଣଂକର ପ୍ରତିଭାକୁ ବେଶ୍ ପ୍ରଜ୍ୱଳ କରିଥିଲେ । ମୋର ଗଭୀର ବିଶ୍ୱାସ, ସଫଳ ଓ ପ୍ରତିଭାବାନ ସ୍ରଷ୍ଟା ସବୁବେଳେ ନବୀନତା ଓ ନୂତନତ୍ୱକୁ ଅଭିନଂଦନ ଜଣାଇଥାଏ ଓ ତା ସୃଷ୍ଟିରେ ନିଜ ଦୃଷ୍ଟିଭଂଗୀର ସ୍ୱାତଂତ୍ର୍ୟ ଫୁଟାଇଥାଏ । ଆପଣ ଏ ଦିଗରେ ଅଗ୍ରଣୀ । ମୁଁ ଅକିଂଚନ ଏ ସଂପର୍କରେ ଆପଣଂକୁ ଅଧିକ କ'ଣ ଲେଖିବି ? ୩ୟ କାରଣ ହେଲା- ସଭା ସମିତିରେ ଭାଷଣ ହୁଏ, ଭାଷ୍ୟ ହୁଏ ନାହିଁ-ଫୁଲମାଳ ପିନ୍ଧାଯାଏ, ତାଳି ମାଡ ହୁଏ, କିଂତୁ ମଗଜକୁ ଛୁଇଁଲାଭଳି ତତ୍ତ୍ୱ ସେଇ ତାଳିମାଡରେ ଶୂନ ହେଇଯାଏ-ସ୍ପର୍ଶଗମ୍ୟତା ଓ ବୋଧଗମ୍ୟତା ଏକା କଥା ନୁହେଁ-ବୋଧ ଶକ୍ତି ବହୁ ଗ୍ରଂଥ ଅଧ୍ୟୟନରେ ସୃଷ୍ଟି ହୁଏ ନାଇଁ । ଏହା ଆତ୍ମାର ଉଚ୍ଚାରଣ, ନିଜ ଭିତରର ତୃତୀୟ ଚକ୍ଷୁର ଦୀପ୍ତି । ଈଶ୍ୱରୀୟ ଆଶୀର୍ବାଦ- ଯାହା କେବଳ ଗ୍ରଂଥପଠନ ଏଇ ଆଶୀର୍ବାଦରେ ନିଆଁର ଝଲକ ଦିଏ !

ମୋର ଆଉରି ଗଭୀର ବିଶ୍ୱାସ ବହୁ ଗ୍ରଂଥ ଅଧ୍ୟୟନ ଦ୍ୱାରା ପ୍ରତିଭାର ଚକ୍ଷୁ ଫିଟେନାହିଁ, ଫୁଟି ଯାଏ । କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ ପ୍ରତି ଅନୁରକ୍ତି ଓ ଅନୁରାଗ ରହିଲେ ଶ୍ରଦ୍ଧା ଓ ବୋଧଶକ୍ତିର ମାତ୍ରା ବଢ଼ିବ । କବିତା ପକ୍ଷରେ ଏହାଇଁ ନିରାଟ ସତ । ଆପଣ ବଡ ପରିସରରେ ଅଛଂତି । ବହୁ ପଣ୍ଡିତ, ଜ୍ଞାନୀ ଓ ବିଜ୍ଞମଣ୍ଡଳୀ ଭିତରକୁ ମୋର ପ୍ରବେଶ ନିଷେଧ ! କ୍ଷମା କରିବେ ।

ସ୍ନେହର
କମଳାକାଂତ ଲେଙ୍କା

॥ ୧୧୪ ॥

ସିକନ୍ଦରାବାଦ
୨.୪.୭୬

ପରମପୂଜ୍ୟ ଗୁରୁଦେବ,

ମୋର ସଭକ୍ତି ପ୍ରଣାମ ଗ୍ରହଣ କରିବେ । ମହାଶୟ, ମୋର ଘର ଯାଜପୁରର ଏକ ଅନାମଧେୟ ଗ୍ରାମ ବଡସୁଆରରେ । ମୁଁ ଯଦିଓ ଆପଣଙ୍କର ଓଡ଼ିଆ ବିଭାଗର ଛାତ୍ର ନଥିଲି, ତଥାପି ଆପଣଙ୍କୁ ଗୁରୁଭାବରେ ସ୍ୱୀକାର ଓ ସମ୍ବୋଧନ କରିବାକୁ ଭଲ ଲାଗେ । ଆପଣଙ୍କ ନାମ ମୁଁ ନରସିଂହ ଚୌଧୁରୀ ମହାବିଦ୍ୟାଳୟରେ ପଠନ କରୁଥିବା ବେଳେ, ଜଣେ ଖ୍ୟାତନାମା ଶ୍ରୁବଲ୍ଧ ସାହିତ୍ୟ ସମାଲୋଚକ ଭାବେ ଶୁଣିଥିଲି । ମନେ ମନେ କାହିଁକି କେଜାଣି ମୁଁ ଜାଣେନା ଆପଣଙ୍କ ବ୍ୟକ୍ତିତ୍ୱ ପ୍ରତି ମୋର ସମ୍ମାନ ଉପଲବ୍ଧି ହୋଇଥିଲା । ମୁଁ ଚଳନ୍ତି ବର୍ଷ କଟକ Law collegeରେ ପଠନ କରୁଥିଲାବେଳେ ଲୁଚିଛପି ଆପଣଙ୍କର ଛାତ୍ରତ୍ୱ ଲାଭ କରିଥିଲି । ଶ୍ରୀଯୁକ୍ତ

ପ୍ରଶାନ୍ତ କୁମାର ପଡି ଆପଣଙ୍କର ପଞ୍ଚମ ବାର୍ଷିକ ରେଭେନ୍ସା ମହାବିଦ୍ୟାଳୟର ଛାତ୍ର । ତାଙ୍କ ସହ ମୁଁ ଆପଣଙ୍କର ଏକମାତ୍ର କ୍ଲାସରେ ଯୋଗଦେବାର ସୁଯୋଗ ଲାଭ କରିଥିଲି । ସେଦିନ ଆପଣ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରେମର ବିଭିନ୍ନ ଦିଗ ବିଷୟରେ ଆଲୋଚନା କରୁଥିଲେ । ସେଦିନ ମୋର ପୂର୍ବ ପରିକଳ୍ପିତ ଆପଣଙ୍କର ବ୍ୟକ୍ତିତ୍ୱର ପ୍ରକୃତ ପରିଚୟ ପାଇଥିଲି । ଭାଷା ଥିଲା ଅତ୍ୟନ୍ତ ଲାବଣ୍ୟମୟ, କଣ୍ଠ ଥିଲା ବୀଣାଜିଣା, ବ୍ୟକ୍ତିତ୍ୱ ଥିଲା ମହନୀୟ । ଧନ୍ୟବାଦ ମହାଶୟ । ମୁଁ ସେ ବ୍ୟକ୍ତିତ୍ୱକୁ ଆଉଥରେ ପ୍ରଣାମ କରେ ।

ବର୍ତ୍ତମାନ ସାର୍ ମୁଁ ଆନ୍ଧ୍ରପ୍ରଦେଶ ସିକନ୍ଦରାବାଦରେ ଇଏମ୍ଇ ସେଣ୍ଟରରେ ତାଲିମ୍ ନେଉଛି । ବୟସ ବୃଦ୍ଧି କ୍ରମେ ମୁଁ ଆଜି ବାଇଶିବର୍ଷର ଯୁବକ । ଯୁବକର ବୟସ, ଯୁବକର ଚେହେରା, କିନ୍ତୁ ମହାଶୟ ମାନସିକ ଅବସ୍ଥା ସମସ୍ୟାଜନିତ ପ୍ରଶ୍ନବାଚୀରେ ଭାରାକ୍ରାନ୍ତ । ପ୍ରଥମ ସମସ୍ୟା ହେଲା ଶାନ୍ତି କିପରି ମିଳିବ ? ବିଷୟ ବାସନା, ପାର୍ଥିବ ସଂପର୍କକୁ ତ୍ୱରାନ୍ୱିତ କଲେ ଏହା ସମ୍ଭବ ହେବ ବା ଏହି କ୍ରିୟା କଳାପକୁ ପରିତ୍ୟକ୍ତ କଲେ ଶାନ୍ତି ମିଳିବ ? ସାଧାରଣ ମନୁଷ୍ୟର ଶାନ୍ତି କେଉଁଠି ? ମୁଁ ଏ ସାମାଜିକ ପ୍ରତିଦ୍ୱନ୍ଦ୍ୱିତା ଭିତରେ ହିଂସା ପ୍ରତିହିଂସା ଭିତରେ ଶାନ୍ତି ପାଉନି । ମାନସିକ ଅବସ୍ଥା ଭାରାକ୍ରାନ୍ତ ହୋଇପଡୁଛି । ବିଭିନ୍ନ ଲୋକଙ୍କ ସହ ସଂପର୍କରେ ମୋର ବିଶ୍ୱାସ ଆସୁନି । ମୋର ବିଭିନ୍ନ ସାଙ୍ଗ ସହୋଦରଙ୍କ ସହ ସଂପର୍କରେ ବିଶ୍ୱାସ ଆସୁନାହିଁ । ବିଶ୍ୱାସର ବହୁତ ଅଭାବ ରହୁଛି । ପ୍ରକୃତ ସତ୍ୟ କଥା କହିଲେ, ଏ ଆଧୁନିକ ଦୁନିଆ ମଧ୍ୟରେ ଶ୍ରୀଯୁକ୍ତ କୃଷ୍ଣଚରଣ ବେହେରାଙ୍କ ଭଳି ବ୍ୟକ୍ତି ମୋ ପତ୍ରର ଉତ୍ତର ଦେବେ, ଏ ଦମ୍ଭ ଓ ବିଶ୍ୱାସ ମୋର। ସଂପୂର୍ଣ୍ଣ ନାହିଁ । ମୁଁ ସଂପୂର୍ଣ୍ଣ ଦମ୍ଭ ଓ ବିଶ୍ୱାସ ରଖିବାକୁ ଚାହେଁ । ମଣିଷ ଭଳି ମଣିଷ ହେବାକୁ ଚାହେଁ । ଉପାୟ କ'ଣ ? ପଥ କ'ଣ ? ଶାନ୍ତି କାହିଁ ? ଏ ପ୍ରଶ୍ନର ଉତ୍ତର ଆପଣ ଦେବେ ।

ସାର୍, ବର୍ତ୍ତମାନ ପାଇଁ ମୁଁ ଏଣୁତେଣୁ ବହୁଗୁଡ଼ାଏ ଲେଖି ଆପଣଙ୍କୁ ଭାରାକ୍ରାନ୍ତ କରିବାକୁ ଚାହୁଁନି । ମୋର ବିଶ୍ୱାସ ଆପଣ ସଦୟ ହୋଇ ମୋର ବ୍ୟକ୍ତିଗତ ପ୍ରଶ୍ନର ଉତ୍ତର ଦେବେ । ହୁଏତ ଏହି ପ୍ରଶ୍ନ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ହୋଇପାରେ କିନ୍ତୁ ବର୍ତ୍ତମାନ ପାଇଁ ମୁଁ ବ୍ୟକ୍ତିଗତ ସୀମାସରହଦ ଭିତରେ ରଖିବାକୁ ଚାହେଁ । ଆପଣ ସଦୟ ହୋଇ ଆପଣଙ୍କର ବଳିଷ୍ଠ ଯୁକ୍ତି ସମ୍ୱଳିତ ବହୁ ମୂଲ୍ୟ ପରାମର୍ଶ ଦେବେ । ମୋର ବିଶ୍ୱାସ ଆପଣଙ୍କର ପତ୍ର ପାଇଲେ ମୋର ଦେହରେ ପ୍ରାଣ ସଞ୍ଚାର ହେବ । ଭବିଷ୍ୟତରେ ମୁଁ ପୁଣି ଆପଣଙ୍କୁ ପତ୍ର ଲେଖି କଷ୍ଟ ଦେଇପାରେ, ଏଥିପାଇଁ ମୁଁ ଆଜିଠୁଁ ଆପଣଙ୍କଠାରେ କ୍ଷମା ପାର୍ଥୀ । ପତ୍ର ଲେଖିବାର ମୋର ବହୁତ ତ୍ରୁଟି ଥିବ । ଏଥିପାଇଁ ମୋର ଦୋଷ ମାର୍ଜନା କରିବେ । ଈଶ୍ୱରଙ୍କର ଦୟାରୁ ଆପଣ ଭଲରେ ଥିବେ ବୋଲି ମୋର ବିଶ୍ୱାସ । ଇତି ।

ଆପଣଙ୍କର ଆଜ୍ଞାଧୀନ

ଦିବାକର ନାୟକ

॥ ୧୧୫ ॥

ଭୁବନେଶ୍ୱର
୨୨.୪.୭୬

ପ୍ରିୟବରେଷୁ,

ନମସ୍କାର ଜାଣିବେ । ଆପଣଙ୍କ ଶୁଭେଚ୍ଛାସୂଚକ ପତ୍ର ପାଇ ପ୍ରୀତ ହେଲି । ଅବଶ୍ୟ ବହୁଦିନ ତଳେ ଆପଣ ଡକ୍ଟର ଶବ୍ଦଟା ଲେଖିଦେଇଥିଲେ ।

ବୈଦେଶିକ ଓ ଆର୍ଯ୍ୟେତର ଶବ୍ଦସଂଗ୍ରହ ନାମକ ଖଣ୍ଡିଏ ବହି କରିଛି । ଭାବୁଛି ତାକୁ ଦ୍ୱିଭାଷୀ କରିବି । ବର୍ତ୍ତମାନ କେବଳ ଓଡ଼ିଆରେ ହିଁ ଅଛି । ଶୀଘ୍ର ଓଡ଼ିଆ ସଂଗେ ରୋମାନ୍ ଓ ଇଂରାଜୀ ଅନୁବାଦ ସହ ତାହା ସଂପୂର୍ଣ କରି ଛପାଇବାର ବ୍ୟବସ୍ଥା କରିବି । ଅଧିକନ୍ତୁ ଓଡ଼ିଆ ଭାଷାରେ ଏକ କୋଷ ପ୍ରଣୟନର ବ୍ୟବସ୍ଥା କରୁଛି–ହିନ୍ଦୀ ଓ ଓଡ଼ିଆ କୋଷ । ଆପଣଙ୍କ ସହାନୁଭୂତି ଏଦିଗରେ ବିଶେଷ ସାହାଯ୍ୟ କରିବ । ଆପଣ ଭୁବନେଶ୍ୱର ଆସିଲେ ଥରେ ଆମ କଲେଜଆଡେ ଆସନ୍ତୁ । ମୁଁ କଲେଜ କ୍ୟାମ୍ପସ୍‌ରେ ରହୁଛି । ନିକଟରେ ବ୍ରହ୍ମପୁରରେ ଏକ ରିଡର ପୋଷ୍ଟ ହେବାର ଅଛି । ଆପଣମାନଙ୍କର ଶୁଭେଚ୍ଛା ଓ ସଦିଚ୍ଛାରେ ପାଇବି ବୋଲି ଆଶା କରେ । 'ପାଲି ଓ ପ୍ରାକୃତ ସାହିତ୍ୟ' ଆଜି କାଲି ପ୍ରକାଶ ପାଇବ । ରହିଲି ।

ଆପଣଙ୍କର ସ୍ନେହାଧୀନ ଅପନା ପ୍ରଧାନ

॥ ୧୧୬ ॥

ସମ୍ବଲପୁର
୨.୭.୭୬

ପ୍ରିୟ ମହାଶୟ,

ଆପଣଙ୍କର ଚିଠି ପାଇଁ ଧନ୍ୟବାଦ । ମୋର ଏକାଙ୍କିକା ଆପଣ ପସନ୍ଦ କରିଛନ୍ତି । ତାହାକୁ ଆପଣଙ୍କର ଏକାଙ୍କିକା ସଂଗ୍ରହରେ ପ୍ରକାଶ ପାଇଁ ମୁଁ ଏତଦ୍ୱାରା ଆନନ୍ଦରେ ଅନୁମତି ଦେଉଛି । ଆପଣଙ୍କ ସାଙ୍ଗରେ ଆହୁରି କେତେଥର ଦେଖା ହୋଇଛି । ଆପଣଙ୍କର ମନେ ନାହିଁ । ଇତି ।

ବିନୀତ ଶ୍ରଦ୍ଧାକର ସୁପକାର

॥ ୧୧୭ ॥

୧୮/୦୭/୭୬
ପୂର୍ବାଞ୍ଚଳ ଭାଷା କେନ୍ଦ୍ର, ଭୁବନେଶ୍ୱର–୬

ମାନନୀୟେଷୁ,

ପ୍ରଣାମ ନେବେ । ନୟାଗଡର ଅଧ୍ୟାପନାରୁ ଏଠାର ଅବଧାନୀ ବାଟରେ ଆପଣଙ୍କ ଚିଠିଟିଏ ତ ହେଲେ ପାଇଛି । ବଡ ଖୁସି ଲାଗିଲା । ଆପଣ ରେଭେନ୍ସା କଲେଜକୁ ଆସିବା ଖବର ବଡ ଡେରିରେ ଶୁଣିଲି । ମୋ ଶଶୁର କହୁଥିଲେ । ତା ପରେ ମୁଁ ଦିଥର କଟକ

ଗଲିଣି । ଇଚ୍ଛା ଥିଲେ ବି ଯାଇହୋଇନ । ରହୁଛନ୍ତି କେଉଁଠି ? ମୁଁ ନିଜେ 'ସାରଥି' ଦେଇ ଆସିବି । ଖଣ୍ଡେ ଦି ଖଣ୍ଡେ ବଳକା କପି ଥିଲା, ଖୋଜି କାଢ଼ି ଦେବି । ଆପଣଙ୍କ ଗବେଷଣାରେ ସାହାଯ୍ୟ କରିବା ଗୋଟାଏ ସୁଖକର କର୍ତ୍ତବ୍ୟ ।

ଆପଣଙ୍କ ଲେଖା ମୋତେ ଭଲ ଲାଗେ । ଚିଠି ତହୁଁବଳି । ପ୍ରାୟ କୋଡ଼ିଏ ବର୍ଷ ତଳେ ଆପଣଙ୍କ ଚିଠି ପାଇଥିଲି । ତା ପରେ ବାର/ତେର ବର୍ଷ ତଳେ ଥରେ ଦେଖାସାକ୍ଷାତର ସୁଯୋଗ ଥିଲା । କିନ୍ତୁ ଏଯାଏ ଦେଖାଚାହାଁର ଯୋଗ-ପଡିନାହିଁ ବୋଧହୁଏ । ମୁଁ ଭଦ୍ରକ ଯାଇଥିଲି । ସେବର୍ଷ କୃଷ୍ଣମେନନ ଆପଣଙ୍କ କଲେଜକୁ ଆସିଥିଲେ । କିନ୍ତୁ କ'ଣ ଗୋଟାଏ ଘଟିବାରୁ ତହିଁଆରଦିନ ଛାତ୍ରକୁଳ କଲେଜକୁ ହୁଲସ୍ଥୁଲ କରିପକାଇଲେ । ସେ ସମୟକୁ ମୋର ଦି'ଜଣ ସାଙ୍ଗ ସେଠି ଅଧ୍ୟାପକ ଥିଲେ । ମୁଁ କିନ୍ତୁ ଆଇନ କଲେଜର ଛାତ୍ରଭାବରେ ଯାଇଥିଲି । ଯୋଗଟା ପାଣି ଫାଟିଗଲା । ଆମ ପ୍ରତିଯୋଗିତା(ବକ୍ତୃତା)ରେ ଆପଣ ବିଚାରପତି ଥିଲେ । ତେଣୁ ବିଚାରପତିର ଗାମ୍ଭୀର୍ଯ୍ୟ ଓ ପ୍ରତିଯୋଗିତା କଲାବାଲାର ଚୋରପଟିଆ ଭାବ ଭିତରେ ସାଜି ହୋଇଥାନ୍ତା କେମିତି ?

ମୋ ଚିଠି ତ ସରୁ ନି, ପୁଣି ଫର୍ଦ୍ଦେ ଲେଖିବି । ସତରେ ସାର, ନୟାଗଡ ଛାଡ଼ିବା ପରେ ସାହିତ୍ୟ ପଢ଼ାଇବାର ସରସ ଅନୁଭୂତି ହଜାଇଛି । ଦରମା ଓ ଅନ୍ୟାନ୍ୟ ସୁବିଧା ଲୋଭରେ ତାଟିଆ କାମୁଡିବା କଥା । ଭାଷା ଶିକ୍ଷାଦାନ ଓ ଭାଷାତତ୍ତ୍ୱର ନଗର ଗବେଷକମାନଙ୍କ ଛଡା ଶ୍ରୀନିବାସ ବାବୁମାନେ ନମିଳନ୍ତି ନୁହେଁ । ତେବେ ନୀଳମଣିବାବୁ, ହେମକାନ୍ତବାବୁ(ମନସ୍ତତ୍ତ୍ୱର) ଓ ଆପଣମାନଙ୍କ କଥାଭାଷା ଭିତରେ ଆନ୍ତରିକତା ଓ ସରସତାର ଯେଉଁ ଫୁଆରା ତା କେଉଁଠି ମିଳିବ ? ××× ମୁଁ କଟକ ଗଲେ 'ଜ୍ଞାନମଣ୍ଡଳ' ଅଫିସ୍‌କୁ ଯାଏ । ଛୁଟିରେ ଯାଇଥିଲେ ଦିନ ଓଳିଏ ରହେ । ଶିବ ଓ ବିଷ୍ଣୁ ତ ଦିହକଯାକ ରହିଗଲେ(ଉମା ଓ ଲକ୍ଷ୍ମୀଙ୍କ ବାପଘରେ), ମୁଁ ଦିନେ ଓଳିଏ ରହିଲେ କ'ଣ ବା ମାରା ହେଇଗଲା !

ମୋ ସମାଲୋଚନା ବହି ଏଯାଏ ବାହାରିନି । କେମିତି ବାହାରିବ ? ମୋର କୌଣସି ପ୍ରକାଶକ ବା ସଂପାଦକମାନଙ୍କ ସଂଗେ ପରିଚୟ ନାହିଁ । ନୂଆଗଡରେ ଥିବାବେଳେ ଗୋଟାଏ ଗବେଷଣାରେ ଫସି ଯାଇଥିଲି । ସେ ଗୋରୁ ଖୋଜା ସରିନି । ଏଇ ଭିତରେ ସାରିଦେବାକୁ ବାହାରିଛି । ତା' ପରେ ସାହିତ୍ୟରୁ ପୂରା ବିଦାୟ ନେଇ ଭାଷାତତ୍ତ୍ୱରେ ଏକଦମ୍ ଲାଗିଯିବି ବୋଲି ପ୍ରତିଶ୍ରୁତି ଦେଇଛି ।

ଏମିତି ଖୁସିବାସିରେ ମୋ ମନକୁ ମନ ଗପ, କବିତା, ଯାହା ଲେଖୁଥିବି ଛପେଇ ରଖୁଥିବି ସିନା, କିନ୍ତୁ ସାହିତ୍ୟ ଗବେଷଣାକୁ ନମସ୍କାର ନ କରି ଉପାୟ କ'ଣ ?

ହଉ ସାର୍, ଆପଣଙ୍କ ଧୈର୍ଯ୍ୟଚ୍ୟୁତି ଘଟିବଣି, ସେଇଥିପାଇଁ ଖାସ୍ ଆପଣଙ୍କ ପ୍ରଶ୍ନର

ଉତ୍ତର ପ୍ରଥମ ପ୍ରଘଟରେ ସାରିଦେଇ, ମୋ କଥା ଲମ୍ୱେଇ ଦେଲି ।
ଚିଠି ଦେବେ । ମୁଁ ବି ଯିବି । ଯିବା ଆଗରୁ ହୁଏତ 'ସାରଥି' ପଠାଇ ଦେଇଥିବି ।

ସ୍ନେହର

ଅରବିନ୍ଦ ପଟ୍ଟନାୟକ

॥ ୧୧୮ ॥

ବାଳକୃଷ୍ଣ ଶତପଥୀ

ଜ୍ୟୋତିବିହାର, ବୁର୍ଲା

୨୩.୭.୭୬

ସମ୍ମାନନୀୟେଷୁ,

ମୋର ପ୍ରଣାମ ଗ୍ରହଣ କରିବେ । 'ପଲ୍ଲୀକବି ନନ୍ଦକିଶୋର ଶତବାର୍ଷିକ ଜୟନ୍ତୀ କମିଟି' ତରଫରୁ ଆପଣ ଦେଇଥିବା ପତ୍ର ଆଜି ପାଇଲି । 'ନନ୍ଦକିଶୋରଙ୍କ ସାହିତ୍ୟ ସୃଷ୍ଟିରେ ଜୀବନଚିତ୍ର' ଶୀର୍ଷକ ଉପରେ ଗୋଟିଏ ଗବେଷଣାଧର୍ମୀ ରଚନା ଆପଣଙ୍କ ନିକଟକୁ ଅଗଷ୍ଟମାସ ଶେଷସୁଦ୍ଧା ପଠାଇବା ଲାଗି ମୁଁ ମୋର ସମ୍ମତି ଏହାଦ୍ୱାରା ଆପଣଙ୍କୁ ଜଣାଉଅଛି । ଏଭଳି ଏକ ବିଷୟ ମୋ ପାଇଁ ଆପଣ ନିର୍ବାଚନ କରିଥିବାରୁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଆପଣମାନେ ଯେଉଁ ଜାତୀୟ କାର୍ଯ୍ୟରେ ନିଷ୍ଠାପର ଭାବରେ ମନୋନିବେଶ କରିଛନ୍ତି, ତାହା ଶ୍ରୀମଣ୍ଡିତ ହେଉ– ଏହାହିଁ ଭଗବାନଙ୍କ ନିକଟରେ କାମନା ।
ଆଶା, କୁଶଳରେ ଥିବେ, ସାର୍‌ଙ୍କୁ(ଜାନକୀବାବୁ) ମୋର ସଭକ୍ତି ପ୍ରଣାମ ଜଣାଇ ଦେବେ ।
ଅନେକ କଥା ଆପଣଙ୍କୁ ଜଣାଇଁବାର ଅଛି । ସୁବିଧା ଦେଖି ଜଣାଇଁବି ।

ଆପଣଙ୍କର ସ୍ନେହାଧୀନ ବାଳକୃଷ୍ଣ

॥ ୧୧୯ ॥

ସମ୍ବଲପୁର

୪.୮.୭୬

ଶ୍ରଦ୍ଧେୟ ମହାଶୟ,

୧୯.୭.୭୬ ତାରିଖ ନଂ୧୬ ଚିଠିରେ ପଲ୍ଲୀକବି ଶତବାର୍ଷିକୀ ଜୟନ୍ତୀ କମିଟି ପକ୍ଷରୁ ପ୍ରସ୍ତାବିତ ସ୍ମାରକ ଗ୍ରନ୍ଥ ନିମିତ୍ତ ଲେଖା ଦେବାଲାଗି ଆପଣଙ୍କ ଅନୁରୋଧ ପାଇଁ କୃତଜ୍ଞତା ଜଣାଉଛି । କହିବା ବାହୁଲ୍ୟ ଏଭଳି ଏକ ରଚନା ଲେଖିବା ଲାଗି ମୁଁ ସମ୍ମତ ।
ଆପଣଙ୍କ ଚିଠି ପହଞ୍ଚିବା ବେଳକୁ ମୁଁ ଲେଖକ ସମ୍ମିଳନୀ ନେଇ ସଂପୂର୍ଣ୍ଣ ବ୍ୟସ୍ତ ଥିଲି । ପୁଣି ପରିସ୍ଥିତି ଏପରି ହେଲା ଯେ ସେହି ସମ୍ମିଳନୀର ଶେଷ ଅଧିବେଶନରେ ଯୋଗ ଦେଇ ନ

ପାରି ୨୫.୭.୭୬ ରାତିରେ ମୋର ଦୁଇ ଝିଅଙ୍କର ଫେଲୋସିପ୍ ପରୀକ୍ଷା ପ୍ରସଙ୍ଗରେ ସେମାନଙ୍କୁ ନେଇ ପୁନା ଗୋଖଲେ ଇନଷ୍ଟିଚ୍ୟୁଟ୍‌କୁ ଯବାକୁ ହେଲା । ସେ ପାଖରୁ ଗତ କାଲି ଫେରି ଏ ପତ୍ର ଲେଖୁଛି । ବିଳମ୍ବ ଯୋଗୁଁ କ୍ଷମା ପ୍ରାର୍ଥନା କରୁଛି ।

କିନ୍ତୁ ମୋ ଅନୁପସ୍ଥିତିରେ ଯେଉଁ ଅବଶ୍ୟ କର୍ତ୍ତବ୍ୟ କାର୍ଯ୍ୟଗୁଡ଼ିକ ବାକି ପଡିଯାଇଛି ତାକୁ ପ୍ରଥମେ ସାରିବା ଏକାନ୍ତ ଆବଶ୍ୟକ ହୋଇ ପଡିଛି । ଫଳତଃ ପ୍ରବନ୍ଧର କାର୍ଯ୍ୟାରମ୍ଭରେ ବିଳମ୍ବ ହେବ । ମ ଯାହା ଦେଖୁଛି ଅଗଷ୍ଟ ୨୨ ସୁଦ୍ଧା ମୁଁ ସାରିପାରିବ ବୋଲି ଭାବୁ ନାହିଁ । ଆଉ ଆଠ ଦଶଦିନ ଯଦି ବିଳମ୍ବ ହୁଏ ତାହାହେଲେ ଦୟାକରି ଚଳାଇ ଦେବେ ।
ଜୟନ୍ତୀ କମିଟିର ସ୍ୱରୂପ ବିଷୟରେ ଆପଣଙ୍କ ଚିଠିରେ ଯେଉଁ ଉଲ୍ଲେଖ ରହିଛି, ତହିଁରୁ ତାହାର ଗୌରବ ଅବଧାରଣ କରିବା ବଡ ସହଜ । ଜୟନ୍ତୀ ଉତ୍ସବ ଯେ ନିଶ୍ଚୟ ସଫଳ ହେବ ଏଥିରେ ସନ୍ଦେହ ନାହିଁ ।

ପ୍ରାୟ ସମକାଳରେ ଉତ୍କଳମଣିଙ୍କ ଶତବାର୍ଷିକ ଜୟନ୍ତୀ ମଧ ପାଳିତ ହେବାକୁ ଯାଉଛି । ଓଡ଼ିଶା ସରକାର ତାହାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ କରୁଛନ୍ତି । ଗୋପବନ୍ଧୁଙ୍କ ରଚନାବଳୀ ଏକତ୍ର କରି ଛପାଇବା ଅବଶ୍ୟ ଏ ପ୍ରସଙ୍ଗରେ ଏକ ଆବଶ୍ୟକ କାର୍ଯ୍ୟ । ଯେଉଁମାନେ ସେ ସଂଗଠନର ଦାୟିତ୍ୱରେ ଥିବେ, ଏପ୍ରସଙ୍ଗ ସେମାନଙ୍କ ଦୃଷ୍ଟିକୁ ଏଡାଇ ଯାଇ ପାରିବ ନାହିଁ ବୋଲି ବିଶ୍ୱାସ ରହିଛି । କିନ୍ତୁ ଗୋପବନ୍ଧୁ ରଚନାବଳୀ ଏବଂ ପଲ୍ଲୀକବି ଗ୍ରନ୍ଥାବଳୀ ସୁଲଭ ମୂଲ୍ୟରେ ବହୁ ସଂଖ୍ୟାରେ ଛପାଇ ସ୍ୱଳ୍ପ ମଧ୍ୟବିତ୍ତ ଶିକ୍ଷିତ ସାଧାରଣଙ୍କ ନିକଟରେ ପହଞ୍ଚାଇ ଦେଇ ପାରିଲେ ଜୟନ୍ତୀ କମିଟିର ପ୍ରକୃତ ଲକ୍ଷ୍ୟ ସୁସାଧିତ ହୋଇପାରିବ ବୋଲି ମୋର ଧାରଣା । ଏଦିଗରେ ଉଦ୍ୟମ ଯେ ହେଉ ନଥିବ ତାହା ମଧ ମୁଁ ଭାବୁ ନାହିଁ । ତଥାପି ପ୍ରସଙ୍ଗକ୍ରମେ ଲେଖିଛି । ଭାବି ଦେଖିବେ । ଇତି ।

ଶୁଭେଚ୍ଛା ନେବେ
ଆପଣଙ୍କର ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା

## ॥ ୧୨୦ ॥

## ବାଇଶି ପାହାଚ

ଶ୍ରୀଯୁକ୍ତ କୃଷ୍ଣଚରଣ ବେହେରା,
ରେଭେନ୍‌ସା ମହାବିଦ୍ୟାଳୟ
ମାନନୀୟେଷୁ,

ଆପଣଙ୍କ ପତ୍ର ଲାଗି ଅଶେଷ ଧନ୍ୟବାଦ୍ । ଆପଣଙ୍କ ଦ୍ୱିତୀୟ ସର୍ତ୍ତରେ ଆମେ ରାଜି । ପ୍ରଥମଟା ଗ୍ରହଣ କରିବା ଲାଗି ଆମେ ବର୍ତ୍ତମାନ ଅବସ୍ଥାରେ ପ୍ରସ୍ତୁତ ନୋହୁଁ କାରଣ ଆମର ଆର୍ଥିକ ସ୍ୱଚ୍ଛଳତା ଆଉରି ଆସିନାହିଁ । ଲେଖକ ପଇସା ପାଇବା ନିହାତି

ଦରକାର ଏବଂ ବିଶେଷକରି ଗବେଷଣାତ୍ମକ ପ୍ରବନ୍ଧ ଲେଖିବା ଯେ କି କଷ୍ଟକର କଥା ମୁଁ ବୁଝୁଥିଲେ ମଧ୍ୟ ନାଚାର । ସେଥିଲାଗି କ୍ଷମା ଦେବେ । ଦତୀୟ ସର୍ତ୍ତ ତେଣୁ ଉପାୟାନ୍ତର ଭାବେ ଗ୍ରହଣ କଲୁ । ଆଶା ଭଲଥିବେ । ମୋର ଗଭୀର କୃତଜ୍ଞତା ଗ୍ରହଣ କରିବେ ।

ଆପଣଙ୍କର ବିନୀତ

ପ୍ରଫୁଲ୍ଲକୁମାର ମହାନ୍ତି

॥ ୧୨୧ ॥

ଦିଗପହଣ୍ଡି

୨୨.୧୦.୭୬

ସ୍ନେହର କୃଷ୍ଣବାବୁ,

ପ୍ରଣାମ ନେବେ । ଆପଣଙ୍କ ପତ୍ର ପାଇ ଅତିଶୟ ପ୍ରୀତ ହେଲି ।
'ପ୍ରୀତିବତୀ'ରେ ଠିକ୍ ମୋର ପ୍ରାଣଟି ଫୁଟିଅଛି କି ନାହିଁ ସେ ବିଷୟରେ ମୁଁ ନିଜେ ମଧ୍ୟ ନିଃସନ୍ଦିଗ୍ଧ ନୁହେଁ । ଶୁଣି ଆଶ୍ଚର୍ଯ୍ୟ ହେବେ, କବିତାଟିକି କୌଣସି ପତ୍ରିକାକୁ ଦବାଲାଗି ମୋର ସ୍ପଷ୍ଟ ଆନ୍ତରିକ ଇଚ୍ଛା ନ ଥିଲା । ଛାଡ଼ନ୍ତୁ ।
ହଁ 'କବିତା' କଥା । ବର୍ତ୍ତମାନ ଆପଣଙ୍କ ପାଖକୁ ଯିବା ବିଲକୁଲ ମୋ ପକ୍ଷେ ସମ୍ଭବ ନୁହେଁ । ତେବେ ଏତେ ଦୂରରେ ଥାଇ ମୁଁ କେମିତି ଭାବରେ ଆପଣଙ୍କୁ ସାହାଯ୍ୟ କରିପାରେ ମତେ ଏକ କଂକ୍ରିଟ୍ ଯୋଜନା ଦିଅନ୍ତୁ । ଆପଣ ମୋ ପାଖକୁ ଚିଠି ଲେଖିବା ଆଗରୁ-ମତେ ବିଶ୍ୱାସ କରନ୍ତୁ-ମୁଁ କବିତା ପ୍ରକାଶ ସମ୍ବନ୍ଧରେ ଆପଣଙ୍କୁ ଲେଖିବି ବୋଲି ଭାବୁଥିଲି । ଏପରି ସମୟରେ ଆପଣଙ୍କ ପତ୍ର ମତେ ଖୁବ୍ ଆନନ୍ଦ ଦେଲା । ଚିଠି ପାଇ ଚିଠି ନିଶ୍ଚୟ ତୁରନ୍ତ ଦେବେ । ଜୟନ୍ତୀ ଦେବୀଙ୍କୁ ମୋର ସଶ୍ରଦ୍ଧ ନମସ୍କାର ଓ ଟିକି ଝିଅକୁ ଚୁମା । ॥ ଇତି ॥

ଆପଣଙ୍କର ଧଡ୍ଡୁଭାଇ

(ଦୁର୍ଗାଚରଣ ପରିଡ଼ା)

॥ ୧୨୨ ॥

ବଂଶଧାରା ସାହିତ୍ୟ ସମାଜ, ଗୁଣୁପୁର(କୋରାପୁଟ)

ଚିଠି ନଂ ୧୦୩୮/୪.୮.୭୭

ସାର୍,

ମୋର ପ୍ରଣାମ ଗ୍ରହଣ କରିବେ । ଆଶା, ଆପଣ କୁଶଳରେ ଥିବେ । ବେଶ୍ କୁଶଳରେ ସାହିତ୍ୟ କରୁଥିବେ ଓ 'ଗବେଷଣା ପରିଷଦ' କାର୍ଯ୍ୟ ବେଶ୍ ଚାଲିଥିବ ।

କବିସୂର୍ଯ୍ୟଙ୍କ 'ହାସ୍ୟ କଲ୍ଲୋଳ' ଆଲୋଚନା ପ୍ରବନ୍ଧ ଅପେକ୍ଷାରେ ଏଯାଏଁ ରହିଛି । ଆପଣ ଦୟାକରି ଏମାସ ୨୦ ସୁଦ୍ଧା ଦେବେ କି ? ଆପଣ ଓଡ଼ିଆ ଉପନ୍ୟାସର

ଆଲୋଚକ । ଆପଣ ନୂଆ ଢ଼ଙ୍ଗରେ ଆଲୋଚନା କରି ଓଡ଼ିଆ ଉପନ୍ୟାସର ଆଦିପର୍ବର ଇତିହାସକୁ ଥୋଇ ଦେଇଛନ୍ତି । ଆମର ତା ଅବଶ୍ୟ ପଠନୀୟ ଗ୍ରନ୍ଥ ହୋଇ ଏଯାଏଁ ରହିଛି । ହାସ୍ୟ କଲ୍ଲୋଳ ଆଲୋଚନା ଏପରି ଉପାଦେୟ ହେବ, ଏ ବିଶ୍ୱାସ ଆମର ଅଛି । ଆମର ଲୋଭ ପ୍ରଚଣ୍ଡ । ଯଥାଶୀଘ୍ର ଦେବେନା ?

'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଆପଣଙ୍କ ଦ୍ୱାରା ସଂପାଦିତ ହୋଇ ପ୍ରକାଶ ହୋଇଗଲା ବୋଲି 'ବିଜ୍ଞାପନ'ରୁ ଜାଣିଲି । ପୁଣି କଟକ ଗଲାବେଳକୁ ଡିସେମ୍ବର ହୋଇଯିବ । ସେଥିରୁ ଏକ ଖଣ୍ଡ ମୋ ପାଇଁ ହାସ୍ୟ କଲ୍ଲୋଳ ଲେଖାସହ ପଠାଇବେ ବୋଲି ମୋର ବିନମ୍ର ଅନୁରୋଧ ।

ଗୁଣପୁରରୁ ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ସଂପର୍କରେ ଏକ ଆଲୋଚନା ଗ୍ରନ୍ଥ ପ୍ରକାଶ କରିବାକୁ ଉଦ୍ୟମ କରୁଛୁ । ଆପଣ ଏକ ଲେଖା ଦେବେନି ? ଆପଣ ଏଇ ପ୍ରତିଭାର କେଉଁ ବିଭାକୁ ନେଇ ଲେଖିବେ ଜଣାଇବେ । ତାହା ଆସନ୍ତାବର୍ଷ କୌଣସି ପ୍ରକାରେ ପ୍ରକାଶ କରିବାକୁ ଲାଗିଛୁ ।

ଗବେଷଣା ପରିଷଦ ଏକ ସମବାୟ ସୋସାଇଟିର ରୂପ ନେଉ । ଏହାର ମୁଖପତ୍ର 'ସର୍ବେକ୍ଷଣା' ( ? ) ଆଗ ପ୍ରକାଶ ପାଉ । ପ୍ରଥମ ସଂଖ୍ୟାରେ ବିଶ୍ୱନାଥ ଖୁଣ୍ଟିଆ, ବନମାଳୀ, କେଶବ ପଟ୍ଟନାୟକଙ୍କ ପରି ଜନପ୍ରିୟ କମ୍ ଆଲୋଚିତ/ଅନାଲୋଚିତ ଲେଖକଙ୍କ ସଂପର୍କରେ ଲେଖା ବାହାରୁ । ପରିଷଦର କାର୍ଯ୍ୟ ପାଇଁ ଅଧମ ପ୍ରସ୍ତୁତ ଅଛି । କି କାର୍ଯ୍ୟ ଅଛି, ଯଥା ସମୟରେ ଜଣାଇ ଅନୁଗୃହୀତ କରାଇବେ ।

ସ୍ନେହାଧୀନ ଶିବରାମ ପାତ୍ର

॥ ୧୨୩ ॥

ଭୁବନେଶ୍ୱର
୨୬.୧୦.୭୭

ପ୍ରିୟତମ ସାର୍,

ମୋର ପ୍ରଣାମ ନେବେ । ପୂଜାସଂଖ୍ୟା ଝଙ୍କାରରେ 'ରାଜା କେନ୍ୟୁଟ୍‌ଙ୍କ ମୋସାହେବ ଏବଂ ଉତ୍କଳଘଣ୍ଟ ଯଦୁମଣି' ପ୍ରବନ୍ଧଟି ଅଧିକ ଆକର୍ଷଣୀୟ ହୋଇଥିବାରୁ ମୋର ବଧେଇ । ଓଡ଼ିଆ ସାହିତ୍ୟରେ ଅଧ୍ୟାପକ ଚିତ୍ତରଂଜନ ଦାସଙ୍କ 'ଜାତି ରେ ମୁଁ ଯବନ' ପରେ ଆପଣ ବୋଧହୁଏ ଦ୍ୱିତୀୟ ବ୍ୟକ୍ତି ଯେ କି ସମାଜରେ ମଣିଷର ତୋଷାମଦ ପଣିଆ ବିଷୟକୁ ସେମାନଙ୍କ ଆଗରେ ଯଥାର୍ଥରେ ଥୋଇ ପାରିଛନ୍ତି । କ୍ଷମତା ମଣିଷକୁ ଅନ୍ଧ କରିଦିଏ, ତା ସହ ତା ଚାରିପାଖରେ ମଣିଷ ଦଳ(ପଙ୍ଗପାଳ) ତାକୁ ଅଯଥା ଟେକି ନିନ୍ଦିତ କରିଥାଏ । ଅକବି କବି ହୁଏ ଏବଂ ସାମାନ୍ୟ ଅର୍ଥ ଓ ଚାକିରି ଘେରରେ ରହି ଅଧସ୍ତନମାନେ ଜନସ୍ୱାର୍ଥକୁ ସମୂଳେ ନଷ୍ଟ କରିଦିଅନ୍ତି । ଏହା ଆଜି ଜାତିପ୍ରଥା, ଯୌତୁକପ୍ରଥା ପରି ଏକ ସାମାଜିକ ବ୍ୟାଧିରେ

ପରିଣତ ହୋଇଛି । ଏହାର ନିରାକରଣ ଆବଶ୍ୟକ । ଏଥିପାଇଁ ଭୁବନେଶ୍ୱର ବେହେରାଙ୍କ ମୂଷିକମାରଣ ଅଭିଯାନ ଯଥାର୍ଥ । ଆଶା, ଆପଣଙ୍କ ଲେଖନୀ ଏଦିଗରେ ଓଡ଼ିଆ ସାହିତ୍ୟକୁ ନିକଟ ଭବିଷ୍ୟତରେ କିଛି ଦାନ କରିବ । ପ୍ରବନ୍ଧରେ ଯଦୁମଣିଙ୍କୁ ଅଧିକ ସ୍ଥାନ ନଦେଇ ଏହାକୁ ଅସଂପୂର୍ଣ୍ଣ କରାଯାଇଛି ବୋଲି ମନେ ହୁଏ । ଆପଣଙ୍କ ସ୍ନେହରେ ଭଲ ଅଛି । ଇତି ।

ଆପଣଙ୍କର ପୁରାତନ ଛାତ୍ର ବାସୁଦେବ ବାରିକ

॥ ୧୨୪ ॥

କବି କୁଟୀର
୧୫.୧.୭୮

## ନିଅ ଏ ପଦିକ ହେଲେ !

କେତେ ସାହିତ୍ୟିକ ବଂଧୁ ଭେଟିଚି ଜୀବନେ
ଅନନ୍ତ ଆଗ୍ରହ ଘେନି ତୁମ ଭଳି ଜଣେ-
କେ ଆସିବ ? ଏତେ ଦୂରୁ ଏଇ ଶୀତ ରାତେ
ଏ କବି କୁଟୀରେ ମୋର ଦେଖିବାକୁ ମତେ ।
ଏ ନିଃସ୍ୱ କୁଟୀରେ ଆଜି ଦେଇଚ ଯେ ପାଦ
ଏ ତହୁଁ ପାଆନ୍ତି କିବା ପରମ ଆହ୍ଲାଦ ?
ତୁମରେ ଦେଖିଲେ ପାଦ ନାଇଁ ପଡେ ତଳେ
ରହନ୍ତ କୁଟୀରେ ମୋର ଆଉ ଦଣ୍ଡେ ହେଲେ ।
ସାଧନାର ହୋମଶିଖା ତକୁ ତମେ ଫୁଟି
ସମଗ୍ର ଏ ଉତ୍କଳରେ ଉଠିଚ ଚହଟି ।
ଯେ ମୋହନ ମଧୁଧାରା ଯାଉଚ ବିତରି
ଏ ଜାତି ଖୋଜିବ ଦିନେ ଗଣିଧନ ପରି ।
ହେ ଅତିଥି, କ୍ଷଣେ ଆସି ଚାଲିଗଲ କ୍ଷଣେ
ନିଅ ଏ ପଦିକ ହେଲେ ପଡୁଥିବ ମନେ ।

ତୁମର ଗୁଣମୁଗ୍ଧ କୃଷ୍ଣଚନ୍ଦ୍ର ତ୍ରିପାଠୀ

॥ ୧୨୫ ॥

ରାଉରକେଲା,
୩୦.୫.୭୮

ମାନନୀୟ ଲଘୁପଞ୍ଚକ ଗୁରୁଦେବ !

ସାଦର ପ୍ରଣାମ ନେବେ । ଆପଣଙ୍କୁ ଜାଣିଛି ଅନେକ ଦିନରୁ, ଆପଣଙ୍କୁ ପଢ଼ି ପଢ଼ି । କିନ୍ତୁ ଆପଣଙ୍କ ହାସ୍ୟମୁଖର ବ୍ୟକ୍ତିତ୍ୱକୁ ଆବିଷ୍କାର କରିବାକୁ ଖୁବ୍ ଦିନ ଲାଗିଗଲା । ପ୍ରତ୍ୟକ୍ଷ

ଭେଟ ହୋଇ ନଥିଲେ ସେଇତ ଅସୁବିଧା । ହେଲେ ଏଇ ନେପଥ୍ୟରେ ଆଉ କେତେଦିନ କୋଳାହଳ କରିବା ? ଏଣିକି ଟିକେ frontରେ ବା ସୀମାନ୍ତରେ ଅବତୀର୍ଣ୍ଣ ହୁଆଯାଉ ! ଆଜି ମନୀନ୍ଦ୍ର ବାବୁଙ୍କ ପାଖରୁ ଆପଣଙ୍କ ଠିକଣାଟା ସଂଗ୍ରହ କରି ଏ ପତ୍ର ଲେଖି ଦେଲି କି 'ଅଶ୍ଲୀଳତା ସପକ୍ଷରେ' ତ ବହୁକାଳ ଧରି ଗୁଡିଏ ଜିନିଷ ଲେଖାଗଲା । ଏଣିକି 'ଶ୍ରୀମତୀଙ୍କ ସପକ୍ଷରେ' ବି କିଛି ଲେଖା ଯାଉ ।

'ହରିବୋଲ' ମାସିକ ଖେଚଡମୂଳକ ଓ କୀଳାତ୍ମକ ସାହିତ୍ୟ ପତ୍ରିକା ଯେ ରାଉରକେଲା ନବରଙ୍ଗ ସଂକୀର୍ତ୍ତନ ମଣ୍ଡଳୀ ଦ୍ୱାରା ପ୍ରକାଶ ପାଉଛି ଏବଂ ଯାହାର କପି ଖଣ୍ଡେ ଯା ସଙ୍ଗେ ପଠାଇବାରେ ଅସମର୍ଥ ହୋଇ ମୁଁ ମଦ୍ୟପଙ୍କ ଭଳି ଗଡି ଗଡି କ୍ଷମା ମାଗୁଛି, ଜୁଲାଇ ସଂଖ୍ୟା ଶ୍ରୀମତୀ ବିଶେଷାଙ୍କ ରୂପେ ପ୍ରକାଶ ପାଇବ । ଶ୍ରୀମତୀଙ୍କ ସମ୍ବନ୍ଧୀୟ ଆପଣଙ୍କ କମେଣ୍ଟ/କଳ୍ପନା/ଅନୁଭୂତିକୁ ଗଳ୍ପାକାରେ ପ୍ରାପ୍ତ କରିବା ପାଇଁ ଆମେ ପ୍ରଚଣ୍ଡ ଆଗ୍ରହ କରୁଛୁ ।

ପ୍ରଥମ ସଂଖ୍ୟା 'ହରିବୋଲ' ଏପ୍ରିଲ୍ ତୃତୀୟ ସପ୍ତାହରେ ପ୍ରକାଶ ପାଇ ଦଶଦିନ ମଧ୍ୟେ ଅଗଷ୍ଟପନ୍ଦରର ଦଳବନ୍ଧା ମୁକ୍ତ ପାରା ତୁଲ୍ୟ ଯେ ଉଡିଗଲା, ଅଫିସ୍ କପି ଦଶଖଣ୍ଡ ଖୋଜି ବି ପାଉନାହିଁ । କୌଣସି ପତ୍ରିକା ମାସର ଦ୍ୱିତୀୟ ସପ୍ତାହ ପରେ ପ୍ରକାଶ କରିବା ବିଜିନେସ୍ ଦୃଷ୍ଟିରୁ ଧକ୍କା-ଖାୟକ ଜାଣି ପ୍ରଥମ ସଂଖ୍ୟାକୁ ମେ ସଂଖ୍ୟା ବୋଲି ଧରିନେଲୁ । ଦ୍ୱିତୀୟ ସଂଖ୍ୟାର ପ୍ରସ୍ତୁତି ଲାଞ୍ଜରେ ବାଣ ଫୁଟୁଥିବା କୁକୁରର ତୀବ୍ର ଗତିରେ ଆଗେଇ ଚାଲିଛି । ଜୁନ୍ ପ୍ରଥମ ସପ୍ତାହ ମଧ୍ୟରେ ଏହା ଆପଣଙ୍କ ହସ୍ତଗତ କରାଇ ପାରିବୁ ।

ଆପଣଙ୍କ ଆଶୀର୍ବାଣୀ ଆମକୁ ଉତ୍ସାହ ଦେବ, ଆପଣଙ୍କ ନଗଦ ସହଯୋଗ 'ହରିବୋଲ'କୁ ବଞ୍ଚିବାରେ ସାହାଯ୍ୟ କରିବ । ଉଭୟ ଦରକାର । ଯଥାଶୀଘ୍ର 'ଶ୍ରୀମତୀଙ୍କ ସପକ୍ଷରେ' ନାମକ ଫର୍ମାସୀ ରଚନାଟି ପଠାଇ ଆମର ଇଜ୍ଜତ ବଞ୍ଚାଇବେ ବୋଲି ଅନୁରୋଧ କରୁଛି । ଇତି ।

ସ୍ନେହାଧୀନ ରାଧୁ ମିଶ୍ର

॥ ୧୨୬ ॥

ଲରମ୍ବା

୧୦.୮.୭୮

ଶ୍ରଦ୍ଧେୟ ସାର୍,

ପ୍ରଣାମ ନେବେ । ଗତକାଲି ଆପଣଙ୍କର ତା ୫.୮.୭୮ରେ ଲିଖିତ ପତ୍ର ପାଇଲି । ମୋର ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ଓ ଗବେଷଣା କାର୍ଯ୍ୟରେ ଆପଣଙ୍କର ପ୍ରେରଣା ଓ ନିର୍ଦ୍ଦେଶ ହିଁ ମୋର ଆନନ୍ଦ । ଗବେଷଣା କାର୍ଯ୍ୟ ତ ମନ୍ଥର ଗତିରେ ଚାଲିଛି । (ମନ୍ଥର ଗତି କହୁଛି ଯେ ଯେତକ କାମ ଏଇ ଦୁଇ ବର୍ଷଭିତରେ କରିବା କଥା, କରି ପାରି ନାହିଁ) କିନ୍ତୁ ମୋର ଗପ ଲେଖା ମଧ୍ୟ ନିତାନ୍ତ ଧୀମେଇ ଚାଲିଛି, ଏହାର କାରଣ ସମ୍ଭବତଃ ଗବେଷଣାରେ ମନୋନିବେଶ ।

ଆପଣ ଏଇ ୧୭/୧୮ ବେଳକୁ ସମ୍ବଲପୁର ଆସୁଛନ୍ତି ଜାଣି ଖୁସି ହେଲି । ଏଇ ୧୨/୧୩ ତାରିଖ(ରବିବାର) ବେଳକୁ ସମ୍ବଲପୁର ଯିବାର ମୋର ପ୍ରସ୍ତାବ ଅଛି । ଆପଣ ୧୭ ଅଗଷ୍ଟ ସକାଳେ ସମ୍ଭବତଃ ସମ୍ବଲପୁରଠାରେ ପହଞ୍ଚିବେ । ୧୭ ତାରିଖ ଦିନ ମୁଁ ସମ୍ବଲପୁର ଯିବି ଆପଣଙ୍କ ସାକ୍ଷାତ ନିମନ୍ତେ । ଆପଣ କଣ ଗଙ୍ଗାଧର ଜୟନ୍ତୀ ପାଇଁ ଆସୁଛନ୍ତି ? ××× ଆପଣଙ୍କ ସହ ସାକ୍ଷାତ, ମୋ ପାଇଁ ଅନେକ ଉପକାର-ଅନେକ' କଥାବାର୍ତ୍ତା ହୋଇ ପାରନ୍ତେ । କେତେକ ନିର୍ଦ୍ଦେଶ ପାଇ ପାରନ୍ତି ।

ମୋ' ରେଜିଷ୍ଟ୍ରେସନ କଥା କ'ଣ ହେଲା, ଜାଣି ପାରୁ ନାହିଁ । ପ୍ରାୟ ଏକ ମାସ ହେବ, ଉଦ୍‌ଗାତା ବାବୁଙ୍କ ସହ ସାକ୍ଷାତ ହୋଇ ନାହିଁ । ଅବଶ୍ୟ ପନ୍ଦର ଦିନ ତଳେ ଅଳ୍ପ ସମୟ ପାଇଁ ସମ୍ବଲପୁର ଯାଇଥିଲି । ଉଦ୍‌ଗାତାବାବୁଙ୍କ ନିକଟରେ ମୋର କେତୋଟି(ଗବେଷଣା) ପ୍ରବନ୍ଧ ରହିଛି । ଏଯାଏଁ ଆଣି ନାହିଁ । ରେଜିଷ୍ଟ୍ରେସନ ପାଇଁ ମୋ ଆବେଦନ ପତ୍ର ଏଇ ନଭେମ୍ବର ୨କୁ ଦୁଇ ବରଷ ହେବ । ଆପଣ ପୂର୍ବରୁ ଠିକ୍ କହୁଥିଲେ, ଅନ୍ୟ ବିଶ୍ୱବିଦ୍ୟାଳୟରେ ଆବେଦନ କଲେ, କ୍ଷତି କ'ଣ ? ଛାଡନ୍ତୁ ସେ କଥା, ଦେଖାଯାଉ, କ'ଣ ହେଉଛି ! ଜୁଲାଇ ମାସରେ କଲେଜ ଖୋଲିବା ପରେ, ଗବେଷଣା କାମ ସାମାନ୍ୟ ଧୀମେଇ ଗଲା । ଗ୍ରୀଷ୍ମ ଛୁଟିରେ ଯେମିତି ଚାଲିଥିଲା, ସେପରି ନୁହେଁ ।

ଅଭ୍ୟୁଦୟ ସାହିତ୍ୟ ସମାଜ ପକ୍ଷରୁ ପ୍ରକାଶିତ 'ଓଡ଼ିଆ ଉପନ୍ୟାସ ସାହିତ୍ୟ ପରିଚୟ' ଗ୍ରନ୍ଥର ମୁଁ ସାହାଯ୍ୟ ନେଉଛି । ଏ ଗ୍ରନ୍ଥ ଏକ ସାର୍ଥକ ଉଦ୍ୟମ ନିଶ୍ଚୟ । ଅନେକତ୍ର ଉପନ୍ୟାସର ପରିଚୟ ମାତ୍ର, କାହାଣୀର ବିବରଣୀ ମାତ୍ର ବୋଲି ମନେ ହୁଏ । ଶ୍ରୀ ବ୍ରଜମୋହନ ମହାନ୍ତିଙ୍କର 'ଓଡ଼ିଆ ସାହିତ୍ୟରେ ଆଧୁନିକ ଯୁଗ' ୧ମ ଓ ୨ୟ ଭାଗର ସାହାଯ୍ୟ ନେଉଛି ସତ, ମାତ୍ର ଏଥିରେ କେତେକ ସ୍ଥଳରେ ଭୁଲ ତଥ୍ୟ ପରିବେଷିତ ହୋଇଥିବାର ଦେଖାଯାଏ । ଯଥା- 'ବଳାଙ୍ଗୀ' ଓ 'ରୋଡ଼ଙ୍ଗ ବସ୍ତି' ଉପନ୍ୟାସର ରଚୟିତା ଭାବରେ ରାମଚନ୍ଦ୍ର ମହାପାତ୍ରଙ୍କ ନାମୋଲ୍ଲେଖ କରାଯାଇଛି, ଚକ୍ରଧର ମହାପାତ୍ର ହେବା କଥା । ସାକ୍ଷାତରେ ଆପଣଙ୍କୁ ମୋର ପ୍ରବନ୍ଧଗୁଡ଼ିକ ଦେଖାଇବାର ବାସନା ରହିଲା । ଇତି ।

ଆପଣଙ୍କର ଗୁଣମୁଗ୍ଧ ପୂର୍ଣ୍ଣାନନ୍ଦ ଦାନୀ

॥ ୧୨୭ ॥

ତା ୩୧/୧୦/୭୮

ଅଚ୍ୟୁତାନନ୍ଦ ପତି, ପ୍ରଧାନ ଶିକ୍ଷକ, ଇ.ଆର୍. ହାଇସ୍କୁଲ,
ପୋ : Sungra, (SUNGRA), ଜି : କଟକ, ପିନ୍- 754 221
ପ୍ରିୟ ବେହେରା ବାବୁ,

ଜୁହାର । ଚିଠି ପାଇଲି । ଆପଣଂକ ସଂକଳିତ ଗଳ୍ପ ବହିରେ ମୋର 'ଅଣ୍ଟୁଭମନ୍ତ୍ରନ କାହାଣୀ' ସ୍ଥାନ ପାଇବା ନିଶ୍ଚିତ ରୂପେ ମୋ ପାଇଁ ଏକ ଶୁଭ ସମ୍ବାଦ । ପୁଣି ଆପତ୍ତିର ପ୍ରଶ୍ନ ଉଠିବାର ଆବଶ୍ୟକତା ମୋଟେ ଉଠୁନି ।

'ଅଶୁଭପୁତ୍ରର କାହାଣୀ', 'ଉଗ୍ରସେନ ଉବାଚ' ପରେ 'ନିଆଁ ଜଳୁଚି' ଶୀଷର୍କ ଗଳ୍ପବହିଟିଏ ଆତ୍ମପ୍ରକାଶ କରିଛି । ଠାକୁର ପ୍ରକାଶନୀ ସଂସ୍ଥା ଛପାଇଛି । ବହୁଦିନ ହେଲା ଲେଖାଲେଖି କରି ନାହିଁ । ଅବଶ୍ୟ ପତ୍ରିକାବାଲା ପ୍ରଶସ୍ତି ଗାଇ ଗପ ମାଗିବା ସଙ୍ଗେ ମୋର ନୀରବତା ପାଇଁ ମଧୁର ଶୋଧନା ବି ଦେଉଛନ୍ତି । ମାନସିକ ଓ ଦୈହିକ ଉଭୟ କ୍ଷେତ୍ରରେ ଅସୁସ୍ଥ । ଦେଖାହେଲେ ସବିଶେଷ । କଟକରେ କେଉଁଠି ରହୁଛନ୍ତି ବସା ଠିକଣା ଜଣାଇଲେ ଦେଖା ହୁଅନ୍ତା । ସ୍କୁଲଟି କଟକ ସଦର ସବ୍‌ଡିଭିଜନ୍‌ରେ, ସାଲେପୁରଠାରୁ ମାତ୍ର ୪ମାଇଲି ଦୂରରେ । ସ୍କୁଲର ଟ୍ରେଜେରୀ କଟକ । କଟକ ପ୍ରାୟ ମୁଁ ମାସରେ ଅନେକଥର ଯାଉଛି । ହଁ, 'ଅଶୁଭପୁତ୍ରର କାହାଣୀ' ଟି ଖଲିକୋଟ କଲେଜରେ ଜଣେ ଅଧ୍ୟାପକ ତାଙ୍କ ସଂକଳନରେ ସ୍ଥାନ ଦେବାକୁ ସ୍ୱୀକୃତି ମାଗିଛନ୍ତି । ମୋ ମତରେ ମୋର ଦର୍ଶନକୁ ପ୍ରକାଶ କରୁଥିବା ଅନ୍ୟ ବହୁତ ଭଲଗପ ତ ପ୍ରକାଶ ପାଇଛି ! ଅନ୍ୟ ଗପମାନଙ୍କୁ ସ୍ଥାନ ଦେଲେ ମନ୍ଦ ହୁଅନ୍ତା ନାହିଁ । ଚିଠି ଦେବେ ।

ସୌଜନ୍ୟସ୍ନିଗ୍ଧ
ଅଚ୍ୟୁତାନନ୍ଦ ପତି

॥ ୧୨୮ ॥

ବୈଶିଙ୍ଗା, ମୟୂରଭଂଜ
୫.୧୨.୭୮

ସମ୍ମାନନୀୟ ମହାଶୟ,

ପ୍ରଣତି ଜଣାଉଛି ସର୍ବାଗ୍ରେ ।

ଆପଣ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜରେ ଥିବା ସମୟରେ ଅନୁରୁଦ୍ଧ ହୋଇ ଦୁଇଥର ପାଇଁ ବୈଶିଙ୍ଗା ଆସିଥିଲେ । ସେହି ସମୟରେ ମୁଁ ଆପଣଙ୍କ ସହିତ ସାକ୍ଷାତ କରିବାର ସୌଭାଗ୍ୟ ଲାଭ କରିଥିଲି । କ୍ଷଣିକର ସାକ୍ଷାତ । ସାମାନ୍ୟ କଥାବାର୍ତ୍ତା । ସେତିକିରେ ଯେ ମୁଁ ଆପଣଙ୍କର ସ୍ମୃତିକୋଷରେ ବଞ୍ଚିଥିବି, ମନରେ କାହିଁକି ସେଭଳି ପ୍ରତ୍ୟୟ ଆସୁନାହିଁ । ପରିଚୟ ଦେବା ନିତାନ୍ତ ବିଧେୟ । ତେଣୁ ସାମାନ୍ୟ ସୂଚନା ଦେବା ସମୀଚୀନ ହେବ ବୋଲି ମନେ କରୁଛି ।

ମୁଁ ସ୍ଥାନୀୟ ହାଇସ୍କୁଲରେ ବିଗତ ୧୫ ବର୍ଷ ଧରି ପ୍ରଧାନଶିକ୍ଷକ ରୂପେ କାମ କରି ଆସୁଛି । ଚାକିରିଆ ଜୀବନରେ ଧରାବନ୍ଧା କାମ ଅନେକ ସମୟରେ ଚିଟା ଲାଗେ ଏବଂ ସେହି ଚିଟା ଭାଙ୍ଗିବା ପାଇଁ ମୁଁ ପୁସ୍ତକ ରଚନାରେ ମନ ଦିଏ । ଏଇ କେତେବର୍ଷ ହେଲା ମୁଁ ଅନୁବାଦ ସାହିତ୍ୟରେ ମନୋନିବେଶ କରିଛି । ମୋ ଦ୍ୱାରା ଅନୂଦିତ ବହିଗୁଡ଼ିକର ଟିପ୍ପଣୀଟିଏ ଦେଉଛି ।

୧. ହରଣଚାଲ, ୨. ମାର୍ଟିନ ରାଟ୍‌ଲର, ୩. ଲରନା ଡୋନ୍, ୪. ଶ୍ୱେତାମ୍ବରୀ, ୫. ଓ୍ୟାଦାରିଂ ହାଇଟସ୍, ୬. ଜେନ୍ ଆୟାର୍, ୭. କ୍ୟାପଟେନ୍ ସ୍କଟ, ୮. କ୍ରୀତଦାସ ଜୀବନ, ୯. ନଷିଦ୍ଧ କାହାଣୀ ।

ଶେଷୋକ୍ତ ବହିଟି ଡକ୍ଟର ମନ୍ମଥ ନାଥ ଦାସଙ୍କ ରଚିତ ଇଂରାଜୀ ଉପନ୍ୟାସ Keep the story secretର ଓଡ଼ିଆ ରୂପାନ୍ତର । କଟକର ଗୋସ୍ୱାମୀ ପ୍ରେସ୍‌ରେ ପଡିଛି । ନୂତନ ବର୍ଷର ଆରମ୍ଭରେ ଆତ୍ମପ୍ରକାଶ କରିବ ବୋଲି ପବ୍ଲିଶର ଜଣାଇଛନ୍ତି । ଏକଦା କଥା ପ୍ରସଙ୍ଗରେ ମୁଁ ଆପଣଙ୍କୁ ସେହି ବହିର ବିଷୟବସ୍ତୁ ସମ୍ବନ୍ଧରେ ଅଳ୍ପ କିଛି କହିଥିଲି । ଆପଣଙ୍କ ପାଇଁ ଭାଷଣ ଦେବାର ସମୟ ହୋଇଯିବାରୁ ମୁଁ ଗଳ୍ପଟି ଶେଷ କରି ପାରିଲିନି । ପ୍ରକାଶିତ ହେବା ପରେ ଆପଣଙ୍କ ପାଖକୁ କପିଟିଏ ପଠାଇବି ।

ମୁଁ ଆଜି ଯେଉଁ ପଥରେ ଯାତ୍ରା କରିବାକୁ ସଂକଳ୍ପବଦ୍ଧ ହୋଇଅଛି, ଆପଣ ସେହି ପଥର ଜଣେ ଅଗ୍ରଗାମୀ ଯାତ୍ରୀ । ଏଣୁ ମୋତେ ଉପରକୁ ଉଠାଇନେବାରେ ଆପଣ ଅକୁଣ୍ଠ ସାହାଯ୍ୟ କରିବେ ବୋଲି ମୁଁ ଦୃଢ଼ ବିଶ୍ୱାସ ରଖୁଛି । ଯେଉଁ ଅନୁବାଦ ସାହିତ୍ୟରେ ମୁଁ ବ୍ରତୀ ହୋଇଛି ସେଥିରେ କିଛିଟା ପ୍ରତିଷ୍ଠା ଅର୍ଜନ ନ କଲା ପର୍ଯ୍ୟନ୍ତ ମୁଁ ଅନ୍ୟ କୌଣସି ପ୍ରକାର ରଚନାରେ ଲାଳସୀ ନୁହେଁ । ସେଥିପାଇଁ ଅଧିକ ସଂଖ୍ୟକ ବହି ଅନୁବାଦ କରିବା ଦରକାର ବୋଲି ମୁଁ ମନେ କରୁଛି । ଏଣୁ ମୋର ଏକାନ୍ତ ଅନୁରୋଧ, ଆପଣ ଦୟାକରି ମୋ ପାଇଁ ଏପରି ସଂସ୍ଥା ଠିକ୍ କରିଦିଅନ୍ତୁ ଯେପରି ମୁଁ ଧାରାବାହିକ ଭାବରେ ଅନେକଗୁଡ଼ିଏ ଇଂରାଜୀ ପୁସ୍ତକ(ଗଳ୍ପ, ଉପନ୍ୟାସ, ଜୀବନୀ) ଅନୁବାଦ କରିବାର ସୁବିଧା ପାଇବି ।

ଉତ୍ତର ପ୍ରତୀକ୍ଷାରେ ରହିଲି । ଇତି ।

ଆପଣଙ୍କର କୃପାଭିଳାଷୀ
ଶ୍ରୀ ଚିନ୍ତାମଣି ମହାପାତ୍ର

॥ ୧୨୯ ॥

Galpajhara Prakashani
Bhadrak(୭୫୬୧୦୦)
Dist. Balasore, Orissa
୨.୧.୭୯

ପୂଜନୀୟ ସାର୍,

ମୋର ପ୍ରଣାମ ଗ୍ରହଣ କରିବେ । ଏଇ କେତେଦିନ ହେଲା ଆପଣଙ୍କ ସହ ସାକ୍ଷାତ ହୋଇ ପାରିନାହିଁ । × × × 'ସମାବେଶ'ରୁ ଆପଣଙ୍କ ଲେଖା ପଢ଼ିଲି । ବହୁତ ଭଲ ଲାଗିଲା । ପୁରୁଣା କଥା-କେତେଦିନ ତଳର ସୃଷ୍ଟି, ତାକୁ ଆପଣ ଖୋଳିତାଡ଼ି ପଦାକୁ ଆଣିଛନ୍ତି-ଆଜିର ଆଧୁନିକମାନଙ୍କ ପାଖରେ ମୂଲ୍ୟବାନ ସୃଷ୍ଟିଟିକୁ ପରିଚିତ କରାଇଛନ୍ତି । ତାହା ଅଭିନନ୍ଦନୀୟ ।

ଉପସ୍ଥାପନା ଶୈଳୀ ବେଶ୍ ଆକର୍ଷଣୀୟ ହୋଇଛି । ଲେଖାଟି ପଢ଼ି ବହୁ ଖୁସି ହେଲି । ଆପଣଙ୍କ ଗବେଷଣା ମନୋବୃତ୍ତିକୁ ପ୍ରଣତି ଜଣାଉଛି । ଏହିପରି ବହୁ ମୂଲ୍ୟବାନ ସୃଷ୍ଟି ଆଲୋଚନା ଅଭାବରେ ପରିଚିତ ହୋଇ ପାରୁନାହିଁ । ଫାଙ୍କା କଥା ନେଇ ଆଜିର ଆଲୋଚକମାନେ ମଥା ଖେଳାନ୍ତି । ମାତ୍ର ଏସବୁକୁ ଦେଖୁଛି କିଏ ? ଏହା ଭିତରେ ଯେ କେତେ ମୂଲ୍ୟବାନ କଥା ସାଇତା ହୋଇ ରହିଛି, ତାକୁ କେହି ଦେଖିବା ପାଇଁ ଆଗ୍ରହୀ ହେଉ ନାହାନ୍ତି । ଆପଣ ଏଦିଗରେ ଅଗ୍ରଣୀ । ଦିଗଦର୍ଶକ । ଓଡ଼ିଆ ସାହିତ୍ୟରେ ସ୍ମରଣୀୟ କାର୍ଯ୍ୟ । ଅଭିନନ୍ଦନ ଜଣାଉଛି । ଆପଣଙ୍କ ସଂପାଦିତ 'ଗଦ୍ୟଚୟନ' ଚମତ୍କାର ହୋଇଛି । ତାହା ସୁସଂପାଦିତ । ଓଡ଼ିଆ ସାହିତ୍ୟର ଗୋଟିଏ ପ୍ରତିନିଧି ସ୍ଥାନୀୟ ଗଦ୍ୟ ସଞ୍ଚୟନ । ନିଶ୍ଚୟ ଏହା ଆଦୃତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ରହିଛି । ଏପ୍ରକାର ଗଦ୍ୟ ସଂଚୟନ ପୂର୍ବରୁ ନଥିଲା । ସେ ପାଇଁ ଏହା ଆଜିର ଛାତ୍ରଛାତ୍ରୀ ଅଧ୍ୟାପକ ଓ ଗବେଷକମାନଙ୍କ ହାତରେ ପଡ଼ିବା ନିହାତି ଆବଶ୍ୟକ । ଏହା ଫଳରେ ଛାତ୍ରଛାତ୍ରୀ ଓ ଅନ୍ୟମାନେ ଓଡ଼ିଆ ଗଦ୍ୟ ସହ ପରିଚିତ ହୋଇ ପାରନ୍ତେ । ଏପାଇଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି ।

'ଗଳ୍ପଘର' କଥା କଣ ଭୁଲିଗଲେଣି ? ଆପଣଙ୍କ ସହାନୁଭୂତିକୁ ପାଥେୟ କରି ଏହା ଜାନୁଆରୀ ଠାରୁ ମାସିକ ହେଉଛି । ୩ୟ ବର୍ଷ ଆରମ୍ଭ ହେଲା । ଆପଣଙ୍କ ସ୍ନେହ ସହାନୁଭୂତି ପୂର୍ବ ପରି ପାଇବୁ ବୋଲି ଆଶା । ଏପାଇଁ ଅନୁରୋଧ, ଗଳ୍ପଟିଏ କେଉଁ ଦିନରୁ ପାଇ ନାହୁଁ, ଦୟାକରି ଫେବ୍ରୁଆରୀ ସଂଖ୍ୟା ପାଇଁ ଗୋଟିଏ ଗଳ୍ପ ଜାନୁଆରୀ ୧୫ ତାରିଖ ଭିତରେ ପଠାଇବାକୁ ଅନୁରୋଧ । ନିରାଶ କରିବେ ନାହିଁ ବୋଲି ବିଶ୍ୱାସ । ଆପଣ 'ଗଳ୍ପଘର'ର ପରିବାରଭୁକ୍ତ । ସେପାଇଁ ସବୁବେଳେ ଆପଣଙ୍କ ପାଖରେ ଆମର ଦାବୀ । ମୋର ବ୍ୟକ୍ତିଗତ ଦାବୀ ଓ ବିନମ୍ର ଅନୁରୋଧ । ଦୟାକରି ଗଳ୍ପଟିଏ ପଠାଇବେ । ଆପଣଙ୍କ ଗଳ୍ପ ଅପେକ୍ଷାରେ ରହିଲି । 'ନାରୀ ଏକ ନଦୀର ନାମ' ଗଳ୍ପ ପୁସ୍ତକର ରିଭ୍ୟୁ ଲେଖିବା ପାଇଁ ସାହିତ୍ୟିକ ବିଶ୍ୱନାଥ ବଳଙ୍କୁ ଦେଇଛି । ତାଙ୍କଠାରୁ ପାଇବା ମାତ୍ରେ ମୁଁ ପ୍ରକାଶ କରିବି । ନିକଟରେ ସେ ଦେବା ପାଇଁ ମୁଁ ଅନୁରୋଧ କରିଛି । କୁଶଳରେ ଥାଆନ୍ତୁ । ପ୍ରଣାମ ସହ ରହିଲି । ପତ୍ର ଦେବାକୁ ଅନୁରୋଧ ।

ଆପଣଙ୍କ ସ୍ନେହାଧୀନ ଅପୂର୍ବରଂଜନ ରାୟ

॥ ୧୩୦ ॥

ବାଲେଶ୍ୱର

୧୮.୩.୭୯

ପରମପୂଜ୍ୟ ଗୁରୁଦେବ,

ମୋର ପ୍ରଣାମ ଗ୍ରହଣ କରିବେ । ମା'ଙ୍କୁ ମୋର ପ୍ରଣାମ ଜଣାଇବେ । ମଧୁଶ୍ରୀ, ପୁଣ୍ୟଶ୍ଲୋକ, ଶୁଭକାନ୍ତଙ୍କୁ ଶୁଭେଚ୍ଛା । ମୁଁ ୮ ତାରିଖ ରାତିରେ ଆପଣଙ୍କ ପାଖକୁ ଯାଇଥିଲି ଭେଟ ପାଇଲି ନାହିଁ । ୯ ତାରିଖରେ ଆସି ଜଏନ୍ କଲି । ××× ମୁଁ ଏ ଚାକିରିରେ

ଆଦୌ ସନ୍ତୁଷ୍ଟ ନୁହେଁ । ମୋତେ କିଛି ଭଲ ଲାଗୁନି । ଏଠାକାର ଅଫିସରଙ୍କ ଏବଂ ଅଫିସ୍ ଲୋକଙ୍କ ବ୍ୟବହାର ମୋତେ ତାଟକା କରୁଛି । ସମସ୍ତେ ଯେମିତି ଛେଳି । ଆସିବେ ୧୦ଟାରେ ଅଫିସ୍‌କୁ, ଯିବେ ୭ଟା ୮ଟା ୯ଟାରେ । ଏହି ବଳାତ୍କାର ଅଧସ୍ତନତ୍ୱ ଆରୋପ ମୋତେ ବଡ ବାଧୁଛି । ସାର୍, ସରକାରୀ ଚାକିରିରେ ବି ଏତେ ଦାସତ୍ୱ ଥାଏ ? ମୋତେ ପୁଣି, ଏହି ଅଫିସ୍‌ରେ ରଖିଛନ୍ତି । ବର୍ତ୍ତମାନ କିଛିଦିନ ଫିଲ୍‌ଡକୁ ନଯାଇ ଫାଇଲ୍ କାମ କରିବାକୁ ପଡିବ । ପଢ଼ିବାକୁ ଯମା ବେଳ ପାଉନି । ଏମିତି ଚାକିରି କଲେ ମୁଁ କିଛି କରିପାରିବିନି । ମୋର ବଡ ଆଶଙ୍କା ବ୍ରତ(ସାହିତ୍ୟସେବା)କୁ ଏ ବୃତ୍ତି ଗିଳିଦେବ । ମୁଁ କିଛି ବାଟ ପାଉନି । ଆପଣ କ'ଣ କୁହନ୍ତୁ । ଏଭଳି ମାନସିକ ନିୟନ୍ତ୍ରଣ ଭିତରେ ସ୍ୱାଧୀନତାହୀନ ଭାବରେ ମୋ ଇଚ୍ଛାବିରୁଦ୍ଧ କାମ ମୁଁ ପେଟଲାଗି କରି ବଂଚିବି ତ ? ପ୍ରତି ମୁହୂର୍ତ୍ତରେ ଚାକିରି ଛାଡି ଚାଲିଯିବାକୁ ମନ ହେଉଛି । ଏସବୁ ଦୁଃଖ ଆପଣଙ୍କୁ ଜଣାଇବି କି ନାହିଁ ଭାବି ଭାବି ଚିଠି ଲେଖୁନଥିଲି । ଆପଣଙ୍କ ପରାମର୍ଶକୁ ଶେଷ ସିଦ୍ଧାନ୍ତ ଭାବି ଲେଖିଲି । ଯାହା ଲେଖିବେ ମୁଁ ତାହା କରିବି । ଏ ସବୁ ଚଷୁକୁଟା ଚାକିରି ମୋ ଦେଇ ବୋଧେ ହେବ ନାହିଁ । ଏଠୁ ଛାଡି ଯାଇଁ, ଆପଣ କହିଲେ, ଶିକ୍ଷକ କି ଅଧ୍ୟାପକ ପାଇଁ ନିଜକୁ ପ୍ରସ୍ତୁତ କରିବି । ସେଥିପାଇଁ ମୁଁ ପ୍ରାଣପାତ୍ କରିବାକୁ ପ୍ରସ୍ତୁତ । ଯାହା ହେଉ, କିମିତି କ'ଣ କଲେ ପିଏଚ୍.ଡି. କରିହେବ ମୋତେ ଲେଖନ୍ତୁ । ମୁଁ ଏଠି ଏ କାମରେ ରହିପାରିବି ବୋଲି ଭାବୁନି । ଯଦି ୨ ବର୍ଷ ଭିତରେ ମୋ ମନମୁତାବକ ଚାକିରି ଖୋଜା ଆଉ ପିଏଚ୍.ଡି. କାମ କରିପାରିବି ବୋଲି ଆପଣଙ୍କର ପ୍ରତ୍ୟୟ ଅଛି, ମୋତେ ଜଣାନ୍ତୁ ।

ଏଥର ଏଠୁ ଗଲେ ଆଉ ଦିନେ ଏଭଳି ଚାକିରି ପାଇଁ ଇଣ୍ଟରଭ୍ୟୁ ଦେବିନି । ଏତେଦିନ କଷ୍ଟରେ ବଂଚିଲି, ଆଉ କ'ଣ କେତେଟା ଦିନ ବଂଚି ପାରିବିନି ? ମୋ ଜୀବନର ଲକ୍ଷ୍ୟ ପୂରଣ ନହେଲେ ମୁଁ ସାରାଜୀବନ ଜାଳିହେବି । ମୁଁ ଧନୀ ହେବାକୁ ଚାହେଁନା, ଜୀବନର ମୂଲ୍ୟ ରକ୍ଷା କରିବାକୁ ଚାହେଁ । ମୋ ମନ ବୁଝି ସିଦ୍ଧାନ୍ତମୂଳକ ମନ୍ତବ୍ୟ ଦେବାକୁ କେହି ନାହାନ୍ତି । ମୋର ଏଭଳି କାଳରେ ଆପଣଙ୍କ ନିର୍ଦ୍ଦେଶ ଏକାନ୍ତ ଲୋଡା । ବହୁ ଭାବିଥିଲି ସବୁ ମନକଥା ଚାପି ରଖିବି, କାହାକୁ ଜଣାଇବି ନାହିଁ । ଅସହ୍ୟ ହେବାରୁ ଜଣାଉଛି । ଆପଣ ଯା'କୁ ଗୁରୁତ୍ୱପୂର୍ଣ୍ଣ ଭାବି ନିଷ୍ପତ୍ତି ଜଣାଇବେ । ମୁଁ ଚାହିଁ ରହିଲି । ଇତି ।

ଆପଣଙ୍କର ସ୍ନେହର ସୁଧୀରଚନ୍ଦ୍ର ବେହୁରା

॥୧୩୧ ॥

ଲରମ୍ବା

୧୯ ଏପ୍ରିଲ୍ ୧୯୭୯/ଗୁରୁବାର

ଶ୍ରଦ୍ଧାସ୍ପଦ ସାର୍,

ନମସ୍କାର । ସର୍ବପ୍ରଥମେ ଆପଣଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଯେ 'ପ୍ରଜାତନ୍ତ୍ର ପ୍ରଚାର

ସମିତି' ପକ୍ଷରୁ 'ଝଙ୍କାର'ରେ ଆପଣଙ୍କର ଉଲ୍ଲେଖଯୋଗ୍ୟ ପ୍ରବନ୍ଧ ଲେଖନ କୃତି ଯୋଗୁଁ, ଏଥର (୧୯୭୯) ବିଷୁବ ମିଳନ ଉତ୍ସବରେ ଆପଣଙ୍କୁ ସମ୍ମାନିତ କରାଯାଇଛି । ଏହା ହିଁ ଜଣେ ନିଷ୍ପାପର ସ୍ରଷ୍ଟା ଓ ସାଧକ ପକ୍ଷରେ ସାରସ୍ୱତ ପୀଠର ଯତକିଞ୍ଚିତ ପ୍ରୀତ୍ୟୁପହାର । ଏ ସମ୍ମାନ ଆମ ପାଇଁ ଗୌରବର ବିଷୟ ।

ବିଷୁବ ମିଳନକୁ ଯିବା ନିତାନ୍ତ ଇଚ୍ଛା ଥିବା ସତ୍ତ୍ୱେ ଯାଇ ହେଲା ନାହିଁ । ××× ଯାଇଥିଲେ, ଆପଣମାନଙ୍କ ସହ ସାକ୍ଷାତ ହୋଇପାରିଥାନ୍ତା । ବିଷୁବରେ ଯିବା ପାଇଁ ମୋ ବନ୍ଧୁ ରାଜେନ୍ଦ୍ର (ଶ୍ରୀ ରାଜେନ୍ଦ୍ରକିଶୋର ପଣ୍ଡା) ଓ ବିପିନ (ବିପିନବିହାରୀ ହୋତା, ଯିଏ କି ମୋ' ସାଙ୍ଗରେ ଆପଣଙ୍କ ଘରକୁ ଯାଇଥିଲେ)ଙ୍କୁ ଜଣାଇ ସାରିଥିଲି । ଛାଡନ୍ତୁ, ସେ କଥା ।

ବର୍ତ୍ତମାନ Revision କାମ କରୁଛି ଲିଖିତ ପ୍ରବନ୍ଧମାନଙ୍କର ଏବଂ ଏତିକି ବେଳକୁ କେତେକ ପରୀକ୍ଷାଖାତା ମଧ୍ୟ ପହଞ୍ଚି ଯାଇଛି । Revision ପରେ, ଉପସଂହାର (Conclusion) ଲେଖିବାର ଇଚ୍ଛା । ତାପରେ Final ଉତାରିବା କାମ । ଯଦି ଜୁଲାଇ ଆଡକୁ ସରିଯାଏ ତ ମଙ୍ଗଳ ।

ଆପଣଙ୍କର ପତ୍ର ମୋ' ପାଇଁ ଏକରକମ ପ୍ରେରଣା । ଆପଣଙ୍କ ପତ୍ରଟିଏ ପାଇଲେ, ମୁଁ ସଚେତ ହୋଇଉଠେ । ଯାହାହେଉ, ବିବୁଧେନ୍ଦ୍ର ମିଶ୍ରଙ୍କ '୧୯୪୨' ଗ୍ରନ୍ଥ ସଂପର୍କରେ ସୂଚନା ଦେଇ, ମୋତେ କୃତଜ୍ଞ କରିଛନ୍ତି । ଆଶା ଆପଣ ସପରିବାର କୁଶଳରେ ଅଛନ୍ତି । ଶ୍ରୀମତୀ ବେହେରାଙ୍କୁ ମୋର ନମସ୍କାର ଜଣାଇଦେବେ । ରହୁଛି । ନମସ୍କାରାନ୍ତେ । ଇତି ।

ଆପଣଙ୍କର ଗୁଣମୁଗ୍ଧ ପୂର୍ଣ୍ଣାନନ୍ଦ ଦାନୀ

॥ ୧୩୨ ॥

Mahendra Bhawan
Bhadrak,
Date. ୧୪.୫.୭୯

RAKHAL CHANDRA DAS
ADVOCATE

ପ୍ରିୟ କୃଷ୍ଣବାବୁ,

ମୋର ପ୍ରତି ଅସୀମ ସ୍ନେହ ଓ ଶ୍ରଦ୍ଧା, ଓ ମୋର ଉଦ୍ୟମ ପ୍ରତି ଆପଣଙ୍କର ଗଭୀର ବିଶ୍ୱାସର ପରିଚୟ ରବୀନ୍ଦ୍ର ଜୟନ୍ତୀର (୧୯୭୯) ଉତ୍ସବରେ ପ୍ରତିଫଳିତ ହୋଇଛି । ରବୀନ୍ଦ୍ର ଜୟନ୍ତୀ ସମିତି ଆମ ସମସ୍ତଙ୍କର । କେତେକ ସଂକୀର୍ଣ୍ଣମନାଙ୍କର ଦିନେ ରଟନା ଥିଲା ଏହା ମୋର ବ୍ୟାପାର । ଜୟନ୍ତୀରେ କେତେ ଲୋକ ସହଯୋଗ କରିଛନ୍ତି, କିପରି ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣରେ ଏହା ପରିଚାଳିତ ହେଉଛି, ତାହା ସେମାନଙ୍କୁ ବୁଝାଇବାର

ଆଜି ଆଉ ଆବଶ୍ୟକତା ନାହିଁ । କିନ୍ତୁ ଆପଣଙ୍କ ପ୍ରଚ୍ଛନ୍ନ ସହଯୋଗ ସବୁବେଳେ ମୋର ଉଦ୍ୟମକୁ ପ୍ରେରଣା ଓ ସାହସ ଦେଇଛି । ଆପଣଙ୍କୁ ଧନ୍ୟବାଦ, କୃତଜ୍ଞତା ଜଣାଇଲେ ଏହା ଲୌକିକତା ହେବ ସିନା, ପ୍ରୀତିର ନିଦର୍ଶନ ହେବ ନାହିଁ । ଏଣୁ ପ୍ରକୃତ ବନ୍ଧୁତାର ପରିଚୟ ଓ ମୋର ହୃଦୟର ଆବେଗ ଉପର କେତୋଟି ପଂକ୍ତିରୁ ପ୍ରକାଶିତ ହେବ ବୋଲି ବିଶ୍ୱାସ ରଖି ଆଜିକା ପାଇଁ ରହିଲି । ନମସ୍କାର । ଇତି ।

ସ୍ନେହାଧୀନ

ରାଖାଲ ଚନ୍ଦ୍ର ଦାସ

॥ ୧୩୩ ॥

ଶାନ୍ତିନିକେତନ

୪.୭.୭୯

ପୂଜ୍ୟ ସାର୍,

ପ୍ରଣାମ ଜାଣିବେ । ମୋ ବହି ଆପଣଙ୍କ ପାଖରେ ପହଞ୍ଚିଛି ଜାଣି ସୁଖୀ ହେଲି । ଯେକୌଣସି ସାହିତ୍ୟର ନବଜାଗରଣଠାରୁ ତାର ଆଧୁନିକ ଯୁଗର ସୂତ୍ରପାତ ହେଲା ବୋଲି କହିବା କଥା । ସେ ଦୃଷ୍ଟିରୁ ଆପଣଙ୍କ କଥା ଯଥାର୍ଥ । କାଜାମିଆଁଙ୍କ ଇଂ.ସା. ଇତିହାସରେ ସେ କଥା କୁହାଯାଇଛି । କିନ୍ତୁ ଚାରିଶହ ବର୍ଷ ତଳର ସାହିତ୍ୟକୁ ଆଧୁନିକ ବୋଲି କହିବାକୁ ବୋଧହୁଏ ବିଂଶ ଶତାବ୍ଦୀର ମନ ପ୍ରସ୍ତୁତ ନୁହେଁ । ଏଣୁ ସାହିତ୍ୟର ଆଲୋଚନା କ୍ଷେତ୍ରରେ ବିଂଶ ଶତାବ୍ଦୀକୁ ଆଧୁନିକ ଯୁଗ କହିବା ଏକ ପରମ୍ପରାରେ ପରିଣତ ହେଲାଣି । ଯୁଗ ବିଭାଜନ କ୍ଷେତ୍ରରେ ମୁଁ ଆଲ୍‌ବାର୍ଟ ଆଣ୍ଡ୍ ଷ୍ଟୋନ (Albert & Stone)ଙ୍କୁ ଆଦର୍ଶରୂପେ ଗ୍ରହଣ କରିଛି । ଏଥିରେ ବିଂଶ ଶତାବ୍ଦୀକୁ ଆଧୁନିକ ଯୁଗ ଭାବରେ ଗ୍ରହଣ କରାଯାଇଛି । ଆଲ୍‌ବାର୍ଟଙ୍କ ଇଂ.ସା. ଇତିହାସ ଏକ ଉଚ୍ଚମାନର ଗ୍ରନ୍ଥ ଭାବରେ ଗୃହୀତ ।

ବହିରେ ଛବି ଦେବା କଥା ମୁଁ ଭାବୁନଥିଲି । ପ୍ରକାଶକଙ୍କ ଆଗ୍ରହ ଏଡି ପାରିଲି ନାହିଁ । ପ୍ରକୃତରେ ସେ କାର୍ଟୁନ୍‌ତକ ଦିଆ ହୋଇନଥିଲେ ଭଲ ହୋଇଥାନ୍ତା । ମୋ ଗବେଷଣା ସଂଦର୍ଭରେ କେତେକ ସଂଶୋଧନ ଓ ସଂଯୋଜନ ପାଇଁ ପରୀକ୍ଷକମାନେ ମତ ଦେଇଥିଲେ । ଇଂ.ସା. ଇତିହାସରେ ମାତି ସେତକ କରି ପାରିନାହିଁ । ଏବେ ସେ କାମ ହାତକୁ ନେଉଛି । ଏଠି ଆଉ ସବୁ ଭଲ । ଏମ୍.ଏ. ପରୀକ୍ଷା ଚାଲିଛି । ଆପଣଙ୍କ ଚିଠି ମୋତେ ଯଥେଷ୍ଟ ଉତ୍ସାହ ଦେଇଛି ।

ଇତି

ସ୍ନେହାଧୀନ ଛାତ୍ର

ଶ୍ୟାମସୁନ୍ଦର ମହାପାତ୍ର

## ॥ ୧୩୪ ॥

ସାନ୍ଧ୍ୟ କଲେଜ
ବାଲେଶ୍ୱର
୧୯.୦୮.୭୯

ମାନନୀୟେଷୁ ମହାଶୟ,

ମୋର ଶ୍ରଦ୍ଧା, ସମ୍ମାନ ଏବଂ ନବବର୍ଷର ଶୁଭେଚ୍ଛା ଗ୍ରହଣ କରିବେ । ବହୁଦିନ ଧରି ଅପଣଙ୍କ ସହିତ ସାକ୍ଷାତ ହୋଇନାହିଁ । ଗୋଟିଏ ସୁଯୋଗ ମାଧମରେ ଆମ୍ଭମାନଙ୍କର ସାକ୍ଷାତର ବ୍ୟବସ୍ଥା କରାଯାଉଛି । ପ୍ରତିବର୍ଷ ବାଲେଶ୍ୱର evening collegeରେ humanities faculty ତରଫରୁ ଗୋଟିଏ ମାତ୍ର ସାମ୍ବତ୍ସରିକ ସଭା କରାଯାଏ । ଏବର୍ଷ କେବଳ ଓଡ଼ିଆ ସାହିତ୍ୟ ସମାଜ ଆନୁକୂଲ୍ୟରେ ଗୋଟିଏ ସାହିତ୍ୟ ସଭାର ଆୟୋଜନ କରାଯାଉଛି । ଏଥିନିମନ୍ତେ ଆପଣଙ୍କର ଅଭିଭାଷଣରେ ସମାଜର ଶୁଭେଚ୍ଛୁମାନେ ଆଶାୟୀ ଏବଂ ତେଣୁ ଆନୁଷ୍ଠାନିକ ଭାବେ ନିବେଦନ ପତ୍ର ପ୍ରେରିତ ହେବା ପୂର୍ବରୁ ଆପଣଙ୍କର ମତ ଲୋଡୁଛି । ଆଶା ଆପଣ ଆମ୍ଭମାନଙ୍କୁ ପ୍ରତ୍ୟାଖ୍ୟାନ କରିବେ ନାହିଁ ।

ଜାନୁଆରୀ ୨୮ରୁ ୩୧ ମଧ୍ୟରେ ସାମ୍ବତ୍ସରିକ ଉତ୍ସବଟି ଉଦ୍‌ଯାପିତ ହେବ । ମୁଖ୍ୟବକ୍ତାଙ୍କୁ(ଆପଣଙ୍କୁ) ଆମ୍ଭେମାନେ ୫୦ଟଙ୍କା ମାତ୍ର ଦେବୁ । ତାକୁ T.A. ଦେଇ ହେବକି ନାହିଁ ସେ ବିଷୟରେ ସନ୍ଦେହ ଅଛି । ଆପାତତଃ ଏତିକି ମଧ୍ୟରେ ସନ୍ତୁଷ୍ଟ ହେବା ଅପମାନଜନକ ହେଲେବି ଆପଣଙ୍କ ସହିତ ମୋର ବ୍ୟକ୍ତିଗତ ସଖ୍ୟ ଦୃଷ୍ଟିରୁ ଆପଣ ମୋତେ ସମ୍ଭବତଃ ନିରାଶ କରିବେ ନାହିଁ । ତାଛଡା ମୋର Ph.D. guide ଭାବେ ମୁଁ ମନେମନେ ଆପଣଙ୍କୁ ଗ୍ରହଣ କରି ଯେତିକି ବାଟ ଅଗ୍ରସର ହୋଇଛି ସେ ସବୁର ସୂଚନା ଦେବାର ମୁଁ ଏକ ସୁଯୋଗ ପାଇବି । ପିଲାମାନେ guest ଆଦିଙ୍କୁ honorarium ଦେବାର କିପରି ପ୍ରତିକୂଳ ମନୋଭାବାପନ୍ନ ସେକଥା ଆପଣଙ୍କୁ ସୂଚନା ଦେବା ଅନାବଶ୍ୟକ । ଆପଣଙ୍କୁ ମୋର ଆଣିବାର ଏକାନ୍ତ ଇଚ୍ଛା । ଶୀଘ୍ର ଲେଖିବେ, ଆସିଲେ ଅନ୍ୟାନ୍ୟ । Evening ଓ Day collegeର ପ୍ରୋଗ୍ରାମମାନ ପର ଚିଠିରେ ଆପଣଙ୍କୁ ଦେବୁଁ । ତଦନୁସାରେ Date fixation ହେବ । ଆପଣ ଆସିଲେ ଆମ ବ୍ୟାସବିହାର ଅନୁଷ୍ଠାନରେ ଗୋଟିଏ ବକ୍ତୃତା ମଧ୍ୟ ଦେବେ । ମୁଁ ରବିବାବୁଙ୍କୁ କହି ତାର ଆନୁଷଙ୍ଗିକ କାର୍ଯ୍ୟାବଳୀର ସଂଗଠନାଦି କରାଇବି । କୁଶଳରେ ଥାଆନ୍ତୁ । ଚିଠି ଦେବେ । ରହିଲି । ଇତି

ଶୁଭାନୁଧ୍ୟାୟୀ
ଦୁର୍ଗାପ୍ରସନ୍ନ ପଣ୍ଡା

॥ ୧୩୫ ॥

ବାଣୀବିହାର
୨୫.୯.୭୯

ସାର୍,

ମୋର ପ୍ରଣାମ ନେବେ । ମା'ଙ୍କୁ ପ୍ରଣାମ ଓ ପିଲାମାନଙ୍କୁ ସ୍ନେହ । ଆମେ ଏଠାରେ ଭଲରେ ଅଛୁ । ୨୭ରୁ ପୂଜାଛୁଟି ହେଉଛି-୧୫ ପର୍ଯ୍ୟନ୍ତ ଆପଣ ଛୁଟି ଭିତରେ କିଛି ସମୟ ପାଇଁ ଆମ ଘରକୁ ପିଲାମାନଙ୍କୁ ନେଇ ଆସି ପାରିଲେ ଭଲ ହୁଅନ୍ତା । ମୁଁ ସୁବିଧା ଦେଖି ଯିବି, ଅନେକ କଥା ଆଲୋଚନା କରିବାକୁ ଅଛି ।

ଆମ ଓଡ଼ିଆରେ Nursery Rhymesର କୌଣସି ସଂକଳନ ଅଛି କି ? ମୁଁ ଆଦିବାସୀ ଓ ସାଧାରଣ ପିଲାଙ୍କ ପାଇଁ (୨ରୁ ୭ ବର୍ଷ ପର୍ଯ୍ୟନ୍ତ) ମାୟ ୫୦ଟି ଗୀତ ଓ ୫୦ଟି ଗପ ସଂଗ୍ରହ କରିବାକୁ ଚାହୁଁଛି- ଯେଉଁଗୁଡ଼ିକୁ ବାପା-ମା' ଓ ଶିକ୍ଷକମାନେ ପଢ଼ି ଓ ବୋଲି ପିଲାଙ୍କୁ ଶୁଣାଇ ପାରିବେ । ମୁଁ ଏବେ କୋରାପୁଟ ଓ ଫୁଲବାଣୀରେ ୧୫ ଦିନ ବୁଲି ବୁଲି ଫେରିଲି । ଆଦିବାସୀ ପିଲାଙ୍କୁ ଶୁଦ୍ଧ ଓଡ଼ିଆ କହି, ଲେଖି ଓ ପଢ଼ି ଶିଖାଇବା ଆଜି ଶିକ୍ଷକ, ଶିକ୍ଷାବିତ୍ ଓ ମନୋବିଜ୍ଞାନୀମାନଙ୍କ ପାଇଁ ଏକ ଚିନ୍ତାର ବିଷୟ । ମୁଁ Pre-school ପିଲାଙ୍କ ପାଇଁ ଶୁଣି, ମନେ ରଖି କହିପାରିବା ଭଳି ଗପ ଓ ଗାଇପାରିବା ଭଳି ଗୀତର ଏକ ସଂକଳନ ଚାହୁଁଛି । ଏପରି ଯଦି ନଥାଏ-ତେବେ ମୁଁ ଏଭଳି ଏକ ସଂକଳନ ପ୍ରସ୍ତୁତ କରିବାକୁ ଚାହୁଁଛି । ଏଥିପାଇଁ ଆପଣଙ୍କ ସାହାଯ୍ୟ ମୋର ଏକାନ୍ତ ଆବଶ୍ୟକ । ଏଇ କଥା ପରେ ସାକ୍ଷାତରେ ଆଲୋଚନା କରିବାକୁ ଚାହୁଁଛି ।

ଆପଣ ଆମମାନଙ୍କୁ ଉତ୍ସର୍ଗ କରିଥିବା 'ଚରୁ ଓ ଚରିତ'ରୁ କେତୋଟି ଲେଖା ପଢ଼ିଲି । ସେଥିପାଇଁ ମୁଁ ଗର୍ବିତ । ପରେ ଆପଣଙ୍କ ସହିତ ସାକ୍ଷାତରେ ଅନ୍ୟାନ୍ୟ । ଇତି ।

ସ୍ନେହାଧୀନ
**ଡକ୍ଟର** ଶ୍ରୀକାନ୍ତ ଦାସ

॥ ୧୩୬ ॥

ଯାଜପୁର
୪.୧୨.୭୯

ପ୍ରୀତିଭାଜନେଷୁ,

'ପ୍ରଣତି ଜଣାଉଛି । ଗଲାକାଲି ପଠାଇଥିବା ପତ୍ର ଆଜି ପାଇବେ ବା ପାଇଥିବେ । ବିରଜା ବକ୍ତୃତାମାଳାର ଆଉ ଆଠୋଟି ପ୍ରତିଳିପି ଆଜି ପାଇପାରନ୍ତି । କାଲି ଆପଣଙ୍କ ପତ୍ର ପାଇବାମାତ୍ରେ ଏହା ଡାକଯୋଗେ ଏଠୁଁ ପଠାଯାଇଥିଲା ।

'କଳିଙ୍ଗକବି' ବିଷୟକ ଅଭିମତ ମୋତେ ବିଶେଷ ଅଭିଭୂତ କରିଛି । ଆପଣଙ୍କର ସ୍ରଷ୍ଟା ଅନ୍ତରର ଉଦାରତା ଏ ଅଭିମତକୁ ପ୍ରାଣସ୍ପର୍ଶୀ କରୁଥିବାର ବିଶେଷ ସହାୟକ ହୋଇଛି ବୋଲି ମୋର ଧାରଣା । ଏଭଳି ଉଦାରତା, ବଂଧୁତ୍ୱ ଓ ଅନ୍ତର୍ଦୃଷ୍ଟି ସାଂପ୍ରତିକ ଓଡ଼ିଶାରେ କ୍ରମେ ଦୁର୍ଲଭ ଓ ସ୍ଥଳବିଶେଷରେ ବିରଳ ହୋଇଉଠୁଥିବାରୁ ଜୀବନଟା ଆଜି ଏତେ ଦୁର୍ବହ । କଳିଙ୍ଗକବି ଆଜିକି ୨୩ବର୍ଷ ତଳର ଲେଖା । ବହୁ ବିଳମ୍ବରେ ଏହା ପ୍ରକାଶିତ ହେଲା । ଯାହାହେଉ ପ୍ରକାଶନ ପରେ ନାଟ୍ୟକାର ଶ୍ରୀ ଦେବେନ୍ଦ୍ର ପ୍ରସାଦ ସିଂହ, ଡକ୍ଟର ହେମନ୍ତକୁମାର ଦାସ ଓ ଆପଣଙ୍କ ଭଳି ବହୁ ପୋଖତ୍ ଶିଳ୍ପୀମାନଙ୍କର ଏହା ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କରିଥିବା, ମୋ ପକ୍ଷେ ଅତ୍ୟନ୍ତ ଆନନ୍ଦର ବିଷୟ । ୨ୟ ସଂସ୍କରଣରେ ଆପଣଙ୍କର ବିଜ୍ଞ ଅଭିମତଗୁଡ଼ିକୁ ପ୍ରଦାନ କରିବାର ବାସନା ରହିଛି (ଯଦି ସେଗୁଡ଼ିକୁ ପୁସ୍ତକ-ସନ୍ନିବେଶିତ କରିବାରେ ଆପଣମାନଙ୍କର ଆପତ୍ତି ନଥାଏ) । 'କଳିଙ୍ଗକବି' ପ୍ରକାଶିତ ହେବାର କେତେମାସ ପରେ ଡ. ଦାସ ସେ ସମ୍ବନ୍ଧରେ ତାହାଙ୍କର ମୁଗ୍ଧାନୁଭବକୁ 'ଝଙ୍କାର'ରେ ପ୍ରକାଶ କରିଥିଲେ । କାବ୍ୟ-ନାଟିକାଟିର ବେତାର ରୂପାନ୍ତର ପାଇଁ ଆକାଶବାଣୀ, କଟକ ପକ୍ଷରୁ କଳ୍ପନାଜଳ୍ପନା ଚାଲିଥିବାର ଶୁଣାଯାଏ । ଏହାର ବେତାର-ସମୀକ୍ଷା ଭାର ହୁଏତ ଆପଣଙ୍କ ଉପରେ ପଡ଼ିପାରେ ।

ମୋ ନାଟ୍ୟ ସୃଷ୍ଟିରେ 'ପରିସମାପ୍ତି' ଆସିନି । ଏହା ପୂର୍ବରୁ ଓ ପରେ ଲିଖିତ ଗୋଟିଏ ପୂର୍ଣ୍ଣାଙ୍ଗ ସାମାଜିକ ନାଟକ ଓ ବାରିପଦା ତଥା ପାରଳାଖେମୁଣ୍ଡିରେ ଅଭିନୀତ ହୋଇଥିବା ଦୁଇ ତିନୋଟ ଏକାଙ୍କିକା ଅଦ୍ୟାପି ଅପ୍ରକାଶିତ ଅବସ୍ଥାରେ ରହିଛି । 'କଳିଙ୍ଗକବି' ତୁଲ୍ୟ 'କଲ୍ଲୋଳ କବି'ଙ୍କ ବିଷୟରେ ଆଉ ଖଣ୍ଡେ କାବ୍ୟ-ନାଟିକାର ପ୍ରକଳ୍ପ, ଏହାର ରୂପାୟନ ପାଇଁ ଭବିଷ୍ୟତକୁ ଅପେକ୍ଷା କରି ରହିଛି । କେବେ ସେ ଭବିଷ୍ୟତ ଆସିବ ଜାଣେନା । ଏହା ଭିନ୍ନ ମୋର ନିରବଚ୍ଛିନ୍ନ ସାଧନାର ଆକାଶର ଆହ୍ୱାନ(ଉପନ୍ୟାସ), କଥାକାର ସୁରେନ୍ଦ୍ର ମହାନ୍ତି(ଯାହାର ପରିବର୍ଦ୍ଧିତ ୨ୟ ସଂସ୍କରଣ ଜାନୁଆରୀରେ ପ୍ରକାଶ ପାଇବ), ନେପଥ୍ୟ ତରଙ୍ଗ(କ୍ଷୁଦ୍ରଗଳ୍ପ), ଆଧୁନିକ ଔପନ୍ୟାସିକ କଳା ଓ ଝଂକା, ରାଜ୍ୟ ସରକାରଙ୍କ ପୁରସ୍କାର ପ୍ରାପ୍ତ ୩ଟି ଶିଶୁସାହିତ୍ୟ ପୁସ୍ତକ ଓ ଅନ୍ୟାନ୍ୟ କୃତିଗୁଡ଼ିକ କ'ଣ ଆଜିଯାଏ ଆପଣଙ୍କ ଦୃଷ୍ଟି ଏଡ଼ାଇ ଯାଇଛି ? 'ସୀମାବଦ୍ଧ ସିଦ୍ଧିରେ' ମୁଁ 'ସନ୍ତୁଷ୍ଟ' ବୋଲି ଆପଣଙ୍କର ଯେଉଁ ଧାରଣା, ତାହା ହୁଏତ ଦୂର ହୋଇ ପାରିଥାନ୍ତା, ଆପଣ ମୋର କୃତିଗୁଡ଼ିକୁ ପଢ଼ିବାର ଅବକାଶ ମୁଁ ସୃଷ୍ଟି କରିପାରିଥିଲେ । ବଂଧୁ ଭାବରେ ଏହା କରିପାରି ନଥିବାରୁ ମୁଁ ସେଥିଲାଗି ଦୁଃଖିତ ।

ସତ କହିଲେ, ନାଟକ ପରେ ନାଟକ ବା କ୍ଷୁଦ୍ରଗଳ୍ପ ପରେ କ୍ଷୁଦ୍ରଗଳ୍ପ ଲେଖିବା ମୋ ସୃଷ୍ଟିଧାରାରେ ସମ୍ଭବ ହୋଇନାହିଁ । ଯେତେବେଳେ ଯେଉଁ ଭାବ ମୋ ମନକୁ ଅସ୍ଥିର କରିଛି, ତାହାକୁ କେଉଁ ବିଭାଗରେ ପ୍ରକାଶ କରିବି, ଏତିକିମାତ୍ର ଚିନ୍ତି ମୁଁ କେତେବେଳେ ପ୍ରବନ୍ଧ, କେତେବେଳେ ଉପନ୍ୟାସ, କେତେବେଳେ କ୍ଷୁଦ୍ରଗଳ୍ପ ଇତ୍ୟାଦି ଲେଖିଚାଲିଛି । ଚେତନ ମନରେ ସଂଗ୍ରାମକୁ ମୁଁ ବିଶ୍ୱାସ କରିଛି । ସିଦ୍ଧି ମୋର ଅବଚେତନାର 'ସ୍ୱଗତ' ହୋଇ

ଥାଇପାରେ । ହେଲେହେଁ ଏଥିପାଇଁ ବ୍ୟାଧିତ ଶ୍ୱାନ ଯୁଦ୍ଧରେ ମୁଁ ଯୋଗଦେଇନାହିଁ । ଏ ଦେଶର ସାହିତ୍ୟିକ ବାତାବରଣ ଯେତେବେଳେ ମୋତେ ଜ୍ଞାନ-ବିଜ୍ଞାନ ବା ଗବେଷଣା କ୍ଷେତ୍ରରେ କବର ଦେବାକୁ ବର୍ଷ ବର୍ଷ ଧରି ହୀନ ଚକ୍ରାନ୍ତ କରିଛି, ସେତେବେଳେ ମୁଁ ବଂଚିଛି, ଲେଖନୀ ଚଳାଇଛି କେବଳ ସଂଗ୍ରାମର ଉନ୍ମାଦନାରେ । ତେଣୁ ସିଦ୍ଧିର ପର୍ବ ଏଠି ଗୌଣ, ଅପାଙ୍‌କ୍ତେୟ, ଅଲୋଡ଼ା । ମୋର 'ନେପଥ୍ୟ ତରଙ୍ଗ' (ଗ୍ରନ୍ଥମନ୍ଦିର) ପୁସ୍ତକର 'ଶୂନ୍ୟତାର ଆତ୍ମନେପଦି', 'କବର' ପ୍ରଭୃତି ଗଳ୍ପରୁ ଆପଣଙ୍କ ତୁଲ୍ୟ ନିପୁଣ ସ୍ରଷ୍ଟା ଏହା ସହଜରେ ପାଇପାରିବେ ବୋଲି ଆଶା । ଜୀବନର 'ନେପଥ୍ୟ'ରୁ ମାନବମନର ଯେଉଁ 'ତରଙ୍ଗ' ମୁଁ ଅନ୍ୱେଷଣ କରିଚାଲିଛି, ତାହା ତ ସ୍ଥିର ନୁହେଁ । ତେଣୁ 'ସ୍ଥିର' ରହିବି କିପରି ? ଆପଣଙ୍କର ବିପୁଳ ଦରଦ ଓ ଅନୁରାଗୀ ମନର ସ୍ନେହ, ସଦିଚ୍ଛାକୁ ମୁଁ ମଥାନତ କରି ଗ୍ରହଣ କରିନେଇଛି । ଏହାହିଁ ହେବ ମୋର ଆଗାମୀ ସୃଷ୍ଟି ପାଇଁ ଅମୂଲ୍ୟ ପାଥେୟ, ଏବଂ ମୋର ଏକଚକ୍ରୀ ସାରଥୀ ପାଇଁ ଅମିତ ଗତିଶୀଳତାର ଦିବ୍ୟ ପ୍ରେରଣା ।

ଆପଣଙ୍କର ପତ୍ରାଙ୍କିତ ଜିଜ୍ଞାସା ପୂରଣ କରିବାକୁ ମୋର ଏ ବିନମ୍ର ଆତ୍ମଲିପି କେତେକାଂଶରେ ସମର୍ଥ ହେବ ବୋଲି ଆଶା । × × × ରହୁଛି । ବିଦାୟ ଦିଅନ୍ତୁ ।

ସ୍ନେହାଧୀନ ପୀତାମ୍ବର ପ୍ରଧାନ

॥ ୧୩୭ ॥

୦୬/୧୨/୧୯୭୯

ଶ୍ରୀ ବାଉରୀବନ୍ଧୁ କର,
ଅଧ୍ୟାପକ, କେନ୍ଦୁଝର କଲେଜ,
କେନ୍ଦୁଝର ।

ପୂଜାସ୍ପଦ ସାର୍‌,

ସଭକ୍ତି ପ୍ରଣାମ ନେବେ ।

ବିରଜା ବକ୍ତୃତାମାଳାରେ ଆପଣଙ୍କ 'ପଞ୍ଚଦଶ ଶତାବ୍ଦୀ ପରବର୍ତ୍ତୀ ଓଡ଼ିଶାର ଧର୍ମଧାରା' ପାଠ କରି ଅତ୍ୟନ୍ତ ପ୍ରୀତ ହେଲି । ଯାଜପୁର ଏନ୍‌.ସି. କଲେଜର ଜଣେ ପ୍ରାକ୍ତନ ଛାତ୍ର ଭାବରେ ବିରଜା ବକ୍ତୃତା ପ୍ରତି ମୋହ ରହିଛି । ଏଣୁ ପ୍ରାୟ ସବୁ ବର୍ଷ ବିରଜା ବକ୍ତୃତା ଶୁଣେ, ଓ ବହି ବାହାରିଲେ ପଢେ । କିନ୍ତୁ ଗତବର୍ଷ ଆପଣଙ୍କ ବକ୍ତୃତା ଶୁଣିବାର ସୁବିଧା ମିଳିଲା ନାହିଁ, ତଥାପି ମୁଦ୍ରିତ ବକ୍ତୃତା ପଢି ବହୁ ନୂତନ ବିଷୟ ଜାଣିଲି । ଆପଣଙ୍କ ପ୍ରବନ୍ଧ ଜଣେ ସଚେତନ ସାହିତ୍ୟର ଛାତ୍ର ଭାବରେ ଅଧ୍ୟୟନ କରିଛି । ଆପଣ ଊନବିଂଶ ଶତକ ପର୍ଯ୍ୟନ୍ତ ଆଲୋଚନାରେ ସାଂସ୍କୃତିକ; ଐତିହାସିକ, ସାହିତ୍ୟିକ ଦୃଷ୍ଟିକୋଣକୁ ଗୁରୁତ୍ୱ ଦେଇଛନ୍ତି । ମାତ୍ର ସାଂପ୍ରତିକ ସ୍ଥିତିରେ ଧର୍ମଧାରା ଆଲୋଚନା ପ୍ରସଙ୍ଗରେ କେବଳ ଐତିହାସିକ ପ୍ରେକ୍ଷାପଟକୁ ଆଲୋଚନା କରି ନିରବ ରହିଛନ୍ତି । ଅବଶ୍ୟ ସାଂପ୍ରତିକ ସ୍ଥିତି ସମ୍ପର୍କରେ

ଆନ୍ତର୍ଜାତିକ ଦୃଷ୍ଟିକୋଣରୁ ଆଲୋଚନା କରିଛନ୍ତି । ସାହିତ୍ୟରେ ଏହାର ପଦଚିହ୍ନକୁ ଗୁରୁତ୍ୱ ଦେଇନାହାନ୍ତି । ମୋର ସାଧାରଣ ମତରେ ସାଂପ୍ରତିକ ସାହିତ୍ୟରେ ଧର୍ମଧାରାର ସ୍ଥିତି ବଡ ଅସ୍ୱଚ୍ଛ । ଏଣୁ ଆପଣମାନଙ୍କ ପରି ଗବେଷକମାନେ ଏସବୁ ସ୍ଥିତିର ସ୍ୱଚ୍ଛ ରୂପ ଦେବା ଉଚିତ । ଆଶା ଝଙ୍କାରରେ 'ସାଂପ୍ରତିକ ସାହିତ୍ୟରେ ଧର୍ମଧାରା' ଆଲୋଚନା କରିବେ । ଏ ଆପଣଙ୍କ ନିକଟରେ ଜଣେ ଛାତ୍ର ଭାବରେ ଅନୁରୋଧ । ××× ମୁଁ ଭଦ୍ରକରୁ କେନ୍ଦୁଝରେ ବଦଳି ହେଲିଣି । ଏଠାରେ ଭଦ୍ରକ ପରି ସାଂସ୍କୃତିକ ପରିବେଶ ନାହିଁ । ଭଦ୍ରକ କଲେଜର ଗଣ୍ଡଗୋଳ ବାତାବରଣ କେନ୍ଦୁଝରରେ ନାହିଁ । ଏଣୁ ଲାଭ କ୍ଷତି ସମାନ । ତଥାପି ଭଦ୍ରକର ସାଂସ୍କୃତିକ ପରିବେଶ ମନରେ ଆସୁଛି । ରହୁଛି–ଆପଣଙ୍କ ସିଧା ସଳଖ ମୁଁ ଛାତ୍ର ନୁହେଁ, ପ୍ରବନ୍ଧ ପାଠ କରି ମୁଁ ଆପଣଙ୍କ ଛାତ୍ର ମନେକରେ । ଏଣୁ ମୋର ଏ ମନ୍ତବ୍ୟ ଆପଣଙ୍କ ପ୍ରବନ୍ଧ ସମ୍ପର୍କରେ ଛାତ୍ରସୁଲଭ ଜାଣିବାର ଇଚ୍ଛା ବୋଲି ଗ୍ରହଣ କରିବେ । ଅନ୍ୟଥା ଭାବିବେ ନାହିଁ । ଇତି ।

ଆପଣଙ୍କର ସ୍ନେହାନୁରକ୍ତ

ବାଉରୀବଂଧୁ

॥ ୧୩୮ ॥

୧୨/୧୨/୧୯୭୯

ବରଗଡ

ପରମ ପୂଜନୀୟ ସାର,

ସଭକ୍ତି ପ୍ରଣାମ ଗ୍ରହଣ କରିବେ । ଆପଣଙ୍କ ଚିଠି ପାଇଚି । ମାତ୍ର ଧନୁଯାତ୍ରା ସଂପର୍କରେ ସବୁକଥା ବୁଝିପାରି ନଥିବାରୁ ଉତ୍ତର ଦବାରେ ବିଳମ୍ବ ଘଟିଲା । ପ୍ରଥମେ ଦୟାଲାଲ୍ ବାବୁଂକ କଥାରୁ ଯାହା ଜାଣିଲି, ଏ ଯାତ୍ରାର ଇତିହାସ ସେତେ ପୁରୁଣା ନୁହେଁ । ମାତ୍ର କୋଡିଏ ବର୍ଷର କଥା । ଆରମ୍ଭ ହେବାର ତିନିବର୍ଷ ପରେ ଏହା ୫/୬ ବର୍ଷ ପାଇଁ ବଂଦ ହେଇ ପୁଣି ଏବେ ଚାଲିଛି । ସେ ପାଇଁକି ଏ ଯାତ୍ରା ଉପରେ ଏତେ ଗୁରୁତ୍ୱ ଦେଲେନାହିଁ । ମାତ୍ର ଅନ୍ୟ କେତେକ କର୍ମକର୍ତ୍ତା ଓ ସାଧାରଣ ଲୋକଙ୍କଠାରୁ ଯାହା କଥା ସଂଗ୍ରହ କରିଛି, ଧନୁଯାତ୍ରାର ଲୋକପ୍ରିୟତା ଏବେର ଓଡ଼ିଶାର ଅନ୍ୟାନ୍ୟ ଲୋକନାଟ୍ୟଗୁଡିକଠାରୁ ଯଥେଷ୍ଟ ଅଧିକ । ଧନୁ ଯାତ୍ରା ବ୍ୟତୀତ ଶୀତଳ ଷଷ୍ଠୀ ମଧ୍ୟ ଏ ଅଞ୍ଚଳର ଆଉ ଗୋଟିଏ ବଡ ଯାତ୍ରା । ଏସବୁ ବିଷୟରେ ଅନେକ କଥା ସଂଗ୍ରହ କରିଚି । ସୁନ୍ଦର ଦୀର୍ଘ ଆଲୋଚନାଟିଏ ହୋଇପାରିବ । ଏ ଛୁଟିରେ କଟକ ଗଲେ ସାକ୍ଷାତରେ ସମସ୍ତ କଥା କହିବି । ଏବର୍ଷ ଏହା ୨୩ ତାରିଖଠାରୁ ଦଶଦିନ ଧରି ଚାଲିବ ।

ଏଠି ଅଧ୍ୟାପନା କରୁଥିବା ସମସ୍ତ ଅଧ୍ୟାପକଙ୍କ ଭିତରେ ସଚେତନା ସ୍ତରରେ କେମିତି ବାର୍ଦ୍ଧକ୍ୟ ଆସିଯାଇଛି । ××× 'ଆଲୋଚନା' ଲେଖାଲେଖି କରିବା ପାଇଁ ଉପଦେଶ ଦେଉଛନ୍ତି । ବହିପତ୍ର ପାଇଲେ ତ ? ପାଠାଗାର ପୂରାପୂରି ଖାଲି । ଅଧ୍ୟାପକମାନଙ୍କ ଆଲମିରାରେ

କିଛି ନାହିଁ । ଅମୁକ ବହି ଅଛି ? – କହିଲେ, ନିରାଶ ହେବାକୁ ପଡୁଚି । ଏପରି ପରିବେଶରେ କେମିତି କ'ଣ କରିବି ଚିନ୍ତା କରୁଛି । ମା'ଙ୍କ ଇଚ୍ଛା ।

ଏଇ ମାସରେ କୋଡୋଟି ଗପ ପ୍ରକାଶ ପାଇବ ବୋଲି ଚିଠି ପାଇଚି । ଶଙ୍ଖଝର, ପାଂଚଜନ୍ୟ, ମଧୁଲିକା ଓ ରଚା । ଜାଣିନି ପ୍ରକାଶ ପାଇଲାଣି କି ନାହିଁ । ଆସନ୍ତାକାଲି, ଝଙ୍କାର ବ୍ୟତୀତ ଏଠିକୁ ଅନ୍ୟ ପତ୍ରିକା ଆସେନା ।

ଦେହପା' ଏଠି ଭଲ ରହୁନି ।

ସାବି କଥା ଲେଖିଛନ୍ତି ? ନିର୍ଦ୍ଦିଷ୍ଟ ସମୟ ଆଗରୁ ପୁଅଟିଏ ହୋଇଚି । ଗଲାମାସ ୧୭ ତାରିଖରେ । ଯାଇପାରିନି ଏଯାବତ୍ ଘରକୁ । ଖାଲି ଟେଲିଗ୍ରାମ ପାଇଚି ଯିବାପାଇଁ। ପ୍ରିନସପାଲ୍ ଛୁଟି ଦେଉନାହାନ୍ତି । ତାର ସେନ୍ସ ଚାଲିଯାଉଛି ଓ ସନ୍ନିପାତ ହେଇଯାଉଛି । ତେଣୁ ଗଭୀର ମାନସିକ ଯନ୍ତ୍ରଣାରେ ସଢୁଛି । କଟକ ଗଲେ, ଆଉ ସବୁ କଥା । ଇତି ।

ସ୍ନେହାଧୀନ

ଗୌରାଙ୍ଗ ଦାଶ

॥ ୧୩୯ ॥

ବାରିପଦା

୧୮.୧.୮୦

ସାର୍,

ଆପଣଙ୍କ ଚିଠି ଓ Tentative Schemeଟି ଠିକ୍ ସମୟରେ ପାଇଛି । ଆପଣ କହିବା ଅନୁସାରେ ଲାବଣ୍ୟ ଦେବୀଙ୍କ ପାଖକୁ ଚିଠି ଲେଖିଥିଲି । ଏ ଯାଏଁ ତାଙ୍କଠାରୁ ଉତ୍ତର ପାଇନାହିଁ । ସେ ଯାହାହେଉ, ମୁଁ ମୋ ସ୍ୱାମୀଙ୍କ ସହ ୨୨ ତାରିଖ ଦିନ କଟକ ଯାଉଛି । ୨୩ ତାରିଖ ସକାଳେ ଆମେ ଅଡ଼ଙ୍ଗ ଯିବୁ । ଯଦି ସମ୍ଭବ ହୁଏ ଫେରନ୍ତା ବାଟରେ ଆପଣଙ୍କ ସଂଗେ ଦେଖା କରିବୁ ।

ଆପଣ ଲେଖିଛନ୍ତି ପ୍ରାଥମିକ କାର୍ଯ୍ୟ ଏପ୍ରିଲ ମାସ ସୁଦ୍ଧା ଶେଷ କରିବାପାଇଁ । ମୁଁ କଲିକତା ଚିଠି ଲେଖିଛି । ଏଯାଏଁ ବହିପତ୍ର ଯୋଗାଡ ହୋଇନାହିଁ । ମୁଁ ଯେଉଁଠାରେ ପଚାରୁଛି 'ଟୀକା ଗୋବିନ୍ଦଚନ୍ଦ୍ର' ପାଉଛି । ଗୋବିନ୍ଦଚନ୍ଦ୍ରଗୀତ ପାଉ ନାହିଁ । କଟକରେ ମଧ ଚେଷ୍ଟା କରିବି । ଆପଣ ନିଶ୍ଚୟ ଭାବୁଥିବେ ମୁଁ ପ୍ରଥମରୁ ଠକଉଛି ବୋଲି । କିନ୍ତୁ ପ୍ରକୃତରେ ମୁଁ ଶୁଆଭଳି ଆପଣ ଯାହା କହିବେ ଠିକ୍ ସେହିପରି କରିବି । ଆଙ୍ଗୁଳି ଦେଖେଇଲେ ବାହା ଗିଳିବା ଭଳି ବୁଦ୍ଧି ମଧ ମୋର ନାହିଁ । ମୋ ଲାଗି ଆପଣଙ୍କୁ ଟିକେ ବେଶୀ ପରିଶ୍ରମ କରିବାକୁ ପଡିବ । ତେଣୁ ମୋ ଉପରେ ରାଗିବେନି ।

ମୋର ପ୍ରଣାମ ନେବେ । ଶ୍ରୀମତୀଙ୍କୁ ମୋର ଶୁଭେଚ୍ଛା । ପିଲାମାନଙ୍କୁ ସ୍ନେହ । ରହୁଛି ।

ପଦ୍ମଶ୍ରୀ ଦାସ

॥ ୧୪୦ ॥

C/26, S. U. Campus
Burla, Sambalpur 768017
22nd January 1980

ମାନନୀୟେଷୁ,

ପ୍ରଣତି । ବହୁଦିନରୁ ପତ୍ରାଳାପ କରିନାହିଁ । ଅନୁଷ୍ଠାନଟିକୁ ଏବଂ ଜର୍ଣ୍ଣାଲ୍‌ଟିକୁ ବଞ୍ଚାଇବା ପାଇଁ ଆପ୍ରାଣ ଉଦ୍ୟମ ଚଳାଇଛି । ଶେଷ ଭଗବତ୍ କୃପା ।

xxx xxx xxx

ତୃତୀୟ ସଂଖ୍ୟାଟି ପ୍ରଫେସର ସୁବୋଧଚନ୍ଦ୍ର ସେନଗୁପ୍ତଙ୍କୁ ସମ୍ମାନ ଜଣାଇବ । ଏଣୁ ଆବଶ୍ୟକୀୟ ଲେଖା ସଂଗ୍ରହ କରୁଛି । କେତେକ ସଂଗ୍ରହ ହୋଇ ରହିଛି । ଆଉ ଗୋଟିଏ ଦୁଇଟି ହେଲେ ଚଳିବ । କିନ୍ତୁ ଅର୍ଥାଭାବ, ଗତ ସଂଖ୍ୟା ବାବଦକୁ ବଳରାମବାବୁଙ୍କୁ ସବୁ ଟଙ୍କା ଦିଆ ହୋଇନାହିଁ ।

ନିକଟରେ ପ୍ରଫେସର ଜାନକୀବଲ୍ଲଭ ମହାନ୍ତି ଆପଣଙ୍କ ସେମିନାର୍‌ରେ ହେଉଥିବା ସାହିତ୍ୟ ଆସର ପାଇଁ 'ପାଶ୍ଚାତ୍ୟ ସାହିତ୍ୟ ସମୀକ୍ଷାର କ୍ଲାସିକ୍ ପରମ୍ପରା' ଶୀର୍ଷକ ପ୍ରବନ୍ଧଟିଏ ଲେଖିବା ଏବଂ ପାଠକରିବା ପାଇଁ ନିମନ୍ତ୍ରଣ ଜଣାଇଥିଲେ । ମୁଁ ତାହା ଗ୍ରହଣ କରି ତାଙ୍କୁ ପତ୍ର ଦେଇଛି । ମନେ ହୁଏ ଆପଣଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ସେ ପତ୍ର ଲେଖିଥିଲେ । ଏଣୁ ତାଙ୍କ ପତ୍ରକୁ ମୁଁ ସମ୍ମାନର ସହ ଗ୍ରହଣ କରିଛି ଏବଂ ସେଥିପାଇଁ ଆପଣଙ୍କଠାରେ ବାଧିତ ।

ମୋର 'ସାହିତ୍ୟିକବାଦ' ପାଶ୍ଚାତ୍ୟ ଖଣ୍ଡ ଏହି ବର୍ଷ ପ୍ରକାଶିତ ହେବ । ପ୍ରକାଶକ: ନିର୍ମଳଚନ୍ଦ୍ର ପାଢ଼ୀ–ସାରସ୍ୱତ ପୁସ୍ତକ ଭଣ୍ଡାର, ସମ୍ବଲପୁର । ଅଙ୍ଗସଜ୍ଜା ଭଲ ହେବ ବୋଲି ଆଶା । ତାଛଡା ଗ୍ରୀକ୍ ଟ୍ରାଜେଡିର ଅନୁବାଦ କାର୍ଯ୍ୟ ମଧ୍ୟ ଚଳାଇଛି । ଜୁଲାଇରେ ଆପଣଙ୍କୁ ସମସ୍ତ ଲେଖା ଦେଇଦେବାର ଆଶା ରଖୁଛି । ପ୍ରକାଶନଭାର ଆପଣଙ୍କ ଉପରେ ।

ଏବେ ଏଠାରେ ଭଗବତ୍ କୃପାରୁ ମୋ ପାଇଁ ଅନୁକୂଳ ପରିସ୍ଥିତିର ସୂଚନା ମିଳିଛି । ଡକ୍ଟର ପତିଙ୍କ ଯିବା ପରେ ୟୁନିଭରସିଟିର English Deptt.ରେ ମୁଁ Comp. Aestheticsରେ ଏକ Course offer କରୁଛି part time teacher ଭାବେ । M.phil. ରେ ମଧ୍ୟ ଏ Course introduce କରାଯିବ । ଇତି ।

ସ୍ନେହାଧୀନ
ଅନନ୍ତ ଚରଣ ଶୁକ୍ଳ

|| ୧୪୧ ||

## ଖଡିଆଳ ସାହିତ୍ୟ ସମିତି,ଖଡିଆଳ

ପୋ.ଅ. ଖଡିଆଳ, ଜିଲ୍ଲା କଳାହାଣ୍ଡି(ଓଡ଼ିଶା) ପିନ୍‌-୭୬୬୧୦୬

(Registered No 8562/41 of 1975-76)

Date-13.3.80

ମାନନୀୟ ଅଧ୍ୟାପକ ମହୋଦୟ,

ଆପଣଙ୍କ ତା ୨.୩.୮୦ରେ ପ୍ରେରିତ ପତ୍ର ମୋର ହସ୍ତଗତ ହୋଇଛି । ଆପଣ 'ଛାୟା'କୁ ଆମୂଳଚୂଳ ପାଠ କରି ମୋତେ ଭବିଷ୍ୟତ ପାଇଁ ଯେଉଁ ଉପଯୁକ୍ତ ମାର୍ଗ ଦର୍ଶାଇଛନ୍ତି ସେଥିପାଇଁ ବିଶେଷ ଖୁସି ହୋଇଛି । ସମୟ ସୁବିଧା ନେଇ କୌଣସି ପତ୍ରପତ୍ରିକାରେ 'ଛାୟା'ର ସମାଲୋଚନା ପ୍ରକାଶ କରିବେ ବୋଲି ଆଶା କରେଁ ।

'ବ୍ରଜରାଜ ଗ୍ରନ୍ଥାବଳୀ'ରେ ଆପଣ ଯେଉଁ ବ୍ରତକଥା ପାଠ କରିଥିଲେ ତାହା ହିଁ ସେହି ସତ୍ୟନାରାୟଣ ବ୍ରତକଥା, ଆମର'ଏ ଖଡିଆଳ ଅଂଚଳରେ ସତ୍ୟନାରାୟଣ ପୂଜା ବେଳେ ଏହି ବ୍ରଜରାଜଙ୍କ ଲିଖିତ ଗୀତ ବୋଲାଯାଏ । ତେଣୁ ଏ ପୁସ୍ତକ ପ୍ରତି ଜନତାର ବିଶେଷ ଚାହିଦା ଥିବାରୁ ସମିତି ଦ୍ୱାରା ସ୍ୱତନ୍ତ୍ର ଭାବେ ପ୍ରକାଶିତ । 'ସତ୍ୟନାରାୟଣ ବ୍ରତକଥା' ସରିଯାଇଛି । ଆପଣ 'ଧର୍ମଗ୍ରନ୍ଥ ଷ୍ଟୋର' କଟକରେ ବ୍ରଜରାଜ ଗ୍ରନ୍ଥାବଳୀ ପାଇପାରିବେ ।

ବର୍ତ୍ତମାନ ଆମ ପାଖରେ (୧) କବି ସୌରଭଙ୍କ ମୂର୍ଚ୍ଛନା, (୨) କବି ସୌରଭଙ୍କ ସମୁଚ୍ଚୟ, (୩) କବି ସୌରଭଙ୍କ ତ୍ରିପତ୍ରୀ, (୪) କବି ସୌରଭଙ୍କ ଛାୟା ପୁସ୍ତକଗୁଡ଼ିକ ଅଛି । ସମିତିର ପ୍ରକାଶିତ ଅନ୍ୟ ପୁସ୍ତକଗୁଡ଼ିକ ମଧ ସରିଯାଇଛି ।

ଆମ୍ଭେ ବର୍ତ୍ତମାନ ଏ ଅଂଚଳର ସାଂସ୍କୃତିକ କାର୍ଯ୍ୟକ୍ରମମାନଙ୍କ ପ୍ରବନ୍ଧ ଏକତ୍ରୀକରଣରେ ଗୋଟିଏ ସ୍ମରଣିକା ପ୍ରକାଶ କରିବା ଦିଗରେ ଚେଷ୍ଟିତ ଅଛୁଁ । କେତେ ପ୍ରବନ୍ଧ ରଚିତ ହୋଇ ସାରିଲାଣି ଓ ଆଉ କେତେ ବାକି ଅଛ ।

କେତୋଟି ରଚିତ ପ୍ରବନ୍ଧଗୁଡ଼ିକ ହେଲା

୧. ଓଡ଼ିଆ ସାହିତ୍ୟକୁ ଖଡ଼ିଆଳର ଅବଦାନ-ଶ୍ରୀ ପ୍ରୟାଗଦତ୍ତ ଯୋଶୀ
୨. ଓଡ଼ିଆ ସାହିତ୍ୟକୁ ବୀରବିକ୍ରମ ଦେବଙ୍କ ଦାନ- ଶ୍ରୀ ପ୍ରୟାଗଦତ୍ତ ଯୋଶୀ
୩. ଉତ୍କଳ ବିକ୍ରମାଦିତ୍ୟ ବ୍ରଜରାଜ-ରାଜଶ୍ରୀ ଦେବୀ
୪. ରାଧାନାଥ ଗ୍ରନ୍ଥାବଳୀର ପ୍ରକାଶକ-ଶିବନାରାୟଣ
୫. ଅନୁବାଦକ ରୁଦ୍ରମାଧବ
୬. ବୀର ବିକ୍ରମ ଥିଏଟର
୭. ଚନ୍ଦନଯାତ୍ରା
୮. କବି ସୌରଭଙ୍କ ଦାନ

୯. ଚୈତନ୍ୟ ଦାସଙ୍କ ସ୍ଥାନ ଓ କାଳ
୧୦. ଖଡ଼ିଆଳ ଦରବାର, ଇତ୍ୟାଦି

ଆପଣଙ୍କର
ନୀଳଲୋହିତ ସିଂହଦେଓ

॥ ୧୪୨ ॥

ମାର୍କୋଣ୍ଡା
୧୯.୩.୮୦

ପ୍ରିୟ ମହାଶୟ,

ସମାଜର ସାପ୍ତାହିକ ସାହିତ୍ୟ ଆଲୋଚନା ପୃଷ୍ଠାରେ ଆପଣଙ୍କ ପ୍ରବନ୍ଧ 'ସାହିତ୍ୟ ପୁରସ୍କାର: ଅର୍ଥ ଓ ପରମାର୍ଥ' ପ୍ରକୃତରେ ମୋତେ ପ୍ରୀତ କଲା, ମୁଗ୍ଧ କଲା । ବକ୍ତବ୍ୟ ଆପଣଙ୍କର ତଥ୍ୟମୂଳକ ଓ ଯୁକ୍ତି ଚିନ୍ତାପ୍ରସୂତ ଓ ହୃଦୟଗ୍ରାହୀ । ପ୍ରବନ୍ଧଟି ମୋ ମନକୁ ବହୁତ ଘେନାଇଲା । ଆପଣଙ୍କର ଜଣେ ନିକଟସ୍ଥ ବାସିନ୍ଦା ହିସାବରେ ମୁଁ ଏହି ପ୍ରବନ୍ଧ ପାଇଁ ଗର୍ବିତ । ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ । ଆପଣଙ୍କର ଚିନ୍ତା ଓଡ଼ିଆ ସାହିତ୍ୟକୁ ପୁଷ୍ଟ କରୁ ।

ଆପଣଙ୍କ ଗୁଣମୁଗ୍ଧ
ବଂଶୀଧର ମିଶ୍ର,
ପ୍ରଧାନଶିକ୍ଷକ, ରଘୁନାରାୟଣ ହାଇସ୍କୁଲ

॥ ୧୪୩ ॥

ଭଞ୍ଜନଗର
୨/୪/୮୦

ସମ୍ମାନନୀୟ ଡ଼ଃ ବେହେରା, ପ୍ରଣାମ ।

ଆପଣଙ୍କର ସ୍ନେହପୂର୍ଣ୍ଣ ପତ୍ର ପାଇଁ ଧନ୍ୟବାଦ । ଏଠାରେ ଅନୁଷ୍ଠିତ ହୋଇଥିବା ଇତିହାସ କଂଗ୍ରେସ ଉପଲକ୍ଷେ ପ୍ରକାଶିତ ସ୍ମରଣିକା ଖଣ୍ଡେ ଆପଣଙ୍କ ନିକଟକୁ ଯଥାଶୀଘ୍ର ପଠାଉଛି । ଆଶା ଆଗାମି ସପ୍ତାହ ମଧରେ ପାଇଯିବେ । ପଚାଶ ଖଣ୍ଡ ସ୍ମରଣିକା ପ୍ରେସରେ ଅଛି । ସେଗୁଡିକ ପାଇବାପରେ ମୁଁ ଖଣ୍ଡେ ନିଷୟ ପଠାଇବି । ଆପଣଙ୍କ ପାଇଁ ଖଣ୍ଡେ ସଂରକ୍ଷିତ ରହିଲା ।

ଆଉ ଗଲା କଂଗ୍ରେସର Proceeding ଏବଂ ପ୍ରଥମ ଥର ପାଇଁ ପ୍ରକାଶିତ ହୋଇଥିବା "The Orissa Historical Journal' ଆମର କଂଗ୍ରେସ ସେକ୍ରେଟାରୀ ଡ଼ଃ ପ୍ରମୋଦ କୁମାର ମିଶ୍ର (Reader in History, Sambalpur University)

ନିକଟରୁ ପାଇ ହେବ । ଦୟାକରି ସେଗୁଡିକ ସଂକ୍ରାନ୍ତରେ ତାଙ୍କୁ ଲେଖନ୍ତୁ ।

ଆପଣଙ୍କର ଶୁଭେଚ୍ଛା ଓ ଆଶୀର୍ବାଦରୁ ଗଲା ନଭେମ୍ବର ୨୧ ତାରିଖରେ ମୁ ମୋର ଥେସିସ୍ ଦାଖଲ କଲି । ବର୍ତ୍ତମାନ ଆବଶ୍ୟକୀୟ Processing ଚାଲିଛି । ଆଶା ଆଗାମି ୩, ୪ ମାସ ମଧ୍ୟରେ ଫଳ ଜଣାପଡିବ ।

ମୋ ସ୍ତ୍ରୀ ଆପଣଙ୍କ ତତ୍ତ୍ୱାବଧାନରେ ଗବେଷଣା କରିବାକୁ ଦୃଢ଼ପରିକର । ବୋଧହୁଏ ଆସନ୍ତା ସପ୍ତାହର ପ୍ରଥମ ଭାଗରେ ଆପଣଙ୍କୁ ସେହି ସଂକ୍ରାନ୍ତରେ ଆମେ ସାକ୍ଷାତ କରିବୁ ।

ଆପଣଙ୍କର ଅତୀତର ପତ୍ରର ଉତ୍ତର ଦେଇପାରି ନଥିବାରୁ ମୁଁ ବିଶେଷ ଦୁଃଖିତ । ଆଶା ଆପଣଙ୍କ ସପରିବାର କୁଶଳ । ଆପଣଙ୍କୁ ଓ ଶ୍ରୀମତୀ ବେହେରାଙ୍କୁ ଆମର ଭକ୍ତିପୂର୍ଣ୍ଣ ପ୍ରଣାମ । ପିଲାଙ୍କୁ କଲ୍ୟାଣ ।

ଆପଣଙ୍କର ସ୍ନେହର
ଦଣ୍ଡପାଣି ବେହେରା

॥ ୧୪୪ ॥

କେନ୍ଦୁଝର
୨୯.୪.୮୦

ପୂଜାସ୍ପଦ ଗୁରୁଦେବ !

ମୋର ସଭକ୍ତି ପ୍ରଣାମ ଗ୍ରହଣ କରିବେ । ଆପଣଙ୍କ ୧୨ ତାରିଖର ଚିଠି ପାଇଛି । 'ଝଙ୍କାର' ପୃଷ୍ଠାରେ ପ୍ରକାଶିତ ମୋ ପ୍ରବନ୍ଧ ଉପରେ ଆପଣଙ୍କ ପ୍ରତିକ୍ରିୟା ମୋ ପକ୍ଷରେ ଖୁବ୍ ଶ୍ଲାଘ୍ୟ ଓ କାମ୍ୟ । ଆପଣ ଲେଖିଛନ୍ତି ଯେ ଉତ୍ତର ଓଡ଼ିଶାର ଭାଷାକୁ ମୁଁ ଗୋଟିଏ ଉପଭାଷା ବୋଲି ଚିହ୍ନିତ କରିବା ଠିକ୍ ହୋଇନି । ଆପଣ ତାକୁ 'ଆମ ଭାଷାରେ ଏକ ଆଞ୍ଚଳିକ ବୈଶିଷ୍ଟ୍ୟ ମାତ୍ର କୁହାଯାଇପାରେ' ବୋଲି ମନ୍ତବ୍ୟ ପ୍ରକାଶ କରିଛନ୍ତି । କିନ୍ତୁ ଉପଭାଷାର ପ୍ରଚଳିତ ସଂଜ୍ଞା, ସ୍ୱରୂପ ଓ ପ୍ରକୃତି ଦୃଷ୍ଟିରୁ ଉତ୍ତର ଓଡ଼ିଶାର ଭାଷାକୁ ନିଶ୍ଚିତ ଭାବରେ ଏକ ଉପଭାଷା କୁହାଯାଇପାରିବ । କାରଣ ସୀମାନ୍ତବର୍ତ୍ତୀ ଆଞ୍ଚଳିକ ସ୍ୱାତନ୍ତ୍ର୍ୟ(ଭାଷା ଚଳଣିର ସ୍ୱାତନ୍ତ୍ର୍ୟ) ଉପଭାଷା ସୃଷ୍ଟିର ଅନ୍ୟତମ ବଳିଷ୍ଠ ଭିତ୍ତି । ବିହାର ଓ ବଙ୍ଗଳାର ସୀମାନ୍ତବର୍ତ୍ତୀ ଅଞ୍ଚଳଭାବେ ବାଲେଶ୍ୱର, ମୟୂରଭଂଜ, କେନ୍ଦୁଝର ପ୍ରଭୃତିର ଉତ୍ତରାଞ୍ଚଳୀୟ ଭାଷା ପୂର୍ବହିନ୍ଦୀ ଓ ବଙ୍ଗଳାଦ୍ୱାରା ବହୁ ପରିମାଣରେ ପ୍ରଭାବିତ । ଏତଦ୍‌ବ୍ୟତୀତ ଭୂୟାଁ, କୁରୁମି, ସାନ୍ତାଳୀ, କୋହ୍ଲ ପ୍ରଭୃତି ବିଭିନ୍ନ Tribal language ମଧ୍ୟ ଉତ୍ତରାଞ୍ଚଳୀୟ ଓଡ଼ିଆ ଭାଷାକୁ ଉଲ୍ଲେଖଯୋଗ୍ୟ ଭାବରେ ପ୍ରଭାବିତ କରିଛନ୍ତି । Standard ଓଡ଼ିଆଠାରୁ ଉତ୍ତରାଞ୍ଚଳୀୟ ଓଡ଼ିଆ ଓ ଉତ୍ତରାଞ୍ଚଳୀୟ ବିଭିନ୍ନ ଜନଜାତିର ଉପଭାଷାର ଶାବ୍ଦିକ, ଧ୍ୱନିତାତ୍ତ୍ୱିକ, ରୂପତାତ୍ତ୍ୱିକ ପାର୍ଥକ୍ୟ ପଶ୍ଚିମାଞ୍ଚଳୀୟ ଓଡ଼ିଆ ବା ସମ୍ବଲପୁରୀର ଔପଭାଷିକ ସ୍ୱାତନ୍ତ୍ର୍ୟଠାରୁ

କୌଣସି ଗୁଣରେ ନ୍ୟୂନ ନୁହେଁ । କେବଳ ପ୍ରଭାବଗତ ସ୍ୱାତନ୍ତ୍ୟ ନୁହେଁ, Descriptive linguistics ଓ Historical linguistics ଉଭୟ ଦୃଷ୍ଟିକୋଣରୁ ଦେଖିଲେ ଭାଷା ବିକାଶର ଅନୁଲୋମ ପଥରେ ମଧ ମାଗଧୀ ଅପଭ୍ରଂଶରୁ ଓଡ଼ିଆ, ବଙ୍ଗଳା, ଆସାମୀ ଭାଷାର ଯେଉଁ ଉନ୍ମେଷକାଳୀନ ସ୍ୱାତନ୍ତ୍ୟ ଉତ୍ତର-ଓଡ଼ିଆ ଭାଷାରେ ବିଧୃତ ରହିଛି, ତାହା ମୋର ଗବେଷଣାର ବିଷୟ । ବର୍ତ୍ତମାନ ମୋର ଗବେଷଣା ସନ୍ଦର୍ଭ 'The Dialects of North Orissa'ର ପ୍ରାଥମିକ ପ୍ରୟାସ ଭାବେ ଝଙ୍କାରର ଗତ ନଭେମ୍ବର ଓ ମାର୍ଚ୍ଚ ସଂଖ୍ୟାରେ ପ୍ରବନ୍ଧଦ୍ୱୟ ପ୍ରକାଶିତ ହୋଇଛି ।

ମଧୁଶ୍ରୀ ଭଲ ଥିବ । ମାଉସୀଙ୍କୁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଇ ଦେବେ । ଏ ଚିଠି ଆପଣଙ୍କୁ କୁଶଳ ଶରୀରରେ ଭେଟିବ ବୋଲି ମୋର ଆଶା ଓ ବିଶ୍ୱାସ । ଶେଷରେ ଆପଣଙ୍କ ଅକ୍ଷୟ ଆଶୀର୍ବାଦ କାମନା କରି ରହିଲି ।

ଭକ୍ତି ଓ ନମ୍ରତାର ସହିତ

ବୀଣା

(ବୀଣାପାଣି ଜେନା)

॥ ୧୪୫ ॥

ଉଦୟପୁର

୧୮.୫.୮୦

ପୂଜନୀୟ କୃଷ୍ଣବାବୁ,

ସାଦରେ ସପ୍ରେମ ଶ୍ରୀହରି ଶରଣଂ ।

ବିଷୁବ ଝଙ୍କାରରୁ 'ଐତରେୟ' ଲେଖାଟି ପଢ଼ିଲି । ପଢ଼ି ଖୁସି ହେବା ସଂଗେ ସଂଗେ ଗୋଟିଏ ଧାଡି ମନେ ରଖିଲି । ''ନିଜ ଗୋଡରେ ଠିଆ ହେବାକୁ ସମର୍ଥ ହେଲା ମାତ୍ରେ ବାହୁଡି ଆସିବି ।'' ଏଇ ଜିଦ୍ ହେଉଛି ଗୋଟିଏ ବଡ କଥା-ଜିଦ୍ ନଥିଲେ ହବନି, ଏବର ପିଲେ ଏତିକି ଶିକ୍ଷା କଲେ ଦେଶ ଓଲଟି ଯାନ୍ତା । ବାପାମା ଜନ୍ମ ଦେଲେ ସାବାଳକ କଲେ, ଏଣିକି ନିଜ କଥା ନିଜେ ବୁଝ । ଗତ କଥା ବିଚାର କରନି... ପିଲାଙ୍କୁ ଜିଦ୍, ସାହସ ସତ୍‌ପଥ ଏ ଗଳ୍ପଟି ଦେଖାଇଛି । ଏତିକି ମୁଁ ଜାଣିଲି । ଚିଠି ଲେଖାରେ ତ୍ରୁଟି ଥିଲେ କ୍ଷମାଦେବେ । ଆପଣଙ୍କର ଗୋଟିଏ ପୁରା ବହି ସେଟ୍ ରଖି ପତ୍ର ଦେବେ । ପୁରା ଦାମ୍ ଦେଇ ହବନି । ପୂରା ସେଟ୍ ଗୋଟିଏ ରହୁ । କେତେଖଣ୍ଡ ଅଛି, ପୂରା ନାହିଁ । ଆପଣଙ୍କ ଦୟା ନହେଲେ ଏତକ ହବନି । ଇତି ।

ଦାଶରଥି ପଟ୍ଟନାୟକ

ବାଞ୍ଛାନିଧି ପାଠାଗାର

॥ ୧୪୬ ॥

Prasant kumar Sahoo
P.G. Mens Hostel-2, Room No- 4
Utkal University, Vani Vihar

ଭୁବନେଶ୍ୱର
୧୮.୫.୮୦

ମାନନୀୟ ସାର୍,

ପ୍ରଣାମ ନେବେ । ଆପଣଙ୍କ ପତ୍ର ପାଇ ଖୁବ୍ ଆନନ୍ଦିତ ହେଲି । ବହୁମୂଲ୍ୟ ସମୟ ଓ ଶ୍ରମ ବିନିଯୋଗ କରି ଆପଣ ଯେ ମୋ ପ୍ରଶ୍ନ କେତୋଟିର ଉତ୍ତର ଲେଖିବେ, ଏହା ମୋର ଆଶାର ଅତୀତ ଥିଲା । ଆପଣଙ୍କ ଉତ୍ତରଗୁଡ଼ିକ ମୋତେ ଖୁବ୍ ଭଲ ଲାଗିଲା । କୌତୂହଳ 'ଡିଗ୍ରୀଲାଭ ମଧ୍ୟରେ ସୀମାବଦ୍ଧ' ନୁହେଁ ସାର୍, ସାହିତ୍ୟ ବିଷୟରେ ଅନେକ ଅସୁମାରି ଜିଜ୍ଞାସା ମୋର- କାଗଜ ଖଣ୍ଡିକର ଏ ଟିକି ଦେହରେ କଣ ସବୁ ଲେଖିହୁଏ ? ବିଚାର କରି ଭାବିଲି ଯେତେ କମ୍ ହୁଏ ସେତେ ଭଲ । ତେଣୁ ବାଧ୍ୟ ହେଲି କୌତୂହଳଗୁଡ଼ିକୁ ସୀମିତ କରିବାକୁ ପୁଣି ପ୍ରଥମତଃ 'ପରୀକ୍ଷା-ପାଶ୍'ର ସୀମା ସରହଦ ମଧ୍ୟରେ ।

'ଶିକାର' ଗଳ୍ପର ସେଇ ମାର୍କସୀୟ ଚିନ୍ତା ବିଷୟରେ ପ୍ରଶ୍ନ ଜାଗେ । ଗୋଟିଏ ନିରୀହ, ନିର୍ବୋଧ ଚରିତ୍ର ଘିନୁଆ ଯିଏ ବାଘ ଶିକାର କରି ସାହେବଙ୍କଠାରୁ ବକ୍ସିସ୍ ନିଏ, ତାର ଯଦି କିଛି ମାର୍କସୀୟ ଜ୍ଞାନ ଥାଏ, ତେବେ ତାହା ସେଇ ବାଘ ଶିକାର ମଧ୍ୟରେ ସୀମିତ । ଗଳ୍ପଟି ମାର୍କସୀୟ ଭାବଭିତ୍ତିକ ନୁହେଁ । ଏବିଷୟରେ ମୋର ଯୁକ୍ତି-

(୧) ଯଦି ଘିନୁଆ ମାର୍କସୀୟ ଚିନ୍ତାଧାର ଦ୍ୱାରା ପ୍ରଭାବିତ, ତେବେ ଆଗରୁ ତ ଗୋବିନ୍ଦ ସରକାର ବହୁ ଧନ ସମ୍ପତ୍ତି ଲୁଣ୍ଠନ କରିଛି, ବହୁ ନାରୀଙ୍କର ସର୍ବନାଶ କରିଛି । ସେତେବେଳେ କାହିଁ ଘିନୁଆ ତ ଟିକିଏ ହେଲେ ପ୍ରତିବାଦ କରି ନାହିଁ । ଯେତେବେଳେ ତା ନିଜ ସ୍ତ୍ରୀ ଉପରେ ଅତ୍ୟାଚାର କରିବାକୁ ଆରମ୍ଭ କରିଦେଲା ଗୋବିନ୍ଦ ସରକାର, ସେତେବେଳେ ସେ ପ୍ରତିଶୋଧ-ପରାୟଣ ହୋଇଛି । ମାର୍କ୍ସବାଦ କଣ ଏତେ ସୀମିତ ସ୍ୱାର୍ଥାନ୍ୱେଷୀ ମନୋବୃତ୍ତି ଭିତରୁ ଆତ୍ମପ୍ରକାଶ କରେ ।

(୨) ମାର୍କ୍ସବାଦୀ ଚରିତ୍ର କ'ଣ ଏତେ ନିର୍ବୋଧ ହୋଇପାରେ ଯେ ତାକୁ ଫାଶୀ ଖୁଣ୍ଟକୁ ନେବା ପର୍ଯ୍ୟନ୍ତ, ଏପରିକି ତା ମୃତ୍ୟୁର ଅବ୍ୟବହିତ ପୂର୍ବରୁ ତା ମୁହଁରେ କଳାକନା ଘୋଡାଇବା ପରେ ମଧ୍ୟ ସେ ଭାବୁଛି ପୁରସ୍କାର ପାଇବ । ସ୍ୱପ୍ନ ଦେଖୁଛି ଐଶ୍ୱର୍ଯ୍ୟର-ସଂପଦର ।

(୩) ଘିନୁଆ କେବେ ପ୍ରତିରୋଧ କରିନାହିଁ, ବିପ୍ଳବ କରିନାହିଁ ସମାଜ ବିରୋଧରେ

ଘମାଙ୍କର ଅତ୍ୟାଚାରୀ ଗୋଷ୍ଠୀ ବିରୋଧରେ । ସେ କେବଳ ସ୍ୱପ୍ନ ଦେଖୁଛି ପୁରସ୍କାରର । ଝପଟ ସିଂ ମେଳିଆକୁ ମାରି ଅନ୍ୟ ଜଣେ କେତେ ପୁରସ୍କାର ପାଇଥିଲା । ତାଠାରୁ ଭୟଙ୍କର ଗୋବିନ୍ଦ ସରକାରକୁ ମାରିଥିବା ଯୋଗୁଁ ବହୁ ପୁରସ୍କାର ପାଇବା ପାଇଁ ସେ ହକ୍‌ଦାର । ଏପରି ଏକ ନିର୍ବାକ, ନିର୍ବୋଧ, ନିରୀହ ଚରିତ୍ର କ'ଣ କେବେ ମାର୍କସୀୟ ଚିନ୍ତାଧାରାର ବାହକ ହୋଇପାରେ । 'ଝଙ୍କାର' ୧୦ମ ବର୍ଷ, ୧୦ମ ସଂଖ୍ୟା, ଜାନୁଆରୀ ୧୯୫୬ ଖ୍ରୀ.ଅ.ରେ 'ଶିକାର'କୁ ବୈପ୍ଲବିକ ଚିନ୍ତାଧାରର ପ୍ରଥମ ପ୍ରକାଶ ଭାବେ ଗ୍ରହଣ କରି ମତ ପ୍ରକାଶ କରିଥିବା ନଟବର ସାମନ୍ତରାୟଙ୍କ ଆଲୋଚନା ବିଶେଷ ଯୁକ୍ତିଯୁକ୍ତ ମନେ ହୁଏ ନାହିଁ ।

ବରଂ ୧୯୩୬ ମସିହା ପରେ ୧୯୩୮ ମସିହାରେ ରଚିତ ରାମପ୍ରସାଦ ସିଂଙ୍କ କ୍ଷୁଦ୍ରଗଳ୍ପ 'ଶେଷରାତି' ଏ ଦୃଷ୍ଟିରୁ ବିଚାର ସାପେକ୍ଷ । ଏଥିରେ ଜମିଦାର ବଳବନ୍ତ ରାୟଙ୍କୁ ହତ୍ୟାକରି କୃଷିଜୀବୀ ଜଗାପ୍ରଧାନ ଫାଶୀ ପାଇଛି । ଫାଶୀ ଖୁଣ୍ଟକୁ ସେ 'ମୂର୍ଖତାର କୀର୍ତ୍ତିସ୍ତମ୍ଭ' ବୋଲି ଅଭିହିତ କରିଛି । ଫାଶୀ ଖୁମ୍ବକୁ ଯିବା ପୂର୍ବରୁ 'ବଡପାଟି କରି ସେ ପଚାରିଛି ତାର ଦୋଷ କ'ଣ ? ଗରିବ ବୋଲି ହାର ଭଳି ରୂପସୀ ସ୍ତ୍ରୀ କ'ଣ ତା ନିକଟରେ ରହି ପାରିବ ନାହିଁ ?' ମୁଁ ଭାବୁଛି ଏ ଗଳ୍ପଟି ହୁଏତ ମାର୍କ୍ସୀୟ ଭାବଧାରା ଉପରେ ଆଧାରିତ ସାର୍ଥକ/ପ୍ରଥମ କ୍ଷୁଦ୍ରଗଳ୍ପର ଗୌରବ ଲାଭ କରିପାରେ । ଆପଣଙ୍କ ମତ ଏ ବିଷୟରେ କଣ ?

ସୁରେନ୍ଦ୍ର ବାବୁ ଯେଉଁ ବୋଧି ଓ ଚିତ୍ତ ଅଥବା ସତ୍ୟ ଓ ମାୟା 'ସହଜାତ' ବା 'ସୃଷ୍ଟିରେ ଏକ ମାତ୍ର ସହଜ' ବୋଲି ଗ୍ରହଣ କରିଛନ୍ତି ଏହା ବେଶି ଯଥାର୍ଥ, ନା ମଣିଷ ସହ ଜାତ 'ବାୟୁ'ର ସାଧନା ହିଁ ସହଜ ସାଧନା–ଏହା ବେଶି ଯଥାର୍ଥ, ଆପଣଙ୍କର ମତାମତ ଜଣାଇବେ ।

ଗୁଡାଏ ପଢ଼ି ବହୁ ବିରକ୍ତ ହେବେଣି । ସାର୍‌, ଆପଣଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖିବାର କେବେ ସୁଯୋଗ ପାଇନାହିଁ । ତେବେ ଏକଲବ୍ୟ ପରି ଦୃଷ୍ଟିର ଅନ୍ତରାଳରେ ମୋର ଏହି ପ୍ରତ୍ୟକ୍ଷ-ସଂସ୍ପର୍ଶ ରହିତ ଶିଷ୍ୟତ୍ୱ ଆପଣଙ୍କଠାରେ ଅବହେଳିତ ନହେଉ– ଏହାହିଁ ଆଶା । ଭାବୁଛି ବଂଚିତ କରିବେ ନାହିଁ । ଆପଣଙ୍କ ନିକଟକୁ ଯାଇପାରନ୍ତି, ମାତ୍ର ଆପଣଙ୍କର ସମୟ ସୁବିଧା ହୁଏତ ହୋଇ ନପାରେ । ଆପଣଙ୍କର ସୁବିଧା ହେଲେ ଯଦି ଲେଖନ୍ତି ତେବେ ଟିକିଏ ଦେଖାକରି ପାରନ୍ତି ।

ଖାମ୍ ପଠାଇ ଯଦି ଭୁଲ୍ କରିଥାଏ ତେବେ ଛାତ୍ରସୁଲଭ ଚପଳତାକୁ ବିଚାର କରି କ୍ଷମାଦେବେ । ଆଉ ଯଦି କିଛି ଦଣ୍ଡଦେବାକୁ ଚାହାନ୍ତି ତେବେ ଆପଣଙ୍କ ନିକଟରେ ପହଞ୍ଚିବା ପରେ ଦେବେ । ଶୁଭ କାମନା କରି ରହିଲି । ଇତି ।

ଆପଣଙ୍କ ସ୍ନେହାସ୍ପଦ

ପ୍ରଶାନ୍ତ

॥ ୧୪୭ ॥

କବିବର ପରିଡା
ଆର.ଇ.କଲେଜ
ରାଉରକେଲା-୭୬୯୦୦୮

୬.୭.୮୦

ସମ୍ମାନନୀୟ ମହାଶୟ,

ମୋର ପ୍ରଣାମ ଗ୍ରହଣ କରିବେ । ଆପଣଙ୍କ ପାଖରେ ମୁଁ ସଂପୂର୍ଣ୍ଣ ଭାବେ ଅପରିଚିତ । ବ୍ୟକ୍ତିଗତ ଜୀବନ ସଂପର୍କରେ ପରିଚୟ ପ୍ରଦାନ କରୁନାହିଁ । ବିଶେଷ ଅନୁରୋଧ ଏହିକି, ମୁଁ କେତେଗୁଡ଼ିଏ କାବ୍ୟ-କବିତା, ପ୍ରବନ୍ଧ ଓ କ୍ଷୁଦ୍ରଗଳ୍ପ ରଚନା କରୁଛି । ସମସ୍ତ ଲେଖା ସମସାମୟିକ ପତ୍ର-ପତ୍ରିକାରେ ପ୍ରକାଶିତ । ଅଧିକାଂଶ ଲେଖା, ହିନ୍ଦୀ ଓ ବଂଗଳାରେ ଅନୁବାଦ ହୋଇ ପ୍ରକାଶିତ ହୋଇଛି ।

ଗୋଟିଏ କବିତା ସଂକଳନ ମଧ ମୁକ୍ତିଲାଭ କରିଛି ।
ଏହା ମଧ୍ୟରେ ଆଉ ଗୋଟିଏ କବିତା ସଂକଳନ ପ୍ରକାଶ ପାଇବ । ଉକ୍ତ ସଂକଳନ ପାଇଁ ମୁଁ ଆପଣଙ୍କ ସାହାଯ୍ୟ ପ୍ରାର୍ଥୀ । ଆଶା କରେ ଏଇ ବିଶ୍ୱନିନ୍ଦୁକ ବ୍ୟକ୍ତିର ଅଶ୍ରୁଳ ଅନୁରୋଧ ଆପଣ ରକ୍ଷା କରିବେ । ଆପଣ କେତୋଟି କବିତା ନିର୍ବାଚନ କରି ତହିଁରେ ଭୂମିକା ଲେଖିଦେବେ ବୋଲି ମୋର ଅନୁରୋଧ ।

ଆପଣଙ୍କ ସୁଚିନ୍ତିତ ମନ୍ତବ୍ୟ ଉପରେ ଭରସା କରୁଛି । ଆପଣଙ୍କ ଭଳି ଜଣେ ଖ୍ୟାତିସଂପନ୍ନ ସାହିତ୍ୟିକଙ୍କର ଶୁଭେଚ୍ଛା ସଦିଚ୍ଛାରେ ମୋର କାବ୍ୟିକ ଜୀବନ ସାଲୋକ୍ୟ ଲାଭ କରିବ ବୋଲି ଦୃଢ଼ ବିଶ୍ୱାସ ।

ପୁନଶ୍ଚ ପ୍ରଣାମ ସହ

ଆପଣଙ୍କର ଗୁଣମୁଗ୍ଧ
କବିବର ପରିଡା

॥୧୪୮ ॥

କୁଚିଣ୍ଡା କଲେଜ
ସମ୍ବଲପୁର
୫.୮.୮୦

ସମ୍ମାନନୀୟ

ମହାଶୟ, ମୋର ନମସ୍କାର ଗ୍ରହଣ କରିବେ । ଆଶା କରେ ସପରିବାର କୁଶଳରେ ଥିବେ । ଆପଣଙ୍କ ଅଭିନନ୍ଦନ ତଥା ପ୍ରେରଣାଯୁକ୍ତ ପତ୍ରଟି ଗତକାଲି ମୁଁ ପାଇ ବିଶେଷ

ଆନନ୍ଦିତ ହେଲି । ××× ××× ××× ଆପଣଙ୍କ ଅନେକ ଲେଖାରୁ ମୁଁ ଉପାଦାନ ସଂଗ୍ରହ କରି ମୋର ଗବେଷଣାର ସନ୍ଦର୍ଭରେ ସ୍ଥାନ ଦେଇଛି । ଆପଣଙ୍କ ସହିତ ଏକାଧିକ ବାର ନାଟକ ସମ୍ବନ୍ଧରେ ଆଲୋଚନା କରି ମୁଁ କେବଳ ପ୍ରେରଣା ପାଇ ନାହିଁ, ଉପାଦାନ ମଧ୍ୟ ପାଇପାରିଛି । ତେଣୁ ଆପଣଙ୍କ ସାହାଯ୍ୟ ମୁଁ ଭୁଲି ପାରିବି ନାହିଁ । ମୁଁ ଏବେ କଟକ ଗଲା ବେଳେ ମୋ ଥେସିସ୍‌ଟି ଆପଣଙ୍କ ନିକଟକୁ ନେଇଯିବି । ମୁଁ ଏହାକୁ ଛପାଇବା ପାଇଁ ଚେଷ୍ଟା କରୁଛି । ଆପଣଙ୍କ ସହାଯ୍ୟ ନେବି ।

ଆପଣଙ୍କର ନିରବଚ୍ଛିନ୍ନ ସାହିତ୍ୟ ସାଧନାରେ ମୁଁ ଅନୁପ୍ରାଣିତ ଓ ଉଦ୍‌ବୁଦ୍ଧ । ତେଣୁ ଆପଣଙ୍କ ସାନ୍ନିଧ୍ୟ ମୋତେ ଏହି କ୍ଷେତ୍ରରେ ଉତ୍ତରୋତ୍ତର ଉନ୍ନତି ମାର୍ଗରେ ନିଶ୍ଚିତ ପ୍ରେରଣା ଯୋଗାଇବ । ରହିଲି । ଇତି ।

ଆପଣଙ୍କର ସଚ୍ଚିଦାନନ୍ଦ ମିଶ୍ର

॥ ୧୪୯ ॥

ପୁରୀ

୪.୧୦.୮୦

ସାର୍‌,

ଜୁହାର ଜାଣିବେ । ଆପଣଙ୍କ ଚିଠି ପଢ଼ି ବହୁତ ବହୁତ ଆନନ୍ଦରେ ନାଚିଲି । ଅନେକଂକୁ ପଢ଼ି ଶୁଣାଇଲି । ଏତେ ଦିନକରେ ଆପଣ ଗତାନୁଗତିକତାର ମୋଡ ଭାଙ୍ଗି ଭଲ ଚିଠିଟାଏ ଦେଲେ । ଆଗରୁ ବହୁତ କପଟ କରୁଥିଲେ, ନୁହେଁ ?

ଅନେକ ଭଲ କବିତା ଛାପା ଯାଇଛି । ଲେଖା ବି ଯାଇଛି । ଆହୁରି ୫/୬ଟି କବିତା ବହି ପ୍ରସ୍ତୁତ ହୋଇ ରହିଛି । ଯଥା ସମୟରେ ଆପଣଂକୁ ସେମାନେ ସ୍ୟାଲୁଟ୍ ଦେବେ ।

ପୂଜା ପାଇଁ ପ୍ରାୟ ଲେଖା ଯାଇଚି । ଭଲ ଲେଖା କିଛି ଅଛି, ଚାଲୁ ବି କିଛିଟା । ସବୁ ନଜରକୁ ଆସିବ । ମାତ୍ର ୬/୭ ଦିନ ପରେ ତ !

ହଁ, ଆପଣଂକ ଅନୁମାନ ଠିକ୍ । 'ଶ୍ରେଷ୍ଠ କବିତା'ର ଯୋଜନା ଯେଉଁ ପରିସ୍ଥିତିରେ କରାଯାଇଥିଲା, ଆଂଶା କରିନଥିଲି ଆଉ ଲେଖିବି ବୋଲି । ଗୋଟେ ନୂଆ ଉଦ୍ୟମ । ଓଡ଼ିଶାର ମାଟିରେ ଜନ୍ମ ହୋଇ ଯେତିକି ମୁଁ ଗର୍ବିତ, ସେଇ ଅନୁପାତରେ ମୋର ଶିକ୍ଷା, ଯୋଗ୍ୟତା ଓ ଇତ୍ୟାଦି ଇତ୍ୟାଦି ପ୍ରହେଳିକା ପାଇଁ ଖୁବ୍ ଲଜ୍ଜିତ । ମୁଁ ମଣିଷଟିଏ ହେଇ ନ ପାରିବାର ଯଂତ୍ରଣାରେ ଏତେ ପୀଡିତ ଯେ ନିଜ ଅମଣିଷପଣିଆର ବିଶ୍ୱରୂପ ଦେଖି ଅନେକ ସମୟରେ ହତବାକ୍ ଓ ବିମୂଢ଼ ! ସବୁ ଆପଣଙ୍କର ସ୍ନେହାଶିଷ, ସାର୍ ।

ଆପଣଂକ ନିର୍ଦ୍ଦେଶ ମୁତାବକ ଫଟୋ ଉଠାଇ ଗଲାବେଳେ ନେଇଯିବି ।

ସବୁଦିନେ ଶୁଭାଶିଷ ଥାଉ, ସାର୍‌, ଏ ଅଧମ ପ୍ରତି । ସପରିବାରେ କୁଶଳରେ ଅଛନ୍ତି ।

ସ୍ନେହାଧୀନ କମଳାକାଂତ ଲେଂକା

॥ ୧୫୦ ॥

ଓଁ ମା ସମଲେଇ

ଦାନୀ କୁଟୀର, ମହାନ୍ତି ପଡା , ସମ୍ବଲପୁର-୧

ତା ୫.୧୦.୮୧

ସୋମବାର, ମହାସପ୍ତମୀ

ଶ୍ରଦ୍ଧେୟ ସାର୍‌, ପ୍ରଣତି ।

ଶ୍ରୀମତୀ ବେହେରାଙ୍କୁ ନମସ୍କାର କହିଦେବେ । ଅନେକ ଦିନ ପରେ ପତ୍ର ଦେଉଥିବାରୁ ଦୋଷ ମାନିନେଉଛି ଏବଂ କ୍ଷମା ମାଗିବାର ସାହସ କରିବି କାହିଁକି ? ତେବେ କେଉଁସବୁ କାରଣରୁ (କୈଫିୟତ ନୁହେଁ)ମୋତେ ଗତ ୨/୩ମାସ ନିତାନ୍ତ ବ୍ୟସ୍ତ ରହିବାକୁ ହୋଇଥିଲା ଏବଂ ହୋଇଛ, ତାହା ଆଜିକାର ପତ୍ରରେ ଡକ୍ଟର କ୍ଷେତ୍ରବାସୀ ନାୟକଙ୍କୁ ଜଣାଇ ଦେଇଛି । ପ୍ରାୟ ଦୂରରେ ରହିଯାଉଥିବାରୁ ପାରମାର୍ଥିକ ସହଯୋଗ ହୋଇପାରୁନାହିଁ । ତେବେ ଆଗାମୀ ବାର୍ଷିକ ଉତ୍ସବ(ଅକ୍ଟୋବର ୨୫-୨୬ )କୁ ଯାଇ ଅନୁଷ୍ଠାନର (ଓଡ଼ିଆ ଗବେଷଣା ପରିଷଦ) ଉତ୍ସବରେ ଯୋଗଦେବାର ଇଚ୍ଛା ରହିଛି । ××× ହଁ, ଏହି ବେଳକୁ ଯଦି ହୁଏ ଗୋଟିଏ ଦୁଇଟି ମୋର ଗଳ୍ପ ସଂକଳନ ନିମନ୍ତେ ପାଣ୍ଡୁଲିପି ପ୍ରସ୍ତୁତ କରି ନେଇଥିବି । ଆପଣମାନେ ସାହାଯ୍ୟ କଲେ କୌଣସି କୌଣସି ପ୍ରକାଶକଙ୍କୁ ଦେଇ ହେବ । ମୋର ଅନୁଭବ ହେଉଛି ଯେ ଅନ୍ତତଃ ମୋର ୩/୪ଟି ଗଳ୍ପ ସଂକଳନ ପ୍ରକାଶ ନହେଲେ ହେବ ନାହିଁ ଏବଂ ଆପଣଙ୍କ ମଧ୍ୟ ଏହାହିଁ ଇଚ୍ଛା । ଥେସିସ୍‌ଟି ଏହି ପୂଜାଛୁଟିରେ ଏଠାକାର ନିର୍ମଳବାବୁଙ୍କ 'ସାରସ୍ୱତ ପୁସ୍ତକ ଭଣ୍ଡାର'କୁ ପ୍ରକାଶ ପାଇଁ ଦେଇଦେବି । ନଚେତ୍‌ କଟକଠାରେ ପୁସ୍ତକ ଭଣ୍ଡାରକୁ ଦେଇଦେବା ।

ଆପଣ ଆପଣଙ୍କ ପୂର୍ବ ପତ୍ରରେ ଆପଣଙ୍କ 'ମଧ୍ୟସ୍ଥବାଣୀ' ସଂପର୍କରେ ଲେଖିଛନ୍ତି । ଏ ପୁସ୍ତକଟି ଏଯାଏ ପଢ଼ିବାର ସୁଯୋଗ ପାଇନାହିଁ । ତେବେ ଯେତେଶୀଘ୍ର ମିଳିଯାଏ, ପଢ଼ିନେବି । ଏହି ପୁସ୍ତକ ସଂପର୍କରେ ସମାଜ ପୃଷ୍ଠାରୁ ପଢ଼ିଥିଲି ଏହିପରି " ଡକ୍ଟର କୃଷ୍ଣଚରଣ ବେହେରା ବିଭିନ୍ନ ସମୟରେ ବିଭିନ୍ନ ପତ୍ରିକାରେ ଯେଉଁ ଗ୍ରନ୍ଥ ସମୀକ୍ଷାମାନ କରିଛନ୍ତି ତାହା ଏ ବହିରେ ସଂକଳିତ । ତାଙ୍କ ସମୀକ୍ଷାର ପରିସର ମଧ୍ୟରେ କବିତା, ଗଳ୍ପ, ପ୍ରବନ୍ଧ, ପର୍ଯ୍ୟଟନ ସାହିତ୍ୟ, ପ୍ରାଚୀନ ପୁସ୍ତକ, ଓଡ଼ିଆ ମୁସଲମାନ ଲେଖକଙ୍କ ଲେଖା, ନାଟକ ଇତ୍ୟାଦି ବହୁବିଧ ରଚନା ରହିଛି । ସାହିତ୍ୟ ସୃଷ୍ଟିର ଯଥାଯଥ ମୂଲ୍ୟାୟନ ଦିଗରେ ଗ୍ରନ୍ଥସମୀକ୍ଷା ଯେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ, ପୃଥିବୀର ସବୁ ଭାଷାରେ ଏହା ସର୍ବଜନ ସ୍ୱୀକୃତ । ଗ୍ରନ୍ଥ ସମୀକ୍ଷା ପାଠକ ଓ ସାହିତ୍ୟ ସୃଷ୍ଟି ମଧ୍ୟରେ ସେତୁବନ୍ଧର କାର୍ଯ୍ୟ କରେ ।

ଗ୍ରନ୍ଥ ସମୀକ୍ଷା ସମାଲୋଚନା ସାହିତ୍ୟର ଅଙ୍ଗ, ତେଣୁ ଏକ କଷ୍ଟକର କାର୍ଯ୍ୟ । ଏବହିରେ ଥିବା ଗ୍ରନ୍ଥ ସମୀକ୍ଷା ଗୁଡ଼ିକରେ ଡକ୍ଟର ବେହେରା ସେ ଦିଗ ପ୍ରତି ବିଶେଷ ସଚେତନ ଥିବା

ଜଣାପଡେ ।'' ('ସମାଜ'ଦୈନିକ–ତା ୪.୧୦.୮୦–୫୧ମ ଭାଗ, ୨୬୨ସଂଖ୍ୟା)

ଏ ବହିଟି ନଜରକୁ ଆସିଗଲେ, ଆମକ୍ ଅନ୍ତତଃ ଗ୍ରନ୍ଥ ସମୀକ୍ଷା ଦିଗରେ କିଛି ନୂତନ ବାଟ ବତେଇ ଦେବ ।

ଆଶା, ସପରିବାର କୁଶଳରେ ଅଛନ୍ତି । ରହୁଛି ।

ପତ୍ର ଦେବେ । ଦେଉଥିବେ । ଆପଣଙ୍କ ପତ୍ର ହିଁ ପ୍ରେରଣା । ଇତି ।

ନମସ୍କାରାନ୍ତେ–
ଆପଣଙ୍କର ଗୁଣମୁଗ୍ଧ
ପୂର୍ଣ୍ଣାନନ୍ଦ ଦାନୀ

॥ ୧୫୧ ॥

ବାଲେଶ୍ୱର
୧୮/୧୦/୮୦

ପୂଜନୀୟ ସାର୍ !

ମୋର ପ୍ରଣାମ ନେବେ । ମାଉସୀଙ୍କୁ ମୋର ପ୍ରଣାମ, ଚୁନି ଅପାଙ୍କୁ ଶୁଭେଚ୍ଛା ଏବଂ ଟୁଟୁକୁ ମୋର ସ୍ନେହାଶିଷ ।

ସେଦିନ ଆପଣଙ୍କଠାରୁ ବିଦାୟ ନେଇ ଆସିଲି । ତା ପର ଦିନ ମୁଁ ବାଲେଶ୍ୱର ଆସିଲି । ସେଠାରେ ସମୟ ଏକ ପ୍ରକାର କଟୁଥିଲା । ଅଧିକାଂଶ ସମୟରେ ଆପଣଙ୍କ ଘରକୁ ଯାଇଛି । କେବଳ ଯେ Translation କାମ ପାଇଁ ତା ନୁହେଁ । ଅନେକ ସମୟରେ ହଷ୍ଟେଲ୍‌ରେ ମତେ ଭାରି ଖରାପ ଲାଗେ, ତେଣୁ ମୁଁ ଆପଣଙ୍କ ଘରକୁ ଚାଲିଯାଏ । ଆପଣଙ୍କ ପ୍ରେରଣା ଉତ୍ସାହ ତା ସଙ୍ଗେ ସଙ୍ଗେ ମାଉସୀଙ୍କର ମାତୃତୁଲ୍ୟ ସ୍ନେହ, କେବଳ ସେଇଥିପାଇଁ ବୋଧହୁଏ ମୁଁ ବାରମ୍ବାର ଟାଣିହୋଇ ଯାଏ ସେଠାକୁ । ଏଠାକୁ ଆସିବାର ୧୫ଦିନ ଖଣ୍ଡେ ଭଲ ଲାଗୁଥିଲା, ମାତ୍ର ବର୍ତ୍ତମାନ ଆଦୌ ଭଲ ଲାଗୁନି । ଆପଣଙ୍କ 'ଚରୁ ଓ ଚରିତ' ପଢ଼ିଲି, Article ଗୁଡିକ ମତେ ବହୁତ ଭଲ ଲାଗିଲା ।

ସାର୍ ! ସେଠାରେ ଥିବାସମୟରେ ମୁଁ ଯେତେବେଳେ ଆପଣଙ୍କ ଘରୁ ଫେରେ ଅନେକ ଉତ୍ସାହ, ତଥା ପ୍ରେରଣା ନେଇ ଫେରେ ଯଦ୍ୱାରା ପଢ଼ିବା ପାଇଁ ଆଗ୍ରହ ଆସେ । ଯେତେବେଳେ ସମସ୍ତ ଜଗତ ମତେ ଅନ୍ଧକାର ଦେଖାଯାଉଥିଲା, ଆପଣମାନେ ମତେ ଅନେକ ସ୍ନେହ, ମମତା ପ୍ରଦର୍ଶନ କରିଛନ୍ତି, ଉତ୍ସାହିତ କରିଛନ୍ତି ଅନେକ, ଯାହାଦ୍ୱାରା ବାପାଙ୍କ ଭଳି ଆପଣଙ୍କ ନିକଟରେ ମୁଁ ପିତୃତ୍ୱର ସନ୍ଧାନ ପାଇଛି । ଆପଣଙ୍କର ଆଶୀର୍ବାଦ ମୋ ଜୀବନରେ ନିଶ୍ଚୟ ପଥପ୍ରଦର୍ଶକ ହୋଇ ପାରିବ । ସେଥିପାଇଁ ଆପଣଙ୍କୁ ପ୍ରତିଦାନରେ କିଛି ଭକ୍ତି, କିଛି କୃତଜ୍ଞତା ଛଡା ଆଉ ମୁଁ କ'ଣ ବା ଦେଇପାରିବି ! ଏଠାକୁ ଆସି ବହିପତ୍ର

ଯୋଗାଡ କରି ପଢ଼ାପଢ଼ି ଆରମ୍ଭ କରୁଛି । ଆର ମାସକୁ ମୁଁ ସେଠାକୁ ଯିବି ଓ ଗଲେ ଆପଣଙ୍କୁ ସାକ୍ଷାତ କରିବି । ×××

ସ୍ନେହାଧୀନା
ବିଷ୍ଣୁପ୍ରିୟା ଓତା

॥ ୧୫୨ ॥

ଭୁବନେଶ୍ୱର
୨୮.୧୦.୮୦

ସମ୍ମାନନୀୟ,

ସାର୍, ନମସ୍କାର ନେବେ । ପୂଜା ସଂଖ୍ୟାରେ ମୁଁ ଏଥର ସମସ୍ତ ପତ୍ରିକାମାନଙ୍କୁ ପ୍ରାୟ ଚିକିନିଖି ପଢ଼ିବାର ସୌଭାଗ୍ୟ ଲାଭ କଲି । ମାତ୍ର 'ଆପଣା ଢ଼ୋଲ' ଭଳି ଲେଖାଟିଏ ବା କାହିଁ ? ଆପଣଙ୍କର ନିର୍ଭୀକତା ପାଇଁ ଅଶେଷ ବଧାଇ ଜଣାଉଛି ।
କିଛି ବଂଧୁ ଓ ଗୁରୁଙ୍କର ଅପ୍ରିୟ ନହୋଇ ପାରିଲେ ଆପଣ ଜଣେ ସାଲିସ୍‌କାରୀ ଲେଖକ; ଯୁଗୀୟ ଆହ୍ୱାନ ପ୍ରତି ଭୀତତ୍ରସ୍ତ ବୋଲି କୁହାଯିବ ।

ଏଇମିତି ତରୁଣମାନଙ୍କ ନିକଟରେ ଶ୍ରଦ୍ଧାଭାଜନ ହୋଇ ଗୁରୁଜନମାନଙ୍କୁ ଗାଳି ଦେବାରେ ଆପଣଙ୍କର ଚିତ୍ତ ଆନନ୍ଦରେ ଉଦ୍‌ବେଳିତ ହୋଇଉଠୁ । ତେବେ ଯାଇଁ ସତ୍ୟର ଜୁଆର ମଲା ମାଟିରେ ଭିଜା ବାସ୍ନାର ମହକ ଉକୁଟାଇ ପାରିବ ।
ଓ.ଯୁ.ବ.ଲେ.ସ.ରେ ସମ୍ପ୍ରତି କିଛି ପ୍ରତିକ୍ରିୟାଶୀଳ ବ୍ୟକ୍ତି ଆସ୍ଥାନ ଜମେଇବାକୁ ଉଦ୍ୟମ କରୁଛନ୍ତି । ଅନ୍ୟାନ୍ୟ ଖବର ମୋର ସଂଘର୍ଷମୟ । ପୁଣି କଟକ ଗଲେ ସାକ୍ଷାତ । ସମୟ ହେଲେ, ଚିଠି ଦେବେ । ଇତି ।

କୁଳମଣି ଜେନା
37, 1st Hostel
Vani-Vihar, BBSR-4

॥ ୧୫୩ ॥

ଇଂରାଜୀ ବିଭାଗ
ବାଣୀବିହାର

୨୦.୧.୮୧

ପରମପୂଜ୍ୟ ସାର୍,

ଆପଣଙ୍କ ପଠିତ '୧୯୨୦ ପରବର୍ତ୍ତୀ ଓଡ଼ିଆ ଉପନ୍ୟାସ' ପ୍ରବନ୍ଧଟି ଉଚ୍ଚକୋଟୀର, ସାରଗର୍ଭକ ହୋଇଥିଲା । ମୋତେ ଖୁବ୍ ଭଲ ଲାଗିଥିଲା । ମନଯୋଗ ସହକାରେ ଶୁଣିବାକୁ

ଚେଷ୍ଟା କରିଥିଲି । ପାରୁପର୍ଯ୍ୟନ୍ତ ବୁଝିବାକୁ ଗ୍ରାହ୍ୟ କରିଥିଲି । ହେଲେ, ସାର୍ ମୋର କହିବାର କଥା ଅଛି । ଆପଣ 'Anti-novel' କୁ ଓଡ଼ିଆରେ 'ଅଣ-ଉପନ୍ୟାସ' କହିବାରେ ମୋ ମନ ସନ୍ତୁଷ୍ଟ ନୁହେଁ । କାରଣ 'Anti-novel' ହେଉଛି novel unlike the conventional form or non-traditional type . କିନ୍ତୁ ଅଣ-ଉପନ୍ୟାସ ମୋ ମନରେ 'Non-novel' ଭଳି ଶବ୍ଦଟିଏ ଆଣୁଛି । ଉପନ୍ୟାସ ଲେଖାର ଗତାନୁଗତିକ ରୀତି, ନୀତି, ଧାରା, ଶୈଳୀର ବିରୋଧୀ ଏ । 'Content' କଥା ବିଷୟରେ ମୁଁ ଅନଭିଜ୍ଞ । ଆଉ ସାମାଜିକ ଦୃଷ୍ଟି କୋଣରୁ ଏ ପ୍ରକାର ଉପନ୍ୟାସର 'ଲେଖିବା ପାଇଁ ଲେଖିବା'-ଏହି ଭୂମିକା ରହିଛି, ନା 'to instruct' ଏ ଉଦ୍ଦେଶ୍ୟ ରହିଛି ? ଯେକୌଣସି ଛାପାଲେଖାକୁ ତ 'ସାହିତ୍ୟ' ପର୍ଯ୍ୟାୟଭୁକ୍ତ କରିହେବନି । ଯଦି ନଥାଏ, ତାହାହେଲେ ଏସବୁକୁ ସମୀକ୍ଷାର ପରିସର ଭିତରେ ଆଣିବାର କି ଯଥାର୍ଥତା ଅଛି ? ସର୍ବୋପରି ଏପ୍ରକାର ଉପନ୍ୟାସର ପାଠକମାନଙ୍କ ପ୍ରତି କ'ଣ ଉଦ୍ଦେଶ୍ୟ ରହିଛି ? ଆପଣ 'Satire' 'ବ୍ୟଙ୍ଗଧର୍ମୀ ଉପନ୍ୟାସ' ସଂପର୍କରେ କିଛି ସୂଚାଇ ନଥିଲେ ବୋଲି ମୋ ମନେ ହେଉଛି । ତେବେ ଏପର୍ଯ୍ୟନ୍ତ ଓଡ଼ିଆରେ ଏପ୍ରକାର ଉପନ୍ୟାସ କାହିଁ ? ଇଂରାଜୀରେ ଯେମିତି 'Jonathan Swift'ଙ୍କର 'Gulliver's travels' । ମୋ ହୃଷ୍ଟମନକୁ କ'ଣ ଆସିଲା କେଜାଣି ଏଆଡ୍ରୁ ସେଆଡ୍ରୁ ଆପଣଙ୍କ ପାଖକୁ ଦୁଇପଦ ଲେଖି ପକାଇଲି । କ୍ଷମା ଓ ଆଶୀର୍ବାଦ ଭିକ୍ଷା କରି ରହିଲି ।

ମାଣିକଲାଲ ଭଞ୍ଜ

॥ ୧୫୪ ॥

ପୁରୀ
୧୭.୩.୮୧

ସାର୍,

ପ୍ରଣାମ ଜାଣିବେ । ଯିବା ବେଳେ ଆପଣଙ୍କୁ ଦେଖା କରି ପାରିଲି ନି । ସେଦିନ ଫାଷ୍ଟ ପିରିଅଡ୍ କ୍ଲାସ ଥିଲା । ପରେ ଶୁଣିଲି ଆପଣ ସେଦିନ ୨ଟା ବେଳକୁ ପୁରୀ ଛାଡିଲେ । ଆଜି ଆପଣଙ୍କ 'ସାହିତ୍ୟ ପୁରସ୍କାର : ଅର୍ଥ ଓ ପରମାର୍ଥ' ଆଲୋଚନାଟି ସମାଜରୁ ପଢ଼ିଲି । ଏଭଳି ସାହସିକ ମତାମତ ପାଇଁ ମୋ ତରଫରୁ ଗଭୀର ସାଧୁବାଦ । ହେଲେ, ଭାରତ, ପୁଣି ଭାରତର ଏକ ଚିର ଅବହେଳିତ ବକଟେ ଓଡ଼ିଶା, ତହିଁରେ ବସବାସ କରୁଥିବା ତଥାକଥିତ ବୁଦ୍ଧିଜୀବୀ-ଯେଉଁମାନେ କି ବେଶି ସମୟ ଢ଼ୋଳାଇବାରେ, ଷଣ୍ଢଇଢ଼େଇରେ ପାରସ୍ପରିକ ଛିଦ୍ର ସନ୍ଧାନରେ ବେଶୀ ବ୍ୟସ୍ତ, ଗୋଷ୍ଠୀଗଠନରେ ବି କମ୍ ସମୟ ଅପଚୟ ହୁଏ ନାହିଁ, ନିଜ ଢ଼ୋଲ ନିଜେ ନ ବାଡେଇଲେ କୁଆଡେ ଠିକ୍ ଠିକ୍ ବାଜଣାର ସୁର ବାହାରେ ନାଇଁ, ସେଠି ଆପଣଙ୍କ କଥାକୁ କେଇ ଯେ ସହୃଦୟତାର ସହ ଶୁଣିବେ ଓ

ବିଚାର କରିବେ, ମୋର ଘୋର ସନ୍ଦେହ ରହିଛି । ଆଉ ଗୋଟେ କଥା 'ପରମାର୍ଥ' ସଂପର୍କରେ । ସାହିତ୍ୟ କ୍ଷେତ୍ରରେ ଏହାର ଉପଯୋଗିତା କିଛି ସ୍ପଷ୍ଟ ହେଲା ନାହିଁ । ସଂସାରୀ ପକ୍ଷରେ ପରମାର୍ଥର ମୂଲ୍ୟବୋଧ ଯେଉଁଭଳି ସଂଚରଣଶୀଳ, ସାହିତ୍ୟ କ୍ଷେତ୍ରରେ ତା ଅନେକଟା ସଂକୁଚିତ ବୋଲି ପ୍ରତିଯୋଗିତାର ଯୁଗ କହେ । ତେବେ ସବୁ କ୍ଷେତ୍ରରେ ନିରାଶ ହେବା ଠିକ୍ ନୁହେଁ । ଚାକିରିରୁ ଅବସର ନେବା ପାଇଁ ଯେମିତି ବୟସସୀମା ଅଛି, ସାହିତ୍ୟରୁ ଅବସର ନେବା ପାଇଁ ସମାଜ, ରାଷ୍ଟ୍ର, ଏକାଡେମୀ କିଛି ଖସଡ଼ା ପ୍ରସ୍ତୁତ କରନ୍ତା କି ! ହସିବେ ଆପଣ । ମୁଁ ବି ପାରିଲାର ଲୋକ ମଧ୍ୟରେ ସବୁବେଳେ ସୁନାକଳସ ।

କମଳାକାନ୍ତ ଲେଙ୍କା

॥ ୧୫୫ ॥

ପ୍ରତୀଚୀ
ସାହିତ୍ୟ ସଂସଦ (ଶିକ୍ଷକ ପରିଷଦ)
ପଞ୍ଚାୟତ କଲେଜ, ବରଗଡ଼
୨୪.୩.୮୧

ପରମପୂଜ୍ୟାସ୍ପଦ ସାର୍,

ସଭକ୍ତି ଗ୍ରହଣ କରିବେ । ମାଙ୍କୁ ମୋର ପ୍ରଣାମ ।

ଆପଣଙ୍କ ଚିଠି ପାଇଚି । 'ଧନୁଯାତ୍ରା' ଆଲୋଚନାଟି ଉତ୍କଳପ୍ରସଙ୍ଗ ୧୯୮୦ ଡିସେମ୍ବର ସଂଖ୍ୟାରେ ପ୍ରକାଶ ପାଇଛି । ତିନୋଟି ଫଟୋ ଚିତ୍ର ମଧ୍ୟ ସ୍ଥାନ ପାଇଛି । ଗଲାବେଳକୁ ପତ୍ରିକାଟି ନେଇଯିବି ।

ଏଠି ଶ୍ରୀଚରଣ ମହାନ୍ତି ଅଧ୍ୟାପକ ଭାବରେ ଯୋଗ ଦେଇଛନ୍ତି । ସେ ଆମ ଗାଁ ଲୋକ । ଏମ୍.ଫିଲ୍. ସାରି ଆସିଛନ୍ତି । ଡଗରର ଜଣେ ପ୍ରଧାନ ପୃଷ୍ଠପୋଷକ । ଡଗରର ଜନ୍ମଦିନ ସଂଖ୍ୟାକୁ 'ମାୟାଧର ମାନସିଂହ' ବିଶେଷାଙ୍କ କରିବା ପାଇଁ ଆମେ ଦିହେଁ ଖୁବ୍ ଜୋରରେ ଲାଗି ପଡ଼ିଛୁ । ଫତୁରାନନ୍ଦ ମଧ୍ୟ ଆଲୋଚନା ଶୀଘ୍ର ଯୋଗାଡ଼ କରି ପଠେଇବାକୁ ଆମକୁ ଲେଖିଛନ୍ତି । ଡ. ନରେନ୍ଦ୍ର ମିଶ୍ର(ଗଦ୍ୟସାହିତ୍ୟ ସଂପର୍କରେ), ଡ. ନୀଳାଦ୍ରି ହରିଚନ୍ଦନ(ନାଟ୍ୟସାହିତ୍ୟ ସଂପର୍କରେ), ସଚ୍ଚିଦାନନ୍ଦ ମିଶ୍ର(କବିତା ସଂପର୍କରେ), ଆଦିକନ୍ଦ ସାହୁ(ଆଲୋଚନା ସାହିତ୍ୟ ସଂପର୍କରେ) ଆଲୋଚନା ପଠେଇବା ପାଇଁ ସ୍ୱୀକୃତି ଦେଇସାରିଲେଣି । କିଏ କେଉଁ ବିଷୟରେ ଆଲୋଚନା ପ୍ରସ୍ତୁତ କରିବେ ଫତୁରାନନ୍ଦ ତାର ଏକ ତାଲିକା ପଠେଇବାକୁ ଲେଖିଛନ୍ତି । ସେ ଯା ଭିତରେ ଆପଣଙ୍କୁ ସାକ୍ଷାତ କରିପାରନ୍ତି । ଏ ସଂପର୍କରେ ଆପଣଙ୍କ ମତାମତ ତଥା ଉପଦେଶ ଆଶା କରୁଛି ।

ମୁଁ ମାୟାଧର ମାନସିଂଙ୍କ କ୍ଲୋଜ୍‌ସେଟ୍ ପ୍ଲେ ଉପରେ ଆଲୋଚନାଟିଏ ଲେଖିବା ପାଇଁ

ଠିକ୍ କରିଛି । ମାତ୍ର କେତେଗୁଡ଼ିଏ ଇଂରାଜୀ ଶବ୍ଦର (closet play, literary drama, Bastarad form- ଅବିମିଶ୍ର ଶୈଳୀ, Verse Drama କାବ୍ୟ ନାଟିକା) ଓଡ଼ିଆ ପାରିଭାଷିକ ଶବ୍ଦ କ'ଣ କରାଯାଇପାରିବ ? ୟୁନିଭରସିଟି ତଥା ଏଠାକାର ଅଧ୍ୟାପକମାନଙ୍କୁ ପଚାରି କୌଣସି ସନ୍ତୋଷଜନକ ଉତ୍ତର ପାଇନି । ଏସଂପର୍କରେ ଆପଣଙ୍କ ଉପଦେଶ ଆଶା କରୁଛି ।

ଆପଣଙ୍କ କଥାମତେ M.Phil. ଥିସିସ୍‌ର ବିଷୟକୁ ଓଡ଼ିଆ ଅଭିଧାନ ରଖିବାକୁ ଡ. ବୃନ୍ଦାବନ ଆଚାର୍ଯ୍ୟଙ୍କ ସହିତ କଥା ହେଇଛି । ସେ ମଧ କଥା ଦେଇଛନ୍ତି । ଯୋଉ ଦିନ ଯାଉଛି, ପ୍ରଫେସରଙ୍କ ସହିତ ସାକ୍ଷାତ ହୋଇ ପାରୁନି । କ୍ଲାସ ତ ହଉନି । ସପ୍ତାହରେ ଥରେ ଦୁଇଥର ଲେଖାଏଁ ବୁର୍ଲା ଯାଉଛି । ଅଭିଧାନ ସଂପର୍କରେ ପଢ଼ାପଢ଼ି ମଧ କରୁଛି । ପୂର୍ଣ୍ଣଚନ୍ଦ୍ର ଭାଷାକୋଷଟି ଆମ ଲାଇବ୍ରେରୀରେ ଅଛି, । xxx

ସ୍ନେହର ଗୌରାଙ୍ଗଚରଣ ଦାଶ

॥ ୧୫୬ ॥

C-26, Sambalpur University Campus
At Jyoti Vihar, P.O. Burla-768 017
ଦୋଳପୂର୍ଣ୍ଣିମା-୮୧

ମାନନୀୟେଷୁ,

ପ୍ରଣତି । ଆପଣଙ୍କର ଚିଠି ଯଥା ସମୟରେ ପାଇଛି । ମୁଁ ଚାରୋଟି ନାଟକର ଅନୁବାଦ କରୁଛି । ତିନୋଟି ଟ୍ରାଜେଡି–ଆଏସ୍କିଲସ୍‌ଙ୍କ 'ବନ୍ଦୀ ପ୍ରୋମେଥିଉସ୍', ସୋଫୋକ୍ଲିସ୍‌ଙ୍କ 'ରାଜା ଓଏଦିପସ୍', ଇଉରିପିଦିସଙ୍କ 'ମିଦିଆ' ଏବଂ ଗୋଟିଏ କମେଡି–ଆରିଷ୍ଟୋଫେନିସ୍‌ଙ୍କ 'ବେଙ୍ଗ' । ଡିମାଇରେ ଏଗୁଡ଼ିକର ଦୈର୍ଘ୍ୟ ପ୍ରାୟ ୨୦୦ ପୃଷ୍ଠା ହେବ। ତାଛଡା ଗୋଟିଏ ଆଲୋଚନାତ୍ମକ ଭୂମିକା, ଟୀକା ଏବଂ ଟିପ୍ପଣୀ ଇତ୍ୟାଦି ମିଶି ଆଉ ୫୦ ପୃଷ୍ଠା ହୋଇପାରେ । ପୁସ୍ତକଟିର ନାମ 'ଗ୍ରୀକ୍ ନାଟକ ଚତୁଷ୍ଟୟ' ଦେବାପାଇଁ ଭାବିଛି । ଆପଣଙ୍କ ମତାମତ ଜଣାଇବେ । ଅନୁବାଦ କାମ ବେଶ୍ ନିୟମିତ ଚାଲିଛି । ଯଦି ଆପଣ କହନ୍ତି ତେବେ ମୁଁ ବର୍ତ୍ତମାନ ଦୁଇଟିର କପି ଆପଣଙ୍କ ପାଖକୁ ପଠାଇଦେବି । ପୁସ୍ତକଟି ଯଦି ବଳରାମ ବାବୁଙ୍କ ପ୍ରେସ୍‌ରେ ହୁଅନ୍ତା, ତେବେ ନିର୍ଭୁଲ ହେବ ବୋଲି ଆଶା । ନଚେତ୍ ଅନ୍ୟତ୍ର ବହୁତ ଭୁଲ ରହିବ । ଯା ହେଉ, ନିର୍ଭୁଲ ଛାପା ଇତ୍ୟାଦି ଆପଣଙ୍କର ଦାୟିତ୍ୱ । ଆପଣ ଯେଉଁଠାରୁ କରାନ୍ତୁ, ମୋର ସେଥିରେ କୌଣସି ଆପତ୍ତି ନାହିଁ ।

ଆଦିକନ୍ଦକୁ ଥରେ 'ଏଷଣା' କଥା ପଚାରିଥିଲି । ସେ ମୋତେ ଦେଖାଇବ ବୋଲି କହୁଥିଲା । ଲେଖା ଏବଂ ପୃଷ୍ଠା ଇତ୍ୟାଦି ତୁଳନାରେ ଦାମ୍ ଖୁବ୍ ବେଶୀ ହୋଇଗଲା ବୋଲି କହୁଥିଲା ମୋତେ ।

ଗତ ଅକ୍ଟୋବରରୁ ମୁଁ ବଳରାମ ବାବୁଙ୍କୁ ଜର୍ଣ୍ଣାଲ ପାଇଁ କାଗଜ ଓ ସମସ୍ତ ଲେଖା ଦେଇଛି । ଗତ ସଂଖ୍ୟା ଛାପାଖର୍ଚ୍ଚ ଟ୧୨୦୦/ ଦେଇଛି । ଆଉ ମୋତେ ଟ୨୦୦/ ଦେବାକୁ ପଡିବ । ମୁଁ ନିକଟରେ ଦେଇଦେବି । ସବୁଗୁଡ଼ିକ ତ ମୋତେ ହାତରୁ ପ୍ରାୟ ଦେବାକୁ ପଡୁଛି । ଏଣୁ ଦେବାରେ ଅସୁବିଧା ହେଉଛି । ଚଳନ୍ତି ସଂଖ୍ୟା ପାଇଁ ମୁଁ ତାଙ୍କୁ ପ୍ରାୟ ୭/୮ ଖଣ୍ଡି ଚିଠି ଦେଲିଣି । କିନ୍ତୁ କୌଣସି ଉତ୍ତର ନାହିଁ । ଏଠାରେ ନାନାଦି ଅସୁବିଧା । CL ନେଇ ବାରମ୍ବାର ଯିବା ଆସିବା କରିବାର ଆଦୌ ସୁବିଧା ନାହିଁ । ତାଛଡା ପ୍ରତିଦିନ ବସ୍‌ରେ ଯିବା ଆସିବାର କ୍ଲାନ୍ତି ମୋତେ ବଡ ନିଷ୍ପିଷ୍ଟ କରି ଦେଉଛି । ଈଶ୍ୱରଙ୍କର କୌଣସି ଅଭିଶାପରୁ ଅଥବା ଆଶୀର୍ବାଦରୁ ମୋ ଜୀବନରେ ସବୁଠାରୁ ମୂଲ୍ୟବାନ ସମୟଗୁଡ଼ିକ ବର୍ତ୍ତମାନ ଏହିପରି ନଷ୍ଟ ହୋଇଯାଉଛି । ତଥାପି ଭାବୁଛି ଏମାସ ଶେଷ ବେଳକୁ ୨/୪ଦିନ ପାଇଁ ଭଦ୍ରକ ଯିବି । xxx

ଅନନ୍ତଚରଣ ଶୁକ୍ଳ

॥ ୧୫୭ ॥

ବ୍ରହ୍ମପୁର
୧୧.୮.୮୧

ମାନନୀୟ ସାର୍,

ମୋର ପ୍ରଣାମ ଗ୍ରହଣ କରିବେ । 'କଥା ଓ କବିତା' ପୂଜା ସଂଖ୍ୟା ବାହାରିବା ସ୍ଥିର ହୋଇଛି । ଲେଖାଲେଖି ସଂଗ୍ରହ ଚାଲିଛି । ଆପଣ କହିଥିଲେ ଲେଖାଟିଏ ପଠାଇବା ପାଇଁ, ମୋ ଠିକଣାରେ ଏହି ମାସ ଶେଷ ସପ୍ତାହ ସୁଦ୍ଧା ପଠାଇ ଦେଇ ପାରିଲେ ଆମେ ଉପକୃତ ହୁଅନ୍ତୁ ।

ଏଥରର ସଂଖ୍ୟାରେ ଆମେ ଦୁଇଟି ବିଶେଷ ସ୍ତମ୍ଭ ଆରମ୍ଭ କରିବୁ ଯଥା ବିଦେଶୀ ସାହିତ୍ୟ ଓ ପ୍ରତିବେଶୀ ସାହିତ୍ୟ । ପ୍ରତିବେଶୀ ସାହିତ୍ୟରେ ଏଥର ଆମେ ତେଲୁଗୁ ସାହିତ୍ୟର ରଥୀ ୰ ବିଶ୍ୱନାଥ ସତ୍ୟନାରାୟଣାଙ୍କର ଜୀବନୀ ଓ କୃତି ଉପରେ ଗୋଟିଏ ଆଲୋଚନା ପ୍ରକାଶ କରିବୁ । ଏହା ଜଣେ ତେଲୁଗୁ ଅଧ୍ୟାପକଙ୍କ ଦ୍ୱାରା ଲେଖାଯାଇଛି ଓ ଅନୁବାଦର ଦାୟିତ୍ୱ ନେଇଛନ୍ତି ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ । ବିଦେଶୀ ସାହିତ୍ୟରେ ବ୍ରିଟିସ୍ ସାହିତ୍ୟର ବର୍ତ୍ତମାନ ବହୁ ଚର୍ଚ୍ଚିତ ଔପନ୍ୟାସିକ ଉଇଲିୟମ୍ ଗୋଲଡ଼ିଙ୍କ ଉପରେ ଏକ ଆଲୋଚନା ପ୍ରକାଶ କରିବାର ପ୍ରସ୍ତାବ ରହିଛି । ମନୋଜ ଦାସଙ୍କ ଗଳ୍ପ ଉପରେ ଆଲୋଚନା କୁମୁଦ ବାବୁ ଲେଖୁଛନ୍ତି । ଏହା ଛଡା 'ଚତୁର ବିନୋଦ' ଉପରେ କୃଷ୍ଣଚନ୍ଦ୍ର ଷଡଙ୍ଗୀଙ୍କର ଏକ ଲେଖା ଆମର ହସ୍ତଗତ ହୋଇଛି । ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ ମିଥ୍ ଉପରେ ଏକ କାବ୍ୟତାତ୍ତ୍ୱିକ ଆଲୋଚନା ପ୍ରସ୍ତୁତିରେ ଲାଗଛନ୍ତି । ତେଣୁ ଯାହା ମୋଟାମୋଟି ବୁଝାଯାଉଛି, ଆଲୋଚନା

ଦିଗରୁ ପତ୍ରିକାଟି ଊଣା ହେବ ନାହିଁ । କିନ୍ତୁ ସମସ୍ୟା ଗଳ୍ପ ନେଇ । ଅନୁବାଦକୁ ତ ରଖିଛୁ । କିନ୍ତୁ ସୃଜନୀ ଲେଖା ସେପରି ହସ୍ତଗତ ହୋଇପାରିନାହିଁ । ଗୁରୁବାବୁ କିଛି ଯୋଗାଡ କରି ପଠାଇବେ ବୋଲି କହିଥିଲେ । ମୁଁ ଲେଖିଛି-ପଠାଇବେ ଏହା ଭିତରେ ବୋଧହୁଏ ।

ଆପଣ ଜାଣିଲେ ଖୁସି ହେବେ ଯେ ଏ ସଂଖ୍ୟାଟି ଆମର ଷ୍ଟଲରେ ଖୁବ୍ ଭଲ ବିକ୍ରି ହୋଇଛି । ଯାହା ହେଉ, ଆପଣଙ୍କର ଆଶୀର୍ବାଦ ଓ ସଦିଚ୍ଛା ରହିଲେ ପତ୍ରିକାଟି ଯେ ଉତ୍ତରୋତ୍ତର ଉନ୍ନତି କରିବ-ଏଥିରେ ସଂଦେହ ନାହିଁ । ବ୍ରହ୍ମପୁରରୁ ଏହା ଏକ ମାତ୍ର ସାହିତ୍ୟ ପତ୍ରିକା ବର୍ତ୍ତମାନ । ଶୁଣାଯାଉଛି ପୂନର୍ବାର ବାଇଶି ପାହାଚ, ପ୍ରଫୁଲ୍ଲ ମହାନ୍ତିଙ୍କର ସଂପାଦନାରେ ଅତ୍ମପ୍ରକାଶ କରିବ ।

ମୁଁ ଯେଉଁ ଲେଖାଟି ଦେଇଥିଲି, ତାହା ବୋଧହୁଏ ପ୍ରକାଶିତ ହୋଇ ପାରିଲା ନାହିଁ । ଯଦି ନ ହୋଇଛି-ତାହା ହେଲେ ଥାଉ-ଆସନ୍ତା ବର୍ଷ ବା ଏବର୍ଷ ଶେଷରେ ଯେତେବେଳେ ଆମର Orissa Mathematical Societyର ବାର୍ଷିକ ଅଧିବେଶନ ହେବ ସେତେବେଳେ ପ୍ରକାଶ କରାଇବା ।

ଆଉ ସମସ୍ତ ଭଲ । ଆଶା ଆପଣ ସପରିବାରେ କୁଶଳରେ ଥିବେ । ମାଉସୀଙ୍କୁ ମୋର ପ୍ରଣାମ ଓ ପିଲାମାନଙ୍କୁ ସ୍ନେହ ଜଣାଇବେ । ଇତି ।

ଆପଣଙ୍କର

ବୀରେନ୍ଦ୍ରକୁମାର ନାୟକ

॥ ୧୪୮ ॥

ଅଧ୍ୟାପକ ବିଭୂତିଭୂଷଣ ସାହୁ, ଏମ୍.ଏ.
ଓଡ଼ିଆ ବିଭାଗ, କରଞ୍ଜିଆ କଲେଜ, କରଞ୍ଜିଆ

୧୭.୮.୮୧

ପୂଜନୀୟ ସାର୍,

ସର୍ବପ୍ରଥମେ ଆପଣଙ୍କୁ ମୋର କୋଟି କୋଟି ପ୍ରଣାମ । ମୋ ପରି ଏକ ଅଜ୍ଞାତ କୁଳଶୀଳ ନିକଟରୁ ଏପରି ଚିଠି ଖଣ୍ଡିଏ ପାଇ ଆପଣ ହୁଏତ ଆଚମ୍ବିତ ହେବେ । ମଣିଷ ଯେତେବେଳେ କାହାରିଠାରୁ କିଛି ହେଲେ ସାହାଭରସା ନପାଏ, ସେ ଭଗବାନଙ୍କଠାରେ ଆଶ୍ରୟ ନିଏ । ପଥରର ଭଗବାନ କିମ୍ବା ଶୂନ୍ୟରୂପୀ ଭଗବାନଙ୍କର ନିଦ୍ରାଭଙ୍ଗ କରିବାର କେତେଜଣଙ୍କର ବା ଶକ୍ତି ଅଛି ? ମାତ୍ର ମଣିଷରୂପୀ ଭଗବାନଙ୍କର ଆଶ୍ରୟ ଗ୍ରହଣ କଲେ ମଣିଷ ତ୍ରାଣ ପାଏ । ସେ ଉଦ୍ଧାର ହୁଏ । ମଣିଷ ପାଖରୁ ଯେ ଆଶା ବା ଆଶ୍ବାସନା ପାଏନା ସେ ହତଭାଗା ବୋଲି ଧରିନେବାକୁ ହେବ । ଏଇ ସାମାନ୍ୟ ଉପୋଦ୍‌ଘାତଟି ଦେବାର କାରଣ ମୁଁ ଆଜି ଆପଣଙ୍କଠାରେ ଶରଣାପନ୍ନ । ଆପଣ ମୋର ଭଗବାନ ।

ଆପଣ ଇଚ୍ଛା କଲେ ମୋତେ ମୋର ମହାମାନସିକ ସଂକଟରୁ ଉଦ୍ଧାର କରି ପାରିବେ । ଏଇ ଆତ୍ମବିଶ୍ୱାସ ବଳରେ ହିଁ ଆଜି ଆପଣଙ୍କ ନିକଟକୁ ଏଇ ଚିଠିଟି ଲେଖୁଛି । ଆପଣଙ୍କଠାରୁ ମୋର କୌଣସି ବ୍ୟକ୍ତିଗତ ସ୍ୱାର୍ଥସିଦ୍ଧି ପାଇଁ ଏହା ଏକ ଆଗୁଆ ପରିମାର୍ଜନା ବା ମାଷ୍ଟର ପ୍ଲାନ୍ ନୁହେଁ । ମୁଁ ଯାହା କହୁଛି ମୋର ଅନ୍ତରର କଥା ହିଁ କହୁଛି । ଓଡ଼ିଆ ସାହିତ୍ୟର ସାମୂହିକ ମଙ୍ଗଳ ପାଇଁ କହୁଛି । ମୁଁ ଆଜି ବଡ ନିରାଶ ହୋଇ ପଡିଛି ।

ସାର, 'ମହାଗଳ୍ପ'ର ପରିକଳ୍ପନା ସାହିତ୍ୟ ଜଗତରେ ଅଭିନବ ହେଲେ ସୁଦ୍ଧା ଅବାସ୍ତବ ନୁହେଁ । ଏହାର ଆତ୍ମ ସତ୍ତା ପ୍ରାଚୀନ ଯୁଗର ବୃହତ୍ କଥା, କଥା ସରିତ ସାଗର, ପଞ୍ଚତନ୍ତ୍ର ବା ମିତ୍ର ଲାଭ ବା ହିତପୋଦେଶ ଇତ୍ୟାଦିରେ ରହିଛି । ମହାକାବ୍ୟ, ମହାନାଟକ, ମହାପ୍ରବନ୍ଧ ଅର୍ଥାତ୍ ସନ୍ଦର୍ଭ ପରି ମହାଗଳ୍ପ ମଧ୍ୟ ଲେଖାଯାଇପାରେ । ଗଳ୍ପର ପ୍ରକୃତି ଓ ଆକୃତି ଭେଦରେ ଅବାସ୍ତବ ବା ଅବାନ୍ତର କଥା ରହିଲା କେଉଁଠୁ । ଆଧୁନିକ ଓଡ଼ିଆ ଗଳ୍ପ ରାଜ୍ୟକୁ ଦରାଣ୍ଡିଲେ ପୁଞ୍ଜାଏ ଯେ ମହାଗଳ୍ପଧର୍ମୀ ଗଳ୍ପ ବାହରିବ ଏହା ଠିକ୍ । ତାହାରି ପ୍ରକୃଷ୍ଟ ଏବଂ ଜୀବନ୍ତ ଉଦାହରଣ ଦେବାକୁ ଯାଇ ମୁଁ ଏ ଦିଗରେ ହାତ ଦେଲି । ଏକାଦି କ୍ରମରେ ୫/୬ଟି ଗଳ୍ପ ଲେଖିଲି । ସେଗୁଡ଼ିକ ସବୁ ଗୋଟିଏ ବିନ୍ଦୁରୁ ବାହାରି ଶାଖା ପ୍ରଶାଖା ନ୍ୟାୟରେ ପ୍ରସାରିତ ଥିଲେ । ମୁଁ ସେ ସବୁକୁ 'ମହାଗଳ୍ପ: ଅଗନାଅଗନି' ଭାବରେ 'ଝଙ୍କାର'କୁ ପଠାଇ ଚାଲିଲି । ସେହିଲେଖା ଗୁଡ଼ିକ ପ୍ରକୃତରେ ସେମାନେ ପାଇଲେ କି ନାହିଁ ମୋତେ ଜଣାନାହିଁ । ସେମାନେ ସେସବୁକୁ ପଢ଼ି ଦେଖିଲେ କି ନାହିଁ ସେମାନଙ୍କୁ ଜଣା । ମାତ୍ର ସେମାନଙ୍କଠାରୁ କୌଣସି ଖୋଜ ଖବର ପାଇଲି ନାହିଁ । ମୋର ଲେଖାଗୁଡ଼ିକ ମହତାବଙ୍କୀଙ୍କୁ ଦେଖାଇବାକୁ ଅନ୍ୟାନ୍ୟ ସମ୍ପାଦକମଣ୍ଡଳୀକୁ ଅନୁରୋଧ କରିଥିଲି । କାରଣ ଓଡ଼ିଆ ସାହିତ୍ୟରେ ସେଭଳି ଲେଖା ଯୁଗୋପଯୋଗୀ ହେବ କି ନାହିଁ, ତାଛଡା ସେ ଗଳ୍ପଗୁଡ଼ିକରେ ମୟୂରଭଞ୍ଜ ଇତିହାସର ପ୍ରଲେପ ରହିଛି ଯାହା କି ମହତାବଜୀଙ୍କୁ ଭଲଭାବରେ ଜଣାଥିବ ବୋଲି ମୋର ଅନୁମାନ । ମାତ୍ର ସେଗୁଡ଼ିକ ସେମାନଙ୍କର ଲେଖାଗୋଦାମର ଅଥଳ ଗହ୍ୱରରେ ବିଲୀନ ହୋଇଗଲା ବୋଧହୁଏ । ମୋର ବା ଶକ୍ତି କେତେ ? ମୋର କଥା ବା ଶୁଣିବ କିଏ ? ଏଣୁ ଆପଣଙ୍କଠାରେ ମୋର ଅନ୍ତରର ଗୁହାରି ଜଣାଉଛି । ଯଦି ଆପଣ ଟିକିଏ କଷ୍ଟ ସ୍ୱୀକାର କରି ଝଙ୍କାର ପ୍ରେସ୍‌କୁ ଯାଇ ଏହାର ଖୋଳତାଡ କରନ୍ତେ, ସେଗୁଡ଼ିକ ଯଦି ଥାଏ ପଢ଼ି ଦେଖନ୍ତେ ଏବଂ ସେମାନଙ୍କର କରଜବଳରୁ ଉଦ୍ଧାର କରି ଆଣନ୍ତେ, ତାହାହେଲେ ଓଡ଼ିଆ ସାହିତ୍ୟ ପାଇଁ କିଛି ଗୋଟାଏ ବଡ ଅବଦାନ ନ ହେଲେ ମଧ୍ୟ ଅନ୍ତତଃ ମୋର ଚିନ୍ତାଧାରାଟି ବାସ୍ତବ କି ଅବାସ୍ତବ ତାହା ଜଣାପଡନ୍ତା । ଲେଖାଟି ପ୍ରାରମ୍ଭିକ ଅବସ୍ଥାରେ ଥିଲା । ସେଇଥିରେ ପ୍ରାୟ ୮୦ ପୃଷ୍ଠା କାନ୍ତର ଲେଖା ହୋଇଥିଲା । ପାଠକ ଶ୍ରେଣୀର ମତାମତକୁ ଚାହିଁ ମୁଁ ଆଗକୁ ବଢ଼ିଥାନ୍ତି, ମାତ୍ର କଥାଟି ଅକୁହା ରହିଗଲା । ଅସଂପୂର୍ଣ୍ଣ ଭାବରେ ମୁଁ ତାକୁ ଛାଡିଦେବାକୁ ବାଧ୍ୟ ହେଲି । ଲେଖାଟିର ରଫ୍ ପୃଷ୍ଠା କେତୋଟି ବ୍ୟତୀତ ମୋଠାରେ ଆଉ କିଛି ନାହିଁ ।

ନହେଲେ ଆଜି ମୋତେ ଏତେ ଚନ୍ତା କରିବାକୁ ପଡି ନଥାନ୍ତା । ପୁଣି ଥରେ ମୂଳରୁ ଧରିବାକୁ ମୋର ଧୈର୍ଯ୍ୟ ନାହିଁ କି ଶକ୍ତି ମଧ ନାହିଁ । ଏଣୁ ଆପଣଙ୍କଠାରେ ମୋର ସବିନୟ ଅନୁରୋଧ ଥରେ ଲେଖାଗୁଡ଼ିକୁ ବାହାର କରି ପଢ଼ି ଦେଖନ୍ତୁ ନା ! ଆପଣଙ୍କର ମତାମତ ହିଁ ମୋର ଶିରୋଧାର୍ଯ୍ୟ ହେବ । ତା ପରେ ଯେଉଁ କଥା । ଏ ବିଷୟରେ ବହୁ କଥା କହିବାର ଅଛି । ପରେ କହିବି । ଆପଣଙ୍କର ଶୁଭକାମନା କରି ରହୁଛି । ଇତି ।

ଆପଣଙ୍କର ଗୁଣମୁଗ୍ଧ ଭକ୍ତ
ବିଭୂତି

## ॥ ୧୫୯ ॥

କେନ୍ଦୁଝର
୩୧.୧୦.୮୧

ସମ୍ମାନନୀୟ ସାର୍‌,

ମୋର ଭକ୍ତିପୂତ ବିନମ୍ର ପ୍ରଣତି ନେବେ । ଆପଣଙ୍କ ନିକଟକୁ ପ୍ରଥମ କରି ଏଚିଠି ଲେଖୁଛି ମୋର କେତେକ ଜ୍ଞାତବ୍ୟ ବିଷୟନେଇ । ଓଡ଼ିଆ ଗବେଷଣା ପରିଷଦର ବାର୍ଷିକ ଉତ୍ସବରେ ଆପଣଙ୍କ ସହ କଥାବାର୍ତା ହେବା ପାଇଁ ସ୍ଥିର କରିଥିଲେ ମଧ ମୋର ଜାଣିବା ବିଷୟରେ କଥାବାର୍ତ୍ତା ହୋଇପାରି ନଥିଲି– ସେଦିନ ମଧ ଆପଣ ଅନେକ ବ୍ୟସ୍ତ ଥିଲେ । କ୍ଷେତ୍ରବାସୀ ସାର୍‌ଙ୍କ ସହ ପରେ କଥାବାର୍ତ୍ତା ହୋଇଥିଲି ।

ସାର୍‌, ଆପଣଙ୍କ ନିକଟକୁ 'ଉତ୍କଳପ୍ରଭା' ସଂପର୍କରେ କେତେକ information ପାଇବା ପାଇଁ ଏ ଚିଠି ଲେଖୁଛି । ଆପଣ ସମାଲୋଚନା ସାହିତ୍ୟ ସଂପର୍କରେ ମଧ ଅନେକ ଲେଖାଲେଖି କରିଛନ୍ତି । ଆପଣ ମଧ ଦୀର୍ଘ ଦିନ ଧରି ବାରିପଦା ଏମ୍‌ପିସି କଲେଜରେ ଥିଲେ । ତେଣୁ ଉତ୍କଳପ୍ରଭା ସଂପର୍କରେ ମତେ କିଛିଟା information, Bibliography ଦେଲେ ମୁଁ ଉପକୃତ ହୁଅନ୍ତି । ବାରିପଦାର ପୂର୍ବତନ DPI ଗୋକୁଳଚନ୍ଦ୍ର ଶତପଥୀଙ୍କଠାରେ ଏ ସଂପର୍କରେ କିଛି information ଓ 'ଉତ୍କଳପ୍ରଭା'ର Old copy ମିଳିପାରିବ କି ? ମୁଁ ଜାଣିଛି ତାଙ୍କର ଗୋଟିଏ ଭଲ ଲାଇବ୍ରେରୀଟିଏ ଅଛି । ଏସଂପର୍କରେ ଆବଶ୍ୟକୀୟ ଉପଦେଶ ମୁଁ ଆପଣଙ୍କଠାରୁ ପାଇବାକୁ ବିଶେଷ ଆଗ୍ରହୀ ।

'ଉତ୍କଳପ୍ରଭା' ସଂପର୍କରେ Berhampur Universityର Journalism & Mass Communication Dept.ରେ ମୋର ଏକ ନିବନ୍ଧ ଉପସ୍ଥାପିତ କରିବାର ଅଛି । ତେଣୁ ଏସଂପର୍କରେ ମୋର ଗୁଡାଏ information ଦରକାର ହେଉଛି । ଯେଉଁଠି ପଛେ Material ଥାଉ, ମୁଁ ଯାଇ ତାହା ସଂଗ୍ରହ କରିବାକୁ ଚେଷ୍ଟା କରିବି । ରାଜ୍ୟ ଅଭିଲେଖାଗାର ଓ ମ୍ୟୁଜିୟମ୍‌ରେ ଏହାକୁ ଖୋଜି ମୁଁ ନିରାଶ ହୋଇଛି । ଏହା ବାରିପଦାର ଶ୍ରୀ ରାମଚନ୍ଦ୍ର ଭଂଜ ଲାଇବ୍ରେରୀ( ପୂର୍ବର ଜୁବୁଲି ଲାଇବ୍ରେରୀ)ରେ ମଧ ପ୍ରାୟ ଦୁଷ୍ପ୍ରାପ୍ୟ ।

କାହିଁକିନା ସାର୍, ସେଠାରେ ଏ ସଂପର୍କରେ ୨ୟ ଥର ଯାଇ ମଧ ନିରାଶ ହୋଇ ଫେରିଲି । ତେଣୁ ସାର୍, ଆପଣ ମୋତେ ଏ ବିଷୟରେ ଏକ ସ୍କେଚ୍ କରିଦେବେ । କିଭଳି ଭାବେ ମୋର ନିବନ୍ଧଟିର ରୂପରେଖ ଗଢ଼ିବି ।

୨ୟତଃ ମତେ ସହାୟକ ପୁସ୍ତକ ଓ ପତ୍ରପତ୍ରିକାର ଏକ ତାଲିକା ଦେଲେ ମୁଁ ଅଶେଷ ଉପକୃତ ହୁଅନ୍ତି । ଆପଣଙ୍କ ନିକଟରୁ ଏ ବିଷୟରେ ମୁଁ କିଛିଟା ମୂଲ୍ୟବାନ୍ ଉପଦେଶ ପାଇବା ଆଶାରେ ଏ ଚିଠିଟି ଲେଖୁଛି । ସେଥିପାଇଁ ୩୫ ପଇସାର ଡାକ ଟିକଟ ମଧ୍ୟ ପଠାଉଛି ।

ସାର୍ ଆପଣଙ୍କ ସହ ନି.ଭା. ଓଡ଼ିଆ ଅଧ୍ୟାପକ ସମ୍ମେଳନ(ବ୍ରହ୍ମପୁର ଅଧିବେଶନ)ରେ ଅଳ୍ପ ସମୟ ପାଇଁ କଥାବାର୍ତ୍ତା ହୋଇଥିଲି । ପୂର୍ବରୁ ଆପଣଙ୍କୁ ୧୯୭୪ରେ କେଉଁଝର ଡି.ଏନ୍. ହାଇସ୍କୁଲରେ ଓଡ଼ିଆ ଯୁବ ଲେଖକ ସମ୍ମେଳନରେ ଜାଣିବାକୁ ପାଇଥିଲି । ସେତେବେଳେ ମୁଁ ଇଣ୍ଟରମିଡିଏଟ୍‌ର ଛାତ୍ର ଥିଲି । ଉଦଳା କଲେଜ ଓଡ଼ିଆ ସାହିତ୍ୟ ପରିଷଦର ବାର୍ଷିକ ଉତ୍ସବରେ ଆପଣଙ୍କ ବକ୍ତବ୍ୟ ମଧ ଶୁଣିଥିଲି । ସାର୍ ଆପଣ ମତେ ଏଦିଗରେ ସାହାଯ୍ୟ କରିବେ ବୋଲି ମୋର ଦୃଢ଼ ଧାରଣା ।

ଆଉ କିଛି ଅଧିକ ନଲେଖି ଆପଣଙ୍କ ଉତ୍ତର ଅପେକ୍ଷାରେ ରହିଲି । ସାର୍, ବ୍ରହ୍ମପୁରରୁ ମୁଁ ୭୯ ମସିହାରେ ଓଡ଼ିଆରେ ଏମ୍.ଏ. ପାଶ୍ କରିଛି ଓ ୧୯୮୧ରେ ଏମ୍.ଫିଲ୍. ମଧ ସାରିଛି । ସାମ୍ବାଦିକତା ପାଠ୍ୟକ୍ରମ ସାରିଥିଲେ ମଧ ନିବନ୍ଧଟି ଦେଇ ପାରିନି । ମୁଁ ମୟୂରଭଞ୍ଜର ପିଲା । ସାର୍, ଚିଠି ପାଇ ଆପଣଙ୍କର ଉପଦେଶପୂର୍ଣ୍ଣ ଚିଠିଟିଏ ନିଶ୍ଚୟ ଦେବେ । ଇତି ।

ଆପଣଙ୍କର ଆଜ୍ଞାଧୀନ ଛାତ୍ର
ଅନୀଲ କୁମାର ମହାନ୍ତି

॥ ୧୬୦ ॥

## ଗାଁକୁ ଆସିଛ କବି

ଗାଆଁକୁ ଆସିଛ କବି,
ତୁମ ବାଟଦେଇ ନଈଯାଏ ବହି
ନୂଆବଉ ଆଙ୍କେ ଛବି ।

ସକାଳ ସୂରୁଜ ଅବିର ବୁଣଇ
ଶଙ୍ଖଚିଲ ଝାଡେ ଡେଣା
ଗାଈଆଳ ଟୋକା ବଇଁଶୀ ଖୋଜଇ

ମନନ୍ଦୁଏ ବାଟବଣା ।

ଗାଆଁ ଦାଣ୍ଡ ଧୂଳି ବାଡ଼ିବରକୋଳି
ତମ ବଡ଼ ଅଛି ବାଡ଼ି
ଚିତାପାଉଁଶରେ ଅନେଇ ଶୋଇଛି
ଗଲାଦିନୁ ଗାଆଁ ଛାଡ଼ି ।

ଗାଆଁକୁ ଆସିଛ କବି
ସୁନା ଝଲମଲ ମାଟିର ଫସଲ
ହସେ ତୁମ କଥା ଭାବି ।

ତୁମେ ପାଦ ଦେଲେ ହସେ ଗାଆଁ ଭୂଇଁ
ସୁବାସ ବୁଣଇ ଫୁଲ
ଗାଆଁ ମନ କଥା ଗାଏ ଜନ କବି
ଦେବ ବୋଲି ତାର ମୂଲ
ହେ ଆମ ଗାଆଁର କବି
ତୁମ ଲେଖନୀରେ ଉକୁଟି ଉଠିଛି
ସାରା ଦୁନିଆର ଛବି ।

ଆଜ୍ଞାଧୀନ ଛାତ୍ର
ଶ୍ରୀ ପ୍ରାଣବଂଧୁ ପାଣିଗ୍ରାହୀ, ବି.ଏ.
୨୩.୨.୮୨

॥ ୧୬୧ ॥

ତୃତୀୟ ହଷ୍ଟେଲ
ବାଣୀବିହାର
୨୪.୨.୮୨

ପୂଜନୀୟ ସାର୍,

ବହୁଦିନ ଧରି ଆପଣଙ୍କ ସହ ଦେଖାହୋଇନି । ମୁଁ କଟକ ଯାଇ ଦୁଇଥର ଆପଣଙ୍କୁ ଖୋଜି ଫେରିଆସିଲିଣି । ଆଉ ସାର୍, ଆପଣ କାହିଁକି ମୋ ପାଖକୁ ଚିଠି ଲେଖୁନାହାନ୍ତି

ଯେ ? କେତେ ଖୁସି ଲାଗନ୍ତା ମୋତେ । ଆପଣଙ୍କ 'ଫୁଲମତୀ' ଗଳ୍ପଟା ଝଙ୍କାରରେ ପଢ଼ିଲି । ଅନ୍ୟାନ୍ୟ ଗଳ୍ପଗୁଡ଼ାକ ବି ପଢ଼ିଲି । ଭାରି ଭଲ ଲାଗିଲା । ଲୋକେ ସତରେ କେତେ ନିଭୃତ କୋଣରେ ରହିଛନ୍ତି ! ଶୈଳୀଟା ଖୁବ୍ ସ୍ୱାଭାବିକ ଓ ସୁନ୍ଦର ହୋଇଛି । ସହାନୁଭୂତିର ହୃଦୟ ଧରି ଲେଖକ ମଣିଷ ସଂଗେ ହୃଦୟଦେଇ ମିଶିବାରେ କେତେ ତତ୍ପର ହୋଇ ନ ଉଠିଛନ୍ତି ! ଆପଣଙ୍କ ସହ ଅତୀତର ସବୁ ସାନ୍ନିଧ ମନେ ପଡିଲେ ସତ କହୁଛି ସାର୍, ମୋତେ କେତେ ଆନନ୍ଦ, ପ୍ରେରଣା ମିଳୁଛି, ତାହା ମୁଁ କହି ପାରିବିନି କାହିଁକି କେଜାଣି ? ନଲେଖିବା କଥାଗୁଡ଼ା ନିହାତି ଅବାଗିଆଭାବେ ଲେଖିପକାଇଲି ଅପାଣଙ୍କୁ । ରାଗିବେନି । ଉପନ୍ୟାସଟିକୁ କିଛି ଲେଖିଲିଣି । ଆଉ ଏମିତି ଲେଖିବା ଭିତରେ ମୋର ଭିତରଟାକୁ ଜାଣି ଭାରି ଲାଜ ଲାଗୁଛି, ଖୁସି ବି ମାଡୁଛି । କ୍ଲାସରେ ପଢ଼ାପଢ଼ି ଚାଲିଛି । ଆପଣଙ୍କୁ ସେଠି କେମିତି ଲାଗୁଛି । ଛାତ୍ରମାନେ ଆପଣଙ୍କ ପଢ଼ାଇବାକୁ ଭାରି ଉପଭୋଗ କରୁଥିବେ । ବ୍ୟସ୍ତତା ଭିତରେ ବି ଗୋଟିଏ ଚିଠି ଦେବେ । ଇତ ।

ସ୍ନେହର ମାଣିକ
(ମାଣିକଲାଲ ଭଞ୍ଜ)

॥ ୧୬୨ ॥

**JANATA PRESS**
RAYAGADA-765001,
Dist: Koraput
9.3.82

**ମାନନୀୟେଷୁ,**

ସାଦର ପ୍ରଣାମ ନେବେ । ମୋର ଆଗ ଚିଠି ମିଳିଥିବ । ଆପଣ ଜାଣିଥିବେ-ଏଇଟା ଅଫଳନ୍ତ ଭୂଇଁ । ଆମେ ସବୁ ଆସି ଏଠି ନିଜକୁ ତିଳ ତିଳ କରି ଜାଳିଛୁ । ଏବେ କେବଳ ଭଗ୍ନାବଶେଷ ରହିଛି ମାତ୍ର । ସବୁ ସରି ଯାଇଛି । ଆମେ ଏଠି ପହଞ୍ଚିବା ବେଳେ କେହି ପଦିଏ 'ଓଡ଼ିଆ' ବୁଝୁ ନଥିଲେ । ଏବେ କିନ୍ତୁ ଅବସ୍ଥା ବଦଳିଛି । ଆମେ ବଣ ଜଙ୍ଗଲ ବୁଲି ଆଦିବାସୀଙ୍କ ଆଖି ଖୋଲିଲୁ । ତଥାପି ଏଠିକାର ଅସାମାଜିକ ଲୋକେ ଆମକୁ 'କଟକୀ' କହିଥାନ୍ତି । କାରଣ ଆମେ ସେମାନଙ୍କ ଶୋଷଣଲୀଳାର ତୀବ୍ର ବିରୋଧ କଲୁ । ଏଠି ସଭା, ସାହିତ୍ୟ, ନାଚଗୀତ-ସବୁ କିଛି ଅପେରା ପର୍ଯ୍ୟନ୍ତ ଆମେ କଲୁ । ଏବେ ଆମେ କ୍ଳାନ୍ତ । କୌଣସି ମତେ ଜୀବିକା ଚଳାଇବା ଲକ୍ଷ୍ୟରେ ।

ମୋର କହିବା କଥା-ଏଠି କିଛି କେବେ ସଭାସମିତି ହେଲେ ଆପଣ ଆସି ପାରିବେ

କି ? ଆସିବାରେ ସୁବିଧା ଏବଂ ଅସୁବିଧା କଣ ଦୟାକରି ଲେଖିବେ, ଏଠିକି ଅଧ୍ୟାପକ ହୃଦାନନ୍ଦ ରାୟ, ଗୌରୀକୁମାର ବ୍ରହ୍ମା ଆସିଛନ୍ତି । ଆଉ ଅନ୍ୟମାନେ ମଧ୍ୟ, ବ୍ରହ୍ମାନନ୍ଦ ପଣ୍ଡାଙ୍କର 'ନୀଳଚକ୍ର' ସଭା ବି ହୋଇଛି ।

ଏଣିକି ଆମେ କିଛି କଲେ ଆପଣଙ୍କୁ ଡାକିବା ଇଛା । ଆପଣ କଣ ଲେଖିଲେ, ଆମେ ଆଗେଇବୁ । ଏଠି ଖଣ୍ଡିଏ ସ୍ଥାନୀୟ ସାହିତ୍ୟପତ୍ର ବାହାରୁଛି । କ୍ଷୀଣ କଳେବର । ତାହା ବି ପଙ୍କାମୁଣ୍ଡାଇର କବି ବାସୁଦେବ ପାତ୍ରଙ୍କର ପ୍ରଚେଷ୍ଟାରେ । ବଡ କଷ୍ଟରେ ସେଇଟି ବଞ୍ଚିଛି । ତାଙ୍କୁ କହିଛି, କପି ପଠାଇବେ । ଏଥର ସେ 'କବିତା ଏ ଦଶକର' ସଂକଳନଟିଏ କରୁଛନ୍ତି । ସେଥିରେ ଏକ କ୍ଷୁଦ୍ର କବିତା ଆପଣଙ୍କର ଥିଲେ ତା'ର ଓଜନ ବଢ଼ନ୍ତା । ଏଠାକାର ଡକ୍ଟର ଉମେଶ ପତ୍ରୀ ବି କବିତାଟିଏ ପଠାଇଛନ୍ତି ସେଇଥିପାଇଁ । ବିଚାର କରିବେ । ରହିଲି । ଚିଠି ଦେବାକୁ ଅନୁରାଧ । ଆଶା, ଭଲ ଅଛନ୍ତି ।

ସ୍ନେହାଧୀନ ଗଙ୍ଗାଧର ଦାସ

॥ ୧୬୩ ॥

ବାଲିପାଟଣା

ତା ୧୨.୩.୮୨

ସମ୍ମାନନୀୟ ସାର୍,

ପ୍ରଣାମ ଗ୍ରହଣ କରିବେ । କାରଣ ଏହିକି–ଆପଣଙ୍କ ପତ୍ର ପାଇ ମଧ ଦୀର୍ଘଦିନ ହେଲା ଉତ୍ତର ଦେଇ ପାରିନଥିଲି, କ୍ଷମା କରିବେ । ××× ମୋର କିନ୍ତୁ ଭାରି ଇଛା M. Phil.ଟା ସାରିଦିଅନ୍ତି । ହେଲେ ସୁଯୋଗ କାହିଁ ? ଏଇ କାରଣରୁ Ph.D. ପାଇଁ ମନ ବଳାଇଛି । ସାର୍, ମୁଁ ଖାଣ୍ଟି ସତକଥା କହୁଛି–ଏ ମନ ଏତେ ପ୍ରବଳ ହୋଇ ବଳିଛି ଯେ Ph.D. କାମ ଆରମ୍ଭ ହେଲା ଅର୍ଥ ମୁଁ ମୋର ସବୁ କାମ ଛାଡି ତାରି ସହିତ ଲାଗିଯିବି । ତାକୁ ସାରିଲେ ମୋର ଭୋକ, ଶୋଷ, ନିଦ କଥା ଚିନ୍ତାକରିବି । ହେଲେ ଅନାଗତ ଭବିଷ୍ୟତ ଅନିଶ୍ଚିତ ଅନିର୍ଦ୍ଦିଷ୍ଟ, ଅଦୃଶ୍ୟ ଓ ଅକଳ୍ପନୀୟ ।

ଏଣୁ ମୋ କଥା ବା ଜୋର୍ ଦେଇ କହିପାରିବି କିପରି ? ମୁଁ ଜାଣେ ସାଧାରଣ ମଣିଷ, ପ୍ରତାରଣା ମୋ ପକ୍ଷରେ ସ୍ୱାଭାବିକ । ସ୍ୱାର୍ଥକୁ ସଂପୂର୍ଣ୍ଣ ଛାଡି ପାରିଲା ଭଳି ଗୁଣ ମୋ ପାଖରେ ଆଦୌ ନାହିଁ । ପରିଶେଷରେ ଜଣେ ପ୍ରତାରକ ହେବି ନାହିଁତ ଆଉ ହେବି କ'ଣ ? ମନୁଷ୍ୟ ଭିତରେ ଦେବତା ଥାନ୍ତି । ମନୁଷ୍ୟଠାରୁ ଶ୍ରେଷ୍ଠ ଏ ଜଗତରେ କିଛି ନାହିଁ । ଦେବତା ରାକ୍ଷସର ମିଳନ ସ୍ଥଳୀ ଏ । କର୍ମଗୁଣେ ମନୁଷ୍ୟ କେତେବେଳେ ରାକ୍ଷସ କେତେବେଳେ ଦେବତା । ଗୋବାଦରୀଶଙ୍କ ଘଟାନ୍ତର ପରି ଏହା ଘଟପରିବର୍ତ୍ତନକାରୀ ଦୁଇଟି ଗୁଣମାତ୍ର । ଏତେଗୁଡେ ଏଣୁତେଣୁ ଲେଖିଦେଇଛି । କ୍ଷମା କରିବେ ।

ହଁ, ମୁଁ 'ଫକୀର-ଗୋପୀ-ପ୍ରେମଚନ୍ଦ'ଙ୍କ ଉପନ୍ୟାସ ଉପରେ 'ଔପନ୍ୟାସିକ ପ୍ରତିଭାର ପ୍ରେସ୍ ଇସ୍ତାହାର' ଶୀର୍ଷକରେ କିମ୍ବା 'ବିଂଶ ଶତକର ଓଡ଼ିଆ ଉପନ୍ୟାସ ଏକ ଅନ୍ତର୍ଦୃଷ୍ଟି' କିମ୍ବା 'କାହ୍ନୀଚରଣଙ୍କ ସୃଷ୍ଟି ଓ ଦୃଷ୍ଟି' ନାମରେ ବା 'ଓଡ଼ିଆ ସାହିତ୍ୟରେ ଥୋମାସ୍ ହାର୍ଡି'(ଫକୀର--ହାର୍ଡିଙ୍କ ତୁଳନା) କ୍ରମରେ ସନ୍ଦର୍ଭଟିଏ ପ୍ରସ୍ତୁତ କରିବାକୁ ଚାହୁଁଛି । କିପରି ହେବ ? କେଉଁଟା ପ୍ରସ୍ତୁତ କଲେ ଭଲ ହେବ ଟିକିଏ ଜଣାଇବେ ଏବଂ ସେଇ ସନ୍ଦର୍ଭଟି ପାଇଁ ରଚନାକ୍ରମ(ଖସଡା) ପ୍ରସ୍ତୁତ କରିଦେବେ ଟିକିଏ । କେଉଁ କେଉଁ reference (ସହାୟକ) ପୁସ୍ତକମାନ ପଢ଼ିବାକୁ ପଡିବ ଦୟାକରି ଜଣାଇବେ ।

××× ××× ×××

ସାର୍, ମୁଁ ଗୋଟିଏ ପ୍ରବନ୍ଧ ପ୍ରସ୍ତୁତ କରୁଛି, 'ସେନାପତି ସାହିତ୍ୟରେ ଖଳନାୟକ' । ଏଥିପାଇଁ Intro.ରେ ସେକ୍ସପିୟରଙ୍କ ଖଳନାୟକମାନଙ୍କ ସମ୍ପର୍କରେ ଓ ରାବଣ, ଦୁର୍ଯ୍ୟୋଧନ ଶକୁନୀ ସଂପର୍କରେ ସୂଚନା ଦେଇ ଫକୀରମୋହନଙ୍କ ଉଭୟ ଗଳ୍ପ-ଉପନ୍ୟାସରେ ଖଳନାୟକମାନଙ୍କୁ ପର୍ଯ୍ୟାୟକ୍ରମେ ଅଧିକ ଆଧୁନିକ କରାଯାଇ ନାହିଁ କି ? ପ୍ରାୟଶ୍ଚିତ୍ତରେ ରାଜୀବଲୋଚନ, ସଦାନନ୍ଦ ଓ ଶଙ୍କର୍ଷଣଙ୍କ କୃତ ପାପ ସମାଜ ପାଇଁ ସେତେ କ୍ଷତିକାରକ ନୁହେଁ । ଯେଣୁ ସେମାନଙ୍କ କୃତକର୍ମପାଇଁ ଦଣ୍ଡ କେବଳ ମାନସିକ ଅନୁଶୋଚନା । ହେଲେ ରାମଚନ୍ଦ୍ର, ନଟବର-ଚମ୍ପା, ଚିତ୍ରକଳା ପାଇଁ ସେ ଦଣ୍ଡ ବଡ ଦାରୁଣ ଓ ଲୋକଶିକ୍ଷାମୂଳକ । ତା'ଛଡା ରାମଚନ୍ଦ୍ର-ନାଜରଙ୍କର ପ୍ରକୃତି ପ୍ରକୃତରେ ଖଳ ନଥିଲା । ତାଙ୍କୁ ଚମ୍ପା ଓ ଚିତ୍ରକଳା ପରି ଦୁଇଟି ନାରୀ ଚରିତ୍ର ପ୍ରଭାବିତ କରିଛି । ଯେପରି କ୍ଲିଓପାଟ୍ରା ଓ ଲେଡି ମାକ୍‌ବେଥ୍ ହିଁ ସେକ୍ସପିଅରଙ୍କ ରଚନାର ଦୁଇଟି ବିଶେଷତ୍ୱ । ଏ ଦୃଷ୍ଟିରୁ 'ଖଳନାୟକ' ଶୀର୍ଷକ ଥିଲେ ମଧ୍ୟ ଚମ୍ପା ଓ ଚିତ୍ରକଳାର ଚିତ୍ରଣ କରିବା ଆବଶ୍ୟକ କି ନୁହେଁ ? ମୁଁ କହି ସାରିଛି, ରାମାୟଣରୁ ମନ୍ଥରାକୁ ଛାଡିଦେଲେ ରାବଣ ଚରିତ୍ରର ଆବଶ୍ୟକତା ରହେନା ଯେପରି । ସ୍ପଷ୍ଟ ଦିବାଲୋକରେ ଦୀପଟିଏ ଲଗାଇଲେ କୌଣସି ବିଶେଷତ୍ୱ ନଥାଏ । ତାହା ସ୍ୱାଭାବିକ । ମାତ୍ର ଘନ ଅନ୍ଧକାରଘେରା ରାତ୍ରି ମଧ୍ୟରେ ଦୀପର ଭୂମିକା ବଡ ତାତ୍ପର୍ଯ୍ୟପୂର୍ଣ୍ଣ, 'ଅମାବାସ୍ୟାରେ ଚନ୍ଦ୍ର' ହିଁ ଅଧିକ ମନଛୁଆଁ । ଏ ଦୃଷ୍ଟିରୁ ଖଳନାୟକମାନଙ୍କ ଆଲୋକିତ ଦିଗପ୍ରତି ଦୃଷ୍ଟି ଦେଇଛି । କେତୋଟି ଗଳ୍ପରେ ଖଳନାୟକମାନଙ୍କୁ ଦେଖିବାକୁ ମିଳେ । ସେଇସେଇ ଗଳ୍ପଗୁଡ଼ିକ ଏ ପ୍ରବନ୍ଧରେ ବିଚାର ଯୋଗ୍ୟ କି ? ସାର୍ ! ଦୟାକରି ଏହି ପ୍ରବନ୍ଧର କ୍ରମ ତିଆରି କରି ପଠାଇବେ । ଏ ପ୍ରବନ୍ଧକୁ ସେଇ କ୍ରମରେ ଲେଖିବି । ଏ ଦିଗରେ ଆପଣଙ୍କ ପରାମର୍ଶ ଅପେକ୍ଷାରେ । ଇତି ।

ଚିର ଋଣୀ
ମହମ୍ମଦ ଓସିଦ୍ ଖାଁ

॥ ୧୬୪ ॥

ବଲାଙ୍ଗୀର
୧୬.୩.୮୨

ସମ୍ମାନନୀୟ କୃଷ୍ଣବାବୁ,

ପ୍ରଣାମ ନେବେ । ଦୋଳଛୁଟିରୁ ଘରୁ ଫେରି ଗତକାଲି ଆପଣଙ୍କର ମନ୍ତବ୍ୟ ସହ ପାଣ୍ଡୁଲିପିଟି ପାଇଲି । ପାଣ୍ଡୁଲିପିଟି ଖର୍ଚ୍ଚାନ୍ତ ହୋଇ ଫେରାଇବାର ଆବଶ୍ୟକତା ମୋଟେ ନଥିଲା–ସେକଥା ଶ୍ରୀନିବାସବାବୁଙ୍କ ହାତରେ ମୁଁ ପୂର୍ବରୁ ଆପଣଙ୍କ ପାଖକୁ ଖବର ପଠାଇଥିଲି– ବୋଧହୁଏ ସେ ଭୁଲି ଯାଇଛନ୍ତି । ତେଣୁ ଆପଣଙ୍କ ଉପରେ ଅଯଥା Taxation ହେଲା–ବଡ ଦୁଃଖିତ ମୁଁ ସେଥିପାଇଁ ।

'କବିତାର ମୃତ୍ୟୁ ହେଉ ସଖି ତମ ବିନା' ପଦ୍ୟାଂଶର ମନ୍ତବ୍ୟ ଦେଖିଲି । ବହୁ ଭାବିଚିନ୍ତି ସେ ପୁରା ପଦଟିକୁ କବିତାରୁ ଉଠାଇ ଦେଲି । ଭାବରେ କୌଣସି ପରିବର୍ତ୍ତନ ହେଲା ନାହିଁ । ଶେଷ ପଦଟି ପୁରା କବିତାରୁ ଲୋପ ହେଲାମାତ୍ର, କ୍ଷତି ନାହିଁ ।

ବହୁ କବିତା ମୁଁ ଏ ମଧ୍ୟରେ ଲେଖିଛି ଓ ପାଣ୍ଡୁଲିପି ଆକାରରେ ପଡି ରହିଛି । ସେ ଗୁଡ଼ିକର ସାହିତ୍ୟିକ ମୂଲ୍ୟବୋଧ ଥାଇପାରେ । ତନ୍ମଧ୍ୟରୁ 'ଅନ୍ୱେଷ, ଧୂପ, ବଧୂ ମନୋରମା, ନୂଆବୋହୂ, ଗାଁ ମାଟି, କଳା କଳେବର, କଲ୍ୟାଣି, ଟଗର, ବାତ୍ୟା, ସମ୍ବଲପୁର, ଅଗଷ୍ଟପନ୍ଦର, କାକବାର୍ତ୍ତା, ମହାମାନବର ଅନ୍ତରତଳେ, ଆମ୍ରପାଲୀର ଆତ୍ମପ୍ରକାଶ, ଗୋଟିଏ ସମୀକ୍ଷା ପ୍ରଭୃତି ଉଲ୍ଲେଖଯୋଗ୍ୟ ମୋ ବିଚାରରେ । 'ସଳିତା' ଲୋକଲୋଚନ ଗୋଚରକୁ ଆସିବା ପରେ ମୂଳଧନ ପାଇବା ପାଇଁ ଚେଷ୍ଟା କରି, ପରେ ପରେ ଏ ଗୁଡ଼ିକ ଛପାଇବାର ବ୍ୟବସ୍ଥା କରିବି ବୋଲି ଭାବୁଛି । ସେତେବେଳେ ପୁଣି ଭକ୍ତ ଭଗବାନଙ୍କର ସାକ୍ଷାତ ବା ଲେଖା ଜରିଆରେ ସଂବନ୍ଧ ସ୍ଥାପନ, ଇୟା ଅର୍ଥ ନୁହେଁ ଯେ ଏ ମଧ୍ୟରେ ଆପଣଙ୍କୁ ଭୁଲିଯିବା । ××× 'ସଳିତା' ଉପରେ ଆପଣଙ୍କର ନିରପେକ୍ଷ balanced ତଥ୍ୟ ଉଦାର ମନ୍ତବ୍ୟଟି ମୋତେ ଅତି ବେଶି ଭଲ ଲାଗୁଛି । × × × × × × 'ଅଶ୍ରୁଲେଖା' ଆମ ଘରେ ଅଛି । ସୁବିଧା ଦେଖି ଘରୁ ଆଣି ଖଣ୍ଡିଏ copy ନିଶ୍ଚୟ ଆପଣଙ୍କ ପାଖକୁ ପଠାଇବି ।

ଲେଖକର ଦାୟିତ୍ୱ ଖାଲି ଲେଖାରେ ସରୁ ନାହିଁ । publication/sale/publicity/ market ସବୁ ବିଷୟରେ ଧ୍ୟାନ ଦେବାକୁ ହେବ ବୋଲି, ଏବେ ଆପଣଙ୍କ ସାହଚର୍ଯ୍ୟରେ ଆସି ମୁଁ ଜାଣୁଛି । ଏଥିରେ ଲେଖିବାକୁ କାହାର କାହିଁକି ମନ ବଳିବ ?

ଶ୍ରୀନିବାସ ବାବୁଙ୍କ ସହ ଗତକାଲିଠାରୁ ଆଜି ପର୍ଯ୍ୟନ୍ତ ମୋର ସାକ୍ଷାତ ହୋଇନାହିଁ । ହେଲେ, ବହି ଡିଜାଇନ୍ ଟଙ୍କା ସମସ୍ତ ତାଙ୍କ ମାର୍ଫତରେ ଦେଇଦେବି ଓ ପୁସ୍ତକ ପ୍ରକାଶନର ଭାର ଅର୍ପଣ କରିବି । ଏସବୁ ବିଷୟ ନିଜେ interest ନେଇ ମୋ ପକ୍ଷରେ କରିବା ସମ୍ଭବପର ନୁହେଁ ।

ଭଲରେ ଅଛି । ଭଗବାନଙ୍କୁ ପ୍ରାର୍ଥନା ସେ ଆପଣଙ୍କର ଆଜିକାର ମନକୁ ଅତୁଟ ରଖନ୍ତୁ ଓ ଆପଣଙ୍କର ତଥା ପିଲାମାନଙ୍କର ସ୍ୱାସ୍ଥ୍ୟ କୁଶଳରେ ରଖନ୍ତୁ । ଯଦ୍ୱାରା ଆପଣ ଆମ୍ଭମାନଙ୍କ କାର୍ଯ୍ୟରେ ଲାଗିପାରିବେ । ଇତି ।

ବିଭୂତିଭୂଷଣ ପଟ୍ଟନାୟକ

॥ ୧୬୫ ॥

ପାରଳାଖେମୁଣ୍ଡି
୨୪.୩.୮୨

ପୂଜନୀୟ ସାର୍,

ମୋର ପ୍ରଣାମ ଗ୍ରହଣ କରିବେ । ଆଜି ଆପଣଙ୍କ ପତ୍ରଟି ପାଇ ସଂଗେ ସଂଗେ ଏ ଚିଠିଟି ଲେଖୁଛି । ମୁଁ ଏଠାରେ ଭଲରେ ଅଛି । ଆଶା କରେ ଆପଣ ମଧ୍ୟ ସେଠାରେ ଭଲରେ ଥିବେ । ପୂର୍ବ ପତ୍ରରେ ମୁଁ ଆପଣଙ୍କ ପାଖକୁ କ'ଣ ନାହିଁ କ'ଣ ଲେଖିଥିଲି ସେହି ଧୃଷ୍ଟତା ପାଇଁ କ୍ଷମାଦେବେ । ପ୍ରକୃତରେ ମୁଁ ଏହି ଚାକିରୀରେ ପ୍ରବେଶ କରିବା ପରଠାରୁ ଅଦ୍ୟାବଧି ପର୍ଯ୍ୟନ୍ତ ଯେତିକି ଅନ୍ତତଃ ଟିକିଏ ଭାବିବା ପାଇଁ ସୁବିଧା ଓ ସୁଯୋଗ ପାଇଛି ସେତେବେଳେ ନିଜକୁ ନିଜେ ବିଶ୍ଳେଷଣ କରିଛି, ମୁଁ କ'ଣ ପ୍ରକୃତରେ ଅଧ୍ୟାପକଟିଏ ହୋଇ ପାରିଛି ?

ଜନସାଧାରଣଙ୍କୁ ବକ୍ତୃତା ଦେଲାଭଳି କ୍ଲାସ୍‌ରେ ୫୦ ମିନିଟ୍ ଲେଖାଏଁ ଏଭଳି ଗୋଟିଏ ଗୋଟିଏ କେବଳ ବକ୍ତୃତା ଦେଇଛି । ସେତିକିରେ ମୋ କର୍ତ୍ତବ୍ୟ ଶେଷ ହୋଇଯାଇଛି ବୋଲି ଭାବିଛି । ବିଗତ ତିନିବର୍ଷର ଅତୀତକୁ ମନ ମୋର ଫେରିଯାଇଛି । ଆପଣ ଆମକୁ ପଢ଼ାଇବା ବେଳେ ଅନେକ ଥର ପ୍ରସଂଗ କ୍ରମେ କହିଛନ୍ତି, 'ଯାହା କିଛି ସୃଷ୍ଟି କରିବ, ଏଇ ସମୟରେ କରିଯାଅ, ସମୟ ଅତିକ୍ରମ କରିଗଲେ ଏହା ସମ୍ଭବ ନୁହେଁ ।'

ଆପଣଙ୍କର ଏକଥା ସବୁଦିନ ପାଇଁ ମୋର ମନେ ଥିବ ସାର୍, ହେଲେ ମୁଁ ଅଭାଗା- ଯାହାକିଛି କରିବି ବୋଲି ଭାବୁଛି କିଛି ସ୍ଥିର କରି ପାରୁନାହିଁ । ସେଥିପାଇଁ ଅନୁକୂଳ ପରିବେଶ ଯଦିଓ ପାଇଛି କିନ୍ତୁ ପରିସ୍ଥିତି କଦାପି ମୋ ପ୍ରତି ଅନୁକୂଳ ହୋଇ ନାହିଁ କି ହେବ ନାହିଁ ବୋଲି ମୁଁ ଭାବୁଛି । କାରଣ ସାର୍, ମୁଁ ପିଲାଟି ଦିନୁ ଆଜ୍‌ମା ରୋଗରେ ଆକ୍ରାନ୍ତ । ତେଣୁ ସେ ବଦ୍‌ମାସ ରୋଗଟା ମୋ ପ୍ରତି ଦାଉ ସାଧୁଛି କହିବାକୁ ହେବ । ମାତ୍ର ଆପଣଙ୍କ ପତ୍ର ପାଇ ମନରେ ଟିକିଏ ସାହସ ସଞ୍ଚୟ ହୋଇଛି । ଆପଣଙ୍କ ଆଶୀର୍ବାଦ ଓ ପ୍ରେରଣା ପାଇଲେ ମୁଁ ନିଶ୍ଚିତ ଭାବରେ ଭବିଷ୍ୟତରେ ଜଣେ ଅଧ୍ୟାପକ ଭାବରେ ଯେ ଠିଆ ହେବି, ସେ ଆତ୍ମବିଶ୍ୱାସ ମୋର ଅଛି ।

ପ୍ରକୃତରେ କହିବାକୁ ଗଲେ ସାର୍, ଦେଢ଼ଶ ବର୍ଷ ତଳର ପାରଳାଖେମୁଣ୍ଡି ଆଉ ଏବର ପରାଳାଖେମୁଣ୍ଡି ମଧ୍ୟରେ ଆକାଶପାତାଳ ଫରକ । ଯାହାକୁ କହନ୍ତି କର୍ପୂର ଉଡି ଯାଇଛି

ଛିଣ୍ଡାକନା ଟିକକ ପଡିରହିଛି । ଏଠି ବର୍ତ୍ତମାନ ତେଲୁଗୁମାନଙ୍କର ଆଧିପତ୍ୟ ଏବଂ ଓଡ଼ିଆମାନଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଯେଉଁଭଳି ମନୋଭାବ, ପ୍ରକୃତରେ ତାହା ଦେଖିଲେ ଦୁଃଖ ଲାଗୁଛି । ତେଣୁ ଏଭଳି ପରିସ୍ଥିତିରେ ଓଡ଼ିଆ ଭାଷା ଓ ସାହିତ୍ୟକୁ ଯେ କିଭଳି ବଞ୍ଚାଇ ରଖାଯାଇ ପାରିବ ତାହାହିଁ ଚିନ୍ତାର ବିଷୟ । ତା'ପରେ ଦ୍ୱିତୀୟ ଅସୁବିଧା ହେଲା ଏଠାରେ ସଭାସମିତି କରିବା ପ୍ରତି ସ୍ଥାନୀୟ ଲୋକମାନଙ୍କର ଉଦାସୀନ ମନୋଭାବ । ତା'ପରେ ତୃତୀୟ ଅସୁବିଧା ହେଲା ପାରଳାଖେମୁଣ୍ଡିକୁ କୌଣସି ସେଭଳି ବକ୍ତା ଆସିବାକୁ ମଧ୍ୟ ନାରାଜ । ତେଣୁ ଏଭଳି କ୍ଷେତ୍ରରେ ଆମେ କେମିତି ଏବଂ କିଭଳି ଭାବରେ ଆଗେଇବୁ ମୁଁ ଭାବି ପାରୁନାହିଁ । ସେଥିପାଇଁ ଆପଣଙ୍କ ଉପଦେଶ ମୋର କାମ୍ୟ ।

ଅପର୍ଣ୍ଣା ପଣ୍ଡାଙ୍କ ଫଟୋଚିତ୍ରର ସନ୍ଧାନ ନେବାପାଇଁ ଲେଖିଛନ୍ତି । ମୁଁ ଏ ବିଷୟ ବୁଝି ଆପଣଙ୍କ ପାଖକୁ ପତ୍ର ଲେଖିବି ।

××× ଆପଣଙ୍କ ପତ୍ର ଅପେକ୍ଷାରେ ।

ଆପଣଙ୍କ ସ୍ନେହର

ହରି ଦାସ

॥ ୧୬୬ ॥



ରାସବିହାରୀ ବେହେରା
ସାଂସଦ, 206 North Avenue
New Delhi, 26.3.82

ଶ୍ରଦ୍ଧେୟ କୃଷ୍ଣଚରଣ ବାବୁ,

ମୋର ପ୍ରଣାମ ଗ୍ରହଣ କରିବେ । ଆପଣଙ୍କ ପ୍ରେରିତ ପତ୍ର ପାଇ ବଡ଼ ଖୁସି ହେଲି । ଆପଣ ଅନେକଦିନ ପରେ ମୋତେ ମନେ ପକାଇ ପତ୍ର ଖଣ୍ଡିଏ ଦେଲେ ଏବଂ ଆମ କଲେଜର ଏକ ସମସ୍ୟା ସଂପର୍କରେ ମୋତେ ସଚେତନ କରାଇ ଦେଇଥିବା ଯୋଗୁଁ ମୁଁ ବିଶେଷ ଖୁସି । ଓଡ଼ିଆରେ ଏମ୍.ଏ. ଶ୍ରେଣୀ ଖୋଲିବା ସଂପର୍କରେ ବିଭାଗୀୟ କର୍ତ୍ତୃପକ୍ଷଙ୍କ ସହ ମୁଁ ଆଲୋଚନା କରି ତାହା କାର୍ଯ୍ୟକାରୀ କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରିବି ।

ଲୋକସଭା ଆଗାମୀ ମେ ମାସ ୭ ତାରିଖ ପର୍ଯ୍ୟନ୍ତ ଚାଲିବ । ଆପଣ ଫୁଲବାଣିରେ ଥିବା ବିଷୟ ଜାଣିଲି । ଏଥର ଗଲେ ନିଶ୍ଚୟ ଦେଖାହେବ । ଲେଖାଲେଖି, ସେତେ ଆଉ ନାହିଁ । ତଥାପି ସମୟ ସମୟରେ ଲେଖା ଅଭ୍ୟାସକୁ ବଂଚାଇ ରଖିଛି । କଳାହାଣ୍ଡିର ଆଗାମୀ ସାହିତ୍ୟ ସମ୍ମିଳନୀରେ ନିଶ୍ଚୟ ଯୋଗଦେବାପାଇଁ ଆପଣ ଏବେଠୁଁ ସ୍ଥିର କରିଦେଇଥାନ୍ତୁ । ବାକିସବୁ ସାକ୍ଷାତ ପରେ । ଇତି ।

ରାସବିହାରୀ ବେହେରା

॥ ୧୬୭ ॥

ଭୁବନେଶ୍ୱର-୭
୮.୫.୮୨

ପୂଜ୍ୟାସ୍ପଦ ସାର୍,

ମୋର ପ୍ରଣାମ ନେବେ । ଆପଣ ମତେ କେମିତି ଚିହ୍ନିବେ ତା ମୁଁ ଜାଣେନି । ତଥାପି, 'ପାଟକଗୀତା' ଉପରେ କରିଥିବା ଏକ ଆଲୋଚନା ସଂପର୍କରେ ଆପଣଙ୍କର ମତାମତ ମନେ ଥିବ । ମୁଁ ସେହି ବସନ୍ତକୁମାର ସାହୁ । ସାଲେପୁର କଲେଜରୁ ଆସି ବାଣୀବିହାର ଓଡ଼ିଆ ବିଭାଗରେ ଜୟଦେବଙ୍କ ଗୀତଗୋବିନ୍ଦର ଅନୁବାଦ ସଂପର୍କରେ ଗବେଷଣା କରି, ଗତ ୨୯ ତାରିଖରେ Ph.D. ପାଇଲି । ମୁଁ ପାଟକଗୀତାଟିକୁ ସଂପାଦନା କରି ତାର ମୁଖବନ୍ଧ ସହିତ ରାଧାଶ୍ୟାମ ବାବୁଙ୍କୁ ପ୍ରକାଶ ନିମନ୍ତେ ଦେଇଛି । ଆପଣ କେବେ ଆସିଲେ ଦେଖି ପାରନ୍ତି ।

ଆପଣଙ୍କୁ ଏହି ପତ୍ର ଲେଖିବାକୁ କଟକସ୍ଥ 'ପୁସ୍ତକ ଭଣ୍ଡାର' ବହି ଦୋକାନର ମାଲିକ ଶ୍ରୀଯୁକ୍ତ ନରସିଂହ ପାଳ ମହାଶୟ କହିଲେ । ସେ ଆପଣଙ୍କର ମତାମତ ଚାହାଁନ୍ତି । ଆପଣ କହିଲେ ସେ ମୋର ଏକ ପୁସ୍ତକ ପ୍ରକାଶ କରିବେ । ବହିଟି ହେଲା-'ଗୋବିନ୍ଦଗୀତା', ଲେଖକ-ତ୍ରିଲୋଚନ ଦାସ । କବିଙ୍କର ସମୟ ୧୫ଶ ଶତାବ୍ଦୀର ଶେଷ ଭାଗ । ଭାଷା ଓ ଭାବ ଅତି ଚମତ୍କାର । ଏଥିରେ କବି ତ୍ରିଲୋଚନ ଗୀତଗୋବିନ୍ଦର ଗୁହ୍ୟ ଓ ବାହ୍ୟ ଅର୍ଥ କରିଛନ୍ତି । ଏହାର ମାତ୍ର ୩ଟି ଜୀର୍ଣ୍ଣ ପୋଥି ଉଦ୍ଧାର କରିବାକୁ ସକ୍ଷମ ହେଲି । ଏହି ୩ଟି ପୋଥିରୁ ଗ୍ରନ୍ଥଟିର ସଂପାଦନା କରଯାଇଛି ।

ଆପଣଙ୍କ ଅନୁମତି ମିଳିଲେ 'ପୁସ୍ତକ ଭଣ୍ଡାର' ଏହାର ପ୍ରକାଶ କରିବେ । ଏଣୁ ଅନୁରୋଧ ଆପଣ ମୋତେ ଏକ ପତ୍ର ଦ୍ୱାରା ଜଣାଇଲେ ତାଙ୍କୁ ସାକ୍ଷାତ କରି ଆପଣଙ୍କ ମତାମତ ଜଣାଇବି । ସାକ୍ଷାତ ଅଭିଳାଷୀ ।

ବସନ୍ତକୁମାର ସାହୁ
'ଦାନୀକୁଟୀର', ମହାନ୍ତିପଡା

॥ ୧୬୮ ॥

ସମ୍ବଲପୁର-୧
୧୧.୦୬.୮୨

ଶ୍ରଦ୍ଧେୟ ସାଁର୍,

ପ୍ରଣତି । ଶ୍ରୀମତୀ ବେହେରାଙ୍କୁ ମଧ୍ୟ ପ୍ରଣାମ ଜଣାଇ ଦେବେ ।

ଆପଣଙ୍କର ୫.୬.୮୨ ତାରିଖର ପତ୍ର ୮.୬.୮୨ତାରିଖରେ ପାଇଛି । ଗତକାଲି

'ସମାଜ' ଦୈନିକରେ ଆପଣଙ୍କର 'ସମ୍ମାନ ସନ୍ଦର୍ଭ', ଡକ୍ଟର ମନୀନ୍ଦ୍ର ମହାନ୍ତିଙ୍କ 'ଶ୍ରୀରୋଢ଼ା' ଓ 'ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା' ସଂପର୍କରେ ସଂକ୍ଷିପ୍ତ ବିଚାର ପଢ଼ିଲି ।

'ଏଷଣା'ରେ ଗ୍ରନ୍ଥସମୀକ୍ଷା ଅଙ୍ଗୀଭୂତ ହେବା କଥା ମୁଁ ପୂର୍ବ ପତ୍ରରେ ଲେଖିଥିଲି । ମୁଁ ଜାଣେନା, କେଉଁ ଧାରା ବା ଦୃଷ୍ଟିଭଙ୍ଗୀ ଅନୁଯାୟୀ ଆପଣମାନେ 'ଏଷଣା'ରେ ସମୀକ୍ଷା ନିମନ୍ତେ ଗ୍ରନ୍ଥ ଗ୍ରହଣ କରୁଛନ୍ତି । ତେବେ ମୋଟାମୋଟି ଯାହା ମୋର ଅନୁଭବ ହେଲା, ଲେଖିଦେଲି । ବୋଧହୁଏ ଆପଣ ମୋତେ ଭୁଲ ବୁଝି, କେଉଁ କେଉଁ ଓଡ଼ିଆ ଇଂରାଜୀ, ହିନ୍ଦୀ ବା ବଙ୍ଗଳା ଗ୍ରନ୍ଥ(ଅତିନିକଟରେ ପ୍ରକାଶ ପାଇଥିବା) ସମୀକ୍ଷାର ଅଙ୍ଗୀଭୂତ ହେବା ପାଇଁ ହକଦାର, ତହିଁର ଏକ ତାଲିକା ପଠାଇବା ପାଇଁ କହିଛନ୍ତି । କ୍ଷମା କରିବେ, ବିନୟର ସହ କହୁଛି, ମୋର ଅଧ୍ୟୟନ ସୀମା ଆଦୌ ବିସ୍ତୃତ ନୁହେଁ । ଏଭଳି ଗୋଟେ ତାଲିକା ଯେ ମୁଁ ଦେଇ ପାରିବି, ମୁଁ ଭାବୁ ନାହିଁ । ତେବେ ଯାହା ଅନୁଭବ ହୋଇଥିଲା, ଲେଖିଦେଲି । ଯେପରିକି, 'ଗୋରା ଲୋକଙ୍କ ଦେହରେ କଳା ଲୋକଙ୍କ କାଳି' (୨ୟ ସଂଖ୍ୟା) ଆଲୋଚନା ଯେଭଳି ଭଲ ଲାଗିଥିଲା, ସୋଭିଏଟ୍ ରୁଷିଆରେ ପ୍ରାଚ୍ୟ ବିଦ୍ୟାର ଗବେଷଣା ବା ଶିଶୁ କିଶୋର ଓ ବୟସ୍କଙ୍କ ପାଇଁ ସାହିତ୍ୟ-ଇତିହାସ(୪ର୍ଥ ସଂଖ୍ୟା), ସେଭଳି ଭଲ ଲାଗିଲା ନାହିଁ । ବରଂ 'କବି-କାହାଣୀ'(୧ମ ସଂଖ୍ୟା), 'ଓଡ଼ିଆ ସାହିତ୍ୟ ଓ ଧର୍ମ'(୨ୟସଂଖ୍ୟା), 'ଭିନ୍ନ ସ୍ୱାଦର ଉପନ୍ୟାସ' (୩ୟ ସଂଖ୍ୟା), 'ଓଡ଼ିଶା-ଇତିହାସ ଚର୍ଚ୍ଚା'(୩ୟ ସଂଖ୍ୟା) ପ୍ରଭୃତି ଭଲ ଲାଗିଥିଲା । କେଉଁ ଧାରାରେ ଆପଣମାନେ ପୁସ୍ତକ ନିର୍ବାଚନ କରୁଛନ୍ତି, ସେ କଥା ନଜାଣି, ହୁଏତ ମତାମତ ଦେବା ସମୀଚୀନ ହେବ ନାହିଁ ।

ସେ ଯାହା ହେଉ ଓଡ଼ିଆ ଗଳ୍ପ ଗ୍ରନ୍ଥ 'ଓ ଅନ୍ଧଗଳି' ସଂପର୍କରେ ଏକ ସଂକ୍ଷିପ୍ତ ସମୀକ୍ଷା ନିକଟରେ ଲେଖିଛି । 'ଏଷଣା' ପାଇଁ ପଠାଇଲି । ଯଦି ଉପଯୁକ୍ତ ମନେ ହୁଏ, ତାହାହେଲେ ଆବଶ୍ୟକୀୟ ଖଣ୍ଡନ/ମଣ୍ଡନ ସହ 'ଏଷଣା'ରେ ସ୍ଥାନ ଦେଇ ପାରନ୍ତି । ନଚେତ୍ ନାପସନ୍ଦ ହେଲେ, ଜଣାଇ ଦେବେ । 'ଶ୍ରୀରୋଢ଼ା'ର ବିକ୍ରି ବାବଦ ପଇସା ଡକ୍ଟର ନାୟକଙ୍କ ନିକଟକୁ ଏମ୍.ଓ. କରି ଦେଇଛି । 'ସର୍ଜନାତ୍ମକ ସାହିତ୍ୟ ସମୀକ୍ଷା' ରେଜିଷ୍ଟ୍ରେର୍ଡ ପୋଷ୍ଟ କରି ଖଣ୍ଡେ ପଠାଇବେ କି ? ଏବେ ଦୁଇଦିନ ହେଲା ମୁଁ ସାମାନ୍ୟ ପୀଡିତ । ବିଶ୍ୱାସ ଆପଣ ସପରିବାର କୁଶଳରେ ଅଛନ୍ତି । ରହୁଛି । ଇତି ।

ନମସ୍କାରାନ୍ତେ
ଆପଣଙ୍କର ଗୁଣମୁଗ୍ଧ
ପୂର୍ଣ୍ଣାନନ୍ଦ ଦାନୀ

॥ ୧୬୯ ॥

ଶାନ୍ତିନିକେତନ
୮.୭.୮୨

ପୂଜ୍ୟ ସାର୍,

ପ୍ରଣାମ ଜାଣିବେ । ଆପଣଙ୍କ ରସରାଜ ଚିଠି ପାଇଥିଲି । ମୁଁ ଲୋକ ସାହିତ୍ୟ କର୍ମଶାଳାରେ ଯୋଗଦେବା ପାଇଁ ମଦୁରାଇ ଯିବା କଥା ଲେଖିଥିଲି । ଲୋକ ସାହିତ୍ୟ ଅଧ୍ୟୟନର ଆଧୁନିକ ପଦ୍ଧତି ସଂପର୍କରେ ସେଠାରେ ବିଶେଷ ଆଲୋଚନା ହୋଇଥିଲା ।

ମୁଁ ଲୋକସାହିତ୍ୟ ସଂପର୍କିତ ପ୍ରବନ୍ଧର ଗୋଟିଏ ସଂକଳନ କରୁଛି । ବିଶ୍ୱଭାରତୀ ସହିତ ଜଡିତ ଲୋକସାହିତ୍ୟ ଅନୁରାଗୀ ଅଧ୍ୟାପକ, ଛାତ୍ରଙ୍କ ଲେଖା ଏଥିରେ ରହିବ । ଡ. ଦାଶ ଓ ଡ. ଭାବଗ୍ରାହୀ ମିଶ୍ରଙ୍କ ସମେତ ଆମ ବିଭାଗର ସମସ୍ତ ଅଧ୍ୟାପକଙ୍କଠାରୁ ଲେଖା ପାଇଯିବା ପରେ ସଂକଳନଟି ଉପସ୍ଥାପନଯୋଗ୍ୟ ହେବ ବୋଲି ମୋର ବିଶ୍ୱାସ ହୋଇଛି । ଆପଣଙ୍କ ଲେଖା ଏଥିରେ ନ ରହିଲେ ଗୋଟିଏ ଅପୂର୍ଣ୍ଣତା ଜଳ ଜଳ ଦିଶିବ । ଆପଣ ଶୀଘ୍ର ଗୋଟିଏ ଲେଖା ଦୟାକରି ନିଶ୍ଚୟ ପଠାଇବେ । ଗ୍ରନ୍ଥ ମନ୍ଦିର ସଂକଳନଟି ପ୍ରକାଶ କରିବାକୁ ରାଜି ହୋଇଛନ୍ତି । ଆପଣ ଲେଖା ନଦେଲେ ମୋର ଉତ୍ସାହ କିମିତି ବଢ଼ିବ ?

ଆପଣଙ୍କର ସ୍ନେହାଧୀନ
ଶ୍ୟାମସୁନ୍ଦର ମହାପାତ୍ର

॥ ୧୭୦ ॥

ଆନନ୍ଦ, ଗୁଜୁରାଟ
୨୭.୭.୮୨

ପୂଜ୍ୟପାଦ ସାର୍,

ପ୍ରଣାମ ନେବେ । ଆମେ ଗଲା ୨୨ ତାରିଖରୁ ବମ୍ବେ ଆସି, ସେଠାରୁ କାଲି ଏଠାକୁ ଆସିଛୁ । ଗଲାକାଲି ଏଠାକାର National Dairy Development Board Hostel ରେ ରହିଲି । ଅମୂଲ କାରଖାନା ଏବଂ ଗୁଜୁରାଟର ଦୁଗ୍ଧ ଉତ୍ପାଦନ ଓ ବିପଣନ ସଂପର୍କରେ ଅନୁଧ୍ୟାନ କରୁଛୁ । ଆମ ଦେଶରେ ଯେତେବେଳେ ସମବାୟ ଅନୁଷ୍ଠାନଗୁଡ଼ିକ ଚରମ ବିଫଳତା ଲାଭ କରୁଛନ୍ତି, ସେ କ୍ଷେତ୍ରରେ ଏ ଅନୁଷ୍ଠାନର ସଫଳତା ଆଶ୍ଚର୍ଯ୍ୟଜନକ । ଗୁଜୁରାଟ ରାଜ୍ୟ ଖେଡା ଜିଲ୍ଲା ଦୁଗ୍ଧ ଉତ୍ପାଦନ ସଂଘ ଆନୁକୂଲ୍ୟରେ ଅମୂଲ କାରଖାନା ପ୍ରତିଷ୍ଠିତ । ଏହି ଆନ୍ଦୋଳନର ସଫଳତା ମୂଳରେ ଯାହାଙ୍କର ତ୍ୟାଗ, ସାଧନା ଓ ଦିଗଦର୍ଶନ ନିହିତ ସେ ହେଲେ ଏହାର ମ୍ୟାନେଜିଂ ଡାଇରେକ୍ଟର ଡକ୍ଟର କୋରିଏନ୍ । ଡକ୍ଟର କୋରିଏନ୍ ଜଣେ ଇଂଜିନିୟର । ସେ ଏଠାରେ ଦୀର୍ଘ ୪୦ ବର୍ଷ କାମ କଲେଣି । ତାଙ୍କରି ଯୋଗୁଁ ଏକ

ଅନୁଷ୍ଠାନ ଏତେ ସଫଳତା ଲାଭ କଲା । ତାଙ୍କ ସାଧନାର କାହାଣୀ ହିନ୍ଦୀ ଫିଲ୍ମ 'ମନ୍ଥନ'ରେ ଚିତ୍ରିତ ହୋଇଛି । ଏହି ଫିଲ୍ମର ରଚୟିତା ନିଜେ କୋରିଏନ୍ । ଜଣେ ବ୍ୟକ୍ତିଙ୍କର ସାଧୁଉଦ୍ୟମ କିଭଳି ଭାବରେ ସଫଳତା ଲାଭ କରେ, ତାହା ଦେଖି ବଡ ପ୍ରେରଣା ମିଳୁଛି ମୋତେ । ଏହିଭଳି ତ୍ୟାଗପୂତ, ସାଧନାପୂର୍ଣ୍ଣ ଜୀବନ ଜାଣିବାକୁ ମୁଁ ଦୃଢ଼ପ୍ରତିଜ୍ଞ ହୋଇଛି । ମୋ ସାଧନାର କ୍ଷେତ୍ର (ସାହିତ୍ୟ କ୍ଷେତ୍ର)ରେ ମୁଁ ଯଦି ସେହିଭଳି କିଛି କରିପାରିବି, ତେବେ ମୋ ମନ ଶାନ୍ତ ହେବ । ଏଥିପାଇଁ ଆପଣଙ୍କ ସ୍ନେହାଶିଷ କାମନା କରୁଛି ।

ଭାବୁଛି, ଡକ୍ଟର କୋରିଏନଙ୍କ ଜୀବନୀ ଏବଂ ଅମୂଲର ସଫଳତାର କାହାଣୀକୁ ଉପଜୀବ୍ୟ କରି ଭ୍ରମଣକାହାଣୀଟିଏ ଲେଖିବି ଏଠୁ ଗଲେ । ଏଠାରୁ ଆମେ କାଲି ଅହମ୍ମଦାବାଦ ଯିବୁ । ଅହମ୍ମଦାବାଦରୁ ଭାବିଛୁ ଦିଲ୍ଲୀବାଟ ଦେଇ ଘରକୁ ଫେରିବୁ ।

ବମ୍ବେ ଆସିବା ପୂର୍ବରୁ ଆପଣଙ୍କ ଘରକୁ ଯାଇଥିଲି, ଚୁଟ୍କୁ ତାଙ୍କ ପରୀକ୍ଷାଫଳ ଲାଗି ଅଭିନନ୍ଦନ ଜଣାଇବାକୁ । ଦେଖିଲି ମା'ଙ୍କ ଦେହ ଭଲ ନାହିଁ, ସେ ବଡ ଦୁର୍ବଳ ହୋଇଯାଉଛନ୍ତି । ଆପଣ ପାଖରେ ନଥିଲା ବେଳେ ସମସ୍ତଙ୍କ ଦେହ ଏପରି ଖରାପ ହୋଇ ଆପଣଙ୍କୁ ବଡ ବ୍ୟଥା ହେଉଥିବ । ଆପଣ ଆପଣା ସଂଗଠକ ଜୀବନର ଏକ ଉନ୍ନତତର କୋଟୀରେ ଉପନୀତ ହେବାବେଳକୁ ବୋଧ ହୁଏ ଭଗବାନଙ୍କର ଏହା ଗୋଟିଏ ପରୀକ୍ଷା । ଆପଣ ଏ ପରୀକ୍ଷାରେ ସଫଳତା ଲାଭ କରିବେ ବୋଲି ଦୃଢ଼ ବିଶ୍ୱାସ ମୋର ଅଛି । ଇତି ।

ଆପଣଙ୍କର ସ୍ନେହର
ସୁଧୀରଚନ୍ଦ୍ର ବେହୁରା

॥ ୧୭୧ ॥

ଫଣୀନ୍ଦ୍ର କୁମାର ରାଉତ, ଏମ୍.ଏ. ବି.ଇଡି
ଉପସଭାପତି, ଭଣ୍ଡାରୀପୋଖରୀ ସାହିତ୍ୟ ସଂସଦ, ବାଲେଶ୍ୱର

୧.୮.୮୨

ପୂଜ୍ୟ ମହାଶୟ,

ପ୍ରଣାମ । ଆପଣଙ୍କର ପତ୍ର ଆଜି ପାଇଲି । ପ୍ରକୃତରେ ଆପଣଙ୍କର ଠିକଣା ସଂପର୍କରେ ମୋର ଭୁଲ୍ ଧାରଣା ରହିଥିଲା । ସେ ପାଇଁ ମୁଁ ଲଜ୍ଜିତ ।

ମୋର କ୍ଷୁଦ୍ରଗଳ୍ପ ବହି ଖଣ୍ଡିକ ଯେ ଆପଣଙ୍କର ଆଖିରେ ପଡ଼ିଚି, ସେ ପାଇଁ ମୁଁ ଆନନ୍ଦିତ । ××× ମୋର ଏକାନ୍ତ ଅନୁରୋଧ ବହିଟିର ଏକ ନାତିଦୀର୍ଘ ସମୀକ୍ଷା ଲେଖି ପଠାଇବେ । ତହିଁରେ ଆପଣ ଯେଭଳି ସମାଲୋଚନା କରନ୍ତୁ–ମୁଁ ଦୁଃଖ କରିବି ନାହିଁ । ସମୀକ୍ଷାଟି କୌଣସି ପତ୍ରିକାକୁ ପଠାଇ ଦେବି । ହଁ, ଏକଥା ସତ୍ୟ ଯେ ବହିଟିରେ ଥିବା ପଏଣ୍ଟ

ଗୁଡ଼ିକର ମୁଁ ଅଧିକ ବିଶ୍ଳେଷଣ କରିନାହିଁ । ଅଥଚ ସେ ପାଇଁ ସୁଯୋଗ ଥିଲା । ××× ପ୍ରକାଶିତ ବହିଟି ତାହାର ସଂକ୍ଷିପ୍ତୀକରଣ ମାତ୍ର । ଯେଉଁ ବଂଧୁ ଜଣଙ୍କ ମତେ ଏପାଇଁ ଆର୍ଥିକ ସହାଯ୍ୟ କରିଥିଲେ(ସେ ବଂଧୁ ତଥା ପ୍ରକାଶକ ମଧ)–ତାଙ୍କରି ସାହାଯ୍ୟର ଅନୁରୂପ ସେ ବହିଟି । ଅଧିକ ମୁଁ କ'ଣ କରିଥାନ୍ତି । ମୋ ସ୍କ୍ରିପ୍ଟଟି ଦେଖି ମତେ ଉତ୍ସାହିତ କରିଥିଲେ ମଧ । ଖର୍ଚ୍ଚର ପରିମାଣ ଶୁଣି ସେ ନିଜେ ନିରୁତ୍ସାହିତ ହୋଇଥିଲେ । ସେ ବଂଧୁ ସଂସ୍କୃତରେ ଏମ୍.ଏ. ପାଶ୍ କରିଛନ୍ତି । ତାପରେ ମୁଁ ସ୍କ୍ରିପ୍ଟର ସଂକ୍ଷିପ୍ତ ଆକାର ସୃଷ୍ଟି କଲି । ଆପଣ ପଢ଼ିବା ବେଳେ ଜାଣିପାରିବେ ନାହିଁ ଆଲୋଚନାଗୁଡ଼ିକ କେମିତି ହଠାତ୍ ଶେଷ ହୋଇଯାଉଛି । ଖାପଛଡ଼ା ବି ଲାଗୁଛି । ବଂଧୁ ଅଧାପକ ହୃଷୀକେଶ ମଲ୍ଲିକ, ସୁରେଶ ପରିଡା, ଡକ୍ଟର ନିତ୍ୟାନନ୍ଦ ଶତପଥୀ–ଏହିକଥା ମତେ କହିଛନ୍ତି । କିନ୍ତୁ ଯେଉଁ ଦୁଃଖ ଆପଣଙ୍କ ପାଖରେ କହି ପାରିଲି, ତାହା ସେମାନଙ୍କୁ କହନ୍ତି କେମିତି ? ଯା ହେଉ ଆପଣଙ୍କ ପାଖରୁ ଏକ ସମୀକ୍ଷା ଆଶା କରୁଛି ଖୁବ୍ ଶୀଘ୍ର । ଅନୁରୋଧ, ମତେ ନିରାଶ କରିବେ ନାହିଁ ।

'ସ୍ୱାତୀ–୧୯୮୧' ଛୋଟ ପ୍ରକାଶନଟିଏ ପଠାଇଲି । ପାଇବେ ।

ଯେଉଁ ଗୁରୁତ୍ୱପୂର୍ଣ କଥାଟି ମୁଁ କହିବାକୁ ଚାହେଁ, ତାହା ଏହି– ମୁଁ ଆପଣଙ୍କ ଅଧୀନରେ ଗବେଷଣା କାର୍ଯ୍ୟ କରିବାକୁ ଚାହେଁ । ସେ ପାଇଁ ଆବଶ୍ୟକୀୟ ଉପାୟ ଓ ଉପଦେଶ ଆପଣଙ୍କଠାରୁ ଆଶା କରୁଛି । ନିଶ୍ଚୟ ଜଣାଇବେ । କେବଳ ଆପଣଙ୍କ ଅଧୀନରେ ତାହା ସଫଳ ହେବାର ଆଶା ମୋର ରହିଛି । ବିନୀତ ଅନୁରୋଧ, ମତେ ସମସ୍ତ କଥା ଜଣାଇବେ ।×××

ସ୍ନେହାନୁଗତ ଫଣୀ

॥ ୧୭୨ ॥

ତା ୭.୮.୮୨
ନିରାକାରପୁର

ମାନନୀୟେଷୁ,

ମୋର ପ୍ରଣାମ ଗ୍ରହଣ କରିବେ । ଆଶା ଓ ବିଶ୍ୱାସ ଆପଣ ପୂର୍ବାପେକ୍ଷା ଭଲ ଅଛନ୍ତି । ମୁଁ ଏଠାରେ ଏକ ପ୍ରକାର ଚଳୁଛି ।

ତା ୫.୮.୮୨ରେ ମୁଁ ଭୁବନେଶ୍ୱର ଯାଇଥିଲି ଏବଂ 'ଓଡ଼ିଆ ସାହିତ୍ୟରେ ହାସ୍ୟରସ' ଶୀର୍ଷକ ପାଣ୍ଡୁଲିପିଟି ରାଇବାବୁଙ୍କୁ ଦେଲି । ସେ ଖୁସି ହେଲେ ଏବଂ ଆମ ସାହିତ୍ୟରେ ହାସ୍ୟରସ ସମ୍ବନ୍ଧରେ ଖଣ୍ଡିତ ଆଲୋଚନା ଇତସ୍ତତଃ ହୋଇଥିଲେ ହେଁ, ସାମଗ୍ରିକ ଭାବରେ କେଉଁଠାରେ ହୋଇନାହିଁ ବୋଲି ସେ କହିଲେ । ପାଣ୍ଡୁଲିପି ରଖି ମୋତେ ରସିଦଟିଏ ଦେଇଛନ୍ତି ଏବଂ ୭୫୦ଟଙ୍କାର ବିଅରର୍ ଚେକ୍‌ଟିଏ ଦେଲେ । ମୁଁ ମୋର ପାରିଶ୍ରମିକ ସମ୍ପର୍କରେ ଆଉ କିଛି କହିବାକୁ ଇଚ୍ଛା କଲି ନାହିଁ । ସେଦିନ ସଂଧ୍ୟାରେ ଭୁବନେଶ୍ୱରରୁ ଫେରିଲି ।

ଆପଣଙ୍କ ନିର୍ଦ୍ଦେଶ ଅନୁଯାୟୀ ଓଡ଼ିଆ ସାହିତ୍ୟରେ ହାସ୍ୟରସ ପାଣ୍ଡୁଲିପିର ଶେଷ ପରିଚ୍ଛେଦ 'ସାମ୍ପ୍ରତିକ ଓଡ଼ିଆ ସାହିତ୍ୟରେ ହାସ୍ୟରସ' ଲେଖିଲି । ଏଥିରେ ଆଧୁନିକ ସାହିତ୍ୟରେ ବିଶେଷ କରି 'ଡଗର', ଗୋଦାବରୀଶ ମହାପାତ୍ର, ନାଟକ(ମନୋରଂଜନ, ବିଶ୍ୱଜିତ୍ ଓ ବିଜୟ ମିଶ୍ର), ରମ୍ୟରଚନା(ନିତ୍ୟାନନ୍ଦ, ଚୌଧୁରୀ ହେମକାନ୍ତ, ଚନ୍ଦ୍ରଶେଖର ଇତ୍ୟାଦି), କବିତା କ୍ଷେତ୍ରରେ ବ୍ରଜନାଥ ରଥ, ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ଔପନ୍ୟାସିକ ଗୋପୀନାଥ, ସୁରେନ୍ଦ୍ର ମହାନ୍ତି, ସଚ୍ଚି ରାଉତରାୟ ଓ ଗାଳ୍ପିକ ମନୋଜ ଦାସ, ସୁରେନ୍ଦ୍ର ମହାନ୍ତିଙ୍କୁ ଆଲୋଚନା ପରିସରଭୁକ୍ତ କରିଛି । ଡଗରରେ ସମାଲୋଚନା, ଅନର୍ଥକରଣ, ଲଘୁପଞ୍ଚକ ଓ ହସନ୍ତିକାର ଆଲୋଚନା କରାଯାଇଛି । ଆଧୁନିକ କବିତାର ହାସ୍ୟରସ ଗୋଟିଏ ନୂତନ ବିଭାଗ 'Under statement'ର (a form of irony) ପ୍ରୟୋଗ ପରଖ ବିଷୟ ଆଲୋଚିତ ହୋଇଅଛି । ଏତଦ୍ ବ୍ୟତୀତ କଟକ ସରସ ସାହିତ୍ୟ ସମିତିର ସଂକ୍ଷିପ୍ତ ଇତିହାସ, ବିଭିନ୍ନ ସମ୍ମାନ ଅନୁଷ୍ଠାନ, ସମ୍ମାନ ପ୍ରଦାନ ଇତ୍ୟାଦି ଗୋଟିଏ ପାରାରେ ପ୍ରାୟ ୧୫ ଧାଡି ମଧ୍ୟରେ ଆଲୋଚିତ ହୋଇଅଛି ।

ଆପଣଙ୍କ ଅନୁମତି ନନେଇ ଏହି ପାଣ୍ଡୁଲିପିର ସୂଚନାରେ ଆପଣଙ୍କ ସାହାଯ୍ୟ, ପ୍ରେରଣା, ଉତ୍ସାହ ଓ ପରାମର୍ଶ ପାଇଁ ମୁଁ ଋଣ ସ୍ୱୀକାର କରିଛି । ମୋର ବିଶ୍ୱାସ ତାହା ହିଁ ସତ୍ୟ ଓ ଉଲ୍ଲେଖନୀୟ । ଶେଷରେ ସେଥିରେ ଏକାଡେମୀର କର୍ତ୍ତୃପକ୍ଷ ବିଶେଷ କରି ସଭାପତି ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ଓ ସମ୍ପାଦକଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରିଛି ।

ମୁଁ ଥିସିସ୍ ଛାପା ସଂପର୍କରେ ରଘୁବାବୁଙ୍କୁ ଚିଠି ଲେଖିଛି କିନ୍ତୁ କିଛି ଉତ୍ତର ପାଇନାହିଁ । ଏହା ମଧ୍ୟରେ ତିନିମାସ ବିତି ଯାଇଥିଲେ ହେଁ, କାମର କୌଣସି ଅଗ୍ରଗତି ହୋଇ ପାରିଲା ନାହିଁ । ମୁଁ ତା ୧୧ରୁ ୧୬ ତାରିଖ ପର୍ଯ୍ୟନ୍ତ ଗାଁରେ ରହିବି । ସେତିକି ବେଳେ କଟକ ଆସିବି ଏବଂ ରଘୁବାବୁ ତଥା ଗୋବିନ୍ଦବାବୁଙ୍କୁ ଭେଟିବି । ଆପଣ ଯଦି କଟକ ଆସୁଥାଆନ୍ତି, ତେବେ ଆପଣଙ୍କୁ ସାକ୍ଷାତ କରିବାର ସୁଯୋଗ ପାଇବି ।

ସନାତନ ବାବୁ 'ଝଙ୍କାର'ରେ ବ୍ୟବହାର କରିଥିବା ଉଦ୍ଧୃତିଟିକୁ ଏ ପର୍ଯ୍ୟନ୍ତ ସେକ୍ସପିଅରଙ୍କ କୌଣସି ବହିରୁ ଖୋଜି ପାଉନାହାନ୍ତି । ସେ ନିଜ ଥିସିସ୍‌ର ଦ୍ୱିତୀୟ ପରିଚ୍ଛେଦଟି ଏବେ ଲେଖୁଛନ୍ତି । ଅବଶ୍ୟ ରଫ୍ କପି । ସେ ତାର ସଂଶୋଧନ କରି ଡକ୍ଟର ମହତାବଙ୍କୁ ଦେଖାଇବେ । ନିରାକାରପୁରରେ ରହିବାର ଅସୁବିଧା ହେବାରୁ ସେ ଏବେ ମୁଖ୍ୟମନ୍ତ୍ରୀଙ୍କ ଗାଁରେ(ରାମେଶ୍ୱର) ରହୁଛନ୍ତି ଏବଂ ନାନା ଅସୁବିଧା ସତ୍ତ୍ୱେ ସେ ସେଠାରୁ ଯିବା ଆସିବା କରୁଛନ୍ତି ।

ସାହିତ୍ୟ ଏକାଡେମୀର ଜୁବୁଲି ଉତ୍ସବ ପାଇଁ ଓଡ଼ିଆ ସାହିତ୍ୟର ସମାଲୋଚନା ଦିଗଟିକୁ ୨/୩ ଫାଳ ମଧ୍ୟରେ ଲେଖିବାକୁ ଚେଷ୍ଟା କରିଛି । ଏଥିପାଇଁ କିଛିଟା ତଥ୍ୟ ସଂଗ୍ରହ କରିଛି । xxx । ଇତି ।

ଆପଣଙ୍କର ସ୍ନେହସିକ୍ତ
କୁଞ୍ଜମଣି ରାଉତ

॥ ୧୭୩ ॥

୩.୧୧.୮୨
ଶାଳିକୋଠା, ଜଳେଶ୍ୱର

ପୂଜ୍ୟପାଦ ଗୁରୁଦେବ,

ମୋର ଭୂମିଷ୍ଠ ପ୍ରଣାମ ନେବେ । ଦୁଇ ତାରିଖର ଚିଠିଟି ବୋଧହୁଏ ପାଇଥିବେ । ସେଥିରେ 'ଜନ୍ମଭୂମି' ପତ୍ରିକା ସଂପର୍କରେ ଉଲ୍ଲେଖ କରିଥିଲି । ବହୁ ଆଶା ଏବଂ ଭରସା ରଖି ଏଯାବତ୍ ପ୍ରକାଶ ପାଇଥିବା ପତ୍ରିକାଗୁଡ଼ିକ ଆପଣଙ୍କ ଗୋଚରାର୍ଥେ ପଠାଇଲି । ଏହାର ବାର୍ଷିକ ଉତ୍ସବ ଲାଗି ଏକ ସୋଭେନିର୍ ପ୍ରକାଶ କରିବାର ବ୍ୟବସ୍ଥା ରଖିଛୁ । ଆପଣଙ୍କ କରୁଣାରେ ଏହି ପତ୍ରିକାରେ ଥିବା ସାହିତ୍ୟିକ ବିଭାଗ ଉପରେ ଦୃଷ୍ଟି ରଖି ରିଭ୍ୟୁଟିଏ ଲେଖିଦେବାକୁ ଅନୁରୋଧ କରୁଛି । ଗ୍ରାମାଞ୍ଚଳର ଅନାମଧେୟ ଲେଖକଙ୍କ ଭିତରୁ ଯେଉଁ କେତେକ ଏଥିରେ ସ୍ଥାନ ପାଉଛନ୍ତି ହୁଏତଃ କଳାତ୍ମକ ଦୃଷ୍ଟିରୁ ମୂଲ୍ୟହୀନ ହୋଇପାରେ, କିନ୍ତୁ ଏକ ସାହିତ୍ୟିକ ପରିବେଶ ସୃଷ୍ଟି ଲାଗି ସେମାନଙ୍କୁ ଉତ୍ସାହିତ କରିବା ପତ୍ରିକାର ଉଦ୍ଦେଶ୍ୟ । ଏଥିରେ ଛଦ୍ମନାମରେ ଏକ ଧାରାବାହିକ କାବ୍ୟ 'ମମତାମୟୀର ସ୍ୱପ୍ନ' ପ୍ରକାଶିତ । ପତ୍ରିକାଟିକୁ ଆମୂଳଚୂଳ ଅନୁଧ୍ୟାନ କରିବେ ବୋଲି ଅନୁରୋଧ ଜଣାଇଲି । ତା ସାଙ୍ଗକୁ ପତ୍ରିକାରେ ସ୍ଥାନ ପାଉଥିବା 'ସ୍ମୃତିଲେଖା' ବିଭାଗ ଉପରେ ବିଶେଷ ଦୃଷ୍ଟି ଦେଇ ରିଭ୍ୟୁରେ ଏହାର ଉପଯୋଗିତା ସମ୍ବନ୍ଧରେ ଲେଖିବେ । ସ୍ମୃତିଲେଖା ବିଭାଗର ଉଦ୍ଦେଶ୍ୟ ସଂପର୍କରେ କେବଳ ଏତିକି ଯେ ଆମ ଅଞ୍ଚଳରେ ଅବଲୁପ୍ତ ହୋଇଥିବା କିମ୍ବା ଲୁପ୍ତ ହୋଇଯାଇଥିବା ଐତିହାସିକ ଘଟଣା, ସାଂସ୍କୃତିକ ଉପାଦାନ ଏବଂ ଲୋକ ସଂସ୍କୃତି, ଲୋକକଳା, ଲୋକସାହିତ୍ୟ, ଧର୍ମ ଇତ୍ୟାଦିକୁ ସ୍ମୃତିଗୋଚରକୁ ଆଣିବା । ଏହାକୁ ବିଧିବଦ୍ଧ ରୂପେ ପ୍ରକାଶ କରିବାର ମତଲବ ରଖିଛୁଁ । ଯା'ହେଉ ଆପଣଙ୍କ ପରାମର୍ଶ ତଥା ମତାମତ ଦେଇ ନାତିଦୀର୍ଘ ରିଭ୍ୟୁଟିଏ ଲେଖିବେ ବୋଲି ମୁଁ ଅନୁରୋଧ ଜଣାଇଲି । ରିଭ୍ୟୁଟିକୁ ନଭେମ୍ବର ୧୫/୨୦ ତାରିଖ ବେଳକୁ ମୋ ଠିକଣାରେ ପଠାଇଲେ ବିଶେଷ ଉପକୃତ ହେବି ।

ସାର୍, ଆପଣ କହିଥିଲେ–'ହାତ ପାକଳ କର' । ଏଣୁ ସେହି ନିର୍ଦ୍ଦେଶାନୁସାରେ ମୁଁ କେବଳ ହାତ ପାକଳ କରିବାରେ ଯତ୍‌ସାମାନ୍ୟ ଏଇଭଳି ପଦକ୍ଷେପ ନେଉଛି । ମୋର ଭୁଲ୍ ତ୍ରୁଟି

କେଉଁଠି ରହିଛି, ମୋତେ ବ୍ୟକ୍ତିଗତ ଭାବରେ ସୂଚାଇ ଦେଲେ ବିଶେଷ ଉପକୃତ ହୁଅନ୍ତି ।

ସାର୍, ଆମକୁ ଅବହେଳିତ ବୋଲି ଭାବି ଏହି କ୍ଷୁଦ୍ର ପତ୍ରିକାକୁ ଭୁଲି ଯିବେ ନାହିଁ । ବର୍ତ୍ତମାନ ଆପଣଙ୍କ ଭଳି ମହାନୁଭବଙ୍କ ଉପଦେଶ ଓ ଉତ୍ସାହ ଆମ୍ଭମାନଙ୍କର କାମ୍ୟ । ଏଣୁ ଦୟାକରି ଗ୍ରାମାଞ୍ଚଳର ଏହି ଉତ୍ସାହୋଦ୍ଦୀପକ ପତ୍ରିକା ପ୍ରତି କରୁଣା ଦୃଷ୍ଟି ଦେଇ ଲିଙ୍ଖ୍ୟଟିଏ ନିଶ୍ଚିତ ଲେଖି ପଠାଇବେ ଭାବି ସାହସର ସହିତ ପଠାଉଛି । ଏହି ଧୃଷ୍ଟତା ଲାଗି ମୋତେ କ୍ଷମା ଦେବେ । ଲଳିତାପାଲାର ମୁଖବନ୍ଧଟି ଫୁଲବାଣୀ ଠିକଣାରେ ପଠାଇବି । ବ୍ୟସ୍ତ ଏବଂ ଦୁଶ୍ଚିନ୍ତା ଯୋଗୁଁ କିଛି ଆଗେଇ ପାରୁନି । ମା'ଙ୍କର ଅବସ୍ଥା ଗୁରୁତର । ତାଙ୍କର ସୁସ୍ଥାବସ୍ଥା ନ ଆସିବା ପର୍ଯ୍ୟନ୍ତ ମନ ବ୍ୟାକୁଳ ହୋଇ ଉଠୁଛି । ଏଣୁ M.Phil.ର dissertation ଟି ସଂପର୍କରେ ଆପଣଙ୍କଠାକୁ କିଛି ପଠେଇ ନ ପାରି ବିଶେଷ ମର୍ମାହତ ।

ଚିଠି ଓ କାଗଜଗୁଡ଼ିକ ପାଇଲେ କି ନାହିଁ ପରବର୍ତ୍ତୀ ଡାକରେ ଜଣେଇବେ । କଲେଜ ଆସନ୍ତା ୮ ତାରିଖରେ ଖୋଲିବ । ଆଶା କରେ ଘରେ ସମସ୍ତେ କୁଶଳରେ ଥିବେ । ଇତି ।

ଆପଣଙ୍କର ସ୍ନେହାଧୀନ

ସୁଧାଂଶୁ ଶେଖର ପ୍ରଧାନ

॥ ୧୭୪ ॥

ଚିନ୍ତାମଣି ମହାପାତ୍ର, ପ୍ରଧାନ ଶିକ୍ଷକ

ମୁନିଲାଲ ହାଇସ୍କୁଲ, ବୈଶିଙ୍ଗା

ମୟୂରଭଂଜ

୭.୧୨.୮୨

ସମ୍ମାନନୀୟ ମହାଶୟ,

ପ୍ରଣତି । ଈଶ୍ୱରଙ୍କ ଦୟାରେ ସପରିବାର ଭଲ ଥିବେ ବୋଲି ଆଶା । ମୋ କଥା ଆପଣଙ୍କର ସ୍ମୃତି କୋଷରୁ ଲିଭିଯାଇ ନଥିବ ବୋଧହୁଏ । ନିକଟରେ ଜାତୀୟ କବି ବୀରକିଶୋର କଲେଜର ଓଡ଼ିଆ ବିଭାଗର ଅଧ୍ୟାପକ ଶ୍ରୀ ବିଜୟକୁମାର ଶତପଥୀ ମୋ ପାଖରେ ଦୁଇଦିନ ଥିଲେ । 'ଓଡ଼ିଆ ସାହିତ୍ୟ ଉପରେ ସାମ୍ୟବାଦର ପ୍ରଭାବ' ବିଷୟକୁ ନେଇ ସେ ଆପଣଙ୍କ ନିର୍ଦ୍ଦେଶନାରେ ଗବେଷଣା କରୁଥିବା କଥା ମୋତେ କହିଲେ । ତାଙ୍କର ଆବଶ୍ୟକତା ଅନୁସାରେ ମୁଁ ଏଠାରେ ଥିବା ଶିବାଜୀ କ୍ଲବ ଲାଇବ୍ରେରୀରୁ ତାଙ୍କ ପାଇଁ 'ଆଧୁନିକ' ଏବଂ 'ନବଭାରତ'ର ଅନେକଗୁଡ଼ିଏ ସଂଖ୍ୟା ଆଣିଦେଇଥିଲି । ଏଠାରେ ତାଙ୍କର ଐକାନ୍ତିକତା ଏବଂ କର୍ମରେ ନିଷ୍ଠାପରତା ଦେଖି ମୋତେ ଖୁବ୍ ଖୁସି ଲାଗିଲା । ତାଙ୍କରିଠାରୁ ଜାଣିଲି ଯେ ଆପଣ ବର୍ତ୍ତମାନ ଫୁଲବାଣୀ କଲେଜରେ ଅଛନ୍ତି ।

ମୁଁ ବର୍ତ୍ତମାନ ଏଇ ହାଇସ୍କୁଲରେ ରହୁଛି । କାର୍ଯ୍ୟକାଳ ଏଇଠି ପୂରିଯିବ ବୋଧହୁଏ ।

ଲେଖିବା ନିଶା ଭାଙ୍ଗିନି । ଏ ଜୀବନରେ କେବେ ସେ ନିଶା ଛାଡିଯିବ ବୋଲି ଭାବି ପାରୁନି । କିଛି ଦିନେ ଦୁଇଦିନର କଥା ନୁହେଁ, ଆଜିକୁ ୧୨ ବର୍ଷ ହେଲା ଲେଖିଚାଲିଛି । ଅବିରାମ ଗତିରେ । ପ୍ରେରଣା ନାହିଁ କି ପ୍ରଚୋଦନା ନାହିଁ । ପଇସାପତ୍ର ଦିଗରୁ ବିଚାର କଲେ କିଛି ପାଉନାହିଁ କହିଲେ ଚଳେ । 'ବିଦ୍ୟାପୁରୀ'ରେ ୧୦/୧୨ ଖଣ୍ଡ ବହି ଅପ୍ରକାଶିତ ଅବସ୍ଥାରେ ପଡିରହିଛି ଆବହମାନ କାଳରୁ । ଟେକ୍ସ୍ଟ ବୁକ୍ ନେଇ ସେ ତାଙ୍କର ସବୁବେଳେ ବ୍ୟସ୍ତ । ମୋ କଥା ବା ଶୁଣୁଛି କିଏ ? ଆଜି ନୁହେଁ କାଲି, କାଲି ନୁହେଁ ପଅରଦିନ ଏମିତି ଭାବରେ ଦିନ ଗଡି ଚାଲିଛି । କହି କହି ମୋତେ ଲାଜ ମାଡିଲାଣି । ଏଣିକି ଆଉ କିଛି କହିବାକୁ ମନ ହେଉନି । 'ଗ୍ରନ୍ଥମନ୍ଦିର'ରେ ସେ. ଧରଣର ଅସୁବିଧା ପ୍ରାୟ ହୁଏନି । ତଥାପି ପ୍ରେସ୍ ବନ୍ଦ ଥିବାରୁ ୨ଟି ବହି ଅପ୍ରକାଶିତ ଅବସ୍ଥାରେ ପଡିରହିଛି ।

ସବୁବେଳେ କାମରେ ନିଯୁକ୍ତ ରହିବାକୁ ମୋର ବଳବତୀ ଇଚ୍ଛା ଥିଲେ ବି ମୋତେ ଆଶାନୁରୂପ କାମ ମିଳୁ ନାହିଁ । ଆପଣ କ'ଣ ସେଦିଗରେ ମୋତେ ସାହାଯ୍ୟ କରିବେନି ? ଅନୁବାଦ ସାହିତ୍ୟରେ ମୁଁ କିଛିଦୂର ଅଗ୍ରସର ହୋଇଛି । ଅଦ୍ୟାବଧି ୨୩ଖଣ୍ଡ ବହି ଅନୁବାଦ କଲିଣି । ଆହୁରି ଲେଖୁଛି ମଧ । ଏବେ 'ବିଦେଶୀ ଗଳ୍ପ ସଂକଳନ' ନାମରେ ଗୋଟିଏ ପ୍ରୋଜେକ୍ଟ ନେବାକୁ ଇଚ୍ଛା କରିଛି । କେମିତି କଣ କଲେ ସେ କାମ ହୋଇପାରିବ ଜଣାଇଲେ, ସୁଖୀ ହେବି ।

ମୁଁ ତ ଛୋଟା ହୋଇ ଗଲିଣି । ଭଲଭାବରେ ଚାଲି ପାରୁନି । ତେଣୁ ଇଚ୍ଛା ଥିଲେ ବି ଆପଣଙ୍କ ସହିତ ସାକ୍ଷାତ କରିବାକୁ ଅକ୍ଷମ । ସାହାଯ୍ୟ ସହାନୁଭୂତି ପାଇଁ ଆପଣଙ୍କୁ ସାନୁନୟ ଅନୁରୋଧ କରିବା ଛଡା ମୋର ଗତ୍ୟନ୍ତର ନାହିଁ । ମୋ ପାଇଁ ଗୋଟିଏ କିଛି ଭଲ ବନ୍ଦୋବସ୍ତ କରିଦେବେ ବୋଲି ଭରସା ରଖିଲି ।

ଉତ୍ତର ପ୍ରତୀକ୍ଷାରେ ରହୁଛି । ଇତି ।

ଆପଣଙ୍କର

ଶ୍ରୀ ଚିନ୍ତାମଣି ମହାପାତ୍ର

॥ ୧୭୫ ॥

୨୧.୨.୮୩

ଖୋର୍ଦ୍ଧା

ପୂଜନୀୟେଷୁ,

ପ୍ରଣାମ ଗ୍ରହଣ କରିବେ ।

ଲଜ୍ଜା ଏବଂ ଆତ୍ମଗ୍ଲାନିରେ ମୋର ଲେଖିବାକୁ ଭାଷା ନାହିଁ । ଅତୀତରେ ଆପଣଙ୍କୁ ଲେଖିଛି ସାହାଯ୍ୟ ପାଇବାପାଇଁ । ରାୟସିଂ ବାବୁ, ଚାଟାଜୀବାବୁଙ୍କଠାରୁ ଆପଣ ମୋ

ସଂକ୍ରାନ୍ତରେ ପଚରାପଚରି କରୁଥିଲେ ବୋଲି ଜାଣିଛି । ଅଥଚ ମୁଁ ନିଜେ ଅଯୋଗ୍ୟ, ଅବହେଳା ହେତୁ ଆଉ ଆଗେଇ ନାହିଁ । ଆପଣଙ୍କର ସହୃଦୟତାର ନିକଟରେ ମୁଁ ସଂପୂର୍ଣ୍ଣ ଅବନତ । ମୋର ଆଶା ଅତୀତର ସହୃଦୟତା ଦୃଷ୍ଟିରୁ ମତେ କ୍ଷମା କରିବେ ।

୧୮ବର୍ଷ ଚାକିରି ହୋଇଗଲାଣି–Ph.D. ନହେଲେ ଅଧିକ ସମସ୍ୟା ତ ହେବ, ତାଛଡା ମାନସିକ ଓ ନୈତିକ ଦୃଷ୍ଟିରୁ ମୁଁ କିଛି drepressed ଅନୁଭବ କରୁଛି । ମୁଁ ପ୍ରଥମେ 'ଓଡ଼ିଆ ନାଟକର ପୂର୍ବ ପର୍ଯ୍ୟାୟ'(ଗୀତାଭିନୟ ସୁଆଙ୍ଗ) ଇତ୍ୟାଦି ଉପରେ କାମ ଆରମ୍ଭ କରିବି ବୋଲି ୫/୬ବର୍ଷ ଆଗରୁ ଠିକ୍ କରୁଥିଲି–ମୋର ସାହିତ୍ୟିକ ଛାତ୍ରଜୀବନ ଆପଣଙ୍କ ପଦପ୍ରାନ୍ତରୁ ଆପଣଙ୍କ ପ୍ରେରଣାରେ ଜାଗ୍ରତ ହୋଇଥିଲା । ଏବେ ବି ସେଇ ଭରସାରେ ଆପଣଙ୍କୁ ପୁନରାୟ ଅନୁରୋଧ କରୁଛି ଆପଣଙ୍କ ଅଧୀନରେ ମୁଁ Registered ହେବାକୁ ଚାହେଁ । ମୁଁ ହତଭାଗା ଆପଣ Cuttackରେ ଥିଲାବେଳେ ସୁଯୋଗ ନେଇ ପାରିଲି ନାହିଁ । ସେ ଯାହାହେଉ ଏବେ ଆପଣଙ୍କୁ କେବେ ଏବଂ କେଉଁଠି ଭେଟିବି ଦୟାକରି ଜଣାଇବେ ।

ଆପଣଙ୍କ ଦୟା ଏବଂ ଅନୁଗ୍ରହ ବିନା ମୁଁ କିଛି କରିପାରିବି ନାହିଁ । ଆପଣଙ୍କ ସହ ଏ ସଂକ୍ରାନ୍ତରେ ଆଲୋଚନା କରିବାକୁ ଚାହେଁ । ମୋର ଜଣେ ସହକର୍ମୀ ଶଶାଙ୍କଶେଖର ରଥ ମଧ୍ୟ ଆପଣଙ୍କୁ ଭେଟିବାକୁ ଚାହାନ୍ତି । ସେ 'ପ୍ରଗତିବାଦୀ ଆନ୍ଦୋଳନ ଓ ଭଗବତୀଚରଣ' ଉପରେ କାମ କରିବାକୁ ଠିକ୍ କରିଛନ୍ତି । ସେ ମୋ ସହ ଆପଣଙ୍କୁ ଭେଟିବାକୁ ଚାହାନ୍ତି । ବହୁତ ଡେରି ହୋଇଗଲାଣି । ମୁଁ ଏବେ seriously ଓ sincerely କିଛି କରିବାକୁ ଚାହେଁ । ଆପଣ ଆପଣଙ୍କ ସୁବିଧା ଅନୁସାରେ କେବେ ଓ କେଉଁଠି ଆପଣଙ୍କୁ ଭେଟିବୁ ଜଣାଇବେ । ଉତ୍ତରକୁ ଅପେକ୍ଷା କରି ରହିଲି । ଆଶା କରେ ସପରିବାର ଭଲ ଥିବେ ।

ଆପଣଙ୍କର

ସ୍ନେହାଧୀନ

ରାମରତ୍ନ ନନ୍ଦ

॥ ୧୭୬ ॥

ମଣତା

୭.୪.୮୩

ପୂଜ୍ୟ ସାର୍,

ମୋର ପ୍ରଣାମ ଜାଣିବେ । ୨୦.୩ରେ ଆପଣଙ୍କ ନିକଟକୁ ଚିଠି ଓ ୨ୟ ସଂଖ୍ୟା ସମୀକ୍ଷାପତ୍ର ୬ କପି ପଠାଇଥିଲି । ଚିଠିରେ ଲେଖିଥିଲି 'ସମୀକ୍ଷାପତ୍ର–୩' ପାଇଁ ଆଦିକନ୍ଦ ସାହୁ 'ଗଦ୍ୟ ଗୌରବ'ର ସମୀକ୍ଷା କରିବା ପାଇଁ । ଆପଣଙ୍କ ସମ୍ମତିକୁ ଅପେକ୍ଷା କରି ରହୁଛି । ଦୟାକରି ଜଣାଇବେ ।

ଡକ୍ଟର କୁଞ୍ଜବିହାରୀ ଦାଶଙ୍କୁ ଆପଣ ଲେଖିଲେ/କହିଲେ ସେ 'ମଣିମା ଶୁଣିମା ହେଉ'ର

ସଂକ୍ଷିପ୍ତ ରୂପଟି 'ସମୀକ୍ଷାପତ୍ର-୩' ପାଇଁ ପଠାନ୍ତେ । ଲେଖିବେ କି ? ମେ-୮୩ରେ ୩ୟ ସଂଖ୍ୟା ପ୍ରକାଶ ପାଇବାର ଯୋଜନା ଅଛି । ଚିତ୍ତଭାଇ ଶରତ୍‌କୁମାର ମହାନ୍ତିଙ୍କର 'ଗ୍ରୀକ୍ ଜାତିର ଜୀବନଗାଥା' ଗ୍ରନ୍ଥର ସମୀକ୍ଷା ପଠାଇଛନ୍ତି । ଆଉ କିଛି ପହଞ୍ଚି ନାହିଁ ।
ସମୀକ୍ଷାପତ୍ର-୨ କିପରି ଲାଗିଲା ? ଡକ୍ଟର ଦାଶଙ୍କର ଉପନ୍ୟାସର ସଂକ୍ଷିପ୍ତ ରୂପ ପ୍ରକାଶିତ ହେଲେ ପତ୍ରିକାର ପରିବର୍ତ୍ତନ ସମ୍ଭବ ହେବ । କେବଳ ଗ୍ରନ୍ଥ ସମୀକ୍ଷାର ପତ୍ରିକାଟିକୁ ଦେଖଲେ କେହି ଆଗ୍ରହୀ ହେଲାପରି ଲାଗୁନି । ତା ବ୍ୟତୀତ ଗ୍ରନ୍ଥର ସଂକ୍ଷେପୀକରଣ ଏପରି ପତ୍ରିକାର ଅନ୍ୟଏକ ଉପାଦାନ । ଦୟାକରି ଚିଠିଦ୍ୱାରା ସବୁ ଜଣାଇବେ । ଦାଦାଙ୍କର ଦେହାନ୍ତ ପରେ ଘରର ଅନେକ କାମ କରିବାକୁ ହେଉଛି । ତଥାପି ସବୁଆଡୁ ସହଯୋଗ ମିଳିଲେ ପତ୍ରିକା ପ୍ରକାଶ ପାଇବାରେ କିଛି ଅସୁବିଧା ହେବନି । ଆଉ ସବୁ ଭଲ ।

ସ୍ନେହାଧୀନ

ଦିଲୀପ ନାୟକ

ପୁ: ହଁ ପରିଷଦର 'ଭାଷାଚର୍ଚ୍ଚାର ପରମ୍ପରା' ବହିଟି ସମୀକ୍ଷାପତ୍ରରେ ସ୍ଥାନିତ କଲେ କିପରି ହୁଅନ୍ତା ? କିଏ ରିଭ୍ୟୁ କଲେ ଭଲ ହେବ, ଲେଖିବେ ।

॥ ୧୭୭॥

୨୦.୪.୮୩

ବଳରାମପୁର, ତଳଗଡ଼

ପୂଜ୍ୟ ସାର୍,

ମୋର ପ୍ରଣାମ ନେବେ । ଆଶା କୁଶଳରେ ଥିବେ । କଟକରୁ ଫେରି ଗାଁରେ ରହିଛି । ୨୩ ତାରିଖ ଏବଂ ୨୪ ତାରିଖରେ ଯାଜପୁରରୋଡ୍‌ରେ ଥିବା ଚଲାପଥ ସାହିତ୍ୟ ଅନୁଷ୍ଠାନ ତରଫରୁ ହେଉଥିବା ବିଷୁବ ମିଳନରେ ଯୋଗଦେବାପାଇଁ ଅପେକ୍ଷା କରିଛି । ୨୫ ତାରିଖ ବ୍ରହ୍ମପୁର ଯାତ୍ରା କରିବି ।

ଆପଣଙ୍କ ପ୍ରଦତ୍ତ 'ଧର୍ମଅଧର୍ମ କଥା' ପୁସ୍ତକଟି ସଂପୂର୍ଣ୍ଣରୂପେ ପାଠ କଲି । ତା ଦ୍ୱାରା ମୁଁ ବିଶେଷ ଭାବରେ ଅନୁପ୍ରାଣିତ ହୋଇଛି । ସମଗ୍ର ପୃଥିବୀରେ ଧର୍ମ ନାମରେ ଚାଲିଥିବା ବ୍ୟଭିଚାର କାହାରିକୁ ଅବିଦିତ ନୁହେଁ । ତେଣୁ ଏହି ବିଷୟକ ଗୋଟିଏ ପ୍ରବନ୍ଧ ଲେଖିବାକୁ ଆରମ୍ଭ କରିଛି । ଲେଖାଟି ଆପଣ ଦେଖି ସାରିବା ପରେ 'କୈବଲ୍ୟ'ରେ ପ୍ରକାଶ କରିବାକୁ ପଠାଇବି । ଗାଁରେ ପଢ଼ାପଢ଼ିରେ ଲାଗିଛି । ବ୍ରହ୍ମପୁର ଯିବା ପରେ ଆପଣଙ୍କୁ ଜଣାଇବି କେବେ ଆପଣଙ୍କ ପାଖକୁ ଯିବି । ଚଠିପାଇ ଗାଁ ଠିକଣାରେ ଚିଠି ଦେବେ । ଇତି ।

ଆପଣଙ୍କର ସ୍ନେହର

ସୁବାସଚନ୍ଦ୍ର ପଟ୍ଟନାୟକ

॥ ୧୭୮ ॥

କଳିଙ୍ଗା

ତା ୨.୫.୮୩

ସାର୍,

ନମସ୍କାର ଗ୍ରହଣ କରିବେ । ଏଇ ବର୍ତ୍ତମାନ ଆପଣଙ୍କର 'ନାଟ୍ୟ ସାହିତ୍ୟ ପରିଚୟ' ପୁସ୍ତକରୁ ୫୦ ପୃଷ୍ଠା ପାଠ କରିବା ପରେ ହଠାତ୍ ଆପଣଙ୍କ ସ୍ମୃତି ମାନସକୁ ଆସିଲା । ଆପଣ ଫୁଲବାଣୀରେ ଅଛନ୍ତି ତ ? ××× ଏ ବର୍ଷର ବିଷୁବ ମିଳନକୁ ମୁଁ ଯାଇଥିଲି । ସେଠାରେ ଦେଖାହେବ ବୋଲି ଆଶା କରିଥିଲି । ଡକ୍ଟର ହେମନ୍ତ କୁମାର ଦାସ ଆସିଥିଲେ, ତାଙ୍କ ସହିତ ଆପଣଙ୍କ ପ୍ରସଙ୍ଗରେ କଥାବାର୍ତ୍ତା ହୋଇଥିଲା । ମୁଁ ଶୁଣିଲି ଆପଣ ଭଦ୍ରକ କଲେଜକୁ ଯିବା ପାଇଁ ଉଦ୍ୟମ କରୁଛନ୍ତି । ଏ ଉଦ୍ୟମ କେବେ ଫଳପ୍ରସୂ ହେଉଛି ଜଣାଇବେ । ଅନ୍ତତଃ ଆପଣ ଯିବା ପୂର୍ବରୁ ଆପଣଙ୍କୁ ଅତିଥିରୂପେ ଗୋଟିଏ ଓଳି ପାଇବାର ସୁଯୋଗ ଦେବାପାଇଁ ଅନୁରୋଧ ରହିଲା । ୧୯୭୦ ମସିହାରେ ଆପଣ ଭଦ୍ରକ କଲେଜରେ ଥିବା ସମୟରେ ଅର୍ଥାତ୍ ତେର ବର୍ଷ ତଳେ ବିନା ସାକ୍ଷାତରେ ବୌଦ୍ଧିକ ସଂସ୍ପର୍ଶରେ (ମୋର) କୈଶୋର ଅବସ୍ଥାରେ ଆପଣଙ୍କ ପ୍ରତି ଯେଉଁ ଶ୍ରଦ୍ଧାର ବୀଜ ଅଙ୍କୁର ପ୍ରଥମେ ଅଙ୍କୁରିତ ହୋଇଥିଲା, ଆଜି ଯୌବନରେ ତାହା କ୍ରମବର୍ଦ୍ଧମାନ ଏକ ମହାନ ମହୀରୁହ ରୂପେ ମୁଣ୍ଡ ଟେକିଛି ।

ଏ ଜୀବନେ ପ୍ରେମ ନୁହେଁ, ଅନ୍ୟସ୍ଥାନେ ପୁଣି ଅବସ୍ଥାନ ହେବ ତ ହେବ ! ଆମ ପ୍ରତି ଟିକିଏ କରୁଣା ରଖିଥିବେ । ଆପଣ ଲେଖକ ଆମେ ପାଠକ । ଆପଣ ଭଗବାନ ହେଲେ ଆମେ ଆପଣଙ୍କର ଭକ୍ତ । ଭକ୍ତ ଭଗବାନଙ୍କର ସାକ୍ଷାତ ନ ପାଇଲେ ମଧ୍ୟ ଅହରହ ସ୍ମରଣ କରୁଥାଏ । ଇତି ।

ଆପଣଙ୍କର ଗୁଣମୁଗ୍ଧ

ପ୍ରଫୁଲ୍ଲ କୁମାର ସାହୁ

ଶିକ୍ଷକ, ଡିଏଭି

॥ ୧୭୯ ॥

ବହିତ୍ର, ଭଂଜନଗର, ଗଂଜାମ

୧୮.୫.୮୩

ମହାଶୟ,

ପ୍ରଣାମ ନେବେ । ବହିତ୍ର–୧ ସଂପର୍କୀୟ ଆପଣଙ୍କର ଚିଠି ପାଇଛି । ବ୍ୟସ୍ତତା ହେତୁ ଉତ୍ତରଟିଏ ଦେଇପାରିନାହିଁ । ବିଳମ୍ବ ହେତୁ କ୍ଷମା ଦେବେ । ଯାହା ହେଉ ବହିତ୍ର ପାଇଁ ଆପଣ ଅନେକ ଗଠନମୂଳକ ଉପଦେଶ ଦେଇଛନ୍ତି । ଧନ୍ୟବାଦ । ସେଥିପାଇଁ ଆମେ

ଚେଷ୍ଟା କରିବୁ । ବହ୍ନିତ୍ର-୧ ପାଇଁ ମୁଁ ଓଡ଼ିଶାର ପ୍ରାୟ ୨୦୦ ଲେଖକଙ୍କୁ ଚିଠି ଦେଇଥିଲି । ତାମଧ୍ୟରେ ଆପଣଙ୍କୁ ମଧ୍ୟ ଦିଆଯାଇଥିଲା । କିନ୍ତୁ କାହିଁ କୌଣସି ଆଗ୍ରହୀ ଲେଖକ ବଂଧୁ ଆମକୁ ଏଥିରେ ସହଯୋଗ କରିବା ଦୂରେ ଥାଉ, ଗଠନମୂଳକ ପ୍ରସ୍ତାବଟିଏ ଦେଇନାହାନ୍ତି । ଆପଣ ମଧ୍ୟ ବହ୍ନିତ୍ର ପ୍ରକାଶନ ପୂର୍ବରୁ ଦେଇଥିଲେ ଆମେ ତାହାକୁ ବିଚାରକୁ ନେଇଥାଆନ୍ତୁ ।

ପୁଣି ଲେଖା ସଂପର୍କରେ ଆପଣ ଜଣାଇଛନ୍ତି କୌଣସି ଲେଖା ଆପଣଙ୍କର ମନୋପୂତ ହୋଇନାହିଁ । ଆମେ ବହୁତ ଚେଷ୍ଟା କରିଛୁ ଆହୁରି Standard ଲେଖା ପାଇଁ । କିନ୍ତୁ ପ୍ରଥମେ ପତ୍ରିକାଟିଏ ବାହାରିବା ସମୟରେ ଲେଖକମାନଙ୍କର ଯେଉଁ ନାକଟେକା ତାହା ଅନୁଭବୀ ବିନୁ ଜାଣିପାରିବ ନାହିଁ । ଏ ସଂପର୍କରେ ଏ ଚିଠିରେ ମୁଁ କିଛି ଲେଖୁନାହିଁ । କେବେ ବ୍ୟକ୍ତିଗତ ସାକ୍ଷାତ ହେଲେ କହିବି । ତଥାପି ଆମେ ୭/୮ଟି Standard ଲେଖା ଦେଇଛୁ । ଅନ୍ୟଗୁଡ଼ିକ ବହ୍ନିତ୍ର-୧ (ଭଂଜଙ୍କ ସଂପର୍କରେ ସାଧାରଣ ବିଶେଷାଙ୍କଟିଏ ହୋଇଥିବାରୁ) ତାକୁ ସ୍ଥାନ ଦେଇଛୁ । ପରବର୍ତ୍ତୀ ସଂଖ୍ୟାଗୁଡ଼ିକ ଉନ୍ନତ ମାନର ଯେପରି ହୋଇପାରିବ ଆ... ଚେଷ୍ଟା କରିବା ।

ପୁଣି ଆପଣ ଲେଖିଛନ୍ତି ଭଂଜଙ୍କ ରଚନାବଳୀ ତଥା ଜନ୍ମ ସଂପର୍କରେ । ଏଥିରେ ଆମକୁ ସାହାଯ୍ୟ କରିବ କିଏ ? ଆପଣ କେତେଜଣ ଲେଖକଙ୍କର ନାଁ ଦିଅନ୍ତୁ, ଏମାନଙ୍କୁ ସାକ୍ଷାତକରି କିମ୍ୱା ପତ୍ର ଦେଇ ଆମେ ତାଙ୍କର ସାହାଯ୍ୟ ଲୋଡ଼ିବୁ । ଆପଣଙ୍କୁ ମଧ୍ୟ ଆମର ଅନୁରୋଧ ଏ ସଂପର୍କରେ ଆପଣଙ୍କ ବିଭାଗ ଆମକୁ ସାହାଯ୍ୟ କରୁ । ଏ ସଂପର୍କରେ ପତ୍ରଟିଏ ଦୟାକରି ଦେବେ । ଆମ ସଂପାଦକ ଆପଣଙ୍କ ନାମରେ ଖଣ୍ଡିଏ ବହ୍ନିତ୍ର ପଠାଇଛନ୍ତି । ଯଦି ଆପଣଙ୍କର ତାହା ନିହାତି ଆବଶ୍ୟକ ନହୁଏ ତାହା ହେଲେ ଆପଣଙ୍କ କଲେଜ ଲାଇବ୍ରେରୀକୁ ତାହା ଦେଇଦେବାକୁ ଅନୁରୋଧ ରହିଲା କିମ୍ୱା ଆପଣଙ୍କ ଓଡ଼ିଆ ପାଠଚକ୍ର ଲାଇବ୍ରେରୀ(ଯଦି ଥିବ)ରେ ରଖିପାରନ୍ତି । କିଛି ଖରାପ ଭାବିବେ ନାହିଁ । ପତ୍ର ପାଇ ପତ୍ର ଦେବେ । ଫୁଲବାଣୀ ଗଲେ ଆପଣଙ୍କୁ ସାକ୍ଷାତ କରିବି । ଲାବଣ୍ୟବତୀ ସଂପର୍କୀୟ ଲେଖାଟିଏ ଦିଅନ୍ତୁ । ଆଉସବୁ ପତ୍ରାନ୍ତରେ । ରହିଲି । ଆଶା କୁଶଳରେ ଥିବେ ।

ଆପଣଙ୍କର ଶ୍ରଦ୍ଧେୟ

ରାଜେନ୍ଦ୍ର ଷଡଙ୍ଗୀ

॥ ୧୮୦ ॥

୭.୬.୮୩

ପୂଜ୍ୟ ଗୁରୁଦେବ !

ମୋର ପ୍ରଣାମ ଗ୍ରହଣ କରିବେ । ମୋର ଆପଣଙ୍କ ସହ ଅନେକ କଥାବାର୍ତ୍ତା ଥିଲା । ତେଣୁ ସାହିତ୍ୟ ଏକାଡେମୀ ମିଟିଂ ବେଳେ ସେ ସବୁ କହିଲି ନାହିଁ । ମୁଁ ବର୍ତ୍ତମାନ ମ୍ୟୁଜିୟମ୍‌ରେ

ରହି ଜଗନ୍ନାଥ ଚରିତାମୃତ ପୋଥି ଏଡିଟ୍ କରୁଛି । ମୁଁ ଆପଣଙ୍କ ଗବେଷଣା ପରିଷଦର ସଭ୍ୟ ହେବାକୁ ଚାହୁଁଛି । ସେଥିନିମନ୍ତେ ଯୋଗ୍ୟ କି ନାହିଁ ଜଣାଇବେ ଓ କିଭଳି ମେମ୍ବର ହୋଇ ପାରିବି ଜଣାଇବେ ।

ଆପଣଙ୍କର ଯେଉଁ ଲଘୁପଂଚକ ପ୍ରବନ୍ଧଟି ମୁଁ କପି କରି ଆଣିଥିଲି, ସେଇଟିକୁ ପ୍ରକାଶ କରିବି ବୋଲି ଆପଣଙ୍କୁ କହିଥିଲି । ଛୋଟ ପ୍ରବନ୍ଧଟିଏ ହେଲେ ମଧ୍ଯ ଉପାଦେୟ ହୋଇଛି ଓ ମୋର ଗବେଷଣା କାମରେ ଲାଗିବ । ଦୟାକରି ପ୍ରକାଶ ପାଇଁ ଅନୁମତି ଦେବେ । ଏଷଣାକୁ ପଠାଇଥିବା ପ୍ରବନ୍ଧଟି ଦୟାକରି ପ୍ରକାଶ କରିବେ । ଇତି ।

ସ୍ନେହାଧୀନ
ଜଗନ୍ମୋହନ ସାହୁ
ସିଙ୍ଗଦୀ, ପୋ. ଇନ୍ଦ୍ରିସିଂହ,
ଭା: ତିରଣ, କଟକ

॥୧୮୧ ॥

Sri Brajanath Rath
Biswasree press
Balasore-756002

24.7.83

ପ୍ରିୟ କୃଷ୍ଣବାବୁ,

ନମସ୍ତେ । ଏ ପତ୍ରବାହକ ଶ୍ରୀମାନ ଲମ୍ବୋଦର ସାହୁ ଫ.ମୋ. କଲେଜରେ ଏମ୍.କମ୍. ପଢୁଥିଲେ । ସେ ହଠାତ୍ ଗୋଟିଏ ଚାକିରି ପାଇ ଫୁଲବାଣୀ ଯାଉଛନ୍ତି । ସେଠାରେ ସପ୍ଲାଏ ଅଫିସ୍‌ରେ ଜୁନିଅର ଏକାଉଣ୍ଟାଣ୍ଟ ଭାବେ ଜଏନ୍ କରିବେ । ତାଙ୍କ ଘର ଖନ୍ତାପଡାପାଖରେ ଏବଂ ସେ ଖୁବ୍ ଶାନ୍ତ-ସଚ୍ଚରିତ୍ର ସ୍ୱଭାବର । ଫୁଲବାଣୀ ତାଙ୍କ ପକ୍ଷରେ ଏକ ନୂଆ ଜାଗା, ସଂପୂର୍ଣ୍ଣ ଅଜଣା । ସେହି ଦୃଷ୍ଟିରୁ ଆପଣ ଦୟାକରି ତାଙ୍କୁ ଟିକିଏ ସାହାଯ୍ୟ ସହଯୋଗ କରିବେ ବୋଲି ଆଶା ।

ଆଉ ଆପଣଙ୍କର ଖବର କ'ଣ ? 'ଏଷଣା'ର ନୂତନ ସଂଖ୍ୟା ପାଇଛି । ଖୁବ୍ ଭଲ ହୋଇଛି । ଏ ଧରଣର ଏକ ଗବେଷଣାତ୍ମକ ପତ୍ରିକାର ମୂଲ୍ୟ ଯଥେଷ୍ଟ ରହିଛି । 'ଓଡ଼ିଆ ଗବେଷଣା ପରିଷଦ'ର ଉଦ୍ୟମ ଓ କାର୍ଯ୍ୟଧାରା ଖୁବ୍ ଅଭିନନ୍ଦନୀୟ । ଅବଶ୍ୟ କିଛି ନିନ୍ଦୁକ ଥିବେ । କିନ୍ତୁ ନିନ୍ଦା ବିନା ପ୍ରଶଂସାର ମହତ୍ତ୍ୱ ପ୍ରକଟିବ କିପରି ? ଆପଣ ଆଗେଇ ଚାଲନ୍ତୁ । ଏଠି ଏକ ପ୍ରକାର ଭଲ । ମୁଁ ବହି ଦୋକାନଟିଏ ପ୍ରେସ୍ ସହିତ ଆରମ୍ଭ କରିଛି । ପାଠ୍ୟ ପୁସ୍ତକ ଅପେକ୍ଷା ସାଧାରଣ ଓଡ଼ିଆ ସାହିତ୍ୟ ସଂପର୍କୀୟ ନୂତନ ପୁସ୍ତକାବଳୀକୁ ଏଠାର

ଆଗ୍ରହୀ ପାଠକମାନଙ୍କୁ ଯୋଗାଇବା ମୁଖ୍ୟ ଉଦ୍ଦେଶ୍ୟ । ଦେଖାଯାଉ କ'ଣ ହେଉଛି । ସୁଧୀର ବେହୁରା ଏକ ଟ୍ରେନିଂରେ କିଛି ମାସ ପାଇଁ ଭୁବନେଶ୍ୱର ଯାଉଛନ୍ତି । ଏହା ଭିତରେ ଯାଇ ସେଠାରେ ଜଏନ୍ କରିବେ । ଆପଣଙ୍କର ଆଉ ନୂଆ ବହି କ'ଣ ପ୍ରକାଶ ପାଇଛି ? ଆଶା ସପରିବାର କୁଶଳରେ ଥିବେ । ଯଦି ସମ୍ଭବ ହୁଏ ଚିଠି ଦେବେ ।

ଆପଣଙ୍କର ଗୁଣମୁଗ୍ଧ
ବ୍ରଜନାଥ ରଥ

॥ ୧୮୨ ॥

Pratichi Sahitya Sansad
Panchayat College(Staff Club)
Bargarh, Sambalpur

ତା ୨୬.୭.୮୩

ପରାପୂଜନୀୟେଷୁ,

ସଭକ୍ତିକ ପ୍ରଣାମ ଗ୍ରହଣ କରିବେ। ମାସକରୁ ବେଶି ହେଲାଣି ବରଗଡ ଆସିଲିଣି । କାର୍ଯ୍ୟ ବ୍ୟସ୍ତତା ଯୋଗୁଁ ଏପର୍ଯ୍ୟନ୍ତ ଆପଣଙ୍କୁ ଚିଠି ଦେଇ ପାରିନାହିଁ । କ୍ଷମାଦେବେ । ଚରିତ ଓ ଚରିତ୍ରର ଦ୍ୱିତୀୟ ସଂଖ୍ୟାର ଲେଖା ପୂଜା ପୂର୍ବରୁ ଦେବା ପାଇଁ ଗୋବିନ୍ଦ ବାବୁ ବ୍ୟସ୍ତ କରୁଛନ୍ତି । ଯା ଭିତରେ କଟକ ଯାଇଁ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର କର ଓ ସୋନପୁରର କେଶବ ମେହେରଙ୍କୁ ସାକ୍ଷାତ କରି ଆସିଛି । ଆସନ୍ତା ସପ୍ତାହରେ ପଦ୍ମପୁର ଯାଇଁ ଗଙ୍ଗାଧର ଗୁରୁଙ୍କୁ ଭେଟିବି ବୋଲି ସ୍ଥିର କରିଛି । ତେବେ ଲେଖାଗୁଡ଼ିକ କେଉଁ ଶୈଳୀରେ ଲେଖିଲେ ଅଧିକ ଉପାଦେୟ ହୋଇ ପାରିବ, ସେ ବିଷୟରେ କିଛି ଠିକ୍ କରି ପାରୁନାହିଁ । ବହିଟି ସଂପର୍କରେ ଆପଣଙ୍କ ମତାମତକୁ ଅପେକ୍ଷା ରଖୁଛି ।

ଏମ୍.ଫିଲ୍. ଥିସିସ୍‌କୁ ଆଉ ଅଳ୍ପ ବଢ଼େଇ ପିଏଚ୍.ଡି. ପାଇଁ ଦାଖଲ କରିବାକୁ ସମସ୍ତେ କହୁଛନ୍ତି । ଆପଣ ବି ସେଇ ପରାମର୍ଶ ଦେଇଥିଲେ । ଭାବୁଛି ଅଧିକ ପରିଶ୍ରମ କରି ବର୍ଷକ ଭିତରେ ମୁଁ କାମଟି ସାରିଦେଇ ପାରିବି । ଆପଣ ଯଦି ସମ୍ମତି ପ୍ରଦାନ କରନ୍ତି, ଦଶହରା ଛୁଟିରେ ମୁଁ ଏଥିପାଇଁ ରେଜିଷ୍ଟ୍ରେସନ କରିନିଅନ୍ତି । ଏଠି କରିବା କୌଣସି ଦୃଷ୍ଟିରୁ ନିରାପଦ ନୁହେଁ । ଏ ବିଷୟରେ ଆପଣଙ୍କ ପରାମର୍ଶ ଆଶା କରୁଛି ।

ଗତ ଶନିବାର ଦିନ 'ପ୍ରତୀଚି' ପଠାଇଛି । ଆମର ପରବର୍ତ୍ତୀ ସଂଖ୍ୟା ସଂପର୍କରେ ତ ଆପଣଙ୍କୁ କହୁଥିଲି । ଏଥର ଆମକୁ ଯେମିତି ନ ଠକନ୍ତି । 'ମୋ ଦୃଷ୍ଟିରେ କବିତା' ବିଷୟକ ଲେଖା ଅଗଷ୍ଟ ମାସ ଶେଷ ସୁଦ୍ଧା ଆମେ ଯେମିତି ପାଉଁ । ଆପଣଙ୍କ ଲେଖାଟି

ସହିତ 'ଚା' କପ୍‌ରେ ଝଡ'ର ଆଲୋଚନାଟିଏ ମଧ୍ୟ ପଠେଇବେ । ଆମକୁ ଏଥର ହତାଶ କରିବେ ନାହିଁ ବୋଲି ମୋର ଅନୁରୋଧ । 'ପ୍ରତୀଚୀ' ସଂପର୍କରେ ଆପଣଙ୍କ ମୂଲ୍ୟବାନ ମତାମତ ମଧ୍ୟ ଆଶା କରୁଛୁ । xxx

ସ୍ନେହାଧୀନ

ଗୌରାଙ୍ଗ ଚରଣ ଦାଶ

॥ ୧୮୩ ॥

Qr No B-11
JyotiVihar
Burla, Sambalpur

୨୦.୮.୮୩

ସାର୍,

ମୋର ଭକ୍ତିପୂତ ପ୍ରଣାମ ନେବେ । ଦୀର୍ଘଦିନ ପରେ ଆପଣଙ୍କ ନିକଟକୁ ଏ ଚିଠି ଲେଖୁଛି । ଗତ ୩/୪ଦିନ ତଳେ 'ଭାରତୀୟ ସାହିତ୍ୟରେ ତୁଳନାତ୍ମକ ଅଧ୍ୟୟନ' ଶୀର୍ଷକ ପ୍ରବନ୍ଧଟି ସଂପାଦକ ଡକ୍ଟର ନାୟକଙ୍କ ନିକଟକୁ ରେଜେଷ୍ଟ୍ରି ଡାକ ଯୋଗେ ପଠାଇଛି । ସେ ଏହା ଭିତରେ ପାଇ ଯାଇଥିବେ ନିଶ୍ଚୟ ।

ଗତ ଡିସେମ୍ବର ବାର୍ଷିକ ଉତ୍ସବରେ ଯୋଗଦେଇ ନପାରିଥିବାରୁ ମୁଁ ଯେପରି ମର୍ମାହତ ହେଲି, ତାହା ଚିଠିରେ ସେତେବେଳେ ପ୍ରକୃତ ଭାବେ ଜଣାଇ ପାରି ନଥିଲି । xxx

ମୁଁ ଗତ ଜୁନ୍‌ରେ ମୋର ଥେସିସ୍ 'ଉତ୍ତର ପଚାଶ ଓଡ଼ିଆ କବିତାରେ ଅସ୍ତିତ୍ୱବାଦୀ କାବ୍ୟ-ଚେତନା' ବିଶ୍ୱବିଦ୍ୟାଳୟରେ ଦାଖଲ କରିଛି । ମୁଁ ବର୍ତ୍ତମାନ ତେଣୁ ଦୀର୍ଘ ୩/୪ ବର୍ଷ ପରେ ଟିକିଏ ମୁକ୍ତ ହୋଇଛି । 'ସପ୍ତର୍ଷି' ମାସିକ ସାହିତ୍ୟ ପତ୍ରର ପରିଚାଳନାରେ ମାତ୍ର ଅଧିକ କିଛି କାର୍ଯ୍ୟବ୍ୟସ୍ତ । ନହେଲେ ବର୍ତ୍ତମାନ ମୁଁ ଆଦୌ ବ୍ୟସ୍ତ ନାହିଁ କହିଲେ ଚଳେ । ଗବେଷଣା ପରିଷଦ ବାର୍ଷିକ ଉତ୍ସବ ଏଥର ଡିସେମ୍ବରରେ ହେବ ବୋଧେ । ମୁଁ ସାର୍, ନିଶ୍ଚୟ ଯାଇ ଅଂଶ ଗ୍ରହଣ କରିବି । ଡକ୍ଟର ଶୁକ୍ଳ କହୁଥିଲେ 'ଶୈଳୀତତ୍ତ୍ୱ' ଉପରେ ଏଥର ଆଲୋଚନା ହେବ ।

ଚିଠି ପାଇ ଚିଠି ଦେବେ । ଗତ କିଛିଦିନ ତଳେ 'ଦୈନିକ ସମାଜ'ରେ ଆପଣଙ୍କ ଏକ ଚିଠି ପ୍ରକାଶିତ ହୋଇଥିଲା । ଆପଣଙ୍କର ସେ ମତାମତକୁ ମୁଁ ଏକା କାହିଁକି, ଆମର ଏଠି ସମସ୍ତେ ଭାରି ପସନ୍ଦ କଲେ । ଯଦି ଜଣଙ୍କର ସାଧୁ ଉଦ୍ୟମର ପରିଣତି ସ୍ୱରୂପ ଆଜିର ବିଶ୍ୱବିଖ୍ୟାତ ଶାନ୍ତିନିକେତନକୁ ବଙ୍ଗାଳୀ ଓ ଭାରତୀୟମାନେ ନାନା ଭାବରେ ସ୍ୱୀକାର କରୁ ଥାଆନ୍ତି, ତାହାହେଲେ ତାଠାରୁ ଆହୁରି ବ୍ୟାପକ ଓ ମହତ୍ତର ଉଦ୍ଦେଶ୍ୟ ନେଇ ଗଢ଼ି ଉଠିଥିବା

ସତ୍ୟବାଦୀ ବନବିଦ୍ୟାଳୟର ଏ ଦୁର୍ଦ୍ଦଶା କାହିଁକି ? ଏ ଜାତି ଏ ବିଷୟରେ ମନ ଦେଉ ନାହିଁ କାହିଁକି ? ଯେଉଁମାନେ ନୀଳକଣ୍ଠଙ୍କ ସ୍ମୃତି ରକ୍ଷା ପାଇଁ ଅନ୍ୟ ଭାବରେ ଉଦ୍ୟମ କରୁଛନ୍ତି, ସେମାନଙ୍କ ଉଦ୍ୟମ ଆହୁରି ଫଳପ୍ରଦ ହୁଅନ୍ତା ଯଦି ସେମାନେ ସତ୍ୟବାଦୀ ବନ ବିଦ୍ୟାଳୟକୁ ଏକ ବିଶ୍ୱପ୍ରସିଦ୍ଧ ଅନୁଷ୍ଠାନରେ ପରିଣତ କରିବାକୁ ଚାହାନ୍ତେ । ଆପଣଙ୍କ ଚିନ୍ତାନିଷ୍ଠ ତଥା ନିର୍ଭୀକ ମତାମତ ପାଇଁ ସାହିତ୍ୟର ଜଣେ ଛାତ୍ର ଓ ଜଣେ ଭାବପ୍ରବଣ ଓଡ଼ିଆ ଭାବେ ଆପଣଙ୍କୁ ମୁଁ ବଧାଇ ଜଣାଉଛି । ×××

ଆପଣଙ୍କର ସ୍ନେହାଧୀନ
ଆଦିକନ୍ଦ ସାହୁ

॥ ୧୮୪ ॥

ସୂର୍ଯ୍ୟମଣି ବେହେରା
ଅଧ୍ୟକ୍ଷ, କରଂଜିଆ ମହାବିଦ୍ୟାଳୟ
କରଂଜିଆ, ମୟୂରଭଂଜ
୨୩.୮.୮୩

ସମ୍ମାନନୀୟ ମହାଶୟ,

ମୋର ନମସ୍କାର ଗ୍ରହଣ କରିବେ । ଆପଣଙ୍କ ପ୍ରେରିତ ପତ୍ର ଯଥା ସମୟରେ ପାଇ ସମସ୍ତ ବିଷୟ ଅବଗତ ହେଲି । ଖୁସି ହେଲି, ମୋତେ ମନେ ରଖିଛନ୍ତି । ଆପଣଙ୍କର ଉପଦେଶ ମୋର କାର୍ଯ୍ୟକରିବାର ଉତ୍ସାହକୁ ଦ୍ୱିଗୁଣିତ କରିଛି । ଆଶା, ଆପଣଙ୍କ ପରି ଜ୍ଞାନୀ ତଥା ସୁପୁରୁଷମାନଙ୍କର ଆଶୀର୍ବାଦକୁ ପାଥେୟ କରି ମୁଁ ନିଶ୍ଚୟ ସବୁ କାର୍ଯ୍ୟକୁ ସୁଚାରୁ ରୂପେ ତୁଲାଇ ପାରିବି ।

ଗବେଷଣା ପରେ ମୁଁ ରାଜେନ୍ଦ୍ର ମହାବିଦ୍ୟାଳୟରେ ଅବସ୍ଥାପିତ ହୋଇଥିଲି । ତାପରେ ୪/୫ମାସ ମଧ୍ୟରେ ଏବେ କରଂଜିଆଠାରେ ଅବସ୍ଥାପିତ । ଭଗବାନଙ୍କ କୃପାରୁ ଲେଖାଲେଖି ଯଦିଓ ଧିମେଇ ଯାଇଛି, ତଥାପି କିଛି କିଛି ଚାଲିଛି । ଅଦ୍ୟାବଧି ନିମ୍ନଲିଖିତ ପୁସ୍ତକଗୁଡ଼ିକ ପ୍ରକାଶିତ ହୋଇସାରିଲାଣି ।

୧. ଯାଦୁ ନୁହେଁ-ପ୍ରକାଶକ, ଛାତ୍ରସାଥୀ–ନିମଚଉଡି, କଟକ-୨
୨.ବିଜ୍ଞାନମେଳା-୧ମ ଭାଗ-ଗ୍ରନ୍ଥମନ୍ଦିର, କଟକ-୨(ପ୍ରକାଶିତ)
୩. ବିଜ୍ଞାନମେଳା-୨ୟଭାଗ- ଗ୍ରନ୍ଥମନ୍ଦିର, କଟକ-୨(ଯନ୍ତ୍ରସ୍ଥ)
୪. ଆଜିର ବିଜ୍ଞାନ-ଗ୍ରନ୍ଥମନ୍ଦିର, କଟକ-୨(ପ୍ରକାଶନ)
୫.ଅବସର ଅଳଙ୍କାର-ପ୍ରକାଶକ-S.C.E.R.T., BBSR ପ୍ରକାଶିତ
୬. ଜଣାଣ ଓ ଭାଗବତ ସାର-ପ୍ରକାଶକ N.B.T. New Delhi (ପ୍ରକାଶିତ)

୭. ରଞ୍ଜକ ଓ ରଞ୍ଜନ-ପ୍ରକାଶକ-ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥା, ଭୁବନେଶ୍ୱର(ପ୍ରକାଶିତ)

୮. ଛୋଟ ବେତାର ନାଟିକା(ବିଜ୍ଞାନଭିତ୍ତିକ)- ପ୍ରକାଶ ଅପେକ୍ଷାରେ ।

ଏହାଛଡ଼ା, ବେତାରରେ ମଧ୍ୟ ଲୋକପ୍ରିୟ ବୈଜ୍ଞାନିକ ସାହିତ୍ୟର ପ୍ରଚାର କିଛି କିଛି କରୁଛି । କରଂଜିଆ ମହାବିଦ୍ୟାଳୟ ପରିଚାଳନା ପାଇଁ ବେଶୀ କଷ୍ଟ କରିବାକୁ ପଡୁ ନାହିଁ । ତାର କାରଣ ମୋର ଶିକ୍ଷକ ସହକର୍ମୀମାନେ ପୂର୍ବରୁ ମୋତେ ଜଣା ଓ ଏଠାକାର ପ୍ରାୟ ସମସ୍ତେ ମୋତେ ଜାଣନ୍ତି । ତାଛଡା ମହାବିଦ୍ୟାଳୟର ଉନ୍ନତି ପାଇଁ ଯେଉଁ ଯୋଜନା ମୁଁ କରିଛି, ସମସ୍ତେ ଉଣାଧିକେ ସେଥିରେ ସହଯୋଗ କରୁଛନ୍ତି । ସମୟ ଓ ସୁବିଧା ଦେଖି ମୁଁ ଆପଣଙ୍କୁ ମୋର ଏହି ମହାବିଦ୍ୟାଳୟକୁ ନିମନ୍ତ୍ରଣ କରିବି । ଆଶା, ମୋତେ ଆପଣ ନିରାଶ କରିବେ ନାହିଁ । ଇତି ।

ଆପଣଙ୍କର ଗୁଣମୁଗ୍ଧ
ସୂର୍ଯ୍ୟମଣି

॥ ୧୮୫ ॥

୨୭.୦୯.୮୩
ଛାୟାପଥ
ନୟାଗଡ, ପୁରୀ

ମାନନୀୟେଷୁ,

ପ୍ରଣାମ । ଆପଣଙ୍କ ପତ୍ର ପାଇଲି । ଆମ କଲେଜ ମଧ୍ୟ ୬ ତାରିଖରୁ ବନ୍ଦ ହେଉଛି । ସେଦିନ ମହାଳୟା । ତେଣୁ ଶ୍ରାଦ୍ଧର ଦିନ । ମୁଁ ନିଜେ ବ୍ୟସ୍ତ ରହିବି । ତା'ପରେ ଛୁଟିପରେ ପିଲାମାନେ ରହିବେ କି ନା ତାଙ୍କ ଉପରେ ନିର୍ଭର କରିବାକୁ ପଡିବ । ଅକ୍ଟୋବର ୬ ତାରିଖ ପୂର୍ବରୁ ଯଦି ସମୟ ହୁଏ, ତା'ହେଲେ ପୂଜାଛୁଟି ପରେ ଯେ କୌଣସି ଦିନ ଆପଣ ଆସିବା ପାଇଁ ବିଶେଷ ଅନୁରୋଧ । ଖଣ୍ଡିଏ ସମ୍ମତିପତ୍ର ଗୋଟିଏ ତାରିଖ ଜଣେଇ ଟିକାଏ ପୂର୍ବରୁ ଚିଠିଟାଏ ପାଇଲେ ସବୁ ଠିକ୍ ହେବ । ଯେକୌଣସି ଦିନ କଟକ ଯିବା ବାଟରେ/ଫେରନ୍ତା ପଥରେ ବି । ଯାହା ଆପଣ ଠିକ୍ କରିବେ ଆମ ପାଇଁ ତା ଗ୍ରହଣୀୟ ହେବ । ଆପଣ ଯେକୌଣସି ବିଷୟ ଉପରେ ବକ୍ତବ୍ୟ ପ୍ରଦାନ କରିପାରନ୍ତି । ଉପନ୍ୟାସ କେବଳ ଆପଣଙ୍କ ବିଚରଣର କ୍ଷେତ୍ର ବୋଲି ମୋର ଧାରଣା ଥିଲେ ବି ନାଟକ ବା କ୍ଷୁଦ୍ରଗଳ୍ପ ପ୍ରତ୍ୟେକ ବିଷୟରେ ଆପଣ ସୁନ୍ଦର ଓ ମୌଳିକ ପୁସ୍ତକ ଲେଖିଛନ୍ତି । ଏହାର ଆବଶ୍ୟକତା ଓଡ଼ିଆ ବିଭାଗର ପ୍ରତ୍ୟେକ ଅନୁଭବ କରନ୍ତି । ତେଣୁ ଆପଣ ଯେଉଁ ବିଷୟରେ କହିବେ ଆମର ଆଦୌ ଆପତ୍ତି ନାହିଁ ।

ସ୍ନେହାଧୀନ ହରିହର ମିଶ୍ର

॥୧୮୬॥

Sahitya Manjushri
Rajah Jagannath Deo Verma, Poet & Violinst
Budha Hamsa Rajbati
Tekkali(Srikakulam D.), Andhra Pradesh

୧.୧୧.୮୩

ମାନନୀୟେଷୁ,

ପ୍ରଣାମ ।

ଆପଣଙ୍କ ପ୍ରେରିତ ଲିପି ଯଥା ସମୟରେ ହସ୍ତଗତ ହୋଇଛି ଓ ସାହିତ୍ୟ ପରିଷଦର ଅଗ୍ରସରତା ଜାଣିପାରି ଅତୀବ ହର୍ଷାୟୀତ ହୋଇଛି । ଇତିମଧ୍ୟରେ ମୋର ଏକ କବିତା ଚୟନ 'କା'ତବକାନ୍ତା' ପ୍ରକାଶ ପାଇଛି । ତାହା ପୃଥକ୍ ଭାବେ ପ୍ରେରଣ କରିଛି । ଆଶା ହସ୍ତଗତ ହୋଇଥିବ । ମୁଁ ଶୁଣ ପାରିଛି ବ୍ରହ୍ମପୁର ଭଂଜ ବିହାରର ପାଠ୍ୟପୁସ୍ତକ ଅନୁମୋଦନ କରିବା ମଧ୍ୟରେ ଆପଣ ଅନ୍ୟତମ ସଦସ୍ୟ । ମୋର କିଛି ଗୋଟାଏ କବିତା କିମ୍ବା ଗଳ୍ପ ବହି ଅନୁମୋଦନ କରାଇଥିଲେ ବିଶେଷ ଉପକୃତ ହୁଅନ୍ତି । ଏଥିସହ ମୋର 'ପ୍ରତିଭା ଦର୍ଶନ' ଶୀର୍ଷକ ଏକ ପ୍ରବନ୍ଧାବଳୀ ପ୍ରେରଣ କରୁଛି । ମୁଖବଂଧଟିଏ ଲେଖିବେ । ତାହା ଯେପରି ୨ ପୃଷ୍ଠାରୁ ଊର୍ଦ୍ଧ୍ୱ ନହୁଏ ସେଥିପ୍ରତି ଦୃଷ୍ଟି ଦେବେ ଓ ମୁଖବଂଧଟି ମୋ ନିକଟକୁ ଯଥା ଶୀଘ୍ର ପ୍ରେରଣ କରିବେ ବୋଲି ଅନରୋଧ । ଆଶା ସର୍ବାଙ୍ଗୀ କୁଶଳରେ ଥିବେ । ଇତି

ଆପଣଙ୍କର ସୌଜନ୍ୟମୁଗ୍ଧ
ଜଗନ୍ନାଥଦେବ ବର୍ମା

• • •

# ଅଧାପକ ଡକ୍ଟର ବେହେରାଙ୍କ ସାହିତ୍ୟସୃଷ୍ଟି-ସମ୍ଭାର

**କାବ୍ୟକବିତା:**

୧. ଚା' କପ୍‌ରେ ଝଡ(୧୯୫୩)
୨. ୫୪, ଭାନୁବାଇ ଲେନ୍(୧୯୫୯)
୩. ପିପାସାର ପ୍ରାର୍ଥନା(ଅଧାପକ ବୈଷ୍ଣବଚରଣ ବଳଙ୍କ ସହ)(୧୯୬୮)
୪. ଲଘୁପଞ୍ଚକ(୧୯୮୩)

**ନାଟ୍ୟକୃତି :**

୧. ଯଥା ନଳସ୍ୟ ଦମୟନ୍ତୀ(୧୯୫୯)
୨. ଯୋଜନା-ଯଜ୍ଞ ପାଲା(୧୯୫୯)

**ଗଳ୍ପଗୁଚ୍ଛ:**

୧. ସୃଷ୍ଟିର ସ୍ୱପ୍ନ(୧୯୫୮)
୨. ଗୋପନପତ୍ର(୧୯୬୨)
୩. ଉଭା ଓ ପୋତା(୧୯୬୭)
୪. 'ବେଦୀ' ଇତ୍ୟାଦି ଗଳ୍ପ(୧୯୭୧)
୫. 'ନାରୀ' ଏକ ନଦୀର ନାମ( ୧୯୭୬)
୬. ଐତରେୟ(୧୯୮୨)
୭. ନାରୀମେଧ(୧୯୮୯)
୮. ଦର୍ପକଦର୍ପଣ(୨୦୦୪)
୯. ଇତର ଇତରା (୨୦୦୮)

**ଶିଶୁ-କିଶୋର ରଚନା:**

୧. କଥାଟିଏ କହୁଁ ଗୀତଟିଏ ଗାଉଁ(୧୯୬୮), ୪ର୍ଥ ମୁଦ୍ରଣ-୧୯୮୩
୨. ଗପସପ(୧୯୮୨)
୩. ଅତିବଡୀ ଜଗନ୍ନାଥ ଦାସ(୨୦୦୨)

**ପ୍ରବନ୍ଧ-ସାହିତ୍ୟାଲୋଚନା:**

୧. ପ୍ରଗତି ସାହିତ୍ୟ(୧୯୫୮), ଦ୍ୱିତୀୟ ମୁଦ୍ରଣ-୧୯୭୦
୨. କଥା ସାହିତ୍ୟ(୧୯୬୦), ତୃତୀୟ ମୁଦ୍ରଣ-୧୯୭୮
୩. ଅଶ୍ଳୀଳତା ବିପକ୍ଷରେ(୧୯୬୬)
୪. ଓଡ଼ିଆ ଉପନ୍ୟାସ(୧୯୬୮), ତୃତୀୟ ସଂସ୍କରଣ- ୧୯୯୨
୫. କେତୋଟି ସାହିତ୍ୟିକ ଅଭିଭାଷଣ(୧୯୭୦), ଦ୍ୱିତୀୟ ସଂସ୍କରଣ-୧୯୭୭
୬. ଅଧାପକର ବେଦନା(୧୯୭୨)
୭. ଶ୍ରୀ ଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ(୧୯୭୪), ଦ୍ୱିତୀୟ ମୁଦ୍ରଣ-୧୯୮୨
୮. ନାଟ୍ୟ ସାହିତ୍ୟ ପ୍ରରିଚୟ(୧୯୭୮), ତୃତୀୟ ମୁଦ୍ରଣ-୨୦୦୮
୯. ଚରୁ ଓ ଚରିତ (୧୯୭୯)

୧୦. ମଧ୍ୟସ୍ଥ ବାଣୀ( ୧୯୮୦)
୧୧. ସଂପାନ ସନ୍ଦର୍ଭ (୧୯୮୧), ଦ୍ୱିତୀୟ ମୁଦ୍ରଣ- ୧୯୮୭
୧୨. ପ୍ରସଙ୍ଗ : ଗଳ୍ପ-ଉପନ୍ୟାସ (୧୯୮୯)
୧୩. ବୀକ୍ଷାବିଚିତ୍ରା (୧୯୯୧)
୧୪. ପ୍ରସଙ୍ଗ : ଧର୍ମ ଓ ଶିକ୍ଷା(୧୯୯୩)
୧୫. କୁସୁମକେଳି (୧୯୯୫)
୧୬. ପ୍ରସଙ୍ଗ : ନାଟକ-ଏକାଙ୍କିକା (୧୯୯୭)
୧୭. କୃଷ୍ଣଚରଣ ବୀଥିକା (୧୯୯୯)
୧୮. ପଣ୍ଡିତ ନୀଳମଣି ବିଦ୍ୟାରତ୍ନ (୨୦୦୨)
୧୯. ସଭାସମ୍ଭାଷ (୨୦୦୫)
୨୦. ପ୍ରସଙ୍ଗ : ସାହିତ୍ୟାଲୋଚନା (୨୦୦୭)
୨୧. ଓଡ଼ିଆ ସାହିତ୍ୟରେ ଇସ୍‌ଲାମୀ ପ୍ରଭାବ(୨୦୦୭)

**ସଂକଳିତ-ସଂପାଦିତ ଗ୍ରନ୍ଥ :**

୧. ଦଶହରା(୧୯୬୦)
୨. କବିଶେଖର ଚିନ୍ତାମଣି (୧୯୬୩)
୩. ମୋଗଲ ତାମସା (୧୯୬୬)
୪. ଚୟନିକା (ଡକ୍ଟର କ୍ଷେତ୍ରବାସୀ ନାୟକଙ୍କ ସହ) (୧୯୭୬)
୫. ପଲ୍ଲୀକବି ନନ୍ଦକିଶୋର ସ୍ମାରକ ଗ୍ରନ୍ଥ (୧୯୭୬)
୬. କିଶୋରଚନ୍ଦ୍ରାନନ୍ଦ ଚଂପୂ (୧୯୭୭), ୫ମ ମୁଦ୍ରଣ- ୧୯୯୫
୭. ଏକାଙ୍କିକା ଚୟନ (୧୯୭୭)
୮. ଏଯୁଗର ଗଦ୍ୟ ଚୟନ (୧୯୭୮)
୯. ବୈକୁଣ୍ଠନାଥ ଗ୍ରନ୍ଥାବଳୀ, ୨ୟ ଖଣ୍ଡ (୧୯୭୯)
୧୦. ପ୍ରୀତିସୁଧାକର (୧୯୭୯)
୧୧. ବୈଦେହୀଶ ବିଳାସ (୧୯୮୦), ତୃତୀୟ ମୁଦ୍ରଣ-୧୯୮୯
୧୨. ସାରସ୍ୱତ ସାରଥି(ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କ ସହ) (୧୯୮୦)
୧୩. କଳାବତୀ(୧୯୮୧)
୧୪. ଫୁଲମଣି ଓ କରୁଣାର ବିବରଣ (୧୯୮୨)
୧୫. ଗୋପାଳକୃଷ୍ଣ ପଦାବଳୀ-ପରିକ୍ରମା (୧୯୮୫), ଚତୁର୍ଥ ସଂସ୍କରଣ- ୧୯୯୮
୧୬. କୋଟି ବ୍ରହ୍ମାଣ୍ଡସୁନ୍ଦରୀ (୧୯୯୩)
୧୭. ଫକୀରମୋହନ ଗ୍ରନ୍ଥାବଳୀ (ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶଙ୍କ ସହ) (୨୦୦୦)
୧୮. କବିସୂର୍ଯ୍ୟ ଗ୍ରନ୍ଥାବଳୀ (୧୯୯୮)
୧୯. ଗୋପାଳକୃଷ୍ଣ ରଚନାବଳୀ (୨୦୦୩)
୨୦. ଦଳିତ ଆନ୍ଦୋଳନ ଓ ଦଳିତ ସାହିତ୍ୟ ([illegible] ସହ) (୨୦୦୭)

ଏହା ଜଣେ ସାଧାରଣ ମଣିଷର କଥା - ଜନ୍ମ ସୂତ୍ରରେ ଯେ ଶୂଦ୍ର, କିନ୍ତୁ କର୍ମ ତନ୍ତ୍ରରେ ରୁଦ୍ର - ସାମାଜିକ ସ୍ଥିତିରେ ଯେ' ଇତର, କିନ୍ତୁ ଚେଷ୍ଟା-ଚରିତ୍ରରେ ଐତରେୟ । କ୍ଷୁଦ୍ର ହେଲେହେଁ ସେ ଊର୍ଦ୍ଧ୍ୱକୁ ଉଠିବା ପାଇଁ ଉଦ୍ୟମ କରିଛି ଆର୍ଥିକ କ୍ଷେତ୍ରରେ ତଥା ପାରମାର୍ଥିକ ଦିଗରେ । ସେ କିପରି ଶମ୍ବୁକର ତପସ୍ୟା କରିଛି - କିପରି କଣ୍ଟକାକୀର୍ଣ୍ଣ ଉତ୍ତରଣର ପଥ ରକ୍ତଝରା ପାଦରେ ଅତିକ୍ରମ କରିଛି, ସେହି କାହାଣୀ ସମସ୍ତଙ୍କ ସମକ୍ଷରେ ଥୋଇ ଯାଉଛି ନିଷ୍କପଟ ଭାବରେ ।

ଭଲ ମଣିଷଟିଏ ହୋଇ ଉପରକୁ ଉଠିବା ପାଇଁ ଚାହୁଁଥିବା ଯଦି କେହି ଏଥିରୁ ସୁସ୍ଥ ସୁନ୍ଦର ଜୀବନ ବଞ୍ଚିବାକୁ ଖିଅଟିଏ ପାଇଯାଏ...



ନବଦିଗନ୍ତ
ବିନୋଦବିହାରୀ, କଟକ-୭୫୩୦୦୨